# ମାନସିଂହ ଗ୍ରନ୍ଥାବଳୀ

[ସପ୍ତମ ଖଣ୍ଡ : ଶିକ୍ଷାବିତ୍‌ର ଗାଥା,
ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ,
ଶିକ୍ଷାର କି, କ'ଣ ଓ କାହିଁକି]

ଡକ୍ଟର ମାୟାଧର ମାନସିଂହ

ସଂପାଦନା :
ଡକ୍ଟର ଶ୍ରୀଚରଣ ମହାନ୍ତି
ପ୍ରାଧ୍ୟାପକ, ଓଡ଼ିଆ



ଗ୍ରନ୍ଥମନ୍ଦିର, କଟକ-୨

ପ୍ରକାଶକ : **ମନୋଜ କୁମାର ମହାପାତ୍ର**
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ,
କଟକ-୭୫୩୦୦୨

ପ୍ରକାଶନ ପରିଚାଳନା : **ଅଭିରାମ ମହାପାତ୍ର**

ଡି.ଟି.ପି. ଓ ମୁଦ୍ରଣ : **ତପନ କୁମାର ମହାପାତ୍ର**
**ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍**
ସୂତାହାଟ, କଟକ-୭୫୩୦୦୧

ପ୍ରଥମ ସଂସ୍କରଣ : ଜୁନ୍, ୨୦୦୭
(୭୦୦)

ମୂଲ୍ୟ : ଟ.୨୫୦.୦୦
ସାଦା ବନ୍ଧେଇ : ଟ.୨୨୦.୦୦

# ସୂଚୀପତ୍ର ୬



## ଶିକ୍ଷାବିତ୍‌ର ଗାଥା

## ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ



## ଶିକ୍ଷାର କି, କ'ଣ ଓ କାହିଁକି

—

# ଏହି ଗାଥାର ବିଚ୍ଛୁତି

**''ନହି କଲ୍ୟାଣକୃତ୍ କଶ୍ଚିତ୍, ଦୁର୍ଗତିଂ ତାତ ଗଚ୍ଛତି''**

—ଗୀତା, ୬ଷ୍ଠ ଅଧ୍ୟାୟ

ଲବ୍‌ଧାସ୍ପଦୋଽସ୍ମୀତି ବିବାଦଭୀରୋ
ସ୍ତିତିକ୍ଷମାଣସ୍ୟ ପରେଣ ନିନ୍ଦାମ୍ ।
ଯସ୍ୟାଗମଃ କେବଳଜୀବିକାୟୈ
ତଂ ଜ୍ଞାନପଣ୍ୟଂ ବଣିଜଂ ବଦନ୍ତି ।

''ମୁଁ ଉଚ୍ଚ ପଦରେ ଅଧିଷ୍ଠିତ ହୋଇସାରିଛି— ଏହା ଭାବି ଯେଉଁ ବ୍ୟକ୍ତି ବିବାଦକୁ ଭୟକରି ପରକୃତ ନିନ୍ଦା ନୀରବରେ ସହ୍ୟ କରିଥାଏ, ତାହାର ବିଦ୍ୟା କେବଳ ଜୀବିକାର୍ଜନମୂଳକ ହୋଇଥିବାରୁ ତାକୁ ଲୋକେ ଜ୍ଞାନୀ ନ କହି ଜ୍ଞାନର ଦୋକାନୀ ହିଁ କହିଥାନ୍ତି ।''

[କାଳିଦାସ, ମାଳବିକାଗ୍ନିମିତ୍ର ।]

''ଲୋକସମ୍ମାନ, ପ୍ରତିପତ୍ତି ବା ପଦପଦବୀ ଇତ୍ୟାଦି କେବଳ ମାନବିକ ମୂଲ୍ୟ-ନିରୂପଣ । ବିଧାତାର ଶେଷ-ବିଚାର-ହଲ୍‌ରେ ଦଣ୍ଡାୟମାନ ହୋଇ ଅପେକ୍ଷା ବେଳେ କେହି ଏପରି କହିବାକୁ ସାହସ କରିବ ନାହିଁ ଯେ – ମତେ ଲୋକେ ସମ୍ମାନ କରୁଥିଲେ, ମୁଁ ପ୍ରଶଂସା ଓ ପ୍ରତିଷ୍ଠା ପାଉଥିଲି— ମୁଁ ଏକ ରାଜ୍ୟ ଚଳାଉଥିଲି, ମୁଁ ଜଣେ କାବିନେଟ୍-ମିନିଷ୍ଟର ଥିଲି, ମୁଁ ଏକ ବିଖ୍ୟାତ ଗ୍ରନ୍ଥର ଲେଖକ ବା ବିରାଟ ଶିଳ୍ପୀ ଥିଲି ।'' ସେ ବରଂ ସୁଖୀ ବୋଲି ଧରାଯିବ, ଯଦି ସେ ଏଇତକ କହିପାରେ— ''ମତେ ଯେଉଁ ପରିସ୍ଥିତିରେ ରଖାଯାଇଥିଲା ସେଥିରେ ଯାହା ଉତ୍କୃଷ୍ଟ ସମ୍ଭବ, ତାହା ମୁଁ କରିଛି ଏବଂ ତମେ ମତେ ଯେଉଁ କାମଟି ଦେଇଥିଲ, ତାହା ମୁଁ ଶେଷ କରି ଆସିଛି ।''

ଡକ୍ଟର ଆର. ସି. ଜନସନ୍ (ମେଲବୋର୍ଣ୍ଣ ବିଶ୍ୱବିଦ୍ୟାଳୟର କୁଇନସ୍ କଲେଜର ଅଧ୍ୟକ୍ଷ)ଙ୍କର ପ୍ରସିଦ୍ଧ ଗ୍ରନ୍ଥ
'ଇମ୍ପ୍ରିଜଣ୍ଡ୍ ସ୍ପ୍ଲେଣ୍ଡର' (ଲୁକ୍କାୟିତ ଦୀପ୍ତି), ୩୫୯ ପୃଷ୍ଠା ।

—

## ବୟାକରଣିକଙ୍କର ଶବ-ସତ୍କାର

ଛୋଟ ସେ ମନିଷ,
'ସାନ ଲାଭ ଲୋଡି,
ସଜାଡି, ଯୋଗାଡି,
ପାଏ ତା' କରେ;
ବଡ-ମନା ଯିଏ
ବଡେ ଆଖି ରଖି,
ବାଟ ଖୋଜୁ ଖୋଜୁ
ମୃତ୍ୟୁ ବରେ ।
ସେ ଛୋଟ ଲୋକଟି
ଶହେ ଆଶା କରି
ଗୋଟି ଗୋଟି କରି
ପାଏ ତା' ଶହେ,
ଉଚ୍ଚାଶୀ ଜନ,
କୋଟିକି ଅନାଇ,
ଏକ୍ ବି ନ ପାଇ,
ରିକ୍ତ ରହେ ।
ସେ ଲୋକ ଚାହିଁଲା
ରାସ୍ତା-ଧୂଳି; ତା'
ପାଇ ରହେ ସେହୁ
ତୁଷ୍ଟ-ପ୍ରାଣ,
ବିରାଟରେ ଯାର
ଆଖି ଓ ବିଚାର,
ଥାଉ, ଆଜି ଦୀନ,
କାଲି ତା' ଜୀବନ
ବିରାଟେ ପୂର୍ଣ୍ଣ ହୋଇବ, ଜାଣ ।

ରବର୍ଟ ବ୍ରାଉନିଂ - (ଗ୍ରାମାରିଆନ୍‌ଜ ଫିଉନେରାଲ୍)

—

# ଶିକ୍ଷାବିତ୍ ମାନସିଂହ ଓ ତାଙ୍କ ଶିକ୍ଷାଦର୍ଶନ

ଡକ୍ଟର ମାୟାଧର ମାନସିଂହ (୧୯୦୫-୧୯୭୩), ଓଡ଼ିଆ ସାହିତ୍ୟ ଇତିହାସରେ କବି, ନାଟ୍ୟକାର, ପ୍ରାବନ୍ଧିକ ଓ ସମାଲୋଚକ ଭାବରେ ପ୍ରତିଷ୍ଠିତ । ସାଧାରଣ ପାଠକମାନଙ୍କ ହୃଦୟରେ କବି ମାନସିଂହଙ୍କର ହିଁ ଅଧିଷ୍ଠାନ । ଜଣେ ଶିକ୍ଷାବିତ୍ ଓ ଚିନ୍ତାନାୟକ ଭାବରେ ତାଙ୍କର ପ୍ରତିଷ୍ଠା ବି ରହିଛି । କବି ମାନସିଂହ ନିଜକୁ ଜଣେ ଶିକ୍ଷାବିତ୍ ଭାବରେ ପରିଚିତ କରାଇବାକୁ ଚାହୁଁଥିଲେ । **ତେଣୁ ତାଙ୍କ ଆତ୍ମଜୀବନୀକୁ ସେ 'ଶିକ୍ଷାବିତ୍‌ର ଗାଥା' ନାମରେ ନାମିତ କରିଛନ୍ତି ।** ତାଙ୍କ ଜୀବନ, କର୍ମଧାରା ଓ ଚିନ୍ତନର ଆଲୋଚନା ମଧ୍ୟରୁ ତାଙ୍କ ଶିକ୍ଷାଦର୍ଶନ ନିର୍ଣ୍ଣୟ କରିବାର ପ୍ରୟାସ ଏଠାରେ କରାଯାଉଛି ।

ବିଂଶ ଶତାବ୍ଦୀର ପ୍ରଥମ ଦଶକ ଓଡ଼ିଶାର ଜାତୀୟ ଜାଗରଣର ସମୟ । ଇତିହାସର ଓଡ଼ିଶା, ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ମାତ୍ର ଇଂରେଜ ଅଧିକାର (୧୮୦୩) ବେଳକୁ ଏହା ସଂକୁଚିତ ହୋଇ କେବଳ ଉପକୂଳ ଅଂଚଳ- ମୋଗଲବନ୍ଦୀ- ମଧ୍ୟରେ ସୀମାବଦ୍ଧ ଥିଲା । ଗଡ଼ଜାତ ଅଂଚଳଗୁଡ଼ିକ ଛୋଟବଡ଼ ରାଜ୍ୟ ଖଣ୍ଡରେ ବିଭକ୍ତ ହୋଇ କେନ୍ଦ୍ର-ଶାସନ ବା ଗଜପତିଙ୍କ ଶାସନ ବ୍ୟବସ୍ଥାରୁ ଅଲଗା ରହି ପରସ୍ପର କଳହରେ ରତ ଥିଲେ । ଶେଷକୁ ଗଜପତି ରାଜାମାନେ ଖୋର୍ଦ୍ଧା ଆଉ ପୁରୀରେ ସୀମାବଦ୍ଧ ଥିଲେ । ପୁରୁଷ ପୁରୁଷ ଧରି ଖଣ୍ଡାୟତ ପାଇକମାନେ ନିଷ୍କର ଜମି ଭୋଗକରି ଗଜପତିଙ୍କର ସୈନ୍ୟ ଭାବରେ ଓଡ଼ିଶାର ସୁରକ୍ଷା କରି ଆସୁଥିଲେ । ଏବେ ଅତୀତର ବଣିକ ଓଡ଼ିଆ କାର୍ତ୍ତିକ ପୂର୍ଣ୍ଣିମାରେ, କଦଳୀ ବାସୁଙ୍ଗାରେ ବୋଇତ ଭସାଇ ଅତୀତକୁ ସ୍ମରଣ କଲାପରି, ଏବେବି ଖଣ୍ଡାୟତ ପାଇକ ଗାଁ ଗୁଡ଼ିକରେ ପାଇକ ଆଖଡ଼ା ରହିଛି ଓ ଦଶହରା ସମୟରେ ପାଇକ ନାଚ ଅନୁଷ୍ଠିତ ହୋଇ ଗୌରବର ସ୍ମୃତିଚାରଣ ହେଉଅଛି । କବି ମାନସିଂହ ୧୯୦୫ ମସିହା ନଭେମ୍ବର ମାସ ୧୩ ତାରିଖରେ ଏହିପରି ଏକ ପାଇକ ଖଣ୍ଡାୟତ ପରିବାରରେ ଜନ୍ମଗ୍ରହଣ କରିଥିଲେ ।

ଏକପଟେ ମରାଳମାଳିନୀ ନୀଳାମ୍ବୁ ଚିଲିକା, ଆରପଟେ ନୀଳ ମହୋଦଧି । ଦକ୍ଷିଣ ଦିଗରୁ ପଶ୍ଚିମ ପଟ ଦେଇ ଉତ୍ତର ପାଖ ପର୍ଯ୍ୟନ୍ତ ମୁକୁଟ ମଣ୍ଡନ କରି ଦଣ୍ଡାୟମାନ ନୀଳ ପାହାଡ଼ମାଳା । ଗ୍ରାମର ସୀମାକୁ ଲାଗି ଚିଲିକା ତୀରବର୍ତ୍ତୀ ସବୁଜ ଫସଲ କ୍ଷେତ । କିଆକେତକୀ ଅରଣ୍ୟ ମଧ୍ୟରେ ପୋଲାଙ୍ଗ, ଲଙ୍କାଆମ୍ବ, ତାଳ, ନାରିକେଳର କୁଂଜ ବେଷ୍ଟିତ ମନୋରମ ବାଲିବନ୍ତ । କବିବର ରାଧାନାଥଙ୍କ ସ୍ୱପ୍ନର ଚିଲିକା, ଯାହାର ତୀରବର୍ତ୍ତୀ କୁଟିଆ କୋଳରେ ନିବାସ ରଚନା କରି ପଶ୍ଚିମ ଜୀବନ ଯାପନ ପାଇଁ ସେ କଳ୍ପନା କରିଥିଲେ, ସେହି ଚିଲିକାର ବହୁରଂଗୀ ବେଶ ସଂଦର୍ଶନ କରୁଥିବା ପରିବେଶରେ ବାଳକ ମାୟାଧର

ବାଲ୍ୟ ଜୀବନ ଅତିବାହିତ କରିଥିଲେ । ଚିଲିକାର ଦକ୍ଷିଣ-ପୂର୍ବ କୋଣରେ, ଚିଲିକାର ନୀଳ ଜଳକୁ ସ୍ପର୍ଶ କରି ଠିଆହୋଇଛି ନନ୍ଦଲା ଗାଁ-ଖଣ୍ଡାୟତ ଗାଁ-ପାଇକାଲୀ ଗାଁ । ଏମାନେ ଓଡ଼ିଶାର କୃଷକ ସୈନ୍ୟ । ନିଜ କ୍ଷେତରେ କାମ କରନ୍ତି, ସଂଜ ହେଲେ ପାଇକ ଆଖଡ଼ାରେ କସରତ କରନ୍ତି । ମାଟି ମା ଧାନ ଦିଏ, ଚିଲିକା ଆଉ ମହୋଦଧି ମାଛ ଦିଅନ୍ତି । ଏଇ ଗାଁରେ ଜନ୍ମ ହୋଇଥିଲେ କବି, ଶିକ୍ଷାବିତ୍ ମାୟାଧର ମାନସିଂହ । ପିତାଙ୍କ ନାମ ପଦ୍ମଚରଣ ମାନସିଂହ । ପଦ୍ମଚରଣଙ୍କ ପିତାଙ୍କ ନାମ ସତ୍ୟବାଦୀ ନାୟକ । ପଦ୍ମଚରଣଙ୍କ ମାନସିଂହ ଉପାଧି ରାଜଦତ୍ତ । କବି ମାନସିଂହଙ୍କ ପିତା ଅକାଳରେ ଅର୍ଥାତ୍ ମାୟାଧରଙ୍କୁ ମାତ୍ର ଚାରିବର୍ଷ ହେଲାବେଳକୁ ଇହଲୀଳା ସମ୍ବରଣ କଲେ । ଶୁଣାଯାଏ ସେହି ଦୁଃଖରେ ମା' ସୁଭଦ୍ରା ଦେବୀ ମଧ୍ୟ ଆତ୍ମହତ୍ୟାକଲେ । ଏକାନ୍ନବର୍ତ୍ତୀ ପରିବାରରେ ମାୟାଧରଙ୍କ ଲାଳନ ପାଳନର କୌଣସି ଅସୁବିଧା ହେଲାନାହିଁ । ପାରିକୁଦ ରାଜପରିବାରରେ ମାୟାଧରଙ୍କ ସାଆନ୍ତ ବାପା, ଅଗାଧୁ ନାୟକ ରାଜକର୍ମଚାରୀ ଥିଲେ । ମାୟାଧରଙ୍କ ବାଲ୍ୟଶିକ୍ଷା ପାରିକୁଦ ଗଡ଼ରେ ଆରମ୍ଭ ହୋଇଥିଲା ।

ମାୟାଧର ମାନସିଂହଙ୍କ ଆବିର୍ଭାବ ଐତିହାସିକ ଦୃଷ୍ଟିକୋଣରୁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସମୟ । ଇଂରେଜମାନେ ଓଡ଼ିଶା ଅଧିକାର କରିବାର ସମୟ ପ୍ରାୟ ଏକଶହ ବର୍ଷରୁ ଅଧିକ ହୋଇଥିଲେ ହେଁ, ଓଡ଼ିଶା ରାଜ୍ୟର ସୀମା ସେ ପର୍ଯ୍ୟନ୍ତ ସ୍ଥିରୀକୃତ ହୋଇ ନଥାଏ । ଆଧୁନିକ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ରାଧାନାଥ, ମଧୁସୂଦନ, ଫକୀରମୋହନଙ୍କର ଅନେକ ସୃଷ୍ଟି ପ୍ରକାଶିତ ହୋଇସାରିଥାଏ । ସ୍ୱଭାବକବି ଗଂଗାଧର, ପଲ୍ଲୀକବି ନନ୍ଦକିଶୋର, ନାଟ୍ୟକାର ରାମଶଙ୍କର ତଥା ପ୍ରାବନ୍ଧିକ ବିଶ୍ୱନାଥ କର ପ୍ରମୁଖ ସାହିତ୍ୟିକ ବାତାବରଣକୁ ଜାଗ୍ରତ ରଖିଥାନ୍ତି । ଓଡ଼ିଶାରେ ଉତ୍କଳ ସମ୍ମିଳନୀର ଆନ୍ଦୋଳନ ସହିତ, ସର୍ବଭାରତୀୟ କ୍ଷେତ୍ରରେ ସ୍ୱାଧୀନତା ସଂଗ୍ରାମର ଉଦ୍ୟମ ଆରମ୍ଭ ହୋଇଥାଏ । ଏଣେ ବିଶ୍ୱ ସ୍ତରରେ ପ୍ରଥମ ବିଶ୍ୱଯୁଦ୍ଧର ଆରମ୍ଭ ହୋଇଯାଇଥାଏ । ଏହି ପ୍ରକାର ବାତାବରଣ ଭିତରେ ମାନସିଂହଙ୍କ ବାଲ୍ୟକାଳ ବିତିଛି ।

ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର ପାରିକୁଦ ସ୍କୁଲରୁ ବାଣପୁର ମାଇନର ସ୍କୁଲକୁ ପଢ଼ିବାକୁ ଆସିଲାପରେ, ସାଳିଆ ନଈର କଳସଂଗୀତ, ସୋଲରୀ, ଭାଲେରୀ, ଘଣ୍ଟଶିଳା ଓ ଆହୁରି ଅନେକ ମନୋମୁଗ୍ଧକର ପାହାଡ଼ର ଦୃଶ୍ୟାବଳୀ, କବି ମାନସିଂହଙ୍କୁ ଉଦ୍‌ବୁଦ୍ଧ କରିଥିବ । ଆଦର୍ଶ ହେଡମାଷ୍ଟର ବାଙ୍କନିଧି ପଟ୍ଟନାୟକଙ୍କର ଶାସନ ଓ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଖୋରଧା ହାଇସ୍କୁଲ ସେତେବେଳେ ସୁପରିଚାଳିତ । କୃତୀ ଛାତ୍ର ଥିବାରୁ ମାୟାଧର ଶିକ୍ଷକ ସମୂହର ପ୍ରୀତିଭାଜନ ହୋଇପାରିଥିଲେ । ଖୋରଧା ହାଇସ୍କୁଲ ପରେ ରେଭେନ୍‌ସା କଲେଜ ଓ ତା'ପରେ ପାଟନା ବିଶ୍ୱବିଦ୍ୟାଳୟରେ ଇଂରାଜୀରେ ଏମ୍.ଏ. ପଢ଼ିବା ମଧ୍ୟରେ ମାୟାଧର ଜଣେ ଭଲ ଜଣାଶୁଣା କବି ହୋଇସାରିଥିଲେ ।

## ମାନସିଂହଙ୍କ ଜୀବନ ପ୍ରସ୍ତୁତି କାଳ : ସମୟର ମୌଳ ପ୍ରବୃତ୍ତି –

ମାନସିଂହଙ୍କ ବ୍ୟକ୍ତିତ୍ୱ ବିକାଶର କାଳ ଏକ ଆଦର୍ଶବାଦର କାଳ । ଏହି ସମୟରେ ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣ ନେଇ ସମଗ୍ର ପ୍ରାକୃତିକ ଉତ୍କଳରେ ବ୍ୟାପକ ଜନଜାଗରଣ ଦେଖାଦେଇଥିଲା ଓ ଏହି ଆନ୍ଦୋଳନକୁ ନେତୃତ୍ୱ ଦେଇଥିବା ବ୍ୟକ୍ତିମାନେ ସମଗ୍ର ତରୁଣ ଯୁବ ସମାଜର ଆଦର୍ଶ ଭାବରେ ଦଣ୍ଡାୟମାନ ହୋଇଥିଲେ । ମାନସିଂହଙ୍କ ସମ୍ମୁଖରେ ସେହିମାନେ ହିଁ ଆଦର୍ଶ ଭାବରେ ଦଣ୍ଡାୟମାନ ହେବାର ପ୍ରମାଣ ରହିଛି ।[୧]

ସର୍ବଭାରତୀୟ କ୍ଷେତ୍ରରେ ଭାରତୀୟ ସ୍ୱାଧୀନତା ସଂଗ୍ରାମ, ଏହି ସମୟର ବିଶେଷ ଘଟଣା । ମହାତ୍ମାଗାନ୍ଧୀଙ୍କ ଭାରତୀୟ ରାଜନୀତିକୁ ପ୍ରବେଶକରିବାର ପୂର୍ବ ଓ ପର ସମୟର କାଳ ମଧ୍ୟ ଏକ ଆଦର୍ଶବାଦର କାଳ । ଯୁବସମାଜ, ବିଶେଷତଃ ଛାତ୍ରସମାଜ ଉପରେ ଜାତୀୟ ମୁକ୍ତି ଆନ୍ଦୋଳନ ଖୁବ୍ ପ୍ରଭାବ ପକାଇଥିଲା । ନିଜକୁ ପ୍ରକାଶ କରିବାର ମନୋଭାବ ଓ ନିଜକୁ ଆଜାଦୀ ଭାବରେ ପରିଚୟ ଦେବାର ମୋହ ଅନେକ ଯୁବ ପ୍ରାଣରେ ଉଦ୍‌ବେଳିତ ହେଉଥିଲା । ନିଜର ପାରିବାରିକ ସ୍ଥିତି ଦୃଷ୍ଟିରୁ ମାନସିଂହ ପ୍ରତ୍ୟକ୍ଷ ସଂଗ୍ରାମରେ ଭାଗ ନେଇ ନାହାନ୍ତି, ମାତ୍ର ବାପୁଜୀଙ୍କ ବ୍ୟକ୍ତିତ୍ୱ, ଚିନ୍ତାଧାରା ଓ କର୍ମ ତାଙ୍କୁ ବହୁମାତ୍ରାରେ ପ୍ରଭାବିତ କରିଛି । ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଦେଖାଦେଇଥିଲା ଭାରତବର୍ଷରେ ଏକ ସାଂସ୍କୃତିକ ଜାଗରଣ । ଏହି ସମୟରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ସ୍ୱାମୀ ବିବେକାନନ୍ଦ, ଯୋଗୀ ଅରବିନ୍ଦ, ବାଲ୍ ଗଙ୍ଗାଧର ତିଳକ ସାମାଜିକ ଜୀବନରେ ଆଲୋଡ଼ନ ଖେଳାଇଦେଇଥିଲେ । ବିଂଶ ଶତକର ପ୍ରଥମ ପାଦରେ ନିମ୍ନମଧ୍ୟବିତ୍ତର ଅଭ୍ୟୁଦୟ ପୁନର୍ଜାଗରଣବାଦୀ ଧାରାକୁ ଶକ୍ତିଶାଳୀ କରିବାକୁ ଆରମ୍ଭ କଲା । ଆର୍ଥନୀତିକ ଓ ସାମାଜିକ ପ୍ରେକ୍ଷାପଟ ବିଭିନ୍ନ ଚିନ୍ତାନାୟକଙ୍କ ଦୃଷ୍ଟିକୋଣରେ ଏକ ସମନ୍ୱୟ ସ୍ଥାପନ କଲା । ଗାନ୍ଧୀ, ଅରବିନ୍ଦ ଓ ରବୀନ୍ଦ୍ରନାଥ ଏହି ଚିନ୍ତା ସମନ୍ୱୟର ତିନି ପ୍ରମୂର୍ତ୍ତ ପ୍ରତିନିଧି । ବିଶେଷ କରି ଗାନ୍ଧୀ ଓ ରବୀନ୍ଦ୍ରନାଥ ମାନସିଂହଙ୍କ ଚିନ୍ତା ଏବଂ ଚେତନାକୁ ବହୁ ଭାବରେ ପ୍ରଭାବିତ କରିଥିଲେ ।

ବିଭିନ୍ନ ଯୁଗରେ ମଣିଷର ଚେତନାରେ ନିଜକୁ ପ୍ରକାଶ କରିବା ବା ପ୍ରତିଷ୍ଠା କରିବା ଭାବ ବିଦ୍ୟମାନ ଥାଏ । ଅବଶ୍ୟ ସମୟ ଭେଦରେ ଓ ପରିବେଶ ଭେଦରେ ଏହା ଭିନ୍ନ ଭିନ୍ନ ହୋଇଥାଏ । ମାନସିଂହଙ୍କ ଛାତ୍ରାବସ୍ଥାରେ ଓଡ଼ିଶାର ଜନମାନସରେ ନିଜକୁ ପ୍ରକାଶ କରିବାର ମାର୍ଗ ଥିଲା ଶିକ୍ଷକ ହେବା ବା କବି ହେବା । ଗାଁଗହଳିରୁ ଯେଉଁମାନେ ସହରକୁ ଆସୁଥିଲେ ସେମାନଙ୍କର ମୂଳ ଲକ୍ଷ୍ୟ ହେଉଥିଲା ଲେଖାଲେଖି କରିବା, ଦ୍ୱିତୀୟ ପ୍ରବୃତ୍ତି ସମାଜ ସେବା କରିବା । ଏହି ସମୟରେ ସମଗ୍ର ଭାରତବର୍ଷକୁ ଗୋଟିଏ ଆଦର୍ଶବାଦ ଗ୍ରାସକରିଥିଲା । ଏହି ଆଦର୍ଶବାଦକୁ ପ୍ରକଟିତ କରାଇବା ପାଇଁ ଶିକ୍ଷକ ଚାକିରୀ ହୁଏତ ଏକ ସହଜ ପନ୍ଥା ଥିଲା । ଶିକ୍ଷକ ଭାବରେ ଆଦର୍ଶକୁ ରୂପାୟନ କରିବା ଯେ ସମୟର ଥିଲା ମୌଳ ପ୍ରବୃତ୍ତି । ଅନ୍ୟ କଥାରେ କହିବାକୁ ଗଲେ, ସ୍ୱାଧୀନ ଚିନ୍ତା ପ୍ରକାଶ କରିବା ପାଇଁ କିଛି ନୂତନ ମାର୍ଗ

ପ୍ରଦର୍ଶନ ପାଇଁ ଶିକ୍ଷକତା ଶ୍ରେଷ୍ଠ ବାଟ ଥିଲା । ସେ ସମୟର ମୌଳସ୍ୱରକୁ ଅନ୍ତର ମଧ୍ୟରେ ଗ୍ରହଣକରି ମାନସିଂହ ମଧ୍ୟ ଚିନ୍ତା କରିଥିଲେ ଜୀବନରେ ଜଣେ ଶିକ୍ଷକ ହେବା ପାଇଁ ।

ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଓ କର୍ମଧାରା, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପଣ୍ଡିତ କୃପାସିନ୍ଧୁଙ୍କ ପରି ଜଣେ ଜଣେ ସିଂହ ସଦୃଶ ବ୍ୟକ୍ତିଙ୍କୁ ଏକତ୍ରିତ କରିପାରିଥିଲା । ସତ୍ୟବାଦୀ ବନବିଦ୍ୟାଳୟ ସ୍ଥାପନ ପୂର୍ବରୁ, ସେବା ଓ ସଂଗଠନ ଦ୍ୱାରା ଗୋପବନ୍ଧୁ ଉତ୍କଳର ସାଧାରଣ ଜନତାଙ୍କଠାରୁ ଆରମ୍ଭ କରି ନେତୃବୃନ୍ଦଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ସେବା ସଂଗଠନ ସଂଗେ ସଂଗେ ସତ୍ୟବାଦୀ ବନବିଦ୍ୟାଳୟ ସ୍ଥାପନ ଓ ଜୀବନ ତିଆରି ବିଦ୍ୟାଳୟ ହିଁ ଲୋକଙ୍କ ଦୃଷ୍ଟିର କେନ୍ଦ୍ରବିନ୍ଦୁ ଥିଲା । ଅବଶ୍ୟ ସେତେବେଳେ ଦେଶପ୍ରାଣ ମଧୁସୂଦନଙ୍କ ପ୍ରଭାବ କମ୍ ନଥିଲା, ମାତ୍ର ପାଠପଢ଼ି କାଳିଆ ଘୋଡ଼ାରେ ଚଢ଼ି ମଧୁବାରିଷ୍ଟର ସଂଗରେ ଲଢ଼ିବା, ସମସ୍ତଙ୍କ ପାଇଁ ସହଜସାଧ୍ୟ ନଥିଲା । ମିଷ୍ଟର ଦାସଙ୍କ ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ସୀମା ସ୍ପର୍ଶ କରିବା ମଧ୍ୟ ସାଧାରଣ ଲୋକଙ୍କ ପାଇଁ ଦୁଃସାଧ୍ୟ ଥିଲା । ବିଶେଷତଃ ଛାତ୍ରମାନଙ୍କ ସମ୍ମୁଖରେ ଗୋପବନ୍ଧୁ ସେତେବେଳେ ଏକ ଆଦର୍ଶ ବ୍ୟକ୍ତି ଭାବରେ ଦଣ୍ଡାୟମାନ ହୋଇପାରିଥିଲେ । ଛାତ୍ର ମାନସିଂହଙ୍କ ଆଗରେ ପ୍ରଥମ ଆଦର୍ଶ ଭାବରେ ଦେଖାଦେଇଥିଲେ ପଣ୍ଡିତ ଗୋପବନ୍ଧୁ ଦାସ ଓ ସତ୍ୟବାଦୀର ବରେଣ୍ୟ ଶିକ୍ଷକ ବୃନ୍ଦ । ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର ହେବାର ଦୁରନ୍ତ ଆଶା ମାନସିଂହଙ୍କର ସଫଳ ହୋଇପାରିନଥିଲା, ମାତ୍ର ସେ ଆଦର୍ଶ ତାଙ୍କ ପ୍ରାଣରେ ଅହରହ ଅନୁଭୂତ ହେଉଥିଲା । ମାନସିଂହଙ୍କ ପରିବାର ଚାହୁଁଥିଲେ ମାୟାଧର ଡେପୁଟି ଚାକିରୀ କରି ପରିବାରର ଆର୍ଥିକ ସ୍ଥିତିରେ ପରିବର୍ତ୍ତନ ଆଣୁ, ମାତ୍ର ମାନସିଂହ ଚାହୁଁଥିଲେ ଜଣେ ଆଦର୍ଶ ଶିକ୍ଷକ ଭାବରେ ନିଜର ସ୍ୱପ୍ନ ସାକାର କରିବାକୁ ।

ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧ ଓ ବିଂଶ ଶତକର ପ୍ରଥମ ଦୁଇ ଦଶକ ମଧ୍ୟରେ ଯେଉଁମାନେ ସାହିତ୍ୟ, ସମାଜସେବା ବା ସାମାଜିକ ଆଂଦୋଳନରେ ଓଡ଼ିଶାରେ କାର୍ଯ୍ୟ କରୁଥିଲେ ତାଙ୍କ ଭିତରେ ଅଧିକାଂଶ ଶିକ୍ଷକତା କରିଥିଲେ । କେବଳ ଶିକ୍ଷକ ଭାବରେ ନୁହେଁ, ଆଦର୍ଶ ଶିକ୍ଷକ ଭାବରେ ସେ ଛାତ୍ରମାନଙ୍କ ସମ୍ମୁଖରେ ଦଣ୍ଡାୟମାନ ଥିଲେ । ବ୍ୟାସକବି ଫକୀରମୋହନ, କବିବର ରାଧାନାଥ, ଉତ୍କଳ ଗୌରବ ମଧୁସୂଦନ ତଥା ଭକ୍ତକବି ମଧୁସୂଦନ ରାଓ କେବଳ ଆଦର୍ଶ ଶିକ୍ଷକ ନଥିଲେ, ଶିକ୍ଷା ସମ୍ପର୍କୀୟ ନିଜର ବିଚାରଧାରା ବି ପ୍ରଦର୍ଶନ କରିଯାଇଥିଲେ । ସେହିପରି ବିଶ୍ୱନାଥ କର, ପଲ୍ଲୀକବି ନନ୍ଦକିଶୋର ବଳ ତଥା ଚନ୍ଦ୍ରମୋହନ ମହାରଣାଙ୍କ ଭଳି ଶିକ୍ଷକ ଜାତୀୟନେତା ବା ଜାତି ଗଠନରେ ବିଶେଷ ଭୂମିକା ଦେଖାଇଯାଇଥିଲେ । ପୁରୀ ଜିଲ୍ଲା ସ୍କୁଲରେ ଚନ୍ଦ୍ରମୋହନ ମହାରଣା ଯେପରି ପଣ୍ଡିତ ନୀଳକକଣ୍ଠ ଭଳି ଛାତ୍ରଙ୍କୁ ଦିଗ୍‌ଦର୍ଶନ ଦେଇଥିଲେ, ରେଭେନ୍ସା କଲିଜିଏଟ୍ ସ୍କୁଲର ହେଡମାଷ୍ଟର ଓ ଶିକ୍ଷକଗଣ ନେତାଜୀ ସୁଭାଷ ଚନ୍ଦ୍ରଙ୍କୁ ସେପରି ବାଟ ଦେଖାଇଥିଲେ ବୋଲି

ନେତାଜୀ ଉଲ୍ଲେଖ କରିଛନ୍ତି । ଡକ୍ଟର ମାୟାଧର ମାନସିଂହ ବି ଖୋରଧା ହାଇସ୍କୁଲ ହେଡମାଷ୍ଟର ବାଙ୍କନିଧି ପଟ୍ଟନାୟକଙ୍କୁ ସ୍ମରଣ କରିଛନ୍ତି ।

॥ ଦୁଇ ॥

ଶିକ୍ଷକ ମାନସିଂହଙ୍କୁ ଚିହ୍ନିବା ପୂର୍ବରୁ ଓ ତାଙ୍କ ବିଚାର ଆଲୋଚନା ସହିତ ପରିଚିତ ହେବା ପୂର୍ବରୁ ଯେଉଁ ପରଂପରାର ପୃଷ୍ଠଭୂମିରେ ସେ ଠିଆହୋଇଥିଲେ ସେ ସମ୍ପର୍କରେ ସାମାନ୍ୟ ଆଲୋକପାତ କରିବାକୁ ହେବ । ମଣିଷର ବହିଯାଇଥିବା ଅତୀତ ଓ ଆବିଷ୍କାର କରିଥିବା ଅତୀତ ମଧ୍ୟରେ ବହୁ ସମୟରେ ପାର୍ଥକ୍ୟ ରହିଛି । ଅତୀତ ଭାରତର ଶିକ୍ଷା ମୁଖ୍ୟତଃ କର୍ମାଭିମୁଖୀ ଓ ଶ୍ରେଣୀ ଉଦ୍ଦିଷ୍ଟ ଥିଲା । ଭାରତୀୟ ଜନସମାଜ ଯେମିତି ବିଭିନ୍ନ ବର୍ଣ୍ଣ ଓ ଜାତିରେ ବିଭକ୍ତ ହୋଇଥିଲେ, ଶିକ୍ଷା ମଧ୍ୟ ବିଭିନ୍ନ ଜାତି ପାଇଁ ସ୍ୱତନ୍ତ୍ର ଥିଲା ଓ ବିଭିନ୍ନ ଜାତି ପାଇଁ ଭିନ୍ନ ଭିନ୍ନ ଶିକ୍ଷକ ମଧ୍ୟ ଥିଲେ । ଶୂଦ୍ର, ବୈଶ୍ୟ ତଥା ଅନ୍ୟାନ୍ୟ ଅବହେଳିତ ଜାତି କି ପ୍ରକାର ଶିକ୍ଷା ପାଉଥିଲେ, ସେ ସମ୍ପର୍କରେ କୌଣସି ପ୍ରମାଣ ବର୍ତ୍ତମାନ ସହଜଲଭ୍ୟ ନୁହେଁ । ବ୍ରାହ୍ମଣ ଓ କ୍ଷତ୍ରୀୟମାନଙ୍କ ଶିକ୍ଷା ସମ୍ପର୍କରେ କେତେକ ନିଦର୍ଶନ କାହାଣୀ ଆକାରରେ, ପୁରାଣ, ଉପନିଷଦ ଓ ପଞ୍ଚତନ୍ତ୍ର ଆଦିରେ ଲିପିବଦ୍ଧ । ପୁରାଣ ଓ ଉପନିଷଦ ଆଦିରେ ବିବୃତ ସମସ୍ତ ଶିକ୍ଷକ ଜାତିରେ ବ୍ରାହ୍ମଣ । ତେଣୁ ସେମାନଙ୍କ ମର୍ଯ୍ୟାଦାକୁ ଉଚ୍ଚ ରଖିବା ପାଇଁ ଶିକ୍ଷକଙ୍କୁ ସବୁଠାରୁ ସମ୍ମାନାସ୍ପଦ ଆସନ ପ୍ରଦାନ କରାଯାଇଛି । ଶିକ୍ଷକର ଗୌରବ ଓ ମହତ୍ତ୍ୱ ରକ୍ଷିତ ହେଉଥିଲା – ସେମାନେ ଶିକ୍ଷକ ବୋଲି ନୁହେଁ, ଅଧିକାଂଶ ଶିକ୍ଷକ ଋଷି ହୋଇଥିବାରୁ । ଉଚ୍ଚବର୍ଣ୍ଣାଶ୍ରମର ବାହାରେ ରହିଥିବା ଲୋକମାନେ ଶିକ୍ଷାରୁ କିପରି ବଞ୍ଚିତ ହେଉଥିଲେ କର୍ଣ୍ଣ, ଜାବାଳ, ସତ୍ୟକାମ ଓ ଏକଲବ୍ୟ ତା'ର ଦୃଷ୍ଟାନ୍ତ । ପରବର୍ତ୍ତୀ କାଳରେ ରାଜା ଓ ସାମନ୍ତମାନେ ଅଧିକ ବଳଶାଳୀ ହୋଇଉଠିବା ଫଳରେ ବ୍ରାହ୍ମଣ ଶିକ୍ଷକମାନଙ୍କର ଏହି ମର୍ଯ୍ୟାଦା କ୍ରମଶଃ ନିମ୍ନତର ହେବାକୁ ଲାଗିଲା । ବେଦ, ଉପନିଷଦ, ସଂହିତା ଯୁଗ ପରେ ଆଚାର୍ଯ୍ୟଙ୍କୁ ଗୌରବ ଦେଇଥିବା ପରଂପରା ଇତିହାସ ଭିତରୁ କ୍ୱଚିତ୍ ମିଳେ । ମୋଗଲମାନଙ୍କ ସମୟରେ ଶିକ୍ଷକମାନଙ୍କର ସ୍ଥାନ ଖୁବ୍ ନିମ୍ନରେ ନିର୍ଣ୍ଣିତ ହେଉଥିଲା । ସେତେବେଳେ ଶିକ୍ଷକ କ୍ଷମତାର ରାଜସିଂହାସନ ତଳେ ତା'ର ସ୍ଥିତିପାଇଁ ଭିକ୍ଷାପାତ୍ର ନେଇ ଠିଆହେଉଥିଲା । ଟୋଲ ଓ ଚତୁଷ୍ପାଠୀ ଇତ୍ୟାଦି ରାଜା, ଜମିଦାର ଓ ବିତ୍ତସଂପନ୍ନ ବ୍ୟକ୍ତିଙ୍କର ଦାନ ଓ ଦକ୍ଷିଣା ଫଳରେ ଗଢ଼ିଉଠିଥିଲା । କିନ୍ତୁ ଦାନ ନେଉଥିବା ଲୋକର ଆତ୍ମମର୍ଯ୍ୟାଦା ନଥିବା ଭଳି, ଶିକ୍ଷକର ମଧ୍ୟ ମର୍ଯ୍ୟାଦା ଗୌଣଥିଲା ।

ଉନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଶିକ୍ଷାର ଜୀବନ ବିକାଶ ପାଇଁ ଓ ମଣିଷର ସାମାଜିକ ଗତିଶୀଳତାରେ ବିଶେଷ ଭୂମିକା ନଥିବାରୁ ଶିକ୍ଷା ଓ ଶିକ୍ଷକ ଅବହେଳିତ ରହିଥିଲେ । ଏପରିକି ଆକବରଙ୍କ ଭଳି ବିଦ୍ୟୋତ୍ସାହୀ ସମ୍ରାଟମାନଙ୍କ ଦରବାରରେ ଶିକ୍ଷକମାନେ ନିପୀଡ଼ିତ ଓ

ଦୟାର ପାତ୍ର ହୋଇ ରହିଥିଲେ । ଆବୁଲଫାଜଲ ତାଙ୍କର ଆଇନ୍-ଇ-ଆକବରୀର ଅବଦୂଲ କାଦୀର, ମୌଲାନା ଆଲୌଦ୍ଦିନ୍ ଓ ମିର୍‌ନରୁଲାଙ୍କ ପ୍ରସଙ୍ଗ ଅବତାରଣା କରିଛନ୍ତି । ଆକବରଙ୍କ ବ୍ୟକ୍ତିଗତ ଗୃହରେ ପ୍ରାର୍ଥନା ନ କରିବାରୁ ଅବଦୁଲ କାଦୀରଙ୍କୁ ପ୍ରଦତ୍ତ ଜାଗିର ବାଜ୍ୟାପ୍ତି କରାଯାଇଛି । ଦରବାରରେ ପଛ ଧାଡ଼ିରେ ବସିବାର ଆଦେଶକୁ ଅମାନ୍ୟ କରିବାରୁ ଆକବର ନିଜ ଶିକ୍ଷକ ମୌଲାନା ଆଲୌଦ୍ଦିନଙ୍କୁ ବହିଷ୍କାର କରିଛନ୍ତି ଓ ଆଦେଶ ଅମାନ୍ୟ ପାଇଁ ମିରୁନରୁଲାଙ୍କର ଶିରଚ୍ଛେଦ କରାଯାଇଛି । ଏଭଳିକି ଇଂରେଜମାନେ ଏ ଦେଶକୁ ଆସି ଉଦାରତନ୍ତ୍ରୀ ଶିକ୍ଷାର ପ୍ରବର୍ତ୍ତନ କଲାପରେ, ଶିକ୍ଷକର କର୍ତ୍ତବ୍ୟ ହୋଇଛି ଶାସକ ଓ ସମାଜର ବଡ଼ପଣ୍ଡାମାନଙ୍କର ନିର୍ଦ୍ଦେଶମତେ ଛାତ୍ରମାନଙ୍କୁ ଅଧ୍ୟାପନା କରିବା । ଏହି ନିର୍ଦ୍ଦେଶ ଅବମାନନା କରିଥିବାରୁ ଡେରେଜିଓଁଙ୍କୁ ହିନ୍ଦୁ କଲେଜର ଶିକ୍ଷକତା ପଦରୁ ବହିଷ୍କାର କରାଯାଇଛି । ଭାରତୀୟ ସମାଜରେ ଶିକ୍ଷା ବ୍ୟକ୍ତି ନୁହେଁ, ସମାଜର, ବିଶେଷତଃ ସମାଜର କ୍ଷମତାଶୀଳ ବ୍ୟକ୍ତିମାନଙ୍କର ହାତବାରିସି ହୋଇ କାର୍ଯ୍ୟ କରିଆସିଛି । ଛାତ୍ର ଭିତରେ ଗଭୀର ଅନ୍ୱେଷା, ଯୁକ୍ତିବୋଧ ଓ ବ୍ୟକ୍ତିତ୍ୱବୋଧର ଜାଗରଣ ନୁହେଁ, ଶୁଷ୍କ ପାଣ୍ଡିତ୍ୟ, ସାମାଜିକ ବିକାଶବୋଧର ପ୍ରତିଷ୍ଠା ପାଇଁ ଶିକ୍ଷା ସବୁବେଳେ କାମ କରି ଆସିଛି । ଡକ୍ଟର ମାୟାଧର ମାନସିଂହ ଏ ମୌଳ ତତ୍ତ୍ୱକୁ ହୃଦ୍‌ବୋଧ କରିନଥିଲେ । ଏଣୁ ଜୀବନ ସାରା ଆଦର୍ଶବୋଧର ଦହଗଞ୍ଜରେ ଘାଣ୍ଟିହୋଇଛନ୍ତି । ବାଣପୁର ସ୍କୁଲ, ଇଷ୍ଟର୍ଣ୍ଣ ଷ୍ଟେଟ ଏଜେନ୍‌ସୀର ଶିକ୍ଷା ପରାମର୍ଶଦାତା ହେଉ ବା ଗଙ୍ଗାଧର ମେହେର କଲେଜ ହେଉ ସର୍ବତ୍ର ତାଙ୍କୁ କିପରି ଅବହେଳା କରାଯାଇଛି 'ଶିକ୍ଷାବିତ୍‌ର ଗାଥା'ରେ ଆଲୋଚନା କରାଯାଇଛି ।

ଇଉରୋପରେ ରେନେସାଁ ପରେ ଶିକ୍ଷା ଚର୍ଚ୍ଚ ଓ ରାଷ୍ଟ୍ରର ଅଜଗରୀ ବାହୁ ବଂଧନରୁ ମୁକ୍ତିଲାଭ କରି ବ୍ୟକ୍ତିର ହେତୁବାଦୀ ଚେତନାକୁ ଜାଗ୍ରତ କରିବାକୁ ଚେଷ୍ଟା କରିଛି । ପୁଂଜିବାଦୀ ଅର୍ଥନୀତିର ଅଭ୍ୟାଗମ ସହ ଶିକ୍ଷା ବ୍ୟକ୍ତିକୁ ଏକ ସୀମାବଦ୍ଧ ଜୀବ ଭାବରେ କେବଳ ନୁହେଁ, ତା'ର ମାନସିକ ଓ ଦୈହିକ ସମସ୍ତ ପ୍ରକାର ଉନ୍ନତିର କ୍ଷେତ୍ର ପାଇଁ ଭିତ୍ତିସ୍ଥାପକ ହୋଇପଡ଼ିଛି । ଏହି ଶିକ୍ଷା ଫଳରେ ଜ୍ଞାନବିଜ୍ଞାନର ବିକାଶ କ୍ଷେତ୍ରରେ ଆସିଛି ଅଭୂତପୂର୍ବ ବିସ୍ଫୋରଣ । ମଣିଷର ସାମାଜିକ ଜୀବନରେ ଆସିଛି ଅଭାବିତ ଗତିଶୀଳତା । ରାଜନୀତି କ୍ଷେତ୍ରରେ ଶିକ୍ଷାପ୍ରାପ୍ତ ମଣିଷ ରାଜତନ୍ତ୍ର ତଥା ସାମନ୍ତ ତନ୍ତ୍ରକୁ ପୋପାଡ଼ିଦେଇ ଫୁଙ୍କିଛି ଗଣତନ୍ତ୍ରର ଶୁଭଶଙ୍ଖ । ଜାତି, ଧର୍ମ ବା ଧନ ନୁହେଁ, ନିଜର ମହତ୍ତ୍ୱ, ନିଜ ସମ୍ପର୍କରେ ସଚେତନତା ତଥା କର୍ମକୁଶଳତା ବ୍ୟକ୍ତିକୁ ରାଷ୍ଟ୍ରର ସର୍ବୋଚ୍ଚ ପଦବୀରେ ଅଧିଷ୍ଠିତ କରାଇପାରେ ଏହା ପ୍ରମାଣ କଲା ଉଦାରତନ୍ତ୍ରୀ ଶିକ୍ଷା । ଉଦାରତନ୍ତ୍ରୀ ଶିକ୍ଷାରେ ଶିକ୍ଷିତ ଇଂରେଜମାନେ ବହୁଦିନ ପର୍ଯ୍ୟନ୍ତ ଔପନିବେଶିକ ସ୍ୱାର୍ଥ ଦୃଷ୍ଟିରୁ ଭାରତରେ ଏହି ଶିକ୍ଷା ପ୍ରଚଳନର ବିରୋଧ କରିଥିଲେ । ବେଣ୍ଟିକ୍, ମ୍ୟାକ୍‌ଲେଙ୍କ ଭଳି ଉଦାରତନ୍ତ୍ରୀ ଶାସକଙ୍କର ଉଦ୍ୟମରେ ଏହି ପ୍ରକାର ଶିକ୍ଷା ଲିପିବଦ୍ଧ ଭାବରେ ଭାରତମାଟିରେ ପ୍ରଚଳିତ ହୋଇଥିଲା । କିନ୍ତୁ ମ୍ୟାକେଲ୍‌ଙ୍କ ଶିକ୍ଷାନୀତି ଔପନିବେଶିକ ସ୍ୱାର୍ଥର ଚାପରେ ଓ ସୁବିଧାବାଦୀ ଶ୍ରେଣୀର

ତାଗିଦ୍‌ରେ ଭାରତରେ କିମ୍ଭୂତକିମାକାର ରୂପନେଇ ପ୍ରଚଳିତ ଓ ପ୍ରତିଷ୍ଠିତ ହୋଇଥିଲା – ଯାହା ଫଳରେ ଶିକ୍ଷା ନୁହେଁ, ଅପଶିକ୍ଷାର ପ୍ରଚଳନ ପାଇଁ ପରାଧୀନ ଭାରତରେ ଭିତ୍ତି ପ୍ରସ୍ତୁତ ହୋଇଥିଲା । ଭାରତ ସ୍ୱାଧୀନ ହେଲା ପରେ, ଅପଶିକ୍ଷାର ସେହି ଭିତ୍ତି ଉପରେ ସ୍ୱାଧୀନ ଭାରତର ସେହି କଳା ସରକାରଙ୍କର ଶିକ୍ଷା ବ୍ୟବସ୍ଥା ଗଢ଼ିଉଠିଛି । ମାନସିଂହଙ୍କ ଶିକ୍ଷକ ଓ ଶିକ୍ଷା ପ୍ରଶାସକ ଜୀବନ ପରାଧୀନ ଓ ସ୍ୱାଧୀନ ଭାରତ ମଧ୍ୟରେ ବିସ୍ତୃତ । ସେ ନିଜେ ପ୍ରାଚୀନ ଭାରତର ଅନେକ ମୂଲ୍ୟବୋଧକୁ ସମ୍ମାନ ଦେଉଥିଲେ ବି, ରାମମୋହନ, ବେଣ୍ଟିକ୍ ଓ ମ୍ୟାକେଲଙ୍କ ଶିକ୍ଷାନୀତିର ପ୍ରଶଂସକ । ଗାନ୍ଧୀଙ୍କ ପ୍ରତି ଶ୍ରଦ୍ଧାଭାବ ତାଙ୍କୁ ଇଂରେଜ ରାଜଶକ୍ତିର ବିରୋଧୀ କରି ନଥିଲା, ଏଭଳିକି ଇଂରେଜମାନେ ଏ ଦେଶରୁ ବିଦାୟ ନେଲା ପରେ ମାନସିଂହଙ୍କର ସେହି ଜାତିପ୍ରତି ଶ୍ରଦ୍ଧାଭାବ ଖୁବ୍ କିଛି ଊଣା ପଡ଼ିନଥିଲା । ଉଦାରତନ୍ତ୍ରୀ ଶିକ୍ଷାବ୍ୟବସ୍ଥା ପ୍ରତି ମାନସିଂହଙ୍କ ଶ୍ରଦ୍ଧାଶୀଳ ମନ ଭିତରେ ବିବେକାନନ୍ଦ, ଅରବିନ୍ଦ ଓ ଗାନ୍ଧୀ ପ୍ରମୁଖଙ୍କର ନିର୍ଦ୍ଦିଷ୍ଟ ଆସନ ବି ଥିଲା । ତେଣୁ ତାଙ୍କର ଶିକ୍ଷାସମ୍ପର୍କିତ ବିଚାରଧାରା ଏ ଉଭୟ ମଧ୍ୟରେ ଦୋଳାୟିତ ହୋଇଛି ।

**ମାନସିଂହଙ୍କ ବିଚାରରେ ଶିକ୍ଷା –**

ମାନସିଂହଙ୍କ ଛାତ୍ରକାଳ ଭାରତ ଇତିହାସରେ ଏକ ବିପ୍ଳବମୁଖୀ ଜାଗରଣର କାଳ । ପ୍ରତ୍ୟେକ ବିପ୍ଳବର ଚାବିକାଠି ଶିକ୍ଷା ଓ ଶିକ୍ଷକମାନେ । ବିଂଶ ଶତକର ପ୍ରଥମ ପର୍ଯ୍ୟାୟରେ ଶିକ୍ଷକମାନଙ୍କର ଆଦର୍ଶବାଦୀ ଭୂମିକା ସେମାନଙ୍କୁ ଛାତ୍ରମାନଙ୍କ ଆଗରେ କେବଳ ନୁହେଁ, ଜନଗଣଙ୍କ ସମ୍ମୁଖରେ ମଧ୍ୟ ମର୍ଯ୍ୟାଦାବନ୍ତ ପୁରୁଷ ରୂପରେ ପରିଚିତ କରାଇଥିଲା । ସତ୍ୟବାଦୀର ନୀଳକଣ୍ଠ, ଗୋଦାବରୀଶ କେବଳ ନୁହନ୍ତି, ନାଟ୍ୟକାର ଅଶ୍ୱିନୀକୁମାର, ପଶ୍ଚିମ ଓଡ଼ିଶାର ଦୟାନିଧି ମିଶ୍ରଙ୍କ ସମେତ ଭାରତର ବହୁ ବୁଦ୍ଧିଜୀବୀ ଉଚ୍ଚବିତ୍ତ ଓ ଆଧିପତ୍ୟ-ସଂପନ୍ନ ଚାକିରୀକୁ ପାଦରେ ଠେଲିଦେଇ ଶିକ୍ଷକ ଜୀବନକୁ ବରଣ କରିନେଇଥିଲେ । ଶିକ୍ଷକ ଜୀବନର ଏହି ଆଦର୍ଶବୋଧ ମାନସିଂହଙ୍କର ଭାବବାଦୀ ଦୃଷ୍ଟିକୋଣକୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ଖୋର୍ଦ୍ଧା ସ୍କୁଲର ଛାତ୍ର ଥିଲାବେଳେ ଅନ୍ୟ କେତେକ ସହପାଠୀଙ୍କ ସହିତ ଜୀବନର ଲକ୍ଷ୍ୟ ସମ୍ପର୍କରେ ଆଲୋଚନା କଲାବେଳେ ମାନସିଂହ ଜୀବନରେ ଶିକ୍ଷକତାକୁ ବରଣ କରିନେବାକୁ ଶପଥ କରି ନେଇଥିଲେ । ତାଙ୍କ ନିଜ ଭାଷାରେ : ''ଯଦି ମୁଁ କୌଣସିମତେ ମାଟ୍ରିକ୍ ପରୀକ୍ଷାଟା ପାଶ୍ କରିପାରେ, ତେବେ ମୁଁ କୌଣସି ସ୍କୁଲରେ ଶିକ୍ଷକତା କରିବି ।''(ଘ) ଶିକ୍ଷକତା କରିବା ନିମିତ୍ତ ଅଭିଳାଷ ପୋଷଣ କରିଥିବା ମାନସିଂହ, ଘଟଣାଚକ୍ରରେ ଶିକ୍ଷା ବିଭାଗର ବିଭିନ୍ନ ସ୍ତର ଦେଇ ଗତି କରିବା ପରେ ଜୀବନର ଅପରାହ୍ଣରେ ଅନୁଶୋଚନା କରିଛନ୍ତି– ''ଆହା, ଯଦି ସେ ଦିନର ସେହି ଅଭିଳାଷକୁ ମୁଁ ଅନ୍ତରରେ ଅନିର୍ବାଣ ପ୍ରଦୀପ ପରି ଜଳାଇ ରଖିଥା'ନ୍ତି, ତା'ହେଲେ କୌଣସି ସଂଦେହ ନାହିଁ ଯେ, ମୁଁ ଜଣେ ଉତ୍ତମ ଶିକ୍ଷକ ହୋଇପାରିଥା'ନ୍ତି କେବଳ ନୁହେଁ, ହୁଏତ ଜଣେ ଉତ୍ତମ ମନୁଷ୍ୟ ଓ ଉତ୍ତମ ଦେଶସେବକ ମଧ୍ୟ ହୋଇପାରିଥାନ୍ତି ।''

କଲେଜ ଶିକ୍ଷା ପରିସମାପ୍ତି ପରେ ପ୍ରଶିକ୍ଷଣ ତାଲିମ ନେଇ ମାନସିଂହ ଶିକ୍ଷକ ଜୀବନ ଆରମ୍ଭ କରିଥିଲେ । ପରେ ବିଦ୍ୟାଳୟରୁ ମହାବିଦ୍ୟାଳୟ ତାଙ୍କର କର୍ମସ୍ଥଳୀ ହୋଇଥିଲା । କିନ୍ତୁ ଶିକ୍ଷା ସମ୍ପର୍କରେ ତାଙ୍କର ମତାମତ ନିର୍ଦ୍ଦିଷ୍ଟ ଭାବରେ ଶିଯକତା କରିବାର ବହୁକାଳ ପରେ ହିଁ ତାଙ୍କ ଲେଖନୀରୁ ପ୍ରକାଶ ପାଇଲା । 'ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ' ପୁସ୍ତକରେ ସେ ଶିକ୍ଷାର ସଂଜ୍ଞା ପ୍ରଦାନ କରି କହନ୍ତି – ''ପୂର୍ବପୁରୁଷର ସଂସ୍କୃତି ଓ ଅଭିଜ୍ଞତାକୁ ଆଗାମୀ ପୁରୁଷକୁ ଦେଇଯିବା ହିଁ ଶିକ୍ଷା । କେବଳ ବିଦ୍ୟାୟତନର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ରହି ନିର୍ଦ୍ଦିଷ୍ଟ ପାଠ୍ୟକ୍ରମକୁ ଆୟତ୍ତକରି ତାହାକୁ ଦୀକ୍ଷାନ୍ତ କାଳରେ ଉଦ୍‌ଗାରିବା କେବଳ ଶିକ୍ଷା ନୁହେଁ । ମାନସିଂହ ସେ ପ୍ରକାର ଶିକ୍ଷାକୁ ଶିକ୍ଷା ଭାବରେ ଗ୍ରହଣ ନ କରି ପ୍ରକୃତ ଶିକ୍ଷା ସମ୍ପର୍କରେ କହନ୍ତି, ''ଶିକ୍ଷାର ଏକ ସଂଜ୍ଞା ହେଉଛି ଜୀବିକା ପାଇଁ ପ୍ରସ୍ତୁତ ହେବା ।'' ଶିକ୍ଷାର ଦୁଇଟି ଧାରା – ଗତାନୁଗତିକ ଓ ବିବର୍ତ୍ତନାତ୍ମକ । ବୁଦ୍ଧି, ଅଭ୍ୟାସ, କୌଶଳ ପ୍ରୟୋଗରେ ସର୍ବୋତ୍କୃଷ୍ଟ ସମ୍ଭାବନାର ବିକାଶ କରାଇବା ହେଉଛି ବିବର୍ତ୍ତନାତ୍ମକ ଶିକ୍ଷା ।

ମାନସିଂହଙ୍କ ଶିକ୍ଷାଦର୍ଶନର କେତେକ ଅସୁବିଧା ବି ରହିଛି । ସେ କବି ଓ ଶିକ୍ଷାବିତ୍ । ଶିକ୍ଷାବିତ୍ ଭାବରେ ଯେତେବେଳେ ତାଙ୍କ ଦୃଷ୍ଟିକୋଣ ଉପସ୍ଥାପନ କରିଛନ୍ତି, ତାହା ଯଥେଷ୍ଟ ଯୁକ୍ତିଯୁକ୍ତ ହୋଇଛି, ମାତ୍ର କବିଭାବରେ ଅନେକ ସମୟରେ ଭାବଜଗତରେ ବୁଡ଼ିଯାଇ ସାମୟିକ ମନ୍ତବ୍ୟ ବି ଉପସ୍ଥାପନ କରିଛନ୍ତି । କେତେବେଳେ ପାରମ୍ପରିକ ଶିକ୍ଷାକୁ ନାପସନ୍ଦ କଲାବେଳେ, ଅନ୍ୟତ୍ର ନିଜର ସଂସ୍କୃତିକୁ ବଞ୍ଚାଇବା ପାଇଁ ସ୍ୱର ଉତ୍ତୋଳନ କରିଛନ୍ତି ।

ଶିକ୍ଷାର ଦୁଇ ରୂପ ମଧ୍ୟରୁ ତା'ର ପ୍ରାଥମିକ ରୂପଟି ଆଜିର ଜଟିଳତମ ସଭ୍ୟତାର ଆବଶ୍ୟକତା ପୂରଣ କରିବା ପାଇଁ ଅକ୍ଷମ । ପରମ୍ପରାର ନିର୍ଦ୍ଦିଷ୍ଟତା ଭିତରେ ଭବିଷ୍ୟତକୁ ବାନ୍ଧିଦେବା ଏକ ପ୍ରକାର ନିର୍ବୋଧତା । ବିବର୍ତ୍ତନାତ୍ମକ ଶିକ୍ଷା ଆଜିର ଜୀବନ ପାଇଁ ଏକାନ୍ତ ପ୍ରୟୋଜନ । କିନ୍ତୁ ଜୀବନର ବିକାଶ ପାଇଁ ଗୃହୀତ ହେଉଥିବା ଶିକ୍ଷା ଯଦି ପାରମ୍ପରିକ ମୂଲ୍ୟବୋଧଠାରୁ ଦୂରେଇଯାଏ, କିମ୍ବା ତା'ର ବିରୋଧୀ ହୋଇଉଠେ ତେବେ ତା'ର ସୁଫଳ ପାଇବା ଅସମ୍ଭବ । ଆଜିର ଶିକ୍ଷା, ପରମ୍ପରାର ଉତ୍ତରାଧିକାର ଓ ଭବିଷ୍ୟତପାଇଁ ପଥ ନିର୍ମାଣ, ଉଭୟ ଏକ ସଙ୍ଗରେ କରିବା ପାଇଁ ବାଧ୍ୟ । ଶିକ୍ଷା ମଣିଷ ଭିତରେ ଥିବା ଅସ୍ତିସୂଚକ ଗୁଣଗୁଡ଼ିକର ବିକାଶ କରେ, ଜୀବନର ଉଜ୍ଜ୍ୱଳତର ଦିଗପ୍ରତି ତାକୁ ଆକୃଷ୍ଟ କରେ ।

ଶିକ୍ଷା କୌଣସି ଦେଶରେ ନିରୋଳା ପୁସ୍ତକ ଚର୍ଚ୍ଚା ମଧ୍ୟରେ ସୀମିତ ନୁହେଁ । ପ୍ରାଚୀନ ଭାରତରେ ବ୍ୟବହାରିକ ଜ୍ଞାନଠାରୁ ଜଟିଳ ଦାର୍ଶନିକ ତତ୍ତ୍ୱ ପର୍ଯ୍ୟନ୍ତ ସବୁ ବିଷୟ ଶିକ୍ଷାର ଅନ୍ତର୍ଗତ ଥିଲା । ଇଉରୋପରେ ଶିକ୍ଷା ଚର୍ଚ୍ଚର କବଳରୁ ମୁକ୍ତି ପାଇଲା ପରେ ଉଦାରତାନ୍ତ୍ରିକ ପ୍ରଶାନ୍ତି ନେଇ ଆବିର୍ଭୂତ ହୋଇଥିଲା । ମାନସିଂହଙ୍କ ସମୟକୁ ଭାରତରେ ପକ୍ଷାଘାତ ରୋଗୀ ଭଳି ଶିକ୍ଷା ପୁସ୍ତକ ଚର୍ଚ୍ଚାରେ ସୀମିତ ରହିଥିଲା । ତାଙ୍କର କିଞ୍ଚିତ୍ ପୂର୍ବବର୍ତ୍ତୀ ଓ ସମକାଳୀନ ଭାରତୀୟ ମନୀଷୀମାନେ ଶିକ୍ଷାର ସଂଜ୍ଞା ପ୍ରଦାନ କଲାବେଳେ ସମକାଳୀନ ଶିକ୍ଷା ପଦ୍ଧତି ବିରୋଧରେ ବିକ୍ଷୋଦ୍‌ଗାର କରି ସାମଗ୍ରିକ ଦିଗଟି ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ, ମାନସିଂହ ତାହାହିଁ କରିଛନ୍ତି ।

**ଶିକ୍ଷାର ଉଦ୍ଦେଶ୍ୟ –**

ଶିକ୍ଷାର ଉଦ୍ଦେଶ୍ୟ କ'ଣ ? – ଯଦି ଏପରି ପ୍ରଶ୍ନ କରାଯାଏ, ମାନସିଂହ ତାଙ୍କର ବିଭିନ୍ନ ଲେଖାରେ, 'ଆଦର୍ଶ ଶିକ୍ଷା କ'ଣ ?' – ତା'ର ସ୍ୱରୂପ ବ୍ୟାଖ୍ୟା କରିବାକୁ ଚେଷ୍ଟା କରିଛନ୍ତି । ଜୀବନର କେଉଁ ଉଦ୍ଦେଶ୍ୟର ପରିପୂରଣ ପାଇଁ ଶିକ୍ଷା ଅଭିପ୍ରେତ ହେବା ଉଚିତ ସେ ସମ୍ପର୍କରେ ନିଜର ମନ୍ତବ୍ୟ ପ୍ରଦାନ କରିଛନ୍ତି । ମାନସିଂହଙ୍କ ମତରେ – 'ଆଦର୍ଶ ଶିକ୍ଷା ସେହି, ଯାହାର ଉଦ୍ଦେଶ୍ୟ ଓ ଆଦର୍ଶ ସ୍ୱଷ୍ଟ ଭାବରେ ବର୍ଣ୍ଣିତ । ଆଦର୍ଶ ଶିକ୍ଷା ବ୍ୟବସ୍ଥା ସେହି ଯାହା ଶିକ୍ଷାକୁ କେବଳ ଲେବୁଲ୍ ସଂଗ୍ରହ ବୋଲି ମନେକରେନା ବା ଗୁଡ଼ାଏ ଖବର ସଂଗ୍ରହକୁ ଜ୍ଞାନ ବୋଲି ଗ୍ରହଣ କରେନା, ବରଂ ଅସଂଲଗ୍ନ ଗୁଡ଼ାଏ ଇନ୍‌ଫର୍ମେଶନ୍ (ଖବର ଯୋଗାଣ) ଅପେକ୍ଷା ବୁଦ୍ଧି, ବ୍ୟକ୍ତିତ୍ୱ ଓ ବିଚାରର ଫର୍‌ମେଶନ୍ (ଗଠନ)କୁ ହିଁ ପ୍ରକୃତ ଶିକ୍ଷାବୋଲି ମନେକରେ ଏବଂ ଆଦର୍ଶ ଶିକ୍ଷା ସେହି ଯାହା ମନୁଷ୍ୟ ଜୀବନରେ ପ୍ରକୃତିର ଭିନ୍ନ ଭିନ୍ନ ପରିବର୍ତ୍ତନ ସହିତ ନିଜକୁ ଖାପଖୁଆଇ ଆପଣାକୁ ବ୍ୟବସ୍ଥିତ କରେ ।''

ଦେଶର ଶିକ୍ଷାର ଆଦର୍ଶ ଏପରି ହେବା ଉଚିତ ଯେ ଯେପରି ଦେଶର ବହୁଳ ଲୋକ ଶିକ୍ଷା ଗ୍ରହଣ ନିମନ୍ତେ ଆଗ୍ରହ ପ୍ରକାଶ କରିବେ । ସେ ଶିକ୍ଷା ସେମାନଙ୍କର ଦୈନନ୍ଦିନ ଜୀବନ ଓ ଜୀବିକା ପ୍ରତି ଯେପରି ପ୍ରତିକୂଳ ନ ହୁଏ । ଭାରତବର୍ଷରେ ସଂପ୍ରତି ଶିକ୍ଷାର ଉଦ୍ଦେଶ୍ୟ ପ୍ରତିହତ ହୋଇଥିବାର ଅନୁଭବ କରାଯାଉଛି । ଶିକ୍ଷାଧାରାର ଦୋଷ ତ୍ରୁଟି, ଶିକ୍ଷାର ଉଦ୍ଦେଶ୍ୟ ଓ ଆବଶ୍ୟକତା ସମ୍ପର୍କରେ ମାନସିଂହ ଲେଖିଛନ୍ତି – ''କେବଳ ଏହି ହତଭାଗ୍ୟ ଦେଶରେ ସରସ୍ୱତୀର ଅପମାନ, କାରଣ ଏହି ସ୍କୁଲ କଲେଜରେ ତଥାକଥିତ ପାଠ ପଢ଼ି ବାହାରିଲେ ଲୋକେ କର୍ମଠ ହେବା ପରିବର୍ତ୍ତେ, ହୁଅନ୍ତି ଆଳସ୍ୟପରାୟଣ, ସାଧୁ ନ ହୋଇ ହୁଅନ୍ତି ପାଜି, ନାହିଁ ଜ୍ଞାନ, ନାହିଁ ବିବେକ, ନାହିଁ ମଧ ଅପରିହାର୍ଯ୍ୟ ଭଦ୍ରବ୍ୟବହାର ।

ଏହି ଦୁର୍ବିପାକର କାରଣ ଏହି ଯେ, ଆମର ସ୍କୁଲ କଲେଜ କୌଣସି ଉନ୍ନତ ଆଦର୍ଶରେ ଅନୁପ୍ରାଣିତ ନୁହେଁ, କୌଣସି ସ୍ଥିର ଲକ୍ଷ୍ୟ ଆମର ନାହିଁ । ଇଣ୍ଡିଆ ହେଉଛି ଏକମାତ୍ର ଦେଶ ଯେଉଁଠି ଶିକ୍ଷାର କୌଣସି ଦର୍ଶନ ନାହିଁ ।''

ମାନସିଂହଙ୍କ ମତରେ ପରିବର୍ତ୍ତିତ ପରିସ୍ଥିତିରେ ଆମ ଦେଶର ପ୍ରାଚୀନ ପରମ୍ପରାର କେତେକ ଧାରା ପ୍ରଚଳିତ ହେବା ଆବଶ୍ୟକ । ପ୍ରଚଳିତ ଶିକ୍ଷାଧାରା ଆମକୁ କ୍ରମଶଃ ଶାରୀରିକ କର୍ମବିମୁଖ କରାଇ ଆସୁଛି । ଇଂରେଜ ଶାସନ କାଳରେ ପ୍ରବର୍ତ୍ତିତ ଆମର ଶିକ୍ଷା ବ୍ୟବସ୍ଥାକୁ ଆମେମାନେ ଠିକ୍ ଭାବରେ ଉପଯୋଗ କରି ନପାରି ଏହି ବ୍ୟବସ୍ଥାକୁ କେବଳ ତ୍ରୁଟିପୂର୍ଣ୍ଣ ବୋଲି କହିବାକୁ ଲାଗିଲୁ । ଏହି ଶିକ୍ଷା ବ୍ୟବସ୍ଥା ଆମ ସମାଜ ପାଇଁ ଉପଯୋଗୀ ନୁହଁ ବୋଲି ବାରମ୍ବାର କହିବୁଲିଲୁ । ଜୀବନର ସଂଧ୍ୟାରେ ପ୍ରଚଳିତ ଶିକ୍ଷାଧାରାରେ ସେ ମତ ପ୍ରଦାନ କରିଛନ୍ତି ଓ ପଲ୍ଲୀବହୁଳ ଭାରତବର୍ଷରେ ଜନଜୀବନ ପାଇଁ ଏହି ଶିକ୍ଷାଧାରା ଉପଯୋଗୀ ନୁହେଁ ବୋଲି ମତ ବ୍ୟକ୍ତ କରିଛନ୍ତି । ''ଜାତି କେବଳ ଅଫିସବାଳଙ୍କ **ବାବୁ** ଦରକାର କରେ ନାହିଁ, କରେ ନିପୁଣ ଚାଷୀ, ବଢ଼େଇ, ପଥୁରିଆ, କୁମ୍ଭାର, **ତନ୍ତୀ, ଭଣ୍ଡାରୀ**

ଓ ବ୍ୟବସାୟୀ ମଧ୍ୟ । କିନ୍ତୁ ଆମେ କୋଟି କୋଟି ଟଙ୍କା ଶେଷରେ କେତୋଟି ଅଫିସଚାଳକ 'ବାବୁ'ଙ୍କୁ ମାତ୍ର ସୃଷ୍ଟି କରିବା ପାଇଁ ଖର୍ଚ୍ଚ କଲାବେଳେ, ଦେଶର ଉତ୍ତମ ଚାଷୀ, ତନ୍ତୀ, ସୃଷ୍ଟି କରିବାପାଇଁ ତ କିଛି ହେଲେ କରୁନେ ।''

ଜନସାଧାରଣଙ୍କର ନିଜସ୍ୱ ସଂସ୍କୃତି ଓ ପ୍ରାକୃତିକ ସଂପଦର ଉପଯୋଗିତାରେ ଦେଶର ଉନ୍ନତି ସମ୍ଭବ ହୋଇଥାଏ । ନିଜସ୍ୱ ଚଳଣିକୁ ଉପେକ୍ଷା କରି କୌଣସି ରାଷ୍ଟ୍ର କେବେହେଲେ ଉନ୍ନତି କରିପାରେ ନାହିଁ । ମାନସିଂହ ଅନୁଭବ କରୁଥିଲେ ଯେ, ଭାରତବର୍ଷ ବିଜ୍ଞାନର ଅଗ୍ରଗତି ସହିତ ତାଳ ଦେବା ସଂଗେ ସଂଗେ ନିଜ ସଂସ୍କୃତି ପ୍ରତି ଧ୍ୟାନ ଦେଲେ ଭାରତର ଉନ୍ନତି ସମ୍ଭବ ହୋଇପାରିବ । ଭାରତବର୍ଷ ଯଦି ଧରଣୀର ପୁନର୍ବାର ନେତୃତ୍ୱ ନେବାକୁ ଚାହେଁ, ଅନ୍ତତଃ ସେ ସୁଖଶାନ୍ତିରେ ବଂଚି ରହିବାକୁ ଚାହେଁ, ତେବେ ତାକୁ ପଶ୍ଚିମ ଆଡୁ ଆଖି ଫେରାଇବାକୁ ହେବ । ଆମକୁ ଧରିନେବାକୁ ହେବ ଯେ ମୋଟର କାର୍, ଏରୋପ୍ଲେନ୍‌ର ମାସ୍ ପ୍ରଡକ୍ସନ୍ ବା ଗଣ-ପ୍ରସବ ହୋଇପାରେ, କିନ୍ତୁ ଯଥାର୍ଥ ଶିକ୍ଷିତର ନୁହେଁ । ଶିକ୍ଷିତ କହିଲେ ବୁଝିବାକୁ ହେବ, ଉତ୍ତମ ମନୁଷ୍ୟ ।

**ଶିକ୍ଷକ –**

ଆମ ଦେଶରେ କଥା ଅଛି ଯେ, ''ବିଦ୍ୟାରମ୍ଭ ଗୁରୁଶ୍ରେଷ୍ଠ'', ଅର୍ଥାତ୍ ଶ୍ରେଷ୍ଠ ଗୁରୁଙ୍କଠାରୁ ଶିକ୍ଷା ଆରମ୍ଭ କରିବା ଉଚିତ । ଯେପରି ମୂଳଦୁଆ ଠିକ୍ ନରହିଲେ ଘର ଭୁଶୁଡ଼ିପଡ଼ିବାର ସମ୍ଭାବନା ଥାଏ । ଭାରତବର୍ଷରେ ଗୁରୁପରମ୍ପରା ଅନେକ ଦିନ ଧରି ଚଳି ଆସିଛି । ଛାତ୍ର ବା ଶିଷ୍ୟମାନେ ବିଭିନ୍ନ ଅନୁସଂଧାନ ପରେ ହିଁ ଅଭୀଷ୍ଟ ଗୁରୁଙ୍କୁ ଲାଭ କରୁଥିଲେ । ଛାତ୍ରଙ୍କ ଦୃଷ୍ଟିରେ ଗୁରୁ ସ୍ରଷ୍ଟା, ଦ୍ରଷ୍ଟା, ଶାସନକର୍ତ୍ତା ବି ହୋଇପାରନ୍ତି । ଆଧୁନିକ ଶିକ୍ଷା ବ୍ୟବସ୍ଥାରେ ଶିକ୍ଷକଙ୍କ ପ୍ରତି ସେ ଆନୁଗତ୍ୟ ନାହିଁ ବା କର୍ମକର୍ତ୍ତାମାନେ ଗୁରୁଙ୍କ ନିର୍ବାଚନରେ ସେ ପୂର୍ବ ପଦ୍ଧତି ଅନୁସରଣ କରୁନାହାନ୍ତି । ଆଧୁନିକ ଶିକ୍ଷା ବ୍ୟବସ୍ଥାରେ ଶିକ୍ଷକ ପ୍ରାଧାନ୍ୟ ଲୋପପାଇଥିବାରୁ ଶିକ୍ଷାର ମାନ କ୍ରମଶଃ ହ୍ରାସ ହେଉଥିବାର ଲକ୍ଷ୍ୟ କରାଯାଏ । ଶିକ୍ଷା ବ୍ୟବସ୍ଥାରେ ଶିକ୍ଷକ ଓ ଛାତ୍ରଙ୍କର ଭୂମିକା ମୁଖ୍ୟ ହୋଇଥିବା ସ୍ଥଳେ, ଭାରତର ଆଧୁନିକ ଶିକ୍ଷା ବ୍ୟବସ୍ଥାରେ, ଶିକ୍ଷକ ତଥା ଛାତ୍ରଙ୍କୁ ଗୌଣ ସ୍ଥାନ ଦିଆଯାଇ, ଶିକ୍ଷାୟତନ ଗଠନ ଓ ଶିକ୍ଷା ପଦ୍ଧତି ନିର୍ଣ୍ଣୟକୁ ଅଗ୍ରାଧିକାର ଦିଆଯାଉଅଛି । ଶିକ୍ଷାବିତ୍ ମାନସିଂହ ସେ ବ୍ୟବସ୍ଥାର କଠୋର ସମାଲୋଚନା କରି ଲେଖିଥିଲେ– ''ଏ ଦେଶରେ(ଭାରତରେ) ସ୍କୁଲ କଲେଜ କଥା ପଡ଼ିଲେ ପ୍ରଥମେ ହିସାବ ହେବ କୋଠା ବାଡ଼ିର ଖର୍ଚ୍ଚ, କିନ୍ତୁ ଇଂଲଣ୍ଡରେ ପ୍ରଥମେ ପ୍ରଧାନ ପ୍ରସ୍ତାବ ହେଉଛି ଅଧ୍ୟାପକ ଓ ତା'ର ଯୋଗ୍ୟତା– ଆଉ ସବୁ ପଛ ।''

ଶିକ୍ଷା ଧାରାରେ ଶିକ୍ଷକର ପ୍ରାଧାନ୍ୟ ନ ରହିଲେ ଶିକ୍ଷାର ଉନ୍ନତି ସମ୍ଭବ ନୁହେଁ । ଜାତି ତା'ର ଶିକ୍ଷକମାନଙ୍କୁ ନେଇ ବଡ଼ ହୁଏ । ଶିକ୍ଷକ ଜାତିକୁ ଗଢ଼ିଚାଲେ । ଯେଉଁ ଜାତିର ଶିକ୍ଷକ ଯେପରି ସେ ଜାତି ସେପରି । ମାତ୍ର ଏ କଥା ପୁଣି ବିଚାର କରିବାକୁ ହେବ ଯେ 'ଶିକ୍ଷକ' ପଦବୀରେ ଯେଉଁମାନେ ଅଧିଷ୍ଠିତ ହୁଅନ୍ତି, ସେମାନଙ୍କ ମଧ୍ୟରେ ସମସ୍ତେ ଶିକ୍ଷକ ହେବା

ପାଇଁ ଯୋଗ୍ୟ ନୁହନ୍ତି । ଶିକ୍ଷକ ହେବାର ପ୍ରାଥମିକ ଯୋଗ୍ୟତା ନ ଥିବା ବହୁ ଲୋକ ଶିକ୍ଷକ ଭାବରେ ନିଯୁକ୍ତି ପାଇବାରୁ ଶିକ୍ଷା କ୍ଷେତ୍ରରେ ନାନା ଅଧୋଗତି ଦେଖାଦେଇଛି । 'ବିଦ୍ୟାଧର ହେବା ଯେତେ ସହଜ, ବିଦ୍ୟାନୁରକ୍ତ ହେବା ସେତେ ସହଜନୁହେଁ । ତଥାକଥିତ ଭାବରେ ମାର୍କାଧାରୀ 'ମାଷ୍ଟର' ବୋଲାଇବା ଯେତେ ସହଜ, ଜଣେ ପ୍ରକୃତ ଶିକ୍ଷକ ହେବା କୌଣସି ମତେ ସେତେ ସହଜ ନୁହେଁ । ପ୍ରକୃତ ଶିକ୍ଷକ ଏ ସମସ୍ତର ଉର୍ଦ୍ଧ୍ୱକୁ ଉଠି, ନରୋତ୍ତମ ନ ହେଲେ ହେଁ ଉତ୍ତମ ନର ହେବାକୁ ଚେଷ୍ଟିତ ହେବା ଉଚିତ । ଜାତିର ନୂତନ ବଂଶଧରଙ୍କ ଆଗରେ ଶିକ୍ଷକମାନେ ହିଁ ପ୍ରଥମ ଆଦର୍ଶ ରୂପେ ବିରାଜିତ ନ ରହିଲେ କୋଟି କୋଟି ମୁଦ୍ରା ବ୍ୟୟରେ ନିର୍ମିତ ସ୍କୁଲ, କଲେଜ ବ୍ୟର୍ଥ ଲକ୍ଷ୍ୟ ହେବା ଧରିନେବାକୁ ହେବ ।'' ଶିକ୍ଷକ ହେବା ନିମନ୍ତେ ଯଥେଷ୍ଟ ନିଷ୍ଠା ଓ ମିଶନାରୀ ଭାବ ରହିବା ଆବଶ୍ୟକ । ପ୍ରାଚୀନ ଭାରତରେ ଗୁରୁ ସ୍ଥାନୀୟ ବ୍ରାହ୍ମଣମାନଙ୍କର ଯଥେଷ୍ଟ ସମ୍ମାନ ଥିଲା ଓ ସେମାନେ କୌଣସି ଅର୍ଥକରୀ ବ୍ୟବସାୟ ସହିତ ସଂପୃକ୍ତ ନଥିଲେ । ଏହି ପ୍ରଥାକୁ ମାନସିଂହ ଏକ ପ୍ରାଚୀନ ସଭ୍ୟ ଜାତିର ଗଭୀର ସାମାଜିକ ମନନର ଅତି ଉତ୍ତମ ସିଦ୍ଧାନ୍ତ ବୋଲି ମନେକରିଛନ୍ତି । ଅନ୍ୟ ଅର୍ଥରେ ବିଚାରକଲେ ଶିକ୍ଷକଙ୍କୁ ଅର୍ଥଚିନ୍ତା ନକରିବା ପାଇଁ ସମାଜ ବା ରାଷ୍ଟ୍ର ସେହିପରି ବ୍ୟବସ୍ଥା କରିବା ମଧ୍ୟ ଆବଶ୍ୟକ । ଶିକ୍ଷକଙ୍କର ଉଚ୍ଚ ସାମାଜିକ ସମ୍ମାନ ତାହାଙ୍କୁ ସମଗ୍ର ଛାତ୍ରସମାଜ ଦୃଷ୍ଟିରେ ଆଦର୍ଶସ୍ଥାନୀୟ କରି ଛିଡ଼ାକରାଇଥାଏ । ''ସମଗ୍ର ଜାତି ଆଗରେ ଶିକ୍ଷକର ଏକ ମହାନ୍ ଆଦର୍ଶ ବଞ୍ଚାଇ ନପାରିଲେ, କୌଣସି ଜାତି ଉଚ୍ଚସ୍ତରକୁ ଉଠିପାରିବନି । ଜର୍ମାନ ଇଂଲଣ୍ଡ ପରି ଜ୍ଞାନଦୀପ୍ତ ଦେଶକଥା ଛାଡ଼ିଦିଅ– କେହି ଓଡ଼ିଆ ତା'ର ପ୍ରତିବେଶୀ ଏବର ବଙ୍ଗାଳୀ ଜାତିର ଅଭ୍ୟୁତ୍ଥାନର ଇତିହାସ ଅନୁଶୀଳନ କଲେ ଅଚିରେ ଜାଣିବେ ଯେ, ସେ ଜାତି ହେଉଛି ଗତ ଶତାବ୍ଦୀରେ କେତୋଟି ସୁଦକ୍ଷ, ଜାତିଗତପ୍ରାଣ ଶିକ୍ଷକ, ପ୍ରଧାନ ଶିକ୍ଷକ ଓ ଅଧ୍ୟାପକଙ୍କର ହାତଗଢ଼ା ଶିଳ୍ପ ମାତ୍ର । ଓଡ଼ିଶାରେ ସେପରି ଶ୍ରେଣୀର ଶିକ୍ଷକ ବେଶି ଦେଖାଦେଇନାହାନ୍ତି ଏବଂ ସେହି କାରଣରୁ ହିଁ ଓଡ଼ିଆ ଜାତି ଏବେ ବି ଅଧଃପତିତ ।'' ଏହା କେବଳ ଇତିହାସର କଥା ନୁହେଁ, ବର୍ତ୍ତମାନ କାଳରେ ମଧ୍ୟ କେତେକ ଉତ୍ସର୍ଗୀତ ପ୍ରାଣ ଶିକ୍ଷକଙ୍କର ଉଦ୍ୟମରେ ସାମାଜିକ ବିକାଶ ସଂଗଠିତ ହେବାରେ ଲାଗିଛି ।

ଶିକ୍ଷାବିତ୍ ମାନସିଂହ ଶିକ୍ଷାର ଉନ୍ନତି ନିମନ୍ତେ ଏକ ପ୍ରସ୍ତାବ ଦେଇ ଆଶା କରିଥିଲେ ଯେ, ଆମର ଶିକ୍ଷା ସମସ୍ୟା ସମାଧାନର ଅନେକ ବାଟ ମଧ୍ୟରୁ ଗୋଟିଏ ହେଲା : ଶିକ୍ଷକଙ୍କୁ ସ୍ୱାତନ୍ତ୍ର୍ୟ ପ୍ରଦାନ କରାଗଲେ ଶିକ୍ଷାର ଉନ୍ନତି ସମ୍ଭବ ହେବ । ମାନସିଂହଙ୍କ ଭାଷାରେ – ''ସରସ୍ୱତୀ ଯଦି ଶାସକର ଆଜ୍ଞାବହ ହୁଅନ୍ତି ଓ ଶିକ୍ଷକ ସାମାନ୍ୟ ନୌକର ମାତ୍ର ରହନ୍ତି, ତେବେ ଦେଶରେ – 'ଶିକ୍ଷା ପ୍ରସାର, ବିଦ୍ୟା ପ୍ରସାର' ପ୍ରଭୃତି କପଟ ଚିତ୍କାର ଛଡ଼ା ଆଉ କିଛି ନୁହେଁ । ସରସ୍ୱତୀଙ୍କି ସ୍ୱାଧୀନତା ଦିଅ ଏବଂ ଶିକ୍ଷକଙ୍କୁ ପୁଣି ସେହି ବ୍ରାହ୍ମଣ ରୂପେ, ମିଶନାରୀ ରୂପେ, ତ୍ୟାଗୀ ସନ୍ନ୍ୟାସୀ ରୂପେ ଦେଖ ଓ ସମ୍ମାନ ଦିଅ, ତେବେ ହିଁ ପ୍ରକୃତ ମନୁଷ୍ୟ ଦେଶରେ ଗଢ଼ା ହେବେ ।''

ଶିକ୍ଷାବିତ୍ ମାନସିଂହ ଶିକ୍ଷାୟତନରେ ଶିକ୍ଷକ ପ୍ରାଧାନ୍ୟ ସମ୍ପର୍କରେ ସୂଚନା ପ୍ରଦାନ କରିବା ସଙ୍ଗେ ସଙ୍ଗେ ଆଦର୍ଶ ଶିକ୍ଷକଙ୍କର ଆବଶ୍ୟକତା ଅନୁଭବ କରିଛନ୍ତି । ଉତ୍ସର୍ଗୀକୃତ, ସତ୍ୟନିଷ୍ଠ, ଆଦର୍ଶ ଶିକ୍ଷକଙ୍କୁ ସସମ୍ମାନ ଅଗ୍ରାଧିକାର ଦେଇଛନ୍ତି, ଲକ୍ଷଣ ନିର୍ଦ୍ଦେଶ କରିଛନ୍ତି । କମଳାୟନ କାବ୍ୟରେ ଉତ୍କଳମଣି ଗୋପବନ୍ଧୁ କମଳର ପିତାଙ୍କ ସମ୍ପର୍କରେ ଯାହା କହିଛନ୍ତି, ତାହା ଗୋପବନ୍ଧୁଙ୍କର ନୁହେଁ ବରଂ ମାନସିଂହଙ୍କର ମନର କଥା । ଜଣେ ସାଧାରଣ ଶିକ୍ଷକ ସାମାନ୍ୟ ଅବସ୍ଥାରେ ରହିପାରେ, ମାତ୍ର ଜଣେ ଆଦର୍ଶ ଶିକ୍ଷକ ମନୁଷ୍ୟ-ଗଠନକାରୀ ସାଧୁ, ଦକ୍ଷ, ଧର୍ମଭୀରୁ, କର୍ତ୍ତବ୍ୟପରାୟଣ, ଉଦାରମନା ତଥା ଛାତ୍ରଙ୍କ ମଙ୍ଗଳାକାଙ୍କ୍ଷୀ ହେବା ଆବଶ୍ୟକ । ଏହି ଆଦର୍ଶ ଶିକ୍ଷକର ସଫଳ ରୂପାୟନ ପାଇଁ ମାନସିଂହ କମଳାୟନ କାବ୍ୟରେ କମଳଲୋଚନଙ୍କୁ ଜଣେ ଶିକ୍ଷକ ରୂପେ ଅଧିଷ୍ଠିତ କରାଇଛନ୍ତି । କମଳ ଅଧ୍ୟାପନାର ବ୍ରତ ଗ୍ରହଣ କରି, ସ୍କୁଲ ଓ ଘରେ ଅକାତରେ ବିଦ୍ୟାଦାନ କରିଚାଲିଛି । ଛାତ୍ରମାନଙ୍କୁ ବୋଧଗମ୍ୟକରାଇବା ଉଦ୍ଦେଶ୍ୟରେ ସେ ନିଜେ ଘରେ ଅଧ୍ୟୟନ କରିଥାଏ । ଛାତ୍ରମାନଙ୍କର ପ୍ରମାଦ ନିମନ୍ତେ ସେ ମୃଦୁ ତିରସ୍କାର କରେ । ପିଲାମାନଙ୍କ ସହିତ ଉତ୍ତମ ଭାବରେ ମିଶିଥିଲେ ମଧ୍ୟ ନିଜକୁ ସର୍ବଦା ଏକ ସ୍ୱତନ୍ତ୍ର ସ୍ତରରେ ରଖିଥାଏ । ମାନସିଂହଙ୍କର ନିଜର ଏହି ଆଦର୍ଶ ବ୍ୟକ୍ତିତ୍ୱ ଥିବାରୁ ସେ ଦୃଢ଼ ଭାବରେ ଏହି ମତକୁ ପ୍ରକାଶ କରିଛନ୍ତି । ସେ କେବଳ ଶିକ୍ଷକଭାବରେ ନୁହେଁ, ଅନ୍ୟତ୍ର ମଧ୍ୟ ନିଜକୁ ଏକ ସ୍ୱତନ୍ତ୍ର ଦୂରତାରେ ରଖିବାକୁ ଚାହୁଁଥିଲେ, ତେଣୁ ସେ ଭାବୁଥିଲେ ଏହି ଗୁଣ ପ୍ରତ୍ୟେକ ଶିକ୍ଷକର ରହିବା ଉଚିତ ।

ମାନସିଂହ ଲକ୍ଷ୍ୟ କରିଛନ୍ତି ଯେ, ସ୍ୱାଧୀନତା ପରେ ପରେ ଭାରତବର୍ଷରେ ଶିକ୍ଷକମାନଙ୍କର ନୈତିକ ମାନ କ୍ରମଶଃ ହ୍ରାସ ହେବା ପରି ମନେହେଉଛି । କେବଳ ସ୍କୁଲ ଶିକ୍ଷକ ନୁହନ୍ତି "ସ୍ୱାଧୀନତା ପରେ ଭାରତବର୍ଷରେ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ସର୍ବତ୍ର ଯେ ଅଧୋଗାମୀ ହୋଇଛି, ଏହା ବର୍ତ୍ତମାନ ପ୍ରକାଶ୍ୟ ଆଲୋଚନା ଓ ଉଚ୍ଚତମ କର୍ତ୍ତୃପକ୍ଷଙ୍କର ମସ୍ତକ-ବ୍ୟଥାର କାରଣ ହୋଇଛି । ଏହି ଅଧୋଗତିର ମୁଖ୍ୟ କାରଣ ଏହି ଯେ, ଏ ଦେଶରେ ସାଧାରଣ ଲୋକଙ୍କ କଥା ଛାଡ଼, ବିଶ୍ୱବିଦ୍ୟାଳୟର ତଥାକଥିତ ପ୍ରଫେସରମାନେ ମଧ୍ୟ ବିଶ୍ୱବିଦ୍ୟାଳୟକୁ ଏକାନ୍ତଭାବରେ ଏକ ସ୍ୱୟଂସଂପୂର୍ଣ୍ଣ ଜ୍ଞାନ-ତପସ୍ୟାର ଓ ଜାତିର-ତରୁଣ-ସମାଜର-ଗଠନ-ପୀଠ ବୋଲି ମନେ ନ କରି ତାକୁ ନିଜର ପ୍ରତିଷ୍ଠା ଓ ସେହି ଲକ୍ଷ୍ୟରେ ସହଜଲଭ୍ୟ ଅନୁଗ୍ରହ ବଣ୍ଟନର କ୍ଷେତ୍ର ବୋଲି ମନେକରୁଛନ୍ତି । ଚାରିଆଡ଼େ ତେଣୁ ବିଶୃଙ୍ଖଳା ।"

ଜଣେ ଶିକ୍ଷକଙ୍କର ତିନୋଟି ପ୍ରମୁଖ ଗୁଣ ସମ୍ପର୍କରେ ମାନସିଂହ ଉଲ୍ଲେଖ କରିଛନ୍ତି । ସେ ଆଶା କରିଥିଲେ ଏହି ତିନିଗୋଟି ଗୁଣଯୁକ୍ତ ବ୍ୟକ୍ତି ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନରେ ମୁଖ୍ୟତଃ ସହାୟକ ହେବେ । ସେଗୁଡ଼ିକ ହେଲା –

(କ) ସେ ଯେତିକି ଜାଣିଥିବେ ତାହା ଉତ୍ତମ ରୂପେ ଅବଗତ ଥିବେ ।

(ଖ) ସେ ସଂପୂର୍ଣ୍ଣ ଭାବରେ ନୀତିବାନ୍ ଥିବେ, ଅର୍ଥାତ୍ କୌଣସି ପ୍ରକାର ଅସାଧୁ କର୍ମ କରିବା ବା ଅସତ୍ୟ କଥା କହିବା ତାଙ୍କ ପକ୍ଷରେ ସମ୍ଭବ ହେବ ନାହିଁ ।

(ଗ) ଯେକୌଣସି ଶ୍ରମକୁ ଆନନ୍ଦରେ ଶରୀର ଓ ମନ ଦେଇ ସ୍ୱୀକାର କରିବେ ।

ଶିକ୍ଷକର ସମାଜରେ ଏହିଭଳି ଗୁରୁ ଦାୟିତ୍ୱ ଥିଲେ ମଧ୍ୟ, ଦେଶର ପ୍ରଶାସନ ମୁଖ୍ୟମାନେ ଶିକ୍ଷକଙ୍କ ପ୍ରତି ଏକ ତାଚ୍ଛଲ୍ୟ ଭାବ ପ୍ରଦର୍ଶନ କରନ୍ତି । ସେମାନେ ଶିକ୍ଷକକୁ ଏକ ଆଦର୍ଶ ଶିକ୍ଷକ ହେବାକୁ ଉପଦେଶ ଦେଇ, ତା'ର ଆର୍ଥନୀତିକ ଦୁରବସ୍ଥା ପ୍ରତି କୌଣସି ଦୃଷ୍ଟିପାତ କରନ୍ତି ନାହିଁ ।

'ତଳିଆ ଜୀବର ବିଳାପ'ରେ ମାନସିଂହ ଲେଖିଛନ୍ତି –

"ବଡ଼ ସାହେବ ବୁଝିବା ଉଚିତ
ମାଷ୍ଟର ବି ପିଲା
ହୁଅନ୍ତି, ଭାତ ଖାଆନ୍ତି, ଭୋକେ
ହୁଅନ୍ତି କିଲିବିଲା ।
ମାଷ୍ଟ୍ର ଘରେ ଗହଣା ଲୋଡ଼ା,
ତା ଚୁଲି ଲୋଡ଼େ କାଠ
ଝିଅର ବର ଲୋଡ଼ା ଓ ପୁଅର
ଜୋତା, କୋଟ, ଶାଟ ।"

କ୍ଷମତାରେ ଥିବା ମନ୍ତ୍ରୀ ଓ ବଡ଼ ସାହେବମାନେ ଶିକ୍ଷକମାନଙ୍କ ପ୍ରତି କିପରି ତାଚ୍ଛଲ୍ୟ ଭାବ ପ୍ରଦର୍ଶନ କରନ୍ତି, ମାନସିଂହ ତାଙ୍କର 'ଶାସନଚକ୍ର' ଏକାଙ୍କିକାରେ ସ୍ପଷ୍ଟଭାବରେ ଉଲ୍ଲେଖ କରିଛନ୍ତି । ପୁଣି ଯେଉଁମାନେ କୌଣସି ବୃତ୍ତି ପ୍ରତି ଯୋଗ୍ୟ ବିବେଚିତ ହୁଅନ୍ତି ନାହିଁ, ସେମାନେ ଶିକ୍ଷକଭାବରେ ଯୋଗଦେଉଥିବାରୁ ଶିକ୍ଷକର ମାନ ସମାଜରେ ହ୍ରାସ ହୋଇଯାଉଛି ଓ ଲୋକମାନଙ୍କର ଶିକ୍ଷକମାନଙ୍କ ପ୍ରତି କ୍ରମଶଃ ସମ୍ମାନବୋଧ ତଥା ଆସ୍ଥା କମି କମି ଆସୁଛି । 'ସ୍ୱରାଜ୍ୟାଶ୍ରମ' କବିତା ସଙ୍କଳନରେ ମାନସିଂହ ବିଦ୍ରୂପ କରି ଲେଖିଛନ୍ତି –

"ନିତାନ୍ତ ଯଦି ଚାହଁ କରିବ କିଛି
ଇସ୍କୁଲ ମାଷ୍ଟ କାମ ପଡ଼ି ରହିଛି ।
ଗଣନ୍ତି ନାହିଁ କାର୍ଯ୍ୟ ବୋଲି ତାହାକୁ
ଆମ ଶାସନେ ସେଟା ହୁଏ ତୁଚ୍ଛାକୁ ।"

ସଂସ୍କୃତିଠାରୁ ତା'ର ଅନ୍ତର୍ଭୁକ୍ତ ସ୍ରଷ୍ଟା ଜନସାଧାରଣଙ୍କୁ, କବିତାଠାରୁ ତା'ର ସ୍ରଷ୍ଟା କବିଙ୍କୁ ବିଚ୍ଛିନ୍ନ କରିବା ଯେପରି ସମ୍ଭବ ନୁହେଁ, ଶିକ୍ଷାଠାରୁ ଶିକ୍ଷକଙ୍କୁ ସେହିଭଳି ବିଚ୍ଛିନ୍ନ କରିବା ମଧ୍ୟ ସମ୍ଭବ ନୁହେଁ । ଶିକ୍ଷକ ମାନବ ସମାଜର ଅତୀତ ପ୍ରଜ୍ଞାର ଉତ୍ତରାଧିକାରୀ ଓ ଭବିଷ୍ୟତର ପଥ ନିର୍ଦ୍ଦେଶକ । ସମାଜର ଅନ୍ୟାନ୍ୟ ଗୋଷ୍ଠୀ ଏହି କାର୍ଯ୍ୟ କରିବାକୁ ଅକ୍ଷମ, ସେଥିପାଇଁ ସମାଜର ସର୍ବୋତ୍ତମ ଜ୍ଞାନମୟ ପୁରୁଷଙ୍କୁ ଶିକ୍ଷକ ରୂପେ ନିର୍ବାଚିତ କରାଯିବା ବିଧେୟ । କିନ୍ତୁ ଏହି ତପସ୍ୟାକୁ ଜଣେ ବରଣ କରିବ କାହିଁକି– ସମାଜରେ ଯଦି ତା'ର ସ୍ଥାନ ସେହି ଅନୁପାତରେ ନିର୍ଣ୍ଣିତ ନ ହୁଏ ? ସେଇଥିପାଇଁ ଶ୍ରେଣୀ ବିଭକ୍ତ ସମାଜରେ ଶିକ୍ଷକର ସ୍ଥାନ

କେଉଁଠି, ସେଥିନେଇ ବାରମ୍ବାର ତର୍କ ଆସିଛି । ବାକ୍ୟତଃ, ଶିକ୍ଷକର ଭୂମିକାକୁ ସମସ୍ତେ ସ୍ୱୀକାର କରୁଥିଲେ ବି, କାର୍ଯ୍ୟତଃ ଶିକ୍ଷକକୁ ସେହି ସମ୍ମାନ ଦେବା ପାଇଁ ସମସ୍ତେ ସତତଃ ପରାଙ୍ମୁଖ ।

ଅତୀତ ଭାରତରେ ବା ମଧ୍ୟଯୁଗୀୟ ଇଉରୋପରେ ଶିକ୍ଷା ଏକ ନିର୍ଦ୍ଦିଷ୍ଟ ସଂକୀର୍ଣ୍ଣ ଗୋଷ୍ଠୀ ପାଇଁ ଅଭିପ୍ରେତ ଥିବାରୁ, ଶିକ୍ଷକକୁ ବ୍ରାହ୍ମଣର ତପସ୍ୟା ଭିତରେ ବା ମିଶନାରୀର ନିର୍ଲୋଭ ସାଧନା ଭିତରେ ଦେଖିବା ସମ୍ଭବ ହୋଇଥିଲା ।

ରେନେସାଁ ପରବର୍ତ୍ତୀ ଇଉରୋପ ଓ ଉନବିଂଶ ଶତାବ୍ଦୀ ପରବର୍ତ୍ତୀ ଭାରତରେ ଶିକ୍ଷକର ମର୍ଯ୍ୟାଦା ନେଇ ଓ ତା'ର ସ୍ୱାତନ୍ତ୍ର୍ୟ ନେଇ ବାରମ୍ବାର ପ୍ରଶ୍ନ ଆସିଛି । ମାନସିଂହ ସେ ସବୁ ପ୍ରଶ୍ନକୁ ମଧ୍ୟ ଏକ ଭାବମୟ ଦୃଷ୍ଟି ନେଇ ଆଲୋଚନା କରିଛନ୍ତି । ସେ ଶିକ୍ଷକକୁ ସର୍ବୋତ୍ତମ ସମ୍ମାନ ଦେବାକଥା କହିଲାବେଳେ, ଯେଉଁ ସମାଜ ଭିତରେ ଆମେ ବଞ୍ଚୁଛେ, ସେଇ ସମାଜ ଭିତରେ ଶିକ୍ଷକର ଯେ ସ୍ୱତନ୍ତ୍ର କିଛି ଭୂମିକା ନାହିଁ, ସେ ନିଯୁକ୍ତି ପ୍ରାପ୍ତ ଜଣେ ଶିକ୍ଷା-ବିକ୍ରେତା ମାତ୍ର, ସେ କଥା ସେ ବୁଝିପାରି ନାହାନ୍ତି । ଶିକ୍ଷକର ଆଦର୍ଶ ରୂପେ ସେ ଯେଉଁ ଗୁଣକୁ ଅବତାରଣା କରିଛନ୍ତି, ସେ ଗୁଣ ଜଣେ ଆଦର୍ଶବୋଧରେ ଅନୁପ୍ରାଣିତ ନ ହେଲେ ବା ନିପୀଡ଼ିତ ନ ହେଲେ ଗ୍ରହଣ କରିବ ନାହିଁ । ଜୀବନରେ ସମସ୍ତେ ସୁଖ ସମୃଦ୍ଧି ଚାହାନ୍ତି, ଭଲରେ ବଂଚିବାକୁ ଚାହାନ୍ତି, ଯନ୍ତ୍ରଣା ପାଇବା ପାଇଁ କେହି ଇଚ୍ଛା କରନ୍ତି ନାହିଁ । ଶିକ୍ଷକର ଜୀବନ ଭାରତରେ ଏକ ଯନ୍ତ୍ରଣାକ୍ଲିଷ୍ଟ ଜୀବନ, ତାକୁ ଯୋର ଜବରଦସ୍ତ ଆଦର୍ଶ ଶିଖାଯାଏ । ପୂର୍ବରୁ କ୍ଷମତା ଜଣେ ରଜା ବା ତା'ର ପରିବାର ଭିତରେ କେନ୍ଦ୍ରୀଭୂତ ଥିଲା । ବର୍ତ୍ତମାନ କାଳରେ ସେହି କ୍ଷମତା ବିଭିନ୍ନ ପ୍ରଶାସକ ଗୋଷ୍ଠୀ ହାତକୁ କ୍ରମଶଃ ଚାଲି ଆସିଛି । ସେହି ପରିବର୍ତ୍ତନ ଫଳରେ ରାଜନୀତିଜ୍ଞ ପ୍ରଶାସକମାନଙ୍କଠାରୁ ଶିକ୍ଷକର ସାମାଜିକ ମର୍ଯ୍ୟାଦା ନ୍ୟୂନ ହୋଇଛି ଓ ହେବା ସ୍ୱାଭାବିକ ମଧ୍ୟ ।

**ଶିକ୍ଷାୟତନ –**

ଶିକ୍ଷାଦାନ ନିମନ୍ତେ ପ୍ରଥମ ଆବଶ୍ୟକତା ଶିକ୍ଷକ ଓ ପରବର୍ତ୍ତୀ ଆବଶ୍ୟକତା ହେଉଛି ଶିକ୍ଷାୟତନ । ପରିବେଶ ଶିକ୍ଷାର୍ଥୀ ମନରେ ଶିକ୍ଷା ଗ୍ରହଣ ନିମନ୍ତେ ଭୂମି ପ୍ରସ୍ତୁତ କରେ । ଏହି ଭୂମିର ଅଭାବରେ ଶିକ୍ଷାଦାନ ଓ ଗ୍ରହଣ ଅସମ୍ପୂର୍ଣ୍ଣ ରହିଯାଏ । ମାନସିଂହଙ୍କ ପୂର୍ବରୁ ଏକ ରୋମାଣ୍ଟିକ୍ ଭାବ ପ୍ରବାହ ସମଗ୍ର ଇଉରୋପ ଓ ଭାରତର ଚିତ୍ତକୁ ଅଧିକାର କରିଥିଲା । ପ୍ରକୃତି ଚିତ୍ତରେ ମାନବର ମହତ୍ତର ସତ୍ତା ନିହିତ, ଏହିଭଳି ଏକ ବିଶ୍ୱାସ ରସ୍କିନଙ୍କଠାରୁ ଟଲ୍‌ଷ୍ଟୟଙ୍କ ପର୍ଯ୍ୟନ୍ତ, ଭାରତରେ ରବୀନ୍ଦ୍ରନାଥଙ୍କଠାରୁ ଗୋପବନ୍ଧୁଙ୍କ ପର୍ଯ୍ୟନ୍ତ, ବହୁ ଚିନ୍ତାନାୟକଙ୍କ ମନକୁ ଅଧିକାର କରିଥିଲା । ମାନସିଂହ ତାଙ୍କର ବିଭିନ୍ନ ପୁସ୍ତକ ଓ ପ୍ରବନ୍ଧରେ ଶିକ୍ଷାୟତନର ସ୍ୱରୂପ, ବୈଶିଷ୍ଟ୍ୟ ଓ ତା'ର ଆଦର୍ଶ ସମ୍ପର୍କରେ ନିଜର ମନ୍ତବ୍ୟ ପ୍ରକାଶ କରିଛନ୍ତି । ଶିକ୍ଷାୟତନ ସମ୍ପର୍କରେ ମାନସିଂହଙ୍କ ଚିନ୍ତାଧାରାକୁ ଜାଣିବାକୁ ହେଲେ ପ୍ରଥମେ ତାଙ୍କ ଦ୍ୱାରା ଅନୁବାଦିତ 'ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ' ପଢ଼ିବାକୁ ହେବ । ସଂଶିତ

ପୁସ୍ତକର ଲେଖକ ଡବ୍ଲ୍ୟୁ.ଏସ୍.ଡଟନ୍ ଜଣେ ଆମେରିକୀୟ ମହିଳା ମିସେସ୍ ଆଲିସ୍ ଲୟେଡଙ୍କ ଦ୍ୱାରା କାନେ କଲେଜ ପ୍ରତିଷ୍ଠା ଓ କଲେଜ ସନ୍ନିହିତ ଗ୍ରାମର ବିକାଶ କାହାଣୀ ଉପସ୍ଥାପନ କରିଛନ୍ତି । ଶିକ୍ଷାୟତନ ନିଜ ଭିତରେ ନିଜେ ସଂପୂର୍ଣ୍ଣ ହୁଏ ନାହିଁ, ଶିକ୍ଷକ ଓ ଶିକ୍ଷାର୍ଥୀ ପାରସ୍ପରିକ ଆନନ୍ଦ ପ୍ରଦାନ ମଧ୍ୟ ଦେଇ ପାରସ୍ପରିକ ଜୀବନକୁ ସୁନ୍ଦର ଓ ବିକାଶପ୍ରାପ୍ତ କରନ୍ତି– ସଂପୃକ୍ତ ପୁସ୍ତକରେ ଏହି କଥାହିଁ ଲିଖିତ । ଏହି ପୁସ୍ତକରେ କିପରି ମିସେସ୍ ଆଲିସ୍‌ଙ୍କ ସାଧନା ଦ୍ୱାରା ଅନୁନ୍ନତ ଅଞ୍ଚଳରେ ଆଲୋକ ପ୍ରବେଶ କରିଛି ସେ ବିଷୟର ବର୍ଣ୍ଣନା ସହିତ ସେଠାକାର ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ନାନା ମତ ଉଲ୍ଲେଖ କରିଛନ୍ତି । ତନ୍ମଧ୍ୟରୁ ଭାରତୀୟ ପରିବେଶରେ ସୁହାଇଲା ଭଳି ଶିକ୍ଷାୟତନର ସଂସ୍କାର ସମ୍ପର୍କରେ ମାନସିଂହ କେତେକ ମତ ଉପସ୍ଥାପନ କରିଛନ୍ତି । ପ୍ରତ୍ୟେକ ଶିକ୍ଷାୟତନ ସେହି ଅଞ୍ଚଳର ପାରିପାର୍ଶ୍ୱିକ ପରିବେଶ ଓ ସଂସ୍କୃତିକୁ ଆଧାର କରି ଗଢ଼ାଯିବା ଉଚିତ, ଯାହାକୁ ସ୍ଥାନୀୟ ଅଧିବାସୀମାନେ ସେମାନଙ୍କର ସାଂସ୍କୃତିକ ପ୍ରାଣକେନ୍ଦ୍ର ଭାବରେ ଗ୍ରହଣ କରିନେବେ । ତତ୍ ସଙ୍ଗେ ସଙ୍ଗେ ''ଜିଲ୍ଲାର ସର୍ବୋଚ୍ଚ ଶିକ୍ଷାନୁଷ୍ଠାନର ମୁଖ୍ୟ କର୍ତ୍ତା, ଜିଲ୍ଲାର ସମଗ୍ର ଶିକ୍ଷା ବ୍ୟବସ୍ଥାର ସର୍ବୋଚ୍ଚ ପରିଚାଳକ ହେବା ଉଚିତ । ଏହାର ଫଳ ଏଇ ହେବ ଯେ, ପ୍ରାଇମେରୀଠାରୁ କଲେଜଯାଏ ପିଲାଏ ଗୋଟାଏ ଲକ୍ଷ୍ୟ, ଗୋଟାଏ ଆଦର୍ଶ, ଗୋଟାଏ ପଦ୍ଧତିରେ ଗଢ଼ି ହୋଇ ଆସିବେ । 'କାନେ'ରେ ସେଇଆ ହୋଇଛି । ଆମ ଦେଶରେ କଲେଜ ଦୋଷ ଦେଉଛି ହାଇସ୍କୁଲ୍‌କୁ, ହାଇସ୍କୁଲ ଦୋଷ ଦେଉଛନ୍ତି ପ୍ରାଇମେରୀକୁ । ପ୍ରାଇମେରୀ ବକିବାରେ ଲାଗିଛି ସରକାରଙ୍କୁ । କାହାର କାହା ସଙ୍ଗେ ପରିଚୟ ବା ସମ୍ପର୍କ ନାହିଁ । ସମସ୍ତଙ୍କୁ ଏକାଠି କରି ଏକ ଲକ୍ଷ୍ୟ ବା ଏକ ଆଦର୍ଶରେ ଅନୁପ୍ରାଣିତ ଓ ପରିଚାଳିତ କରିବା ପାଇଁ କୌଣସି ଅନୁଷ୍ଠାନ ନାହିଁ । ସେଣେ ପୁଣି ପ୍ରତି ସ୍କୁଲ ବା କଲେଜ ନିଜନିଜର ପାରିପାର୍ଶ୍ୱିକ ସମାଜ ସହିତ ସମ୍ପର୍କହୀନ ।''

ଡକ୍ଟର ମାନସିଂହ ସ୍କୁଲ ଇନ୍‌ସ୍ପେକ୍ଟର ଓ ଗଙ୍ଗାଧର ମେହେର କଲେଜର ଅଧ୍ୟକ୍ଷ ଥିବା ସମୟରେ ହିଁ ମିସେସ୍ ଆଲିସ୍ ଲୟେଡ଼ଙ୍କ ସ୍କୁଲ ଢାଞ୍ଚାର ପ୍ରୟୋଗ କରିବାକୁ ଚେଷ୍ଟା କରିଥିଲେ । ତାଙ୍କର 'ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ' ପୁସ୍ତକରେ ସେ ସମ୍ପର୍କରେ ବିସ୍ତୃତ ବିବରଣୀ ରହିଛି ।

ଡକ୍ଟର ମାନସିଂହ ଆମ ଦେଶର ଶିକ୍ଷାୟତନ ସଂସ୍କାର ସମ୍ପର୍କରେ ମତାମତ ପ୍ରଦାନ କରି କହନ୍ତି –

୧. ପ୍ରତ୍ୟେକ ଶିକ୍ଷାନୁଷ୍ଠାନ (ପ୍ରାଇମେରୀ, ହାଇସ୍କୁଲ ବା କଲେଜ) ଗୋଟିଏ ଗୋଟିଏ ଛୋଟବଡ଼ ନିର୍ଦ୍ଦିଷ୍ଟ ଅଞ୍ଚଳର ସାମୂହିକ ଜୀବନର କେନ୍ଦ୍ରରୂପେ ବିବେଚିତ ଓ ବ୍ୟବସ୍ଥିତ ହେବ । ପୁଣି ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଯେତେ ପ୍ରକାର ଶିକ୍ଷାନୁଷ୍ଠାନ ସମସ୍ତଙ୍କର ସମନ୍ୱୟ କରି ସମସ୍ତ ଅଞ୍ଚଳର ଶିକ୍ଷା ବ୍ୟବସ୍ଥାକୁ ଗୋଟିଏ କେନ୍ଦ୍ରରୂପେ ଧରାଯାଇ ଗୋଟିଏ ଲକ୍ଷ୍ୟ ଓ ଗୋଟିଏ ଆଦର୍ଶରେ ସେଗୁଡ଼ିକୁ ଅନୁପ୍ରାଣିତ କରାଯିବ ।

୨. ପ୍ରତ୍ୟେକ ଶିକ୍ଷାନୁଷ୍ଠାନକୁ ଯଥାସମ୍ଭବ ସ୍ୱାଧୀନ ଓ ସ୍ୱୟଂସଂପୂର୍ଣ୍ଣ ଭାବରେ ଗଢ଼ିବାକୁ ଦିଆଯିବ । ଶିକ୍ଷକମାନେ ପୂର୍ଣ୍ଣ ସ୍ୱାଧୀନ ହେବେ । କେଉଁ ପାଠ୍ୟପୁସ୍ତକ ଗ୍ରହଣ କରିବେ ନା ନକରିବେ, ନିଜ ସିଲାବସ୍ ନିଜେ ଗଢ଼ିବା ତଥା ଶିକ୍ଷାବିଭାଗର ସିଲାବସ୍‌ରେ ସ୍ଥାନୀୟ ପ୍ରୟୋଜନ ଅନୁସାରେ ଅଦଳ ବଦଳ କରିବାରେ ସେମାନେ ପୂରା ସ୍ୱାଧୀନ ରହିବା ଉଚିତ ।

୩. କୌଣସି ହେଲେ ଛାତ୍ର ବା ଛାତ୍ରୀଠାରୁ ବେତନ ନିଆଯିବ ନାହିଁ – ଶିକ୍ଷାର କୌଣସି ସ୍ତରରେ । ଶିକ୍ଷାନୁଷ୍ଠାନର ପ୍ରବେଶର ଏକମାତ୍ର ଫିସ୍ ହେବ ବୁଦ୍ଧି ଓ ଚରିତ୍ରର ଉତ୍କର୍ଷ । ପାଠର ମାନଦଣ୍ଡ ବରାବର ଉଚ୍ଚ ରହିବ, ଯେପରିକି ତାହା ଯେକୌଣସି ସ୍ଥାନରେ ସମ୍ମାନ ପାଇବ ।

୪. ଶିକ୍ଷାନୁଷ୍ଠାନମାନଙ୍କରେ ଦୈନନ୍ଦିନ ଜୀବନ ପରିଚାଳିତ ହେବ ଛାତ୍ରଛାତ୍ରୀଙ୍କ ଦୈହିକ ଶ୍ରମ ଉପରେ । ସଂଯମ ଓ ସାରଲ୍ୟ ବିଦ୍ୟାଳୟ ଜୀବନର ପ୍ରଧାନ ନୀତି ହେବ । ଧନୀ ଦରିଦ୍ର ସମସ୍ତେ ଏକ ଖାଦ୍ୟ ଖାଇବେ, ଏକ ପ୍ରକାର ବସନ ପିନ୍ଧିବେ ଓ ଏକ ଜୀବନ ଯାପନ କରିବେ ।

୫. ଯେଉଁମାନେ ବୁଦ୍ଧି, ବିଦ୍ୟା ଓ ଚରିତ୍ରରେ ଉତ୍କୃଷ୍ଟ ବିବେଚିତ ହେବେ, କର୍ତ୍ତୃପକ୍ଷ ସେମାନଙ୍କର ସମସ୍ତ ଖର୍ଚ୍ଚ ବହନ କରିବେ । ପୁଣି ପ୍ରତି ଛାତ୍ର ବା ଛାତ୍ରୀଠାରୁ ପ୍ରତିଶ୍ରୁତି ନିଆଯିବ ଯେ, ସେମାନେ ନିଜ ମାଟିକୁ ଶ୍ରୀମନ୍ତ କରିବାପାଇଁ ଯଥାଶକ୍ତି ଚେଷ୍ଟା କରିବେ ।

ମାନସିଂହଙ୍କ ପ୍ରସ୍ତାବଗୁଡ଼ିକ ଏକ ଇଉଟୋପିଆ ଉପରେ ପ୍ରତିଷ୍ଠିତ । ଅତୀତରେ ଇଉରୋପୀୟ ବିଶ୍ୱବିଦ୍ୟାଳୟଗୁଡ଼ିକ ଧନାଢ଼୍ୟ ବ୍ୟକ୍ତିମାନଙ୍କର ଦାନରେ ସମୃଦ୍ଧ ହୋଇ ରାଷ୍ଟ୍ର ଓ ଚର୍ଚ୍ଚ କବଳରୁ ମୁକ୍ତିଲାଭ କରି ବିଦ୍ୟାର ସର୍ବୋଚ୍ଚ ଅନୁଷ୍ଠାନ ରୂପେ ଗଢ଼ି ଉଠିଥିଲା । ୧୮୫୭ରେ ଭାରତୀୟ ବିଶ୍ୱବିଦ୍ୟାଳୟଗୁଡ଼ିକର ପ୍ରତିଷ୍ଠା କାଳରେ ବିଶ୍ୱବିଦ୍ୟାଳୟଗୁଡ଼ିକ ବାକ୍ୟତଃ ସ୍ୱୟଂଶାସିତ ଓ ସ୍ୱାଧୀନ ବୋଲି ଘୋଷଣା କରାଯାଉଥିଲା । ପ୍ରକୃତ ବିଦ୍ୟାଚର୍ଚ୍ଚା ପାଇଁ ସ୍ୱାଧୀନତା ଓ ଆତ୍ମସଂଯମ କାମ୍ୟ । ଆମର ବିଶ୍ୱବିଦ୍ୟାଳୟଗୁଡ଼ିକ କିନ୍ତୁ ସେହି ସଂଯମ ବା ଶୃଙ୍ଖଳା ଭିତରେ ରହିପାରିନାହିଁ । ମୂଲ୍ୟବୋଧର ଅଧୋଗତି ଫଳରେ ଭାରତର ଉଚ୍ଚତମ ବିଦ୍ୟାୟତନଗୁଡ଼ିକ ଆଜି କ୍ଷୟରୋଗରେ ଆକ୍ରାନ୍ତ । ମାନସିଂହ ଏଥିପାଇଁ ଦୁଃଖ ପ୍ରକାଶ କରି ଲେଖିଛନ୍ତି : 'ବିଶ୍ୱବିଦ୍ୟାଳୟ ହେଲା ଦେଶର ତରୁଣ ସମାଜକୁ ଜ୍ଞାନଦୀପ୍ତ କରି ଗଢ଼ି ବାହାର ଜଗତକୁ ଛାଡ଼ିଦେବାର ସାଧନାପୀଠ । କେବଳ ଅଭିଶପ୍ତ ଭାରତବର୍ଷରେ ହିଁ କଲେଜ ବା ବିଶ୍ୱବିଦ୍ୟାଳୟକୁ ଯେକୌଣସି ମତେ ଖଣ୍ଡିଏ ଖଣ୍ଡିଏ ଡିପ୍ଲୋମା ମାରିନେବାର ଏକ ରକମ ସିଭିଲ ସପ୍ଲାଏ ଅଫିସ ବୋଲି ଧରାଯାଏ । ଦୀର୍ଘ ପଚାଶ ବର୍ଷ ତଳେ ମାନସିଂହ ଯେଉଁ ଆଶଙ୍କା କରୁଥିଲେ, ବର୍ତ୍ତମାନ ସେ ସମସ୍ତ ଅନୁଷ୍ଠାନ ତଦପେକ୍ଷା ଆହୁରି ନିକୃଷ୍ଟ ରୂପ ଧାରଣ କଲାଣି ।

## ପ୍ରଚଳିତ ଶିକ୍ଷାଧାରା ଓ ଶିକ୍ଷା ସଂସ୍କାର –

ଡକ୍ଟର ମାନସିଂହ, ଶିକ୍ଷାବିଭାଗର ବିଭିନ୍ନ ପଦପଦବୀରେ ରହିଥିବାରୁ ସମସାମୟିକ ଶିକ୍ଷା ବ୍ୟବସ୍ଥାର କେତେକ ତ୍ରୁଟି ଦେଖି ତାକୁ ସଂଶୋଧନ କରିବାର ପ୍ରସ୍ତାବ ଆଗତ କରିଥିଲେ । କାର୍ଯ୍ୟତଃ ତାହା କେବଳ ଫାଇଲ ମଧ୍ୟରେ ରହିବା ସାର ହୋଇଥିଲା, ତା'ର ବ୍ୟାବହାରିକ ମୂଲ୍ୟକୁ କେହି ଦୃଷ୍ଟିପାତ କରିନଥିଲେ । ସ୍ୱାଧୀନତୋତ୍ତର ଭାରତବର୍ଷରେ ଶିକ୍ଷା ସଂସ୍କାର ନାମରେ ଅନେକ କମିଶନ ବସିଲାଣି । ଶିକ୍ଷା ସଂସ୍କାର କମିଶନରଙ୍କ ପ୍ରସ୍ତାବର ଅନେକ ପୂର୍ବରୁ ମାନସିଂହ ତାଙ୍କର ଶିକ୍ଷାବିଭାଗର ଅନେକ ରିପୋର୍ଟରେ ଅନୁରୂପ ପ୍ରସ୍ତାବମାନ ଆଗତ କରିଥିଲେ, ମାତ୍ର ମାନସିଂହଙ୍କ ଚିନ୍ତା ଓ ଭାଗ୍ୟ ପରସ୍ପର ପ୍ରତିକୂଳ ଗତିରେ ଗମନ କରିବାରୁ ତାଙ୍କର ମତାମତକୁ ଯଥାଯଥ ଆଦୃତି ମିଳିନଥିଲା । ତଥାପି ମାନସିଂହଙ୍କ ଚିନ୍ତନର ମୌଳିକତା ତାଙ୍କ ପ୍ରଦତ୍ତ ପ୍ରସ୍ତାବ ଓ ପୁସ୍ତିକାଗୁଡ଼ିକ ମଧ୍ୟରେ ସ୍ପଷ୍ଟ । ଶିକ୍ଷା ସଂସ୍କାର ସଂପର୍କରେ ଅନେକ ବିଶିଷ୍ଟ ପ୍ରବନ୍ଧ ସହିତ ତାଙ୍କର ନିମ୍ନ ପୁସ୍ତକଗୁଡ଼ିକ ମଧ୍ୟ ପ୍ରଣିଧାନଯୋଗ୍ୟ ।

୧. ସିଟିଜେନ୍ ଏଜୁକେଶନ (ଇଂରାଜୀ) (୧୯୪୨)
୨. ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ (୧୯୬୩)
୩. ଶିକ୍ଷାର କି', କ'ଣ ଓ କାହିଁକି (୧୯୬୦)
୪. ଶିକ୍ଷାବିତ୍‌ର ଗାଥା (ଆତ୍ମଜୀବନୀ) (୧୯୬୫)
୫. ଡ୍ରିମ୍‌ସ ଇନ୍ ଏଜୁକେଶନ (ଇଂରାଜୀ) (୧୯୬୫)
୬. ସ୍ୱାଧୀନ ଭାରତର ଛାତ୍ର ସମସ୍ୟା (୧୯୬୭)
୭. କୋଠାରୀ କମିଶନ ଓ ଓଡ଼ିଶାର ଶିକ୍ଷା ବ୍ୟବସ୍ଥା (୧୯୬୭)
୮. ଗ୍ରାମୋନୋତିର ରୋମାଞ୍ଚକର କାହାଣୀ (ଅନୁବାଦ) (୧୯୫୬)

ଶିକ୍ଷା ସମ୍ବନ୍ଧରେ ତାଙ୍କର କେତେକ ମୂଲ୍ୟବାନ ପ୍ରବନ୍ଧ ହେଲା–

୧. ଶିକ୍ଷାର ମୌଳିକ ତତ୍ତ୍ୱ ଓ ଭାରତପ୍ରତି ତା'ର ପ୍ରୟୋଗ –
ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଚାରିଗୋଟି ସଂଖ୍ୟା ୧୯୬୫ ଶଙ୍ଖରେ ପ୍ରକାଶିତ ।
୨. ପ୍ରାଚୀନ ଭାରତରେ ଶିକ୍ଷା(ବିଜ୍ଞାନ) ୧୯୪୫, ଶଙ୍ଖ
୩. ଭାରତବର୍ଷର ଶିକ୍ଷା ଯୋଜନା ୧୯୪୫, ଶଙ୍ଖ
୪. ରାଷ୍ଟ୍ରୀୟ ଶିକ୍ଷା ଯୋଜନା ଅକ୍ଟୋବର, ୧୯୫୨
୫. ଓଡ଼ିଶାରେ ସାମାଜିକ ଶିକ୍ଷା ସେପ୍ଟେମ୍ବର, ୧୯୫୭
୬. ସାମାଜିକ ଶିକ୍ଷାର ପ୍ରକୃତି ମେ' ୧୯୫୭
୭. ଆଦର୍ଶ ହାଇସ୍କୁଲ ଜୁଲାଇ, ୧୯୫୮
୮. ବିଦ୍ୟାର୍ଥୀ ଓ ବିଦ୍ୟାଳୟର ଆଦର୍ଶ ସେପ୍ଟେମ୍ବର, ୧୯୫୮

| | | |
|---|---|---|
| ୯. | ବେସିକ୍ ଓ ସାଧାରଣ ଶିକ୍ଷା ବ୍ୟବସ୍ଥାର ସଂସ୍କାର | ଅଗଷ୍ଟ, ୧୯୫୯ |
| ୧୦. | ଜାତି ଓ ବିଶ୍ୱବିଦ୍ୟାଳୟ | ଡିସେମ୍ବର, ୧୯୬୧ |
| ୧୧. | ସାହିତ୍ୟ ଓ ବିଶ୍ୱବିଦ୍ୟାଳୟ | ଜାନୁୟାରୀ, ୧୯୬୨ |
| ୧୨. | ବିଶ୍ୱବିଦ୍ୟାଳୟ ବ୍ୟକ୍ତିତ୍ୱ | ଜାନୁୟାରୀ, ୧୯୬୨ |
| ୧୩. | ଓଡ଼ିଆ ଓ ଶସ୍ତା ଡିପ୍ଲୋମା | ଫେବୃୟାରୀ, ୧୯୬୨ |
| ୧୪. | ରାମମୋହନଙ୍କ ସତର୍କବାଣୀ, ଭାରତୀୟ ଭାଷାର ଏମ୍.ଏ. ଉପାଧି, ପାଠ୍ୟ ବିଷୟରେ ସହଜାତ ମୂଲ୍ୟ | ଜାନୁୟାରୀ, ୧୯୬୨ |
| ୧୫. | ଓଡ଼ିଆ ଏମ୍.ଏ. ସିଲାବସ୍, ମୋ ଭାଷା ଓ ସାହିତ୍ୟର ଅପମାନ, ଇଂରାଜୀ ଏମ୍.ଏ.ର ଦାୟିତ୍ୱ ମାଷ୍ଟର ଅବ୍ ଲିଟରେଚର ଡିଗ୍ରୀ | ଫେବୃୟାରୀ, ୧୯୬୨ |
| ୧୬. | ବିକେନ୍ଦ୍ରୀକୃତ ବିଶ୍ୱବିଦ୍ୟାଳୟ ଓ ଓଡ଼ିଶାରେ ତା'ର ଯୋଜନା | ଅଗଷ୍ଟ, ୧୯୬୨ |
| ୧୭. | ରାଷ୍ଟ୍ରାୟତ୍ତ ପାଠ୍ୟପୁସ୍ତକାବଳୀର ମାରାତ୍ମକତା ୧ ଓ ୨ - ଦୁଇଟି ପ୍ରବନ୍ଧ | ମେ' ୧୯୭୧ |
| ୧୮. | ପାଠ୍ୟପୁସ୍ତକାବଳୀର ଜାତୀୟକରଣ ନା ଅପ୍ରଧାନୀକରଣ | |
| ୧୯. | ପ୍ରଚଳିତ ଶିକ୍ଷା ବ୍ୟବସ୍ଥା କି ସର୍ତ୍ତରେ ତ୍ରୁଟିପୂର୍ଣ୍ଣ | ଜୁଲାଇ, ୧୯୭୨ |

ଶିକ୍ଷାବିତ୍ ତଥା ସଂସ୍କାରକ ମାନସିଂହ ମୃତ୍ୟୁର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଶିକ୍ଷା ସମ୍ପର୍କରେ ଗଭୀର ଭାବରେ ଚିନ୍ତାକରୁଥିଲେ । ତାଙ୍କର ଶିକ୍ଷା ସମ୍ପର୍କୀୟ ପ୍ରଥମ ପୁସ୍ତକ 'ସିଟିଜେନ୍ ଏଜୁକେଶନ' ପୁସ୍ତକରେ ଜାତୀୟ ଶିକ୍ଷାଧାରା ଓ ଶିକ୍ଷା ନୀତି ସହିତ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ ସମ୍ପର୍କରେ ମତାମତ ଉପସ୍ଥାପିତ । ଏହି ପୁସ୍ତକରେ ଜାତୀୟ ଶିକ୍ଷାଧାରାର ତ୍ରୁଟି ସଦୃଷ୍ଟାନ୍ତ ବର୍ଣ୍ଣନା କରାଯାଇଛି । ସାଧାରଣ ଶିକ୍ଷା, ଇଂରାଜୀ ଶିକ୍ଷା, ନାରୀ ଶିକ୍ଷା ପ୍ରଭୃତି ଶିକ୍ଷାର ବିଭିନ୍ନ ଧାରା ଏଥିରେ ଆଲୋଚିତ । ଶିକ୍ଷାବିତ୍ ମାନସିଂହଙ୍କର ଶିକ୍ଷା ସମ୍ପର୍କରେ ଏହା ପ୍ରାଥମିକ ନକ୍ସା । ଇଷ୍ଟର୍ଣ୍ଣ ଷ୍ଟେଟ୍ ଏଜେନ୍ସୀରେ ଶିକ୍ଷା ପରାମର୍ଶଦାତା ଥିବା ସମୟରେ ମାନସିଂହ ସ୍ୱାଧୀନଭାବରେ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ଚିନ୍ତା କରିବାକୁ ଲାଗିଥିଲେ ଓ ନିଜର ମତାମତକୁ ବିଭିନ୍ନ ଗଡ଼ଜାତ ସ୍କୁଲରେ ପ୍ରୟୋଗ କରିପାରିଥିଲେ । ମାତ୍ର ତାଙ୍କର ମନ୍ତବ୍ୟ ଓ ପ୍ରସ୍ତାବ ଗଡ଼ଜାତ ରାଜାମାନଙ୍କର ସ୍ୱାର୍ଥରେ ବାଧା ସୃଷ୍ଟି କରିବାର ଆଶଙ୍କାକରି ସେମାନେ ଶିକ୍ଷାପରାମର୍ଶଦାତା ପଦଟିକୁ ଉଠାଇଦେଇଥିଲେ । ସେ ସମୟର ତାଙ୍କର କେତେକ ପ୍ରସ୍ତାବ ଛାତ୍ରଛାତ୍ରୀ ଓ ଜନସାଧାରଣଙ୍କର ଯଥେଷ୍ଟ ଉପକାରରେ ଆସିଥିଲା । ମାନସିଂହଙ୍କର 'ହିଂଦୋଳ ରିପୋର୍ଟ' ସେତେବେଳର ଏକ ଚମତ୍କାର ଚିନ୍ତାଧାରାର ପ୍ରକାଶ । ଖର୍ଚ୍ଚ ଦୃଷ୍ଟିରୁ

ଓ କର୍ମ ସଂସ୍ଥାନ ଦୃଷ୍ଟିକୋଣରୁ ଏହା ଯଥେଷ୍ଟ ସହାୟକ ହୋଇପାରିବାର ସମ୍ଭାବନା ଥିଲା । ସ୍ୱାଧୀନ ଭାରତରେ ସରକାର ଯେଉଁ କର୍ମଭିତ୍ତିକ ଶିକ୍ଷା କଥା ଚିନ୍ତା କରିଥିଲେ ମାନସିଂହଙ୍କ ରିପୋର୍ଟରେ ତାହାର ନକ୍ସା ଦିଆଯାଇଥିଲା ।

ମାନସିଂହଙ୍କ ମତରେ ଜାତୀୟ ଶିକ୍ଷା ଯୋଜନା ସେହି ନୀତିରେ ହେବା ଉଚିତ, ଯାହାଦ୍ୱାରା ସେହି ଜାତିର ଯେଉଁ ନିଜସ୍ୱ ସଂସ୍କୃତି ଅଛି ତାହା ବଂଚିପାରିବ ଓ ନିଜ ଜାତୀୟ ଚରିତ୍ରରେ ଯାହା ଦୋଷାଦୋଷ ତଥା ଅଭାବ ରହିଥିବ ତାକୁ କାଢ଼ିନେଇ ସେ ସ୍ଥାନରେ ଉନ୍ନତ, ସଂଶୋଧିତ ଓ ପରିପୂରକ ଗୁଣାବଳୀର ଅଭ୍ୟାସ କରାଇବ । ଏହି ଦୁଇ ପ୍ରଧାନ ଆବଶ୍ୟକତା ରହିବା ସଙ୍ଗେ ସଙ୍ଗେ ନିଜସ୍ୱ ମାଟିର ଗୌରବ ବର୍ଦ୍ଧନ ପାଇଁ ବାଲ୍ୟକାଳରୁ ଅଭ୍ୟାସ ରହିବା ଦରକାର । ତା'ପରେ ଆମ ଦେଶର ଶିକ୍ଷା ମୁଖ୍ୟତଃ ପୁସ୍ତକ-ପ୍ରଧାନ ଶିକ୍ଷାରେ ପରିଣତ ହୋଇ, ବାସ୍ତବତାଠାରୁ ଦୂରେଇଯାଇଛି । ଫଳରେ କାର୍ଯ୍ୟ କ୍ଷେତ୍ରରେ ଆମ୍ଭେମାନେ କୌଣସି ଫଳପ୍ରଦ କର୍ମପାଇଁ ସମର୍ଥ ହୋଇପାରୁନାହୁଁ । ପ୍ରାଚୀନ ଉତ୍କଳରେ ତଥା ଭାରତବର୍ଷରେ ଶିକ୍ଷା ବୃତ୍ତିଭିତ୍ତିକ ଓ ପ୍ରୟୋଗାତ୍ମକ ଥିଲା । ଅକ୍ଷର ଶିକ୍ଷା, ଶିକ୍ଷାର ବିଭିନ୍ନ ମାଧ୍ୟମ ମଧ୍ୟରୁ ଗୋଟାଏ ମାତ୍ର । ଜୀବନର ବାସ୍ତବ କ୍ଷେତ୍ରରେ ଅନେକ ବିଦ୍ୟା ଅଛି, ଯାହା ବିନା ବହିରେ ସମ୍ଭବ ଓ ଦୈନନ୍ଦିନ ଜୀବନରେ ତାହାର ପ୍ରଭୂତ ଉପଯୋଗିତା ଅଛି । ବର୍ତ୍ତମାନର ଡିଗ୍ରୀ ସାର୍ଟିଫିକେଟ-ପ୍ରଧାନ ଶିକ୍ଷା ଆମକୁ କେବଳ ସେହି ଉପାଧି ଅଭିମୁଖୀ କରାଉଛି । ଏହି ପ୍ରକାର ଅନେକ ପ୍ରସ୍ତାବ ଉଦାହରଣ ମାଧ୍ୟମରେ ମାନସିଂହ ତାଙ୍କର ଶିକ୍ଷାର 'କି, କ'ଣ ଓ କାହିଁକି ?'ରେ ବିସ୍ତୃତଭାବରେ ଆଲୋଚନା କରିଛନ୍ତି ।

ଖ୍ରୀ. ୧୯୫୯-୬୦ ବେଳକୁ ଶିକ୍ଷା ବ୍ୟବସ୍ଥାର ସଂସ୍କାର ସମ୍ପର୍କରେ ଡକ୍ଟର ମାନସିଂହ କେତେକ ପ୍ରସ୍ତାବ ଦେଇଥିଲେ । ସେ ପ୍ରସ୍ତାବରେ ଶିକ୍ଷାବିଭାଗ ତଥା ଶିକ୍ଷାକୁ ଏକ ସ୍ୱୟଂଶାସିତ ସଂସ୍ଥାଦ୍ୱାରା ପରିଚାଳିତ କରିବା, ଶିକ୍ଷକ-ପ୍ରଧାନ-ଶିକ୍ଷା-ବ୍ୟବସ୍ଥା ଚାଲୁ କରାଇବା, ସମସ୍ତ ଶିକ୍ଷାକୁ ସାଧାରଣ ଶିକ୍ଷା ଓ ଉଚ୍ଚଶିକ୍ଷା କ୍ରମରେ ରଖିବା, ସାର୍ଟିଫିକେଟ୍-ପ୍ରଧାନ ଶିକ୍ଷାବ୍ୟବସ୍ଥା-ଠାରୁ ଦୂରେଇଯାଇ, ବୃତ୍ତିଭିତ୍ତିକ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ କରିବା, ସ୍ଥାନୀୟ ଚାହିଦାକୁ ଲକ୍ଷ୍ୟ ରଖି ଛୁଟି ତାଲିକା ସଂଶୋଧନ କରିବା ହେଉଛି ପ୍ରମୁଖ ବ୍ୟବସ୍ଥା । ନିମ୍ନରେ ମାନସିଂହଙ୍କ ପ୍ରସ୍ତାବଗୁଡ଼ିକର ଅବତାରଣା କରାଯାଉଛି :

୧. ଦେଶର ଶିକ୍ଷାବ୍ୟବସ୍ଥା ଉପରେ ଶାସକ ସରକାରଙ୍କର ପ୍ରତ୍ୟକ୍ଷ ପ୍ରଭୁତ୍ୱ ରହିବ ନାହିଁ । କେବଳ ଶିକ୍ଷାର ବିଶେଷଜ୍ଞ, ପଣ୍ଡିତ, ତ୍ୟାଗୀ, ଅଧ୍ୟାପକ ଓ ଶିକ୍ଷକଙ୍କ ମାର୍ଫତରେ ଶିକ୍ଷାକୁ ଛାଡ଼ିଦିଆଯିବା ଉଚିତ ।

୨. ପ୍ରାଇମେରୀ ଶିକ୍ଷାଠାରୁ କଲେଜ ଯାଏ, ଶିକ୍ଷାୟତନର ସକଳ ସ୍ତରରେ ଘର ଓ ଆସବାବପତ୍ର ଅପେକ୍ଷା ଶିକ୍ଷକ ହିଁ ଶିକ୍ଷାନୁଷ୍ଠାନର ପ୍ରଥମତମ, ପ୍ରଧାନତମ ଓ ଦୁର୍ଲଭତମ ଉପାଦାନ ବୋଲି ଧରାଯିବ ଓ ଉପଯୁକ୍ତ ଶିକ୍ଷକ ନିର୍ବାଚିତ କଲା ପରେ ତାଙ୍କୁ ଉପଯୁକ୍ତ ସମାଦର କରାଯିବ ।

୩. ଶିକ୍ଷାର ନିମ୍ନ, ମଧ୍ୟ, ଉଚ୍ଚ ତ୍ରିବିଧ ସ୍ତର ଉଠାଇଦେଇ ଶିକ୍ଷାକୁ କେବଳ ଦୁଇ ପାଦରେ ବିଭକ୍ତ କରାଯାଉ । ପ୍ରଥମ ପାଦ ହେବ ସାଧାରଣ ଶିକ୍ଷା ଯାହାକି ଦେଶର ପ୍ରତ୍ୟେକ ବାଳକ ବାଳିକା ୧୪/୧୫ ବର୍ଷଯାଏ ପାଇବେ । ସରକାର ସାଧାରଣ ଶିକ୍ଷାର ଅଭାବକୁ ଦଣ୍ଡନୀୟ ଅପରାଧ ବୋଲି ଘୋଷଣା କରିବେ ।

୪. ସିଲାବସ୍‌କୁ ଯଥାସମ୍ଭବ ଲଘୁ ଓ ସରଳ କରାଯିବ । ବର୍ତ୍ତମାନ ଅନେକ କିଛି ସିଲାବସ୍‌ରେ ଭର୍ତ୍ତିକରାଯାଇଛି, ଯାହା ମଣିଷର ଆପେ ଆପେ ଶିକ୍ଷ୍ୟ ।

୫. ପ୍ରତ୍ୟେକ ବାଳକ ବାଳିକା, ବିଶେଷତଃ ଗ୍ରାମାଞ୍ଚଳରେ ପାଠ ପଢ଼ିବା ଭିତରେ ଯେପରି ପୈତୃକ ବ୍ୟବସାୟରୁ ବା ହାତ କାମରୁ ବିଚ୍ଛିନ୍ନ ନ ହୁଅନ୍ତି, ସେଥିପାଇଁ ଦୈନନ୍ଦିନ ସ୍କୁଲ ବେଳ ଓ ବାର୍ଷିକ ଛୁଟିର ସମୟ ବଦଳେଇବାକୁ ହେବ । ଏହି ବାର୍ଷିକ ଛୁଟି ତାଲିକା ସଂଶୋଧନ ସମ୍ପର୍କରେ 'ଶିକ୍ଷାବିତ୍‌ର ଗାଥା'ରେ ମାନସିଂହ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି । ମାନସିଂହ ଲେଖିଛନ୍ତି – ''ଲେଖକର ଦୃଢ଼ ମତ ଏହି ଯେ, ପ୍ରତ୍ୟେକ ସ୍କୁଲପିଲା ତା'ର ବାପାକୁ ତା'ର କୌଳିକ ବୃତ୍ତିରେ ସାହାଯ୍ୟ କରିବ । କେବଳ ସେହି ସୂତ୍ରରେ ହିଁ ଆମ ଦେଶର ଶିକ୍ଷିତ ଲୋକମାନଙ୍କର ଶାରୀରିକ ଶ୍ରମ ପ୍ରତି ଘୃଣା କଟିଯିବ । ବାପାଦାଦି ଆଣ୍ଠୁଏ କାଦୁଅରେ ଧାନ ରୋଉଥିବାବେଳେ, ପୁଅ ପୁତୁରା ଯାଇ ଶୁଖିଲା ରୋଡ଼୍‌ରେ ପ୍ରାଇମେରୀ ସ୍କୁଲରେ ହାଫ୍ ପ୍ୟାଣ୍ଟ ପିନ୍ଧି ବ୍ୟାୟାମ ଶିଖିବେ ଓ ଗଳ୍ପ କଥନ ଶୁଣିବେ, ଏହା ଏକାନ୍ତଭାବେ ନିତାନ୍ତ ଅଯୌକ୍ତିକ ଓ ଅସ୍ୱାସ୍ଥ୍ୟକର ଶିକ୍ଷା ବ୍ୟବସ୍ଥା । ଏହା କେବେହେଲେ ଜାତି ବା ବ୍ୟକ୍ତିର କଲ୍ୟାଣଜନକ ହୋଇ ନପାରେ । ସେଇଥି ପାଇଁ ଏ ଲେଖକ ସ୍କୁଲମାନଙ୍କରେ ଛୁଟି ତାଲିକାକୁ ନୂଆକରି ଚଳାଇଥିଲା ଗଡ଼ଜାତ ସ୍କୁଲମାନଙ୍କରେ । ମୋର ବିନୀତ ମତ ଏହି ଯେ, ଏ ପ୍ରକାର ପରିବର୍ତ୍ତିତ ଛୁଟି ବ୍ୟବସ୍ଥା ଏ ରାଜ୍ୟର ସର୍ବତ୍ର ପ୍ରଚଳିତ ହେବା ଉଚିତ । ଏଜୁକେଶନାଲ ଆଡ୍‌ଭାଇଜର୍ ଥିଲାବେଳେ ଶୁଣିଛି ଏହାଦ୍ୱାରା ଧାନ ରୋଇବା ବା କାଟିବାରେ ଅନେକ ଦରିଦ୍ର ଛାତ୍ର ବେଶ୍ ରୋଜଗାର କରିପାରୁଥିଲେ ।''

୬. ଶିକ୍ଷା ସମ୍ପର୍କରେ ମାନସିଂହଙ୍କ ଷଷ୍ଠ ପ୍ରସ୍ତାବ ହେଲା – ''ପାଠ ପଢ଼ାଅ, ଜ୍ଞାନାର୍ଜନ ପାଇଁ ସବୁ ମତେ ସାହାଯ୍ୟ କର କିନ୍ତୁ ସାର୍ଟିଫିକେଟ୍ ଦିଅନାହିଁ । ସାର୍ଟିଫିକେଟ୍‌ର ବ୍ୟାଧି ହେଉଛି, ଚାକିରୀ ଅନ୍ୱେଷଣ ଓ ନିଜକୁ ଗାଁର ବା ସାଇ ପଡ଼ିଶାର ଅନ୍ୟ ପାଞ୍ଚଜଣକଠୁଁ ଭିନ୍ନ ମନେକରିବା । ସମଗ୍ର ଶିକ୍ଷା ବ୍ୟବସ୍ଥାକୁ କଳୁଷିତ କରିଛି ଏଇ ସାର୍ଟିଫିକେଟ୍ ।''

ସାଧାରଣ ଶିକ୍ଷା ପରେ ଉଚ୍ଚଶିକ୍ଷାର ବ୍ୟବସ୍ଥା ସମ୍ପର୍କରେ ମାନସିଂହ ଯେଉଁ ପ୍ରସ୍ତାବ ଦେଇଥିଲେ ତାହା ବିଶେଷ ପ୍ରଣିଧାନଯୋଗ୍ୟ– ''ମୋର ମତରେ ସାଧାରଣ ଶିକ୍ଷା ପରେ 'ଉଚ୍ଚଶିକ୍ଷା' ନ ଦେଇ 'ବିଶେଷଜ୍ଞ ଶିକ୍ଷା' ଦେବା ଉଚିତ । ଶିକ୍ଷା କେବଳ ମୁଷ୍ଟିମେୟ, ବୁଦ୍ଧିବାନ୍ ଓ ଚରିତ୍ରବାନ୍ ପିଲାଙ୍କୁ ପ୍ରତିଭାବାନ୍ ଓ ଚରିତ୍ରବାନ୍ ତ୍ୟାଗୀ ଅଧ୍ୟାପକମାନଙ୍କ ତତ୍ତ୍ୱାବଧାନରେ ଦେବା ଉଚିତ ।

ବର୍ତ୍ତମାନ ଉଚ୍ଚଶିକ୍ଷା ନାମରେ ସମସ୍ତ ଛାତ୍ରଛାତ୍ରୀଙ୍କର କଲେଜରେ ଅବାଧ ପ୍ରବେଶ ଅଧିକାର ରହୁଛି । ପରିମାଣାତ୍ମକ ଭାବରେ ଛାତ୍ରଛାତ୍ରୀ ବଢ଼ିଲେ ମଧ୍ୟ ଉଚ୍ଚଶିକ୍ଷାର ଗୁଣାତ୍ମକ ମୂଲ୍ୟ ଅନେକ ହ୍ରାସ ପାଉଛି । ଫଳରେ ଉଚ୍ଚଶିକ୍ଷାର ଅସଲ ଉଦ୍ଦେଶ୍ୟ ପଣ୍ଡ ହୋଇଯାଉଛି । ମାନସିଂହ କହନ୍ତି : କଲେଜ ଶିକ୍ଷାର ବଡ଼କଥା ଖଣ୍ଡେ ପାଶ୍ ସାର୍ଟିଫିକେଟ୍ ନୁହେଁ, ଅସଲ ଜିନିଷ ହେଉଛି ସମବୟସ୍କ, ବୁଦ୍ଧିମାନ୍ ଛାତ୍ରଛାତ୍ରୀଙ୍କ ସହ ମିଳାମିଶା ଓ ଉଚ୍ଚକୋଟୀର ଅଧ୍ୟାପକଙ୍କ ସହ ସମ୍ପର୍କ । ସତ୍ୟ ଖୋଜିବା ପାଇଁ, ଜ୍ଞାନ ଆହରଣ କରିବା ପାଇଁ, ଉଚ୍ଚତର ଜୀବନର ସ୍ପର୍ଶ ପାଇଁ, ଯେଉଁମାନଙ୍କର ବ୍ୟାକୁଳତା ନାହିଁ, ସେପରି ଅଧ୍ୟାପକଙ୍କର କଲେଜରେ ସ୍ଥାନ ନ ରହିବା ଉଚିତ । ଛାତ୍ରଙ୍କ କଥା ଛାଡ଼ିଦିଅ, ଆଜିକାଲି ସ୍କୁଲ କଲେଜରେ ଯେ ଅଶ୍ଳୀଳତା ଏତେ ବଢ଼ିଛି, ତା'ର ଏକମାତ୍ର କାରଣ ହେଉଛି, ଯେଉଁମାନଙ୍କର ସେଠି ରହିବାର କଥା ନୁହଁ, ସେମାନେ ସେଠି ପଶିଯାଇଛନ୍ତି ।''

ଭାରତ ସ୍ୱାଧୀନତା ଲାଭକଲାପରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର ତ୍ରୁଟିକୁ ଅନୁଭବ କରି ଜାତୀୟ ସରକାର ବିଭିନ୍ନ ସମୟରେ ଶିକ୍ଷାବ୍ୟବସ୍ଥାର ସଂଶୋଧନ ପାଇଁ କମିଶନ ବସାଇଛନ୍ତି । ପ୍ରତ୍ୟେକ କମିଶନ ନିଜର ଦୃଷ୍ଟିକୋଣରୁ ନାନା ପ୍ରସ୍ତାବ ପ୍ରଦାନ କଲେ ମଧ୍ୟ, ଆଜି ଦେଶକୁ ସୁହାଇଲା ପରି କୌଣସି ଶିକ୍ଷା ବ୍ୟବସ୍ଥାର ସମ୍ୟକ୍ ଧାରଣା କରିହେଉନାହିଁ । ବାପୁଜୀଙ୍କ ନୟି ତାଲିମ ଓ ଗ୍ରାମୋଦ୍ୟୋଗକୁ ଭିତ୍ତିକରି ବେସିକ୍ ଶିକ୍ଷା ବ୍ୟବସ୍ଥା ପ୍ରତିଷ୍ଠା କରାଗଲା । ମାନସିଂହ ସେ ଶିକ୍ଷା ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ ଓ ଫଳ ସ୍ୱରୂପ ସେ ଓଡ଼ିଶା ସରକାରଙ୍କ ବିଷଦୃଷ୍ଟିରେ ପଡ଼ିଥିଲେ । ଜଣେ ଶିକ୍ଷାବିତ୍ ଭାବରେ ସେ ଯେଉଁ ଆଶଙ୍କା କରିଥିଲେ, ତାହା ପରବର୍ତ୍ତୀକାଳରେ ହିଁ ଘଟିଗଲା, ମାତ୍ର ତା' ପୂର୍ବରୁ ମାନସିଂହ ସରକାରଙ୍କର କୋପାନଳର ଶିକାର ହେଲେ । ମାନସିଂହ ବେସିକ୍ ଶିକ୍ଷାକୁ ଏକ ପ୍ରତାରଣାମୂଳକ ଶିକ୍ଷା ବୋଲି ନାମିତ କରିଥିଲେ । ତାଙ୍କ ଭାଷାରେ : ଯାହା କେବଳ ପ୍ରତାରଣା ଉପରେ ପ୍ରତିଷ୍ଠିତ, ତାହା ଗୋଟିଏ ବିରାଟ ଜାତିକୁ କେତେଦୂର ଆଗେଇ ନେବ, କୁଆଡ଼େ ବା ନବ ?'' ତାଙ୍କ ମତରେ – ''ବେସିକ୍ ଏ ଦେଶରେ ଏକମାତ୍ର ସମାନ୍ତରାଳ ପଦ୍ଧତି ନୁହେଁ । ଟୋଲ୍, ଚାଟଶାଳୀ, ମଦ୍ରାସା, ଆଶ୍ରମ, ସେବାଶ୍ରମ, ବେସିକ୍, ନନ୍‌ବେସିକ୍, ପବ୍ଲିକ୍ – ଏପରି ପ୍ରାୟ ଏକ ଡଜନ ସମାନ୍ତରାଳ ଓ ପରସ୍ପର ବିରୋଧୀ ପଦ୍ଧତି ଏ ଦେଶରେ ଆଜି ପ୍ରଚଳିତ । ପୃଥିବୀର କୌଣସି ଦେଶରେ ଏପରି ଏକାଧାରରେ ମାରାତ୍ମକ ଓ ଉପହାସ୍ୟ ବ୍ୟବସ୍ଥା ନାହିଁ ।'' ମାନସିଂହ ବିଭିନ୍ନ ସମୟରେ ସରକାରଙ୍କ ଶିକ୍ଷା ବ୍ୟବସ୍ଥାକୁ ବିରୋଧ କରିଥିଲେ ଓ ସେଥିପାଇଁ ସରକାରଙ୍କ ନାନା ପ୍ରତିକ୍ରିୟାକୁ ସହିବାକୁ ବାଧ ହୋଇଥିଲେ । ତଥାପି ଶିକ୍ଷାବିତ୍ ମାନସିଂହ ମନ୍ତବ୍ୟ ପ୍ରକାଶ କରିବାରେ କେବେ କୁଣ୍ଠିତ ହୋଇନାହାନ୍ତି ।

ଜଣେ ଶିକ୍ଷାବିତ୍ ଭାବରେ ମାନସିଂହଙ୍କ ଦୂରଦୃଷ୍ଟି ପ୍ରଶଂସନୀୟ । ସାଧାରଣ ଡିଗ୍ରୀଧାରୀମାନଙ୍କର କର୍ମସଂସ୍ଥାନ ନ ହେଲେ, ଦେଶ ସଙ୍କଟର ସମ୍ମୁଖୀନ ହେବା ସ୍ୱାଭାବିକ ।

ଶିକ୍ଷିତ ବେକାରମାନେ, ସବୁ ଆନ୍ଦୋଳନର ପୁରୋଭାଗରେ ହିଁ ଦେଖାଦେଇଥାନ୍ତି । ଭାରତରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଶିକ୍ଷିତ ବେକାର ତିଆରିର ଏକ କାରଖାନା । ଏହି ସମସ୍ୟାର ସମାଧାନ ପାଇଁ, ଆମର ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ଶିକ୍ଷାକୁ ବହୁମୁଖୀ ଓ ଆବଶ୍ୟକତାଭିତ୍ତିକ କରିବା ଉଚିତ । ମାନସିଂହ ପୂର୍ବ ଗଡ଼ଜାତରେ ଶିକ୍ଷା ପରାମର୍ଶଦାତା ଥିବା ସମୟରେ 'ହିଂଦୋଳ ରିପୋର୍ଟ'ରେ ଲେଖିଥିଲେ : ''ପ୍ରତ୍ୟେକଟି ରାଜ୍ୟ କେବଳ ସେଇ ଏକ ଧରଣର କିତାପୀ ହାଇସ୍କୁଲର ସଂଖ୍ୟା ନ ବଢ଼ାଇ ଯଦି ପରସ୍ପରର ସହଯୋଗରେ ସମଗ୍ର ଗଡ଼ଜାତ ଅଞ୍ଚଳରେ ପ୍ରୟୋଜନ ଅନୁଯାୟୀ ଗୁଡ଼ିଏ ଟେକ୍‌ନିକାଲ୍ ଅନୁଷ୍ଠାନ ବସାଇଯାଆନ୍ତେ, ତେବେ କେତେ ଅଧିକ ମଙ୍ଗଳଦାୟକ ଯୋଜନା ତାହା ନ ହୁଅନ୍ତା ! ସବୁଠାରେ ସେହି କିତାପୀ ହାଇସ୍କୁଲ ନ ବସାଇ କାହିଁକି ସବୁ ଦରବାରର ଆଂଶିକ ସହାୟତାରେ, ହିଂଦୋଳରେ ଏକ କେନ୍ଦ୍ରୀୟ କୃଷି ବିଦ୍ୟାଳୟ. ବଉଦରେ ଏକ କେନ୍ଦ୍ରୀୟ ପଲିଟେକ୍‌ନିକାଲ୍ ସ୍କୁଲ, ତାଳଚେରରେ ଏକ କେନ୍ଦ୍ରୀୟ ମେଡ଼ିକାଲ ସ୍କୁଲ, ଗାଙ୍ଗପୁରରେ ଏକ କେନ୍ଦ୍ରୀୟ ପଶୁଚିକିତ୍ସା ବିଦ୍ୟାଳୟ ଏବଂ ଢେଙ୍କାନାଳରେ ଏକ କେନ୍ଦ୍ରୀୟ ଶିକ୍ଷକ ଟ୍ରେନିଂ ସ୍କୁଲ ବସାଯାଇ ନପାରନ୍ତା ? ମୋର ବିଶ୍ୱାସ, ଗଡ଼ଜାତ ରାଜ୍ୟଗୁଡ଼ିକ ବିରାଟ ପରିବର୍ତ୍ତନ ରାଜିର ଦ୍ୱାରଦେଶ ନିକଟରେ ଆଜି ଦଣ୍ଡାୟମାନ । ସମଗ୍ର ବିଶ୍ୱ ଏକ କେନ୍ଦ୍ରୀୟ ଶାସନ ଆଡ଼କୁ ଯାଉଛି ।'' ପ୍ରାକ୍‌ସ୍ୱାଧୀନତା କାଳରେ ମାନସିଂହ ଶିକ୍ଷା ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ଯେଉଁ ପରାମର୍ଶ ଦେଇଥିଲେ, ସ୍ୱାଧୀନତା ଲାଭ ପରେ ବି ଆମ୍ଭେମାନେ ସେହି ଅନୁପାତରେ ଆଗେଇଥିଲା ପରି ମନେହୁଏ ନାହିଁ ।

ତ୍ରୁଟିପୂର୍ଣ୍ଣ ଶିକ୍ଷା ବ୍ୟବସ୍ଥା ସହ ପ୍ରଚଳିତ ମୂଲ୍ୟାୟନ ବା ପରୀକ୍ଷା ପଦ୍ଧତି ସଂପୃକ୍ତ । 'ମୂଲ୍ୟାୟନ ତଥା ପରୀକ୍ଷା ବିଶ୍ୱବିଦ୍ୟାଳୟ ଉତ୍ତୀର୍ଣ୍ଣର ତଥା ଛାତ୍ରମାନଙ୍କର ବିଦ୍‌ବତ୍ତାର ମାପକାଠି ହୋଇଥିବାରୁ ଓ ଏଇ ପ୍ରଶଂସାପତ୍ରଗୁଡ଼ିକ ଶିକ୍ଷାଦାନ ସହ ସଂପୃକ୍ତ ନଥିବା ବୋର୍ଡ଼ ତଥା ବିଶ୍ୱବିଦ୍ୟାଳୟର ବ୍ୟୁରୋକ୍ରାଟମାନଙ୍କ ଦ୍ୱାରା ବିତରିତ ହେଉଥିବାରୁ, ମୂଲ୍ୟାୟନର ପଦ୍ଧତିଟି ଯାନ୍ତ୍ରିକ ହୋଇଉଠିଛି । ଛାତ୍ର, ଶିକ୍ଷକ, ପ୍ରଶ୍ନକର୍ତ୍ତା ଓ ପରୀକ୍ଷକ ଏମାନଙ୍କ ଭିତରେ ସହଯୋଗ ବା ବୁଝାମଣା ନାହିଁ, ଯାହାର ଫଳ ହୋଇଛି ଭୟଙ୍କର ଦୁର୍ନୀତି । ବ୍ୟୁରୋକ୍ରାସୀ ସହିତ ସଂପୃକ୍ତ ହୋଇଥିବାରୁ ଶିକ୍ଷାବିଭାଗର ସର୍ବାଧିକ ଦୁର୍ନୀତି ଏହି ପରୀକ୍ଷା ସଂକ୍ରାନ୍ତରେ ହିଁ ପରିଦୃଷ୍ଟ । ଛାତ୍ର ଶିକ୍ଷକ, ଆଲୋକ ଦ୍ୱାରା ଆକର୍ଷିତ ହେଉଥିବା କୀଟଭଳି, ଏ ଦୁର୍ନୀତି ଯଜ୍ଞରେ ବଳିପଡ଼ନ୍ତି । ମାନସିଂହ ନିଜସ୍ୱ ଦୃଷ୍ଟିକୋଣରୁ ଏହି ପରୀକ୍ଷା ପଦ୍ଧତିର ଦୋଷଗୁଣ ନିର୍ଣ୍ଣୟ କରିଛନ୍ତି ।

ସେ ସମୟରେ ଶିକ୍ଷା ସଂସ୍କାର ସଂପର୍କରେ ମାନସିଂହ ଯେଉଁ କେତୋଟି ପ୍ରସ୍ତାବ ଦେଇଥିଲେ, ତାହାର ଉପଯୋଗିତା ଏବେ ମଧ ଥିବାରୁ ସେ ପ୍ରସ୍ତାବଗୁଡ଼ିକ ମଧରୁ କେତେଗୋଟିକୁ ନିମ୍ନରେ ଉଦ୍ଧାର କରାଗଲା –

୧. ପ୍ରଥମ ଓ ପ୍ରଧାନ ଶୈକ୍ଷିକ ବିପ୍ଳବ ହେଲା : ସମଗ୍ର ଜାତି ପାଇଁ କେବଳ ଗୋଟିଏ ମାତ୍ର ଶିକ୍ଷା ପଦ୍ଧତିର ପ୍ରଚଳନ । ହାକିମଙ୍କ ପୁଅ ଗୋଟିଏ ରୀତିରେ, ପୁଣି ଆଦିବାସୀଙ୍କ ପିଲେ ଆଉ ଗୋଟିଏ ରୀତିରେ ପାଠ ପଢ଼ିବେ, ଏହା କୌଣସି ସଭ୍ୟ ଜାତି ପକ୍ଷରେ ସୁନ୍ଦର ନୁହେଁ । ଏହା ପୁଣି ଏକ ପକ୍ଷରେ ଭୀଷଣ ଅପବ୍ୟୟଶୀଳ ଓ ଅନ୍ୟ ପକ୍ଷରେ ଏକ ମହାଜାତିର ଗଠନରେ ସାହାଯ୍ୟ କରିବା ପରିବର୍ତ୍ତେ ଚିରକାଳ ଏହା ଜାତିକୁ ଖଣ୍ଡ ଖଣ୍ଡ କରି ରଖିବ ।

୨. ବିଦେଶୀ ଅମଳର ସରକାରୀ ଓ ବେସରକାରୀ ବୋଲି ଦୁଇଟି ବିପରୀତାତ୍ମକ ଯେଉଁ ଭାବ ଦେଶରେ ଥିଲା, ଅନ୍ତତଃ ଶିକ୍ଷା କ୍ଷେତ୍ରରୁ ତାହାର ମୂଳୋତ୍ପାଟନ ଏକାନ୍ତ କାମ୍ୟ । ଆମକୁ ଇଂଲଣ୍ଡ ଓ ଆମେରିକା ପରି ସବୁ ଶିକ୍ଷାନୁଷ୍ଠାନକୁ ଲୋକଙ୍କ ହାତରେ ଛାଡ଼ି ଦେବାକୁ ହେବ, ଯାହାକି ଡିମୋକ୍ରାସୀ ବା ଗଣତନ୍ତ୍ର ଭାବର ଅଭିବର୍ଦ୍ଧନ ପାଇଁ ଏକାନ୍ତ ଦରକାର । ନଚେତ କମ୍ୟୁନିଷ୍ଟ ଶାସିତ ଦେଶ ପରି ସବୁ ଶିକ୍ଷାନୁଷ୍ଠାନକୁ ଏକାନ୍ତରେ ସରକାରୀ କରିବାକୁ ହେବ । ଏହା କିନ୍ତୁ ପଥ ତିଆରି କରିଦେବ ଭବିଷ୍ୟତ ଏକଚ୍ଛତ୍ରବାଦ ପାଇଁ ।

୩. ''ଯଦି ଶିକ୍ଷାର ପ୍ରକୃତ ବିକାଶ ଆମେ ଚାହୁଁ, ତେବେ ଆମର ଶିକ୍ଷକକୁ ତା' ସ୍କୁଲ ରୂପକ ଛୋଟ ରାଜ୍ୟରେ ପୂରା ସ୍ୱାଧୀନତା ଦେବାକୁ ହେବ । ଡି.ପି.ଆଇ. ବା ଇନ୍ସ୍‌ପେକ୍ଟର କେବଳ ରହିବେ ତାକୁ ଅର୍ଥ ଓ ପରାମର୍ଶ ସାହାଯ୍ୟ ଦେବାକୁ, ଡରେଇବାକୁ ନୁହେଁ ।''

୪. ପ୍ରତ୍ୟେକ ଦେଶର ଶିକ୍ଷା ବ୍ୟବସ୍ଥା ଏକାନ୍ତରେ ହେବ ମଧ୍ୟ ଜାତୀୟ ବ୍ୟବସ୍ଥା । ଏହାର ଦୁଇଟି ଦିଗ । ଗୋଟିଏ ହେଉଛି, ଏକ ଜାତିର ସଂସ୍କୃତିର ଯାହା ଉତ୍କୃଷ୍ଟାଂଶ ତାହାକୁ ବଞ୍ଚେଇରଖିବାର ଦାୟିତ୍ୱ ଏକାନ୍ତରେ ସେ ଦେଶର ସ୍କୁଲଗୁଡ଼ିକର । ଜାତୀୟ ଶିକ୍ଷା ପଦ୍ଧତିର ଆଉ ଏକ ଦିଗ ହେଲା, ଆମ ଜାତିର ସଂସ୍କୃତିର ଯାହା ଦୋଷ ବା ଅଭାବ ରହିଛି, ଆମ ସ୍କୁଲ ଜରିଆରେ ଆଗାମୀ ପୁରୁଷମାନଙ୍କଠାରେ ଯେପରି ସେ ସବୁ ଦେଖା ନ ଯାଏ, ତା'ର ବ୍ୟବସ୍ଥା ।

୫. ସମଗ୍ର ଦେଶର ଶିକ୍ଷା ବ୍ୟବସ୍ଥାକୁ ଏକମୁଖୀ କରି ଗୋଟିଏ ମହାନ୍ ଆଦର୍ଶରେ ଗଢ଼ିବା ପାଇଁ, ଦେଶରେ ଏକାନ୍ତ ଆବଶ୍ୟକ ସର୍ବଶ୍ରେଣୀର ଶିକ୍ଷାବିତ୍ ଓ ଚିନ୍ତାଶୀଳ ଲୋକଙ୍କର ଏକ ମିଳନ ସଂସ୍ଥା, ଯେଉଁଠାରେ ସମସ୍ୟାଗୁଡ଼ିକ ନିର୍ଭିକ ଓ ନିରପେକ୍ଷ ଭାବରେ ବିଚାର ହୋଇପାରିବ ଓ କର୍ତ୍ତୃପକ୍ଷ ଯାହାର ବିଚାରକୁ ସମ୍ମାନ ଦେବେ ।

ଭାରତ ସ୍ୱାଧୀନତା ପାଇଲା ପରେ, ଉତ୍କୋଚ ତଥା ସାମାନ୍ୟ ସୁବିଧା ହାସଲ କରିବା ପାଇଁ ଅନ୍ୟର ଦ୍ୱାରସ୍ଥ ହେବା ବା ଚାପ ପ୍ରୟୋଗ କରିବା ନୂତନ ଭାବରେ ଜାତୀୟ ସଂସ୍କୃତିରେ ପରିଣତ ହୋଇଛି । ପରୀକ୍ଷା ପରେ, ପରୀକ୍ଷକମାନେ କେବଳ ଏହି ଚାପର ଶରବ୍ୟ ହେଉନାହାନ୍ତି, କ୍ଲାସ ବା ଡିଗ୍ରୀ ବାଣ୍ଟିବାରେ ତଥାକଥିତ ଶିକ୍ଷାବିତ୍‌ମାନେ ପରସ୍ପର ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା କରୁଛନ୍ତି । ମାନସିଂହ ଏହି ବୀଭତ୍ସ ପ୍ରକ୍ରିୟା ବିରୋଧରେ ବିଷୋଦ୍‌ଗାର କରି ଲେଖିଛନ୍ତି : ''ବ୍ରିଟିଶ୍ ରାଜତ୍ୱରେ ଯେଉଁମାନେ ବଢ଼ିଥିଲେ, ସେମାନେ ଏ ବୀଭତ୍ସତା କଳ୍ପନା

କରିପାରିବେ ନାହିଁ । ଇଂଲଣ୍ଡର ନୀଚତମ ନାଗରିକ ମଧ୍ୟ ପରୀକ୍ଷା ଉପରେ 'ଧରାଧରି' କଳ୍ପନା କରିପାରିବେନାହିଁ ଏବଂ କୌଣସି ଦେଶରେ ଏହା ହୋଇପାରେ ବୋଲି ମଧ୍ୟ ବିଶ୍ୱାସ ଯିବେନି । ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ ପିଏଚ୍.ଡି. ଓ ଫାଷ୍ଟ କ୍ଲାସ୍ ସୃଷ୍ଟି କରିବାରେ ବିଭିନ୍ନ ଡିପାର୍ଟମେଣ୍ଟର ପ୍ରଫେସରମାନଙ୍କର ଏବେ ପ୍ରତିଯୋଗିତା ଚାଲିଛି ବୋଲି କୁହାଯାଉଛି ।

ପରୀକ୍ଷା ପଦ୍ଧତି ପରେ ମାନସିଂହଙ୍କ ସମାଲୋଚନାର ଶରବ୍ୟ ହୋଇଛି ସିଲାବସ୍ ଓ ପାଠ୍ୟପୁସ୍ତକ ନିର୍ବାଚନ । ପାଠ୍ୟପୁସ୍ତକ ନିୟନ୍ତ୍ରଣ ଔପନିବେଶିକ ଶିକ୍ଷା ନୀତିର ଫଳ । ମାନସିଂହ ଏ ସମ୍ପର୍କରେ ଦୃଷ୍ଟି ଆକର୍ଷଣ କରି କହନ୍ତି : ''ସାମ୍ରାଜ୍ୟ ଶାସକ ଭାବରେ ତାଙ୍କର (ଇଂରେଜମାନଙ୍କର) ନିତାନ୍ତ ଆବଶ୍ୟକ ଥିଲା ପାଠ୍ୟପୁସ୍ତକ ନିୟନ୍ତ୍ରଣ କରିବା । କାରଣ ଗୋଟିଏ ଜାତିର ଶିକ୍ଷକମାନେ ପାଠ୍ୟ ପୁସ୍ତକ କରିଆରେ ସେ ଜାତିର ନୂତନ ବଂଶଧରମାନଙ୍କୁ କ'ଣ ନ ଶିଖାଇପାରନ୍ତି ଓ କିପରି ଗଢ଼ି ନପାରନ୍ତି ? ନିୟନ୍ତ୍ରିତ ନ ହେଲେ ପରାଧୀନ ଜାତିର ଶିକ୍ଷକମାନେ ଟେକ୍ସ୍ଟ ବୁକ୍ ଦେଇ ପ୍ରତି ସ୍କୁଲରେ ବିଦ୍ରୋହୀ ଓ ବିପ୍ଳବୀ ଗଢ଼ିଚାଲିବେ, ଅକ୍ଳେଶରେ । ଚତୁର କମ୍ୟୁନିଷ୍ଟମାନେ ଏଇଥିପାଇଁ ଯେଉଁଠି ଶାସନ କ୍ଷମତାକୁ ଆସିଛନ୍ତି, ତାଙ୍କର ପ୍ରଥମ କାମ ହେଉଛି ଟେକ୍ସ୍ଟ ବୁକ୍ କଣ୍ଟ୍ରୋଲ୍, ଠିକ୍ ନିଜ ଆଦର୍ଶରେ ନୂତନ ବଂଶଧରଙ୍କୁ ଗଢ଼ିନେବା ପାଇଁ, ସମସ୍ତ ପାଠ୍ୟପୁସ୍ତକର କଠୋର ନିୟନ୍ତ୍ରଣ । ଇଂରେଜ ଭାରତରେ ପାଠ୍ୟପୁସ୍ତକଯାକ ଡି.ପି.ଆଇ.ର ନିୟନ୍ତ୍ରଣରେ ରଖିଥିଲେ, ଯାହାକି ତାଙ୍କ ଇଂଲଣ୍ଡରେ ଘଟିଥିଲେ ସେଠି ସାଙ୍ଗେ ସାଙ୍ଗେ ବିପ୍ଳବ ହେବା ନିଶ୍ଚିତ । ପରାଧୀନ ଭାରତରେ ପାଠ୍ୟପୁସ୍ତକର ନିୟନ୍ତ୍ରଣ ହୋଇଥିଲା, ଇଂରେଜମାନଙ୍କ ସ୍ୱାର୍ଥ ପାଇଁ ଓ ତଥାକଥିତ ସ୍ୱାଧୀନ ଭାରତରେ ଶିକ୍ଷା ନିୟନ୍ତ୍ରିତ ହୋଇଛି କ୍ଷମତାସୀନ ରାଜନୀତିଜ୍ଞ, ବ୍ୟୁରୋକ୍ରାଟମାନଙ୍କ ସ୍ୱାର୍ଥପାଇଁ ।

ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଓ ବିଧି ସମ୍ପର୍କରେ ଜୀବନସାରା ସ୍ୱର ଉତ୍ତୋଳନ କରି ଆସିଥିବା ଡକ୍ଟର ମାୟାଧର ମାନସିଂହ ଜୀବନର ଶେଷ ପର୍ଯ୍ୟାୟ ଆଡ଼କୁ ନିଜର ମତାମତ ପରିବର୍ତ୍ତନ କରିଥିବାର ଦେଖାଯାଏ । 'ପ୍ରଚଳିତ ଶିକ୍ଷା ବ୍ୟବସ୍ଥା କି ସତ୍ୟରେ ତ୍ରୁଟିପୂର୍ଣ୍ଣ' ଶୀର୍ଷକ ଏକ ଦୀର୍ଘ ପ୍ରବନ୍ଧରେ ସେ ଦେଖାଇଛନ୍ତି ଯେ, ଶିକ୍ଷା ବ୍ୟବସ୍ଥା ନୁହେଁ ତା'ର ପ୍ରୟୋଗ ହିଁ ଭାରତୀୟ ଶିକ୍ଷାଧାରାର ଅଧୋଗତି ପାଇଁ ଦାୟୀ । ସଂପୃକ୍ତ ପ୍ରବନ୍ଧରେ ସେ ଦେଇଥିବା ମତାମତ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ସେଗୁଡ଼ିକ ଅବତାରଣା କରାଯାଉଛି । ସେ କୁହନ୍ତି : ଭାରତର ପ୍ରଚଳିତ ଶିକ୍ଷା ବ୍ୟବସ୍ଥାକୁ 'ତ୍ରୁଟିପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ' ବୋଲି, ବେଳ-ଅବେଳ, ସ୍ଥାନ-ଅସ୍ଥାନ, ସର୍ବତ୍ର ଓ ସର୍ବଦା ଚିତ୍କାର କରି ନିନ୍ଦା କରିବା, ଏବେ ଏ ଦେଶରେ ଏକ ଧରାବନ୍ଧା ଗତ ହୋଇଗଲା ପରି ଲାଗୁଛି । ପୂର୍ବେ ଖଦଡ଼ ପରିଧାନକାରି, ରାଜନୈତିକମାନେ ତ ଏ ବ୍ୟବସ୍ଥାକୁ ଶୋଷକ ଇଂରେଜମାନଙ୍କର ଅପକୀର୍ତ୍ତି ରୂପେ ଇତିହାସର ସମସ୍ତ ସତ୍ୟକୁ ପଦଦଳିତ କରି, ଏପରି ସବୁ ବର୍ଣ୍ଣନା କରି ଜନତାଠୁଁ ଶସ୍ତା ବାହାବା ପାଉଥିଲେ । କିନ୍ତୁ

ଲେଖକ ଘୋର ପରିତାପର ସହିତ ଲକ୍ଷ୍ୟ କରୁଛି ଯେ, ଏବେ ଶିକ୍ଷା ବିଭାଗୀୟ ତଥାକଥିତ କେତେକ ଶିକ୍ଷାବିତ୍ ମଧ୍ୟ ସେହି ଗଡ୍ଡାଳିକା ପ୍ରବାହରେ ଯୋଗଦେଲେଣି । ଏମାନେ ମଧ୍ୟ ପ୍ରକାଶ୍ୟରେ କହୁଛନ୍ତି ଯେ, ଏ ଶିକ୍ଷା ବ୍ୟବସ୍ଥା 'ତ୍ରୁଟିପୂର୍ଣ୍ଣ' । ଯଦି ଏହା ଏପରି ତ୍ରୁଟିପୂର୍ଣ୍ଣ, ତେବେ କେଉଁ ପ୍ରତିଭା ବଳରେ ତମେ ନିଜେ ଏ ପଦ-ପଦବୀକୁ ଆସିପାରିଛ, ସେ ପ୍ରଶ୍ନ ନିଜକୁ ପଚାରୁନା କାହିଁକି ?''

ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ମାନସିଂହ କହନ୍ତି :

୧. ପ୍ରଚଳିତ ଶିକ୍ଷାବ୍ୟବସ୍ଥାରେ ଆଧୁନିକ ଭାରତର ବିଶିଷ୍ଟ ମନୀଷୀମାନେ ଶିକ୍ଷିତ ହୋଇ ଭାରତର ପ୍ରାକ୍-ସ୍ୱାଧୀନତା ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ନାନା ଉନ୍ନତି ସାଧନ କରିପାରିଛନ୍ତି ।

୨. ଏହି ଶିକ୍ଷା ଅଭାବରୁ ପଠାଣି ସାଆନ୍ତଙ୍କ ପରି ଜ୍ଞାନତରୁ ମଉଳିଗଲା । ତାଙ୍କର ଉପଯୁକ୍ତ ବିକାଶ ହୋଇପାରିଲା ନାହିଁ ।

୩. ଭାରତୀୟ ଉପମହାଦେଶରେ, ଏହି ଶିକ୍ଷା ଆଣିଦେଇଛି ସାତହଜାର ବର୍ଷ ପରେ ପ୍ରଥମ କରି ଜାତୀୟ ଚେତନା, ଏକତା ଓ ସଂହତି ।

୪. ଏହା ଆମ ସ୍ୱାଧୀନତାର ମୂଳ ଭିତ୍ତି ।

୫. ଏହି ଶିକ୍ଷା ଦେଇଛି, ରମଣ, ବୋଷ, ତିଳକ, ଗୋଖିଲେ, ଲାଲାଜୀ, ଚିତ୍ତରଂଜନ, ମାଲବ୍ୟଜୀ, ମୋତିଲାଲ, ଗାନ୍ଧୀ, ଜବାହାର ଓ ଏହି ବ୍ୟବସ୍ଥା ଆଣିଦେଇଛି ଭାରତୀୟ ଭାଷାମାନଙ୍କର ରେନେସାଁ ।

ମାନସିଂହ ମନ୍ତବ୍ୟ ପ୍ରଦାନ କରିଛନ୍ତି ଯେ, ଆମ୍ଭେମାନେ ଏହି ଶିକ୍ଷା ବ୍ୟବସ୍ଥାକୁ 'ତ୍ରୁଟିପୂର୍ଣ୍ଣ' ବୋଲି ହଟାଇବା ପାଇଁ ଧ୍ୱନି ଦେଉଥିଲେ ମଧ୍ୟ ଏହି ବ୍ୟବସ୍ଥାର ବିକଳ୍ପ ବ୍ୟବସ୍ଥା ଦେଇପାରିନାହୁଁ । ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ବିରୋଧରେ ସାଧାରଣତଃ ତିନିଗୋଟି ଅଭିଯୋଗ ଆସିଥାଏ । ସେଗୁଡ଼ିକ ହେଲା –

(କ) ସାମ୍ରାଜ୍ୟବାଦୀ ବିଦେଶ ଇଂରେଜ-ଶାସକମାନେ ଆମକୁ ଏକ କିରାଣୀର ଜାତି ରୂପେ ଗଢ଼ିବା ପାଇଁ ଏ ଶିକ୍ଷା ବ୍ୟବସ୍ଥା କରିଯାଇଥିଲେ । ତରୁଣ ସ୍ୱାଧୀନ ଭାରତ ତାକୁ ଫିଙ୍ଗି ନିଜର ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ କରିବା ଉଚିତ ।

(ଖ) କଲେଜ ସ୍ତରରେ ଇଂରାଜୀ ମାଧ୍ୟମକୁ ଚାଲୁ ରଖିବା ଅସହ୍ୟ ବ୍ୟାପାର, ଆଂଚଳିକ ଭାଷାମାନଙ୍କୁ ମାଧ୍ୟମକରି ନୂତନ ବ୍ୟବସ୍ଥା ହେଉ ।

(ଗ) ଏ ଶିକ୍ଷା ବ୍ୟବସ୍ଥା ଦେଶରେ ଗୁରୁତର ଶିକ୍ଷିତ ବେକାର ସମସ୍ୟା ସୃଷ୍ଟି କରୁଛି ।

ଉପରୋକ୍ତ ଅଭିଯୋଗଗୁଡ଼ିକର ଉତ୍ତର ଦେବାକୁ ଯାଇ ମାନସିଂହ କହିଛନ୍ତି –

(କ) ଏ ଶିକ୍ଷା ବ୍ୟବସ୍ଥାକୁ ଇଂରେଜମାନେ ଆଦୌ ଭାରତୀୟମାନଙ୍କ ଉପରେ ଲଦିଦେଇନଥିଲେ । ରାଜା ରାମମୋହନ ରାୟ ଓ ତାଙ୍କ ସମସାମୟିକମାନେ ନିଜ ନିଜ ଚେଷ୍ଟାରେ ହିଁ ଇଂଲିଶ୍-ଶିକ୍ଷା ପ୍ରଚଳନ ପାଇଁ ଚେଷ୍ଟା କରିଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀ-

ସରକାର ନିଃସଂଦେହ ଭାବରେ ଇଣ୍ଡିଆନ୍‌ମାନଙ୍କୁ ଇଂରାଜୀ ଶିଖାଇବା ବିରୁଦ୍ଧରେ ଥିଲେ । ମାନସିଂହଙ୍କ ଭାଷାରେ – ''ତେଣୁ ବିଦେଶୀ ଇଂରେଜୀ ଶାସକେ ଏହି ଶିକ୍ଷା ବ୍ୟବସ୍ଥାକୁ ଆମ ଉପରେ ଜବରଦସ୍ତ ଲଦିଦେଇ ଯାଇଛନ୍ତି ବୋଲି କହିବାକୁ ଯିବା ସତରେ ଏକ ଐତିହାସିକ ସତ୍ୟର ଅକାରଣ ହତ୍ୟା ଛଡ଼ା ଆଉ କିଛି ନୋହିପାରେ । ପୁନଶ୍ଚ, ମାନସିଂହ କହନ୍ତି, ''ଇଂରେଜମାନଙ୍କର ଆମକୁ ଏକ କିରାଣୀର ଜାତି କରି ଗଢ଼ିବାର ଉଦ୍ଦେଶ୍ୟ ଯଦି ଥିଲା, ତେବେ ଗୋଖ୍‌ଲେ, ମାଲବ୍ୟ, ମୋତିଲାଲ୍, ଚିତ୍ତରଂଜନ, ତିଳକ, ଅରବିନ୍ଦ, ସୁଭାଷ, ରମଣ ଓ ଜଗଦୀଶ ଆଦି ବିରାଟ ଧୁରଂଧର ସବୁ କିପରି ବାହାରିଲେ ଏହି ଶିକ୍ଷା ପଦ୍ଧତିରୁ ?''

(ଖ) ଦ୍ୱିତୀୟ ଅଭିଯୋଗର ଉତ୍ତରରେ ମାନସିଂହ କହନ୍ତି – କଲେଜ ସ୍ତରରେ ଇଂରାଜୀକୁ ତଡ଼ି ଆଞ୍ଚଳିକ ଭାଷା ମାଧ୍ୟମ ଭାବରେ ପ୍ରଚଳନ କରିବା ଆଦୌ ଶୁଭଙ୍କର ନୁହେଁ । ପ୍ରାଚ୍ୟ ଭାଷାବିତ୍ ରାଜା ରାମମୋହନ ସେତେବେଳେ କହିଥିଲେ – ''ଭାରତ ଯଦି ସପ୍ତଦଶ ଶତାବ୍ଦୀର ଘୋର ଅଜ୍ଞାନ ଅଂଧକାର ଭିତରେ ବୁଡ଼ି ରହିବାକୁ ଚାହେଁ, ତେବେ ହିଁ ସେ ସଂସ୍କୃତ ବା ଆରବୀ ଗ୍ରହଣ କରୁ । କିନ୍ତୁ ଭାରତ ଯଦି ସଭ୍ୟ ଓ ଅଗ୍ରଗାମୀ ହେବାକୁ ଚାହେଁ, ତେବେ ଗ୍ରହଣ କରୁ ଇଂରାଜୀ ଭାଷା ଓ ଇଉରୋପୀୟ ଜ୍ଞାନ-ବିଜ୍ଞାନ । ତେଣୁ ଶୈକ୍ଷିକ, ବୌଦ୍ଧିକ, ସାଂସ୍କୃତିକ, ସବୁ ଦିଗରୁ ଆଲୋଚନା କଲେ ଇଂରାଜୀ ତାଡ଼ନ ଏକ ଚ଼ରମ ଆତ୍ମଘାତୀ ଯୋଜନା ବୋଲି ମନେ କରିବାକୁ ହେବ । ଏ ଅତ୍ୟାଚାର ପୁନର୍ବାର ଏ ଦେଶକୁ ଅଜ୍ଞାନ-ଅନ୍ଧକାରରେ ବୁଡ଼ାଇ ମାରିବ ।

ଏ ସମ୍ପର୍କରେ ଡକ୍ଟର ମାନସିଂହଙ୍କ ମନ୍ତବ୍ୟ ସ୍ୱଷ୍ଟ ତଥା ନିରପେକ୍ଷ ଥିବା ପରି ମନେହୁଏନାହିଁ । କାରଣ, ରାଜା ରାମମୋହନ, ରାଧାକାନ୍ତ ଦେବ ତଥା ମ୍ୟାକ୍‌ଲେ ଓ ଡେରେଜିଓଙ୍କ ଭଳି ଯେଉଁମାନେ ଉଦାରପନ୍ଥୀ ଶିକ୍ଷା ଭାରତରେ ପ୍ରଚଳନ କଲେ, ସେମାନେ ସମସାମୟିକ କାଳରେ ଇଂରାଜୀ ଭାଷାର ଗୁରୁତ୍ୱ ଉପରେ ଆଲୋକପାତ କରିଥିଲେ ବି, ମାତୃଭାଷା ମାଧ୍ୟମରେ ଶିକ୍ଷାଦାନକୁ ଅଧିକ ପସନ୍ଦ କରିଥିଲେ । ଡେଭିଡ୍ ହେୟାର୍ ମାତୃଭାଷାରେ ଶିକ୍ଷାଦାନ ପାଇଁ, ସ୍କୁଲ୍ ବୁକ୍ ସୋସାଇଟି ବସାଇଥିଲେ । ମ୍ୟାକ୍‌ଲେ ଆଶା କରିଥିଲେ ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ଜୀବନର ସଂସ୍ରବ ଫଳରେ ଭାରତର ଆଞ୍ଚଳିକ ଭାଷାଗୁଡ଼ିକ ମଧ୍ୟରେ ଏକ ନୂଆ ଉଦ୍‌ବୋଧ ଦେଖାଦେବ ଏବଂ ଏହି ଉଦ୍‌ବୋଧ ଭାରତୀୟ ଜନଗଣଙ୍କୁ ଆଧୁନିକ ଶିକ୍ଷାର ଦ୍ୱାରଦେଶରେ ପହଞ୍ଚାଇବ । ସେମାନଙ୍କର ସମସ୍ତ ବିଷୋଦ୍‌ଗାର, ସଂସ୍କୃତ, ଆରବୀ ଓ ଫାର୍ଶୀ ବିରୋଧରେ ଥିଲା– ବଙ୍ଗଳା, ଓଡ଼ିଆ, ତେଲୁଗୁ, ତାମିଲ, ହିନ୍ଦୀ, ଗୁଜୁରାତି ପ୍ରଭୃତି ଭାଷା ବିରୋଧରେ ନଥିଲା । ଶିକ୍ଷାଦାନ ମୁଖ୍ୟତଃ ଏକ ଆଳାପ । ଆଳାପ ମଧ୍ୟରେ ସେତିକି ବେଳେ ଭାବ ବିକଶିତ ହୁଏ, ଯେତେବେଳେ ତାହା ଅନ୍ତରର, ମନର ଭାଷା ଥାଏ । ମାତୃଭାଷା ବ୍ୟତିରେକ ଅନ୍ୟ ମାଧ୍ୟମରେ ଶିକ୍ଷା ଅପଶିକ୍ଷାର ନିକଟବର୍ତ୍ତୀ, ଏହା ଅଧିକାଂଶ ମନୋବିଜ୍ଞାନୀଙ୍କର ମତ । ଡକ୍ଟର ମାନସିଂହଙ୍କର ଇଂରାଜୀ ଭାଷା ପ୍ରତି ଅତ୍ୟଧିକ ଶ୍ରଦ୍ଧା ଏହି ଦିଗଟି ପ୍ରତି ତାଙ୍କୁ ଅଂଧକାରରେ ରହିବାକୁ ବାଧ କରିଛି ।

(ଗ) ତୃତୀୟ ଅଭିଯୋଗର ଉତ୍ତରରେ ମାନସିଂହ କହନ୍ତି – ଶିଳ୍ପବିପ୍ଳବ ପରଠାରୁ ହିଁ ମନୁଷ୍ୟ ବେକାର ହେବା ଏକ ପୃଥିବୀମୟ ସମସ୍ୟା ହୋଇଉଠିଛି । ଏଥିରେ ଶିକ୍ଷିତ ବା ଅଶିକ୍ଷିତରେ ବାଛ-ବିଚାର ଏକାନ୍ତ ଅବାନ୍ତର । ପୃଥିବୀର ସବୁ ଦେଶରେ ବେକାର ଅଛନ୍ତି । ଆମ ଦେଶରେ ନିରକ୍ଷର ଲୋକ ମଧ୍ୟ ବେକାର ଅଛନ୍ତି, ମାତ୍ର ଆମେ କେବଳ ରାଜନୈତିକ ପ୍ରୋପାଗଣ୍ଡା ନିମନ୍ତେ ଶିକ୍ଷିତ ବେକାର ଧ୍ୱନି ଦେଇ ଚାଲିଛୁ । ଶିକ୍ଷିତ ବେକାର ସୃଷ୍ଟି ହେବାର କାରଣ ନିର୍ଦ୍ଦେଶ କରି ମାନସିଂହ କହନ୍ତି – ସ୍ୱାଧୀନତା ପରେ ଆମେ ଅନ୍ଧ ଭାବରେ ଓ ସଂପୂର୍ଣ୍ଣ ଆଞ୍ଚଳିକ ଭାବ ପ୍ରଣୋଦିତ ହୋଇ ଗୋଟାକ ପରେ ଗୋଟାଏ ମେଡ଼ିକାଲ କଲେଜ ଓ ଇଂଜିନିୟରିଂ କଲେଜ ସହିତ ଗ୍ରାମେ ଗ୍ରାମେ ସାଧାରଣ କଲେଜ ଓ ହାଇସ୍କୁଲ ଯେ ବସାଇ ଚାଲିଲେ ଏବଂ ଶିକ୍ଷାର ସକଳ ମର୍ଯ୍ୟାଦା ଓ ମାନଦଣ୍ଡକୁ ଧୂଳିସାତ୍ କରି ଆମେ ଯେପରି ଭାବରେ ବିଦ୍ୟା-ବା କୌଣସି କର୍ମପାଇଁ ଯୋଗ୍ୟତାଶୂନ୍ୟ ଅଥଚ କେବଳ କପି ଧରାଧରି ଗୁଣ୍ଡାମି ନିପୁଣ କାହାଣ କାହାଣ ତଥାକଥିତ 'ଶିକ୍ଷିତ' ଯୁବକ ବାହାର କରି ଚାଲିଛେ, ସେଥିରେ କେଉଁ ରାଷ୍ଟ୍ର ଏ ପ୍ରକାର କଥାକଥିତ 'ଶିକ୍ଷିତ' ଜନତାକୁ ଧଳା-କଳା-ଚାକିରୀ ଯୋଗାଇପାରିବ ।

ତା' ଛଡ଼ା କର୍ତ୍ତୃପକ୍ଷଙ୍କର ପାଶ୍ର ମାନଦଣ୍ଡ ସବୁକୁ କୋହଳ କରିବା ଏବଂ ପିଲାଙ୍କର ପାଠ ନପଢ଼ି କପି ଧରାଧରି ଦେଇ ସାର୍ଟିଫିକେଟ ଯୋଗାଡ଼ କରିବା 'ଶିକ୍ଷିତ' ବେକାର ସମସ୍ୟାର ଏକ ପ୍ରଧାନ କାରଣ ।

ମାନସିଂହଙ୍କ ମତରେ ''ରାଜନୈତିକମାନଙ୍କର, ଆମର ଶିକ୍ଷା ବିଭାଗ ଓ ଶିକ୍ଷାନୁଷ୍ଠାନମାନଙ୍କରେ ଏହି ପ୍ରକାର ସଂପୂର୍ଣ୍ଣ ଅନୁଚିତ ବାହୁ ପ୍ରବେଶହିଁ ଆଜି ଶିକ୍ଷା ବିଭାଗର ସକଳ ତ୍ରୁଟି ଓ ଅବ୍ୟବସ୍ଥା ପାଇଁ ଦାୟୀ ।'' ପୁନଶ୍ଚ ସେ କହନ୍ତି ଯେ, ''ସ୍କୁଲ ବା କଲେଜର ହେଡ୍ ମାଷ୍ଟର ବା ପ୍ରିନ୍ସିପାଲ୍‌ଙ୍କ ପ୍ରତି ଛାତ୍ରମାନଙ୍କର ସଂଭ୍ରମ ନ ରହିବାର କାରଣ ରାଜନୈତିକ ନେତାମାନେ ।'' ମାନସିଂହଙ୍କ ଭାଷାରେ – ''ପିଲେ ଯେତେବେଳେ ଜାଣିଲେଣି ଯେ ଏ ରାଜ୍ୟରେ ହେଡ୍‌ମାଷ୍ଟର ପ୍ରିନ୍ସିପାଲ୍ କେବଳ ଏକ ଏକ ପଙ୍ଗୁ ଜଗନ୍ନାଥ, ଆଉ ଅସଲ ମା-ବାପ ହେଉଛନ୍ତି ଶିକ୍ଷାମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ, ସେତେବେଳେ ସ୍କୁଲ କଲେଜମାନଙ୍କରେ ହେଡ୍ ମାଷ୍ଟର ପ୍ରିନ୍ସିପାଲ୍‌ମାନେ ଆନୁଷ୍ଠାନିକ ଡିସିପ୍ଲିନ୍ ପାଇଁ ଦାୟୀ ହେବେ କିପରି ?

ଆମ ଦେଶର ଶିକ୍ଷା କ୍ଷେତ୍ରରେ ଯେଉଁ ତ୍ରୁଟି ବିଚ୍ୟୁତି ଦେଖାଦେଇଛି ତା'ର ସମାଧାନ ପାଇଁ ଶିକ୍ଷାବିତ୍ ମାନସିଂହ ପାଞ୍ଚୋଟି ଉପାୟ ସ୍ଥିରକରିଛନ୍ତି । ସେ ପାଞ୍ଚଗୋଟି ମତ ଶିକ୍ଷା ବ୍ୟବସ୍ଥା ସଂସ୍କାର ଦିଗରେ ଅନେକ ସହାୟତା କରିପାରନ୍ତା, ମାତ୍ର ଭାରତର ସାଂପ୍ରତିକ ପରିସ୍ଥିତିରେ, ଯେତେବେଳେ ଦିଅଁଦେବତାମାନେ ବି ରାଜନୀତିରେ ନିୟନ୍ତ୍ରିତ ହେଉଛନ୍ତି, ଆଦର୍ଶ ଶବ୍ଦ କେବଳ ଅଭିଧାନରେ ରହିବା ପାଇଁ ଅଛି, ସାମାଜିକ ଅବସ୍ଥା ଯେତେବେଳେ ତଳକୁ ତଳକୁ ଯାଉଛି, ମାନସିଂହଙ୍କ ପ୍ରସ୍ତାବଗୁଡ଼ିକ କେତେ କାମରେ ଲାଗିବ ବା କାର୍ଯ୍ୟକାରୀ

ହୋଇପାରିବ ବିଚାର କରିବାର କଥା । କେବଳ ଜୀବନସାରା ଜାତିପାଇଁ କାମ କରି ହତାଶ ହୋଇ ବି ସ୍ୱପ୍ନ ଦେଖିପାରୁଥିବା କବି ଶିକ୍ଷାବିତ୍ ମାନସିଂହଙ୍କ ପ୍ରସ୍ତାବଗୁଡ଼ିକ କେବଳ ଉଲ୍ଲେଖ କରାଯାଉଅଛି ।

**(କ) ପ୍ରଥମ ପ୍ରସ୍ତାବ – ଶିକ୍ଷା ବିଭାଗର ସଂପୂର୍ଣ୍ଣ ସ୍ୱାଧିକାର –**

ଶିକ୍ଷା ବିଭାଗ ସରକାରୀ ଅର୍ଥ ପୋଷିତ ହେଲେ ମଧ, ହାଇକୋର୍ଟ ଓ ଜୁଡ଼ିସିଆଲ୍ ପରି, ସେଥିରେ କୌଣସି ହେଲେ ବାହାର ଲୋକର ଅନୁପ୍ରବେଶକୁ ତୁରନ୍ତ ନିଷିଦ୍ଧ କରାଯାଉ । × × × ଶିକ୍ଷା ବିଭାଗର ପାଶ୍ ଫେଲ୍ ବା ଦୈନନ୍ଦିନ ପରିଚାଳନା ରାଜନୈତିକମାନଙ୍କର ମୁକ୍ତ କ୍ରୀଡ଼ାପ୍ରାନ୍ତର ହୋଇପଡ଼ିବା ଏକ ଜାତି ପକ୍ଷରେ ଚରମ ଅଭିଶାପ ଓ ଘୋରତର ଲଜ୍ଜାକର ଓ ମାରାତ୍ମକ ବ୍ୟାପାର ।

**(ଖ) ଦ୍ୱିତୀୟ ପ୍ରସ୍ତାବ – ଡିଗ୍ରୀ ଡିପ୍ଲୋମା ଉଠେଇଦିଆଯାଉ –**

ଆମ ଶିକ୍ଷା ବ୍ୟବସ୍ଥାକୁ ଆମେ ସଂପୂର୍ଣ୍ଣ ରୂପେ ମ୍ୟାଟ୍ରିକ୍, ବି.ଏ. ଇତ୍ୟାଦି ଭାବରେ କେବଳ ସାର୍ଟିଫିକେଟ୍ କେନ୍ଦ୍ରିତ କରି ରଖିବାରୁ ଧରିନେବାକୁ ହେବ ଯେ ଆମେ ଆମ ପିଲାଙ୍କୁ କପି କରେଇବାକୁ ପରୋକ୍ଷରେ ପ୍ରେରଣା ଦେଉଛୁ । ବରଂ ଏ ପ୍ରକାର କାଗଜ-ଖଣ୍ଡ-କେନ୍ଦ୍ରିକ ପାଶ୍ ଫେଲ୍‌ର ସମସ୍ତ ଅଯୌକ୍ତିକତା ଉଠାଇଦେଇ, ଆମେ ଯଦି ପ୍ରତ୍ୟେକ ବିଦ୍ୟାର୍ଥୀଙ୍କୁ ସେ କେଉଁ ବିଷୟ କେଉଁ ଅନୁଷ୍ଠାନରେ କେତେବର୍ଷ ଅଧ୍ୟୟନ କଲେ ଓ ସେ ସବୁରେ କି ପ୍ରକାର ପାରଙ୍ଗମତା ଲାଭକରିଛନ୍ତି ସେ ସବୁର ଦ୍ୟୋତକ କେବଳ ଏକ ଏକ କାର୍ଡ଼ ଦେଇ ଛାଡ଼ିଦିଅନ୍ତେ ତେବେ ବ୍ୟବସ୍ଥା ଅଧିକ ଯୁକ୍ତିଯୁକ୍ତ ଓ ବିଚାରପ୍ରତିଷ୍ଠ ହୁଅନ୍ତା ବୋଲି ବିଶ୍ୱାସ । ...ପିଲେ ଯେତେବେଳେ ଜାଣିବେ ଯେ ଏହି ଅର୍ଜିତ ଦକ୍ଷତା ଉପରେ ହିଁ ସେମାନଙ୍କର ଭାଗ୍ୟ ନିର୍ଭର କରୁଛି, ତେବେ ସେମାନେ ସ୍ଲୋଗାନ୍ ଗାଇ ରାସ୍ତାରେ ରାସ୍ତାରେ ବୁଲିବା ଓ ଶେଷରେ କପିକରି ସାର୍ଟିଫିକେଟ୍ ଆଦାୟ କରିବାର ଯୋଜନା ଛାଡ଼ି ଅଧିକରୁ ଅଧିକ ବିଦ୍ୟାସାଧନରେ ମନ ଦିଅନ୍ତେ ।

**(ଗ) ତୃତୀୟ ପ୍ରସ୍ତାବ – ଆନ୍ତର୍ଜାତିକ ମାନଦଣ୍ଡ ରକ୍ଷା –**

ଡିଗ୍ରୀ ଡିପ୍ଲୋମା ରଖ ବା ନ ରଖ, ଜ୍ଞାନର ମୂଲ୍ୟାୟନ ଯେପରି ଆନ୍ତର୍ଜାତିକ ମାନଦଣ୍ଡରେ ହିଁ ମପାହେବାର ବ୍ୟବସ୍ଥା ହେଉ । ବର୍ତ୍ତମାନ ଇଣ୍ଡିଆନ୍ ଡିଗ୍ରୀର କୌଣସି ମୂଲ୍ୟ ହିଁ ନାହିଁ । ଶତକଡ଼ା ୩୦ ବା ୨୫ ଯେପରି ପରମମସ୍ତିଷ୍କବତ୍ତା ଓ କଠୋର ବିଦ୍ୟା ସାଧନର ଚିହ୍ନ ଏବଂ ସେଥିପାଇଁ ପୁଣି ଗ୍ରେସ୍ ମାର୍କ, କପି ଓ ଧରାଧରି – ଏଠାରେ ଆମ ପାଠ ଓ ଡିଗ୍ରୀ-ଡିପ୍ଲୋମାର ମୂଲ୍ୟ କ'ଣ ?

ମାନସିଂହ ଆଜିର ଶିକ୍ଷା ବ୍ୟବସ୍ଥାକୁ 'ଏକ ଘୋର ଅପବ୍ୟୟଶୀଳ ପ୍ରହସନ ବା ଟ୍ରାଜେଡ଼ି ମାତ୍ର' ବୋଲି କହିଛନ୍ତି । 'ଏଥିରେ ଜ୍ଞାନ ସାଧନା ଓ ତାଲିମ୍‌ର ଗନ୍ଧ ଆଉ ନାହିଁ– ଅଛି

କେବଳ ଠକାମି, ଧପ୍‌ପାବାଜି, ଅନ୍ୟାୟ ଓ ଦୁର୍ନୀତି ଅଥବା କେବଳ କୋଠାବାଡ଼ି ଓ ଚାକିରୀ ତତ୍ତ୍ୱ । ଗୋଟିଏ ନୂତନ ଜାତିକୁ ସବୁ କ୍ଷେତ୍ରରେ ଦୁର୍ଦ୍ଧର୍ଷ କରି ଠିଆକରାଇବାକୁ ଏ ଶିକ୍ଷା କ୍ଷେତ୍ରରେ କିଛି ହିଁ ଅଛି ବୋଲି ମନେହେଉନି । ଜାତୀୟ ଜୀବନ ଓ ସଂସ୍କୃତି ସହିତ ମଧ ଏହା ସଂପର୍କଶୂନ୍ୟ ।'

## (ଘ) ଚତୁର୍ଥ ପ୍ରସ୍ତାବ – ଦାୟିତ୍ୱହୀନ ନିରାପତ୍ତାକୁ ପ୍ରଶ୍ରୟ ଦିଆନଯାଉ –

''ଶିକ୍ଷକ, ଅଧ୍ୟାପକ ଚାକିରୀରେ ଥିବା କେତେକ ଦାୟିତ୍ୱହୀନ ନିରାପତ୍ତାକୁ ପ୍ରଶ୍ରୟ ଦିଆ ନଯାଉ, ଅର୍ଥାତ୍ ଯେଉଁ ଶିକ୍ଷକମାନେ ଦେଶର ପ୍ରାଚୀନ ଐତିହ୍ୟକୁ ଭୁଲି ଶିକ୍ଷାକୁ ଏକ ବ୍ୟବସାୟ ବା ଚାକିରୀ ବୋଲି ମନେକରୁଛନ୍ତି, ସେମାନଙ୍କୁ ବହିଷ୍କାର କରାଯାଉ । ଅନ୍ୟ ଅଗ୍ରଗାମୀ ଦେଶ ପରି, ଶିକ୍ଷାବର୍ଷ ଶେଷରେ ଛାତ୍ରଛାତ୍ରୀମାନଙ୍କର ଗୋପନୀୟ ଭୋଟ ମାଧ୍ୟମରେ ଶିକ୍ଷକମାନଙ୍କର ଯୋଗ୍ୟତା ନିର୍ଣ୍ଣୟ କରାଯାଉ ଏବଂ ଶିକ୍ଷାନୁଷ୍ଠାନକୁ ଯଥାସମ୍ଭବ ତଥାକଥିତ ରାଜନୀତିଠାରୁ ଦୂରରେ ରଖାଯାଉ ।

## (ଙ) ଶେଷ ପ୍ରସ୍ତାବ ବା ପଂଚମ ପ୍ରସ୍ତାବ –

ତଥାକଥିତ ଉଚ୍ଚଶିକ୍ଷାରେ ବଂଧ ପକାଯାଉ ।

'ବର୍ତ୍ତମାନ କଲେଜମାନଙ୍କରେ ଯେତେ ପିଲା ଆସି ଭର୍ତ୍ତିହୋଇଯାଉଛନ୍ତି, ସେଥିରୁ ଅର୍ଦ୍ଧାଧିକ 'ଉଚ୍ଚଶିକ୍ଷା' ପାଇଁ ଏକାନ୍ତ ଅଯୋଗ୍ୟ । ସେମାନଙ୍କର ବିଦ୍ୟା ସାଧନାରେ ଆଗ୍ରହ ନାହିଁ, ପୁଣି ଲେକ୍‌ଚରରମାନଙ୍କର ଲେକ୍‌ଚର ବୁଝିବାକୁ କ୍ଷମତା ମଧ ସେମାନଙ୍କର ନାହିଁ । ଅଥଚ ଉଚ୍ଚଶିକ୍ଷାର ପ୍ରତାରଣାପୂର୍ଣ୍ଣ ବା ଅଜ୍ଞାନମୟ ସ୍ଲୋଗାନ୍ ଚିତ୍କାରକରି ନିଛକ ରାଜନୈତିକ କାରଣରୁ ହିଁ ଆମେ ଗ୍ରାମେ ଗ୍ରାମେ ହାଇସ୍କୁଲ ଓ କଲେଜ ବସେଇ ଚାଲିଲେ । ପିଲେ ତ ପାଠ ପଢ଼ିବାକୁ ନାରାଜ– ସେମାନେ ମାଷ୍ଟ୍ର ଅଧ୍ୟାପକଙ୍କୁ ଛୁରା ଦେଖାଇ ମାସ୍ କପି କରି ହିଁ ଡିପ୍ଲୋମା କାଗଜ ଖଣ୍ଡମାନ ଯେକୌଣସିମତେ ପାଇବାର ଯୋଗାଡ଼ରେ ଲାଗିଲେ । କେତେକ ଅଧମ ଶିକ୍ଷକ – ଅଧ୍ୟାପକ ମଧ ନିଜ ସ୍ୱାର୍ଥଦୃଷ୍ଟିରୁ ପିଲାଙ୍କୁ ଏ ପ୍ରକାର ଘୋର ଅପକର୍ମରେ ସହାୟତା କରିବା ଦେଖାଯାଇଛି । ତେଣୁ ଉଚ୍ଚଶିକ୍ଷା ନାମରେ ଏ ବୀଭତ୍ସ ଓ ବହୁଳ ପ୍ରତାରଣାକୁ ପ୍ରଶ୍ରୟ ଦେଇ କି ଲାଭ ?''

ଏହାର ନିରାକରଣ ପାଇଁ ମାନସିଂହ ଦୁଇଟି ପ୍ରସ୍ତାବ ଆଗତ କରିଥିଲେ । ସେ କହିଥିଲେ ଯେ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତଙ୍କର ଶିକ୍ଷା ବାଧ୍ୟତାମୂଳକ ହେବ । ତା'ପରେ ପିଲାର ଯୋଗ୍ୟତା, ରୁଚି ଓ ବିଦ୍ୟାପ୍ରତି ଆଗ୍ରହର ମାନଦଣ୍ଡ ନିର୍ଣ୍ଣୟ କରି ସୀମିତସଂଖ୍ୟକ ପିଲାଙ୍କୁ ଉଚ୍ଚଶିକ୍ଷାପାଇଁ ପଠାଯାଉ । ଅବଶିଷ୍ଟ ଛାତ୍ରଛାତ୍ରୀମାନଙ୍କର ଆଗ୍ରହ ଅନୁସାରେ ସେମାନଙ୍କୁ କୃଷି, ଶିଳ୍ପ ଓ ଅନ୍ୟାନ୍ୟ ଉପଯୋଗୀ ଶିକ୍ଷାର ସୁଯୋଗ ଦିଆଯାଉ । 'ଉଚ୍ଚଶିକ୍ଷା' ନାମରେ ତଥାକଥିତ ଡିଗ୍ରୀ ହାସଲ କରିବାକୁ ଯାଇ ଅପାରଦର୍ଶୀ ଛାତ୍ରଛାତ୍ରୀମାନେ କୃଷି ଶିଳ୍ପ ପ୍ରତି

ଆଗ୍ରହ ଦେଖାଉନାହାନ୍ତି । ଏଣୁ ଏମାନଙ୍କ ପାଇଁ ସାଧାରଣ ଶିକ୍ଷା ଲାଗୁ ନ କରି ବୈଷୟିକ ଶିକ୍ଷା ଦିଆଯାଉ । ସାଧାରଣ ଶିକ୍ଷା ପରେ କୋଡ଼ିଏ ଭାଗ ଛାତ୍ରଛାତ୍ରୀଙ୍କୁ ଉପରକୁ ଆସିବାକୁ ଦିଆଗଲେ, ସେମାନେ ଆମର ରାଷ୍ଟ୍ରୀୟ ଗୁଜୁରାଣ ମେଣ୍ଟାଇଦେବେ ।

**ସମସ୍ୟା ସମାଧାନର ଦ୍ୱିତୀୟ ମାର୍ଗ ହେଲା –**

ସଂପ୍ରତି ଛତୁ ଫୁଟିଲାଭଳି କଲେଜ ସଂଖ୍ୟା ନ ବଢ଼େଇ ଉଚ୍ଚ ଯୋଗ୍ୟତାସଂପନ୍ନ ସୁଯୋଗ୍ୟ ଅଧ୍ୟାପକ ଅଧ୍ୟାପିକାଙ୍କୁ କେତେକ ସୀମିତ କଲେଜରେ ନିଯୁକ୍ତି ଦିଆଯାଉ । ନିମ୍ନ ଯୋଗ୍ୟତାର ଅଧ୍ୟାପକ, ଲାଇବ୍ରେରୀ, ଲାବରେଟାରୀହୀନ କଲେଜମାନେ ହିଁ ଶିକ୍ଷାର ମାନଦଣ୍ଡକୁ ନିମ୍ନଗାମୀ କରାଉଛନ୍ତି । ତେଣୁ ପ୍ରଚଳିତ ଶିକ୍ଷା ପଦ୍ଧତିରେ ହିଁ ଉତ୍ତମ ଫଳ ପାଇପାରିବା ପାଇଁ ଏହି ବ୍ୟବସ୍ଥାର ପ୍ରଚଳନ କରାଯାଉ । ମାନସିଂହ ସେତେବେଳେ ପ୍ରସ୍ତାବ ଦେଇଥିଲେ ଯେ, ଏହି ଛୋଟ ଛୋଟ କଲେଜମାନଙ୍କରୁ କେତେକ ଜୁନିଅର କଲେଜ କରି ସେଥିରେ ନିମ୍ନସ୍ନାତକ ଶ୍ରେଣୀମାନ ଖୋଲାଯାଉ । ଅବଶିଷ୍ଟ ଅଳ୍ପସଂଖ୍ୟକ ଛାତ୍ରଛାତ୍ରୀଙ୍କୁ ଉଚ୍ଚତର ଜ୍ଞାନ ପାଇଁ ସୁଯୋଗ ଦେଲେ, ଆମର ଅନେକ ସମସ୍ୟାର ସମାଧାନ ହୋଇପାରିବ ।

ଖ୍ରୀ. ୧୯୭୨ ମସିହା ଜୁଲାଇ ମାସରେ ମାନସିଂହ ଲେଖିଥିଲେ – ''ପ୍ରିୟ ପାଠକେ, ଏ ପ୍ରବନ୍ଧ ଲେଖକ ବର୍ତ୍ତମାନ ଜୀବନର ଶେଷ ପାଦରେ । କୌଣସି ସାଂସାରିକ ଆଶା ଆକାଙ୍‌କ୍ଷା ତା'ର ବାକି ନାହିଁ । କିନ୍ତୁ ଯେତେବେଳେ ଆଶା-ଆକାଙ୍‌କ୍ଷାପୂର୍ଣ୍ଣ ଆଶା କରିବାର ବେଳ ଥିଲା, ସେତେବେଳେ ମଧ୍ୟ ସେ ମୂର୍ଖ 'ମାଧିଆଭାଇ, ସବୁ କଥାକୁ ହଇ ହଇ' କରି ସୁନାପିଲା ନହୋଇ, ତିନିବର୍ଷିଆ ଡିଗ୍ରୀ କୋର୍ଷ ବା ବେସିକ୍‌ର ସରକାରୀ ତୋପ ସଂରକ୍ଷିତ ଆସ୍ଫାଳନମୟୀ ଆତ୍ମପ୍ରଚାର ବିରୁଦ୍ଧରେ ଏ ରାଜ୍ୟରେ ପ୍ରତିରୋଧର ନିଃସଙ୍ଗ ଏକକ ସ୍ୱର ଉତ୍ତୋଳନ କରିଥିଲା । କିନ୍ତୁ ବିଳମ୍ବରେ ହେଲେହେଁ, ଲେଖକର ସେହି ପ୍ରତିବାଦ ସବୁ ଯେ ଏବେ ସତ୍ୟ ହୋଇଛି, ତାହାହିଁ ତା'ର ଏକମାତ୍ର ସାନ୍ତ୍ୱନା ।''

ଶିକ୍ଷାବିତ୍ ମାନସିଂହ ଦେଶର ଛାତ୍ରମାନଙ୍କ ଉଦ୍ଦେଶ୍ୟରେ କହିଥିଲେ – ''ମୋ ଦେଶର ପ୍ରିୟ ତରୁଣସମାଜକୁ ଏତିକି କହି ଏ ଲେଖକ ବିଦାୟ ନେବ ଯେ, 'ବାବୁ ହେ' କଠୋର ଶାରୀରିକ ଓ ମାନସିକ ଶ୍ରମ ବିନା କୌଣସି ଜାତିକଥା ଛାଡ଼, କୌଣସି ବ୍ୟକ୍ତିର ମଧ୍ୟ ଜୀବନରେ କିଛି ହେଲେ ସମୃଦ୍ଧି ସାଧିତ ହୋଇନପାରେ । କୈଶୋର ଓ ଯୌବନ, ଦୀର୍ଘ ଆଗାମୀ ଜୀବନ ପାଇଁ ଯେ ଏକାନ୍ତରେ କେବଳ ପ୍ରସ୍ତୁତିର ସମୟ, ଏହା ପ୍ରକୃତିନିର୍ଦ୍ଦିଷ୍ଟ । ଏହାକୁ ତେଣୁ ସଫଳ ପ୍ରସ୍ତୁତିରେ ଲଗାଅ, କ୍ଷିପ୍ର ପଳାୟମାନ ତତ୍କାଳୀନ ଉତ୍ତେଜନା ସବୁରେ ନଷ୍ଟ କରିଦିଅ ନାହିଁ । ଅନ୍ୟ ଲୋକେ ଗ୍ରହ ଉପଗ୍ରହରେ ବସତି ପାଇଁ ଗଲାବେଳେ, ତମେ ଭାରତର ତରୁଣ ଦଳ, କପିକରି ମଣିଷ ହେବାର ଚେଷ୍ଟା କରିବାଟା କିପରି ଲଜ୍ଜାକର ବ୍ୟାପାର, ଭାବ ତ ଥରେ !''

ଆମର ଶିକ୍ଷା ବ୍ୟବସ୍ଥାରେ ଛାତ୍ର ବିଶୃଙ୍ଖଳାର କାରଣ ସ୍ୱରୂପ ମାନସିଂହ ପ୍ରତ୍ୟକ୍ଷ ଛାତ୍ର-ନିର୍ବାଚନକୁ ବିରୋଧ କରି ପରୋକ୍ଷ ନିର୍ବାଚନ ପାଇଁ ପ୍ରସ୍ତାବ ଦେଇଛନ୍ତି । ପ୍ରତ୍ୟକ୍ଷ ନିର୍ବାଚନ ଯୋଗୁଁ କେତେକ ତଥାକଥିତ ଶସ୍ତା ନେତା କଲେଜମାନଙ୍କରେ ରାଜନୀତି କରି ନିରୀହ ଛାତ୍ରଛାତ୍ରୀମାନଙ୍କୁ ହଇରାଣ କରୁଛନ୍ତି । ମାନସିଂହ କହନ୍ତି, ''କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଇଉନିୟନମାନଙ୍କର ପ୍ରତ୍ୟକ୍ଷ ନିର୍ବାଚନ ଯେ ସେଠାରେ ବାତାବରଣ ଦୂଷିତ ହେବାର ଏକ ମୁଖ୍ୟ କାରଣ ଏଥିରେ ମତଦ୍ୱୈଧ ନଥାଇପାରେ । ଏହି ପ୍ରତ୍ୟକ୍ଷ ନିର୍ବାଚନ ନେଇ ହିଁ ରାଜନୈତିକ ଟାଉଟରମାନେ ଆମର ବିଦ୍ୟାୟତନମାନଙ୍କରେ ଜୁଟି ସେମାନଙ୍କର ମର୍ଯ୍ୟାଦାକୁ ଧୂଳିସାତ୍ କରିବାରେ ସହଜରେ ସକ୍ଷମ ହୋଇପାରୁଛନ୍ତି । ପ୍ରତ୍ୟକ୍ଷ ଛାତ୍ର ନିର୍ବାଚନ ଯୋଗୁହିଁ ଆମର ଆଗାମୀ ପୁରୁଷ ରାଜନୈତିକ ଟାଉଟରମାନଙ୍କ ଆଦର୍ଶରେ ଏ ପ୍ରକାର ମହିମାମୟ ଭାଣ୍ଡାଲିଜମ୍, ଛାତ୍ରତ୍ୱର ଏକ ଗୁଣଭାବରେ ପିଲାବେଳୁ ଶିଖୁଛନ୍ତି ।

ଶିକ୍ଷାବିତ୍ ମାନସିଂହଙ୍କୁ ଆଲୋଚନା କଲାବେଳେ, ରୋମାଣ୍ଟିକ୍ କବି ମାନସିଂହ ସବୁବେଳେ ଆଖି ଆଗରେ ଆସି ଉଭାହୁଅନ୍ତି । ଜୀବନର ନାନା ସୁଖ ଦୁଃଖକୁ ଅନୁଭୂତିର ସାମଗ୍ରୀ କଲା ପରେ ବି, ଅନୁଭୂତି ଭିତରୁ ସେ ଆଦର୍ଶ ଖୋଜିନାହାନ୍ତି । ଜନ୍ମଗତ ସଂସ୍କାର ଓ ଭାବପ୍ରବଣତା ତାଙ୍କ ବିଚାରଧାରାକୁ ସବୁବେଳେ ଦ୍ୱିଧାଗ୍ରସ୍ତ କରିଛି । ଶିକ୍ଷା ସମ୍ପର୍କରେ ବହୁ ଚମତ୍କାର କଥା କହିଲେ ବି ଓ ଶିକ୍ଷା ସମ୍ପର୍କରେ ତାଙ୍କର ଦୃଷ୍ଟିକୋଣ ଅନେକ ସମୟରେ ବୈପ୍ଳବିକ ମନେହେଲେ ବି, ମୁଖ୍ୟତଃ ସେ ଜଣେ ରକ୍ଷଣଶୀଳ ଆଦର୍ଶବାଦୀ ବ୍ୟକ୍ତି । ଏକ ପ୍ରକାର ଶିକ୍ଷା ସମସ୍ତଙ୍କ ପାଇଁ ଦରକାର ନ ହୋଇପାରେ, କିନ୍ତୁ ବଞ୍ଚିବାର ମାନ ସମସ୍ତଙ୍କର ପ୍ରାୟତଃ ଏକପ୍ରକାରର ହେବା ଉଚିତ । ଏ ପ୍ରକାର ସତ୍ୟକୁ ଅସ୍ୱୀକାର କରିଥିବା ବ୍ୟକ୍ତି ନିଶ୍ଚିତ ଭାବରେ ମାନବ ବିରୋଧୀ । ସମାଜରେ ସକଳ ଶ୍ରେଣୀର ଓ ସକଳ ପ୍ରକାର କର୍ମ କରୁଥିବା ଲୋକ ସମାନ ସାମାଜିକ ମର୍ଯ୍ୟାଦା ଓ ସମାନ ସୁଯୋଗ ସୁବିଧା ନପାଉଥିବାବେଳେ ଶିକ୍ଷାରେ ବୈଚିତ୍ର୍ୟ ଆଣିବାର କଳ୍ପନା ଏକ ବିଳାସ ମାତ୍ର । ମାନସିଂହ ଶିକ୍ଷା ସମ୍ପର୍କରେ ଉପସ୍ଥାପନ କରିଥିବା ବକ୍ତବ୍ୟରେ ବୈଚିତ୍ର୍ୟ ରହିଛି, ପରଂପରା ବିରୋଧୀ ସ୍ୱର ବି ରହିଛି, କିନ୍ତୁ ନାହିଁ ଗଣତାନ୍ତ୍ରିକ ମୁକ୍ତଦୃଷ୍ଟି । ଫଳରେ କ୍ଷୟିଷ୍ଣୁ ସାମନ୍ତବାଦର ଭିତ୍ତି ଉପରେ ନିଜକୁ ଅବସ୍ଥାପିତ କରି, ଆଧୁନିକ ଯୁଗର ଶିକ୍ଷାବିତ୍ ଭାବରେ ସେ ପରିଚୟ ଦେଇଥିବା ଭଳି ମନେହୁଏ ।

ଡକ୍ଟର ମାୟାଧର ମାନସିଂହଙ୍କ ଘଟଣାବହୁଳ ଜୀବନ ନାନା ଉତ୍ଥାନ ପତନ, ଝଡ଼-ଝଞ୍ଜା ମଧ୍ୟରେ ଅତିବାହିତ । ସମୟ ଓ ଘଟଣା ସହିତ ସାଲିସ୍ ନ କରିପାରିବାରୁ, ବର୍ଷା ଦେଖି ଛତା ଧରିବାର ଅଭ୍ୟାସ ନଥିବାରୁ, ସେ ନାନା କ୍ଷେତ୍ରରେ ଝୁଣ୍ଟିପଡ଼ିଛନ୍ତି କିନ୍ତୁ ହାରିଯାଇନାହାନ୍ତି । ତାଙ୍କ ଜୀବନର ଦର୍ଶନ ଥିଲା –

'ସତ୍ୟ ଯେ କହେ ଶତ୍ରୁ ତାହାର ନାହିଁ/ଅହରହ ସେଇ ଭାବୁଥାଏ ପରପାଇଁ ।'

ଚଳନ୍ତି ଦୁନିଆଁରେ ତାହା ସମ୍ଭବ ହୋଇପାରୁଛି କି ? ସେ କଥା ମାନସିଂହ ମାନିବାକୁ ପ୍ରସ୍ତୁତ ନଥିଲେ । 'ଶିକ୍ଷାବିଦ୍‌ର ଗାଥା'ରେ ୧୯୬୫ ମସିହା ପର୍ଯ୍ୟନ୍ତ ତାଙ୍କ ଜୀବନର କେତେକ ଘଟଣା ସନ୍ନିବେଶିତ । ଏହା ପରେ ବି ମାନସିଂହ ଆଠବର୍ଷ କାଳ କର୍ମକ୍ଷମ ଥାଇ ୧୯୭୩ ମସିହା କୁମାରପୂର୍ଣ୍ଣିମାର ଏକ ଝଡ଼-ଝଞ୍ଜାପୂର୍ଣ୍ଣ ଅଶାନ୍ତ ରଜନୀରେ ସବୁଦିନ ପାଇଁ କାର୍ଯ୍ୟ ସମାପ୍ତି କଲେ । ଏହି ଆଠବର୍ଷ ବି କମ୍ ଘଟଣାବହୁଳ ନଥିଲା । ମାନସିଂହଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ବର୍ତ୍ତମାନ ପ୍ରସ୍ତୁତ କରାଯାଉଛି । ଗ୍ରନ୍ଥାବଳୀ ସାଙ୍ଗରେ ସମାନ୍ତରାଳ ଭାବରେ ଏହା ପ୍ରକାଶିତ ହେବାର ଚେଷ୍ଟା କରାଯାଉଛି । ଜଣେ ଶିକ୍ଷକ, ଶିକ୍ଷା ପ୍ରଶାସକ ଓ ଶିକ୍ଷା ପରାମର୍ଶଦାତା ଭାବରେ ସେ ବିତାଇଥିବା ଦିନଗୁଡ଼ିକ ହିଁ 'ଶିକ୍ଷାବିଦ୍‌ର ଗାଥା'ରେ ଉଲ୍ଲେଖ ରହିଛି । ମାନସିଂହ ଏ ଲେଖା ପ୍ରସ୍ତୁତ କଲାବେଳେ ଅସୁସ୍ଥ ଥିଲେ । ଭେଲୋର୍‌ରେ ଚିକିତ୍ସିତ ହେବା ସମୟରେ ଏହାର ନକ୍‌ସା ଓ କିଛି ଅଂଶ ପ୍ରସ୍ତୁତ ହୋଇଥିଲା, ପରେ ପୂର୍ଣ୍ଣାଙ୍ଗ ହୋଇ ୧୯୬୫ ମସିହାରେ ପ୍ରକାଶିତ ହୋଇଥିଲା । ପ୍ରାୟ ଚାଳିଶ ବର୍ଷ ପରେ ବର୍ତ୍ତମାନ ଗ୍ରନ୍ଥାବଳୀରେ ପ୍ରକାଶିତ ହେଉଛି ।

ଏ ବହିର ଆବଶ୍ୟକତା ଦୀର୍ଘଦିନ ଧରି ଓଡ଼ିଶାର ପାଠକ/ପାଠିକା ମହଲରେ ଅନୁଭୂତ ହେଉଥିଲା । ମାନସିଂହ ସାହିତ୍ୟପ୍ରେମୀ ଶ୍ରୀ ଅଭିରାମ ମହାପାତ୍ରଙ୍କ ସଶ୍ରଦ୍ଧ ତାଗିଦା ବିନା ଏ କାର୍ଯ୍ୟ ତ୍ୱରାନ୍ୱିତ କରିବା ସମ୍ଭବ ହୋଇପାରିନଥାନ୍ତା ।

ପ୍ରକାଶକ ଶ୍ରୀ ଅଭିରାମ ମହାପାତ୍ର ଓ ମନୋଜବାବୁଙ୍କ ଐକାନ୍ତିକ ଇଚ୍ଛା, ମୋର ଅନ୍ତରଙ୍ଗ ବନ୍ଧୁ ଶ୍ରୀ ଦେବେନ୍ଦ୍ର କୁମାର ଦାଶଙ୍କ ସମୟୋଚିତ ପରାମର୍ଶ ଓ ଶଙ୍କର ପ୍ରସାଦ ମିଶ୍ରଙ୍କ ପରିଶ୍ରମ ଯୋଗୁଁ ତଥା ଅପ୍ରତିମା ଅଫ୍‌ସେଟ୍ ପ୍ରିଣ୍ଟ୍‌ସ୍‌ର ପରିଚାଳକ ବନ୍ଧୁ ତପନ କୁମାର ମହାପାତ୍ରଙ୍କ ନିଷ୍ଠା ଯୋଗୁଁ ହିଁ ଏ କାର୍ଯ୍ୟ ସମ୍ଭବ ହୋଇପାରିଛି । ସମସ୍ତଙ୍କୁ ଗଭୀର କୃତଜ୍ଞତା ଜଣାଇ ପରବର୍ତ୍ତୀ ଖଣ୍ଡ ପାଇଁ ଯଥାଶୀଘ୍ର ପ୍ରସ୍ତୁତ ହେଉଛି ।

କବିପତ୍ନୀ (ସ୍ୱର୍ଗୀୟା) ହେମଲତା ମାନସିଂହଙ୍କ ଆଗ୍ରହ ଯୋଗୁ ୧୯୯୪ରେ ଦ୍ୱିତୀୟ ପର୍ଯ୍ୟାୟ ଗ୍ରନ୍ଥାବଳୀ ପ୍ରକାଶନ ହୋଇଥିଲା । ଷଷ୍ଠ ଖଣ୍ଡ ପ୍ରକାଶିତ ହେଲା ପରେ ଶ୍ରୀମତୀ ମାନସିଂହ ସ୍ୱର୍ଗାରୋହଣ କରିଥିଲେ । ସଂପ୍ରତି ଡକ୍ଟର ମାନସିଂହଙ୍କର ସୁପ୍ରତିଷ୍ଠିତ ତିନି ପୁତ୍ର ଓ ଦୁଇ କନ୍ୟା ମାନସିଂହ ସାହିତ୍ୟ ପ୍ରକାଶନ ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । ଗ୍ରନ୍ଥାବଳୀର ଅବଶିଷ୍ଟ ଖଣ୍ଡମାନ ଶୀଘ୍ର ପ୍ରକାଶିତ ହୋଇଯିବ ବୋଲି ଆଶାକରୁଛି ।

ରଜ ସଂକ୍ରାନ୍ତି, ୨୦୦୭ ଡକ୍ଟର ଶ୍ରୀଚରଣ ମହାନ୍ତି

## ପ୍ରଥମ ଅଧ୍ୟାୟ

# ଅନନ୍ୟଚିତ୍ତ

ଆମେ ଖୋର୍ଦ୍ଧା-ହାଇସ୍କୁଲ୍‌ରେ ପଢୁଥିବା ବେଳେ ସେହି ହାଇସ୍କୁଲ୍‌କୁ ଲାଗି ଗୋଟିଏ ସଂସ୍କୃତ ଟୋଲ୍ ଥାଏ । ଟୋଲ୍‌ର ଗୋଟିଏ ହଷ୍ଟେଲ୍ ମଧ ଥାଏ । ଟୋଲ୍‌ରେ କିନ୍ତୁ ପ୍ରାୟ ପିଲା ଜୁଟନ୍ତିନାହିଁ । ଟୋଲ୍-ହଷ୍ଟେଲ୍‌ଟିରେ ହାଇସ୍କୁଲ୍‌ର ପିଲାମାନେହିଁ ରହନ୍ତି । ସାଧାରଣତଃ ଗରିବ ପିଲାମାନେହିଁ ନିଜର ଗୋଟିଏ ମେସ୍‌କରି ସେଠାରେ ଥା'ନ୍ତି । ମୋର ଖୋର୍ଦ୍ଧାରେ ଛାତ୍ରାବସ୍ଥାର ଅର୍ଦ୍ଧାଧିକ କାଳ ଏଇ ହଷ୍ଟେଲ୍‌ଟିରେହିଁ କଟିଯାଇଥିଲା ।

ଏବେ ମନେପଡୁଛି, ଦିନେ ସେହି ଟୋଲ୍-ମେସ୍‌ରେ ଥିବା କେତେକ ପିଲାଙ୍କ ଭିତରେ ପ୍ରତ୍ୟେକର ଭବିଷ୍ୟତ୍ 'ଆମ୍ବିଶନ୍' ବା ଉଚ୍ଚାଭିଳାଷର ଆଲୋଚନା ହେଲା । ସେଠାରେ ଥିବା ଉଦୟନାଥ ରଥ(ପରେ ଉଚ୍ଚ ପାହ୍ୟା ସରକାରୀ କର୍ମଚାରୀ) କହିଲେ, ସେ ଏମ୍.ଏ. ପାସ୍ କରିବେ; ଡମ୍ବରୁଧର ପରିଡ଼ା(ଓଡ଼ିଶାର ଜଣାଶୁଣା ଲେଖକ ଓ ସୁଯୋଗ୍ୟ ହେଡ଼ମାଷ୍ଟର) କହିଲେ, ସେ ଅନ୍ତତଃ ବି.ଏ. ପାସ୍ ନକରି କ୍ଷାନ୍ତ ହେଉନାହାନ୍ତି; ଟାଙ୍ଗୀ(ପୁରୀ ଜିଲ୍ଲା) ଆଡ଼ର ଜଣେ କୁମୁଟି ଛାତ୍ର ମଧ ପ୍ରକାଶ କଲେ ଯେ ଅନ୍ତତଃ ବି.ଏ.ଟା ପାସ୍‌ନକଲେ ପାଠ ହେଲା କ'ଣ ? ସେଦିନ ସେଠାରେ ମୁଁ ମଧ ଥିଲି । ସବାଶେଷରେ ମତେ ଯେତେବେଳେ ପଚରାଗଲା ମୋର ଅଭିଳାଷ କଥା, ମୁଁ ଏୟା କହିଥିଲି– ''ଯଦି ମୁଁ କୌଣସିମତେ ମାଟ୍ରିକ୍ ପରୀକ୍ଷାଟା ପାସ୍ କରିପାରେ, ତେବେ ମୁଁ କୌଣସି ସ୍କୁଲ୍‌ରେ ଶିକ୍ଷକତା କରିବି ।''

ଆହା, ଯଦି ସେଦିନର ସେହି ଅଭିଳାଷକୁ ମୁଁ ଅନ୍ତରରେ ଅନିର୍ବାଣ ପ୍ରଦୀପ ପରି ଜଳାଇ ରଖିଥାନ୍ତି, ତା ହୋଇଥିଲେ କୌଣସି ସନ୍ଦେହନାହିଁ ଯେ ମୁଁ ଜଣେ ଉତ୍ତମ ଶିକ୍ଷକ ହୋଇ ପାରିଥାନ୍ତି କେବଳ ନୁହେଁ, ହୁଏତ ଜଣେ ଉତ୍ତମ ମନୁଷ୍ୟ ଓ ଉତ୍ତମ ଦେଶସେବକ ମଧ ହୋଇ ପାରିଥାନ୍ତି ।

ଅଳ୍ପକାଳ ହେଲା ମୁଁ ଓଡ଼ିଶା ସରକାରଙ୍କ ଶିକ୍ଷାବିଭାଗରୁ ଅବସର ନେଇଛି । ଗତ ତିରିଶ ବର୍ଷ ଧରି ଶିକ୍ଷାବିଭାଗର ନାନା ସ୍ତରରେ ନାନା ପଦରେ ମୁଁ କାମ କରିଛି । ଏଇ ବିଦାୟ ବେଳରେ ପଛକୁ ଅନାଇ ଦେଖିପାରୁଛି, କେତେ ଅପାରଗତା, ବ୍ୟର୍ଥତା, କେତେ ଅସମ୍ପୂର୍ଣ୍ଣତା ! ଏକାଗ୍ରଚିତ୍ତଭାବରେ ମୂଳରୁ ଶେଷଯାଏଁ କେବଳ ଶିକ୍ଷକହିଁ ରହିଥିଲେ, ହୁଏତ ମୁଁ ପାଇଥାନ୍ତି ଅଧିକ ଶାନ୍ତି ଓ ଆନନ୍ଦ, ଅନେକ ବେଶି କୃତକାର୍ଯ୍ୟତା ଓ ପରିପୂର୍ଣ୍ଣତାର ଅନୁଭବ ଓ ଅନେକ ବେଶି ଆତ୍ମତୃପ୍ତି ।

ସ୍ୱାଧୀନତା ସତ୍ତ୍ୱେ ଆମର ଜାତୀୟ ଚରିତ୍ର କ୍ରମେ ଯେ ତଳକୁ ତଳକୁ ଯାଉଛି, ତାହାର ଏକତମ ଓ ମୁଖ୍ୟତମ କାରଣ ହେଉଛି, ଏ ଦେଶରେ ଶିକ୍ଷକତ୍ୱର ମାନଦଣ୍ଡର କ୍ରମିକ ଅଧୋଗମନ । ପଲ ପଲ ବାହାରୁଥିବା ତୃତୀୟ ଶ୍ରେଣୀ ମାଟ୍ରିକ୍ୟୁଲେଟମାନଙ୍କର ବେକାର ସମସ୍ୟା

ସମାଧାନପାଇଁ ଯେଉଁ ଦେଶରେ ପ୍ରାଇମେରୀ ସ୍କୁଲ୍ ପ୍ରତିଷ୍ଠା କରାଯାଇ ଜାତିର ଭବିଷ୍ୟତ୍ ବଂଶଧରମାନଙ୍କୁ ଗଢ଼ିବାର ଦାୟିତ୍ୱ ସେହିମାନଙ୍କ ହାତରେ ଛାଡ଼ିଦିଆଯାଏ, ସେ ଦେଶର କୌଣସିପ୍ରକାର ଚାରିତ୍ରିକ ଉନ୍ନତି କଥା ଛାଡ଼, ଭୌତିକ ଉନ୍ନତି ମଧ୍ୟ ଅସମ୍ଭବ । ଯେଉଁ ଜାତିର ଶିକ୍ଷକ ଯେପରି, ସେ ଜାତି ସେପରି । ଏହାକୁ ଆମେ ସ୍ୱୟଂପ୍ରତିଷ୍ଠ ବାକ୍ୟରୂପେ ଗ୍ରହଣ କରି ନ ନେବା କି ?

ଯାହାହେଉ, ସେଦିନ ହାଇସ୍କୁଲ୍‌ରେ ପଢ଼ିଲାବେଳେ ମୁଁ ସ୍କୁଲ୍‌ଶିକ୍ଷକ ହେବାର ଅଭିଳାଷ ରଖିଥିଲି । କିନ୍ତୁ ଆଜି ଶିକ୍ଷା ବିଭାଗରୁ ଏ ବିଦାୟ ବେଳରେ ମୁଁ ନିଜର ଜୀବନକୁ ଆଲୋଚନା କରି ପଚାରୁଛି, ମୁଁ କି ଜଣେ ପ୍ରକୃତ ଶିକ୍ଷକ ହୋଇପାରିଛି ? ଶିକ୍ଷା ବିଭାଗରେ 'ହାକିମ' ହେବା ଓ ଜଣେ ପ୍ରକୃତ ଶିକ୍ଷକ ବା ଶିକ୍ଷାବିତ୍ ହେବା ଭିତରେ ଆକାଶ-ପାତାଳ ପ୍ରଭେଦ । ଏକ ପ୍ରକୃତ ସଭ୍ୟ ଜାତି ନିକଟରେ ଜଣେ ପ୍ରକୃତ 'ଶିକ୍ଷକ'ର ସମ୍ମାନ, କୌଣସି ଡି.ପି.ଆଇ. ବା ଶିକ୍ଷାମନ୍ତ୍ରୀ ପାଇନପାରନ୍ତି । ଇଂଲଣ୍ଡରେ ଅନେକ ଡି.ପି.ଆଇ. ତ ଗତ ଶହେବର୍ଷ ଭିତରେ ଯିବେଣି । ସେମାନଙ୍କ ନାମ କେହି ଶୁଣେନା; କିନ୍ତୁ ଶହେବର୍ଷ ତଳେ ରଗ୍‌ବି ପବ୍ଲିକ୍ ସ୍କୁଲ୍‌ର ହେଡ୍‌ମାଷ୍ଟର ଟମାସ୍ ଆର୍ଣ୍ଣଲାଡ୍ (ଇଂରେଜ କବି ମାଥ୍ୟୁ ଆର୍ଣ୍ଣଲଡ୍‌ଙ୍କ ପିତା) ବିଶ୍ୱବିଦିତ । ଆମେ ଯେପର୍ଯ୍ୟନ୍ତ 'ଶିକ୍ଷକ'ଙ୍କୁ ଏଇ ଶ୍ରେଣୀର ସମ୍ମାନ ଦେବାପାଇଁ ପ୍ରସ୍ତୁତ ନହୋଇଛୁଁ ସେପର୍ଯ୍ୟନ୍ତ ଆମ ଜାତୀୟ ଚରିତ୍ରର ମୂଳପତ୍ତନ ଦୁର୍ବଳ ରହିବହିଁ ରହିବ ।

## ଗୁରୁ ଓ ମାଷ୍ଟର –

ଅବଶ୍ୟ, ଏଠାରେ କହିରଖେ ଯେ ମୁଁ ନିଜକୁ ଜଣେ କୃତକାର୍ଯ୍ୟ ଶିକ୍ଷକ ଭାବିବାର କୌଣସି ଯଥାର୍ଥତା ଦେଖିପାରୁନଥିଲେ ହେଁ, ଏତିକି ମୋର ସାନ୍ତ୍ୱନା ଯେ, ମୁଁ ଅନ୍ତତଃ ମୋର କୌଣସି କର୍ମଦ୍ୱାରା ଶିକ୍ଷକତା ବା ଶିକ୍ଷା ବିଭାଗର ଅବମାନନା କେବେହେଲେ କରିନାହିଁ । ପୂର୍ବ ଗଡ଼ଜାତ ଏଜେନ୍ସିର ଶିକ୍ଷା-ପରାମର୍ଶଦାତା ଥିଲାବେଳେ ଆଠମଲ୍ଲିକର ସ୍ୱର୍ଗତ ରାଜା ମତେ ତାଙ୍କ ରାଜ୍ୟର ଦେବାନ ହେବାପାଇଁ ବ୍ୟକ୍ତିଗତ ଅନୁରୋଧ କରିଥିଲେ – ମୁଁ ବିନାଦ୍ୱିଧାରେ ମନାକରିଦେଇଥିଲି । ଗଡ଼ଜାତମାନଙ୍କର ଶିକ୍ଷା-ପରାମର୍ଶଦାତା ପଦ ଉଠାଇଦିଆଗଲା ପରେ, ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିର ତତ୍କାଳୀନ ରେସିଡେଣ୍ଟ ଏକ ସମ୍ପୂର୍ଣ୍ଣ ନୂତନ ପୋଷ୍ଟ ସୃଷ୍ଟିକରି, ମତେ ସମଗ୍ର ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିର ନାଶନାଲ୍ ସେଭିଂସ୍ ଆଡ୍‌ଭାଇଜର ପଦରେ ନିଯୁକ୍ତ କରିଥିଲେ । *ଏଇ ପଦରେ ଚାଲି ଯାଇଥିଲେ, ଚାକିରି ଜଗତରେ ମୁଁ ଗଡ଼ଜାତ-ମିଶ୍ରଣର ଢେଉରେ ବଳେ ବଳେ ବହୁ ଉପରକୁ ଉଠିଥାନ୍ତି । କିନ୍ତୁ ଓଡ଼ିଶାର ଶିକ୍ଷା ବିଭାଗରେ ପୁଣି ପଶିବାପାଇଁ ନାନା ଆଳ ଦେଖାଇ କଟକରେ ସେତେବେଳେ ବସିରହିଲି ଓ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିର ରେସିଡେଣ୍ଟଙ୍କୁ ପ୍ରାୟ ଦୁଇମାସ ଅପେକ୍ଷା କରାଇ ରଖିବା ପରେ, ଯେତେବେଳେ ଓଡ଼ିଶା ଶିକ୍ଷା ବିଭାଗରେ ପୁଣି ଚାକିରି ପାଇଲି, ତାରଦ୍ୱାରା ତାଙ୍କୁ ମନାକରିଦେଲି ।

---

* ଏଇ କଥାର ପ୍ରମାଣ ଛଡ଼ା ଇଂରେଜ ହାକିମମାନଙ୍କର ବିଚାରଶୀଳତା ଓ ମାନବିକତାର ଦୃଷ୍ଟାନ୍ତରୂପେ ଏଇ ଅଧ୍ୟାୟର ପରିଶିଷ୍ଟ ଦେଖ । – ଲେଖକ

ବିଦ୍ୟାଧର ହେବା ଯେତେ ସହଜ, ବିଦ୍ୟାନୁରକ୍ତ ହେବା ସେତେ ନୁହେଁ । ତଥାକଥିତ ଭାବରେ ମାର୍କାଧାରୀ 'ମାଷ୍ଟର' ବୋଲାଇବା ଯେତେ ସହଜ, ଜଣେ ପ୍ରକୃତ 'ଶିକ୍ଷକ' ହେବା କୌଣସିମତେ ସେତେ ସହଜ ନୁହେଁ । ଟ୍ରେନିଂ-ସାର୍ଟିଫିକେଟ୍ ଧରି ଚାକିରି ଖୋଜିବା ଓ ଚାକିରି ପାଇଲା ପରେ ପରେ କେବଳ ସ୍କେଲ୍ ଅଫ୍ ପେ ଓ ଇନ୍‌କ୍ରିମେଣ୍ଟ ଦାବି କରିବା ଏବେ ଏ ଦେଶରେ ଶିକ୍ଷକର ପ୍ରଧାନ କର୍ତ୍ତବ୍ୟ ହୋଇଉଠିଛି । ଏଟା ହେଲା ଚାକିରିଆର, ସେବକର, ମୂଲିଆର ମନୋଭାବ । ପ୍ରକୃତ ଶିକ୍ଷକ-ପ୍ରାଣକୁ ଏପରି ମନୋଭାବ ସଂକୁଚିତ ବା କଳୁଷିତ କରି ନପାରେ । ପ୍ରକୃତ ଶିକ୍ଷକ, ଏ ସମସ୍ତର ଉର୍ଦ୍ଧ୍ୱକୁ ଉଠି, ନରୋତ୍ତମ ନହେଲେହେଁ, ଉତ୍ତମ ନର ହେବାକୁ ଚେଷ୍ଟିତ ହେବା ଉଚିତ । ଜାତିର ନୂତନ ବଂଶଧରଙ୍କ ଆଗରେ ଶିକ୍ଷକମାନେହିଁ ପ୍ରଥମ ଆଦର୍ଶ ପୁରୁଷ ରୂପେ ବିରାଜିତ ନରହିଲେ କୋଟି କୋଟି ମୁଦ୍ରା ବ୍ୟୟରେ ନିର୍ମିତ ସ୍କୁଲ୍ କଲେଜ, ବ୍ୟର୍ଥ-ଲକ୍ଷ୍ୟ ହେବା ଧରିନେବାକୁ ହେବ । ଛାତ୍ରଙ୍କ ଆଖିରେ ଶିକ୍ଷକହିଁ ଦେଖାଯିବା ଉଚିତ ସବୁପ୍ରକାରରେ ବୀରପୁରୁଷ ଓ ଉତ୍ତମପୁରୁଷ । ପିଲେ ଅନୁଭବ କରିବା ଉଚିତ ଯେ ତାଙ୍କ ମାଷ୍ଟ୍ରଙ୍କ ପରି ଜ୍ଞାନୀଲୋକ କେହି ନାହିଁ, ଉତ୍ତମଲୋକ କେହି ନାହିଁ ଓ ଆଦର୍ଶଲୋକ କେହି ନାହିଁ । ଏହା ଏକାନ୍ତ ବାଞ୍ଛନୀୟ ଓ ସର୍ବଥା ବାଞ୍ଛନୀୟ । ଜାତିର କିଶୋର କିଶୋରୀଙ୍କ ପ୍ରାଣରେ ଶିକ୍ଷକର ଏହି ଆଦର୍ଶ ଯଦି ଚୂର୍ଣ୍ଣୀଭୂତ ବା କଳୁଷିତ ହୋଇପଡ଼େ, ତେବେ ଶିକ୍ଷା-ବିଭାଗ ନାମରେ କୋଟି କୋଟି ଟଙ୍କା ବ୍ୟୟକରି ମଧ ଆମେ ଜାତୀୟ ଚରିତ୍ରକୁ ଠିକ୍ ବାଟରେ ଚଳେଇପାରିବାନି । ଆଜି ଆମର ଶିକ୍ଷା ବିଭାଗ କେବଳ ନୁହେଁ, ସମଗ୍ର ଜାତୀୟ ଜୀବନରେ ମଧ ଯେଉଁ ଘୋର ବିଶୃଙ୍ଖଳା ଦେଖାଦେଇଛି, ତାହାର ପ୍ରକୃତ କାରଣ ଏହିଠାରେ । ଏକମାତ୍ର କାରଣ ଏଇ ଯେ, ଏ ଦେଶରେ ଶିକ୍ଷକ ଆଜି 'ଗୁରୁ' ହୋଇ ନାହିଁ, ସେ କେବଳ ମାତ୍ର ଦରମାସର୍ବସ୍ୱ ଏକ 'ଚାକିରିଆ' । ଆମର ପାଞ୍ଚହଜାର ବର୍ଷର ମହିମମୟ ଜାତୀୟ ସଂସ୍କୃତିକୁ ପଦାଘାତ କରି ଆଜି ଶିକ୍ଷକତା ଏ ଦେଶର କେବଳ ବଜାରର ପଣ୍ୟଦ୍ରବ୍ୟରେ ପରିଣତ ହୋଇପଡ଼ିଛି । ଏକାବେଳକେ ଉଭେଇଯାଇଛି ଶିକ୍ଷକର ମହନୀୟ ବ୍ୟକ୍ତିତ୍ୱର ମୂଲ୍ୟ ।

କିନ୍ତୁ ୟାର ଅର୍ଥ ନୁହେଁ ଯେ ଏଇ ଲେଖକର ନିଜେ ଜଣେ ଆଦର୍ଶ ଶିକ୍ଷକ ବା ଶିକ୍ଷାବିତ୍ ବୋଲି ଆତ୍ମ-ପ୍ରସାଦ ଅନୁଭବ କରିବାର ଯଥେଷ୍ଟ କାରଣ ତାର ଅଛି । ସେ ନିଜେ ଗଭୀର ଭାବରେ ଅନୁଭବ କରୁଛି ଯେ, ଶିକ୍ଷକର ପ୍ରକୃତ ମହିମମୟ ଆଦର୍ଶଠାରୁ ସେ ବହୁ ଦୂରରେ ଏବଂ ସେଥିଲାଗି ସେ ଅନୁତପ୍ତ ଏବଂ ସେ ଭାବୁଛି ଯେ, ସେ ଯଦି ଅନନ୍ୟଚିତ୍ତଭାବରେ ସେହି ଖୋର୍ଦ୍ଧା ସ୍କୁଲ୍‌କାଳର ଅଭିଳାଷକୁ ପରିପୋଷଣ କରିଆସିଥାନ୍ତା ତେବେ ହୁଏତ ସେ ଆଦର୍ଶର ବହୁ ନିକଟତର ହୋଇପାରିଥାନ୍ତା ।

## ମିସନାରୀ ଭାବ —

ତେଣୁ ନିଷ୍ଠା ବା ଅନନ୍ୟଚିତ୍ତତା ଶିକ୍ଷକର ଏକ ପ୍ରଧାନ ଗୁଣ ହୋଇ ରହିବା ଉଚିତ । ଦିନେ ଏ ଜାତିର ଗୁରୁସ୍ଥାନୀୟ ବ୍ରାହ୍ମଣମାନଙ୍କୁ କୌଣସି ଅର୍ଥକରୀ ବ୍ୟବସାୟରେ ସଂପୃକ୍ତ ହେବାକୁ ଯେ ଦିଆଯାଉନଥିଲା, ତାହା ଉପହାସର ବିଷୟ ହୋଇନପାରେ । ତାହା ଗୋଟିଏ ପ୍ରାଚୀନ

ସଭ୍ୟ ଜାତିର ଗଭୀର ସାମାଜିକ ମନନର ଅତି ଉତ୍ତମ ସିଦ୍ଧାନ୍ତ ବୋଲି ଲେଖକ ମନେକରେ । ଥରେ ଯେ ଶିକ୍ଷକ, ସେ ସବୁବେଳେ ଓ ସବୁଠାରେ ଶିକ୍ଷକ ରହିବା ଉଚିତ ନୁହେଁ କି ? ଶିକ୍ଷକ ଯଦି ଇତର-ଜନ ପରି ଧନଦେବତାର ସ୍ଥୂଳଚିତ୍ତ ପଣ୍ଡା ହୁଏ ବା ସାମାନ୍ୟ ତତ୍କାଳୀନ ଲାଭ ପାଇଁ କ୍ଷମତାପନ୍ନ ଅଯୋଗ୍ୟର ଚାଟୁକାର ସାଜେ, ତେବେ ସେ ଲୋକ ସମ୍ମାନ ପାଇବ କିପରି ? ସମଗ୍ର ଜାତି ଆଗରେ ଶିକ୍ଷକର ଏକ ମହାନ୍ ଆଦର୍ଶ ବଞ୍ଚାଇନପାରିଲେ କୌଣସି ଜାତି ଉଚ୍ଚସ୍ତରକୁ ଉଠିପାରିବନି କି ଉଚ୍ଚସ୍ତରରେ ରହିପାରିବନି । ଜର୍ମାନୀ, ଇଂଲାଣ୍ଡ ପରି ଜ୍ଞାନଦୀପ୍ତ ଦେଶ କଥା ଛାଡ଼ିଦିଅ – କେହି ଓଡ଼ିଆ ତାର ପ୍ରତିବେଶୀ ଏବର ବଙ୍ଗାଳୀ ଜାତିର ଅଭ୍ୟୁତ୍‌ଥାନର ଇତିହାସ ଅନୁଶୀଳନ କଲେ ଅକ୍ଲିରେ ଜାଣିବେ ଯେ ସେ ଜାତି ହେଉଛି ଗତ ଶତାବ୍ଦୀର କେତୋଟି ସୁଦକ୍ଷ ଜାତିଗତପ୍ରାଣ ଶିକ୍ଷକ, ପ୍ରଧାନଶିକ୍ଷକ ଓ ଅଧ୍ୟାପକଙ୍କର ହାତଗଢ଼ା ଶିଳ୍ପମାତ୍ର । ଓଡ଼ିଶାରେ ସେପରି ଶ୍ରେଣୀର ଶିକ୍ଷକ ବେଶି ଦେଖାଦେଇନାହାନ୍ତି ଏବଂ ସେହି କାରଣରୁ ହିଁ ଓଡ଼ିଆ ଜାତି ଏବେ ବି ଅଧଃପତିତ ।

ତେବେ, ଶିକ୍ଷକାଦର୍ଶର ଆଧ୍ୟାତ୍ମିକ ଆକର୍ଷଣ ଯେ ଏ ଦେଶରେ ଏପର୍ଯ୍ୟନ୍ତ ଲୁପ୍ତ ହୋଇ ଯାଇନାହିଁ, ତାହାର ଏକ କୌତୂହଳ-ଜାଗରୂକ ଦୃଷ୍ଟାନ୍ତ ଏଠାରେ ପରିବେଷିତ ନକରି ରହିପାରୁନାହିଁ

ରେଭେନ୍ସା କଲେଜରେ ପଢ଼ିଲାବେଳେ ସଦ୍ୟ ଇଂଲାଣ୍ଡ ଫେରନ୍ତା, ବିହାରର ଶ୍ରୀ କେ.ପି. ସିହ୍ନା ଆମର ଇଂରାଜୀ ଅଧ୍ୟାପକ ଥିଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ସେ ବିହାରକୁ ଚାଲିଗଲେ । ସେଠାରେ ଡି.ପି.ଆଇ. ହେବାପରେ ଅବସର ନେଇଥିଲେ । ନିକଟରେ ଦେହତ୍ୟାଗ କରିଛନ୍ତି ।

ଆମେ ପଢ଼ିଲାବେଳେ ସେ ମୃତଦାର ଥିଲେ । ପାଖରେ ପ୍ରଥମା ସ୍ତ୍ରୀର ବାଳକ ପୁତ୍ରଟି ମାତ୍ର ଥାଏ । ପିଲାଟି ଦେଖିବାକୁ ଅତୀବ ସୁଶ୍ରୀ ଓ ବୁଦ୍ଧିମାନ୍ ଥିଲା । ଓଡ଼ିଆ ଅଧ୍ୟାପକମାନଙ୍କ ପିଲାଙ୍କ ସଙ୍ଗେ ମିଶି ସେ ଚମତ୍କାର ଓଡ଼ିଆ ମଧ୍ୟ କହିପାରୁଥିଲା । ଏଇସବୁ କାରଣରୁ ସେ ପିଲାଟି ଆମ ସଭିଁଙ୍କର ଶ୍ରଦ୍ଧାର ପାତ୍ର ଥିଲା । ପିଲାଟିର ନାମ ଥିଲା ବୀରେନ୍ ।

ଏଇ ଲେଖକ ଆଡଲଟ ସୋସାଲ୍ ଏଡୁକେଶନ୍ ଅଫିସର (ଦ୍ୱିତୀୟବାର) ଥିଲାବେଳେ, ପ୍ରାୟ ୩୦ ବର୍ଷ ପରେ, ଦିଲ୍ଲୀର ଏକ କନ୍‌ଫରେନ୍ସରେ ପୂର୍ବଗୁରୁ ଶ୍ରୀ କେ.ପି. ସିହ୍ନାଙ୍କ ସହିତ ମୋର ଦେଖାହେଲା । କେ.ପି. ସିହ୍ନା ସେତେବେଳେ ବିହାରର ଡି.ପି.ଆଇ. । ବହୁ କଥା ହେଲା । ତା' ଭିତରେ ବୀରେନ୍‌ର କଥା ପଚାରିଲି । ମୁଁ ଧରିନେଇଥିଲି ଯେ, ସେ ଇ' ଭିତରେ ଆଇ.ସି.ଏସ. ହୋଇ କେଉଁଠି ସେକ୍ରେଟାରୀ-ଫେକ୍ରେଟାରୀ ସ୍ତରକୁ ଉଠିଯିବଣି କାରଣ, ସେଇପରି ପିଲା ତ ଆଇ.ସି.ଏସ. ହେବାରଇ କଥା ।

କିନ୍ତୁ କେ.ପି. ସିହ୍ନା ଏୟା କହିଲେ– ''ମାନସିଂ, ବୀରେନ୍ ତମରି ପରି ଆଇଡିୟାଲିଷ୍ଟିକ୍ (ଆଦର୍ଶବାଦୀ) । ସେ ଆଡ୍‌ମିନିଷ୍ଟ୍ରେସନ୍ ଇତ୍ୟାଦିରେ ପଶିବାକୁ ଚାହିଲାନି । ସେ ବର୍ତ୍ତମାନ ନେତ୍ରାହାଟ ପବ୍ଲିକ୍ ସ୍କୁଲ୍‌ରେ ଏକ ଆସିଷ୍ଟାଣ୍ଟ୍ ଶିକ୍ଷକ । ସେଇଥିରେଇ ସେ ସୁଖୀ ।''

ଯଦି ଗୋଟିଏ ରାଜ୍ୟର ଡି.ପି.ଆଇ.ର ବୁଦ୍ଧିମାନ୍ ଓ ଗୁଣବାନ୍ ପୁଅ ସହକାରୀ ଶିକ୍ଷକ ହୋଇ ସୁଖୀ ରହିପାରେ, ତେବେ ସାଧାରଣ ଗ୍ରାଜୁଏଟ୍‌ର ଶିକ୍ଷକତା ପ୍ରତି ତାଚ୍ଛଲ୍ୟ ଦେଖାଇବାରେ

କୌଣସି ହେଲେ ଯୁକ୍ତି ନାହିଁ । ବରଂ ମୂଳରୁ ଶିକ୍ଷକତାକୁ ବ୍ରତରୂପେ ବରଣ କରିନେଇ ତାକୁ ଜାତିର କଲ୍ୟାଣରେ ଏକ ତପସ୍ୟା ଓ ସାଧନାରୂପେ ଆଚରଣ କରିପାରିଲେ, ସାମାନ୍ୟତମ ପୁରୁଷ ମଧ୍ୟ ଦିନେ ସହସ୍ର ତରୁଣ ହୃଦୟର ଦେବତାରୂପେ ପୂଜିତ ହେବାର ଆଶା କରିପାରେନାହିଁ କି ? ଜଣେ ସାଧାରଣ ଶିକ୍ଷିତ ଲୋକର ଯାଠାରୁ ମହତ୍ତର କାମ୍ୟ ଆଉ କ'ଣ କଳ୍ପନା କରାଯାଇପାରେ ?

ଅନ୍ୟପକ୍ଷରେ ଉଚ୍ଚଶିକ୍ଷା-ପ୍ରସାରର ଛଦ୍ମ ବାହାନାରେ, ବେକାର ସମସ୍ୟାର ସମାଧାନଭାବରେ ବା ସାର୍ଟିଫିକେଟ୍ ବା ବିଜ୍ଞାପନ ଦେଇ ପ୍ରକୃତ 'ଶିକ୍ଷକ' ପାଇବା ସମ୍ଭବ ନୁହେଁ । ଗୋପବନ୍ଧୁ ଯେପରି ସତ୍ୟବାଦୀ ସ୍କୁଲ୍‌ର ଶିକ୍ଷକମାନଙ୍କୁ ଛାତ୍ର ଅବସ୍ଥାରୁ ଗଢ଼ିଥିଲେ, ଯେପରି ଖ୍ରୀଷ୍ଟିଆନ୍ ମିସନାରୀ ସବୁ ଗଢ଼ାହୋଇଥାନ୍ତି, ଆମେ ଯଦି ସେଇ ରୀତିରେ ଆମର ଶିକ୍ଷକ ଶ୍ରେଣୀକୁ ମୂଳରୁ ଗଢ଼ିବାକୁ ଚେଷ୍ଟାକରୁ ତେବେ ନା ଏ ଦିଗରେ କିଛି ପ୍ରକୃତ ସାଫଲ୍ୟ ମିଳିବାର ଆଶା କରିବା ! ଦେଶର ପ୍ରଧାନଶିକ୍ଷକଗଣ, ପ୍ରିନ୍ସପାଲମାନେ, ଅଧ୍ୟାପକମାନେ, ସମସ୍ତେ ଯଦି ଏ ଦିଗରେ ଆଖିରଖନ୍ତେ, ତେବେ ଆମକୁ ଜାତିର ଭବିଷ୍ୟତ-ଶିକ୍ଷକମାନଙ୍କୁ ଖୋଜି ପାଇବାରେ ବୋଧହୁଏ କଷ୍ଟ ହୁଅନ୍ତାନାହିଁ । ଯଦି ଛାତ୍ରାବସ୍ଥାରୁହିଁ ଆମର ଭବିଷ୍ୟତ୍ ଶିକ୍ଷକମାନଙ୍କ ହୃଦୟରେ ଶିକ୍ଷକତାର ମହନୀୟତା ଉଦ୍‌ବୋଧିତ କରି ରଖାଯାନ୍ତା, ଯଦି ସରକାର ଏମାନଙ୍କର ସକଳ ଅଭାବ ଅସୁବିଧାର ଦାୟିତ୍ୱ ନିଅନ୍ତେ, ଯେପରି ଖ୍ରୀଷ୍ଟିଆନ୍ ମିସନ୍ ସବୁ ନିଅନ୍ତି ପାଦ୍ରିମାନଙ୍କର, ତାହେଲେ ଆମେ ଏକ ଅନନ୍ୟଚିତ୍ତ, ନିଷ୍ପାପର ଶିକ୍ଷକଗୋଷ୍ଠୀ ସହଜରେ ହୁଏତ ପାଆନ୍ତେ, ଯେଉଁମାନେ କି ଆନ୍ତରିକତା ସହିତ ଶିକ୍ଷକତା ମାଧ୍ୟମରେ ଜାତିର ସେବା କରିବେ ବୋଲି ବିଶ୍ୱାସ କରାଯାଇପାରନ୍ତା ।

ସମ୍ବଲପୁର କଲେଜରେ ପ୍ରିନ୍ସପାଲ ଥିଲାବେଳେ ଏ ଦିଗରେ ଥରେ ଦି'ଥର ଚେଷ୍ଟା କରିବାର ମନେଅଛି । ସେଠି ଅଧ୍ୟାପକ ଅଭାବ ଥିବାରୁ ମୁଁ କିଛିକାଳ ବି.ଏ. ଶ୍ରେଣୀରେ ଓଡ଼ିଆ ମଧ୍ୟ ପଢ଼ାଉଥିଲି । ମୁଁ ଦେଖିଲି ଯେ ଗୋଟିଏ ଛାତ୍ରର ଓଡ଼ିଆ ପଠନ ବଡ଼ ପରିଷ୍କାର, ପିଲାଟି ମଧ୍ୟ ଶାନ୍ତ-ସ୍ୱଭାବ ଓ ସୁଶ୍ରୀ । ତାକୁ ଦିନେ ଅଫିସକୁ ଡକାଇ ମୁଁ ପଚାରିଲି, ସେ ବି.ଏ. ପାସ୍ କରି କ'ଣ କରିବାକୁ ଚାହେ । ସେ କହିଲା, ସେ ଚାକିରି କରିବ; କିନ୍ତୁ କି ଚାକିରି କରିବ ସେ ଜାଣେନା । ମୁଁ ତାକୁ କହିଲି, ''ଦେଖ, ଆଜିଠାରୁ ଲକ୍ଷ୍ୟ ସ୍ଥିର କର । ମୁଁ ଦେଖୁଛି ତୁମେ ଜଣେ ଉତ୍ତମ ସ୍କୁଲ୍-ଶିକ୍ଷକ ହେବ । ଦେଶରେ ଆଜି ଉତ୍ତମ ସ୍କୁଲ୍-ଶିକ୍ଷକର ବଡ଼ ଅଭାବ । ତମେ ସେଇ ଲାଇନ୍‌ରେ ଯାଅ । ଦେଶର ସେବା କର । ଆଉ, ଶିକ୍ଷକତାକୁ ତୁଚ୍ଛ କରି ଦେଖିବାର କୌଣସି କାରଣ ନାହିଁ । ତମେ ଶାନ୍ତିମୟ ଜୀବନଯାପନ କରିବ । ତମ ପିଲାମାନେ ଉତ୍ତମ ଶିକ୍ଷା ପାଇବେ । ଆର୍ଥିକ ଦିଗରୁ ମଧ୍ୟ, ଶେଷ ହିସାବରେ, ତମର କିଛି ଅବସୋସ ରହିବ ବୋଲି ବିଶ୍ୱାସ କରୁନି । ତମଠି ଶିକ୍ଷକତାର କେତେକ ଗୁଣ ଦେଖୁଛି ବୋଲି ତୁମକୁ ଏକଥା କହୁଛି । ଏଣେ ତେଣେ ଦଉଡ଼ାଦଉଡ଼ି କରନି । ଲକ୍ଷ୍ୟ ସ୍ଥିରକରି ସେଇ ବାଟରେ ଏକମୁହାଁ ହୋଇ ଚାଲିଯାଅ ।''

ସେ ପିଲାଟି ରୀତିମତ ଟ୍ରେନିଂ ନେଇ ଏବେ ଜଣେ ଶିକ୍ଷକ । ଏଇପରି ଆଉରି ଅନେକ ପିଲାଙ୍କୁ ସେତେବେଳେ ଏପ୍ରକାର ଉପଦେଶ ଦେଇଛି । କିନ୍ତୁ ଏଠାରେ ଆଉ ଏକ ବିପରୀତ ଚିତ୍ର ମଧ୍ୟ ଦିଏଁ ।

ସମ୍ବଲପୁର ଛାଡ଼ିଲା ପରେ ଦିନେ ମୋର କଟକ ବସାରେ ଜଣେ ପୂର୍ବତନ ଛାତ୍ର ଦେଖା-କଲେ । ଏ ପିଲାଟି ବଡ଼ ଫୁର୍ତ୍ତିବାଜ୍ । ଶିକ୍ଷକତ୍ୱର କୌଣସି ଗୁଣ ତା'ଠି ନଥିଲା । ତାକୁ ପଚାରିଲି, ''କ'ଣ କରୁଛ ?'' ସେ ଯେତେବେଳେ କହିଲା, ସେ କଟକରେ ଟ୍ରେନିଂ କଲେଜରେ ନାଁ ଲେଖାଇଛି, ମୁଁ ସ୍ତମ୍ଭୀଭୂତ ହୋଇଗଲି । ମୁଁ ତାକୁ କହିଲି, ''ଏ ବୁଦ୍ଧି ତମକୁ କିଏ ଦେଲା ? ଏ ବାଟରେ ତମେ କେବେହେଲେ ସୁଖୀ ହେବନି । ତମର ବରଂ ପୋଲିସ୍ ଲାଇନରେ ଯିବା ଉଚିତ ଥିଲା । ତମେ ସେ ବିଭାଗରେ ନାମ କରିବାର ସମ୍ଭାବନା ।''

କଥା ହେଉଛି ଏଇ ଯେ, ପିଲାଟିର ଗାଁରେ ବେଶ୍ କିଛି ପୈତୃକ ସମ୍ପତ୍ତି ଅଛି । ତେଣୁ ପିତୃଦେବଙ୍କ ଯୋଜନା, ଏ ଯଦି କୌଣସିମତେ ନିଜ ଗାଁ ପାଖ ସ୍କୁଲ୍‌ରେ ମାଷ୍ଟ୍ରଟିଏ ହୋଇପାରେ, ତେବେ କିଛି ରୋଜଗାର ବି ହେଲା, ଏଣେ ପୈତୃକ ସମ୍ପତ୍ତିର ରକ୍ଷଣାବେକ୍ଷଣ ମଧ୍ୟ ହେବ । ଅର୍ଥାତ୍, ଶିକ୍ଷକ ହେବାର ରୁଚି ବା ବୌଦ୍ଧିକ ବା ଚାରିତ୍ରିକ ସମ୍ଭାବନା ଥାଉ ନଥାଉ କିଛି ଯାଏଆସେ ନାହିଁ – ଶିକ୍ଷକତ୍ୱଟା ଗୋଟାଏ ବ୍ୟବସାୟ ମାତ୍ର । ଶିକ୍ଷକତ୍ୱ ସମ୍ବନ୍ଧରେ ଏଇ ହେଲା ଏ ଦେଶରେ ଆଜି ସାଧାରଣ ଧାରଣା ।

ଆମ ଦେଶରେ ଆମର ତରୁଣମାନଙ୍କୁ ନିଜର ସ୍ୱାଭାବିକ ଲକ୍ଷ୍ୟ ଓ ପଥ ବତେଇ ଦେବାର ପରମ୍ପରା ଏପର୍ଯ୍ୟନ୍ତ ସ୍ଥିର ହୋଇପାରିନାହିଁ । ଆମ ବେଳେ ତ ଆଦୌ ନଥିଲା । ଥିଲେ ହୁଏତ ମୋର ସେଇ ଖୋର୍ଦ୍ଧା ଛାତ୍ର ବେଳର ଆଦର୍ଶକୁ ମୁଁ ଅନନ୍ୟଚିତ୍ତ ଭାବରେ ଅନ୍ତରରେ ବଞ୍ଚାଇ-ରଖିପାରିଥାନ୍ତି । ଫଳରେ ଯାହା ସ୍ୱାଭାବିକ ଭାବରେ ଘଟିଥାନ୍ତା, ତାହା ଘଟିଲା ଘଟଣାଚକ୍ରର ଚାପ ନେଇ । ମାନସିକ ଜଗତରେ ଘଟିଲା ବହୁ ବିକ୍ଷୋଭ, ବ୍ୟର୍ଥତା ଓ ବିପ୍ଳବ । ଜୀବନରେ ରହିଗଲା ବହୁ ତିକ୍ତ ସ୍ମୃତି । କିପରି ଓ କାହିଁକି ଏପରି ଘଟିଲା, ତାହା ବର୍ତ୍ତମାନ କହେଁ ।

## କିପରି ଶିକ୍ଷକ ହେଲି –

ମୁଁ ମାଟ୍ରିକ୍ୟୁଲେଶନ୍ ପରୀକ୍ଷାଟା ବି ଟପିପାରିବି, ଏ ଭରସା ମୋର ଆଦୌ ନଥିଲା । ଅଙ୍କ-ସରସ୍ୱତୀଙ୍କର ଏହି ଅଧମ ଉପରେ ନିରତିଶୟ କରୁଣା ଯୋଗୁଁ ମାଟ୍ରିକ୍ୟୁଲେଶନ୍‌ର ଲୌହ ଫାଟକ ପାର ହୋଇ ତା'ଆରପଟେ ଥିବା କଲେଜ-ବିଦ୍ୟାର ସୌଖୀନ ଉଦ୍ୟାନରେ ବୁଲି ପାରିବାର କଳ୍ପନା, ଏଇ ହତଭାଗ୍ୟ ଜୀବର ସ୍ୱପ୍ନର ବିଷୟ ମଧ୍ୟ କେବେହେଲେ ନଥିଲା; କିନ୍ତୁ ସମସ୍ତ ପରଜୀବନର ଘଟଣାବଳି ପରି, ସେତେବେଳେ ଜୀବନର ପ୍ରାକ୍‌କାଳରେ ହିଁ, ଯାହା ପୂର୍ବରୁ କେବେ କଳ୍ପନା କରାଯାଇନଥିଲା, ତାହାହିଁ ଅଘଟନ-ଘଟନ ରୀତିରେ କାର୍ଯ୍ୟରେ ଘଟିଲା । ମୋର ନିଜର ଆଶଙ୍କାନୁଯାୟୀ ମୁଁ ଫେଲ୍ ତ ହେଲିନି, ବରଂ ପାସ୍ କଲି ଫାଷ୍ଟ ଡିଭିଜନରେ ଓ ତା ପୁଣି ଡିଭିଜନାଲ୍ ସରକାରୀ ବୃତ୍ତି ସହିତ । ମୁଁ ବାଧ୍ୟ ହୋଇ ସେତେବେଳେ କଳ୍ପିତ-ସ୍ୱର୍ଗ କଟକ ନଗରକୁ ଆସିଲି କଲେଜରେ ପଢ଼ିବାକୁ ଓ ପରେ ଆଉରି ଆଉରି ବୃତ୍ତି ପାଇବା ଯୋଗୁଁ, ଏକପ୍ରକାର ବାଧ୍ୟହୋଇ, ଉପରକୁ ଉପରକୁ ଚାଲିଲି ।

ସେତେବେଳେ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ରମାନଙ୍କୁ ବ୍ରିଟିଶ୍ ସରକାର ଖାଲି ସାକ୍ଷାତ୍‌କରି ଡିପୋଟି ଚାକିରି ଦେଇଦେଉଥିଲେ । ତେଣୁ ଖୋର୍ଦ୍ଧାର ସେହି ପିଲା, ଯିଏ ମାଟ୍ରିକ୍ୟୁଲେଶନ୍

ପାସ୍ କରିବ ବୋଲି ଭାବିପାରୁନଥିଲା ଓ ଭାବୁଥିଲା ଗୋଟିଏ ହାଇସ୍କୁଲ୍ ବା ମିଡ଼ିଲ୍ ସ୍କୁଲ୍‌ରେ ଶିକ୍ଷକ ହେବାହିଁ ତା ଜୀବନର ପରମ ସାର୍ଥକତା, ସେ ବର୍ତ୍ତମାନ ତା' ସାଙ୍ଗମାନଙ୍କ ପରି ଡିପୋଟି ହେବାକୁ ଚାହିଲା । ତାର ସାଙ୍ଗମାନେ ସବୁ ଡିପୋଟି ହୋଇଗଲେ ମଧ୍ୟ, କିନ୍ତୁ ତା' ଜୀବନର ସ୍ୱାଭାବିକ ଅଦୃଶ୍ୟ ଧାରା ଅନୁସାରେ ତା'ର ସାଙ୍ଗମାନଙ୍କ ପରି ତା'ର ମଧ୍ୟ ନ ହେବାର କୌଣସି କାରଣ ନଥିଲେହେଁ, ସେ ଡିପୋଟି ହୋଇପାରିଲାନାହିଁ ।

ଆମେ ବି.ଏ. ପାସ୍ କଲା ବେଳକୁ ଅସହଯୋଗୀ ନେତା ଗୋପବନ୍ଧୁ ଦାସ ପ୍ରାଣତ୍ୟାଗ କଲେ । ପ୍ରାଣର ଆବେଗରେ ମୁଁ ଗୋପବନ୍ଧୁଙ୍କ ମୃତ୍ୟୁର କେତେଦିନ ଭିତରେ ତିନୋଟି କବିତା ଓ ହୁଏତ ତାଙ୍କୁ ନେଇ ପ୍ରଥମ ଇଂରାଜୀ ପ୍ରବନ୍ଧ ଲେଖିପକାଇଲି । 'ଗୋପତର୍ପଣ' ଉତ୍କଳସାହିତ୍ୟ ପତ୍ରିକାରେ ଓ 'ଗୋପପ୍ରୟାଣ' ବୋଧହୁଏ ସମାଜରେ ପ୍ରକାଶ ପାଇଥିଲା । ତୃତୀୟ କବିତାଟି ହଜିଯାଇଛି । ଇଂରାଜୀ ପ୍ରବନ୍ଧଟି ରେଭେନ୍ସା କଲେଜ ମାଗାଜିନ୍‌ରେ ପ୍ରକାଶିତ ହେଲା । ସରକାରୀ ଡେପୁଟି-ନିର୍ବାଚନ ସମ୍ପର୍କରେ ସାହେବ ପ୍ରିନ୍ସପାଲ ମି. ଅର୍ଗିଲ୍, କନ୍‌ଫିଡ଼େନ୍‌ସିଆଲ୍ ରିପୋର୍ଟ ପଠାଇବାର ଶୁଣାଗଲା, ''He wants to be in both the camps'' ଅର୍ଥାତ୍ 'ଏ ଟୋକା ଉଭୟ ଶିବିରରେ ରହିବାକୁ ଚାହେ ।' ଫଳରେ ବ୍ରିଟିଶ୍ ସରକାର ଏପରି ଅବିଶ୍ୱାସୀ ଲୋକକୁ ଶାସନ ବିଭାଗରେ ପୂରାଇଲେ ନାହିଁ ।

ଡିପୋଟି ଚାକିରି ନମିଳିବାରୁ, ମୁଁ ବର୍ତ୍ତମାନ ଶିକ୍ଷା ବିଭାଗ ଆଡ଼କୁ ବାଧ୍ୟ ହୋଇ ଆଖି ଫେରାଇଲି ।

କିନ୍ତୁ ଡିପୋଟି ନହୋଇଛି ବୋଲି ଜୀବନରେ କେବେ ଅବସୋସ କରିନାହିଁ । ବରଂ ତା' ନହୋଇ, ବାଧ୍ୟହୋଇ ମଧ୍ୟ ଯାହା ଶିକ୍ଷାବିଭାଗରେ ପଶିଲି, ତାହାଯୋଗୁଁ ଜୀବନରେ ଅନେକ ମହାମୂଲ୍ୟ ଅଭିଜ୍ଞତା ମୁଁ ପାଇପାରିଛି । ସମସ୍ତ ଦୁର୍ଦ୍ଦଶା ସତ୍ତ୍ୱେ ତାହା ମୋ ନିକଟରେ ଅନ୍ତତଃ ମଜାର ବିଷୟ ହୋଇଛି । ଏ ଦେଶରେ ଶିକ୍ଷକତା ପ୍ରତି ଓ ପକ୍ଷାନ୍ତରରେ ଧନ ଓ ପଦର ମର୍ଯ୍ୟାଦା ପ୍ରତି କିପରି ସମ୍ମାନ ପ୍ରଦର୍ଶିତ ହୋଇଥାଏ, ତାହା ମୁଁ ନିଜ ଅଙ୍ଗରେ ଯେପରି ନିଭେଇଛି ତାହାହିଁ ଏଠାରେ ପ୍ରଥମେ କହେ । ବହୁ ଭିତରେ ଏହା ମଧ୍ୟ ଏକ ସାର୍ଥକ ଅଭିଜ୍ଞତା ବୋଲି ଅନୁଭବ କରେ ।

## ଶିକ୍ଷକତା ଯୋଗୁଁ ଅପମାନ –

ମୋର ଯେଉଁ ସାଙ୍ଗମାନେ ଡେପୁଟି ଚାକିରି ପାଇ ଚାଲିଗଲେ, ପଢ଼ିଲାବେଳେ ସେମାନଙ୍କ ସଙ୍ଗେ ମୋର ବେଶ୍ ବନ୍ଧୁତା ଥିଲା । ଅନ୍ତତଃ ପାଠ ବା ଡିଗ୍ରୀର ମୂଲ୍ୟ ଦେଇ ବିଚାର କରାଗଲେ, ସେମାନଙ୍କ ତୁଳନାରେ ମୋର ଲଜ୍ଜାବୋଧ କରିବାର କିଛି ନଥିଲା । କିନ୍ତୁ ଏକା ଡିଗ୍ରୀ, ଏକା ପାଠ ଥାଇ ସେମାନେ 'ହାକିମ' ହୋଇଗଲେ, ଆଉ ମୁଁ ଗୋଟାଏ ମାଷ୍ଟ୍ର ମାତ୍ର ରହିଲି । ଫଳରେ ଦେଖିଲି, ଏମାନଙ୍କ ଭିତରୁ ଅନେକେ ବାଟରେ ଦେଖାହେଲେ ଅଚିହ୍ନା ପରି ବ୍ୟବହାର କଲେ । ଏକା କଟକ ନଗରରେ ଥିଲେ ମଧ୍ୟ ସେମାନଙ୍କର ସାମାଜିକ ଉତ୍ସବରେ ମୋ ପରି ସାମାନ୍ୟ ଶିକ୍ଷକର ଆଉ ସ୍ଥାନ ନଥିଲା ।

ହାକିମଶ୍ରେଣୀର, ସେ ପୁଣି ମୋ ପୂର୍ବତନ ସାଥୀ ଥିଲା ଲୋକଙ୍କର, ଶିକ୍ଷକ ପ୍ରତି ଏହି ତାଚ୍ଛଲ୍ୟର ପ୍ରତ୍ୟକ୍ଷ ଅଭିଜ୍ଞତା ସହିତ, ତଳଆଡୁ ମଧ ହୀନ ଦୃଷ୍ଟିର ଅଭାବ ନଥିବାର ଦେଖିଲି । ମୁଁ ସେତେବେଳେ ନିମାପଡ଼ାରେ ଶିକ୍ଷକ । ସ୍କୁଲ୍ ହଷ୍ଟେଲ୍‌ର ଗୋଟିଏ ରୁମ୍‌ରେ ଏକାକୀ ଥାଏ । ସକାଳର ଜଳଖିଆପାଇଁ ବେଳେ ବେଳେ କିଛି କିଛି ବୁଟ-ଗଜାର ବ୍ୟବସ୍ଥା କରିଦିଏଁ । ତତ୍କାଳୀନ ଜଣେ ଡେପୁଟି ମାଜିଷ୍ଟ୍ରେଟ୍ (ପରେ ଆଇ.ଏ.ଏସ୍. ଓ କମିଶନର ଓ ଓଡ଼ିଶାରେ ଲେଖକଭାବରେ ମଧ ପରିଚିତ) ସେତେବେଳେ ଗସ୍ତରେ ନିମାପଡ଼ା ଆସିଥାନ୍ତି । ହଠାତ୍ ସେ ମୋତେ ଦେଖିବାକୁ ଆସି ପହଞ୍ଚିଗଲେ । ସାଥିରେ ସେ ସ୍ଥାନୀୟ ଅପର ପ୍ରାଇମେରୀ ସ୍କୁଲ୍‌ର ହେଡ଼ପଣ୍ଡିତଙ୍କୁ ଆଣିଥିଲେ, ମୋର ବସା ଦେଖାଇଦେବାପାଇଁ । ସେ ପଣ୍ଡିତଙ୍କ ସହିତ ମୋର ସେପର୍ଯ୍ୟନ୍ତ ପରିଚୟ ଘଟିନଥାଏ ।

ବନ୍ଧୁ ଅନେକ ସମୟ ଧରି କଥା ହେଲେ । ମୋର ମନେପଡୁଛି, ସେ ମତେ ମନରେ କୌଣସି ବ୍ୟର୍ଥ ଭାବ ନରଖିବାପାଇଁ (ମୁଁ ଆଡ଼ମିନିଷ୍ଟ୍ରେଟିଭ୍ ଲାଇନ୍‌ରେ ନପଶିବାରୁ) ବୁଝାଇଲେ । ସେ ମୋତେ ସାହିତ୍ୟ ସାଧନାରେ ଲାଗି ରହିବାକୁ କହୁ କହୁ କହିଲେ, ''ଆପଣଙ୍କର ସବୁ ଭଲ ହେବ, ଆପଣ ଭାଗ୍ୟବାନ୍, ଆପଣ ଚିନ୍ତାକରନ୍ତୁନାହିଁ ।'' ହାକିମଙ୍କର ଏ ବାକ୍ୟର ପ୍ରତିକ୍ରିୟାରେ ଉପସ୍ଥିତ ଥିବା ଅପର ପ୍ରାଇମେରୀ ପଣ୍ଡିତ, ହାକିମଙ୍କୁ ପରୋକ୍ଷ ସ୍ତୁତି-ସୂତ୍ରରେ ବା ମତେ ପ୍ରତ୍ୟକ୍ଷ ଅପମାନ ଦେବାପାଇଁ, ହଠାତ୍ କହିଉଠିଲେ–''ହଁ, ଭାଗ୍ୟ ଜଣାପଡୁନି ! ଏଇ ଜଳଖିଆରୁ ତ ତାହା ସ୍ପଷ୍ଟ ଜଣାଯାଉଛି ! ବାବୁଙ୍କ ଘୋଡ଼ା ଯାହାକୁ ଖାଆନ୍ତି, ସେହି ବୁଟ ଯେତେବେଳେ ଜଳଖିଆ ହେଉଛି– ଭାଗ୍ୟ ନିଶ୍ଚୟ !''

ଶିକ୍ଷକ ପ୍ରତି ଏ ଦେଶରେ ସେଣେ ଉପର ମହଲ ଓ ଏଣେ ପୁଣି ତଳ ମହଲରେ କି ପ୍ରକାର ଦୃଷ୍ଟି, ତାର ଦୃଷ୍ଟାନ୍ତ ସ୍ୱରୂପହିଁ ଜୀବନର ଏହି ଦୁଇ ଅଭିଜ୍ଞତା କହିରଖିଲି; କିନ୍ତୁ ମୋର ମନେହେଉଛି, ମୋର ସେହି ଖୋର୍ଦ୍ଧା-ସ୍କୁଲ୍ ବେଳର ଶିକ୍ଷକର ଆଦର୍ଶ ପ୍ରତି ମୁଁ ଯଦି ବରାବର ବିଶ୍ୱସ୍ତ ରହିଥାନ୍ତି, ତେବେ ମୋତେ ଏପରି ଅପମାନସୂଚକ କଥା ଶୁଣିବାକୁ ପଡ଼ିନଥାନ୍ତା ବା ଅନ୍ୟମାନଙ୍କଠାରୁ ଅପମାନସୂଚକ ବ୍ୟବହାର ପାଇଲେ ମଧ ମୁଁ ତାହା ହୃଦ୍‌ବୋଧକୁ ଆଣି-ନଥାନ୍ତି । ଆଜି ବି ଯେଉଁ ତରୁଣ, ଶିକ୍ଷକଭାବରେ ଦେଶ ଓ ଜାତିର ସେବାପାଇଁ ବଦ୍ଧପରିକର ହୋଇ ଶିକ୍ଷାଜଗତରେ ପଶନ୍ତି ଓ ଅନନ୍ୟଚିତ୍ତ ହୋଇ ସେ କର୍ମରେ ଲାଗିପଡ଼ନ୍ତି, ତେବେ ମୋର ଦୃଢ଼ବିଶ୍ୱାସ, ସେ ମୂଳରୁହିଁ ସମ୍ପୃକ୍ତ ସକଳ ଜନର ଶ୍ରଦ୍ଧା ଓ ସମ୍ମାନ ପାଇବେ । ବିକଳ-ଚିତ୍ତ ଲୋକ ଘରେ ବା ବାହାରେ କେଉଁଠି ହେଲେ ସମ୍ମାନ ପାଇବାର ଆଶା କରାଯାଏନାହିଁ ।

## ଶିକ୍ଷକତାରେ ଆନନ୍ଦ ଓ ଗୌରବ –

କିନ୍ତୁ ମନେହୁଏ, ଗୋଟିଏ ଜୀବନର ସ୍ୱପ୍ନ ଓ ସେହି ସ୍ୱପ୍ନର ବ୍ୟର୍ଥତାର ମଧ ଯଥେଷ୍ଟ ମୂଲ୍ୟ ଅଛି । ଦିନେ ତାହା ଭବିଷ୍ୟତ୍‌ର କୌଣସି ନା କୌଣସି ସହ-ପଥିକ ଓ ସତୀର୍ଥଙ୍କୁ କିଛି ହେଲେ ସାହାଯ୍ୟ ଦେବ ବୋଲି ଆଶା । ମୋର ବିଶ୍ୱାସ, ମୁଷ୍ଟିମେୟ ହୁଅନ୍ତୁ ପଛେ, ଦେଶରେ ବରାବର ପ୍ରତି ପୁରୁଷରେ ଆଦର୍ଶବାଦୀ ତରୁଣର ଦଳ ବାହାରିବେ, ଯେଉଁମାନେ ଶିକ୍ଷକ ଭାବରେ ଏ

ଦେଶରେ ମାନବସେବା କରିବାକୁ ଜୀବନରେ ପରମ ମହତ୍ତ୍ୱ ବୋଲି ମନେ କରିବେ । ପ୍ରତି ପୁରୁଷରେ ଜଣେ ହେଲେ ସେପରି ଶିକ୍ଷକ ତ ଦେଖାଦେବେ ? ମୋର ଏ ବର୍ଣ୍ଣନା ହୁଏତ ମୋର ସେହି ଭବିଷ୍ୟତ୍‌ର ପରମ ଆତ୍ମୀୟ ଜଣେ ମାତ୍ର ସମାନଧର୍ମାଙ୍କ ପାଇଁ । ତାଙ୍କୁହିଁ ମୁଁ କହିରଖୁଛି ଯେ, ମନ୍ତ୍ରୀ ବା ବଡ଼ାସାହେବଙ୍କ ଆପାତମର୍ଯ୍ୟାଦାକୁ ଦୃଷ୍ଟିନଦେଇ ଜୀବନର ପ୍ରଥମରୁହିଁ ସେ ଯେପରି ଶିକ୍ଷକ ହେବାର ସ୍ଥିର କରନ୍ତି ଓ ସେଇ ଲକ୍ଷ୍ୟରେ ସାରା ଜୀବନ ଏକମୁଖୀ ଯାତ୍ରା କରନ୍ତି । ଗୀତାରେ 'ଅବ୍ୟଭିଚାରୀ' ଭକ୍ତିର ଆଦର୍ଶ ପ୍ରଚାର କରାଯାଇଛି । ବିଶୁଦ୍ଧ, ଜ୍ଞାନଗରିଷ୍ଠ ଓ ମାନବିକତାପୁଷ୍ଟ ଶିକ୍ଷକତା ସେହିପରି ଏକ ପାବନ ତପସ୍ୟା ଯାହା କି ଅବ୍ୟଭିଚାରୀ ଅନନ୍ୟମାନସିକତା ଦାବି କରେ ଓ ଦରକାର କରେ । ସେହି ସାଧନାର ସିଦ୍ଧି ମଧ୍ୟ ଅତି ଲୋଭନୀୟ ଓ ବରଣୀୟ । ସେ କୃତକାର୍ଯ୍ୟତାର ମୂଲ୍ୟାଙ୍କନ ଅର୍ଥର ମାନଦଣ୍ଡରେ ହୋଇନପାରେ । ଏଇ ଲେଖକ ଏଇ ଆନନ୍ଦର, ଏଇ କୃତକାର୍ଯ୍ୟତାର ସାମାନ୍ୟ କିଛି ଅଙ୍ଗେ ନିଭେଇଛି ବୋଲିହିଁ ଏହା କହିପାରୁଛି । ଶିକ୍ଷକତାର ଆନନ୍ଦ ଓ ବଧାଇ ସେ ସାମାନ୍ୟ ପାଇଛି; କିନ୍ତୁ ପାଇ ଏକାଗ୍ରଚିତ୍ତତା ଏ ଦିଗରେ ଅର୍ପଣ କରିପାରିନି ବୋଲିହିଁ ସେ ଆଜି ଅନୁତପ୍ତ । ତେଣୁ, ହେ ବର୍ତ୍ତମାନ ଓ ଭବିଷ୍ୟତ୍‌ର ସହଗାମୀ ବନ୍ଧୁଗଣ, ଏଇ ଲେଖକର ଭୁଲ୍‌ରୁ ମଧ୍ୟ ଯେପରି ଶିକ୍ଷାକର । ଯଦି ଶିକ୍ଷକର ପଥ ବରଣକରିଛ, ତେବେ ଅନନ୍ୟଚିତ୍ତ ଭାବରେ ଏଥିରେ ଆପଣାକୁ ସମର୍ପଣ କର· ଏପରି ଆତ୍ମିକ ସୁଖ ଓ ଶାନ୍ତି ତମେ ଏଥିରୁ ପାଇବ ଯାହା କୌଣସି ମନ୍ତ୍ରୀ ବା ବଡ଼ାସାହେବଙ୍କ ଭାଗ୍ୟରେ ଘଟେନା ବା ଘଟିବା ସମ୍ଭବ ନୁହେଁ ।

ଏ ଦେଶ ଓ ଜାତିର କର୍ଣ୍ଣଧାରଗଣଙ୍କୁ ମଧ୍ୟ ଏଇ ସାମାନ୍ୟତମ ମୂଳତତ୍ତ୍ୱଟି ବିନୀତଭାବରେ ସ୍ମରଣ କରାଇଦିଏ ଯେ, ଗୁରୁହିଁ ବିଦ୍ୟାଳୟ, ଗୁରୁହିଁ ଦେଶ, ଗୁରୁହିଁ ଜାତି । ଗୁରୁ ଯେପରି, କେବଳ ବିଦ୍ୟାଳୟ ସେପରି ନୁହେଁ; ଦେଶ ସେପରି, ଜାତି ସେପରି । ଡି.ପି.ଆଇ ବା ଶିକ୍ଷାମନ୍ତ୍ରୀ ବା ପଞ୍ଝା ପଞ୍ଝା ଅଫିସର ଜଣେ ପ୍ରକୃତ ଗୁରୁ ସହିତ ସମାନ ହୋଇନପାରନ୍ତି । କୋଟି କୋଟି ଟଙ୍କାର କୋଠାବାଡ଼ି, ଆସବାବ ଓ ପର୍ବତ ଆକାର ଫାଇଲ୍ ଜଣେ ଉତ୍ତମ ଅପର ପ୍ରାଇମେରୀ ସ୍କୁଲ୍ ହେଡ୍‌ପଣ୍ଡିତଙ୍କର ମଧ୍ୟ ସମକକ୍ଷ ହୋଇନପାରନ୍ତି । ଉତ୍ତମ ପ୍ରିନ୍ସପାଲ, ଉତ୍ତମ ଷ୍ଟାଫ୍ ଓ କେବଳ ଯୋଗ୍ୟ, ବୁଦ୍ଧିମାନ୍ ଛାତ୍ରଙ୍କୁ ନେଇ ଗୋଟିଏ ମାତ୍ର କଲେଜ, ସମଗ୍ର ଓଡ଼ିଶାକୁ ଜ୍ଞାନଦୀପ୍ତ ଓ ମନୁଷ୍ୟବାନ୍ କରିପାରନ୍ତା । ଏ ଦେଶର ୫୦ ହଜାର ଗ୍ରାମର ପ୍ରତ୍ୟେକ ଗ୍ରାମରେ ଏକ ଏକ କଲେଜ ବସାଇଗଲେ ବା ପ୍ରତି ଜିଲ୍ଲାରେ ଏକ ଏକ ବିଶ୍ୱବିଦ୍ୟାଳୟ ବସେଇଦେଲେ ମଧ୍ୟ ତାହା ନହୋଇ, ବରଂ ବିପରୀତ ଫଳ ଫଳିବାର ଆଶଙ୍କା । ଏ ଜାତିର ନିୟାମକର ଆସନରେ ଯେଉଁମାନେ ଉପବିଷ୍ଟ, ସେମାନେ ଦୟାକରି ମନେରଖନ୍ତୁ, ଶିକ୍ଷାର ମୌଳିକତମ, ସାମାନ୍ୟତମ, ସାଧାରଣତମ ଓ ସରଳତମ ଏହି ତତ୍ତ୍ୱଟି ଯେ ଗୁରୁହିଁ ବିଦ୍ୟାନୁଷ୍ଠାନ, ଗୁରୁହିଁ ଜାତି । ସେମାନେ ଦୟାକରି ମନେରଖନ୍ତୁ ଯେ ଡିପାର୍ଟମେଣ୍ଟାଲ୍ ଫାଇଲ୍ ଚାଷ, ପଦପଦବୀର ପୂରଣ ଓ ବଣ୍ଟନ ନେଇ ପ୍ରିୟ-ବନ୍ଧୁତୋଷଣ, ଜ୍ଞାନଦାନର ଛଳନାମୟ ବ୍ୟପଦେଶରେ ଜାତିର ଆଗାମୀ ବଂଶଧରମାନଙ୍କଠାରୁ ଅପଦାର୍ଥ ପାଠ୍ୟପୁସ୍ତକ ମାଧ୍ୟମରେ ଏକ କୃଷ୍ଟ, କୁତ୍ସିତ ଜିଜିୟା-କର ଆଦାୟ ଓ ଶିକ୍ଷାର ଗଣତାନ୍ତ୍ରିକ ପ୍ରସାର ନାମରେ ଜ୍ଞାନ ଓ ସାଧନାର ପବିତ୍ର ମାନଦଣ୍ଡର

ଧୂଳିସାତ୍‌କରଣ—ଏ ସମସ୍ତହିଁ ବୀଭତ୍ସ ଅବିଦ୍ୟାର ଏକ ବ୍ୟାପକ କଳାବଜାର ମାତ୍ର । ଜ୍ଞାନ-ବିତରଣର-ଛଳନାରେ-ପ୍ରସୁପ୍ତ ଦେଶମୟ ଏହି ଘୋର ତମିସ୍ର ରଜନୀରେ, ଏ ଜାତିର ଏକ ମାତ୍ର ଆଶା, ଏକମାତ୍ର ଭରସା, ଏକମାତ୍ର ଆଶ୍ରୟ, ଏକମାତ୍ର ଭବିଷ୍ୟତ୍; ଯଦି ଦୂରେ-ଦୂରେ-ବିକ୍ଷିପ୍ତ, ମୁଷ୍ଟିମେୟ ଏକ ଏକ ପ୍ରକୃତ ଗୁରୁ, ଯେଉଁମାନେ ଆଦର୍ଶର, ବ୍ୟକ୍ତିତ୍ୱର, ଆନ୍ତରିକତାର, ଦେଶ-ପ୍ରେମର, ଜ୍ଞାନ-ସାଧନାର ଓ ନ୍ୟାୟ-ନୈତିକତାର ପ୍ରଦୀପକୁ କୌଣସି ମତେ ଏହି ହତଭାଗ୍ୟ ଦେଶରେ ଜଳାଇ ରଖିବାକୁ ବଦ୍ଧପରିକର ରହିବେ । ହେ ମୋର ସେହି ସଂଖ୍ୟା-ଲଘିଷ୍ଠ ବନ୍ଧୁଗଣ; ତମର ଜଣେ ସହଧର୍ମା, ସତୀର୍ଥ, ସହଯାତ୍ରୀ, ସହଭୋଗୀ ଶିକ୍ଷକ, ତା'ର ଦୀର୍ଘ ଶିକ୍ଷକ ଜୀବନର ନାନା ଅଭିଜ୍ଞତାର ଜମା-ଖର୍ଚ୍ଚ ସ୍ତରକୁ ଆସି, ସେ ଆଜି ତାର ନୀରବ, ନିର୍ଜନ କୁଟୀରରୁ ଏହି ବିନୀତ ଆବେଦନ ପ୍ରତ୍ୟେକଙ୍କ ନିକଟକୁ ପ୍ରେରଣ କରୁଛି ଯେ, ଅନନ୍ୟଚିତ୍ତ ରହ କମରେଡ୍, ଆଦର୍ଶର ପ୍ରଦୀପକୁ ଅନିର୍ବାଣ ରଖ କମରେଡ୍, ସର୍ବଦା ଅବିସ୍ମୃତ ରହ କମ୍‌ରେଡ୍ ଯେ, ପ୍ରକୃତ ଗୁରୁହିଁ ଯେକୌଣସି ସମାଜରେ ଶ୍ରେଷ୍ଠ ମାନବ; ନୁହେଁ ହାକିମ, ନୁହେଁ ପୁଲିସ୍, ନୁହେଁ ଇଞ୍ଜିନିୟର, ନୁହେଁ ମନ୍ତ୍ରୀ । ଏହି ସତ୍ୟକୁ ନିଜ କର୍ମ ଓ ଜୀବନରେ ପ୍ରମାଣିତ କରିରଖ । ମୋର ଦୃଢ଼ବିଶ୍ୱାସ, ଡଜନ ଡଜନ ଡି.ପି.ଆଇ ଯେତେବେଳେ ଜାତିର ଚେତନାରୁ ନିଶ୍ଚିହ୍ନ ଲୋପ ପାଇଥିବେ, ତମେ, ମରି ମଧ୍ୟ ଥିବ ମୃତ୍ୟୁହୀନ, ଦୀନ ଥିଲେ ମଧ୍ୟ ଥିବ ଗୌରବାନ୍ୱିତ, କାର୍‌ରେ ବସିବା ସୌଭାଗ୍ୟ ତମର ନଘଟିଥିଲେ ମଧ୍ୟ ଶୋଚନା ନାହିଁ, କାରଣ ତମର ଗୌରବମୟ ଯାନ ଓ ବାହନ ହେବ ସହସ୍ର ସହସ୍ର ତରୁଣ ହୃଦୟ ।

## ପ୍ରଥମ ଅଧ୍ୟାୟର ପରିଶିଷ୍ଟ

[ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିର ନାଶ୍‌ନାଲ୍ ସେଭିଂସ୍ ଆଡ଼ଭାଇଜର୍ ପଦରେ ଲେଖକର ନିଯୁକ୍ତି ପତ୍ର । ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିରୁ ଏକ୍ସପ୍ରେସ୍ ପତ୍ର । ] (ଇଂରାଜୀରୁ ଅନୂଦିତ)

ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ସେକ୍ରେଟାରୀଙ୍କଠାରୁ ଡକ୍ଟର ଏମ. ମାନସିଂ, ଏମ.ଏ., ପିଏଚ.ଡି.ଙ୍କ ନିକଟକୁ —

ନଂ D.3-138 43-J ତା ୧୯ ଡିସେମ୍ବର, ୧୯୪୬ । ରେଫେରେନ୍ସ, ଏଇ ରେସିଡେନ୍ସିର ନଂ D.3-138 43-J ।

୨—ନାଶନାଲ୍ ସେଭିଂସ୍ କମିଶନର ତୁମକୁ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସମାନଙ୍କର ନାଶନାଲ୍ ସେଭିଂସ୍ ଆଡ଼ଭାଇଜର ଭାବରେ ଶେଷ ନର୍ବାଚନ ଦେଇଛନ୍ତି । ଆନୁଷ୍ଠାନିକ ନିୟୋଗପତ୍ର ଓ ତମର ଗସ୍ତ-ଖର୍ଚ୍ଚା ଓ ଟି.ଏ. ବାବଦୀୟ ଆଦେଶନାମା ଯାଉଛି ।

୩—ମାନ୍ୟବର ରେସିଡେଣ୍ଟଙ୍କ ସୁପାରିସ ଅନୁସାରେ, ନାଶନାଲ୍ ସେଭିଂସ୍ କମିଶନର ତମକୁ ମାସିକ ଟଙ୍କା ୩୦୦ ଦରମା ସହିତ ନିୟମାନୁଯାୟୀ ସକଳପ୍ରକାର ଯୁଦ୍ଧ-ଆଲାଉନ୍ସ ଇତ୍ୟାଦି ଦେଉଛନ୍ତି । ନିୟୋଗପତ୍ରରେ ଏହା ସବୁ ପରିଷ୍କାରଭାବରେ ଜଣାଇ ଦିଆଯିବ ।

୪—ସ୍ମଲ୍ ସେଭିଂସ୍ ଯୋଜନା ସମ୍ପର୍କରେ ତମର କିଛି ଅଭିଜ୍ଞତା ନାହିଁ । ତେଣୁ ତୁମକୁ ଏ ସମ୍ପର୍କରେ ବୁଝେଇ ଦେବାକୁ ହେବ । ଏବର୍ଷ ଶେଷ ହେବା ଉପରେ । ତେଣୁ ନାଶନାଲ୍ ସେଭିଂସ୍

କମିଶନର ଇଚ୍ଛା ପ୍ରକାଶ କରିଛନ୍ତି ଯେ, ତମେ ଆଗାମୀ ବର୍ଷର ଆରମ୍ଭରେ ସିମଳା ଯାତ୍ରା କରି ନାଶନାଲ୍ ସେଭିଂସ୍‌ର୍ କେନ୍ଦ୍ରୀୟ ବ୍ୟୁରୋର ଅଫିସରମାନଙ୍କ ସହିତ ଏ ସମ୍ପର୍କରେ ବ୍ୟକ୍ତିଗତ ଆଲୋଚନା କରିବ । ୧୯୪୭ ଜାନୁଆରୀ ପହିଲାରେ ଚାର୍ଜ ନେଇ ସଙ୍ଗେ ସଙ୍ଗେ ସିମଳା ଚାଲିଗଲେ ତମକୁ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଆଡ଼ଭାଇଜରଭାବରେ ଟି.ଏ. ଓ ହଲ୍ଟିଂ ଆଲାଉନ୍ସ ଇତ୍ୟାଦି ନେବାରେ ସୁବିଧା ହେବ, ଯଦିଓ ସେଠାରୁ ନଫେରିବାଯାଏ ତମର ପ୍ରକୃତ କାମ ଆରମ୍ଭ ହେବନାହିଁ । ତେଣୁ ତମକୁ ଅନୁରୋଧ କରାଯାଉଛି ଯେ, ତମେ ସିଧା ନାଶନାଲ୍ ସେଭିଂସ୍ କମିଶନର, ସିମଳାଙ୍କ ନିକଟକୁ ଚିଠି ବା ତାରଦ୍ୱାରା, ତମର ସେଠାକୁ ଯିବା ତାରିଖ ଇତ୍ୟାଦି ଜଣାଇବ ଓ ତାହା ମଧ୍ୟ ରେସିଡେନ୍ସିକୁ ଜଣାଇବ ।

(ଇଷ୍ଟର୍ଣ୍ଣ ଷ୍ଟେଟ୍‌ସର ମାନ୍ୟବର ରେସିଡେଣ୍ଟଙ୍କର ସେକ୍ରେଟେରୀଙ୍କପାଇଁ;)

ସ୍ୱାକ୍ଷର–ଆର.କେ. ଗୋଲ୍ଡଷ୍ଟେନ୍ ।

(ନୋଟ୍– ରେସିଡେଣ୍ଟ ଏ ଲେଖକକୁ ଏହି ଲୋଭନୀୟ ଚାକିରି ନୂଆ ସୃଷ୍ଟି କରି କେବଳ ଯାଚିନଥିଲେ, ମଧ୍ୟପ୍ରଦେଶର ରାୟପୁର ସହରରେ ମୋର ରହିବାର ଓ ଅଫିସ୍‌ର ସମସ୍ତ ବ୍ୟବସ୍ଥା ମଧ୍ୟ କରିଦେଇଥିଲେ । ମୁଁ କିନ୍ତୁ ଏହାର ଜବାବ ନଦେଇ ଓଡ଼ିଶା ସରକାରଙ୍କ ତଳେ ଶିକ୍ଷା-ବିଭାଗରେ କିପରି ପଶିବି, ତାରି ଅପେକ୍ଷାରେ ରହିଲି । ଦେଢ଼ମାସ ପରେ ରେସିଡେଣ୍ଟ ନିମ୍ନଲିଖିତ ଟେଲିଗ୍ରାମ୍ ମଧ୍ୟ ପଠାଇଥିଲେ–

Copy of Express Telegram No. 69, dated 30th January 1947, from East. States, Calcutta, to Dr. M. Mansinha, Mohemedia Bazar, Cuttack.

REFERENCE RESIDENCY EXPRESS LETTER DECEMBER NINETEENTH PLEASE WIRE JOINING DATE AND INFORM POLCHAT ACCORDINGLY.

ଖୁବ୍ ସମ୍ଭବତଃ, ୧୯୪୭ ଫେବୃଆରୀରେ ମୁଁ ଓଡ଼ିଶାର ପ୍ରଥମ ପ୍ରୌଢ଼ଶିକ୍ଷା ଅଫିସର ଭାବରେ ଯୋଗ ଦେଲି ଓ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିର ରେସିଡେଣ୍ଟଙ୍କୁ ଏହି ଟେଲିଗ୍ରାମ୍‌ର ଏକ ନାସ୍ତିସୂଚକ ଉତ୍ତର ପଠାଇଦେଇଥିଲି, ମୋ ସମଗ୍ର ଜୀବନର ଆର୍ଥିକ ସ୍ଥିତିକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି ।

ଶିକ୍ଷା ଓ ସଂସ୍କୃତିର ସ୍ପର୍ଶପାଇଁ ଜୀବନରେ ଦହଗଞ୍ଜ ଯାହା ଭୋଗିଲି, ତାହାରି ଆରମ୍ଭ ବୋଧହୁଏ ଏହିଠାରୁ ହେଲା ।)

---

## ଦ୍ୱିତୀୟ ଅଧ୍ୟାୟ

# ନେତାଙ୍କ ମଠ

ଭାରତବର୍ଷ ଏକାନ୍ତରେ ଏକ ବ୍ୟକ୍ତି-କେନ୍ଦ୍ରିକ ଦେଶ । ଏ ଦେଶରେ ଜାତୀୟ ଭାବ (ନାଶନାଲିଜିମ୍ ବା ପେଟ୍ରିୟଟିଜିମ୍) ପ୍ରକୃତରେ ବିଦେଶୀ ବ୍ରିଟିଶ୍ ରାଜତ୍ୱର ସୃଷ୍ଟି ଓ ଦାନ । ହିନ୍ଦୁ ଧର୍ମ ଏକାଧାରରେ କେନ୍ଦ୍ରହୀନ ବା କୋଟି-କେନ୍ଦ୍ରିକ । ସହସ୍ର ଧର୍ମପ୍ରଚାରକଙ୍କୁ କେନ୍ଦ୍ରକରି ଏଇ ଧର୍ମ ସହସ୍ର ଛୋଟ ଛୋଟ ଗୋଷ୍ଠୀରେ ବିଭକ୍ତ । ଭାଷା, ସମାଜ ଓ କାଷ୍ଟ୍(ଜାତି)ର ସହସ୍ର ପ୍ରାଚୀରଦ୍ୱାରା ଆମର ଜାତୀୟ ଜୀବନ ଖଣ୍ଡ-ବିଖଣ୍ଡିତ । ଦୃଢ଼-କେନ୍ଦ୍ରିକ ଇସଲାମ୍ ଆମ ଧର୍ମ ଓ ଆମ ସମାଜକୁ କେବଳ ନୁହେଁ, ଆମ ରାଷ୍ଟ୍ରର ମଧ୍ୟ ପ୍ରାୟ ଅର୍ଦ୍ଧେକ କବଳ କରିସାରିଲା ପରେ ବି ଏଇ ହତଭାଗ୍ୟ, ଆତ୍ମ-କେନ୍ଦ୍ରିକ ଜାତିଠାରେ କୌଣସିପ୍ରକାର ଶୁଭ ପ୍ରତିକ୍ରିୟା ଦେଖାଯାଉନାହିଁ ।

ବ୍ୟକ୍ତି-କେନ୍ଦ୍ରିକ ରୀତିରେ ଏ ଦେଶର ବହୁ ସହସ୍ର ବର୍ଷର ଇତିହାସରେ ସହସ୍ର ସମ୍ପ୍ରଦାୟ ସେପରି ଗଢ଼ାହୋଇ ଆସିଛି, ବ୍ରିଟିଶ୍ ଅମଳରେ ସେଇ ପରମ୍ପରା ଦେଖାଦେଲା—ହାଇସ୍କୁଲ୍ ଗଠନରେ । ଏବେ ଅନେକେ ନିଜର ପ୍ରତିଷ୍ଠା ବଢ଼ାଇବାପାଇଁ ଚାହିଲେ ତାଙ୍କ ଘର ପଛଆଡ଼େ ଠିଆହେବ ଗୋଟିଏ ଗୋଟିଏ ନୂଆ ମଠ । ଯାରହିଁ ଛଦ୍ମ ନାମ ହେଲା ଏ ଦେଶରେ 'ଉଚ୍ଚ-ଶିକ୍ଷା'ର ପ୍ରସାର । ଏ ପତାକାକୁ ଅସମ୍ମାନ କରିବ—ଏପରି ସାଧ କାହାର ଏ ଦେଶରେ ?

ଉତ୍ତର ଓଡ଼ିଶାରେ ଇନ୍ସପେକ୍ଟର ଥିଲାବେଳେ ଉତ୍ତର ବାଲେଶ୍ୱର ଅଞ୍ଚଳରେ ପ୍ରତି ୩/୪ ମାଇଲ୍‌ରେ ଦରମରା ହାଇସ୍କୁଲ୍‌ର ମାଳା, ଗୋଟାକ ପରେ ଗୋଟେ ଦେଖି ଦେଖି, ମୁଁ ପ୍ରଥମେ ସ୍ତମ୍ଭିତ ହେଲି ଏୟା ଭାବି ଯେ, ପୂର୍ବ ଡି.ପି.ଆଇ କ'ଣ ଆଖିବୁଜି ଏଗୁଡ଼ାକ ଏପରି ହୀନ ଅବସ୍ଥାରେ ଜନ୍ମହେବା ଓ ବଞ୍ଚିବାପାଇଁ ଅନୁମତି ଦେଇଥିଲେ ? ଓଡ଼ିଶାରେ ଶିକ୍ଷାର ଉନ୍ନତି କରିବାପାଇଁ ସେହି ଡି.ପି.ଆଇଙ୍କୁ ଦରମା ବାବଦରେ ଏ ଦେଶ ଯେଉଁ ମୋଟା ଦରମା ଦେଉଥିଲା ସେ ସେଥିରେ ତାଙ୍କ ପୁଅମାନଙ୍କୁ ଡେରାଡୁନ୍‌ରେ ଘୋର ବ୍ୟୟସାଧ ପବ୍ଲିକ୍ ସ୍କୁଲ୍‌ରେ ପଢ଼ାଇ ଏଣେ ଚମତ୍କାର ବ୍ୟବସ୍ଥା କରି ରଖିଥିଲେ ଓଡ଼ିଆ ଜାତିର ପିଲେ ଏପରି ଗୁହାଳମାନଙ୍କରେ ପଢ଼ିବାପାଇଁ । ଆମେ ଦୋଷ ତେବେ ଦେବା କାହାକୁ ? ମୁଁ ଦେଖିଲି, ଏସବୁ ଏକାନ୍ତ ଭାବରେ କୌଣସି କୌଣସି ବ୍ୟକ୍ତିବିଶେଷଙ୍କ ଅନୁରୋଧ ଉପରୋଧରେହିଁ କରାଯାଇଥିଲା । କାରଣ ତାଙ୍କ ଘର ପଛଆଡ଼େ ଗୋଟିଏ ହାଇସ୍କୁଲ୍ ରୂପକ ମଠ ବସେଇପାରିଲେ ତାଙ୍କର ସାମାଜିକ ପ୍ରତିପତ୍ତି ବଢ଼ି ଯାଉଥିଲା ।

ଭାବିବାର କଥା ଏହି ଯେ, ଇଂଲାଣ୍ଡର ରାଜରାଣୀଙ୍କର ପୁତ୍ର-କନ୍ୟା ବା ଧନୀ ସମ୍ପ୍ରଦାୟର ପିଲେ ମଧ୍ୟ; ଯେଉଁ ସ୍କୁଲ୍ କଲେଜକୁ ପଢ଼ିବାକୁ ଯା'ନ୍ତି, ସେସବୁ କାହାରି ହେଲେ ଘର ପଛଆଡ଼େ ଠିଆ ନୁହେଁ । ଲୋକାଳୟରୁ ବହୁ ଦୂରରେ, ଉପଯୁକ୍ତ ସ୍ୱାସ୍ଥ୍ୟକର ଓ ମନୋହର ପ୍ରାକୃତିକ

ପରିବେଶରେ ସେହି ବିଦ୍ୟାୟତନଗୁଡ଼ିକ ସ୍ୱୟଂସଂପୂର୍ଣ୍ଣ ରୀତିରେ ଅବସ୍ଥିତ । ପୁଣି ପ୍ରତ୍ୟେକଟି ଅନୁଷ୍ଠାନ, ଜାତୀୟ ଅନୁଷ୍ଠାନ; ଅର୍ଥାତ୍ ପ୍ରତ୍ୟେକଟିକୁ ସମଗ୍ର ଇଂଲାଣ୍ଡରୁ ପିଲା ଆସନ୍ତି । କୌଣସି ଅନୁଷ୍ଠାନରେ ସ୍ଥାନୀୟ ସଂକୀର୍ଣ୍ଣତା ନାହିଁ କି ବ୍ୟକ୍ତି-କେନ୍ଦ୍ରିକତା ନାହିଁ । କୋରାପୁଟରେ ମେଡ଼ିକାଲ କଲେଜ ନହୋଇ ବୁର୍ଲାରେ ହେଲା ବୋଲି ବିଧାନସଭାରୁ ସଭ୍ୟ ରିଜାଇନ୍ କରି ବାହାରିଯିବା ପରି ସଂକୀର୍ଣ୍ଣ ମନୋଭାବ, ସେ ଦେଶରେ ମୂର୍ଖ ଲୋକର ମଧ କଳ୍ପନାର ବାହାରେ । କିନ୍ତୁ ସେପରି ମନୋଭାବ ଆମର ଏଇ ଭାରତବର୍ଷ ବା ଓଡ଼ିଶାରେ ଶିକ୍ଷିତ ଲୋକ ପକ୍ଷରେ ମଧ ସ୍ୱାଭାବିକ ।

ରାଜା, ଜମିଦାର ବା ଏମ୍.ଏଲ୍.ଏ.ଙ୍କ ବାରିପଟେ ହାଇସ୍କୁଲ୍ ସବୁ କରିବାର ନାନା କୁଫଳରେ ଏ ଦେଶ ଭର୍ତ୍ତି ହୋଇଗଲାଣି, ଯଦିବା ଆମେ କଟକ ନଗରର ଖୋଲା ନର୍ଦ୍ଦମା ପରି ଏସବୁରେ ଏତେ ଅଭ୍ୟସ୍ତ ଯେ, ଆମମାନଙ୍କୁ ସେସବୁ ଆଦୌ ବାଧୁନାହିଁ । ପ୍ରଥମ ହେଲା, ସ୍କୁଲ୍ ତିଆରି କରିବାରେହିଁ ପ୍ରଚୁର ସରକାରୀ ଅର୍ଥର ଅପବ୍ୟୟ । ଦ୍ୱିତୀୟ, ଅସ୍ଥାନରେ ସ୍କୁଲ ବସିବା ଫଳରେ ସ୍କୁଲ୍‌ରେ ଯଥୋଚିତ ଛାତ୍ର ସଂଖ୍ୟାର ଅଭାବ, ଯା' ଫଳରେ ସରକାରଙ୍କ ଗ୍ରାଣ୍ଟ-ଇନ୍-ଏଡ଼୍‌ର ଅପବ୍ୟୟ । ତୃତୀୟ, ତଥାକଥିତ ସ୍ଥାନୀୟ ପ୍ରତିଷ୍ଠାତା, ଶିକ୍ଷକମାନଙ୍କର ପ୍ରଭୁ ସ୍ଥାନରେ ରହିବାରୁ, ସ୍କୁଲ୍‌ମାନଙ୍କରେ ଶିକ୍ଷକର ସମ୍ମାନହାନି ଓ ନୈତିକତା ଉପରେ ଆଞ୍ଚ ।

ତୃତୀୟ ଓ ଶେଷୋକ୍ତ ବିଷମୟଫଳହିଁ ସବୁଠାରୁ ଅଧିକ ଆଲୋଚନା ଦରକାର କରେ – କାରଣ ତାହାହିଁ ପ୍ରକୃତ ଶିକ୍ଷା-ସଂପୃକ୍ତ ବିଷୟ ।

## ଶିକ୍ଷକହିଁ ଶ୍ରେଷ୍ଠ ବ୍ୟକ୍ତି ଓ କର୍ତ୍ତା –

ମୁଁ ବରାବର କହିଆସୁଛି ଯେ, ପ୍ରତ୍ୟେକ ସ୍କୁଲ୍‌ରେ ସେହି ସ୍କୁଲ୍‌ର ପ୍ରଧାନଶିକ୍ଷକକୁହିଁ ସର୍ବମୟକର୍ତ୍ତାରୂପେ ଛାଡ଼ିଦିଆଯିବା ଏକାନ୍ତ ଓ ସର୍ବଥା ଉଚିତ ବା ପ୍ରତି ସ୍କୁଲ୍‌ର ପରିଚାଳନା ସେହି ସ୍କୁଲ୍‌ର ଶିକ୍ଷକ-ମଣ୍ଡଳୀ ହାତରେ ଛାଡ଼ିଦିଆଯାଉ । କୌଣସି ହେଲେ ସ୍କୁଲରେ ଶିକ୍ଷକଠାରୁ ଉଚ୍ଚତର କେହି କର୍ତ୍ତା ରହିବା ଆଦୌ ଉଚିତ ନୁହେଁ । ଛାତ୍ର ଯଦି ଜାଣେ ଯେ ଶିକ୍ଷକଙ୍କ ବିରୋଧରେ ସେ ସେକ୍ରେଟାରୀ ବା ଏମ୍.ଏଲ.ଏ.ଙ୍କ ନିକଟରେ ଅଭିଯୋଗ ଆଣିପାରିବ, ତେବେ ସେ ସ୍କୁଲ୍‌ରେ ଡିସିପ୍ଲିନ୍ ରଖିବା ଶିକ୍ଷକଙ୍କ ପକ୍ଷରେ କିପରି ସମ୍ଭବ ହେବ ? ପ୍ରଧାନଶିକ୍ଷକ ବା ସହକାରୀ ଶିକ୍ଷକ ଡିସିପ୍ଲିନ୍‌ପାଇଁ ଦାୟୀ ହେବେ ବା କିପରି ? ମାଷ୍ଟ୍ର ଯଦି ଜାଣେ ଯେ, ସେ ଜଣେ ବାହାର ଲୋକର ସାମାନ୍ୟ ଆଜ୍ଞାବହ ଭୃତ୍ୟ ମାତ୍ର, ଆଉ ପ୍ରକୃତ ହାକିମ ହେଉଛନ୍ତି ସ୍ଥାନୀୟ ଏମ.ଏଲ୍.ଏ. ବା ସେକ୍ରେଟାରୀ, କି ଡିସିପ୍ଲିନ୍ ସେ ଠିଆ କରିପାରିବେ ଅନୁଷ୍ଠାନରେ ?

ଛାତ୍ର, ତା'ର ଶିକ୍ଷକଙ୍କ ଉପରେ ଆଉ କେହିନାହିଁ ବୋଲି ଜାଣିବା କେବଳ ଉଚିତ ନୁହେଁ, ଶିକ୍ଷକ ତା'ର ଆଖି ଆଗରେ ଠିଆହେବା ଉଚିତ, ସବୁଦିଗରୁ ଆଦର୍ଶ ରୂପେ । ସ୍କୁଲ୍‌ରେ ସବୁ ବିଭାଗରେ ଶିକ୍ଷକର ବ୍ୟକ୍ତିତ୍ୱହିଁ ସର୍ବମୟ ହେବା ସର୍ବଥା ଉଚିତ । ଇଂଲାଣ୍ଡ ଓ ଆମେରିକାରେ ଏହାହିଁ ପରିସ୍ଥିତି । ସେଠାରେ ପ୍ରତ୍ୟେକ ପ୍ରାଇମେରୀ ସ୍କୁଲଟି ମଧ ଆମ ରେଭେନ୍ସା କଲେଜ ବା ଆମ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତ୍ୟେକ ପୋଷ୍ଟ ଗ୍ରାଜୁଏଟ ଡିପାର୍ଟମେଣ୍ଟ୍‌ଠାରୁ ଅଧିକ ସ୍ୱାଧୀନ । କୌଣସି ରାଜନୈତିକ ନେତା ବା ଧନୀ ଲୋକର ବ୍ୟକ୍ତିତ୍ୱର ବା ଆଜ୍ଞାର ସ୍ଥାନ ସେଠି ନାହିଁ –

ରହିବା ଏକାନ୍ତ ଅନୁଚିତ ଓ ଅଯୌକ୍ତିକ ମଧ; କିନ୍ତୁ ଦେଶର ଦୁର୍ଭାଗ୍ୟ ଯେ ଆମର ତଥାକଥିତ ଜନ-ବନ୍ଧୁନେତାଗଣ ବା କର୍ତ୍ତୃପକ୍ଷ ଏଇ ସାମାନ୍ୟ ସତ୍ୟଟି ଧାରଣା କରିବାକୁ ନାରାଜ । ଦେଶର ସ୍ୱାଧୀନତା ସଂଗ୍ରାମପାଇଁ 'ଇମର୍ଜେନ୍ସି ମେଜର୍'(ଜରୁରୀ କର୍ମ-ପନ୍ଥା) ଭାବରେ ବାପୁଜୀ ଯାହା ଥରେ ଆରମ୍ଭ କରିଦେଲେ, ତାହା ଦେଶରେ ପ୍ରତିଷ୍ଠିତ ପରମ୍ପରା ରୂପେ ରହିଗଲା ଓ ରହି ଦେଶର ସକଳ ଅନୁଷ୍ଠାନର ହାଡ଼-ମାଂସକୁ ଏବେ ବି ପୋକଡ଼ା କରିବାରେ ଲାଗିଛି । ଏବେ ଯେକୌଣସି ମଫସଲ ହାଇସ୍କୁଲ୍‌କୁ ଯାଅ, ନିଶ୍ଚେ ସେଠି ଦେଖିବ ସ୍ଥାନୀୟ କୌଣସି ଜଣେ ନେତାଙ୍କର ସେଠାରେ ଏକାଧିପତ୍ୟ ବା ତାହା ବହୁ ଦଳର ପଶାପାଲି । ଛାତ୍ରଗଣ ସ୍ଥାନୀୟ ନେତାଙ୍କର ଅଙ୍ଗୁଳି ସଙ୍କେତକୁ ଅନାଇ ରହିଛନ୍ତି । ମାଷ୍ଟ୍ରମାନେ ଧାଡ଼ିବାନ୍ଧି ଅର୍ଗଳ ରୂପେ ଠିଆହେଲେ ମଧ ବାହାରେ ନେତୃପ୍ରବରମାନଙ୍କର ଅଙ୍ଗୁଳି ସଙ୍କେତ ପାଇବା ମାତ୍ରେ ପିଲେ ଲମ୍ଫ ପ୍ରଦାନ କରିବେ ଷ୍ଟ୍ରାଇକ୍ କରିବାକୁ । କିଛି ବୁଝନ୍ତିନାହିଁ ସେମାନେ – ନିର୍ବୋଧ ମେଷପଲ, ମେଷଚାଳକର ସୁବିଧାଲାଗିହିଁ ପରିଚାଳିତ ।

ପରିସ୍ଥିତି ଯେତେବେଳେ ଏଇପରି, ଏ ଦେଶରେ କେବଳ ଶିକ୍ଷକକୁହିଁ ଦେଶରେ କ୍ରମେ ବ୍ୟାପକହୋଇଉଠୁଥିବା ଛାତ୍ର-ଅପରାଧ ପାଇଁ କୌଣସିମତେ ଦାୟୀ କରାଯାଇନପାରେ । ଶିକ୍ଷା ବିଭାଗ ଓ ଶିକ୍ଷକ, ଯେପର୍ଯ୍ୟନ୍ତ ଏ ଦେଶରେ ସ୍କୁଲ କଲେଜମାନଙ୍କରେ ଏକାନ୍ତଭାବରେ ସର୍ବମୟକର୍ତ୍ତା ନହୋଇଛନ୍ତି, ଯେପର୍ଯ୍ୟନ୍ତ ଅନ୍ୟ ବ୍ୟକ୍ତି ଓ ଅନ୍ୟ ଗୋଷ୍ଠୀର ପ୍ରଭାବ ସେଠାରେ ଦ୍ୱିତୀୟ ଓ ମହତ୍ତର ପ୍ରଭୁତ୍ୱ ପକାଉଥିବେ, ସେପର୍ଯ୍ୟନ୍ତ ଏ ଦେଶରେ ସ୍କୁଲ୍‌ର ବା ଜାତୀୟ ଚରିତ୍ରର ଉତ୍‌ଥାନ ଅସମ୍ଭବ । ସ୍କୁଲ୍ କେଉଁଠି ବସିବ, ତାହା ଏକାନ୍ତଭାବରେ ଏଡୁକେଶନ୍ ଡିପାର୍ଟମେଣ୍ଟ ଠିକ୍ କରିବ । ପୁଣି ଆଜି ଏ ସ୍ୱାଧୀନ ଦେଶରେ କୌଣସି ହେଲେ ସ୍କୁଲ୍ ବା କଲେଜ୍ କୌଣସି ନିର୍ଦ୍ଦିଷ୍ଟ ଗାଁ ବା ଅଞ୍ଚଳର ସ୍କୁଲ୍ ବା କଲେଜ ହୋଇନପାରେ । ସେ ମନୋଭାବ ଦଣ୍ଡନୀୟ ଅପରାଧ ବୋଲି ଗଣାହେବା ଉଚିତ । ଯେଉଁଠି ତାହା ବସୁ ନା କାହିଁକି ଦେଶର ପ୍ରତ୍ୟେକଟି ସ୍କୁଲ୍‌ରେ ସମଗ୍ର ଜାତି ମଣିଷ ହେଉଛି ବୋଲି ଧରିବାକୁ ହେବ । କୌଣସି ଗୋଟିଏ ଗାଁ ବା ଅଞ୍ଚଳର ପ୍ରଶ୍ନ ସେଠି ଏକାନ୍ତ ଅବାନ୍ତର, ଅର୍ଥହୀନ, ନୀଚ, ସଂକୀର୍ଣ୍ଣ ଓ ଗଭୀର କ୍ଷତିକାରକ । 'ପଖାଳ ଖାଇ' ପାଠପଢ଼ିବା ଓ 'ଆମ ଗାଁ ପାଖରେ' ସ୍କୁଲ୍ ହେବାର ଆଦର୍ଶ ଗୋଟିଏ ବିରାଟ ଜାତିର ଜାତୀୟ ଆଦର୍ଶ ହୋଇନପାରେ । ଏହା ଏକ ଆତ୍ମଘାତୀ ଛଳନା ବା ଶିକ୍ଷା-ସଂପୃକ୍ତ ଘୋର ଅଜ୍ଞାନତା ଛଡ଼ା ଆଉ କିଛି ନୁହେଁ । ତାହା ଦେଶର ଯେ ଯଥେଷ୍ଟ କ୍ଷତି କରି ସାରିଲାଣି, ତାହା ସମସ୍ତଙ୍କର ବୁଝିବା ଉଚିତ । ଇଂଲଣ୍ଡ ଓ ଆମେରିକାରେ ଲୋକେ ବ୍ୟକ୍ତି ଅପେକ୍ଷା ଅନୁଷ୍ଠାନକୁ ବଡ଼ କରି ଧରନ୍ତି । ତା'ଫଳରେ ସେ ଦେଶରେ ଅନୁଷ୍ଠାନ ସବୁ ଶତାବ୍ଦୀ ଶତାବ୍ଦୀ ଧରି ନିପୁଣତାର ସହିତ ଚାଲିଛନ୍ତି । ଆମର ପ୍ରତି ଅନୁଷ୍ଠାନ ବିଶୃଙ୍ଖଳ ।

## ବ୍ୟକ୍ତି-କେନ୍ଦ୍ରିକତାର ପ୍ରଥମ ସ୍ୱାଦ –

ଆମ ଦେଶରେ ବ୍ୟକ୍ତି-କେନ୍ଦ୍ରିକ ଶିକ୍ଷାନୁଷ୍ଠାନମାନଙ୍କ ସମ୍ପର୍କରେ ଏତେ କଥା ମୁଁ କହିବାକୁ ଗଲି କାହିଁକି ନା, ପ୍ରଥମକରି ମୋତେ ଶିକ୍ଷକ ହେବାକୁ ପଡ଼ିଲା, ଏଇପରି ଏକ ବ୍ୟକ୍ତି-କେନ୍ଦ୍ରିକ

ଅନୁଷ୍ଠାନରେ । ମୁଁ ସେଠାରେ ମାତ୍ର ଏକମାସ ରହିଥିଲି । କିନ୍ତୁ ସେହି ଅଳ୍ପକାଳ ଭିତରେ ମୋତେ ଏଇ ବ୍ୟକ୍ତି-କେନ୍ଦ୍ରିକତା ଯୋଗୁଁ ଏକ ବିପ୍ଳବର ସମ୍ମୁଖୀନ ହେବାକୁ ପଡ଼ିଲା ।

ମୁଁ ଯେ ଖୋର୍ଦ୍ଧା ସ୍କୁଲ୍‌ର ଛାତ୍ରାବସ୍ଥାରେ ମଧ ଶିକ୍ଷକତାର ସ୍ୱପ୍ନ ଦେଖୁଥିଲି, ତାର ମୂଳହେତୁ ହେଉଛନ୍ତି ସତ୍ୟବାଦୀ ସ୍କୁଲ୍ ଓ ତାର ବିଖ୍ୟାତ ଅଧ୍ୟାପକଗଣ । ୧୯୧୬ରେ ପୁରୀରେ ଉତ୍କଳ-ସମ୍ମିଳନୀର ଏକ ଅଧିବେଶନ ବସିଥିଲା । ମୋର ସା'ନ୍ତ ବାପା ଶ୍ରୀଯୁକ୍ତ ଅଗାଧୁ ନାୟକ; ଯେ କି ପାରିକୁଦ ରାଜାଙ୍କର ସେ ସମୟରେ ଦେବାନ ଥିଲେ, ସେ ପ୍ରତିନିଧିଭାବରେ ଏହି ସମ୍ମିଳନୀରେ ଯୋଗଦେଇଥିଲେ । ଏ ସମ୍ମିଳନୀର ସଭାପତି ଥିଲେ ସମ୍ବଲପୁରର ସ୍ୱର୍ଗତ ଚନ୍ଦ୍ରଶେଖର ବେହେରା । ମୋର ପିଲାଦିନ ସାହିତ୍ୟରେ ନିରତିଶୟ ଆଗ୍ରହ ଦେଖି ସା'ନ୍ତ ବାପା, ମୋ ସାଥିରେ ପଢୁଥିବା ତାଙ୍କ ନିଜ ପୁଅକୁ ସାଙ୍ଗରେ ନନେଇ, ମତେ ସାଙ୍ଗରେ ନେଇ ଯାଇଥିଲେ, ଏଇ ସମ୍ମିଳନୀ ଦେଖାଇ ଆଣିବାପାଇଁ । ଏଇ ସୁଯୋଗ ମତେ ଯେପରି ଏକ ନୂତନ ସଂସାରରେ ନେଇ ପହଞ୍ଚେଇଦେଲା । କାରଣ ସେଥର ସେହିଠାରେହିଁ ଓଡ଼ିଶାରେ ସେ କାଳର ସକଳ ବିଖ୍ୟାତ ଲୋକଙ୍କୁ ମୁଁ ଏକାବେଳକେ ପ୍ରଥମକରି ଏକତ୍ର ଦେଖିବାକୁ ପାଇଲି । ସେଇଠି ପ୍ରଥମେ ମଧୁବାବୁଙ୍କୁ ଦେଖିଲି, ଦେଖିଲି ଗୋପବନ୍ଧୁଙ୍କୁ, ଦେଖିଲି ସତ୍ୟବାଦୀର ବରେଣ୍ୟ ଶିକ୍ଷକବୃନ୍ଦଙ୍କୁ – ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କୁ ।

୧୧/୧୨ ବର୍ଷ ବୟସର ବାଳକର ଅନ୍ତରତମ ଗହନ ତଳେ ହୁଏତ ସ୍ୱପ୍ନ ଗଜୁରିଉଠିଥିବ, ଏଇମାନଙ୍କ ପରି ଜଣେ ହେବାକୁ । ଖୋର୍ଦ୍ଧା ସ୍କୁଲର ଛାତ୍ର ଯେ ସ୍କୁଲ୍ ଶିକ୍ଷକ ହେବାର ଅଭିଳାଷ ପୋଷଣ କରିଥିଲା, ତାହା ଟ୍ରେନିଂ-ସାର୍ଟିଫିକେଟ୍-ସର୍ବସ୍ୱ ସାଧାରଣ ଟିଚର ନୁହେଁ, ତାର ଆଦର୍ଶ ଥିଲା ସତ୍ୟବାଦୀର ଶିକ୍ଷକ – ଜାତୀୟ ଜୀବନର ପୁଣ୍ୟସ୍ରୋତରେ ପୂର୍ଣ୍ଣ ଅବଗାହନ ଓ ସନ୍ତରଣର ଆଶା ।

ଆମେ ଖୋର୍ଦ୍ଧା ସ୍କୁଲ୍‌ରେ ପଢ଼ିଲାବେଳକୁ କିନ୍ତୁ ସତ୍ୟବାଦୀ ସ୍କୁଲ୍ ଭାଙ୍ଗିଗଲାଣି । ତାର କେତେକ ପିଲା ଅସହଯୋଗ-କ୍ଳାନ୍ତ ହୋଇ ଶେଷରେ ଖୋର୍ଦ୍ଧା ସ୍କୁଲ୍‌ରେ ଆସି ଯୋଗ ଦେଇଥିଲେ, ଆମ ସାଥିରେ ମାଟ୍ରିକ୍ ପରୀକ୍ଷା ଦେବାପାଇଁ ।

ମୁଁ ଫୋର୍ଥ ଇୟର କି ଫିଫ୍‌ଥ୍ ଇୟରରେ ପଢ଼ିଲାବେଳେ ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର ମୋ ପାଖକୁ ଖଣ୍ଡେ ଚିଠି ଦେଇଥିଲେ । ଦୁଃଖର ବିଷୟ, ସେ ଚିଠି ଆଉ ନାହିଁ ମୋ ପାଖରେ । ଚିଠିର ମର୍ମ ଥିଲା ଯେ, ସେ ମୋ ଉପରେ ଆଖି ରଖିଛନ୍ତି, ପାସ୍ କଲେ ମୁଁ ଯେପରି ତାଙ୍କ ସହିତ ଯୋଗଦେଇ, ବାଣପୁରରେ ଏକ ନୂତନ ସତ୍ୟବାଦୀର ଜନ୍ମକ୍ରିୟାରେ ସାହାଯ୍ୟକରେଁ । ଯାର କିଛିକାଳ ପରେ ସେ ଓ ତାଙ୍କର ସେକାଳର ସେକ୍ରେଟାରୀ ଶ୍ରୀ ସୁଦର୍ଶନ ପାଣିଗ୍ରାହୀ ଦିନେ ସନ୍ଧ୍ୟାବେଳେ ରେଭେନ୍ସା କଲେଜର ନିର୍ଜନ ପ୍ରାନ୍ତରକୁ ମତେ ଡକାଇ ପ୍ରାୟ ଘଣ୍ଟେ-ଦୁଇଘଣ୍ଟା କାଳ ଏଇ ପ୍ରସଙ୍ଗରେ କଥାବାର୍ତ୍ତା ମଧ କଲେ ।

ଘଟଣାଗୁଡ଼ିକର କ୍ରମ-ପରମ୍ପରା ମୋର ସ୍ମୃତିକୁ ଠିକ୍ ପରେ ପରେ ଆସୁନାହିଁ । ସେ ଯାହାହେଉ, ମୁଁ ଡି.ଇଡି. ପାସ୍ ପରେ ପରେ ଗୋଦାବରୀଶ-ପ୍ରତିଷ୍ଠିତ ବାଣପୁର ହାଇସ୍କୁଲ୍‌ରେ ଶିକ୍ଷକତା କଲି ।

ଏଠାରେ କହିରଖେ ଯେ ମୁଁ ଏକାନ୍ତଭାବରେ ଏକ ବର୍ତ୍ତମାନ-ସର୍ବସ୍ୱ ପ୍ରାଣୀ । ଅନ୍ୟମାନଙ୍କ ପରି ଭବିଷ୍ୟତ୍‌ର ସୁଚିନ୍ତିତ ଯୋଜନା କରିବା ଦୂରେଥାଉ, ଭବିଷ୍ୟତ୍‌ର କଳ୍ପନା ମଧ୍ୟ ମୁଁ କେବେ କରିପାରିନାହିଁ । ଏଇ ଲୋକର ଜୀବନରେ ଯାହା ଯାହା ବିସ୍ମୟକର ଘଟଣାସବୁ ଘଟିଯାଇଛି ତାହା ତାର କଳ୍ପନା ଛାଡ଼, ସ୍ୱପ୍ନର ମଧ୍ୟ ସୀମାତୀତ ଥିଲା । ମୁଁ ଯେତେବେଳେ ବାଣପୁରକୁ ଯାଇଥିଲି, ସେତେବେଳେ ଭାବିନେଇଥିଲି ସେଇଠାରେ ସମଗ୍ର ଜୀବନ କଟେଇବାପାଇଁ । ମୋର ନିଜର କକା-ଶ୍ୱଶୁର ଔପନ୍ୟାସିକ ଶ୍ରୀଯୁକ୍ତ ସତ୍ୟାନନ୍ଦ ବେହୁରା, ସେଠାରେ କେତେ ମାସ ଧରି ଶିକ୍ଷକତା କରି ଆସି, ତାଙ୍କର ତିକ୍ତ ଅଭିଜ୍ଞତା ଯୋଗୁ, ମୋର ସେଠାକୁ ଯିବା ଆଦୌ ପସନ୍ଦ ନ କରି ବାଧା-ଦେଇଥିଲେ । କିନ୍ତୁ ତାହା ସତ୍ତ୍ୱେ ମୁଁ ଲମ୍ଫ ଦେଇଥିଲି, ଏକ ଆଦର୍ଶର ମୋହରେ ।

କିନ୍ତୁ ସେଠାକୁ ଯିବାର ସପ୍ତାହକ ଭିତରେ ଉପର କ୍ଲାସ୍‌ର ପିଲାମାନେ ମୋ ନିକଟରେ ଆସି ସେହି ଅନୁଷ୍ଠାନର ନାନା ଗଲ୍‌ତି କଥା ମତେ କହିବାକୁ ଲାଗିଲେ । ସେତେବେଳେ ହେଡ୍‌ମାଷ୍ଟର ଥା'ନ୍ତି ଶ୍ରୀଯୁକ୍ତ ଶ୍ରୀକୃଷ୍ଣ ମହାନ୍ତି । ଅତ୍ୟନ୍ତ ବୁଦ୍ଧିମାନ୍, ଜ୍ଞାନବାନ୍ ଓ ସ୍ପଷ୍ଟବାଦୀ ଲୋକ । ତାଙ୍କ ବିରୋଧରେ ପିଲାଙ୍କର କିଛି କହିବାର ନଥିଲା । ପିଲାମାନଙ୍କର ଅଧିକାଂଶ ଆପତ୍ତି ଥିଲା, ସେ ସ୍କୁଲ୍‌ରେ ବହୁକାଳରୁ ଚେର-ମାଡ଼ିରହିଥିବା ଦୁଇଜଣ ଶିକ୍ଷକଙ୍କୁ ଓ ସାମାନ୍ୟଭାବରେ ଜଣେ ସ୍କୁଲ-ସହିତ-ଅସଂପୃକ୍ତ ଲେଖକଙ୍କୁ ନେଇ ।

ନାନା ଅଭିଯୋଗ ଶୁଣି ମୁଁ ପିଲାଙ୍କୁ କହିଲି, ''ଦେଖ, ମୁଁ ନୂଆଲୋକ । ମୋର ଏସବୁ ବିଷୟରେ ହସ୍ତକ୍ଷେପ କରିବାର କୌଣସି ଅଧିକାର ମଧ୍ୟ ନାହିଁ । ତମର ପ୍ରକୃତ ପନ୍ଥା ହେଉଛି ଗୋଦାବରୀଶବାବୁଙ୍କ ଦୃଷ୍ଟିକୁ ପ୍ରଥମେ ତମର ଆପତ୍ତିଯାକ ଆଣିବା । ସେଠି ପ୍ରତିକାରର ଚେଷ୍ଟାକର ।''

ପିଲାମାନେ କ'ଣ କଲେ, ମୁଁ ପ୍ରକୃତରେ ଜାଣିନି । ସେତେବେଳେ ଗୋଦାବରୀଶବାବୁ ବାଣପୁରରେ ନଥିଲେ । କିଛିଦିନ ପରେ ସେ ଫେରିଲେ ଓ ମତେ ଡକେଇଲେ । ମତେ ଡକାଇ ସେ ଏକ ଦୀର୍ଘ ବକ୍ତୃତା ଦେଲେ । ଯାହା କହିଲେ ତାହାର ମର୍ମ ହେଉଛି ଏୟା— ''ତମେ ପିଲାଙ୍କ ମହଲରେ ଖୁବ୍ ପ୍ରିୟ ହୋଇଉଠିଛ । ମୁଁ ବି ଦିନେ ଏକ ଶିକ୍ଷକ ଥିଲି । ଯେଉଁ ଶିକ୍ଷକ ପିଲାଙ୍କ ପ୍ରତି କୋମଳ ହୁଅନ୍ତି ସେ ଛାତ୍ରମହଲରେ ପ୍ରିୟ ହୋଇ ଉଠିଥାନ୍ତି । କିନ୍ତୁ ଯା' ଦ୍ୱାରା ସ୍କୁଲ୍‌ର ଡିସିପ୍ଲିନ୍ ନଷ୍ଟ ହେବାକୁ ଯାଉଛି । ତମେ ପଦ୍ୟ ଗାରେଇ ପାରୁଛ ବୋଲି ନିଜକୁ ବଡ଼ ମନେକରନି । ମୁଁ ବି ଯୌବନରେ ପଦ୍ୟ କିଛି ଗାରେଇଛି । ଇତ୍ୟାଦି ଇତ୍ୟାଦି ।''

ଏ ପ୍ରକାର ଏକାନ୍ତ ଅବାନ୍ତର ଅଭିଯୋଗ ସବୁ ଗୋଦାବରୀଶ ମିଶ୍ରଙ୍କ ପରି ଲୋକଙ୍କଠାରୁ ଶୁଣି, ମୁଁ ପ୍ରକୃତରେ ସ୍ତମ୍ଭୀଭୂତ ହୋଇଗଲି । ମୋର ଚକ୍ଷୁ ଲୋତକାପ୍ଲୁତ ହୋଇଆସିଲା । ମୁଁ ତାଙ୍କୁ କିଛି ହେଲେ ନକହି ନୀରବରେ ବସାକୁ ଫେରିଆସିଲି । କିଶୋରୀ ପତ୍ନୀ ହେମଲତାଙ୍କୁ କହିଲି, ''ଗୋଦାବରୀଶବାବୁ ମତେ ଅକାରଣ ଅପମାନ ଦେଲେ । ମୁଁ ଏଠାରେ ରହିବି ନାହିଁ । ମୁଁ ରିଜାଇନ୍ ଦେବି ।'' ସେ ହଁ କଲେ ।

ତହିଁ ଆରଦିନ ସକାଳେ ଲିଖିତ ରେଜିଗ୍‌ନେଶନ୍‌ଟି ପକେଟ୍‌ରେ ଧରି ଗୋଦାବରୀଶବାବୁଙ୍କୁ ତାଙ୍କ ଘରେ ଯାଇଁ ସାକ୍ଷାତକଲି । ହୁଏତ ସେ ଭାବିଥିବେ ମୁଁ ଅନୁତପ୍ତ ହୋଇ କ୍ଷମା ମାଗି ଯାଇଥିଲି । କିନ୍ତୁ ସେଦିନ ତାଙ୍କ ଆଗରେ ସ୍ଥିରଭାବରେ ଦଣ୍ଡାୟମାନ ରହି, ତାଙ୍କୁ ଏୟା ମୁଁ ଓଲଟା କହିଲି —

''ମୁଁ ଏଠାରେ ଜୀବନ କଟାଇବି ବୋଲି ଆସିଥିଲି । ଏ ଅନୁଷ୍ଠାନର ବହୁତ ଗଲ୍‌ତି ଅଛି । ପିଲାମାନେ ଆପତ୍ତି କରିବାରୁ ମୁଁ ସେମାନଙ୍କୁ ଆପଣଙ୍କ ଆଗରେ ଅଭିଯୋଗ ସବୁ ଉପସ୍ଥାପିତ କରିବାକୁ ଉପଦେଶ ମାତ୍ର ଦେଇଛି । ତାହା ଅନୁଷ୍ଠାନର ଡିସିପ୍ଲିନ୍ ନଷ୍ଟ କରିବାର କୌଣସି ଆଶଙ୍କା ନାହିଁ । ଆପଣ ଅନ୍ୟମାନେ ଯାହା କହୁଛନ୍ତି କେବଳ ତାକୁଇ କାନଦେଇ ମୋତେ ଭୁଲ୍ ବୁଝିଛନ୍ତି ଓ ଅବାନ୍ତର ଅଭିଯୋଗ ସବୁ ଆଣି ମତେ ଅପମାନ ଦେଉଛନ୍ତି । ମୋ ଉପରେ ଆପଣଙ୍କର ଯଦି ବିଶ୍ୱାସ ନାହିଁ, ତେବେ ଏଇ ନିଅନ୍ତୁ ମୋର ଇସ୍ତଫାପତ୍ର ।''

ଗୋଦାବରୀଶବାବୁଙ୍କୁ କଥା କହିବାର ଅବସର ନଦେଇ, ଇସ୍ତଫା ପତ୍ରଟି ତାଙ୍କ ଆଗରେ ରଖିଦେଇ, ସିଧା ତାଙ୍କ ଘରୁ ବାହାରି ଆସିଲି । ଅନ୍ୟ ଶିକ୍ଷକମାନେ ବାଟରେ କୁତୂହଳୀ ହୋଇ ଠିଆହୋଇଥିବାର ଦେଖିଲି । ମୁଁ ଗୋଦାବରୀଶ ମିଶ୍ରଙ୍କୁ ଇସ୍ତଫା ଦେଇ ଆସିଲି ଶୁଣି ସେମାନେ ଘୋର ବିସ୍ମିତ ହେଲେ ।

ରେଜିଗ୍ନେଶନ୍ ଫେରାଇ ଆଣିବାପାଇଁ ମତେ ପରାମର୍ଶ ଦିଆଗଲା । – ମୁଁ ନାସ୍ତି କଲି । ଦି'ତିନି ଦିନ ଭିତରେ ମୁଁ ଛାତ୍ରମାନଙ୍କଠାରୁ ବିଦାୟ ନେଇ ସେ ସ୍ଥାନ ପରିତ୍ୟାଗ କରି ଆସିଲି । ଫେରିଗଲି ମୋର ଗାଁକୁ ।

ଶୁଣିଛି ଯେ, ମୁଁ ସ୍ଥାନ ଛାଡ଼ିବା ପରେ ପରେ ପିଲାଏ ପ୍ରକୃତରେ ଷ୍ଟ୍ରାଇକ୍ କଲେ । ମୋର ବାଣପୁର ସ୍କୁଲ୍ ତ୍ୟାଗ ପରେ କ'ଣ ପ୍ରକୃତରେ ଘଟିଲା ତାହା ମୋର କୌଣସି ଛାତ୍ରକୁ କେବେ ହେଲେ ପଚାରିଯାଇନାହିଁ । କଥାପ୍ରସଙ୍ଗରେ ଏଠୁ ସେଠୁ ଯାହା ଶୁଣିଛି, ତାହାହିଁ ଲେଖୁଛି ଏବଂ ଏସବୁ ବିଶ୍ୱାସଯୋଗ୍ୟ ବୋଲି ଧରିନେଇଛି ଏଇ କାରଣରୁ ଯେ, ଠିକ୍ ଏଇ କଥାସବୁ ସେ ସମୟର ବାଣପୁର ହାଇସ୍କୁଲ୍ ମ୍ୟାନେଜିଂ କମିଟିର ସେକ୍ରେଟାରୀ ସ୍ୱର୍ଗତ ଆଇଜାକ୍ ସାହେବଙ୍କଠାରୁ ମଧ୍ୟ ଶୁଣିଛି ।

## ବନ୍ଧୁ ଆଇଜାକ୍ –

ଏହି ଆଇଜାକ୍ (ମି. ଆଇ.ଏ. ଆଇଜାକ୍) ଓ ତାଙ୍କର ସ୍ତ୍ରୀ ମିସେସ୍ ଆଇଜାକ୍‌ଙ୍କୁ ମୁଁ ପରମ ବନ୍ଧୁରୂପେ ପାଇଲି, ଏଇ ବାଣପୁର ସ୍କୁଲ୍ ଗୋଳମାଳରୁ । ମୁଁ ଗାଁକୁ ଫେରିଯିବାର ପ୍ରାୟ ସପ୍ତାହେ ଖଣ୍ଡେ ପରେ ମୋର ଜଣେ ଛାତ୍ର, ଶ୍ରୀ ଗଙ୍ଗାଧର ନାୟକ, ଗୁଡ଼ାଏ ଚିଠିପତ୍ର ଧରି, ଦିନେ ସକାଳେ ମୁଁ ଆମର ସମୁଦ୍ରବେଳାସ୍ଥ ଝାଉଁ ବଗିଚାରେ ବୁଲୁଥିବା ବେଳେ, ନମସ୍କାର କରି ମୋ ଆଗରେ ଠିଆହେଲେ । ମୁଁ ତ ତାଙ୍କୁ ଦେଖି କାବା ! ମୋ ଗାଁକୁ ସେ ବାଟ ପାଇଲା କିପରି ? କିଇବା ଜରୁରୀ ଖବର ? ଗଙ୍ଗାଧର ଚିଠିଗୁଡ଼ିକ ହାତକୁ ବଢ଼ାଇଦେଲେ । ଗୋଟି ଗୋଟି କରି ପଢ଼ିଲି । ଅଧିକାଂଶ ବାଣପୁରର ଛାତ୍ରମାନଙ୍କଠାରୁ –ସସ୍ନେହ ଦୁଃଖ ପ୍ରକାଶ କେବଳ; କିନ୍ତୁ ଦୁଇଟି ମୂଲ୍ୟବାନ୍ ଚିଠି ମଧ୍ୟ ଥିଲା । ଗୋଟିଏ ନିମାପଡ଼ା ହାଇସ୍କୁଲ୍‌ରେ ଶିକ୍ଷକତାପାଇଁ ସେଠାର ସେକ୍ରେଟାରୀଙ୍କଠାରୁ, ଆଉ ଗୋଟିଏ ମି. ଆଇଜାକ୍‌ଙ୍କଠାରୁ– ତାଙ୍କୁ ଯାଇ ଦେଖାକରିବାକୁ ।

ଗଙ୍ଗାଧର ଫେରିଗଲେ । ମୁଁ ହେମଲତାଙ୍କୁ ଗାଁରେ ଛାଡ଼ିଦେଇ, କିଛିଦିନ ପରେ, ଫେର୍ ବାହାରିଲି ଶିକ୍ଷକତା କରିବାକୁ । ମୋର ଲକ୍ଷ୍ୟ ପ୍ରକୃତରେ ଥିଲା ନିମାପଡ଼ା; କିନ୍ତୁ ମୁଁ ବାଲୁଗାଁରେ ଓହ୍ଲାଇଲି । ମି. ଆଇଜାକ୍‌ଙ୍କ ସହିତ ସାକ୍ଷାତ କରିବା ପାଇଁ । ସେ ମତେ ତାଙ୍କ ଘରେ

ରଖାଇଲେ । ତାଙ୍କଠାରୁ ବୁଝିଲି ଯେ ମୋର ପ୍ରସ୍ଥାନ ପରେ ପରେ ପିଲେ ଓ ଲୋକେ ମୋ ପ୍ରତି କିପରି ଅନ୍ୟାୟ କରାଯାଇଛି, ସ୍କୁଲ୍‌ରେ କିପରି ନାନା ଗଲ୍‌ତି ଭରିରହିଛି, ଯାହାର ସଂଶୋଧନ ପାଇଁ କର୍ତ୍ତୃପକ୍ଷ ନାରାଜ, ଇତ୍ୟାଦି ଇତ୍ୟାଦି ନାନା କଥା ତାଙ୍କୁ କହିଛନ୍ତି । ମ୍ୟାନେଜିଂ କମିଟି ମିଟିଂରେ, ଇ'ଭିତରେ ସେ ମୋପାଇଁ ଲଢ଼ିଛନ୍ତି । ଫେର୍, ମ୍ୟାନେଜିଂ କମିଟି ବସିବ । ତାଙ୍କର ଇଚ୍ଛା ମୁଁ କିପରି ସ୍କୁଲ୍‌କୁ ଫେରିଆସେ । କିନ୍ତୁ ଆଇଜାକ୍‌ଙ୍କ ଲଢ଼ାଇ ବିଫଳ ହେଲା ଓ ଶୁଣିଲି ମୋ ପରି ଏକ ଅଜଣା ଲୋକ ପ୍ରତି ଅନ୍ୟାୟ କାଣ୍ଡର ପ୍ରତିବାଦରୂପେ ଆଇଜାକ୍ ସାହେବ ମ୍ୟାନେଜିଂ କମିଟିର ସେକ୍ରେଟାରୀ ପଦରୁହିଁ ଇସ୍ତଫା ଦେଇ ଦେଇଥିଲେ । ଯେତେବେଳେ ନାଁ ପରା ସାହେବ ?

ଏଇ ଆଇଜାକ୍ ଜଣେ ଇହୁଦୀ-ସାହେବ । ରେଲୱେ ଚାକିରିରୁ ଅବସରପ୍ରାପ୍ତି ପରେ ବାଲୁଗାଁରେ ଆସି ବସବାସ କରିଥିଲେ । ଶୀତଦିନେ ଚିଲିକା ଭ୍ରମଣକାରୀମାନଙ୍କୁ ଆତିଥ୍ୟ ଯୋଗାଇ ସେ ବେଶ୍ ରୋଜଗାର କରୁଥିଲେ । କିନ୍ତୁ ସେ ଜଣେ ପଣ୍ଡିତ ଲୋକ ଥିଲେ । ଇଂରାଜୀରେ ଖଣ୍ଡେ ଦି'ଖଣ୍ଡ ବହି ମଧ୍ୟ ଲେଖିଯାଇଛନ୍ତି । ବାଲୁଗାଁରେ ଆଇଜାକ୍ ସାହେବଙ୍କର ଘର, ବଗିଚା ସମସ୍ତଙ୍କୁ ଜଣା । ମିସେସ୍ ଆଇଜାକ୍ ମତେ ପୁତ୍ରପରି ସ୍ନେହ କରୁଥିଲେ ।

## ଶିକ୍ଷୟିତ୍ରୀ ହେମଲତା –

ବାଣପୁର ସ୍କୁଲରେ ଯେତେଦିନ ଥିଲି ସେ ଭିତରେ କିଶୋରୀ ହେମଲତା ନିକଟବର୍ତ୍ତୀ ଅଚ୍ୟୁତରାଜପୁର ଶାସନରେ ବାଳିକାମାନଙ୍କୁ ପଢ଼ାଇବା ଆରମ୍ଭ କରିଥିଲେ । ଏବେ ୩୦ ବର୍ଷ ତଳେ ସେହି ଅଞ୍ଚଳର ଜଣେ ଉଚ୍ଚଶିକ୍ଷିତ ଯୁବକ ମତେ ଶୁଣାଇ ବିସ୍ମିତ କଲେ ଯେ, ତାଙ୍କର ଜନନୀ ଶ୍ରୀମତୀ ମାନସିଂଙ୍କ ଦ୍ୱାରା ଓଡ଼ିଆ ବର୍ଣ୍ଣମାଳା ଶିକ୍ଷା ଆରମ୍ଭ କରିଥିଲେ । ଦେଖିଲି, ଉତ୍ତମ କର୍ମର ବୀଜ ନିଷ୍ଫଳ ଯାଏନାହିଁ । ଦିନେ ପଣ୍ଡିତ ଗୋଦାବରୀଶ ମୋ ବସାକୁ ଆସି ହେମଲତାଙ୍କର ଏହି ସମାଜସେବା ମନୋବୃତ୍ତିପାଇଁ ପ୍ରଶଂସା ମଧ୍ୟ କରିଯାଇଥିଲେ । ପଣ୍ଡିତଜୀଙ୍କ ଜନ୍ମ ଗାଁ ହେଉଛି ଅଚ୍ୟୁତରାଜପୁର ଶାସନ, ବାଣପୁର ହାଇସ୍କୁଲ୍‌ର ପଶ୍ଚାଦ୍‌ପଟ କହିଲେ ଚଳେ ।

ବର୍ତ୍ତମାନ ମୂଳକଥାକୁ ଫେରିଆସେ । ମୁଁ ବାଣପୁର ସ୍କୁଲ୍‌ରେ ଶିକ୍ଷକ ଥିଲି । ମୋର ଉପର ହାକିମ କେବଳ ନୁହେଁ, ସମଗ୍ର ଅନୁଷ୍ଠାନର ମାଲିକ ହେବା ଉଚିତସ୍କୁଲ୍‌ର ହେଡ୍‌ମାଷ୍ଟର । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହି ଯେ, ଏଇ ସମଗ୍ର ଘଟଣାବଳୀ ଭିତରେ ହେଡ୍‌ମାଷ୍ଟର ଶ୍ରୀକୃଷ୍ଣ ମହାନ୍ତିଙ୍କର ଅସ୍ତିତ୍ୱ ହିଁ ନଥିଲା କହିଲେ ଚଳେ । ବସ୍ତୁତଃ ତାଙ୍କ ହାତରେ କିଛି ହେଲେ କ୍ଷମତା ନଥିଲା । ସେ ଜଣେ ଥିଲେ ମୋରିପରି ଚାକିରିଆ ମାତ୍ର। ସବୁ କ୍ଷମତା ଯାଇଁ ଥିଲା, ସ୍କୁଲ୍ ଓ ସ୍କୁଲ୍ ଶିକ୍ଷକଙ୍କ ବାହାରେ, ଅନ୍ୟ ହାତରେ । ଇଏ ତେବେ କି ପ୍ରକାର ବିଦ୍ୟାନୁଷ୍ଠାନ ? କିନ୍ତୁ ଦେଶର ସର୍ବତ୍ର ବର୍ତ୍ତମାନ ଏଇ ବ୍ୟକ୍ତି-କେନ୍ଦ୍ରିକତାର ଦୃଶ୍ୟ । ଉପର ବର୍ଣ୍ଣିତ ଘଟଣାର ବହୁ ବର୍ଷ ପରେ ସ୍ୱାଧୀନ ଭାରତରେ ମଧ୍ୟ ଓଡ଼ିଶା ସରକାରଙ୍କ ଏକକାଳର ଶିକ୍ଷା ସଚିବଙ୍କଠାରୁ ଏଇ ବ୍ୟକ୍ତି-କେନ୍ଦ୍ରିକ, ମଠାଧୀଶକ, ଡିକ୍‌ଟେଟୋରିୟାଲ କାରବାରର ସମ୍ମୁଖୀନ ମୁଁ କିପରି ହେଲି, ତାହା ପରେ କୁହାଯିବ ।

ଭେଲୋର ୧୨-୧୦-୧୯୫୯

## ତୃତୀୟ ଅଧ୍ୟାୟ

# ନିମାପଡ଼ାରେ ଆତ୍ମ-ପରୀକ୍ଷା

ପୁରୀରୁ ବଳଦ ଗାଡ଼ିରେ ଯାତ୍ରାକରି ମୁଁ ନିମାପଡ଼ା ସ୍କୁଲ୍‌ରେ ଶିକ୍ଷକ ଭାବରେ ଯୋଗ ଦେଇଥିଲି, ବୋଧହୁଏ ୧୯୩୪ରେ । ସେଠାରେ ପ୍ରାୟ ଦୁଇବର୍ଷ କଟାଇଥିଲି । ସେକ୍ରେଟାରୀ ଥିଲେ ମଧୁସୂଦନ ଦାସ, ରିଟାୟାର୍ଡ଼ ଗଭର୍ଣ୍ଣମେଣ୍ଟ ସ୍କୁଲ୍ ହେଡ଼ମାଷ୍ଟର । ଏଇ ମଧୁସୂଦନ ଦାସ, ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ କୋଣାର୍କର ଭୂମିକାର ଲେଖକ । ହେଡ଼ମାଷ୍ଟର ଥିଲେ ମନମୋହନ ଘୋଷ; ଯେ କି ଢେଙ୍କାନାଳ ହାଇସ୍କୁଲ୍‌ରେ ବହୁକାଳ କୃତିତ୍ୱର ସହିତ କଟାଇଲା ପରେ, ଢେଙ୍କାନାଳ ରାଜାଙ୍କ ସହିତ ଅପଡ଼ ହେବାରୁ ସେଠାରୁ ପଳାଇ ଆସିଥିଲେ ବୋଲି ମୁଁ ତାଙ୍କରି ଠାରୁହିଁ ଶୁଣିଥିଲି । ଅନ୍ନଦାଶଙ୍କରଗୟ ୟାଙ୍କରି ଛାତ୍ର । ମୁଁ ନିମାପଡ଼ାରେ ଥିଲାବେଳେ ଅନ୍ନଦାଶଙ୍କର ଓ ତାଙ୍କର ଆମେରିକାନ୍ ପତ୍ନୀ ଥରେ କୋଣାର୍କ ଦେଖିବା ରାସ୍ତାରେ ତାଙ୍କ ଗୁରୁଦେବଙ୍କ ଘରେ ଶାକାନ୍ନ ଖାଇଥିବାର ମୁଁ ଜାଣେ । ବଡ଼ କର୍ତ୍ତବ୍ୟପରାୟଣ ଲୋକ ଥିଲେ ମନମୋହନବାବୁ । ଆମେ କେତେଜଣ ଟୋକା- ଶିକ୍ଷକ ଟୋକା ବୟସ ଯୋଗୁଁ ବେଳେ ବେଳେ ତାଙ୍କ ପୁରୁଣା କାଳିଆ ଢଙ୍ଗଢାଙ୍ଗ ନେଇ ହସୁଥିଲୁ; କିନ୍ତୁ ଏବେ ତାଙ୍କ କଥା ଭାବିଲେ ମନରେ ଅନୁତାପ ଆସେ ସେଥିପାଇଁ । ଇଷ୍ଟବେଙ୍ଗଲର ଲୋକ ସେ । ଶୁଣିଛି, ବହୁଦିନ ହେଲା ତାଙ୍କର କାଳ ହୋଇଗଲାଣି । ଏଇ କର୍ତ୍ତବ୍ୟପରାୟଣ, ଅମାୟିକ, ସାଧୁ- ଶିକ୍ଷକଙ୍କ ପ୍ରତି ମୋର ଚିର ନମସ୍କାର ।

### ଟାକ୍‌ଟଲେଶ୍ ? –

ଏଇ ନିମାପଡ଼ାରେ ଥିଲାବେଳେ ମାନ୍ଦ୍ରାସର ପ୍ରସିଦ୍ଧ 'ଇଣ୍ଡିୟାନ୍ ରିଭ୍ୟୁ' ପତ୍ରିକାରେ ମୋର ପ୍ରଥମ ଲେଖା ପ୍ରକାଶିତ ହେଲା– ଆଧୁନିକ ଓଡ଼ିଆ ସାହିତ୍ୟ ନେଇ । ମନମୋହନବାବୁ ତାକୁ ପଢ଼ିଲେ ଓ ପଢ଼ି କହିଲେ,''ମାୟାଧରବାବୁ, ଆପଣଙ୍କର ହାଇସ୍କୁଲ୍‌ରେ ଯୋଗଦେବା ଏକାବେଳକେ ଭୁଲ୍ ହୋଇଛି । ଆପଣଙ୍କର କଲେଜହିଁ ସ୍ଥାନ । ଆଉ, ଆପଣଙ୍କର ଭବିଷ୍ୟତ୍ ନିଶ୍ଚୟ ଅଛି; କିନ୍ତୁ ଆପଣ ଯେପରି ସ୍ୱଷ୍ଟ ମତ ବ୍ୟକ୍ତ କରୁଛନ୍ତି, ସେପରି କରି ଆପଣଙ୍କର କାରିଅର୍‌ଟାକୁ ନଷ୍ଟ କରିଦିଅନ୍ତୁନି ।''

ଆଶ୍ଚର୍ଯ୍ୟର କଥା, ପଚିଶବର୍ଷ ପରେ, ମୁଁ ଶିକ୍ଷାବିଭାଗରୁ ବିଦାୟ ନେଲାବେଳକୁ, ଶିକ୍ଷା ବିଭାଗର ଉଚ୍ଚତମ କର୍ତ୍ତା, ଯାହାଙ୍କର ବିଦ୍ୟା, ବନ୍ଧୁତ୍ୱ ଓ ବାଣୀକୁ ମୁଁ ଆନ୍ତରିକ ସମ୍ମାନ କରେ, ସେ'ବି ଦିନେ ମତେ ଠିକ୍ ଏୟା କହିଲେ ! ୧୯୫୭ରେ ସମ୍ବଲପୁର କଲେଜରୁ ତଡ଼ାଖାଇ କଟକରେ ଡି.ପି.ଆଇ. ଅଫିସ୍‌ରେ ଦ୍ୱିତୀୟଥର ଆଡ଼ଲ୍‌ଟ ସୋସାଲ ଏଡୁକେଶନ ଅଫିସର ହୋଇ ଯୋଗଦେଇଥାଏ । ଦିନେ ତତ୍କାଳୀନ ଡି.ପି.ଆଇ. ଡକ୍ଟର ବଳଭଦ୍ର ପ୍ରସାଦଙ୍କ ଘରେ ବସି ସେ ଓ ମୁଁ କଥା ହେଉଛୁ । ମୁଁ ବୋଧହୁଏ ତାଙ୍କୁ କହୁଥାଏ, ସରକାର କିପରି ଅନ୍ୟାୟ

ବିଚାର କରିଛନ୍ତି ମୋ ସମ୍ପର୍କରେ ଓ ସେ ଡି.ପି.ଆଇ. ହୋଇ ତାଙ୍କର ଜଣେ ପ୍ରିନ୍ସପାଲଙ୍କୁ ଅନ୍ୟାୟିତ ହେବାକୁ ଦେଲେ କିପରି ? ଡକ୍ଟର ପ୍ରସାଦ ମତେ ନାନାଭାବରେ ବୁଝାଉଥାନ୍ତି । କିନ୍ତୁ ଶେଷରେ ସେ ଏକ ବାକ୍ୟ କହିଲେ, ଯାହାକି ମୁଁ ତାଙ୍କ ମୁହଁରୁ ବାହାରିବ ବୋଲି କେବେ-ହେଲେ କଳ୍ପନା କରିନଥିଲି । ସେ କହିଲେ– ''ଡକ୍ଟର ମାନସିଂ, ତମେ ଯଦି ତମ କଲମ ଓ ବଚନକୁ ରୋକିବାର ଜାଣିଥାନ୍ତ, ତେବେ ଏଥିରେ ସନ୍ଦେହନାହିଁ ଯେ ଏ ଷ୍ଟେଟ୍‌ରେ ତମେ 'ଟପ୍'(ସର୍ବୋଚ୍ଚସ୍ଥାନ)ରେ ବସିଥାନ୍ତ । ତମର ସବୁ ଯୋଗ୍ୟତା ଥିଲା, କେବଳ ସେତିକି ଛଡ଼ା ।''

ମୁଁ ଆଉ ଅଧିକ ଯୁକ୍ତି କରିବି କଣ ? ଏଇ ଅପ୍ରତ୍ୟାଶିତ କମ୍ପଲିମେଣ୍ଟ (ପ୍ରଶସ୍ତି)ରେ ମୁଁ ଏକାବେଳକେ ବିସ୍ମିତ ଓ ନିରୁତ୍ତର ହୋଇପଡ଼ିଲି ।

କିନ୍ତୁ କୌଣସି ବିଷୟରେ ତାତ୍ତ୍ୱିକ ସତ୍ୟ ଦୃଷ୍ଟିରୁ ସେଇ କଥାକୁ ସ୍ପଷ୍ଟ ଭାବରେ ପ୍ରକାଶ କରିବାକୁ ଯିବା କ' ଣ ପ୍ରକୃତରେ ଚାରିତ୍ରିକ ଦୋଷ ? ପ୍ରକୃତରେ ଟାକ୍‌ଟଲେଶ୍‌ନେସ ? ଦେଶ ଓ ଜାତି, ତାର ଶିକ୍ଷକ, କବି ଓ ଲେଖକଠାରୁ ତେବେ କଣ ଆଶା କରିବ ? କ'ଣ, କେବଳ ମିଥ୍ୟା କଥା, ପ୍ରବଞ୍ଚନାର ବାଣୀ ? ଜାଣୁଥିବ ବେସିକ୍‌ରେ ଗଲ୍‌ତି ଭରି ରହିଛି, କିନ୍ତୁ 'ଟାକ୍‌ଟର' ମାନ ରକ୍ଷାଯାଇଁ, 'ଭଲ' 'ଭଲ' କହୁଥିବ ? ଦେଶର ଲେଖକ, ଶିକ୍ଷାବିତ୍ ଓ ବୁଦ୍ଧିଜୀବୀଗଣ ଯଦି ସ୍ପଷ୍ଟ କଥା କହିବାର ଅଧିକାର ନପାନ୍ତି ବା କହିବାକୁ ଭୟକରନ୍ତି ବା କହିଲେ ସରକାରୀ କର୍ମଚାରୀ ଥିବା ବାହାନାରେ ଦଣ୍ଡିତ ହୁଅନ୍ତି, ତେବେ ଡିମୋକ୍ରାଶିର(ଲୋକପ୍ରତିନିଧି ଶାସନର)ନାମ ଉଚ୍ଚାରଣହିଁ ଭଣ୍ଡ ଛଦ୍ମତା । ଯେଉଁଠି ବୁଦ୍ଧିଜୀବୀର ବା ଶିକ୍ଷକ-ଅଧ୍ୟାପକର ମଧ ତାତ୍ତ୍ୱିକ ବା ଆକାଡେମିକ ସତ୍ୟ ସ୍ପଷ୍ଟ କହିବାର ବାଟ ନାହିଁ, ସେ ତ ପ୍ରକୃତରେ ଏକଛତ୍ର-ଶାସନ । ଏ ପ୍ରକାର ତାତ୍ତ୍ୱିକମତ ସ୍ୱାଧୀନଭାବରେ ପ୍ରକାଶ କରିବାର ଯେଉଁଠି ଅବକାଶ ନାହିଁ, ସେଠାରେ ପ୍ରକୃତ ଡିମୋକ୍ରାଶି ବା ଗଣତନ୍ତ୍ର ଶାସନ କେବଳ କଥାର କଥା ଛଡ଼ା ଆଉ କିଛି ହୋଇନପାରେ । ବର୍ତ୍ତମାନର ପ୍ରଭୁବୃନ୍ଦଙ୍କୁ କୌଣସି ସ୍ପଷ୍ଟ ମତ ସୁହାଉନି ବୋଲି, ହୁଏତ କୌଣସି ନିରପରାଧ ବ୍ୟକ୍ତି ସେହି ଅପରାଧ ଯୋଗୁଁ ଦଣ୍ଡିତ ଓ ତାର ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ ହୋଇପାରେ, କିନ୍ତୁ ଆଜି ପ୍ରଭୁବୃନ୍ଦ କେବଳ ଚୌକି ପ୍ରସାଦରୁ ଯାହା ରାୟ ପାସ୍ କରୁଛନ୍ତି, ଯେତେବେଳେ ତାଙ୍କ ଚୌକି-ଜନିତ ବିକୃତ ଦାମ୍ଭିକତାର ଅବକାଶ ନଥିବ, ସେତେବେଳେ ଇତିହାସ ସେମାନଙ୍କୁ ଆଉ ଏକ ବିଚାରର ସମ୍ମୁଖୀନ କରାଇବ ଓ ସେମାନଙ୍କ ସମ୍ପର୍କରେ ଯେ ସମ୍ପୂର୍ଣ୍ଣ ଭିନ୍ନ ରାୟ ଦେବ, ଏହା କଣ ନିଶ୍ଚିତ ସତ୍ୟ ନୁହେଁ ? ବେସିକ୍ ବିରୋଧରେ ଲେଖିବାରୁ ମୁଁ ତ ଦିନେ ଦଣ୍ଡ ଭୋଗିଲି, କିନ୍ତୁ କର୍ତ୍ତାଏ କହନ୍ତୁ ଆଜି ବେସିକ୍ ଏ ଦେଶରେ କାହିଁ ?

## ବ୍ୟର୍ଥଭାବ –

ବର୍ତ୍ତମାନ ନିମାପଡ଼ା-ଅଧିବାସର ମୂଳକଥାକୁ ଫେରିଆସେ ।

ଦିପୋଟି ହୋଇପାରିଲିନାହିଁ । ଶେଷରେ ମାଷ୍ଟ୍ର ହୋଇ ମଧ, ପ୍ରଥ. ଇରି, ତତ୍‌କାଳରେ ପ୍ରବଳ-ପ୍ରତାପୀ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହିତ ଅପ୍ରୀତିକର ଘଟଣା ଘଟିଗଲା; ସୁଦୂର ନିମାପଡ଼ାରେ ଆସି ଆଶ୍ରୟ, ତେଣେ ପୁଣି ମୋର ବିବାହ ଯୋଗୁଁ ଆମର ଗାଁ, ସମଗ୍ର ପାରିକୁଦରେ ଜାତି-ବାସନ୍ଦ—ଏସବୁ ମିଶି ମୋର ମନର ସମସ୍ତ ଉତ୍ସାହକୁ ଦବାଇବାକୁ

ଲାଗିଲେ । କିଶୋରୀ ବଧୂ ହେମଲତାଙ୍କୁ ଗାଁରେ ଛାଡ଼ି ଆସିଥାଏ । ମୁଁ ଏକା ସ୍କୁଲ-ହଷ୍ଟେଲ୍‌ର ଗୋଟିଏ ରୁମ୍‌ରେ ଥାଏ । ସ୍କୁଲ୍‌ରୁ ଫେରିଲେ ବା ଶୋଇଲାବେଳେ ବରାବର ଏକପ୍ରକାର ଆତ୍ମପରୀକ୍ଷାର ସମ୍ମୁଖୀନ ହୁଏ । ମୋର ଯେଉଁ ସାଙ୍ଗମାନେ ଡେପୁଟି ହୋଇଗଲେ, ତାଙ୍କ ଭିତରୁ ଜଣେ ଆମରି ଅଞ୍ଚଳର ଗରିବ ଘରର ପିଲା । ଆମ ଘର ସାତପୁରୁଷ ଧରି ପାରିକୁଦ ରାଜଦରବାରରେ ଉଚ୍ଚପଦ ଅଧିକାର କରି ଧନ ଓ ଯଥେଷ୍ଟ ସ୍ଥାନୀୟ ପ୍ରତିପତ୍ତି ଭୋଗି ଆସୁଥିଲେ । ଅନ୍ତତଃ ଯିଏ ମତେ ମଣିଷ କରେଇଥିଲେ, ସେହି ମାଇନର-ପାସ୍ କରିଥିବା ସା'ନ୍ତବାପା ତ ପାରିକୁଦ ରାଜ୍ୟର ଦେବାନ୍ ଥିଲେ । ମୁଁ ଶେଷରେ ଏତେ ପାଠପଢ଼ି ଅବଧାନ ହେଲି । ସା'ନ୍ତବାପା ଅନେକକାଳୁ ଚାଲିଯାଇଥିଲେ, ନଚେତ୍ ସେ ନିଶ୍ଚେ ଦୁଃଖରେ ମୁହ୍ୟମାନ ହୋଇପଡ଼ିଥାନ୍ତେ । ଦାଦାମାନେ ଚାରିଆଡ଼େ ମୋର ନିନ୍ଦା କରିବାକୁ ଲାଗିଲେ । ମୋର ପିତାମାତା ପିଲାବେଳୁ ମୃତ । ସେତେବେଳେ ନିମାପଡ଼ାରେ ଓ ପରେ ଏଇ ଭଙ୍ଗାଟୁଟା ଜୀବନର ଅନେକ ସନ୍ଧିକ୍ଷଣରେ ମୁଁ ଭାବୁଛି ଯେ, ମୋ ଉପରେ ତା'ଠାରୁ ବଡ଼ ଆଶୀର୍ବାଦ ଭଗବାନ୍ ଦେଇପାରିନଥାନ୍ତେ । କାରଣ, ମୋର ଉତ୍‌ଥାନପତନମୟ ଜୀବନ କେଉଁ ବାପା-ମା'ଙ୍କୁ ସୁଖଦ ହୋଇଥାନ୍ତା ?

ପୁଣି, ସେତେବେଳେ ମୋର ଦରମା ଥିଲା ମାତ୍ର ୬୦ ଟଙ୍କା ମାସକୁ । ଆମେ ସେତେବେଳେ ଏକାନ୍ନବର୍ତ୍ତୀ ପରିବାରରେ ଥାଉଁ, ତେଣୁ ସେହି ୬୦ ଟଙ୍କା ଉପରେ ସମସ୍ତଙ୍କର ଆଖି । ମଫସଲରେ ସେକାଳେ ଟଙ୍କା ବଡ଼ ଦୁର୍ଲଭ ପଦାର୍ଥ ଥିଲା । ଏବେ ଧାନର ମୂଲ୍ୟ ବଢ଼ିଯିବାରୁ ଗ୍ରାମବାସୀଙ୍କ ହାତରେ ବେଶ୍ ଟଙ୍କାପଇସା । ସେକାଳରେ ସେପରି ନଥିଲା । ତେଣୁ ମୁଁ କଲେଜରେ ବୃତ୍ତି ପାଇ ପଢୁଥିଲାବେଳେ ମଧ୍ୟ ମୋର ପରିବାର ମୋଠୁ ଆର୍ଥିକ ସାହାଯ୍ୟ ଆଶା କରୁଥିଲେ । ଏଠାରେ ଏଇ ସମ୍ପର୍କରେ ଗୋଟିଏ ମଜାର କଥା କହେ ।

ଦିନେ ସନ୍ଧ୍ୟାରେ ଆମ ପୁରୁଣା ଗାଁରେ(୧୯୪୨ବନ୍ୟାରେ ଏହି ଗ୍ରାମ ବିଧ୍ୱସ୍ତ ହୋଇଯାଇଛି) ଆମ ଘର ସାମ୍ନା ଚାନ୍ଦିନୀ ଉପରେ ମୁଁ ବସିଛି । ଗ୍ରାମର ଅନେକ ଲୋକ ବି ଅଛନ୍ତି । କଥା ପଡୁ ପଡୁ ଲୋକେ ମୋତେ ପଚାରିଲେ ମୁଁ କେତେ ଟଙ୍କା ବୃତ୍ତି ପାଉଛି । ମୁଁ ଉତ୍ତର ଦେଲି—ପଚାଶ୍ ଟଙ୍କା । (ସେକାଳର ଆଇ.ଏ. ଶ୍ରେଣୀର ବୃତ୍ତି) । ଗ୍ରାମବାସୀ ତାଜ୍ଜିବ ହୋଇଗଲେ । ତାଙ୍କ ଭିତରୁ ଜଣେ ପ୍ରଗଲ୍‌ଭ ଲୋକ କହିଲା—''କ'ଣ କରୁଛ ଏତେ ଟଙ୍କା ? ଘରକୁ ଟଙ୍କା ପଠାଉନ କାହିଁକି ? ବଡ଼ ଖର୍ଚ୍ଚ ତ ଖାଇବା ? କେତେ ଏମିତି ଖାଇବ ? ଦିନକୁ ଚାରଣା କରି ଖାଇଲେ ତ ମାସକୁ ଟ. ୭୪ ପଡ଼ିଲା । ବାକି ଟଙ୍କା କ'ଣ କରୁଛ ? ଉଡ଼େଇ ଦେଉଛ ?''

ମୁଁ କିପରି ମୋ ଗ୍ରାମବାସୀଙ୍କି ଜଣେ କଲେଜ ଛାତ୍ରର ଖର୍ଚ୍ଚ ସଂକୁ ବୁଝାଇବି ? ଯେତେ ବୁଝାଇଲେ ମଧ୍ୟ ସେମାନଙ୍କର ସନ୍ଦେହ ଦୂର ହେଲାନି ।

ଏପରି ଯେଉଁଠି ପରିସ୍ଥିତି, ସେଠି ମୋର ୬୦ ଟଙ୍କା ଉପରେ ସମସ୍ତେ ଯେ ଆଖି ରଖିବେ ଏଥିରେ ବିସ୍ମୟର କାରଣ କଣ ଅଛି ? ପ୍ରତି ମାସରେ ଦାଦାଙ୍କୁ ଟଙ୍କା ପଠାଏ । ଜଣେ ଦାଦିପୁଅ ଭାଇର ପଢ଼ିବାପାଇଁ ଟଙ୍କା ପଠାଏ । ମୋର ନିଜର ଖର୍ଚ୍ଚ ବାଦେ ମୋ ହାତରେ ବାକି କିଛି ନଥାଏ କହିଲେ ଚଳେ ।

ଏଇ ପରିସ୍ଥିତିରେ ପଡ଼ି ମନ ଦୁଇ ଦିଗରେ ଚେଷ୍ଟିତ ହେଲା ।

## ଭବାନୀପାଟଣା ଯାତ୍ରା –

ପ୍ରଥମ ଚେଷ୍ଟା ଏଇ ହେଲା ଯେ, ମାଷ୍ଟର ତ ହେଲି, ଅନ୍ତତଃ ଆଉ କିଛି ଟଙ୍କା ଅଧିକା ହେଲେ ପାଏଁ, ଆର୍ଥିକ ଜଞ୍ଜାଳରୁ ଅନ୍ତତଃ ରକ୍ଷାପାଏଁ । ଏହି ସମୟରେ କଳାହାଣ୍ଡି, ଭବାନୀପାଟଣା ହାଇସ୍କୁଲ୍‌ରେ ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ପୋଷ୍ଟ ଖାଲି ହେଲା । ଦରମା ଥିଲା ନବେ ଟଙ୍କା । କେବଳ ସେହି ନବେ ଟଙ୍କା ଲୋଭରେ ଦରଖାସ୍ତ କଲି ଓ ପୋଷ୍ଟ୍‌ଟି ପାଇ ନିମାପଡ଼ାରୁ ସେଇଠାକୁ ଚାଲିଗଲି । ପିଲାମାନେ ବିଦାୟ ଦେବାକୁ ବସିଲାବେଳେ ଏବର କମ୍ୟୁନିଷ୍ଟ ନେତା ଶ୍ରୀ ମୋହନ ଦାସ ମତେ ଡାକିନେଇ କହିବାର ମନେଅଛି, ''ଆପଣ ଯାଆନ୍ତୁନି, ଆମେ ଆପଣଙ୍କର ପେ'ବଢ଼ାଇଦେବୁ ।'' ମୁଁ ନାହିଁକଲି ।

କିନ୍ତୁ ନିମାପଡ଼ାରେ ବର୍ଷେ ଦେଢ଼ବର୍ଷ ଯାହା ଥିଲି, ମୋଟଉପରେ ବେଶ୍ ଶାନ୍ତିରେ ଥିଲି । ନିମାପଡ଼ା ଏକ ସ୍ୱାସ୍ଥ୍ୟକର ସ୍ଥାନ । ଖୋଲା ଜାଗା । ଏହିଠାରେ ସତ୍ୟବାଦୀର ଶ୍ରୀ ବାସୁଦେବ ମହାପାତ୍ର ମୋର ସହକର୍ମୀ ଥିଲେ । ତାଙ୍କଠୁ ଶୁଣିଥିଲି ଯେ ଗୋପବନ୍ଧୁଙ୍କ ସତ୍ୟବାଦୀ ସ୍କୁଲ୍ ପ୍ରଥମେ ନିମାପଡ଼ାରେ ହେବାର କଥା ଥିଲା, ଭକ୍ତକବି ମଧୁ ରାଓଙ୍କ ସଙ୍କେତରେହିଁ ସତ୍ୟବାଦୀର ବକୁଳବନକୁ ଘୁଞ୍ଚିଗଲା ।

ନିମାପଡ଼ାର ପରିସ୍ଥିତି ଦେଖି ମୁଁ ସେ ସ୍କୁଲ୍‌ର ତତ୍‌କାଳୀନ କର୍ତ୍ତୃପକ୍ଷଙ୍କୁ ପ୍ରସ୍ତାବ ଦେଇଥିଲି ଯେ ଏହାକୁ 'କୋଣାର୍କ ଏକାଡେମୀ' ନାମ ଦିଆଯାଉ ଓ ଏହାକୁ ଗୋଟିଏ ଜାତୀୟ ଅନୁଷ୍ଠାନ କରାଯାଉ । ସେମାନେ ସେ କଥା ଶୁଣିନଥିଲେ । ରାଜଭକ୍ତିର ଚିହ୍ନ ସ୍ୱରୂପ ସମ୍ରାଟ୍ ପଞ୍ଚମଜର୍ଜଙ୍କ ଜୁବୁଲିର ସ୍ମାରକ କରି ତା' ନାଁ ଦେଇଥିଲେ ନିମାପଡ଼ା ଜୁବୁଲି ହାଇସ୍କୁଲ । କୋଣାର୍କ ଏକାଡେମୀ କରି ଜାତୀୟ ଅନୁଷ୍ଠାନ କରିଥିଲେ ମୁଁ ହୁଏତ ଆଜି ସେ ସ୍କୁଲ୍‌ରେ ଏପର୍ଯ୍ୟନ୍ତ ଥାଆନ୍ତି ।

## କବି ଓ ଶିକ୍ଷକ –

ନିମାପଡ଼ାରେ ମୋ ଚିତ୍ତର ଦ୍ୱିତୀୟ ଅଭିଯାନ ହେଲା, ଚିନ୍ତାଶୀଳ କିନ୍ତୁ ଅଭିଶପ୍ତ ଲୋକର ସେଇ ଶାଶ୍ୱତ ପ୍ରଶ୍ନାବଳି–ଜନ୍ମ କାହିଁକି ହେଲି ? କ'ଣ ଜୀବନର ଲକ୍ଷ୍ୟ ? ଗଲାବେଳେ କ'ଣ ଦେଇଯିବି ଜାତି ବା ଜଗତକୁ ?

ଏସବୁ ପ୍ରଶ୍ନର ଉତ୍ତର ଏବେ ବି ପାଇନି । କିନ୍ତୁ, ଏସବୁ ପ୍ରଥମେ ନିମାପଡ଼ାରେହିଁ ବକ୍ଷତଳେ ପ୍ରାଣସାରା ଅନୁରଣିତ ହେବାକୁ ଲାଗିଥିଲା ।

କହିରଖେ ଯେ, ରେଭେନ୍ସା କଲେଜର ଫାଷ୍ଟ ଇୟରରେ ପଢୁ ପଢୁହିଁ ମୁଁ ଏ ଦେଶରେ କବି ଭାବରେ ଜଣାଶୁଣା ହୋଇପଡ଼ିଥିଲି । କଲେଜ ଛାଡ଼ିଲା ବେଳକୁ ମୁଁ ଏକପ୍ରକାର ପ୍ରତିଷ୍ଠିତ ଲେଖକ । କିନ୍ତୁ ଯାହା ଲେଖିଥିଲି ସେହି ଛାତ୍ରାବସ୍ଥାରେ । କଲେଜ ଛାଡ଼ିବା ପରେ ଏଇସବୁ ଯେ ଘଟଣାଚକ୍ରର ଘୂର୍ଣ୍ଣନ, ଏଥିରେ ପଡ଼ି ଆଉ ଲେଖିପାରୁନଥାଏ । ଚିତ୍ତ ଯେତେବେଳେ ଅବସାଦଗ୍ରସ୍ତ ହୋଇ ଆସେ ସେତେବେଳେ ବେଳେବେଳେ ମନେକରୁଥିଲି, ଅର୍ଥୋପାର୍ଜନ ତ ଗଲା, ବୋଧହୁଏ ଲେଖକଭାବରେ ମଧ୍ୟ ମୋର ସବୁ ଶେଷ ହେଲା ।

ସେହି ସମୟରେ ମୋର ମନେପଡ଼ିଲା, କାହିଁ କେଉଁଠି ପଢ଼ିଥିଲି କେବେ ଇଂରେଜ କବି 'ୱାର୍ଡ଼ସ୍‌ୱର୍ଥ'ଙ୍କର ବାଣୀ—'ମୁଁ ଜଗତ ଆଖିରେ ଜଣେ ଶିକ୍ଷକ ବୋଲିହିଁ ଧରାହୁଏ ଯେପରି ।'

କବି ପୁଣି ଶିକ୍ଷକ ? ମୁଁ ଏକ ବିଚିତ୍ର ଆତ୍ମ-ଜ୍ଞାନ ଯେପରି ଉପଲବ୍ଧି କରିବାର ଆରମ୍ଭ କଲି । ଏହା ସତ୍ୟ ଯେ କାବ୍ୟ, ଶିକ୍ଷାତତ୍ତ୍ୱ ନୁହେଁ – ତଥାପି କବିହିଁ ଜାତିର ପ୍ରକୃତ ଶିକ୍ଷକ– ଅନ୍ୟ କେହି ସେପରି ହୋଇନପାରେ । ସେହିଦିନଠାରୁ ମୋର ଲେଖକ ଜୀବନର ଦୁଇ ପ୍ରଧାନ ପଥ ମୁଁ ସ୍ଥିର କରିନେଲି । ପ୍ରଥମ, ସେତେବେଳେ ଲେଖିବାପାଇଁ ପ୍ରକୃତ ଇନ୍‌ସ୍ପିରେଶନ୍ ବା ପ୍ରେରଣା ଆସିବ, ମୁଁ କାବ୍ୟ-କବିତା ଲେଖିବି । ଦ୍ୱିତୀୟ, ବାକି ସମୟତକ ଶିକ୍ଷାତତ୍ତ୍ୱ ଓ ଜୀବନତତ୍ତ୍ୱପାଇଁ ଦେବି । ମଲାବେଳକୁ ଯଦି ମତେ କବି ଓ ଲେଖକଭାବରେ ମୋ ଜାତି ସ୍ୱୀକାର କରିଥିବ, ଭଲ କଥା । କିନ୍ତୁ ତା' ନ ହୋଇଥିଲେ ମଧ୍ୟ, ବା ତାହା ସାଙ୍ଗେ ସାଙ୍ଗେ, ମତେ ଜାତି ତାର ଜଣେ 'ଶିକ୍ଷକ' ଭାବରେ ମଧ୍ୟ ଯେପରି ଗଣିବ, ଏଇ ମୋର ଆଶା ।

ଜୀବନରେ ସ୍ପଷ୍ଟ ମତ ଦେଇ, ଅକୁତୋଭୟ ଭାବରେ ସତ୍ୟକଥା କହିବାକୁ ଯାଇ, କର୍ତ୍ତୃପକ୍ଷଙ୍କ ହାତରୁ ମୁଁ ଯେ ମୋର ନ୍ୟାଯ୍ୟ ପ୍ରାପ୍ୟରୁ ବିଚ୍ୟୁତ ହୋଇ ବାରମ୍ବାର ଲାଞ୍ଛନା ଭୋଗକରିଛି, ତା' ପଛରେ ମୋର ପ୍ରେରଣାର ଉତ୍ସ ସେହି ଅତୀତଗର୍ଭଲୀନ ନିମାପଡ଼ା– ଜୀବନରେ ଆତ୍ମପରୀକ୍ଷାଜନିତ ପ୍ରତିଜ୍ଞା । ମୋର ଶିକ୍ଷା ବିଷୟରେ ବରାବର ଆଲୋଚନାର କାରଣହିଁ ଏହିଠାରେ । ଏପରିକି ମୋର 'ଜୀବନପଥ' ପୁସ୍ତକର ବୀଜ ମଧ୍ୟ ଏହିଠାରେ । ନିଜର ଆଲୋକ ଅନୁସାରେ, ନିଜ ଜାତିର ପଥ-ପ୍ରଦର୍ଶକ ଜଣେ ଶିକ୍ଷକ ହେବାର ସେ ଯେଉଁ କୃତନିଶ୍ଚୟତା, ତାହାହିଁ ସେହି ନିମାପଡ଼ାରେ ଉପ୍ତ ବୀଜ । ମୋର ସମଗ୍ର ସାମାନ୍ୟ ବ୍ୟକ୍ତିତ୍ୱ ଆଜି କେବଳ ସେହି ବୀଜର ଲତା ।

## ପାଠ୍ୟପୁସ୍ତକ ପର୍ଯ୍ୟାୟ –

ମଧୁ ରାଓଙ୍କ ମର୍ଯ୍ୟାଦାବନ୍ତ ସାହିତ୍ୟ-ପୁସ୍ତକ ସବୁ କୂଟଚକ୍ର ଫଳରେ ସ୍କୁଲ୍‌ମାନଙ୍କରୁ ଉଠାଇଦେଇ, ନାନା ଇତର ଲୋକର ତୃତୀୟ ଶ୍ରେଣୀର କିତାପ, 'ସାହିତ୍ୟ' ନାମରେ ସେତେବେଳକୁ ଓଡ଼ିଶାର ସ୍କୁଲ୍‌ମାନଙ୍କରେ ପଶିସାରିଲାଣି । ଅର୍ଥ ଲୋଭରେ ହଠାତ୍-କବି-ଲେଖକ ପାଲଟିଯାଇଥିବା ଏହି ଗଣ୍ଡା ଗଣ୍ଡା ଇତରମାନଙ୍କ ଦୟାରୁ ଆମ ସ୍କୁଲ୍‌ମାନଙ୍କରୁ 'ସାହିତ୍ୟ'ତ ଉଭେଇ ଗଲାଣି, ଭାଷା ବି ଗଲାଣି । ଏବେ ସ୍ପଷ୍ଟ ବିଶୁଦ୍ଧଭାବରେ ଓଡ଼ିଶାର ଉଚ୍ଚାରଣ ବି କ୍ରମେ କ୍ରମେ ଲୋପହେବା ଉପରେ । ତେଣୁ ସେତେବେଳେ ତଳୁ ମାଟ୍ରିକ୍ୟୁଲେସନଯାଏଁ ଗୋଟିଏ ପୂର୍ବାପର-ସମ୍ପର୍କ-ଯୁକ୍ତ ଆନୁକ୍ରମିକ ସାହିତ୍ୟ-ପାଠମାଳା ଲେଖିବାର ଯୋଜନାକୁ ମଧ୍ୟ ମୋର ଶିକ୍ଷକତ୍ୱର କର୍ତ୍ତବ୍ୟ ଭିତରେ ନେଇଥିଲି । ପରେ ଗଳ୍ପମଞ୍ଜରୀ, ନବଯୁଗ-ପାଠମାଳା, ନାଗରିକ ପାଠମାଳା, ସାହିତ୍ୟପ୍ରଭା, ଜୀବନୀ ଓ ପ୍ରବନ୍ଧ ଇତ୍ୟାଦି ଭାବରେ ଯେଉଁସବୁ ପୁସ୍ତକମାଳା ମୁଁ ଲେଖିଛି, ସେ ସବୁର ମୂଳପତ୍ତନର ଆରମ୍ଭ ହୋଇଥିଲା ସେହି ନିମାପଡ଼ାରେ ।

ଭିଲୋର ୧୮-୧୦-୧୯୫୯

---

## ଚତୁର୍ଥ ଅଧ୍ୟାୟ

# ସାମୁଦ୍ରିକ ବିଦ୍ୟା

ପାରିକୁଦରେ ମିଡ଼ଲ୍ ଭର୍ଣ୍ଣାକୁଲର ସ୍କୁଲ୍‌ର ତଳ ଶ୍ରେଣୀରେ ପଢ଼ିଲାବେଳେ ଆମେ ଏକାଠି ବସି 'ହନୁମାନ ପ୍ରଶ୍ନ' ପକାଉ । ଗୋଟେ ପିଲା କିପରି ଖଣ୍ଡେ ହନୁମାନ ପ୍ରଶ୍ନ (ଛାପା) ଯୋଗାଡ଼ କରି ତା' ପଢ଼ାବହି ଭିତରେ ସ୍କୁଲ୍‌କୁ ଲୁଚେଇ ବରାବର ଆଣିଥାଏ । ମାଷ୍ଟ୍ରେ ନଥିବାବେଳେ ତାକୁ ଘେରି ଅନ୍ୟ ପିଲେ ପ୍ରଶ୍ନ ପକାନ୍ତି । ସେହି ବହିର ଶେଷରେ ପ୍ରଶ୍ନମାନଙ୍କର ଉତ୍ତର ଥାଏ । ସେ ପିଲା ତାକୁ ବାହାର କରି ଶୁଣାଇ ଆମର ସେତେବେଳର ପିଲା ଆଖିରେ ଏକ ମହାନ୍ ଜ୍ଞାନୀ ପୁରୁଷ ରୂପେ ପ୍ରତିଭାତ ହୁଏ ।

ଏହାର ନାମ ସେତେବେଳେ ଜାଣିଥିଲୁ, 'ସାମୁଦ୍ରିକ' ବିଦ୍ୟା । ଏହାର ପ୍ରକୃତ ତାତ୍ପର୍ଯ୍ୟ କିନ୍ତୁ କ୍ୱଚିତ୍ ଲୋକେ ବୁଝନ୍ତି ଏ ଦେଶରେ । ସାଧାରଣ ବ୍ୟାଖ୍ୟା ଏହି ଯେ, ହନୁମାନ ସମୁଦ୍ର ଆରପଟ ଲଙ୍କାରୁ ଏ ବିଦ୍ୟା ଆଣିଥିବାରୁ ଏହାର ନାମ ସାମୁଦ୍ରିକ ବିଦ୍ୟା । କିନ୍ତୁ ସାରକଥା ଏହି ଯେ, ଏ ଦେଶରେ ଫଳିତ ଜ୍ୟୋତିଷ ବୋଲି ଯାହା ପ୍ରଚଳିତ, ତାହା ବୋଧହୁଏ ଏକାନ୍ତ ବିଦେଶୀ ପଣ୍ୟ—ବୋଧହୁଏ ବାବିଲୋନରୁ ଆମଦାନି । ଅନ୍ତତଃ ପାମିଷ୍ଟ୍ରି ବା ହାତଦେଖା ଓ ଏଇ ହନୁମାନ-ପ୍ରଶ୍ନ-ଜାତୀୟ ଜ୍ଞାନ, ଦେଶର ବାହାରୁ ଆସିଥିବାରୁହିଁ, ଏମାନଙ୍କର ନାମ 'ସାମୁଦ୍ରିକ ବିଦ୍ୟା' । ନଚେତ୍ ଏସବୁର ଏଦେଶରେ ଏପରି ନାମ ହେବାର ଅନ୍ୟ କୌଣସି କାରଣ ନଥିଲା ।

### ଡିଗ୍ରୀର ମାର୍କା –

ଆମେ କଥା ପଡ଼ିଲେ ଗର୍ବ କରୁ ଯେ ଭାରତବର୍ଷ ଜଗତକୁ ଜ୍ଞାନ ଦାନ କରିଛି ଓ ସମଗ୍ର ଏସିଆକୁ ଆଲୋକିତ କରିଛି । କିନ୍ତୁ ଆଜି ବିଦେଶୀ ଜ୍ଞାନ ନୁହେଁ, ବିଦେଶୀ ଜ୍ଞାନର ମାର୍କାଟା କେବଳ କପାଳରେ ନମାରିଲେ ଆମେ ନିଜକୁ ଅସଭ୍ୟ ଓ ଅନୁନ୍ନତ ମନେକରୁଛୁ । ପ୍ରକୃତ ଜ୍ଞାନରୁ ଆମଦାନୀ ଯଦି ଆମର ଆନ୍ତରିକ ଯୋଜନା ଥାଆନ୍ତା ବା ସେହି ଜ୍ଞାନକୁ ନିଜର ବୈଷୟିକ ଲାଭପାଇଁ ନୁହେଁ, ଜାତିର କଲ୍ୟାଣରେ ଲଗାଇବା ଯଦି ଆମର ଲକ୍ଷ୍ୟ ଥାଆନ୍ତା, ତେବେ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଭାରତବର୍ଷକୁ ଆଜି ଅନ୍ନପାଇଁ ଆମେରିକା ନିକଟରେ ହାତପତେଇବାକୁ ପଡୁ ନଥାନ୍ତା । ଆମକୁ ଧାନ କିପରି ଚାଷ କରିବାକୁ ହେବ ତା' ଶିଖାଇବେ ଜାପାନୀ, ଅଥଚ କୃଷି ବିଦ୍ୟାରେ ବିଲାତି ଡିଗ୍ରୀର ଚିତାମାରି ସହସ୍ର ସହସ୍ର ବଡ଼ା ସାହେବ ହଜାର ହଜାର ଟଙ୍କାର ଦରମା ନେଇ ଦେଶଯାକ ଭର୍ତ୍ତି ହୋଇଛନ୍ତି । ଏମାନଙ୍କର ଜୀବନର ଏକାନ୍ତ ସ୍ୱପ୍ନ, ଦେଶରେ ଗୋଟିଏ ଧାନ କିପରି ଦି'ଟା ହେଉ ନୁହେଁ, ସ୍ୱପ୍ନ କେବଳ ନିଜର ପଦ ଓ ଆର୍ଥିକ ଉନ୍ନତି ଏବଂ ସେହି ଉନ୍ନତିରେ ସ୍ୱପ୍ନ ମୂଲ୍ୟରେ ତାଙ୍କ କୃତିତ୍ୱର ଗୌରବ ନାହିଁ, ଅଛି କେବଳ ବିଦେଶୀ ଡିଗ୍ରୀର ଚିତା, ବିଦେଶୀ ବିଦ୍ୟାନୁଷ୍ଠାନମାନଙ୍କର ମେଞ୍ଚାଏ ସାର୍ଟିଫିକେଟ୍ ।

ଫଳରେ, ଦେଶର ପ୍ରଧାନମନ୍ତ୍ରୀ ମଧ୍ୟ ଦୁଃଖ ପ୍ରକାଶ କରି କହୁଛନ୍ତି ଯେ, ଆମେ ନଅଶହକୋଟି ଟଙ୍କା ମାଟିରେ ପୋତିଲେ ମଧ୍ୟ, ଶହେ ପୌଟି ଧାନ ଅଧିକା ଫଳେଇ ପାରିଲେନି ।

ହେବ କିପରି ? ଆମର ସକଳ ବ୍ୟବସ୍ଥା ବ୍ୟକ୍ତି-କେନ୍ଦ୍ରିକ । ଆମେ ମୋଟା ଦରମାର ବ୍ୟବସ୍ଥା କରିଦେଇଛୁ, ଜଣେ ଲୋକ ଦେଶ ଓ ଜାତିକୁ କ'ଣ ଦେଲା, ତାର ବିଚାର ନକରି, ସେ ବିଦେଶରୁ କେଉଁ ଡିଗ୍ରୀର ଚିତା କପାଳରେ ମାରି ଆସିଛି, କେବଳ ତା' ଦେଖି । କୌଣସି ହେଲେ ସଭ୍ୟ ଦେଶରେ ଏପରି ମୂର୍ଖ, ଅଯୌକ୍ତିକ ବ୍ୟବସ୍ଥା ନାହିଁ । ଜ୍ଞାନ-ଗୌରବମୟ ଏହି ପୁରାଣପ୍ରସିଦ୍ଧ ଦେଶରେ ଆଜି ମାର୍କାର କେବଳ ଯେ ପୂଜା ଚାଲିଛି, ଏହାହିଁ ତାର ସକଳ ଅଧଃପତନର ମୂଳକାରଣ । ମାର୍କାର ଉପାସନା, ଦେଶରେ ବନ୍ୟାଜଳ ପରି ପରିବ୍ୟାପ୍ତ ହୋଇ ଚାଲିଛି । ଗ୍ରାମେ ଗ୍ରାମେ ହାଇସ୍କୁଲ୍ ଓ କଲେଜ ଏହି ମାର୍କା-ଉପାସନାର ଫଳମାତ୍ର । ଜ୍ଞାନକୁ ଛାଡ଼ି, ସହଜ ଉପାୟରେ ଜ୍ଞାନର ମାର୍କାଟା ହାସଲ କରିନେଇ ନିଜର ସୁବିଧା କରିନେବାର ଏହି ଯେ ବ୍ୟାପକ ପ୍ରୟାସ, ଏଥିପାଇଁ ଦିନେ ସମଗ୍ର ଜାତିକୁ କଠୋର ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । କୋଟି କୋଟି ଟଙ୍କା ମାଟିରେ ପୋତି ଏକ ପୌଟି ଧାନ ଆମେ ଯେ ଅଧିକା ଫଳେଇ ପାରିଲୁନି ଓ ଆମେରିକାକୁ ଭିକ୍ଷା କଲୁ ଅନ୍ନ, ଏହି ଲଜ୍ଜାକର ବ୍ୟାପାରପାଇଁ ଏ ଦେଶରେ ଜଣେ ତ କେହି ଦଣ୍ଡିତ ହୋଇନାହାନ୍ତି । କିନ୍ତୁ ଦିନେ ଆଜିର ଏ କ୍ଷଣିକ ସୁବିଧାପାଇଁ ସମଗ୍ର ଜାତିକି କଠୋର ଦଣ୍ଡ ଭୋଗ କରିବାକୁ ହେବ ।

ପୁଣି, ଭାରତବର୍ଷ ସ୍ୱାଧୀନ ହେଲା ସତ, କିନ୍ତୁ କୋଡ଼ିଏ ବର୍ଷ ସ୍ୱାଧୀନ ହେଲା ପରେ ନେତାମାନେ ଆଜି ଖୋଜି ହେଉଛନ୍ତି—ଆରେ, ଜାତି କାହିଁ ? କାହିଁରେ ସେ ଭାରତର ମହା-ଜାତି ? ଜାତିକି ତ କେହି ଭୋଟ ଦେଉନି ! ରେଡ଼ି ଦେଉଛି ରେଡ଼ିକି ଭୋଟ, ଚଷା ଦେଉଛି ଚଷାକୁ ଭୋଟ, ବ୍ରାହ୍ମଣ ଦେଉଛି ବ୍ରାହ୍ମଣକୁ ଭୋଟ — ଭାରତ ଗଣତନ୍ତ୍ର ରାଷ୍ଟ୍ରକୁ ଭୋଟ ଦେଉଛି କିଏ ?

କିନ୍ତୁ ଆମ ଚେତନାରେ ତ ଜାତି ଓ ରାଷ୍ଟ୍ର ନାହିଁ ଓ ସେ ଭାବ ଜାଗ୍ରତ କରାଇବା ପାଇଁ ନେତାଙ୍କଠି ଦୃଷ୍ଟାନ୍ତର ଅଭାବ, ଭୋଟବେଳେ ତାହା ହଠାତ୍ ଦେଖାଦେବ କିପରି ? ଆମର ସଂସ୍କୃତି ଓ ଚିନ୍ତାଧାରାହିଁ ବ୍ୟକ୍ତି ଓ ଗୋଷ୍ଠୀ-କେନ୍ଦ୍ରିକ । ଯାକୁ ରାଷ୍ଟ୍ର ଓ ଜାତ୍ୟଭିମୁଖୀ କରିବାପାଇଁ ସ୍ୱାଧୀନତା ପରେ ନେତାମାନେ କିଛି କରିନାହାନ୍ତି କେବଳ ନୁହେଁ, ବରଂ ଅନେକ କ୍ଷେତ୍ରରେ ମନ୍ତ୍ରୀମାନଙ୍କ କାର୍ଯ୍ୟକଳାପ ଯୋଗୁଁ ଯେଉଁଠି ଗୋଷ୍ଠୀ ଭାବ ନଥିଲା, ସେଠି ଗୋଷ୍ଠୀଭାବ ପୂର୍ଣ୍ଣ ଜାଗ୍ରତ ହୋଇଉଠିଛି ।

ବଙ୍ଗଳା ପ୍ରଭୃତି ଭାରତର ଅନ୍ୟ ଅଞ୍ଚଳମାନଙ୍କରେ ଜାତୀୟ ଚେତନା ବରଂ କିଛି ଅଛି — ଓଡ଼ିଶା ଦେଶରେ ସେ ଚେତନା ବିଲ୍‌କୁଲ୍ ନାହିଁ କହିଲେ ଚଳେ । ବିଦେଶର ଜାତୀୟତାରେ ଉଦ୍‌ବୁଦ୍ଧ ହୋଇ ସର୍ ଜେ.ସି. ବୋଷ ଓ ସର୍ ପି.ସି. ରାୟ ବଙ୍ଗଳାକୁ ବୋଷ ଇନ୍‌ଷ୍ଟିଚୁଟ୍ ଓ ବେଙ୍ଗଲ-କେମିକାଲ ଦେଇଗଲେ । ସେମାନଙ୍କର ଆବିଷ୍କାର ବା ପ୍ରତିଭାର କଥା ଛାଡ଼ିଦିଅ, ଏଠାରେ କେବଳ ଜାତୀୟ-ଚେତନାର କଥା ବିଚାର କରାଯାଉ । ସର୍ ଜେ.ସି. ବୋଷ ଓ ସର୍ ପି.ସି. ରାୟ ପ୍ରତିଭାବାନ୍ ହୋଇ ମଧ୍ୟ ସାଂସାରିକ ଭାବରେ ଏପରି ସିଦ୍ଧକାମ

ହୋଇପାରିନଥିଲେ, ଯେପରି ହୋଇପାରିଲେ, ସେମାନଙ୍କର ପ୍ରାୟ ସମକାଳୀନ ଦୁଇଜଣ ବିଲାତଫେରନ୍ତା ଓଡ଼ିଆ । ସର୍ ଜେ.ସି. ବୋଷ ଭାଇସ୍‌ଚାନ୍‌ସାଲର୍ ହୋଇପାରିଲେନି କି ସର୍ ପି.ସି. ରାୟ ଡି.ପି.ଆଇ. ହୋଇପାରିନାହାନ୍ତି । ତାଙ୍କ ତୁଳନାରେ ଦୁଇଜଣ ଓଡ଼ିଶୀ 'ସାହେବ', କଣ ନପାଇଲେ ଜୀବନରେ ? ସୁନା-କଳସ ଓ ହାତୀ ଉପରେ ଛାତି ! କିନ୍ତୁ ଭାବିଲେ ବି ଦୁଃଖ ହୁଏ, ଦେଶଠାରୁ ଦି'ହାତରେ ସୁଖ, ସୁବିଧା ଓ ଧନଦୌଲତ ବୋହି ବୋହି ତ ନେଲେ, ଏ ଦି'ଜଣ ଓଡ଼ିଆ ଜାତିକୁ ଦେଇଗଲେ କଣ ?

ଓଡ଼ିଆମାନେ ଯେ ଅନୁନ୍ନତ, ଅବହେଳିତ ଓ ମଧ୍ୟ ଘୃଣିତ, ତାର ପ୍ରଧାନ କାରଣ ଏହି ଯେ ଏ ଦେଶରେ ପ୍ରକୃତ ଜାତୀୟଚେତନା ଏପର୍ଯ୍ୟନ୍ତ ଉଚ୍ଚତମ ପଦସ୍ଥ ଓଡ଼ିଆମାନଙ୍କଠାରେ ମଧ୍ୟ ସମୁଚିତ ପରିମାଣରେ ଉଦ୍‌ବୋଧିତ ହୋଇନାହିଁ ।

ଏ ରାଜ୍ୟରେ ଦୁରନ୍ତ ବ୍ୟକ୍ତି-ସ୍ୱାର୍ଥ ଓ ଗୋଷ୍ଠୀ-ସ୍ୱାର୍ଥ ଦୁର୍ବଳ ଜାତୀୟ ଚେତନାକୁ ପ୍ରତି-ମୁହୂର୍ତ୍ତରେ ଏପରି ସହଜରେ ଟିକି ଟିକି କରି ଅକୁଣ୍ଠିତଭାବରେ କାଟିପାରୁଛି ଯେ, ଅଧିକାଂଶ ସ୍ଥଳରେ ଅଯୋଗ୍ୟର ପୂଜା ଯୋଗୁଁ ଘୋର ଜାତୀୟ ଅକଲ୍ୟାଣ ଆଖିଆଗରେ ଘଟୁଥିଲେହେଁ, ତାହା କାହା ପ୍ରାଣକୁ ବାଧୁନାହିଁ । ଅନ୍ୟ ରାଜ୍ୟମାନଙ୍କରେ, ଅନ୍ତତଃ ବଙ୍ଗଳାରେ ଯେତେ ବ୍ୟକ୍ତିଗତ ସଂଘର୍ଷ ଥିଲେହେଁ, ଜାତୀୟଗୌରବ ଓ କଲ୍ୟାଣ ବେଳକୁ ସମସ୍ତେ ଏକମୁଖ ଓ ଏକସ୍ୱର । କିନ୍ତୁ ଓଡ଼ିଶାରେ ଜାତୀୟ-ଜୀବନ କହିଲେ କେବଳ କେତେକ ବ୍ୟକ୍ତି-ସାଫଲ୍ୟର ପଟ୍ଟଚିତ୍ର ମାତ୍ର ବୁଝାଏ ।

ଓଡ଼ିଆମାନଙ୍କର ସାଧାରଣ ଜାତୀୟତାବୋଧର ଲଜ୍ଜାକର ଅଭାବର ଜ୍ୱଳନ୍ତ ପ୍ରମାଣ, ଚାକିରି-ସର୍ବସ୍ୱ, ଡିଗ୍ରୀଧାରୀ ଓଡ଼ିଆଙ୍କଠାରେ କେବଳ ନୁହେଁ, ଏ ଦେଶର ମୁଖ୍ୟ ନେତାମାନଙ୍କଠାରେ ମଧ୍ୟ ଦେଖି, ମୁଁ ବରାବର ଗଭୀର ବ୍ୟଥା ଓ ଲଜ୍ଜା ଅନୁଭବ କରିଆସିଛି । ତାହାର ଗୋଟିଏ ଦୃଷ୍ଟାନ୍ତ ହେଉଛି, ଭଲଭାବରେ ଓଡ଼ିଆ ବୁଝୁଥିବା ଓ କହୁଥିବା ବଙ୍ଗାଳୀ ଭାଇମାନଙ୍କ ସହିତ ଓଡ଼ିଶାର ନେତୃସ୍ଥାନୀୟ ନେତାମାନଙ୍କର ମଧ୍ୟ ଆବୁଡ଼ାପଡ଼ି, ଦେଖେଇ ହୋଇ, ଆତ୍ମପ୍ରସାଦ ଅନୁଭବ କରି, ବଙ୍ଗଳା କହିବାକୁ ଯିବା । ଏହା ନିଶ୍ଚୟ କଥା ଯେ ସାମାନ୍ୟତମ ବଙ୍ଗାଳୀ ମଧ୍ୟ ନିଜ ମାତୃଭାଷାକୁ ଏପ୍ରକାର ଅପମାନ ଦେବାକୁ ଯିବନାହିଁ, ଯାହା ଓଡ଼ିଆ ନେତାଏ ମଧ୍ୟ ବିନାଦ୍ୱିଧାରେ କରିଥାନ୍ତି । ଏଠାରେ ଦୁଇଟି ପ୍ରତ୍ୟକ୍ଷ ଅଭିଜ୍ଞତା କହି-ରଖେ ।

ଥରେ, ଓଡ଼ିଶା ଦେଶର ବିଖ୍ୟାତ ଜାତୀୟତାବାଦୀ ସଂବାଦପତ୍ରର ସମ୍ପାଦକ ଓ ତତ୍କାଳୀନ ଶିକ୍ଷାମନ୍ତ୍ରୀଙ୍କ ନିକଟରେ ମୁଁ ବସିଛି । ଏଇ ସମୟରେ ବଙ୍ଗଳାର ଏକ ସାଧାରଣ ଲେଖକ (ସାବିତ୍ରୀପ୍ରସନ୍ନ ଚଟ୍ଟୋପାଧ୍ୟାୟ ?) ତାଙ୍କୁ ଦେଖାକରିବାକୁ ଆସିଲେ । ସେ ଲେଖକ ନିଜର ପରିଚୟ ଦେଉ ଦେଉ ଆଗରୁ କହିଗଲେ ଯେ ତାଙ୍କର ପିଲାଦିନ କଟକରେ କଟିଛି । ପି.ଏମ୍. ଏକାଡେମୀରେ ଛାତ୍ର ଥିଲେ ସେ ଓ ଦିନେ ସେ ଓଡ଼ିଆ କେବଳ କହୁଥିଲେ, ପଢୁଥିଲେ ନୁହେଁ, ଲେଖି ମଧ୍ୟ ପାରୁଥିଲେ । ଆଚ୍ଛା, ଏପରି ଅବସ୍ଥାରେ ଏଇ ମନ୍ତ୍ରୀବରଙ୍କର, ଅନ୍ତତଃ କୌତୂହଳବଶତଃ, ଓଡ଼ିଆରେ ତାଙ୍କ ସହିତ କଥା ହୋଇଥିଲେ କିଛି ତ କ୍ଷତି ହୋଇନଥାନ୍ତା !

କିନ୍ତୁ ଓଡ଼ିଶୀ ମନ୍ତ୍ରୀ ମହାଶୟ କ'ଣ ଏପରି ଓଲୁ ହୋଇଛନ୍ତି ଯେ ସେ ସେହି ବଙ୍ଗାଳୀ ବୁଦ୍ଧିଜୀବୀଙ୍କ ଆଗରେ, ଅନୁନ୍ନତ ଅସଭ୍ୟ ଓଡ଼ିଆମାନଙ୍କ ଭାଷାର ଖାତିରିରେ, ନିଜେ କିପରି ବହୁଭାଷାଭିଜ୍ଞ ଓ ବିଶେଷତଃ ସଭ୍ୟ ବଙ୍ଗଭାଷାରେ ସେ କିପରି ଧୁରନ୍ଧର, ଏହି ବ୍ୟକ୍ତିଗତ ମହନୀୟତାକୁ ଏତେ ସହଜରେ ଜଳାଞ୍ଜଳି ଦେଇପାରନ୍ତେ ? ସେ ତେଣୁ ବଙ୍ଗଳାରେ କହିବାକୁ ଲାଗିଲେ । ମୁଁ ଚୁପ୍‌ହୋଇ ବସି, ରକ୍ତଚାଉଳ ଚୋବାଇ, ମୋ ନିଜ ରାଜ୍ୟର ସ୍ୱୟଂ ଶିକ୍ଷାମନ୍ତ୍ରୀଙ୍କ ହାତରେ ମୋ ମାତୃଭାଷାର ଅପମାନ ଦେଖୁଥାଏ ।

ଆଉ ଏକ ଘଟଣା । କଟକରେ ଥିବା ଭୂଦାନ ଅଫିସରେ ଅଧ୍ୟାପକ ନିର୍ମଳ କୁମାର ବୋଷ ଭୂଦାନ ବା ବିନୋବାଙ୍କ ଉପରେ ଭାଷଣ ଦେବାର କଥା । ଅଳ୍ପ କେତେଜଣ ନିମନ୍ତ୍ରିତ ହୋଇଥାନ୍ତି । ତାଙ୍କ ଭିତରେ ମୁଁ ଥିଲି । ନିର୍ମଳବାବୁ ପୁରୀଜିଲ୍ଲା ସ୍କୁଲ୍‌ରୁ ମାଟ୍ରିକ୍ ପାସ୍ କରିଛନ୍ତି । ତାଙ୍କ ବାପା ଓଡ଼ିଶାରେ ଚାକିରି ଜୀବନ କଟାଇ ଯାଇଥିଲେ । ପ୍ରାଚୀନ ଓଡ଼ିଆରେ ଲିଖିତ ଶିଳ୍ପ ଶାସ୍ତ୍ରକୁ ସମ୍ପାଦନା କରି ସେ ମଧ୍ୟ ଇଂରାଜୀରେ ବହି ଛପାଇଛନ୍ତି । ଉକ୍ତ ମିଟିଂରେ ମାତ୍ର ୧୫/୨୦ ଜଣ ଲୋକ ଥିଲେ । ପ୍ରଫେସର ବୋଷ ଓ ଆଉ ଜଣଙ୍କୁ ଛାଡ଼ିଦେଲେ ବାକି ସମସ୍ତେ ନିପଟ ଓଡ଼ିଆ । ପୁଣି ସେହି ଦୁଇଜଣ ବଙ୍ଗ-ଭାଇ ମଧ୍ୟ ଉତ୍ତମ ଓଡ଼ିଆ ଜାଣନ୍ତି । ଏପରି କ୍ଷେତ୍ରରେ ଓଡ଼ିଆ ଜାତିର ପ୍ରତିନିଧି-ସ୍ଥାନୀୟ ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ଭୂଦାନନେତା ତାଙ୍କ ପୁତୁରା, ସେଠି ବଙ୍ଗଳାରେ ବକ୍ତୃତାଦେବା କି ଦରକାର ଥିଲା କହ ତ ? ଏହା କଣ ଏଇ ଭଦ୍ରଜନମାନଙ୍କର ଭାଷାଜ୍ଞାନ ନା ଲଜ୍ଜାକର ମେରୁଦଣ୍ଡହୀନତାହିଁ ପ୍ରମାଣ କରେ ? ଓଡ଼ିଆ ନେତାଠାରୁ ଓଡ଼ିଆ ଚଷା ଓ ଶ୍ରମିକଯାଏ, ଆଜିର ଓଡ଼ିଆ ଯେତେ ଅବାଧରେ ଓ ସହଜରେ ନିଜର ଜାତୀୟତାକୁ ପଦାଘାତ ଓ ପରିତ୍ୟାଗ କରିପାରେ, ତାର ପଟାନ୍ତର ସାରା ଭାରତ ବା ପୃଥିବୀରେ ଖୋଜି ପାଇବାନି । ମୋ ଜାତିର ଏ ଘୋର ଅଧଃପତନ ମତେ ଗଭୀର ବେଦନା ଦେଇଆସିଛି । କିନ୍ତୁ ଜାତିପ୍ରତି ଆମ ବେଦନାର କି ମୂଲ୍ୟ ଅଛି ? ଆମେ କେଉଁ ଗାଈର ଗୋବର ?

କଲିକତାରୁ ମାକ୍‌ମିଲାନ, ଷ୍ଟାଣ୍ଡର୍ଡ଼ ଲିଟରେଚର ପ୍ରଭୃତି ପୁସ୍ତକ ପ୍ରତିଷ୍ଠାନମାନଙ୍କର ବୁଦ୍ଧିଜୀବୀ, ଶିକ୍ଷିତ ବଙ୍ଗାଳୀ ଓ ବିଜିନେସ୍ ଏଜେଣ୍ଟମାନେ ବିଶ୍ୱସ୍ତ କଥାପ୍ରସଙ୍ଗରେ ବିସ୍ମୟ ପ୍ରକାଶ କରିଛନ୍ତି ମୋ ଆଗରେ ଯେ ଶିକ୍ଷିତ ଓଡ଼ିଆମାନେ ସେମାନଙ୍କ ସହିତ ଓଡ଼ିଆରେ କଥା ନକହି ବଙ୍ଗଳାରେ କାହିଁକି କହିବାକୁ ଚେଷ୍ଟା କରନ୍ତି ? ଗୋଟିଏ ଇଂରେଜୀ-ବ୍ୟବସାୟ ଗୋଷ୍ଠୀର କଲିକତାବାସୀ ବଙ୍ଗଳୀ ଏଜେଣ୍ଟ, କଟକରେ କିଛିଦିନ କଟାଇଲା ପରେ, ମୋ ଆଗରେ ବିସ୍ମୟ ପ୍ରକାଶ କରି କହିଲେ–''ଓଡ଼ିଆ-ବ୍ୟବସାୟୀମାନଙ୍କର ପେଟ୍ରିୟଟିଜମ୍(ଦେଶପ୍ରୀତି) ବୋଲି କିଛି ନାହିଁ, ବଡ଼ ଆଶ୍ଚର୍ଯ୍ୟର କଥା । ଯେଉଁ ପନ୍ଥାଦ୍ୱାରା, କଲିକତା ବ୍ୟବସାୟୀ ଦି'ପଇସା ନେଇଯାଉଛି, ସେତକ ଓଡ଼ିଶାରେ କିପରି ରହିବ, ଏଥିପାଇଁ ଓଡ଼ିଆ ବ୍ୟବସାୟୀର ଚିନ୍ତାଇ ନାହିଁ ।'' ବନ୍ଧୁ କିପରି ଜାଣିବେ ଯେ, ଏପରି ଚିନ୍ତା ଓଡ଼ିଶାର ନେତା, ଲେଖକ, କବିଙ୍କଠି ବି ଦେଖାଯାଏନାହିଁ । ଏ'ତ ବି.ସି. ରାୟର ରାଜ୍ୟ ନୁହେଁ, ଯେଉଁଠି କେନ୍ଦ୍ର ମନ୍ତ୍ରିମଣ୍ଡଳରେ ସ୍ଥାନ ଯଚା ହେଲେ ମଧ୍ୟ ଜଗତ୍ ସମକ୍ଷରେ, ପ୍ରକାଶ୍ୟରେ, ମେରୁଦଣ୍ଡବାନ୍, ଗୌରବାବହ ଉତ୍ତର ମିଳିବ, 'ନା, ମୁଁ ମୋର ଏଇ ବଙ୍ଗଳାରହିଁ ସେବାକରି ମରିବି ।'

ଏସବୁ ପଢ଼ି, ଓଡ଼ିଆମାନେ ନିଜର ମେରୁଦଣ୍ଡଟାକୁ ସାମାନ୍ୟତମ ଭାବରେ ହେଲେ ସିଧା କରିବାକୁ ଚେଷ୍ଟା କରିବେ ବୋଲି ଆଶା କରିପାରେ କି ? ନିଜ ଭାଷା ଓ ନିଜ ଦେଶର ସ୍ୱାର୍ଥ ଓ ମର୍ଯ୍ୟାଦାକୁ ବଳିଦେଇ, କୌଣସି ଲୋକ କୌଣସି କାଳେ ମାନନୀୟ ହୋଇପାରିନାହିଁ । ଯେଉଁ ଜାତିର ପ୍ରତିନିଧି ସ୍ଥାନୀୟ ବ୍ୟକ୍ତି ମଧ୍ୟ ମେରୁଦଣ୍ଡହୀନ, ସେ ଜାତିକୁ କିଏ କାହିଁକି ଖାତିରିକି ଆଣିବ ? ରାଜ୍ୟ-ସଂଗଠନ ଆନ୍ଦୋଳନ କରି ସମସ୍ତେ ଯେଝାର ପ୍ରାପ୍ୟ ପାଇଗଲେ – ଓଡ଼ିଆମାନେ ପାଇଲେନି କାହିଁକି ?

ବର୍ତ୍ତମାନ ସାମୁଦ୍ରିକ ବିଦ୍ୟାକୁ ଫେରିଆସେ । କାରଣ, ଭାରତବର୍ଷରେ ଜାତୀୟ-ଚେତନା ସର୍ବତ୍ର ଏହି ସାମୁଦ୍ରିକ ବିଦ୍ୟାରହିଁ ଫଳ । ବୋଷ-ରାୟଙ୍କ କଥା ତ ଉପରେ କହିଛି, ଗାନ୍ଧି ନେହେରୁଙ୍କ ଜାତୀୟ-ଚେତନା ବି ଏଇ ସାମୁଦ୍ରିକ ବିଦ୍ୟାର ଫଳ । କିନ୍ତୁ ଭାରତର ଅନ୍ୟ ସର୍ବତ୍ର ପରି ଓଡ଼ିଶାରେ ସାମୁଦ୍ରିକ-ବିଦ୍ୟା ପାଇଥିବା ଉଚ୍ଚପଦସ୍ଥ ଓଡ଼ିଆଙ୍କଠି ମଧ୍ୟ ଏହା ଦେଖାଯାଏନି, ଏହାହିଁ ଅତି ବିସ୍ମୟର କଥା । ଏ ରାଜ୍ୟରେ ଏବେ ଯେ ଦଳ ଦଳ ହୋଇ ବିଲାତ-ଫେରନ୍ତା ଡକ୍ଟର, ଅଧ୍ୟାପକ ସବୁ ଦେଖାଦେଉଛନ୍ତି, ପ୍ରଶ୍ନ ତ ହୋଇପାରେ ଯେ,ଏମାନେ ଦେଶର ଟଙ୍କାରେ ଗଲେ ଅଇଲେ; କିନ୍ତୁ ନିଜର ଅନୁନ୍ନତ ଦେଶପାଇଁ ଆଣିଲେ ପ୍ରକୃତରେ କ'ଣ ? କି ମୂଲ୍ୟବାନ୍ ଚିଜ ଆଣି ଦେଶ ଓ ଜାତିକୁ ଦେବାରୁ ଏମାନଙ୍କର ପାହ୍ୟା ଓ ଦରମା ବି ପଟାପଟ ବଢ଼ିଯାଉଛି ? କି ବିଚିତ୍ର ରହସ୍ୟ ଏ ! ଏମାନଙ୍କ ଭିତରୁ ଅଧିକାଂଶଙ୍କୁ ଦେଖି ଏଇ ଲେଖକର ଏୟା ମନେ-ହୋଇଛି ଯେ, କେବଳ ଡିଗ୍ରୀ ଛଡ଼ା ଏମାନେ ପାଶ୍ଚାତ୍ୟ ସଭ୍ୟତାରୁ କିଛି ତ ହେଲେ ଆଣିପାରି-ନାହାନ୍ତି । ଅର୍ଥାତ୍ ଏମାନେ ଆଣିବାକୁ ଯାଇଥିଲେ ଓ ଆଣୁଛନ୍ତି ପ୍ରକୃତରେ କେବଳ ଆମ ପିଲାଦିନର ସେହି 'ହନୁମାନ-ପ୍ରଶ୍ନ' ମାତ୍ର—ସେଇ 'ସାମୁଦ୍ରିକ' ମ୍ୟାଜିକ୍ । ଏମାନେ ପ୍ରକୃତ 'ଜ୍ଞାନ' ପାଇଁ ଯାଇ ସତରେ 'ଜ୍ଞାନୀ' ହୋଇ ଫେରୁଥିଲେ, ଦେଶ କ'ଣ ଯେଉଁଠି ପଚାଶବର୍ଷ ତଳେ ଥିଲା, ସେଇଠି ପଡ଼ିରହିଥାନ୍ତା କେବଳ ନୁହେଁ, ବରଂ ତଳକୁ ତଳକୁ ଯାଉଥାନ୍ତା ?

## ମୋର ସାମୁଦ୍ରିକ ମାର୍କା –

ଏସବୁ କହିବାର ହେତୁ ଏହି ଯେ, ମୁଁ ବି ଦିନେ ଏଇ 'ସାମୁଦ୍ରିକ' ବିଦ୍ୟାର ସନ୍ଧାନରେ ମହୋଦଧିକି ଡେଇଁଥିଲି । ଅନ୍ୟମାନଙ୍କ ପରି ସାମୁଦ୍ରିକ ଜ୍ଞାନର ମାର୍କା ଆଣି ଏ ଦେଶରେ ମୁଁ କିଛି ଆର୍ଥିକ ଉପକାର ପାଇଛି, ତାହା ମଧ୍ୟ ସତ୍ୟ । କିନ୍ତୁ ଏ ଲେଖକର ଏଇ ସାନ୍ତ୍ୱନା ଯେ, ଅନ୍ୟମାନଙ୍କ ପରି, ତା' ପିଛା ଦେଶର ଏକ ଟଙ୍କା ହେଲେ ବ୍ୟୟିତ ହୋଇନାହିଁ ଓ ସାମୁଦ୍ରିକ ବିଦ୍ୟାର ତଥାକଥିତ ଆର୍ଥିକ ଉପକାର ସେ ଯାହା ପାଇଛି, ତାହା ତା' ଯୋଗୁ ନୁହେଁ, ତା'ର ବହୁପଛରେ ଆସି ପହଞ୍ଚିଥିବା ଅନ୍ୟ ସବୁ ଭାଗ୍ୟବାନ୍‌ଗଣ ତାହା ପାଇବାରୁହିଁ, ତାହା ତା' ଭାଗ୍ୟରେ ଆସି ନିୟମାନୁସାରେ ପଡ଼ିଲା– ଯଦିଓ ସେ ସମସ୍ତଙ୍କ ଆଗରେ ସେ ମାର୍କା ନେଇ ଏ ଦେଶକୁ ଫେରିଥିଲା । ପୁଣି ତାହା ମଧ୍ୟ ସେ ପାଇଲା, ତା' ନିଜ ଚେଷ୍ଟାରେ ନୁହେଁ, ଓଡ଼ିଶା ସେକ୍ରେଟେରିୟାଟର ଶିକ୍ଷାଦପ୍ତରର ଜନୈକ ସାହିତ୍ୟିକ ଆଇ.ଏ.ଏସ. ଯେ କି ତାର କାବ୍ୟ କବିତାର ସହୃଦୟ ପାଠକ, ତାଙ୍କରି ଅଯାଚିତ ତଦବିରିରେ ।

ସେହି କାହାଣୀହିଁ ବର୍ତ୍ତମାନ ବର୍ଣ୍ଣନା କରେ । ଛାତ୍ର ଅବସ୍ଥାରେ ଇଂରାଜୀ ସାହିତ୍ୟର, ପୁଣି ଇଂଲାଣ୍ଡ ଓ ଇଉରୋପର ଇତିହାସର ଛାତ୍ରଭାବରେ, ପୁଣି ଭ୍ରମଣକାରୀମାନଙ୍କର ଗ୍ରନ୍ଥ ସବୁ ପଢ଼ିପଢ଼ି, ସେହି ସେହି ଦେଶ ଓ ସେହି ସେହି ଜାତିକୁ ଦେଖିଆସିବାପାଇଁ ମୋର ଅନ୍ତରତଳେ ଗଭୀର ତୃଷ୍ଣା ଲୁକ୍‌କାୟିତ ଥାଏ । ଯେଉଁ ସମୟର କଥା କହୁଛି ସେହି ସମୟରେ ହେମଲତାଙ୍କ ବଡ଼ଭାଇ ଦୁର୍ଗାମାଧବ ବେହୁରା ବିଲାତ ଗଲେ, କୃଷି ବିଜ୍ଞାନର ଡିଗ୍ରୀପାଇଁ । ନିମାପଡ଼ାରେ ଥିଲାବେଳେ ଗାନ୍ଧିଜୀଙ୍କ ଆତ୍ମଚରିତଟି ମୁଁ ପ୍ରଥମକରି ମୂଳରୁ ଶେଷଯାଏଁ ପଢ଼ିଲି । ଏହି ମହତ୍ ଗ୍ରନ୍ଥର ପାଠକମାନଙ୍କର ମନେଥାଇପାରେ ଯେ ସେ ଗ୍ରନ୍ଥରେ ବାପୁଜୀ, ହେମଚନ୍ଦ୍ର ନାମକ ଜଣେ ଗୁଜରାଟି ସାହିତ୍ୟିକର ଭ୍ରାମ୍ୟମାଣ ଜୀବନ ବର୍ଣ୍ଣନା କରିଛନ୍ତି । ଡେକ୍ ପାସେଞ୍ଜର ହୋଇ ବା ଜାହାଜରେ କାମକରି ହେମଚନ୍ଦ୍ର ଇଂରାଜୀ ଅନଭିଜ୍ଞ ଥାଇ ମଧ ପୃଥିବୀର ଅର୍ଦ୍ଧେକ ବୁଲି-ଆସିଥିଲେ । ଏଇ ଲୋକଟିର କୃତିହିଁ ପ୍ରକୃତରେ ମୋର ବିଲାତ -ଯାତ୍ରାର ପ୍ରକୃତ ପ୍ରେରଣା ।

ଭବାନୀପାଟଣାରେ ମୋର ଦରମା ଥିଲା ନବେ ମୁଦ୍ରା । ସେ କାଳରେ ଭବାନୀପାଟଣାରେ ଟଙ୍କାରେ ୩୦ ସେର ଚାଉଳ । ଦୁଧ ସେର ଚାରଣା । ମୋର ମଧ ପିଲାପିଲି ହୋଇନଥାନ୍ତି । ଦି'ଟା କପୋତ କପୋତୀର କେତେ ଖର୍ଚ୍ଚ ? ଏଇଠି ପ୍ରଥମ କରି ମୋର କିଛି ଟଙ୍କା ବଳିଲା । ଷ୍ଟେଟସ୍‌ମାନ୍ କାଗଜରେ ଜାପାନୀ ଜାହାଜମାନଙ୍କର ବିଜ୍ଞାପନ ଦେଖି, ଟମାସ୍ କୁକ୍ ଜରିଆରେ ଶସ୍ତା ଯାତ୍ରାର ଆୟୋଜନ କଲି । ସବୁ ବ୍ୟବସ୍ଥା ସେଇ ଭବାନୀପାଟଣାରେ ବସି ବସି ହିଁ କରିଥିଲି । ଟିକଟ ବାଦେ ହାତରେ ଟଙ୍କା ୨୫୦ଟା ଧରି ବାହାରିପଡ଼ିଥିଲି ସେଦିନ ଅଜ୍ଞାତ ଜଗତ ଅଭିମୁଖରେ । ମୋର ବଡ଼ପୁଅ ଲଲାଟେନ୍ଦୁ(ଲାଲୁ) ଯେ ବର୍ତ୍ତମାନ ଯୁକ୍ତରାଷ୍ଟ୍ରରେ, ସେତେବେଳକୁ ସେ ଠିକ୍ ଏକମାସର ମାତ୍ର । କିନ୍ତୁ ଅନ୍ତତଃ ଇତିହାସ ଏଇ କ୍ଷୁଦ୍ର ଜୀବନର ପରିସରରେ ମଧ ପୁନରାବର୍ତ୍ତିତ ହେବାର ଦେଖିଲି । ବାଇଶବର୍ଷ ପରେ ସେଦିନର ସେଇ ମାସକର-ଶାବକ 'ଲାଲୁ', ଠିକ୍ ବାପପରି ସମ୍ପୂର୍ଣ୍ଣ ନିଜ ଚେଷ୍ଟାରେ ନିର୍ଭର କରି ଦିନେ ଝାମ୍ପ ଦେଲା ମହାବ୍ୟୋମକୁ । ମତେ ବିଜୟନଗରମ୍ ରେଲଷ୍ଟେସନରେ ସେଦିନ ବିଦାୟ ଦେଇଥିଲେ ତା'ର ମା', ଦମ୍‌ଦମ୍ ଏରୋଡ୍ରୋମ୍‌ରେ ତାକୁ ବିଦାୟ ଦେଇଥିଲା ତା'ର ବାପା—ଏତିକି ପ୍ରଭେଦ ।

ମୋର ସେ ଯାତ୍ରା ଓ ଇଂଲାଣ୍ଡ ଜୀବନର ଅଭିଜ୍ଞତା ମୁଁ ଅନ୍ୟ ଗ୍ରନ୍ଥ(ପଶ୍ଚିମ ପଥିକ)ରେ ବର୍ଣ୍ଣନା କରିଛି — ସେ ସବୁର ବର୍ଣ୍ଣନା ଏଠାରେ ନିଷ୍ପ୍ରୟୋଜନ — ଏ ଗ୍ରନ୍ଥ କେବଳ ମୋର ଶିକ୍ଷା-ସମ୍ବନ୍ଧୀୟ ଅଭିଜ୍ଞତାର ଆଲୋଚନା ମାତ୍ର । ପୂର୍ବେ କହିଛି, ମୁଁ ଏକାନ୍ତରେ ବର୍ତ୍ତମାନସର୍ବସ୍ୱ । କଲମ୍ବୋରୁ ଏଡ଼ିନ୍‌ବରା ପର୍ଯ୍ୟନ୍ତ ମୁଁ ମୋର ଚତୁର୍ଦ୍ଦିଗରେ ଯେଉଁ ନୂତନ ସଂସାର ମେଲିହୋଇ ଯାଉଥିବାର ଦେଖି ଦେଖି ଯାଉଥିଲି, ସେହିଥିରେହିଁ ମୁଁ ହୋଇଯାଇଥିଲି ମୁଗ୍ଧ ଓ ପ୍ରସନ୍ନ । ଘର ଛାଡ଼ିବା ପୂର୍ବରୁ କେବଳ ନୂତନ ରାଜ୍ୟ ଓ ନୂତନ ସଭ୍ୟତା ଦେଖିବାର କୌତୂହଳ ଛଡ଼ା, ମୋର ଅନ୍ୟ କୌଣସି ହେଲେ ନିର୍ଦ୍ଧାରିତ ଲକ୍ଷ୍ୟ ନଥିଲା — ପରେ ପ୍ରାପ୍ତ ଡିଗ୍ରୀଟା ଆନୁଷଙ୍ଗିକ ଲାଭମାତ୍ର । କି ଡିଗ୍ରୀ, ଦେଶକୁ ଫେରିଲେ ସେ ଡିଗ୍ରୀର କି ଉପଯୋଗିତା— ଏସବୁର କୌଣସି ହେଲେ ଯୋଜନା ମୁଁ କରିଯାଇନଥିଲି । ଫଳରେ ମୁଁ ସେ ଦେଶରେ ମାସେ ଖଣ୍ଡେ କିଛି ଠିକ୍

କରି ନପାରି କେବଳ ଏପଟ ସେପଟ ହେଲି । ପ୍ରଥମେ ଭାବିଲି ନଅମାସିଆ ଏଡୁକେଶନ-ଡିପ୍ଲୋମା ପାଇଁ ଯିବି । ଫର୍ମ ଇତ୍ୟାଦି ଆଣିଲି । କିନ୍ତୁ ଦେଖିଲି ଭାରତବର୍ଷରେ ସେହି ଏକା ପାଠ ପଢ଼ିଛି, କେବଳ ଡିଗ୍ରୀପାଇଁ ପୁନରାବୃତ୍ତି କରି ସମୟ ନଷ୍ଟ କରିବାକୁ ଇଚ୍ଛା ହେଲାନି; ତେଣୁ ବେଶିଦୂର ଗଲିନି ସେ ପଥରେ । ଏଡିନ୍‌ବରା ଇଉନିଭରସିଟିର ଇଂରାଜୀ ସାହିତ୍ୟର ଏମ.ଏ.(ତିନିବର୍ଷ କୋର୍ସ) କ୍ଲାସ୍‌ରେ ଯାଇ ବସିଲି କିଛିଦିନ । ଦେଖିଲି ସେ ପାଠ ବି ପଢ଼ିଛି ଆଗରୁ—କେବଳ ଡିଗ୍ରୀଟାପାଇଁ ତିନିବର୍ଷ ଚର୍ବିତ-ଚର୍ବଣ କରିବି କିଆଁ । ପୁଣି ତିନିବର୍ଷପାଇଁ ଆର୍ଥିକ ଆୟୋଜନ ବା ମୋର କାହିଁ ? ତାକୁ ଛାଡ଼ିଲି । ଦିନାକେତେ କୁକ୍‌କୁଟ-ପାଳନ ଓ ମଧୁମକ୍ଷିକା-ପାଳନ ଶ୍ରେଣୀରେ ବି ଯାଇ ବସିଥିଲି । ଏଣେ, ଯେତେପ୍ରକାର ସଭାସମିତିର ସୁଯୋଗ ପାଉଥାଏ, କେବଳ ଇଂରେଜ ଜାତିକୁ ଦେଖିବା ଓ ଚିହ୍ନିବାପାଇଁ, ସେ ସବୁଥିରେ ଯୋଗଦେଉଥାଏ ।

ଏଇପରି ଏକ ସମିତି ଥିଲା (ଏବେ ବି ଥିବ) ଏଡିନବରାର କସ୍‌ମୋପଲିଟାନ୍ କ୍ଲବ୍ । ଏ ସମିତି ସେତେବେଳେ ବସେ ଏଡିନ୍‌ବରା ବିଶ୍ୱବିଦ୍ୟାଳୟର ତତ୍କାଳୀନ କେମିଷ୍ଟ୍ରି ପ୍ରଫେସର ଡକ୍ଟର ଲଡ୍‌ଲାମ୍‌ଙ୍କ ଘରେ । ସେହି ସୂତ୍ରରେ ଡକ୍ଟର ଲଡ୍‌ଲାମ୍‌ଙ୍କ ସହିତ ମୋର ପରିଚୟ ହୁଏ । ଥରେ ସେ ମୋତେ ବ୍ରେକ୍‌ଫାଷ୍ଟପାଇଁ ନିମନ୍ତ୍ରଣ କରିଥିଲେ । ସେଇଠି ମୁଁ କ'ଣ ପଢ଼ିବି ଏହା ପ୍ରସଙ୍ଗକ୍ରମେ ପଚାରିବାରେ ସେ ଯେତେବେଳେ ଜାଣିଲେ ଯେ ମୁଁ ଭାରତବର୍ଷରେ ଇଂରାଜୀରେ ଏମ.ଏ. ପାସ୍ କରି ଆସିଛି, ସେ ନିର୍ଦ୍ଦେଶ ଦେଲେ ଇଂରାଜୀରେ ପିଏଚ.ଡି. ଡିଗ୍ରୀପାଇଁ ଚେଷ୍ଟା କରିବାକୁ । ସେବଯାଏଁ ପିଏଚ.ଡି. ମୋ ନିକଟରେ କେବଳ କେତୋଟି ମାତ୍ର ଅକ୍ଷର ଥିଲା । ଡକ୍ଟର ଲଡ୍‌ଲାମ୍ ମୋତେ ବୁଝାଇଦେଲେ ଯେ, ଏ ଡିଗ୍ରୀ ହେଉଛି ଏମ.ଏ.ର ଉପର ଡିଗ୍ରୀ । ତମେ ତ ଏମ.ଏ. ଡିଗ୍ରୀ ପାଇସାରିଛ, ତେଣୁ ଫେର୍ ଏମ.ଏ. ପାଇଁ ଯିବ କାହିଁକି ? କଥାଟା ମନକୁ ମାନିଲା । ପଇସା ବି କମ୍ ଖର୍ଚ୍ଚ ଏ ଦିଗରେ । ତେଣୁହିଁ ଦେଶକୁ ଫେରିଲି ଡକ୍ଟର ଉପାଧି ଧରି—ଓଡ଼ିଶାରେ ସର୍ବପ୍ରଥମ । ମୁଁ ଯେଉଁ ବିଷୟରେ ଥେସିସ୍ ଲେଖି ଡକ୍ଟରେଟ୍ ପାଇଲି ତାହା ମଧ୍ୟ ସେହି ଡକ୍ଟର ଲଡ୍‌ଲାମ୍ ଠିକ୍ କରିଦେଇଥିଲେ । ଏପର୍ଯ୍ୟନ୍ତ ମନେଅଛି ତାଙ୍କ କଥା । ସେ ପଚାରିଲେ– ''ତମେ ସଂସ୍କୃତ ଜାଣ ?'' ମୁଁ କହିଲ– ''ହଁ, କିଛି ଜାଣେ ।'' ସେ–''ତେବେ କୌଣସି ସଂସ୍କୃତ କବି ସହିତ ଇଂରେଜ କବିର ତୁଳନାତ୍ମକ ଆଲୋଚନା କରୁନା ? କିମ୍ବା ସଂସ୍କୃତର କୌଣସି ନାଟ୍ୟକାର ସହିତ ଇଂରେଜ ନାଟ୍ୟକାରର; ଯଥା—କାଳିଦାସଙ୍କ ସହିତ ଆମ ସେକ୍‌ସପିଅରଙ୍କର ।''

ବାସ୍, ବିନାଯୁକ୍ତିରେ ମୁଁ ତାଙ୍କରି ନିର୍ଦ୍ଦେଶହିଁ ଗ୍ରହଣ କରିନେଲି ।

## ପିଏଚ୍.ଡି.ର ପ୍ରାସଙ୍ଗିକତା –

ଦେଶକୁ ଫେରି ନାନା ପଦରେ ମୋତେ କାମ କରିବାକୁ ପଡ଼ିଛି । କିନ୍ତୁ କୌଣସି ହେଲେ ପଦରେ ଏହି ପିଏଚ.ଡି. ଡିଗ୍ରୀ., ଆଫିସିକ କାମରେ ମତେ ବିଶେଷ ସହାୟତା କରିଛି ବୋଲି ମନେହେଉନି । ଇନ୍ସପେକ୍ଟର ହୋଇଛି, ହେଡ଼ମାଷ୍ଟର ହୋଇଛି, ଏଡୁକେଶନାଲ୍ ଆଡ଼ଭାଇଜର,

ପ୍ରିନ୍ସପାଲ୍, ସୋସାଲ୍ ଏଡୁକେଶନ ଅଫିସର୍ ହୋଇଛି; କିନ୍ତୁ ଏସବୁରୁ କୌଣସିଟି ହେଲେ କାମପାଇଁ ଗ୍ରନ୍ଥ-ଲେଖି-ମିଳୁଥିବା ଡିଗ୍ରୀ, ପିଏଚ୍.ଡି., ଏକାନ୍ତ ଅପରିହାର୍ଯ୍ୟ ନୁହେଁ । ସେହି ସେହି ପଦର ଦାୟିତ୍ୱ ତୁଲେଇବାର ଆବଶ୍ୟକୀୟ ନିପୁଣତା ଏ ଡିଗ୍ରୀରୁ ଆସିବାର ଆଶା କରାଯାଏନାହିଁ । ପ୍ରିନ୍ସପାଲ୍ ବା ଇନ୍ସପେକ୍ଟର ଭାବରେ ଯଦି କିଛି ଭଲକାମ କରିଥାଏ, ତେବେ ତାହା କୌଣସିମତେ ହେଲେ ଏଇ ପିଏଚ.ଡି. ଡିଗ୍ରୀର ଗୁଣ ନୁହେଁ । ତାହା ସମ୍ଭବ ହୋଇ-ଥାଇପାରେ ଏଇ କାରଣରୁ ଯେ, ମୁଁ ସେଇ ସମ୍ପର୍କରେ ଚିନ୍ତା କରିଛି, ପରୀକ୍ଷା କରିଛି ଓ ତଦ୍‌ତଦ୍ ସମ୍ପର୍କିତ ସାହିତ୍ୟର ବିଶେଷ ଅନୁଶୀଳନ କରିଛି । ଉଦାହରଣସ୍ୱରୂପ କହେ ଯେ, ସମ୍ବଲପୁର କଲେଜର ଅଧ୍ୟକ୍ଷଭାବରେ ଯୋଗଦେଲା ପରେ, ଗୋଟିଏ କଲେଜ କିପରି ଆଦର୍ଶରେ ଚଳେଇବାକୁ ହେବ ସେ ସମ୍ପର୍କରେ ନାନା ଆତୁ 'ଆଇଡିଆ' ମତେ ସଂଗ୍ରହ କରିବାକୁ ହୋଇଥିଲା । ଇନ୍ସପେକ୍ଟର ଥିଲାବେଳେ ସ୍କୁଲ୍ ପରିଚାଳନା ଓ ପରିଦର୍ଶନ ସଂପୃକ୍ତ ବହୁପୁସ୍ତକ ମଧ ମତେ ପଢ଼ିବାକୁ ପଡ଼ିଥିଲା । ପିଏଚ.ଡି. ଡିଗ୍ରୀ ଏ ଦିଗରେ କିଛି ସାହାଯ୍ୟ କରିନି । ଏପରିକି ଇଂରେଜୀର ଅଧ୍ୟାପକଭାବରେ ମଧ ଦେଖିଲି ଯେ, ପିଏଚ.ଡି. ଡିଗ୍ରୀ ଏକାନ୍ତ ନିରର୍ଥକ । ଏ ଦିଗରେ ଏଡିନ୍‌ବରା ବିଶ୍ୱବିଦ୍ୟାଳୟର ଏମ.ଏ. ଡିଗ୍ରୀ ପ୍ରକୃତରେ ଖୁବ୍ ସାହାଯ୍ୟ କରିଥାନ୍ତା । କିନ୍ତୁ ଏବେ ଓଡ଼ିଶା ଦେଶରେ ଦେଖୁଛି ପିଏଚ.ଡି. ମାଲମାଲ । ଏଇ ଡିଗ୍ରୀର ତୁରନ୍ତ ଆର୍ଥିକ ପ୍ରଲୋଭନରେ ଏ ରାଜ୍ୟର ପଣ୍ଡିତ ମଧ ଲଣ୍ଡନକୁ ଦଉଡ଼ନ୍ତି ଓଡ଼ିଆ-ଉପରେ ପିଏଚ.ଡି. ଆଣିବାକୁ । ବନ୍ଧୁମାନଙ୍କଠାରୁ ଶୁଣିଛି, ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରଫେସର୍‌ମାନେ ପଛରେ ଥଟ୍ଟା କରନ୍ତି– ''ଦେଖହେ, ଏ ଇଣ୍ଡିଆନଗୁଡ଼ାଙ୍କୁ । ହିନ୍ଦୀ, ବଙ୍ଗଳା, ଓଡ଼ିଆରେ ରିସର୍ଚ୍ଚପାଇଁ ଏମାନେ ଲଣ୍ଡନ, କେମ୍ବ୍ରିଜକୁ କିପରି ଦଉଡୁଛନ୍ତି ! ଏ ଆଲୋଚନା କ'ଣ ଇଣ୍ଡିଆରେ ହୋଇପାରି- ନଥାନ୍ତା ?''

କି ଲଜ୍ଜାକର ଆମର ଏ ଡିଗ୍ରୀ-ମୋହ, ପୁଣି ବିଶେଷକରି ପାଶ୍ଚାତ୍ୟ ଡିଗ୍ରୀର ମୋହ । ଆମର ଏ ଡିଗ୍ରୀ-ଆୟୋଜନ ଠିକ୍ ଆମ ପ୍ରୟୋଜନ ଅନୁସାରେ ହେଉଛି କି ନାହିଁ, ତାହା କ'ଣ ଆମ କର୍ତ୍ତୃପକ୍ଷ କେବେହେଲେ ବିଚାର କରିବେନାହିଁ ? –କେହି ଭାବୁ ଟିକିଏ ଏଇକଥା । ଯଦି ଜଣେ କେହି 'ଗୁପ୍ତଯୁଗର ଭାରତୀୟମାନଙ୍କର ଯାନବାହନ' ବା 'ପାଇକମେଳି' ଉପରେ ଏକ ଥେସିସ୍ ଲେଖିଦେଇ ପିଏଚ.ଡି. ନେଇଆସିଲେ, ଏଠି ଆସି ଇଉରୋପିଆନ୍ ହିଷ୍ଟ୍ରି ବା ଇଣ୍ଡିଆନ୍ କନଷ୍ଟିଚ୍ୟୁସନ୍ ପଢ଼େଇବାରେ ସେ ଧୁରନ୍ଧର ହୋଇଯିବେ କିପରି ? ଅଣ୍ଡର ଗ୍ରାଜୁଏଟ୍ ଶ୍ରେଣୀରେ ଯଦି ସେ ଅଧ୍ୟାପନା କରିବେ, ତାଙ୍କ ବିଷୟରେ କେବଳ ଗୋଟିଏ ନୁହେଁ, ସକଳ ବିଭାଗରେ ତାଙ୍କର ପରିଷ୍କାର ଜ୍ଞାନ ରହିବା ଉଚିତ, ତା' ନହେଲେ ଠିକ୍ ଅଧ୍ୟାପନା ହେବା ଅସମ୍ଭବ । ପିଏଚ.ଡି. ଡିଗ୍ରୀ ଗୋଟାଏ ବିସ୍ତୃତ ବିପୁଳ ବିଷୟର ଗୋଟାଏ ସାମାନ୍ୟତମ ଅଂଶର ଆଲୋଚନା ଉପରେହିଁ ମିଳିଥାଏ । ସେ ଡିଗ୍ରୀ ନେଇ ଆସିଲେ ଅଧ୍ୟାପନାର ନିପୁଣତା ବଢ଼ିଯିବାର କୌଣସି ହେଲେ କାରଣ ନାହିଁ । ଅବଶ୍ୟ ଯିଏ ଜାତ-ଶିକ୍ଷକ, ତାଙ୍କର କଥା ଅଲଗା । ତାଙ୍କର ପିଏଚ.ଡି. ପର୍ଯ୍ୟନ୍ତ ଯିବାର କୌଣସି ଆବଶ୍ୟକତା ନାହିଁ । କିନ୍ତୁ ଏ ଦେଶରେ ପ୍ରକୃତ ସହଜାତ ଗୁଣର ମଧ ମୂଲ୍ୟବୋଧ କାହିଁ ? ଏଠି ଦେଶର ସ୍ୱାଧୀନତା ପରେ ମଧ ଇଉରୋପୀୟ ଡିଗ୍ରୀର ଅନ୍ଧପୁଚୁଳି ଆମ କର୍ତ୍ତୃପକ୍ଷଙ୍କ ଆଖିରୁ ଖସିବାକୁ ନାହିଁ । ଗୁଣ ଥାଉ ବା ନଥାଉ, ଏଇ ଡିଗ୍ରୀ

ହେଲେଇ ତ ମିଳିଯାଉଛି କ୍ଲାସ୍-ଉଆନ୍ । କେବଳ ଏଇ ଡିଗ୍ରୀର ଅନ୍ଧ-ମୋହ ଯୋଗୁହିଁ ଯେଉଁମାନେ ହାଇସ୍କୁଲ୍‌ରେ ମଧ୍ୟ ଶିକ୍ଷକ ହେବାର ଯୋଗ୍ୟ କି ନାହିଁ ବିଚାରର ବିଷୟ, ସେମାନେ ଆଜି ସ୍କୁଲ୍ ଇନ୍ସପେକ୍ଟର, କଲେଜ ପ୍ରିନ୍ସପାଲ୍ ଓ ପ୍ରଫେସର ପରି ପଦମାନଙ୍କରେ ସଗର୍ବରେ ଦଣ୍ଡାୟମାନ । ଦେଶର ବିଦ୍ୟାୟତନକୁ ରସାତଳକୁ ଯିବାର ଏପରି ଉତ୍ତମ ବନ୍ଦୋବସ୍ତ ଅନ୍ୟ କୌଣସି ଦେଶରେ ହୋଇଥିବ ବୋଲି ବିଶ୍ୱାସ ହେଉନାହିଁ । ମୁଁ ମଧ୍ୟ ଜାଣେ ଏକାଧିକ ବ୍ୟକ୍ତିଙ୍କଠାରୁ ଯେ କି, କେବଳ ଇଉରୋପୀୟ ଡିଗ୍ରୀ, ପୁଣି ଏଇ ପିଏଚ୍.ଡି. ଡିଗ୍ରୀ ନହେଲେ, ସେମାନଙ୍କର କୌଣସି ବିଭାଗୀୟ ଉନ୍ନତିର ଆଶା ନାହିଁ ଜାଣି, ଶେଷରେ ଘୋର ଅନିଚ୍ଛାରେ, ବାଧ୍ୟ ହୋଇ, ଏ ଡିଗ୍ରୀର ଆୟୋଜନପାଇଁ ବିଦେଶ ଯାଇଛନ୍ତି ।

## ଛ-ଇନ୍‌କ୍ରିମେଣ୍ଟର କିମିଆ –

ଶିକ୍ଷକତା, ଅଧ୍ୟକ୍ଷତା ବା ଅଧ୍ୟାପନାର ନିପୁଣତାପାଇଁ ପିଏଚ୍.ଡି. ଡିଗ୍ରୀର ସେପରି କୌଣସି ବିଶିଷ୍ଟ ଉପଯୋଗିତା ନଥିଲେହେଁ, ଏଇ ଅନ୍ଧ ରାଜ୍ୟରେ ଡିଗ୍ରୀ ପାଇ ଆସିଲେ କେବଳ ବିଭାଗୀୟ ଉନ୍ନତି ନୁହେଁ ସାଥେ ସାଥେ ଛ'-ଛ'ଟା ଇନ୍‌କ୍ରିମେଣ୍ଟ ମଧ୍ୟ ପାଇବାରବ୍ୟବସ୍ଥା ଅଛି ବା ଥିଲା । ଦେଶରେ ଆଜି ଯେ ମାଳମାଳ ପିଏଚ.ଡି., ତା'ର ମୂଳ ପ୍ରେରଣା ଏଇ ଛ'ଟି ଇନକ୍ରିମେଣ୍ଟ ଓ ବିଭାଗୀୟ ଯୁଦ୍ଧପାଇଁ ଅସ୍ତ୍ରାୟୋଜନ ମାତ୍ର । ଗବେଷଣା ଓ ଜ୍ଞାନାହରଣ ବା ନିଜ ଅଧ୍ୟାପନାର ଉନ୍ନତିପାଇଁହିଁ କେତେଜଣ ବିଦେଶ ଯାଇଛନ୍ତି, ତା' ଉପରେ ଥେସିସ୍ ଲେଖାହେବା କଥା ?

ମୁଁ ବିଲାତ ଗଲାବେଳେ ଏଇ ଛ' ଇନ୍‌କ୍ରିମେଣ୍ଟର ସ୍ୱପ୍ନହିଁ ନଥିଲା । ବିଲାତରୁ ଫେରିବାର ବହୁପରେ କୌଣସି ବଡ଼ାସାହେବଙ୍କ ପୁଅ, ପୁତୁରା ବା ଶଳାର ଅସାଧାରଣ ପ୍ରତିଭାର ପୂଜା ପାଇଁ ବୋଧହୁଏ ଏହା ଆରମ୍ଭ କରିଦିଆଗଲା । କିନ୍ତୁ, ବୋଧହୁଏ ଓଡ଼ିଶାର ପ୍ରଥମ ପିଏଚ.ଡି. ହେଲେହେଁ, ମୋର ଏହା ପାଇବାର କୌଣସି ହେଲେ ଆଶା ନଥିଲା । କାରଣ, କାଳେ ଆମପରି ଅଯୋଗ୍ୟ ଏ ସୁବିଧା ପାଇଯିବେ, ଏଥିପାଇଁ କର୍ତ୍ତୃପକ୍ଷ ସେହି ବର୍ଷଠାରୁ ଏହି ନିୟମ କାମିକା ହେବ ବୋଲି ସ୍ଥିର କରିଥିଲେ, ଯେଉଁଥିରେ କି ଭାଗ୍ୟବାନ୍‌ଙ୍କ ପଂକ୍ତିରେ ଆମେ ନଥିବୁ । ପ୍ରତିଭାବାନ୍, ଭାଗ୍ୟବାନ୍, ଜ୍ଞାନବାନ୍ ତରୁଣର ଦଳ ଉତ୍କଳମାତାକୁ ଜ୍ଞାନରତ୍ନର ମାଳାସବୁ ପିନ୍ଧାଇବାର ପୁରସ୍କାର ରୂପେ ଛ'ଛ' ଇନ୍‌କ୍ରିମେଣ୍ଟ ତେଣୁ ପାଇଗଲେ । ଆମପରି ଗୋଷ୍ଠୀହୀନ, ମୁରବିହୀନ ଅଧମକୁ କିଏ କାହିଁକି ଲେଖାରେ ଆଣିବ ? ଅନାଇ ବସିଥାଏ – କାହାକୁ କହିବି ? ଶେଷରେ ଶିକ୍ଷା- ବିଭାଗର ସେଇ ଆଇ.ଏ.ଏସ୍. ବନ୍ଧୁଙ୍କର ତଦ୍‌ବିରିରେହିଁ ଅପ୍ରତ୍ୟାଶିତ ଭାବରେ ବାକି- ପ୍ରାପ୍ୟ ସମେତ ଏହି ଆର୍ଥିକ ଲାଭ, ସମ୍ବଲପୁର କଲେଜର ପ୍ରିନ୍ସପାଲ୍ ଥିଲାବେଳେ ମୋର ହସ୍ତଗତ ହୋଇଥିଲା ।

## ଇଂଲାଣ୍ଡ-ପରିଚୟର ମୂଲ୍ୟ

ତେବେ ଏହା ସତ୍ୟ ନୁହେଁ ଯେ ଡିଗ୍ରୀ ଏକାବେଳକେ ଉଠାଇଦେବା ମୁଁ ଚାହେ ବା ମୁଁ କହିବାକୁ ଚାହେ ଯେ ବିଦେଶୀ ଡିଗ୍ରୀର କୌଣସି ହେଲେ ମୂଲ୍ୟ ନାହିଁ । କହିବାର କଥା ଏହି ଯେ

ଜ୍ଞାନ ରାଜ୍ୟରେ, ଶିକ୍ଷା ବିଭାଗରେ, ସହଜାତ ଗୁଣ ଓ ବୁଦ୍ଧି ଓ ପ୍ରତିଭାରହିଁ ପୂଜା ହେଉ । ଟଙ୍କା ପଇସାର, ଇନ୍‌କ୍ରିମେଣ୍ଟର, ବିଭାଗୀୟ ଉନ୍ନତିର ପ୍ରଲୋଭନ ସବୁ ଦେଖାଇ, 'ଡକ୍ଟର'ମାନଙ୍କର ଗଡ୍ଡଳିକାପ୍ରବାହ ସୃଷ୍ଟିକରି, ଜ୍ଞାନ ରାଜ୍ୟରେ ଉନ୍ନତି ଆଣିବାର ପ୍ରଚେଷ୍ଟା, କେବଳ ଚିନ୍ତାହୀନତାହିଁ ସୂଚନା କରେ । ସର୍ ସି.ଭି. ରାମନ୍ ନୋବେଲ୍ ପୁରସ୍କାର ପାଇବା ପୂର୍ବରୁ ଭାରତ ବାହାରକୁ ଯାଇନଥିଲେ କି କୌଣସି ବିଦେଶୀ ଡିଗ୍ରୀ ତାଙ୍କ ପଛରେ ନଥିଲା । ସର୍ ଜେ.ସି. ବୋଷ ଓ ସର୍ ପି.ସି. ରାୟ ସାଧାରଣ ବି.ଏ., ବି.ଏସ୍‌ସି ହୋଇ ବିଲାତରୁ ଫେରିଥିଲେ ଓ ତାଙ୍କର ବିଖ୍ୟାତ ଗବେଷଣାସବୁ ଏଇ ଭାରତ ମାଟିରେହିଁ କରିଥିଲେ, କେବଳ ଜ୍ଞାନ ସାଧନାର ଆନନ୍ଦରେ, ଛ'ଛ'ଟା ଇନ୍‌କ୍ରିମେଣ୍ଟର ପ୍ରଲୋଭନ ଯୋଗୁଁ ନୁହେଁ ।

କିନ୍ତୁ ଅନ୍ୟପକ୍ଷରେ ମୁଁ କହିବି ଯେ ବିଲାତ ଯିବାହିଁ ଜଣେ ଭାରତୀୟ ପକ୍ଷରେ ଏବେ ବି ଏକ ବିଶେଷ ଶିକ୍ଷା । ଏଥିରେ ମୋର କୌଣସି ସନ୍ଦେହନାହିଁ । ତେବେ ସେପ୍ରକାର ଶିକ୍ଷା-ପାଇବାକୁ ହେଲେ, ଯିଏ ଯିବେ ତାଙ୍କର ବାହାରର ଦି'ଟା ଆଖି ସହିତ, ଯୋଡ଼ାଏ ଭିତର-ଆଖି ଥିବା ଉଚିତ । ବିଲାତରୁ ଡିଗ୍ରୀ ନେଇ ଫେରିଛନ୍ତି ବହୁ ଭଦ୍ରଲୋକ ଓ ସେଥିଯୋଗୁଁ ଏକ ଏକ ଡିପାର୍ଟମେଣ୍ଟର ବଡ଼ାସାହେବ ମଧ ବନିଯାଇଛନ୍ତି । ଅଥଚ ଏଗୁଡ଼ା ପାନ ଚୋବାନ୍ତି ଛେଳିପରି, ଘରଦ୍ୱାର ଲୁଗାପଟା ବିଶୃଙ୍ଖଳ ଓ କର୍ମ ଅନିପୁଣ, ଅପରିଷ୍କାର; ଭଦ୍ରଲୋକ ପରଚର୍ଚ୍ଚା, ପର ଚୁଗୁଲିରେହିଁ ବିଶ୍ରାମକାଳ କଟାନ୍ତି; ନଚେତ୍ ତାସ ଖେଳନ୍ତି; ଡିମୋକ୍ରାଟିକ୍ ଭାବ ବା ଅନ୍ୟପ୍ରତି ମାନବିକ ବ୍ୟବହାର ସହିତ ତାଙ୍କ ରକ୍ତର ବି ପରିଚୟ ଘଟିନି —ମୁଁ ଦୃଢ଼ ଭାବରେ କହିପାରେ ଯେ ଏ ଲୋକର ବିଲାତଯିବା ସମ୍ପୂର୍ଣ୍ଣ ଅପବ୍ୟୟ ଛଡ଼ା ଆଉ କିଛି ନୁହେଁ । କିନ୍ତୁ ଓଡ଼ିଶାର ବିଲାତ-ଫେରନ୍ତା ଅଧିକାଂଶ ଭଦ୍ରଲୋକ ଏଇଶ୍ରେଣୀର । ଅନେକେ ଯେ ଲଣ୍ଡନରେ ଦି'ବର୍ଷ କଟାଇ ମଧ ପାନ-ଚୋବା-ଓଡ଼ିଆ ରହିପାରିଥିଲେ, ତା ନେଇ ବେଶ୍ ଗର୍ବ କରିବାର ମଧ ଦେଖାଯାଉଛି । ସରକାରୀ ଅର୍ଥରେ ଯେଉଁ ମାଳମାଳ ଡକ୍ଟର ଆଜି ଓଡ଼ିଶାରେ ଆସି ବୁଲୁଛନ୍ତି, ଅଧିକାଂଶହିଁ ଏଇ ପ୍ରକାରର ଦେଖି ମୁଁ ଘୋର ବିସ୍ମିତ ହେଉଛି ଯେ, ବିଲାତରେ ଦି' ଦି' ବର୍ଷର ଅବସ୍ଥାନ କିପରି ଏମାନଙ୍କ ଉପରେ କିଛି ହେଲେ ରେଖାପାତ କରିପାରିନାହିଁ ।

## ଲେଖକର ତିନି ଜନ୍ମ —

ଏଇ ଲେଖକର ଏଇ କ୍ଷୁଦ୍ର ଜୀବନରେ ତାର ତିନିଟି ଜନ୍ମାନ୍ତର ଘଟିଯାଇଛି ବୋଲି ସେ ମନେକରେ । ଥରେ ତ ମା' ଜନ୍ମ ଦେଇଥିଲେ । ତାର ଦ୍ୱିତୀୟ ଜନ୍ମ ଘଟିଲା ପ୍ରକୃତରେ ଇଂଲାଣ୍ଡ-ପ୍ରବାସ ଫଳରେ । ତୃତୀୟ ଜନ୍ମାନ୍ତର ଦେଇ ସେ ଯାଉଛି ଏଇ ବର୍ତ୍ତମାନ, ଗଙ୍ଗାଧର ମେହେର କଲେଜ ଛାଡ଼ିଲା ପରଠାରୁ, ଜୀବନର ଶେଷ ପାଦରେ, ଏ ଦେଶ ଓ ଜାତି ଓ ମନୁଷ୍ୟ ନାମକ ପ୍ରାଣୀକୁ ପ୍ରଥମକରି ଘନିଷ୍ଠଭାବରେ ଜାଣିବା ପରେ । ବର୍ତ୍ତମାନ ଏହି ଦ୍ୱିତୀୟ ବା ସାମୁଦ୍ରିକ ଜନ୍ମାନ୍ତରର ବର୍ଣ୍ଣନା ଦେଇହିଁ ଏ ଅଧ୍ୟାୟ ଶେଷ କରେ ।

ସେକ୍ସପିୟରଙ୍କ ଟେମ୍ପେଷ୍ଟ ନାମକ ପ୍ରସିଦ୍ଧ ନାଟକରେ 'ସି-ଚେଞ୍ଜ୍' ବା 'ସମୁଦ୍ରଜନିତ ପରିବର୍ତ୍ତନ' କଥାଟି ଆମେ ପ୍ରଥମେ ଇଂରାଜୀ ଭାଷାରେ ପାଉଁ । ସେ କଥାଟି ଏବେ ବି ଇଂରାଜୀରେ ବ୍ୟବହୃତ ହୋଇଥାଏ । ମୋର ଇଂଲଣ୍ଡରେ ଯେଉଁ ଦି'ବର୍ଷ କଟିଗଲା, ସେଥିରେ ମୋର କ୍ଷୁଦ୍ର

ବ୍ୟକ୍ତିତ୍ୱର ଯେ ଏକ 'ସି-ଚେଞ୍ଜ' ଘଟିଗଲା ଏଥିରେ ସନ୍ଦେହନାହିଁ । ସଭ୍ୟ ମନୁଷ୍ୟ କ'ଣ, ସଭ୍ୟ ସମାଜ କିପରି ବଞ୍ଚେ, ଭଦ୍ରତା କାହାକୁ କୁହାଯାଏ, ନାରୀତ୍ୱ କହିଲେ କ'ଣ ବୁଝିବା, ଶିକ୍ଷା ଓ ଶିକ୍ଷକ ଓ ଶିକ୍ଷାୟତନସବୁ କିପରି ଆଦର୍ଶରେ ପରିଚାଳିତ ହେବା ଉଚିତ, ଏସବୁ ସମ୍ପର୍କରେ, ମୋ ନିକଟରେ ଯୁକ୍ତିତର୍କର ଆଉ ସ୍ଥାନ ନାହିଁ । କାରଣ ମୁଁ ନିଜ ଆଖିରେ ସେସବୁ ଦେଖିଆସିଛି । ଇଂଲାଣ୍ଡ ଆଜି ଇଉରୋପୀୟ ମାନଦଣ୍ଡରେ ଦରିଦ୍ର ହୋଇଯାଇ ଥାଇପାରେ ଓ ସେ ଋଷିଆ ପରି ଆଜି ସ୍ପୁଟ୍‌ନିକ୍ ଉଡ଼ାଇ ନପାରୁଥାଏ; କିନ୍ତୁ ଏହା ନିଶ୍ଚିତ ଯେ ସଭ୍ୟତା, ଭଦ୍ରତା, ମାନବିକତାରେ ଇଂରେଜକୁ ଟପିବାର ଜାତି ନାହିଁ । ସ୍ୱାଧୀନ ମତବ୍ୟକ୍ତପାଇଁ ବ୍ରିଟିଶ୍ ପାର୍ଲିମେଣ୍ଟ ପରି ଦ୍ୱିତୀୟ ଅନୁଷ୍ଠାନ ସାରା ପୃଥିବୀରେ ନାହିଁ । ସେହିପରି ମଧ୍ୟ ବ୍ରିଟିଶ୍ ପ୍ରେସ୍ । ଦେଶପ୍ରୀତିର ଚୂଡ଼ାନ୍ତ ମଧ୍ୟ ଆମେ ସେଇ ଇଂଲାଣ୍ଡରେହିଁ ପାଇବା । ଅଥଚ ପୃଥିବୀରେ ଏପରି କୌଣସି ଦେଶ ଆଉ ନାହିଁ, ଯାହାର ମାଟିରେ ପାଦଦେଲାମାତ୍ରେ, ଯେକୌଣସି ପରଦେଶୀ ମଧ୍ୟ ସେ ଦେଶର ଯେକୌଣସି ନାଗରିକ ପରି ସେ ଦେଶରେ ସ୍ୱାଧୀନ ମନୁଷ୍ୟ ବୋଲି ବିବେଚିତ ହେବ । ପୃଥିବୀର କୌଣସି ଜାତିର ଇତିହାସରେ ଓ୍ୱାରେନ୍ ହେଷ୍ଟିଂସ୍ ପରି ଜଣେ ସାମ୍ରାଜ୍ୟନିର୍ମାତା, ସୁଦୂର ଅଜ୍ଞାତ ଦେଶରେ ଶାସିତମାନଙ୍କ ଉପରେ ମନୁଷ୍ୟୋଚିତ ବ୍ୟବହାର କରିନାହିଁ ବୋଲି ଇମ୍ପିଚିମେଣ୍ଟ୍‌ର ସମ୍ମୁଖୀନ ହୋଇନାହିଁ । ପୁଣି କୌଣସି ଜାତି ତା'ର ସୁଦୃଢ଼ ସାମ୍ରାଜ୍ୟକୁ ଶାସିତ ହାତରେ ସମର୍ପି ଦେଇ ସସମ୍ମାନରେ ମଧ୍ୟ ବିଦାୟ ନେଇଯାଇନାହିଁ । ଛୋଟ ଏକ ଦ୍ୱୀପରାଜ୍ୟ ଇଂଲାଣ୍ଡ । କିନ୍ତୁ ତା'ର ଭାଷା ଆଜି ଆନ୍ତର୍ଜାତିକ ବିଶ୍ୱଭାଷା ଓ ତା' ସାହିତ୍ୟ ଗତ ପାଞ୍ଚଶ ବର୍ଷ ଧରି ପୃଥିବୀର ଶ୍ରେଷ୍ଠ ସାହିତ୍ୟ ବୋଲି ଧରାହୋଇଆସୁଛି । ପୃଥିବୀ ଇତିହାସର ବୃହତ୍ତମ ସାମ୍ରାଜ୍ୟ ଇଂରେଜ ଦିନେ ଶାସନ କରୁଥିଲା । ସେ ସାମ୍ରାଜ୍ୟରେ ସୂର୍ଯ୍ୟାସ୍ତ ହେଉନଥିଲା । କିନ୍ତୁ ଧରାବ୍ୟାପ୍ତ ଏଇ ସାମ୍ରାଜ୍ୟର ପ୍ରତ୍ୟେକ ଅଂଶକୁ ଇଂରେଜ ଠିକ୍ ଇଂଲାଣ୍ଡ ପରି ସଭ୍ୟ, ଉନ୍ନତ ଓ ସ୍ୱୟଂଶାସିତ କରି ଛାଡ଼ିଦେଇଛି । ବ୍ରିଟିଶ୍ ପାର୍ଲିମେଣ୍ଟକୁ ତେଣୁ 'ପାର୍ଲିମେଣ୍ଟମାନଙ୍କର ଜନନୀ' କୁହାଯାଏ । ଏପରି ଗୌରବ, ପୃଥିବୀର କେଉଁ ଦେଶର ଲୋକସଭା ପାଇବାର ଦାବି କରିପାରେ ?

ଇଂରେଜ ସ୍ୱଳ୍ପଭାଷୀ । ନିଜର ବାଦ୍ୟ ନିଜେ ପିଟିବା ଇଂରେଜର ସଂସ୍କୃତିର ବାହାରେ । କିନ୍ତୁ ଇଂରେଜ ତା'ର ଦୁଇଶ' ବର୍ଷର ଶାସନ ଭିତରେ ଭାରତବର୍ଷକୁ ଯେପରି ଗଢ଼ିଯାଇଛି, ତାହାକି ଏ ଦେଶ ତା'ର ପାଞ୍ଚହଜାର ବର୍ଷର ଇତିହାସରେ କେବେହେଲେ ପାଇଥିଲା ? ଇଂରେଜ, ଭାରତବର୍ଷର ଏହା, ତାହା, ଧ୍ୱଂସ କରିଛି, ନଷ୍ଟ କରିଛି ବୋଲି ପାଟିକରି ବକ୍ତୃତା ଦେବା, କେବଳ ରାଜନୈତିକ ଓକିଲାତି ହୋଇପାରେ । କିନ୍ତୁ ଇଂରେଜ-ଶାସନରେ ଭାରତୀୟ ଭାଷା ଓ ସଂସ୍କୃତିର ଯେପରି ଅଭୂତପୂର୍ବ, ଅକଳ୍ପନୀୟ ଉନ୍ନତି ଘଟିଛି, ତାହାକି କୌଣସି ନ୍ୟାୟବିଚାରଶୀଳ ଭାରତୀୟ ବୁଦ୍ଧିଜୀବୀ ଅସ୍ୱୀକାର କରିପାରେ ? ଅନ୍ୟ କଥା ଥାଉ, ଇଂରେଜ ଶାସନର ସୁଫଳବିନା, ଗାନ୍ଧି ଓ ରବୀନ୍ଦ୍ରନାଥ ଓ ଜହରଲାଲ ନେହୁରୁ ମଧ୍ୟ କି ସମ୍ଭବ ହୋଇଥାନ୍ତେ ? ଆମେ ଯାହାକୁ 'ସଇତାନ' କହି ତଡ଼ିଦେଲୁ, ଆମର ଚୀନା-'ଭାଇ'ମାନେ ପଞ୍ଚଶୀଳ-ଚୁକ୍ତିକୁ ସମ୍ମାନ କରି ଯେତେବେଳେ ନେଫା ଓ ଲଦାକ୍‌ରେ ପଶି ହତ୍ୟାକାଣ୍ଡ ଚଳାଇଲେ, ସେତେବେଳେ ସେଇ 'ସଇତାନ ଇଂରେଜ' ହିଁ କାଲି ତଡ଼ି-ଦେଇଥିବା ଓ

ଗାଳି-ଦେଇଥିବା ଇଣ୍ଡିଆକୁ ବିନା ଚୁକ୍ତି ଓ ବିନା ମୂଲ୍ୟରେ ସକଳ ଅସ୍ତ୍ର-ଶସ୍ତ୍ର ଯୋଗାଇବାର ତାତ୍ପର୍ଯ୍ୟ, ଏ ଦେଶରେ ଇଂରେଜ-ନିନ୍ଦୁକମାନେ ବୁଝିବେ ବୋଲି ଆଶାକରେ ।

ପୃଥିବୀର ସବୁ ଦେଶ ଓ ଜାତିର, ଏକ କଥାରେ, ନିଖିଳ ମାନବ ଜାତିର ଇତିହାସର ମୁଁ ଆଗ୍ରହୀ ପାଠକ । କିନ୍ତୁ ସମସ୍ତ ଜାତି ଭିତରେ ଇଂରେଜ ଜାତିକୁ ମୁଁ ମୋର ଗଭୀରତମ ସମ୍ମାନ ଦେଇଆସିଛି । ମୁଁ ମନେକରେ, ଇଂରେଜହିଁ ପୃଥିବୀର ସଭ୍ୟତମ ଜାତି । ଇଂଲାଣ୍ଡରେ ବଞ୍ଚିବାର ଯେଉଁ ଦୁଇବର୍ଷ, ତାହା ମୋ ଜୀବନର ସୁଖୀତମ କାଳ କେବଳ ନୁହେଁ, ଏକ ନବଜୀବନର ଉନ୍ମେଷର କାଳ । କଳାଚମଡ଼ା ଯୋଗୁଁ ଅନେକ ଭାରତୀୟ, ଇଂରେଜମାନଙ୍କଠାରୁ ଦୁର୍ବ୍ୟବହାର ପାଇଥିବାର ମୁଁ କାଗଜରେ ପଢ଼ିଛି; କିନ୍ତୁ ମୋର ଦୁଇବର୍ଷ ଭିତରେ ସେପ୍ରକାର କୌଣସି ହେଲେ ଅଭିଜ୍ଞତା ମୋର ଘଟିନଥିଲା । ଦୁଇବର୍ଷ କାଳ ମୁଁ ଏକ ସୁନ୍ଦର ଦେଶ, ସୁନ୍ଦର ଜାତି, ସୁନ୍ଦର ଖାଦ୍ୟ, ସୁନ୍ଦର ବ୍ୟବହାରର ଗଭୀର ମନୋଜ୍ଞ ପ୍ରତିକ୍ରିୟା ଭିତରେହିଁ କଟାଇଆସିଛି । ମନୁଷ୍ୟ ପ୍ରତି କେବଳ ମନୁଷ୍ୟ ଭାବରେହିଁ ସମବେଦନ ବ୍ୟବହାର, ଯାହା ପିଲାଦିନୁ ମୋ ଭିତରେ ଅଙ୍କୁର ଆକାରରେ ମାତ୍ର ଥିଲା ତାହା ସେହିଠାରେ ଦୃଢ଼ଚେର ହୋଇ ଶାଖାପ୍ରଶାଖା ମେଲି ପ୍ରାଣମୟ ଲଟେଇବାକୁ ଆରମ୍ଭ କଲା । ପରିପୂର୍ଣ୍ଣଭାବରେ ସ୍ୱାଧୀନ ଓ ଶିକ୍ଷିତ ମନୁଷ୍ୟ, ଅକୁତୋଭୟ ଭାବରେ ସର୍ବୋଚ୍ଚ ମାନବିକ ସ୍ୱାଚ୍ଛନ୍ଦ୍ୟ ଭୋଗ କରୁଥିବାର ମୁଁ ପ୍ରଥମେ ଇଂଲାଣ୍ଡରେ ଦେଖିଲି । ସ୍ୱାଧୀନମତ ପ୍ରଚାରର ସବୁ ଅବକାଶସତ୍ତ୍ୱେ, କମ୍ୟୁନିଜମ୍ ସେଠାରେ ପ୍ରବେଶହିଁ କରିପାରୁନାହିଁ । ସେହିପରି ମୋ ନିଜ ବ୍ୟକ୍ତିତ୍ୱରେ ମଧ, ମନୁଷ୍ୟର ବ୍ୟକ୍ତିଗତ-ସ୍ୱାଧୀନତା-ଅପହାରକ କମ୍ୟୁନିଜମ୍ ପ୍ରତିଧ୍ୱନି ସୃଷ୍ଟିକରିପାରିନାହିଁ । ଯେଉଁଦିନ ବୁଝିଲି ଯେ ଇଂରେଜ ଶ୍ରମିକା, ମୋ ଲାଣ୍ଡ୍‌ଲେଡି, ଶ୍ରମିକ-ଦଳକୁ ଭୋଟ ନଦେଇ ଇଂରେଜ ସଂସ୍କୃତିର ରକ୍ଷକ ଓ ପୋଷକ ବୋଲି ତଥାକଥିତ ଧନୀ ଓ ପୁଞ୍ଜିପତିର ଦଳ କଞ୍ଜରଭେଟିଭ୍ ପାର୍ଟିକୁ ଭୋଟ ଦିଏ, ସେହିଦିନଠାରୁ ଯେତେ ହୀନ ହେଲେହେଁ ମୋ' ନିଜ ସଂସ୍କୃତି, ମୋ' ନିଜ ଭାଷା ଓ ମୋ ନିଜ ସାହିତ୍ୟ ପ୍ରତି ଅନୁରକ୍ତି ମୋ ଚିତ୍ତରେ ଯେପରି ସୁଦୃଢ଼ ଆସନରେ ଆସୀନ ହେଲା, ତାହା ଏ ପର୍ଯ୍ୟନ୍ତ ଅଟଳ ରହିଛି । ବିଲାତରୁ ଫେରିବା ଦିନଠାରୁ ଏବେଯାଏଁ ମୋର ବ୍ୟକ୍ତିଗତ ଜୀବନରେ ବା ମୋ ଜାତିକି ଶିକ୍ଷା ଦେବା ବା ଗଢ଼ିବା ଦିଗରେ ମୁଁ ଯେତେବେଳେ ଯାହା ସାମାନ୍ୟ କିଛି ଲେଖିଛି ବା କହିଛି, ସେ ସମସ୍ତ ଉଦ୍‌ବୋଧନର ବୀଜ ମୋର ସେହି ଦୁଇବର୍ଷର ଇଂଲାଣ୍ଡ ପ୍ରବାସବେଳେହିଁ ଗୁପ୍ତଭାବରେ ଉପ୍ତ ହୋଇଯାଇଛି ବୋଲି ପାଠକ ଧରିନେବେ । ଏହି ଭାରତବର୍ଷ ଓ ଓଡ଼ିଶା ମାଟିରେ ଭୂମିଷ୍ଠ ହୋଇଥିଲି – ତେଣୁ ଏ ମୋର ମାତୃଭୂମି । କିନ୍ତୁ ମୋର ଚିତ୍ତ, ବୁଦ୍ଧି ଓ ଆତ୍ମାର ମାତୃଭୂମିରୂପେ ମୁଁ ଯେ ବହୁକାଳ ଧରି ଇଂଲାଣ୍ଡ ବା ଇଉରୋପୀୟ ବା ସେହି ସୂତ୍ରରେ ବିଶ୍ୱ ସଭ୍ୟତାକୁ ବରିନେଇଛି, ଏହା କହିବାରେ ମୋର ସଙ୍କୋଚ ନାହିଁ । ଏହାହିଁ ମୋର ଦ୍ୱିତୀୟ ଜନ୍ମାନ୍ତର । ଏହାହିଁ ମୋ ନିକଟରେ 'ସି-ଚେଞ୍ଜ୍' । – ଏହା ହିଁ ମୋ ଆଖିରେ ପ୍ରକୃତ 'ସାମୁଦ୍ରିକ ବିଦ୍ୟା' ।

---

## ପଞ୍ଚମ ଅଧ୍ୟାୟ
# ଅଜ୍ଞାତ ହସ୍ତର ଆଶୀର୍ବାଦ

କୌଣସି ଏକ ସନେଟ୍‌ରେ ମୁଁ ଏଇ  ଭାବଟି ପ୍ରକାଶ କରିଛି ଯେ, ବିଧାତା ଆମକୁ ଯାହା ଦିଅନ୍ତି କେବଳ ନୁହେଁ, ସେ ଯାହା ନଦିଅନ୍ତି, ସେଥିପାଇଁ ମଧ୍ୟ ଆମେ କୃତଜ୍ଞ ହେବାର କଥା । ଜୀବନର ଅନୁଭବ ଓ ଅଭିଜ୍ଞତା ସବୁର ପଶ୍ଚାତ୍-ଅବଲୋକନ କରିହିଁ କୌଣସି ଏକ ମୁହୂର୍ତ୍ତରେ ମୁଁ ସେ ସନେଟ୍‌ଟି ବହୁବର୍ଷତଳେ ଲେଖିଥିଲି । ବହୁବର୍ଷ ତଳେ ଲିଖିତ ହୋଇଥିଲେହେଁ, ଏ ମତ ମୋ ନିକଟରେ ଆଜି କେବଳ ଅପରିବର୍ତ୍ତିତ ନୁହେଁ, ଦୃଢ଼ତର ଓ ଗଭୀରତର ।

ମନୁଷ୍ୟ ତାର ଚିନ୍ତା ଓ କର୍ମରେ ସ୍ୱାଧୀନ କି ଅନ୍ୟାଧୀନ, ୟା' ନେଇ ବିଶ୍ୱର ସବୁ ଉନ୍ନତ ଅଞ୍ଚଳର ପଣ୍ଡିତମାନଙ୍କ ଭିତରେ ବହୁ ଆଲୋଚନା ହୋଇଯାଇଛି; କିନ୍ତୁ ଏହି ରହସ୍ୟାବୃତ ବିଷୟ ଉପରେ କୌଣସି ସୁସ୍ପଷ୍ଟ ନିର୍ଦ୍ଦେଶ କେହି ଦେଇପାରିନାହାନ୍ତି, ଏ ପର୍ଯ୍ୟନ୍ତ । ଅନ୍ୟପକ୍ଷରେ, ସମଗ୍ର ମାନବ ସଭ୍ୟତା ଆଲୋଚନା କରି ମୁଁ ଅନୁଭବ କରିଆସୁଛି ଯେ, ପ୍ରତ୍ୟେକ ବ୍ୟକ୍ତିଗତ ଜୀବନକୁ ନିୟନ୍ତ୍ରିତ କରିବା ସାଥେ ସାଥେ, ସୃଷ୍ଟିର ମୂଳରୁ ଏପର୍ଯ୍ୟନ୍ତ ସମଗ୍ର ମାନବିକ ସଭ୍ୟତାର ବିକାଶରେ ମଧ୍ୟ ଏକ ବିରାଟ ଅଜ୍ଞାତ ହସ୍ତହିଁ କାର୍ଯ୍ୟକରିଆସୁଛି । ଏକ ଏକ ଜାତି ବା ସମଗ୍ର ମନୁଷ୍ୟ ଗୋଷ୍ଠୀର ଜୀବନରେ ଯେପରି, ବ୍ୟକ୍ତି ବ୍ୟକ୍ତିର ଜୀବନରେ ମଧ୍ୟ ଏହି ସତ୍ୟ ପ୍ରଚୁର ପ୍ରମାଣିତ । ଦୂରକୁ ନଯାଇ, ଏଇ ଆମ ଦେଶରେ, ଯେଉଁ କିସମର ଲୋକ ସବୁ ଏଇ ଆମ ଆଖିଆଗରେ ଜଷ୍ଟିସ୍, ଚିଫ୍‌ଜଷ୍ଟିସ୍, ମନ୍ତ୍ରୀ, ଭାଇସ୍-ଚାନ୍‌ସେଲର୍, ଡି.ପି.ଆଇ., ପବ୍ଲିକ୍ ସର୍ଭିସ୍ କମିଶନ ମେମ୍ବର ବା ସେହିପ୍ରକାର ବଡ଼ ହାକିମ ଇତ୍ୟାଦି ହୋଇ ବଡ଼ ବଡ଼ ଗାଦି ମାଡ଼ିଯାଉଛନ୍ତି, ସେମାନଙ୍କର ସେ ସବୁ ପାଇବା ସହିତ ସେମାନଙ୍କର ସହଜାତ ବୁଦ୍ଧି, ଚରିତ୍ର ଓ ବ୍ୟକ୍ତିତ୍ୱର କୌଣସି ନିଖୁଣ କାର୍ଯ୍ୟକାରଣ ସମ୍ପର୍କ ଖୋଜିବାକୁ ଯିବା ପାଗଳର ବିଜ୍ଞାନଚର୍ଚ୍ଚା ଛଡ଼ା ଆଉ କିଛି ହେବ କି ? ଏ ଦେଶ ଓ ଅନ୍ୟ ଦେଶରେ ଅଧିକାଂଶ ଲୋକର 'ମୁଁ କଲି'-ବୋଲି-ଅହମିକା ତ ଥାଏ; କିନ୍ତୁ ତାହା କେବଳ ସଂସାର-ରଙ୍ଗମଞ୍ଚରେ ସେ ଯେଉଁ ଅଭିନୟ କରିବାକୁ ଆସିଛନ୍ତି ତା'ରି ଅଂଶମାତ୍ର । ପୃଥିବୀ ରାଜନୀତିର ପୃଷ୍ଠଭୂମିରେ ଜଣେ ଚର୍ଚ୍ଚିଲ୍ ବା ରୁଜଭେଲ୍ଟର ଅହମିକାର କିଛି ହେଲେ ଅବକାଶ ଥାଇପାରେ, କିନ୍ତୁ ବିଶ୍ୱ-ସୃଷ୍ଟିର ଅନନ୍ତ ପଟ୍ଟଭୂମିକାରେ, କୋଟି-କୋଟି-ଆଲୋକ-ବର୍ଷର-ଦୂରତ୍ୱ-ବ୍ୟାପୀ ମହାବ୍ୟୋମର ଅଗଣିତ ସୃଷ୍ଟିମାଳାର ଅବାଙ୍‌ମାନସଗମ୍ୟ ପରିପ୍ରେକ୍ଷିରେ ଆମର ଏଇ  ଅଙ୍ଗୁଷ୍ଠନଖ-କ୍ଷୁଦ୍ର ଉତ୍କଳ ଦେଶରେ କୌଣସି ଚିଫ୍‌ଜଷ୍ଟିସ୍, କୌଣସି ମୁଖ୍ୟମନ୍ତ୍ରୀ, କୌଣସି ଶିକ୍ଷାମନ୍ତ୍ରୀ ବା କୌଣସି ଡି.ପି.ଆଇ.ଙ୍କର ଅହମିକା ଏକାବେଳକେ ଅର୍ଥହୀନ ଓ ଉପହାସ୍ୟ ନୁହେଁ କି ? କିନ୍ତୁ ପାଠକେ, ଯେଉଁ କାଳର କଥା ଏଇ ଲେଖାରେ ଚାଲିଛି, ସେ କାଳରେ ମୋ ପରି ନିରୀହ, ନିରାପଦ, ସାଧାରଣ ନାଗରିକର ମନେହୋଇଛି ଯେପରି କି, ଉପରଲିଖିତ ଆମର ଏଇ କ୍ଷୁଦ୍ରାତିକ୍ଷୁଦ୍ର ଓଡ଼ିଶା ଦେଶର ମାଟିରେ

ମନ୍ତ୍ରୀ-ଡି.ପି.ଆଇ ଇତ୍ୟାଦି ପଦମାନଙ୍କରେ ସାମୟିକ ଅଧିଷ୍ଠିତ କେତେକ ଓଡ଼ିଆ ଭଦ୍ରଲୋକଙ୍କର ଅହମିକାରେ କେବଳ ଓଡ଼ିଶା ନୁହେଁ, ଏଇ ସମଗ୍ର ବିରାଟ ଜୀବଜନନୀ ମା' ବସୁନ୍ଧରା ଯେପରି ଟଳମଳ ହେଉଥିଲା । ଏପରି ଅହମିକା, ଏପରି ଦର୍ପାନ୍ଧତା, ଏ ଯୁଗରେ ଶିକ୍ଷିତ ମନୁଷ୍ୟର ମଧ୍ୟ ଘଟିପାରେ, ଏହା ମୋ କଳ୍ପନାର ଅତୀତ ଥିଲା । ଏସବୁ ଏ ପୁସ୍ତକର ଶେଷ ଆଡ଼ିକି ବିସ୍ତୃତଭାବରେ ବର୍ଣ୍ଣିବାର ଆଶା କରେ ।

କିନ୍ତୁ, ଅହମିକା-ପବନ-ପୂରିତ ଏଇ କେତେକ ରବର-ପେଣ୍ଡୁଗୁଡ଼ିକର ଅଭିବର୍ଦ୍ଧନ ଓ ଉତ୍‌ଥାନ ପରି, ତତୋଽଧିକ ଲଜ୍ଜାକର ସେମାନଙ୍କର ସଂକୋଚନ ଓ ଭୂପତନ ମଧ୍ୟ ମୁଁ ଆଖିରେ ଦେଖିଲି । ବିଶ୍ୱ-ରାଜନୀତି ରଙ୍ଗମଞ୍ଚରେ ଏଇ ଲେଖକ ତାର ସମାନ୍ତର କାଳରେ ହିଟ୍‌ଲର, ମସୋଲିନି ଓ ଷ୍ଟାଲିନ୍ ପ୍ରଭୃତି ନର-ରାକ୍ଷସମାନଙ୍କର ଉଦୟ ଓ ଅସ୍ତ ମଧ୍ୟ ଦେଖିଲା । ତେଣୁ ତା ଚକ୍ଷୁରେ କ୍ଷୁଦ୍ର ଓଡ଼ିଶାର କ୍ଷୁଦ୍ର ଜଣେ ମନ୍ତ୍ରୀ ବା ବଡ଼ାସାହେବର ଅହମିକାର କି ଅର୍ଥ ଥାଇପାରେ ? ବରଂ, ବିଶ୍ୱ ଓ ଉତ୍କଳୀୟ ଉଭୟ ରଙ୍ଗମଞ୍ଚରେହିଁ ଅହମିକାସ୍ଫୀତିଭୂତ ବ୍ୟକ୍ତିମାନଙ୍କର ଅକଳ୍ପିତ ପତନ ଓ ବିସ୍ଫୋରଣ ଦେଖି ଦେଖି, ମନୁଷ୍ୟର ନିଜ ଚେଷ୍ଟା ଛଡ଼ା ଏକ ଅଜ୍ଞାତ ହସ୍ତର ନିପୁଣ ପରିଚାଳନାରେହିଁ ବିଶ୍ୱାସ କ୍ରମେ ଗଭୀରରୁ ଗଭୀରତର ହୋଇଆସୁଛି । ମନେହୁଏ ଏହାହିଁ ଏକ ମହାନ୍ ଶିକ୍ଷା ଏଇ ଲେଖକର ଜୀବନରେ ।

ବିଲାତରୁ ଉଚ୍ଚ ଡିଗ୍ରୀ ପାଇ ଫେରିଲେ ମଧ୍ୟ ମତେ ଉତ୍କଳ ଦେଶରେ ଉପଯୁକ୍ତ ଚାକିରି ମିଳିଲାନି । ସେଥିପାଇଁ ଧରିନେଇଛି ଯେ ମୋର ଯଥାଯୋଗ୍ୟ ବା ଯଥେଷ୍ଟ ନିପୁଣତା ନଥିଲା । କର୍ତ୍ତୃପକ୍ଷଙ୍କ ବାଛ-ବିଚାର ନେଇ ଆଲୋଚନା ଏଠାରେ ଏକାବେଳକେ ଅର୍ଥହୀନ, ଅନ୍ତତଃ ମୋ ନିକଟରେ । କାରଣ, ପରେ, ମୋ ଜୀବନ ଯେପରି ବିଚିତ୍ରଭାବରେ ସମୃଦ୍ଧ ଓ ଅଭିଜ୍ଞ ହୋଇଉଠିଲା, ତାର ମୂଳପତ୍ତନ ଯେପରି ହେଲା ୧୯୪୦ରେ ମୋର ସରକାରୀ ଚାକିରି ନ ହେବାରେ, ଠିକ୍ ଯେପରି ତାର ଦଶବର୍ଷ ପୂର୍ବରୁ ୧୯୩୦ରେ ମୋର ସାଙ୍ଗମାନେ ଡେପୁଟି ମାଜିଷ୍ଟ୍ରେଟ୍ ହୋଇଗଲେ, କିନ୍ତୁ ମୁଁ ହୋଇପାରିଲିନାହିଁ ଓ ସେହି ବିଫଳତା ଯୋଗୁହିଁ, ତାର ସମଗ୍ର ଜୀବନର ଗତି, ନିର୍ଦ୍ଧାରିତ ପଥରୁ ଓଲଟା ପଥରେ ଯିବାରୁହିଁ ସେ ଆଜି ଯାହା କିଛି ସାମାନ୍ୟ ଭାବରେ ନିଜସ୍ୱବନ୍ତ, ତାହା ହୋଇପାରିଛି । ୧୯୩୦ରେ ଏ ଲେଖକ ସରକାରୀ ଚାକିରିରେ ପ୍ରତିଷ୍ଠିତ ହୋଇଯାଇଥିଲେ, ତାହାର ଆତ୍ମିକ ସମାଧି ଘଟିଯାଇଥାନ୍ତା ବୋଲି କୁହାଯାଇପାରେ ।

ସେହିପରି ୧୯୪୦ରେ ସାମୟିକ ବିପଦ, ମୋର ପର-ଜୀବନର ସ୍ୱାଚ୍ଛନ୍ଦ୍ୟର ମୂଳପତ୍ତନ ହେବାର ମଧ୍ୟ ଦେଖିଲି । ବିଧାତାର ଚତୁର ସୃଜନବିଧିରେ ମୋ ଜୀବନରେ ନ-ମିଳିବାହିଁ ହୋଇଛି ପରେ ବହୁ-ମିଳିବାର ମୂଳହେତୁ । ଲେଖକର ତେଣୁ କ୍ରମେ କ୍ରମେ ନିଜର କୃତିତ୍ୱରେ ବିଶ୍ୱାସ ହାନି ଓ ଅଜ୍ଞାତ ହସ୍ତର ପରିଚାଳନାରେ ଗଭୀରରୁ ଗଭୀରତର ବିଶ୍ୱାସ ବଢ଼ିଚାଲିଛି । ସେହି ବିଶ୍ୱବ୍ୟାପ୍ତ ହସ୍ତ ଯାହା-ନ-ଦେଉଛି, ତାହା ସେ-ଯାହା-ଦେଇଛିଠାରୁ କମ୍ ବ୍ୟଞ୍ଜନାପୂର୍ଣ୍ଣ ନୁହେଁ ।

କିନ୍ତୁ କୌଣସି କୌଣସି ତରୁଣ ପାଠକଙ୍କ ଚିତ୍ତରେ ଏହା ହୁଏତ ନିଶ୍ଚେଷ୍ଟତାର ଦୁର୍ବଳ ପ୍ରୟାସ ଆଣିପାରେ । ତା'ହେଲେ ସର୍ବନାଶ, ମୋ ଜାତି ପକ୍ଷରେ ଓ ତାଙ୍କ ନିଜ ଜୀବନ

ପକ୍ଷରେ । କିନ୍ତୁ ତରୁଣ ବନ୍ଧୁ ଟିକିଏ ଚିନ୍ତା କଲେ ଦେଖିବେ ଯେ, ବିଧାତାର ବିଶ୍ୱବ୍ୟାପ୍ତ ଅଜ୍ଞାତ ହସ୍ତ ଅହରହ କର୍ମବ୍ୟସ୍ତ । ତିଳେ ତାର ଅବସର ନାହିଁ – ଆମ ପରି କୀଟପତଙ୍ଗର ତ କଥାଇ ନାହିଁ । ସେହି ଅଦୃଶ୍ୟ ହସ୍ତ ଅନବଚ୍ଛିନ୍ନ ଭାବରେ, ପୃଥିବୀର କୋଟି କୋଟି ଜୀବନ ସହିତ କୋଟି କୋଟି ସୂର୍ଯ୍ୟ-ଚନ୍ଦ୍ର-ତାରକା ନିୟନ୍ତ୍ରଣରେ ମଧ୍ୟ ବ୍ୟସ୍ତ । ଏହି ନିଃଶେଷ-କର୍ମ-ପ୍ରବାହର ଏକମାତ୍ର ସଂକେତ ଏହି ଯେ, ଆମେ ମଧ୍ୟ ଆମ ଜୀବନକୁ ଅନବରତ କର୍ମ-ଯୋଜିତ କରି ରଖିବା । ପ୍ରଥମ ଓ ପ୍ରଧାନ କର୍ମ ହେଉଛି, ଆତ୍ମ-ବ୍ୟକ୍ତିତ୍ୱର ପୂର୍ଣ୍ଣୀକରଣ । ଆମ୍ଭେମାନେ ପ୍ରତ୍ୟେକେ ଅଜ୍ଞ, ଅପୂର୍ଣ୍ଣ ଓ ପ୍ରମାଦଶୀଳ । ଜୀବନର ସକଳ ବାହ୍ୟ କର୍ମତଳେ, ଆମକୁ ଆମର ପୂର୍ଣ୍ଣତା, ଆମର ଲକ୍ଷ୍ୟ ଓ ଆମର ଆଲୋକ ଖୋଜିବାକୁ ହେବ । ସେ କି କମ୍ କଠିଣ କାମ ? ବୁଦ୍ଧ, ଗାନ୍ଧିଙ୍କ ଜୀବନ କେବଳ ସେଇ ଚେଷ୍ଟା ଛଡ଼ା ଆଉ କିଛି ନୁହେଁ । ମୋର ତରୁଣ ପାଠକବର୍ଗ, ସେଇପରି ଏକ ଏକ ଲକ୍ଷ୍ୟ-ତାରକାକୁ ସର୍ବଦା ଚାହିଁବାକୁ ଚେଷ୍ଟା କରିବେ କି ? ତା'ହେଲେ ସେମାନଙ୍କର ଜୀବନ କେବଳ କର୍ମମୟ ହେବନି, ସତ୍‌କର୍ମମୟ ହେବ, ପୁଣି, ବିଧାତାର ଅଜ୍ଞାତ ହସ୍ତ ଓ ତାଙ୍କ ଜୀବନ, ପରସ୍ପରର ପରିପୂରକ ହେବେ । ସେହି ଅଜ୍ଞାତ ହସ୍ତର ନିର୍ଦ୍ଦେଶ, ଅନେକ ସମୟରେ ବୁଝିପାରିନଥିବାରୁ ଓ ମାନିନଥିବାରୁ ହିଁ ଏଇ ଲେଖକର ଜୀବନ ବହୁବେଳେ ନାନା ଅକାରଣ ଦୁଶ୍ଚିନ୍ତାରେ ବିଷାକ୍ତ ହୋଇଉଠିଛି । ଗୀତାରେ ଅଛି–''ଅହଙ୍କାରବିମୂଢ଼ାତ୍ମା କର୍ତ୍ତାହମିତିମନ୍ୟତେ'' । ଅହଙ୍କାରବିମୂଢ଼ ଲୋକ ହିଁ 'ମୁଁ କରିଛି' ବୋଲି ଭାବେ । ପୁଣି, ''କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ'' । –କାମ କରିଚାଲ, ଫଳ ପାଇଁ ଚିନ୍ତା କରନାହିଁ । କାରଣ, ସେ ଅଧିକାରଟି ଆଉ ଜଣେ ହାତମୁଠାରେ ରଖିଛି, ଏ ଜଗତ୍‌ରେ ଯୋଗ-ବିଯୋଗର ସମତା ରକ୍ଷାକରିବାପାଇଁ । ପ୍ରତ୍ୟେକ ଲୋକର ଇଚ୍ଛା ଓ ଚେଷ୍ଟା ଯଦି ସଫଳ ହେଉଥାନ୍ତା, ତେବେ ଏ ଧରାରେ ଜୀବନ ଆହୁରି ଭୀଷଣତର ହୋଇଉଠନ୍ତା ନାହିଁ କି ? ଆମ ପରି ବହୁ ପାଷଣ୍ଡର ବହୁକଳ୍ପନା, ବହୁଚେଷ୍ଟା ବିଫଳ ହୁଏ ବୋଲି, ପୃଥିବୀରେ ଜୀବନ ଏକପ୍ରକାର ସହ୍ୟ ଅବସ୍ଥାରେ ଅଛି । ଜୀବନର ଶେଷ ଆଡ଼ିକି ଏଇ ଭାବଟି ଚିତ୍ତରେ ଓତପ୍ରୋତ ହୋଇଆସୁଛି । କାରଣ, ଏହି ସାମାନ୍ୟ ଜୀବନର ଅକିଞ୍ଚିତ୍‌କର ଯାହା କିଛି, ସବୁ ସେହି ଅଦେଖା ହାତରହିଁ ଦାନ ଛଡ଼ା ଆଉ କିଛି ବୋଲି କହିହେଉ ନାହିଁ । ଯାହା ହୋଇଛି, ତାହା ତାର କଳ୍ପନାର ବାହାରେ ଥିଲା ଓ ଯାହା ସେ ଇଚ୍ଛା କରିଥିଲା ତାହା ହୋଇଥିଲେ, ସେ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇ ପୃଥିବୀରୁ ବିଦାୟ ନେଇଥାନ୍ତା, ଯେମିତି ଗଣ୍ଡା ଗଣ୍ଡା ଜଜ୍, ମନ୍ତ୍ରୀ ଓ ବଡ଼ ହାକିମ ନେବେ ।

---

### ଷଷ୍ଠ ଅଧ୍ୟାୟ

## ଗଡ଼ଜାତ-ଏକୀକରଣର ସର୍ବାଦ୍ୟ ଚେଷ୍ଟା

ଏବେ ହିନ୍ଦୋଳ ଗଡ଼ରେ ଏକ ପୂରା ହାଇସ୍କୁଲ୍ ଠିଆହୋଇଛି । ମୁଁ ଗଡ଼ଜାତମାନଙ୍କର ଏଡୁକେଶନାଲ୍ ଆଡ଼ଭାଇଜର ବା ଶିକ୍ଷା-ପରାମର୍ଶଦାତା ଥିଲାବେଳେ ଏଇ ହାଇସ୍କୁଲ୍ ଆରମ୍ଭ ହୋଇଥିଲା । ହିନ୍ଦୋଳ ଦରବାର ଏଡୁକେଶନାଲ ଆଡ଼ଭାଇଜରଙ୍କୁ ଡାକିଲେ, ନବାରବ୍ଧ ଅଷ୍ଟମ ଶ୍ରେଣୀକୁ 'ରେକଗ୍‌ନାଇଜ୍' ବା ସ୍ୱୀକାର କରିବାପାଇଁ । ହିନ୍ଦୋଳ ଦରବାରର ନିମନ୍ତ୍ରଣ ରକ୍ଷା କରି ସେଥର ପ୍ରଥମ କରି ହିନ୍ଦୋଳଗଡ଼ ଦେଖିଲି ଓ ହିନ୍ଦୋଳ ଷ୍ଟେଟ୍ ବୁଲିଲି । ସେ ଷ୍ଟେଟ୍‌ରେ ସେତେବେଳେ ଶିକ୍ଷାର ଅବସ୍ଥା ଅତି ଶୋଚନୀୟ ଥିଲା—ଓଡ଼ିଶା ପ୍ରଦେଶ କଥା ଛାଡ଼ିଦିଅ, ପାର୍ଶ୍ୱବର୍ତ୍ତୀ ଅନେକ ଷ୍ଟେଟ୍ ତୁଳନାରେ ମଧ୍ୟ । ହିନ୍ଦୋଳଗଡ଼ର, ଅସ୍ୱାସ୍ଥ୍ୟକର ସ୍ଥାନ ଭାବରେ ସେତେବେଳେ ବେଶ୍ ନାମଡାକ ମଧ୍ୟ ଥିଲା – ହୁଏତ ଏବେ ବି ଅଛି ।

କିନ୍ତୁ ହିନ୍ଦୋଳ ଗଡ଼ରେ ଏକ ହାଇସ୍କୁଲ୍ ସ୍ଥାପନ ଉଦ୍ୟମ ଉପରେ ମୁଁ ଯାହା ମନ୍ତବ୍ୟ ଦେଇଥିଲି ପରେ ତାର ପ୍ରତିକ୍ରିୟା ଗଭୀର ଓ ବ୍ୟାପକ ହୋଇପଡ଼ିଥିଲା । ତାହା ବୁଝିବାକୁ ହେଲେ, ଆଗରୁ ପୂର୍ବତନ ଗଡ଼ଜାତମାନଙ୍କର ପରାମର୍ଶଦାତା ବା 'ଆଡ଼ଭାଇଜର' ପୋଷ୍ଟଗୁଡ଼ିକର ପ୍ରକୃତି ଓ ଅବସ୍ଥା ବିଷୟରେ କିଛି ଜାଣିରଖିବାକୁ ହେବ ।

### ପଲ୍‌ଟିକାଲ୍ ଡିପାର୍ଟମେଣ୍ଟ ଓ ପରାମର୍ଶଦାତା –

ମଧ୍ୟପ୍ରଦେଶ ଓ ଓଡ଼ିଶାର 'ଗଡ଼ଜାତ' ଅଞ୍ଚଳର ଛୋଟ-ବଡ଼ ଚାଳିଶଟି ଷ୍ଟେଟ୍ ନେଇ ସେକାଳର ଇଷ୍ଟର୍ଣ୍ଣ-ଷ୍ଟେଟ୍‌ସ-ଏଜେନ୍ସି ଗଢ଼ାଯାଇଥିଲା । ଭାରତର ପଶ୍ଚିମାଞ୍ଚଳ ଗଡ଼ଜାତମାନଙ୍କୁ ନେଇ ଏଇପରି ଏକ ୱେଷ୍ଟର୍ଣ୍ଣ-ଷ୍ଟେଟ୍‌ସ-ଏଜେନ୍ସି ମଧ୍ୟ ଥିଲା । ଓଡ଼ିଆ ରାଜ୍ୟଗୁଡ଼ିକ ଉପରେ କର୍ତ୍ତା ଥିଲେ ସମ୍ବଲପୁରରେ ଥିବା ଓଡ଼ିଶା ଷ୍ଟେଟ୍‌ସର ପଲିଟିକାଲ୍ ଏଜେଣ୍ଟ; ମଧ୍ୟପ୍ରଦେଶ ବା ଛତିଶଗଡ଼ ରାଜ୍ୟମାନଙ୍କ ଉପରେ ଥିଲେ ରାୟପୁରରେ ଥିବା ଛତିଶଗଡ଼-ପଲିଟିକାଲ-ଏଜେଣ୍ଟ । ଏ ଦୁଇଜଣଙ୍କ ଉପରେ ବଡ଼କର୍ତ୍ତା ଥିଲେ ରେସିଡେଣ୍ଟ; ଯେ କି କଲିକତାରେ ରହୁଥିଲେ । ତାଙ୍କ ବାସଭବନ ଓ ଅଫିସ ଥିଲା କଲିକତାରୁ କିଛି ଦୂରରେ ଥିବା ୱାରେନ୍‌ହେଷ୍ଟିଙ୍ଗ୍‌ସଙ୍କ ପୂର୍ବତନ ଗ୍ରାମ୍ୟ ବାସଭବନ । ଏବେ ସେଇଠି ଭାରତର ଜାତୀୟ ପୁସ୍ତକାଳୟ ସ୍ଥାପିତ ହୋଇଛି । ସମ୍ବଲପୁର ପଲିଟିକାଲ ଏଜେଣ୍ଟଙ୍କ ଭବନରେହିଁ ବର୍ତ୍ତମାନ ଓଡ଼ିଶାର ପଶ୍ଚିମ ବିଭାଗର କମିଶନର ରହୁଛନ୍ତି ।

ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିରେ ଉଭୟ 'ଛତିଶଗଡ଼' ଓ 'ଓଡ଼ିଶା' ବିଭାଗରେ ଅଧିକାଂଶ ରାଜ୍ୟ ଏତେ ଛୋଟ ଥିଲେ ଯେ, ସେମାନେ ପ୍ରତ୍ୟେକେ ଭଲ ଭଲ ଅଫିସର ରଖି ନିଜ ନିଜକୁ ସୁଶାସିତ କରିବା ଅସମ୍ଭବ ଥିଲା । ଧରନ୍ତୁ ତିଗିରିଆ, ବଡ଼ାମ୍ବା, ରଣପୁର ଇତ୍ୟାଦି ଛୋଟ ଛୋଟ ରାଜ୍ୟ । ଏମାନଙ୍କର ଆୟ କେତେ ଯେ ସେଇଥିରୁ ଶିକ୍ଷା, ପୂର୍ତ୍ତ, ପୁଲିସ୍, ଫରେଷ୍ଟ, ରେଭିନ୍ୟୁ— ଏସବୁ ବିଭାଗକୁ ନିପୁଣଭାବରେ ସେମାନେ ଚଳେଇପାରନ୍ତେ ?

ସେଥିପାଇଁ ସେକାଳର ପଲିଟିକାଲ୍ ଡିପାର୍ଟମେଣ୍ଟ, ଏଇ ଗଡ଼ଜାତମାନଙ୍କପାଇଁ 'ଆଡ଼ଭାଇଜର'(ପରାମର୍ଶଦାତା) ପୋଷ୍ଟ ସବୁ ସୃଷ୍ଟି କରିଥିଲେ । ବ୍ୟବସ୍ଥା ଏଇପରି ଥିଲା ଯେ, ଭିନ୍ନ ଭିନ୍ନ ଦରବାରମାନେ କିଛି କିଛି ଟଙ୍କା ରେସିଡେଣ୍ଟଙ୍କ ହାତରେ ଦେବେ ଓ ସେଇ ଫଣ୍ଡରୁ ଗୋଟିଏ ଗୋଟିଏ ଡିପାର୍ଟମେଣ୍ଟପାଇଁ ଜଣେ ଜଣେ କମନ୍ ଆଡ଼ଭାଇଜର ବା ପରାମର୍ଶଦାତା, ସବୁ ଗଡ଼ଜାତମାନଙ୍କପାଇଁ ନିଯୁକ୍ତ ହେବେ । ତାଙ୍କରି ଉପଦେଶ ଅନୁସାରେ ଭିନ୍ନ ଭିନ୍ନ ରାଜ୍ୟରେ ସେହି ସେହି ଡିପାର୍ଟମେଣ୍ଟ ପରିଚାଳିତ ହେବ ।

ମୁଁ ଥିଲାବେଳେ ଏଇପରି କେବଳ ତିନିଜଣ ଆଡ଼ଭାଇଜର ଥିଲେ—ଶିକ୍ଷା, ଫରେଷ୍ଟ ଓ ପୁଲିସ୍ ବିଭାଗରେ । ପୂର୍ତ୍ତ ବିଭାଗରେ ଜଣେ ଆଗରୁ ଥିଲେ ବୋଲି ଶୁଣିଛି, କିନ୍ତୁ ମୁଁ ଥିଲାବେଳେ ସେ ନଥିଲେ । ଇଷ୍ଟର୍ଣ୍ଣ ଷ୍ଟେଟ୍ସ ଏଜେନ୍ସିର ଆୟୁଷ ପୂରିଅଇଲା ବେଳକୁ ଜଣେ କୃଷିବିଭାଗୀୟ ଆଡ଼ଭାଇଜର ମଧ୍ୟ ନିଯୁକ୍ତ ହୋଇଥିଲେ । ଫରେଷ୍ଟ ଆଡ଼ଭାଇଜର ମୁନୀ ସାହେବଏକାଧାରରେ ଚତୁର, ପଣ୍ଡିତ ଓ ଏକ ଆଫଳୋଦୟକର୍ମା ପୁରୁଷ ଥିଲେ । ଏହାଙ୍କ ସହିତ ମୋର ବନ୍ଧୁତା ବେଶ୍ ଗଢ଼ିଉଠିଥିଲା । ସେ ଆୟର୍ଲାଣ୍ଡର ଲୋକ । ସମଗ୍ର ଇଷ୍ଟର୍ଣ୍ଣ ଷ୍ଟେଟ୍ସ ଏଜେନ୍ସିର ଜଙ୍ଗଲର ପ୍ରତି ଗଛ ସେ ଜାଣିଥିଲେ କହିଲେ ଚଳେ । ସେ ଓଡ଼ିଶା ଗଡ଼ଜାତର ଜଙ୍ଗଲରେ ବୁଲି ବୁଲି ଯେଉଁ ତତ୍ତ୍ୱଗ୍ରନ୍ଥ ଲେଖିଥିଲେ ଏଇ ଇଣ୍ଡିଆରେ ଥାଇ ମଧ୍ୟ ଡବ୍‌ଲିନ୍ ଇଉନିଭରସିଟିରୁ ଡକ୍ଟର ଉପାଧି ପାଇଥିଲେ । ଏଥିରେ ଡକ୍ଟର ମୁନୀ ଭାରି ସ୍ଫୂର୍ତ୍ତି ଓ ଗର୍ବ ଅନୁଭବ କରୁଥିବାର ମୁଁ ଦେଖିଛି । ଓଡ଼ିଶାରୁ ଯାଇ ଡକ୍ଟର ମୁନୀ ମଧ୍ୟପ୍ରାଚ୍ୟର ଫରେଷ୍ଟ ଆଡ଼ଭାଇଜର ଭାବରେ ଯୋଗଦେଇଥିଲେ ।

ରାଜାମାନେ ପଲିଟିକାଲ ଡିପାର୍ଟମେଣ୍ଟ ନିର୍ଦ୍ଦେଶରେ ଏଇ ଆଡ଼ଭାଇଜରମାନଙ୍କୁ ଗ୍ରହଣ କରିବାକୁ ଏକପ୍ରକାର ବାଧ୍ୟ ହୋଇଥିଲେ କହିଲେ ଚଳେ । କୌଣସି ହେଲେ ଦରବାର ସେମାନଙ୍କୁ ନିଜ ଲୋକ ପରି ଦେଖୁନଥିଲେ । ସେକାଳର ସେଇ ଛୋଟ ଛୋଟ ସାମନ୍ତ ରାଜାମାନଙ୍କର ପରମ ବାସନା ଏଇ ଥିଲା ଯେ, ସେମାନେ ତାଙ୍କ ନିଜ ନିଜ ଭୂମି ଉପରେ ଆପଣାର ଅତ୍ୟାଚାର-ଅନାଚାର-ଅପବ୍ୟୟର ନିରଙ୍କୁଶ ପ୍ରଭୁ ହୋଇ ଯେପରି ରହିବେ । ଯାଶପୁର(ମଧ୍ୟପ୍ରଦେଶ) ଷ୍ଟେଟ୍‌ର ଜଣେ ପୂର୍ବତନ ଦେବାନ୍ ମତେ ଥରେ କହିଥିଲେ ଯେ ସେ ଯେତେବେଳେ ଯାଶପୁର(ଏହା ସମ୍ବଲପୁରର ଉତ୍ତର-ପଶ୍ଚିମକୁ ଲାଗିଛି ଓ ଏହାର ସମଗ୍ର ପୂର୍ବାର୍ଦ୍ଧ ଖାଣ୍ଟି ଓଡ଼ିଆ ଦେଶ) ଯାଆନ୍ତି, ସେତେବେଳେ ସେଠାରେ ବସିବାକୁ ଖଣ୍ଡେ ଚୌକି ବି ନଥିଲା । ରାଜା, ତଳେ ଗଦି ଉପରେ ତକିଆରେ ଠେଶଦେଇ ବସୁଥିଲେ । ଏଇ ଦେବାନ୍ ଯେତେବେଳେ ସେଇ ଅଗମ୍ୟ ରାଜ୍ୟକୁ ରାସ୍ତା ଓ ଟେଲିଗ୍ରାଫ୍ ଆଦି ନେବାର ପ୍ରସ୍ତାବ କଲେ, ସେତେବେଳେ ରାଜା ତା'ର ଘୋର ବିରୋଧ କଲେ—କାରଣ, ପଲିଟିକାଲ୍ ଏଜେଣ୍ଟ ସହଜରେ ଆସି ପାରିବ ଓ ଷ୍ଟେଟ୍‌ର ସବୁକଥା ଜାଣିପାରିବ ! ମୋ ସମୟ ପର୍ଯ୍ୟନ୍ତ ମଧ୍ୟ ଏଇ ମନୋବୃତ୍ତିର ବିଶେଷ ପରିବର୍ତ୍ତନ ହୋଇଥିଲା ବୋଲି କହିହେବନି । ତେଣୁ ରାଜାମାନେ ବାହାରେ ଆଡ଼ଭାଇଜରଙ୍କୁ ଅଭିବାଦନ ଜଣାଉଥିଲେହେଁ, ଭିତରେ ତାଙ୍କୁ ଏକ ଅବାଞ୍ଛିତ ଅନଧିକାରୀ ବୋଲି ବିଚାର କରୁଥିଲେ । ବେଳେ ବେଳେ ସେମାନଙ୍କୁ ପଲିଟିକାଲ୍ ଡିପାର୍ଟମେଣ୍ଟର ସ୍ପାଇ ବା ଗୁପ୍ତଚର ବୋଲି ମଧ୍ୟ ସନ୍ଦେହ କରାଯାଉଥିଲା ।

ଏହି ଅବାଞ୍ଛିତ ଅନଧିକାରୀମାନଙ୍କୁ ରାଜ୍ୟରେ ପୂରାଇନଦେବା ପାଇଁ ଓ ନିଜର ତଥାକଥିତ 'ସଭରେନ୍‌ଟି' ବା ସାର୍ବଭୌମତ୍ୱ ଜାହିର କରିବାପାଇଁ ମୟୂରଭଞ୍ଜ, ପାଟନା, କଳାହାଣ୍ଡି, ବସ୍ତର ପ୍ରଭୃତି କେତୋଟି ବଡ଼ ଷ୍ଟେଟ୍ ଆଡ଼ଭାଇଜରମାନଙ୍କୁ ଆଦୌ ଗ୍ରହଣ ମଧ୍ୟ କରିନଥିଲେ । ଡକ୍ଟର ମୁନୀଙ୍କଠାରୁ ସେକାଳର ପାଟନା ଷ୍ଟେଟ୍‌ରେ ପ୍ରାଇମେରୀ ଶିକ୍ଷାର ଅବସ୍ଥା ବେଶ୍ ପ୍ରଶଂସନୀୟ ଥିବାର ଶୁଣି ଥରେ ମୁଁ ମୋର ଗସ୍ତରେ ପାଟନା ଷ୍ଟେଟ୍ ଦେଇ ସମ୍ବଲପୁର ଫେରିବାର ଚେଷ୍ଟା କରିଥିଲି–ଯେପରିକି ପାଟନା ଷ୍ଟେଟ୍‌ର କେତୋଟି ପ୍ରାଇମେରୀ ସ୍କୁଲ୍ ଦେଖିପାରିବି । କିନ୍ତୁ ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସେକାଳର ପାଟନା ଦରବାର ମତେ ଷ୍ଟେଟ୍‌ରେ ପଶିବାକୁ ମଧ୍ୟ ଅନୁମତି ଦେଇନଥିଲେ ।

## ଦେଶୀ ଓ ବିଦେଶୀ ଶାସକ –

ଏଠାରେ କିନ୍ତୁ କହିରଖେ ଯେ ସେତେବେଳେ କେବଳ ପାଟନା ଷ୍ଟେଟ୍ ନୁହେଁ, ଓଡ଼ିଶା ଗଡ଼ଜାତ(କେବଳ ଓଡ଼ିଶା ଗଡ଼ଜାତ, ଛତିଶଗଡ଼ ନୁହେଁ) ର ଅନେକ ଷ୍ଟେଟ୍‌ରେ ପ୍ରାଇମେରୀ ଶିକ୍ଷା ପ୍ରକୃତରେ ଖୁବ୍ ଭଲ ଅବସ୍ଥାରେ ଥିଲା । ସ୍ୱାଧୀନ ଭାରତର ଲୋକ-ମଙ୍ଗଳ-ରାଷ୍ଟ୍ର ଏବର ଓଡ଼ିଶା ରାଜ୍ୟରେ ଆଜି ଯାହା ପ୍ରାଇମେରୀ ଶିକ୍ଷାର ଅବସ୍ଥା, ତା'ଠାରୁ ମଧ୍ୟ ବହୁଗୁଣ ଭଲ ଅବସ୍ଥା ଥିଲା ପ୍ରାଇମେରୀ ସ୍କୁଲ୍‌ମାନଙ୍କର, ସେକାଳର କେତୋଟି ଗଡ଼ଜାତରେ । କିନ୍ତୁ ପାଟଣା ଷ୍ଟେଟ୍ ପରି ସେଇ ଭାଗ୍ୟବାନ୍ ଗଡ଼ଜାତଗୁଡ଼ିକ ଥିଲେ କେବଳ ସେଇ କେତୋଟି ରାଜ୍ୟ, ଯେଉଁଠି ରାଜା ମରିଯାଇଥିବାରୁ ଓ ଯୁବରାଜ ନାବାଳକ ଥିବାରୁ ସେସବୁ ବହୁକାଳ ପଲଟିକାଲ୍ ଡିପାର୍ଟମେଣ୍ଟ(ଅର୍ଥାତ୍ ଇଂରେଜଙ୍କର) ପ୍ରତ୍ୟକ୍ଷ ଶାସନରେ ଥିଲା । ଏଇଯୋଗୁଁହିଁ ପାଟଣା, ଢେଙ୍କାନାଳ, ନୟାଗଡ଼, ଆଠଗଡ଼ ପ୍ରଭୃତି ରାଜ୍ୟରେ ପ୍ରାଇମେରୀ ଶିକ୍ଷା ଖୁବ୍ ଭଲ ଅବସ୍ଥାରେ ଥିଲା । ଆଉ ଦ୍ୱିତୀୟ କାରଣ ହେଉଛି, ମି. ଡିପ୍‌ପୀ । ଓଡ଼ିଶା ଗଡ଼ଜାତରେ ଡିପ୍‌ପୀଙ୍କ ପରି ସେ କାଳରେ ଛତିଶଗଡ଼ ପଟେ ଜଣେ ସାହେବ ଇନ୍‌ସପେକ୍ଟର ମଧ୍ୟ ଥିଲେ । କିନ୍ତୁ ସେ କେବଳ ଶିକାର କରୁଥିଲେ । ପ୍ରକୃତ ଶିକ୍ଷାବିତ୍ ଡିପ୍‌ପୀ କେବେ ଶିକାରକୁ ନଯାଇ ଓଡ଼ିଶା ପଟେ ମଣିଷ କିପରି ତିଆରି ହେବେ ତାହା ଦେଖାଇଯାଇଥିଲେ । ଡିପ୍‌ପୀ ଇଂଲାଣ୍ଡରେ ସ୍କୁଲ୍ ଶିକ୍ଷକ ମାତ୍ର ଥିଲେ । କିନ୍ତୁ ସେଇ ସ୍କୁଲ୍ ମାଷ୍ଟ୍ର ଏ ଦେଶରେ ଶିକ୍ଷାବିତ୍‌ର ଯେଉଁ ଆଦର୍ଶ ଛାଡ଼ିଯାଇଛନ୍ତି, ତାହା ସ୍ୱାଧୀନତୋତ୍ତର ଓଡ଼ିଶାରେ ଏପର୍ଯ୍ୟନ୍ତ କୌଣସି ଡି.ପି.ଆଇ. ବା ଭାଇସ୍-ଚାନ୍‌ସେଲରଙ୍କଠାରେ ପ୍ରତିବିମ୍ବିତ ହୋଇଛି ବୋଲି ଆମେ କହିପାରିବାନି । ଅଥଚ, ଶିକ୍ଷା ବିଭାଗରେ ଆମେ ଯାହା ଆଜି ଖର୍ଚ୍ଚ କରୁଛୁ ତାହା ଶୁଣିଲେ, ଡିପ୍‌ପୀଙ୍କ ସମାଧିସ୍ଥ ଶବ ବୋଧହୁଏ ଚିତ୍କାରକରିଉଠିବ ।

କୋର୍ଟ୍ ଅବ୍ ୱାର୍ଡ଼୍ ଷ୍ଟେଟ୍‌ସଗୁଡ଼ିକ ବ୍ୟତୀତ ଯେଉଁ ଯେଉଁ ରାଜ୍ୟରେ ଆମ ଦେଶୀ ରାଜାହିଁ କ୍ରମାଗତ ଶାସନ କରିଆସୁଥିଲେ, ସେଠି କିନ୍ତୁ ରାଜତ୍ୱ କରୁଥିଲା ଗୌରବମୟ ମଧ୍ୟଯୁଗୀୟ ଅନ୍ଧକାର । ହିନ୍ଦୋଳ ଥିଲା ସେଇପରି ଏକ ଷ୍ଟେଟ୍ । ପୁଣି ଇଂରେଜ ପଲଟିକାଲ୍ ଏଜେଣ୍ଟଙ୍କଦ୍ୱାରା ଉତ୍ତମ ଶାସିତ ହୋଇ କୌଣସି କୌଣସି ରାଜ୍ୟ ଯେତେବେଳେ ରାଜାଙ୍କ ହାତକୁ ଫେରିଆସୁଥିଲା, ସେଠି ବି ସାଙ୍ଗେ ସାଙ୍ଗେ ଫେରିଆସୁଥିଲା ଆମ ଇତିହାସର ସୁପରିଚିତ

ମରହଟ୍ଟୀ ଶାସନ । ଏପରିକି, ଇଂରେଜ ପଲିଟିକାଲ୍ ଏଜେଣ୍ଟ ପରିବର୍ତ୍ତେ ଯେତେବେଳେ ପ୍ରଥମ କରି ଇଣ୍ଡିଆନ୍ ପଲିଟିକାଲ୍ ଏଜେଣ୍ଟ ଆସି ପହଞ୍ଚିଲେ, ଆମେ ବାଧ୍ୟ ହୋଇ ଅନୁଭବ କଲୁ ଯେ ସମଗ୍ର ଗଡ଼ଜାତରେ ମଧ୍ୟଯୁଗ ପୁଣି ଫେରିଆସିଲା ପରା !

କଥ୍ୟମାନ କାଳକୁ ବ୍ରିଟିଶ୍ ଭାରତରେ କଂଗ୍ରେସ ଥରେ ଶାସନକାଳ ହାତକୁ ନେଇ, ପୁଣି ଜେଲ୍-ବରଣ ଓ ଗଣ-ଆନ୍ଦୋଳନକୁ ଫେରିଯାଇଥାଏ ଏବଂ ସେହି ଗଣ-ଆନ୍ଦୋଳନର ଧକ୍କା ପ୍ରଦେଶମାନଙ୍କର ସୀମା ଡେଇଁ ଗଡ଼ଜାତମାନଙ୍କର ବହୁଯୁଗ ସୁପ୍ତ ମୌନ ବନଶୈଳାଦିକୁ କମ୍ପିତ କରିବାକୁ ଆରମ୍ଭ କରିସାରିଥାଏ । ଦୂରଦର୍ଶୀ, ଚତୁର ଇଂରେଜ ଜାଣିନେଲାଣି, ଘଟଣା ପ୍ରବାହର ଗତି କେଉଁଆଡ଼କୁ । ବ୍ରିଟିଶ୍ ଭାରତ ତ ହାତରୁ ଗଲାଣି, 'ଇଣ୍ଡିୟାନ୍ ଇଣ୍ଡିୟା'(ଗଡ଼ଜାତ)ରେ ରାଜା ଓ ପ୍ରଜା ଉଭୟଙ୍କୁ କୌଣସିମତେ ଯଦି ଥାବଡ଼ାଥାବଡ଼ି କରି ରଖାଯାଇପାରେ, ତେବେ ସେଇ ବଳରେ ସାମ୍ରାଜ୍ୟର ଆୟୁଷ କିଛିକାଳ ତ ବଢ଼ି ଯାଇପାରେ ! ମୁଁ ଯେଉଁ କାଳର କଥା କହୁଛି, ସେ ସମୟରେ ପଲିଟିକାଲ୍ ଡିପାର୍ଟମେଣ୍ଟ, ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିରେ ଠିକ୍ ଏଇ ଲକ୍ଷ୍ୟରେ ହିଁ କାର୍ଯ୍ୟ କରୁଥିଲା । ଛୋଟ ଛୋଟ ରାଜ୍ୟଗୁଡ଼ିକର ସାର୍ବଭୌମ-ଅହମିକାର ଦାଢ଼ ନଷ୍ଟ କରି, ପରାମର୍ଶଦାତା ସ୍ତରରୁ ଆଉ ଟିକିଏ ଆଗକୁ ଯାଇ ଛୋଟ ଛୋଟ ରାଜ୍ୟସବୁକୁ ଏକାଠି କରି ସେମାନଙ୍କୁ କମନ୍ ଆଡ଼ମିନିଷ୍ଟ୍ରେସନ୍ ବା ସଂଯୁକ୍ତ ଶାସନ ଦେବା ଲକ୍ଷ୍ୟରେ ପଲିଟିକାଲ୍ ଡିପାର୍ଟମେଣ୍ଟ ସେହି ସେହି ଦରବାରମାନଙ୍କର ଗୋଟିଏ ଗୋଟିଏ ଗ୍ରୁପ୍ ବା ଗୋଷ୍ଠୀଗଠନର ଚେଷ୍ଟାରେ ଥାଏ । କିନ୍ତୁ ଛୋଟ ବଡ଼ ସବୁ ଦରବାର ଏ ଚେଷ୍ଟାରେ ବିରୋଧ କରୁଥିଲେ । କେହି କାହା ସାଥିରେ ମିଶିଯିବାକୁ ରାଜି ନଥିଲେ । ପ୍ରତ୍ୟେକେ ନିଜର ସଭ୍ରେନ୍‌ଟି(ସାର୍ବଭୌମତ୍ୱ) ପାଇଁ ବ୍ୟାକୁଳ । କିଏ ସ୍ୱପ୍ନରେ ମଧ୍ୟ ସେତେବେଳେ ଭାବିଥିଲା ଯେ, ସର୍ଦ୍ଦାର ପଟେଲଙ୍କ କଲମ ଗାରରେ ବହୁ ଶତାବ୍ଦୀର ଏହି ମଧ୍ୟଯୁଗୀୟ ତାମାସା ରାତାରାତି ଉଭେଇଯିବ ?

## ଓଡ଼ିଶା ଗଡ଼ଜାତମାନଙ୍କର ଆତ୍ମିକ ଏକତା –

କିନ୍ତୁ, ଶିକ୍ଷା ପରାମର୍ଶଦାତା ଭାବରେ ଅନ୍ତତଃ ଓଡ଼ିଶା ଗଡ଼ଜାତ ସବୁ ଥରେ ବୁଲିଗଲା ପରେ ମୋ ମନରେ ବରାବର ଏଇ ପ୍ରଶ୍ନ ସ୍ୱତଃ ଉଠିବାକୁ ଲାଗିଲା ଯେ, ଏଇ ଏକଭାଷାଭାଷୀ ଓ ଏକତ୍ରାବସ୍ଥିତ ରାଜ୍ୟସବୁର ଏକତ୍ୱବୋଧ ନାହିଁ କାହିଁକି ? ଏମାନେ ନିଜ ନିଜକୁ ଏକ ବିରାଟ ଏକକର ଅଂଶ ବୋଲି ମନେନକରି, ନିଜ ନିଜର କ୍ଷୁଦ୍ରତାରେହିଁ ଏପରି ଆତ୍ମ-ତୁଷ୍ଟ ଓ ଆତ୍ମ-ପ୍ରସନ୍ନ ରହୁଛନ୍ତି କାହିଁକି ? ବାମଣ୍ଡା ବା ମୟୂରଭଞ୍ଜର କଥା ଧରାଯାଉ । ବାମଣ୍ଡା ଓ ମୟୂରଭଞ୍ଜରୁ ଜାତିପ୍ରାଣତାର ଶୀତଳ-ନିର୍ମଳ ଧାରା ବୋହିଯାଇ ଉତ୍କଳର ସାମୂହିକ ଜାତୀୟ ଜୀବନକୁ ଯେପରି ଉର୍ବର କରିଅଛି ତାହା କେଉଁ ଓଡ଼ିଆ ନଜାଣେ । ମହାରାଜା ବାସୁଦେବ ସୁଢ଼ଳଦେବ ଓ ଶ୍ରୀରାମଚନ୍ଦ୍ରଭଞ୍ଜ, ପୁଣି ଗଡ଼ଜାତ-ସନ୍ତାନ ନୀଳମଣି ବିଦ୍ୟାରତ୍ନ, ଓଡ଼ିଶା ମା'ର କିରୀଟର ପ୍ରକୃତ ରତ୍ନ । ଉତ୍କଳ ସମ୍ମିଳନୀର ପ୍ରଥମ ସଭାପତି ଶ୍ରୀରାମଚନ୍ଦ୍ର । ସୁଢ଼ଳ ଓ ଶ୍ରୀରାମଚନ୍ଦ୍ରଙ୍କ ପରି ରାଷ୍ଟ୍ରଚାଳକ ଏ ଦେଶ ଦେଖିବ ନା ? କିନ୍ତୁ କଥ୍ୟମାନ କାଳରେ ଶ୍ରୀ ରାଜେନ୍ଦ୍ର ନାରାୟଣ

ସିଂହଦେଓଙ୍କ କ୍ଷୁଦ୍ର ପାଟଣା ଷ୍ଟେଟ୍ ଯେପରି ପରିଚାଳିତ ହେଉଥିଲା, ମନେହେଉଥିଲା, ତାହା ଯେପରି ଓଡ଼ିଶାରୁ ବାହାରେ–ସମ୍ପୂର୍ଣ୍ଣଭାବରେ ଏକ ସ୍ୱତନ୍ତ୍ର ରାଷ୍ଟ୍ର ! ଛୋଟ ବଡ଼ ଅନ୍ୟ ଅନେକ ଷ୍ଟେଟ୍‌ର ମଧ୍ୟ ସେଇପରି ଥିଲା ସ୍ୱାତନ୍ତ୍ର୍ୟ-ମନୋଭାବ । ମୁଁ ଭାବିଲି, ଏକାଠି ହୋଇ କାମ କରି ପାରିଲେ ଏମାନେ ଓଡ଼ିଆ ଜାତିକୁ କି ବିରାଟ ଶକ୍ତି ଯୋଗାଇ ନ ପାରନ୍ତେ ! ଠିକ୍ ଏତିକିବେଳେ ହିନ୍ଦୋଳରୁ ଡାକରା ଆସିଲା । ଏଇଠି ମୋର ଆଦର୍ଶକୁ ବଖାଣିବାର ଲୋଭ ଆଉ ମୁଁ ସମ୍ବରଣ କରିପାରିଲିନାହିଁ । ଗଡ଼ଜାତମାନଙ୍କର ଛୋଟ ଛୋଟ ଗୋଷ୍ଠୀମାନଙ୍କର ପୃଥକ୍ ପୃଥକ୍ କମନ୍-ଆଡ଼ମିନିଷ୍ଟ୍ରେସନର ଆହୁରି ଆଗକୁ ଯାଇ, ଅନ୍ତତଃ ଶିକ୍ଷା ବିଭାଗରେ ସମଗ୍ର ଓଡ଼ିଶା ଗଡ଼ଜାତ ଅଞ୍ଚଳ କିପରି ଏକତ୍ର ହୋଇ କାମ କରିପାରିବେ, ତାହାର ଏକ ଯୋଜନା ଦେଲି । ମୋର ହିନ୍ଦୋଳ-ହାଇସ୍କୁଲ୍-ସମ୍ବନ୍ଧୀ ରିପୋର୍ଟର ସଂପୃକ୍ତ ଅଂଶ ତଳେ ଦେଉଛି–(ଇଂରାଜୀରୁ ଅନୁବାଦ)

''ପ୍ରତିଟି କ୍ଷୁଦ୍ର ରାଜ୍ୟରେ ସମଜାତୀୟ ଅନୁଷ୍ଠାନ ସବୁର ପୌନଃ-ପୁନିକ ସୃଷ୍ଟି କରିବାରେ କି ଆର୍ଥିକ ଅପବ୍ୟୟ ଘଟୁଛି, ତାହା ଆମ ଭିତରୁ କେତେଜଣ ଭାବୁଛନ୍ତି ? ଆମେ ପୁସ୍ତକ-ପ୍ରଧାନ ହାଇସ୍କୁଲ୍‌ମାନଙ୍କ ପ୍ରତି ବିତୃଷ୍ଣ ହୋଇ ଉଠିଲୁଣି ଓ ବ୍ୟବସାୟିକ ଓ ଶୈଳ୍ପିକ ଅନୁଷ୍ଠାନ ସବୁ ପ୍ରତି ଦୃଷ୍ଟିନଦେଇ କେବଳ ଏଇଗୁଡ଼ାକର ବିସ୍ତାର ହେଉଛି ବୋଲି ବ୍ରିଟିଶ୍ ସରକାରକୁ ଆମେ ଗାଳିଦେଇଥାଉ । କିନ୍ତୁ ବେଳ ଆସିଲେ, 'ଉଚ୍ଚଶିକ୍ଷା' ନାମରେ ଆମେ ସେଇ ପୁସ୍ତକ-ପ୍ରଧାନ ହାଇସ୍କୁଲହିଁ ଖୋଲିବସୁ । ପ୍ରତ୍ୟେକଟି ରାଜ୍ୟ କେବଳ ସେଇ ଏକଧରଣର କିତାପୀ ହାଇସ୍କୁଲ୍‌ର ସଂଖ୍ୟା ନବଢ଼ାଇ ଯଦି ପରସ୍ପରର ସହଯୋଗରେ ସମଗ୍ର ଗଡ଼ଜାତ ଅଞ୍ଚଳର ପ୍ରୟୋଜନ ଅନୁଯାୟୀ ଗୁଡ଼ିଏ ଟେକ୍‌ନିକାଲ୍ ଅନୁଷ୍ଠାନ ବସେଇଯାଆନ୍ତେ, ତେବେ କେତେ ଅଧିକ ମଙ୍ଗଳଦାୟକ ଯୋଜନା ତାହା ନହୁଅନ୍ତା ! ସବୁଠାରେ ସେହି ଏକପ୍ରକାର କିତାପୀ ହାଇସ୍କୁଲ୍ ନବସାଇ କାହିଁକି ସବୁ ଦରବାରମାନଙ୍କର ଆଂଶିକ ସହାୟତାରେ, ହିନ୍ଦୋଳରେ ଏକ କେନ୍ଦ୍ରୀୟ କୃଷି ବିଦ୍ୟାଳୟ, ବଉଦରେ ଏକ କେନ୍ଦ୍ରୀୟ ପଲିଟେକ୍‌ନିକାଲ୍ ସ୍କୁଲ୍, ତାଳଚେରରେ ଏକ କେନ୍ଦ୍ରୀୟ ମେଡ଼ିକାଲ ସ୍କୁଲ୍, ଗାଙ୍ଗପୁରରେ ଏକ କେନ୍ଦ୍ରୀୟ ପଶୁଚିକିତ୍ସା ବିଦ୍ୟାଳୟ ଏବଂ ଢେଙ୍କାନାଳରେ ଏକ କେନ୍ଦ୍ରୀୟ ଶିକ୍ଷକ ଟ୍ରେନିଂ ସ୍କୁଲ୍ ବସାଯାଇ ନପାରନ୍ତା ? ମୋର ବିଶ୍ୱାସ, ଗଡ଼ଜାତ ରାଜ୍ୟଗୁଡ଼ିକ ବିରାଟ ପରିବର୍ତ୍ତନରାଜିର ଦ୍ୱାରଦେଶ ନିକଟରେ ଆଜି ଦଣ୍ଡାୟମାନ । ସମଗ୍ର ବିଶ୍ୱ ଏକ କେନ୍ଦ୍ରୀୟ-ଶାସନ ଆଡ଼କୁ ଯାଉଛି । କ୍ଷୁଦ୍ର, ସଂକୀର୍ଣ୍ଣ, ସ୍ଥାନୀୟ ଜାତୀୟତାର ସର୍ବତ୍ର ସ୍ୱାଭାବିକ ମୃତ୍ୟୁ ଘଟୁଛି । ଓଡ଼ିଶା ଗଡ଼ଜାତର ଓଡ଼ିଆମାନେ ଛୋଟ ରାଜ୍ୟମାନଙ୍କର ଗ୍ରୁପ୍-ଗଠନ ପ୍ରସ୍ତାବପାଇଁ ବ୍ରିଟିଶ୍ ସରକାର ପ୍ରତି କୃତଜ୍ଞହେବା ଉଚିତ । କାହିଁ କାହିଁ, ଏହା ଆମର କ୍ଷୁଦ୍ର ଆଞ୍ଚଳିକ ଜାତୀୟତାକୁ ଆଘାତ କରିପାରେ, କିନ୍ତୁ ଅପରପକ୍ଷରେ ଏହା ଆମେ ପ୍ରତ୍ୟେକେ ଯେ ଏକ ବିରାଟତର ସତ୍ତାର ଅଂଶ, ଆମ୍ଭମାନଙ୍କ ଅନ୍ତରରେ ସହି ଗୌରବମୟ ଭାବ ସୃଷ୍ଟି କରାଇବ ।''

ପାଠକେ, ଏପରି ବ୍ୟାପକ କଳ୍ପନା ଯେତେବେଳେ ବ୍ୟକ୍ତ କରାଯାଇଥିଲା, ସେତେବେଳେ ଓଡ଼ିଶା ସହିତ ଓଡ଼ିଆ ଗଡ଼ଜାତମାନଙ୍କର ମିଶ୍ରଣ କାହା ଚିତ୍ତରେ ସ୍ୱପ୍ନ ହୋଇ ମଧ୍ୟ ଦେଖାଦେଇନଥିଲା । ପୁଣି, ଯଦିଓ ଆଜି ଗଡ଼ଜାତ ଓ ଓଡ଼ିଶା ମିଶିଛି,ସେ ମିଳନ କେବଳ

ଦୈହିକ ନା ଆତ୍ମିକ, ଏ ପ୍ରଶ୍ନ ତ ପଚରାଯାଇପାରେ ? ଆଉ ଆଜି ଆମର ଶାସକମାନେ, ସୁନ୍ଦରଗଡ଼ରେ କଲେଜ, ମୟୂରଭଞ୍ଜରେ କଲେଜ, କଳାହାଣ୍ଡିରେ କଲେଜ ବସେଇ ଗଡ଼ଜାତମାନଙ୍କର ବା ଓଡ଼ିଆ ଜାତିର ଐକ୍ୟ କି ଅନୈକ୍ୟ ସାଧୁଅଛନ୍ତି, ଟିକିଏ ଚିନ୍ତା କରନ୍ତୁ । ଆଜି ରାଜନୈତିକ ଫାଇଦା ଉଠାଇବାପାଇଁ ଏସବୁ କରି ଶାସକମାନେ ଆତ୍ମପ୍ରସାଦ ଅନୁଭବ କରୁଥିଲେହେଁ, ଏସବୁ ଜାତୀୟ ଐକ୍ୟ ଦିଗରୁ ଘୋର ଆତ୍ମଘାତୀ ବ୍ୟବସ୍ଥା ବୋଲି ମୁଁ ଦୃଢ଼ସ୍ୱରରେ କହିବି । କୋଡ଼ିଏବର୍ଷ ତଳେ ଲେଖକ ଯେପରି କହିଥିଲା, ସେହି ମତାନୁଯାୟୀ ପ୍ରତ୍ୟେକଟି ଉଚ୍ଚ ଶିକ୍ଷାନୁଷ୍ଠାନକୁ ଗୋଟିଏ ପ୍ରକାରର ଅନନ୍ୟ ବୈଶିଷ୍ଟ୍ୟ ଦେଇ, ସେଠାରେ ସମଗ୍ର ରାଜ୍ୟର ସବୁ ଅଞ୍ଚଳର ପିଲାଙ୍କୁ ଏକତ୍ର କରାଇବ ନାହିଁ ଜାତୀୟ-ଏକତାନୁଭବ ବା ନାଶନାଲ୍ ଇଣ୍ଟିଗ୍ରେସନ୍‌ର ପ୍ରଥମ ଓ ଅପରିହାର୍ଯ୍ୟ ସୋପାନ । ବର୍ତ୍ତମାନ ଯେପରି ଜିଲ୍ଲା ଜିଲ୍ଲାରେ ଏକାପରି କଲେଜ ଓ ଗାଏଁ ଗାଏଁ ଏକାପରି ହାଇସ୍କୁଲ୍ ବସେଇଦିଆଯାଉଛି, ତା'ଦ୍ୱାରା କେବଳ ସ୍ଥାନୀୟ ସଂକୀର୍ଣ୍ଣତାକୁ ପ୍ରଶ୍ରୟ ଦିଆଯାଇ ମହତ୍ତର ଜାତିପ୍ରାଣତାକୁ ବଳି ଦିଆଯାଉଛି । ମୋର ଆଶଙ୍କା ଦେଶ ଦିନେ ନା ଦିନେ ଏହାର କୁଫଳ ଭୋଗିବ ।

## ବିକେନ୍ଦ୍ରୀକୃତ ଶାସନ ଓ ବ୍ୟକ୍ତିଗତ ଦାୟିତ୍ୱ –

ପରେ ଇନ୍‌ସ୍ପେକ୍ଟର ହୋଇ ଏହା ଦେଖି ମୁଁ ମର୍ମାହତ ହେଲି ଯେ, ମୋ ଲିଖିତ ଇନ୍ସପେକ୍ସନ୍ ରିପୋର୍ଟଗୁଡ଼ିକ, ଉପର-ହାକିମ ଡି.ପି.ଆଇ. ପଢ଼ନ୍ତି ସୁଦ୍ଧା ନାହିଁ କି ତା' ଉପରେ କୌଣସି କ୍ରିୟାନୁଷ୍ଠାନ ନେବାର ଆବଶ୍ୟକତାହିଁ କେହି ଅନୁଭବ କରନ୍ତିନାହିଁ । କିନ୍ତୁ ସେ କାଳର ବ୍ରିଟିଶ୍ ଶାସନର ଦକ୍ଷତା ସମ୍ପର୍କରେ ମୋର ବ୍ୟକ୍ତିଗତ ସାକ୍ଷ୍ୟ ଏହି ଯେ, ଏଡୁକେସନାଲ ଆଡ଼ଭାଇଜର ଭାବରେ ମୋ-ଲିଖିତ ପ୍ରତ୍ୟେକଟି ରିପୋର୍ଟ ଦୁଇପଟର ପଲ୍‌ଟିକାଲ୍ ଏଜେଣ୍ଟ ଓ ସର୍ବୋପରି ସର୍ବମୟକର୍ତ୍ତା ରେସିଡେଣ୍ଟ (ସେକାଳର ଏକ ପ୍ରାଦେଶିକ ଗଭର୍ଣ୍ଣରର ସମାନ) ମଧ୍ୟ ତନ୍ନ ତନ୍ନ କରି ପଢୁଥିଲେ । ମୁଁ ଆଡ଼ଭାଇଜର ଭାବରେ ଜଏନ୍ କରିବାର ଠିକ୍ ପ୍ରଥମ କେତୋଟି ରିପୋର୍ଟରେ ଏପରି କେତୋଟି ବାକ୍ୟ ବ୍ୟବହାର କରିପକାଇଥିଲି ଯାହା କି ରାଜା ଓ ଦରବାରମାନେ ପସନ୍ଦ କରିବେନାହିଁ । ଏଥିପାଇଁ ରେସିଡେଣ୍ଟ ମତେ କଲିକତା ଡକେଇ ନେଇ ଅତି ଆପଣାର ଲୋକପରି ସେପରି ନକରିବାକୁ ବୁଝାଇଦେଇଥିଲେ । କି ସୁନ୍ଦର ଶାସକ, କି ସୁନ୍ଦର ମନୁଷ୍ୟ ଥିଲେ ଏଇ ତଥାକଥିତ ଇଂରେଜ ଇମ୍ପେରିୟାଲିଷ୍ଟଗୁଡ଼ାକ ଏବଂ ସ୍ୱତଃ ବର୍ତ୍ତମାନର ଦେଶୀ ଶାସକ ଓ ହାକିମମାନଙ୍କ ସହିତ ସେମାନଙ୍କର ତୁଳନା ମନରେ ଏକ ତିକ୍ତ ସ୍ୱାଦ ଛାଡ଼ିଯାଏ ।

ମୋ ସମୟରେ ଓଡ଼ିଶା ପଟେ ପଲିଟିକାଲ୍ ଏଜେଣ୍ଟ ଥିଲେ ମି: ମିଚେଲ୍ । ଅତି ପଣ୍ଡିତ, ଅତି ଉଦାର ଲୋକ ଥିଲେ ଏହି ମି. ମିଚେଲ । ସେ ବସ୍ତର ଷ୍ଟେଟ୍‌ର ମୁରିଆଭାଷାର ପ୍ରଥମ ବ୍ୟାକରଣ ଲେଖିଯାଇଛନ୍ତି । ସେ ଥିଲେ ଅକ୍ସଫୋର୍ଡ଼ରୁ ଦର୍ଶନର ଗ୍ରାଜୁଏଟ । ତାଙ୍କର ମୋର ଅନେକ ସମୟ ଧରି ଅନେକ କଥା ହୋଇଛୁ । ମୋର ଏଇ 'ହିନ୍ଦୋଳ' ରିପୋର୍ଟକୁ ସେ ବୋଧହୁଏ ଖୁବ୍ ପସନ୍ଦ କଲେ ଏବଂ ଖୁସିରେ ସେ ତାହା ପଠାଇଦେଲେ ସେ କାଳର ରେସିଡେଣ୍ଟଙ୍କ ନିକଟକୁ ।

ମୋର ସମ୍ପୂର୍ଣ୍ଣ ଅଜ୍ଞାତସାରରେ ରେସିଡେଣ୍ଟ ମଧ୍ୟ ଏଇ ରିପୋର୍ଟକୁ ପସନ୍ଦ କରି ସମଗ୍ର ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିର ପ୍ରତ୍ୟେକ ଦରବାରର ପ୍ରଣିଧାନପାଇଁ ନିର୍ଦ୍ଦେଶ ଦେଇଦେଲେ, ରାଜା-ମହାରାଜାମାନଙ୍କର ଆଗାମୀ ସମ୍ମିଳନୀରେ ବିଚାରିତ ହେବାପାଇଁ (Ref-Orissa States Agency, Express letter to All Durbars No. E 1-28/43-6649 - at 23, Sept. 1943) ।

କିନ୍ତୁ ତାହାହିଁ ସୃଷ୍ଟିକଲା ରାଜନ୍ୟବର୍ଗ ଓ ମୋ ମଧ୍ୟରେ ପ୍ରଥମ ବିରାଟ ପ୍ରାଚୀର । ସେମାନଙ୍କର ବଦ୍ଧମୂଳ ଧାରଣା ହେଲା ଯେ, ମୁଁ ପଲିଟିକାଲ୍ ଡିପାର୍ଟମେଣ୍ଟର ନିର୍ଦ୍ଦେଶରେହିଁ ଏଇ 'ହିନ୍ଦୋଳ ରିପୋର୍ଟ'ରେ ଗଡ଼ଜାତମାନଙ୍କର ନିଜନିଜର ସାର୍ବଭୌମ-ବିରୋଧୀ ଗ୍ରୁପ-ଯୋଜନାକୁ ସମର୍ଥନ କଲାଭଳି ମନ୍ତବ୍ୟ ଦେଇଛି । ଏଡୁକେସନାଲ୍ ଆଡ଼ଭାଇଜର ରାଜାମାନଙ୍କ ଅର୍ଥରେ ପାଳିତ– ତେଣୁ ତାଙ୍କର ବିରୋଧୀ ହୋଇ କେତେଦିନ ରହିପାରନ୍ତି ? ରାଜାମାନେ ବର୍ତ୍ତମାନ ମତେ ତଡ଼ିବାକୁ ପ୍ରତିବର୍ଷ ଚେଷ୍ଟା କରିବାକୁ ଲାଗିଲେ । କେବଳ ରେସିଡେଣ୍ଟ ଓ ପଲିଟିକାଲ୍ ଏଜେଣ୍ଟମାନଙ୍କ ଯୋଗୁଁ ହିଁ ମୁଁ ସେ ପଦରେ କିଛିକାଳ ରହିପାରିଥିଲି । ଶେଷରେ "ମୂଳ ମାଇଲେ ଯିବ ସରି" ନୀତିରେ ଏଡୁକେସନାଲ୍ ଆଡ଼ଭାଇଜର ପୋଷ୍ଟକୁହିଁ ରାଜାମାନେ ଉଠାଇଦେଲେ, ଯାହାଫଳରେ ୧୯୪୬-୪୭ରେ ମତେ ଜୀବନରେ ଦ୍ୱିତୀୟଥର ପାଇଁ କିଛିକାଳ କଟକରେ ଆସି ବେକାର ହୋଇ ବସିବାକୁ ହୋଇଥିଲା ।*

ସେ ଯାହା ହେଉ, ମୋର ଦୃଢ଼ ଧାରଣା ଏହି ଯେ, ଯଦି ଶିକ୍ଷା ବିଭାଗରେ ପ୍ରକୃତ ଉନ୍ନତି ଆମେ ଚାହୁଁ, ତେବେ ପୂର୍ବତନ ଏଡୁକେସନାଲ୍ ଆଡ଼ଭାଇଜର, ଗଡ଼ଜାତ ରାଜ୍ୟଗୁଡ଼ିକର ଶିକ୍ଷା ଯେପରି ନିୟନ୍ତ୍ରିତ କରୁଥିଲେ, ସମଗ୍ର ଓଡ଼ିଶା ରାଜ୍ୟରେ ସରକାରଙ୍କୁ ସେହିପରି ବ୍ୟବସ୍ଥା କରିବାକୁହିଁ ହେବ । ଅନ୍ୟ ପନ୍ଥା ନାହିଁ । ସେତେବେଳେ ପ୍ରତ୍ୟେକଟି ରାଜ୍ୟ ସ୍ୱୟଂସଂପୂର୍ଣ୍ଣ ଥିଲା । ନରସିଂହପୁର ବା ରାୟଗଡ଼ର ସବ୍‌ଇନ୍ସପେକ୍ଟର, କି ଡେପୁଟି ଇନ୍ସପେକ୍ଟର ସେହି ସେହି ଷ୍ଟେଟ୍‌ର ଶିକ୍ଷାପାଇଁ ସଂପୂର୍ଣ୍ଣ ଦାୟୀ ଥିଲେ । ଏଡୁକେସନାଲ୍ ଆଡ଼ଭାଇଜର ଯଦି କୌଣସି ଷ୍ଟେଟ୍‌ର ସ୍କୁଲ୍‌ମାନଙ୍କରେ ଭଲ ପଢ଼ାପଢ଼ି ହେଉନି ବୋଲି ଲେଖିଦେଉଥିଲା ତେବେ ପଲିଟିକାଲ୍ ଏଜେଣ୍ଟ, ରାଜା ଓ ଦେବାନର ମିଳିତ ବଜ୍ରମୁଷ୍ଟି ପଡୁଥିଲା ସଂପୃକ୍ତ ଅଫିସର ଉପରେ । ଏଡୁକେସନାଲ୍

---

* ଏ ପରିସ୍ଥିତିରେ କୋରିଆ-ରାଜାଙ୍କର ଏଡୁକେସନାଲ୍ ଆଡ଼ଭାଇଜର ଭାବରେ ମୋ କାମ ଉପରେ ସାର୍ଟିଫିକେଟ୍ କୌତୂହଳଜନକ –

**Ramanuj Villa**
Baikunthpur
3rd September, 49

I have much pleasure in certifying that Dr. Man Singh who was the Educational Advisor to the Eastern States is a capable and resourceful educationist. He introduced several reforms in the system of education in the States and the Board of Control for Education of which I had the previlege of being the President much appreciated his work. The post of the Adviser was abolished on administrative considerations and we were sorry to lose him.

S/d **Ramanuja Singh**
Ruler of Korea

ଆଡ଼ଭାଇଜର ଦେଇ ପୁଣି ଭିନ୍ନ ଭିନ୍ନ ଷ୍ଟେଟ୍‌ର ଭିନ୍ନ ଭିନ୍ନ ଅଭିଜ୍ଞତା ଏକତ୍ରିତ ହେବାରେ ସମସ୍ତେ ଉପକୃତ ହେଉଥିଲେ । ପ୍ରତ୍ୟେକ ରାଜ୍ୟର ଶିକ୍ଷା-କର୍ମଚାରୀ ଟେକ୍ସ-ବୁକ୍ ଇତ୍ୟାଦି ବାଛିବାରେ ସ୍ୱାଧୀନ ଥିଲେ ଏବଂ ନିଜ ରାଜ୍ୟର ସ୍କୁଲ୍‌ମାନଙ୍କର ଉନ୍ନତିପାଇଁ ଯାହା ଯାହା ସେ ଚାହୁଁଥିଲେ, ତାହା ସେ ଆଡ଼ଭାଇଜରଙ୍କ ସାହାଯ୍ୟରେ କରାଇନେଉଥିଲେ । ଆଡ଼ଭାଇଜରର ନିର୍ଦ୍ଦେଶ ମଧ୍ୟ ପ୍ରତ୍ୟେକ ଦରବାର ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । କେବଳ ପାଳନ କରୁନଥିଲେ ନୁହେଁ, ସେଥିପାଇଁ ଗର୍ବ ମଧ୍ୟ ଅନୁଭବ କରୁଥିଲେ । ଓଡ଼ିଶା ଓ ଛତିଶଗଡ଼ର ଅନେକ ଦେବାନ ତାଙ୍କ ଷ୍ଟେଟ୍‌ରେ ଶିକ୍ଷା ବ୍ୟବସ୍ଥା ଭଲଅଛି ଓ ଦେବାନ ଶିକ୍ଷାକ୍ଷେତ୍ରରେ ଆଗ୍ରହର ସହିତ କାମ କରୁଛନ୍ତି, ଏଇମିତି ଦିପଦ ପ୍ରଶଂସା ଲେଖିଦେବାକୁ ମତେ ଅନେକଥର ବ୍ୟକ୍ତିଗତ ଅନୁରୋଧ କରିଛନ୍ତି । କାରଣ, ସେ ସାର୍ଟିଫିକେଟ୍ ପଲ୍‌ଟିକାଲ୍ ଏଜେଣ୍ଟ ନିକଟରେ ବଡ଼ ବେଶି ମୂଲ୍ୟବାନ୍ ଥିଲା । ମୁଁ ଯେତେବେଳେ ଛତିଶଗଡ଼ର କୋରିଆ ରାଜ୍ୟ ବୁଲି ସେ ରାଜ୍ୟର ପ୍ରାଇମେରୀ ଶିକ୍ଷା ଉପରେ ଏକ ସୁଖ୍ୟାତିକର ରିପୋର୍ଟ ଦେଲି, କୋରିଆ ରାଜାଙ୍କର ମୋ ପ୍ରତି ପୂର୍ବର ବ୍ୟକ୍ତିଗତ ବିରୋଧ ବ୍ୟକ୍ତିଗତ ସମାଦରରେ ପରିଣତ ହୋଇଉଠିଥିଲା । ଏହି ରାଜା ସ୍ୱର୍ଗତ ରାମାନୁଜ ସିଂହ ବେଶ୍ ପଣ୍ଡିତ ଲୋକ ଥିଲେ । ତାଙ୍କ ରାଜ୍ୟର ପ୍ରତି ପ୍ରାଇମେରୀ ସ୍କୁଲ୍ ସେ ପ୍ରତିବର୍ଷ ଭିଜିଟ୍ କରି, ପିଲାଙ୍କୁ ରୀତିମତ ପରୀକ୍ଷା କରି ଭିଜିଟରସ୍ ବୁକ୍‌ରେ ମନ୍ତବ୍ୟ ଦେଇଆସୁଥିଲେ । ଏଥିପାଇଁ ତାଙ୍କ ରାଜ୍ୟରେ ପ୍ରାୟ ପ୍ରତି ଗାଁକୁ ମୋଟର-ରାସ୍ତା ଯାଇଥିଲା । କାରଣ, ରାଜା ସ୍କୁଲ୍ ଦେଖିବାକୁ ଯିବେ । ପ୍ରତି ପ୍ରାଇମେରୀ ସ୍କୁଲ୍‌ରେ ବାଳକ-ବାଳିକାଙ୍କୁ ଡାକି ବା ଧରିଆଣି ବସେଇବାପାଇଁ ଜଣେ ଜଣେ ସ୍ୱତନ୍ତ୍ର ଲୋକ ବି ନିଯୁକ୍ତ ଥିଲେ ।

ଏଡୁକେସନାଲ୍ ଆଡ଼ଭାଇଜର, ଦଣ୍ଡ ଓ ପୁରସ୍କାରର କ୍ଷମତା ମଧ୍ୟ ଥିଲା । ଯା ଫଳରେ ବହୁ ରାଜ୍ୟର ବହୁ ଯୋଗ୍ୟ ଶିକ୍ଷକଙ୍କୁ ମୁଁ ଆର୍ଥିକ ସମ୍ମାନ ଦେଇପାରି ଆନନ୍ଦ ଅନୁଭବ କରୁଥିଲି । ସାଧାରଣଭାବରେ ଓଡ଼ିଶା ଗଡ଼ଜାତର ଶିକ୍ଷକମାନଙ୍କପାଇଁ ମୁଁ ଯେତେବେଳେ ଯେଉଁ ନୂଆ ସ୍କେଲ୍-ଅବ୍-ପେ କରିଦେଇଥିଲି, ତାହା ସମକାଳୀନ ବ୍ରିଟିଶ୍ ଓଡ଼ିଶାର ଶିକ୍ଷା-ବିଭାଗର କଳ୍ପନାର ବାହାରେ ଥିଲା । *

---

* ୨୧ । ୧୧ । ୧୯୬୩ର 'ସମାଜ'ରେ ସେହି ବର୍ଷ ଉତ୍କଳ-ପ୍ରାଇମେରୀ-ଶିକ୍ଷକ ସଂଘର ବାର୍ଷିକ ଅଧିବେଶନର ସଭାପତି ଭାବରେ ଶ୍ରୀ ରାଧାନାଥ ରଥଙ୍କ ଭାଷଣରେ ଏହା ଅଛି –

"୧୯୪୯-୫୦ରେ ମୋଗଲବନ୍ଦୀ ଜିଲ୍ଲାମାନଙ୍କରେ ତାଲିମପ୍ରାପ୍ତ ନହୋଇଥିବା ଶିକ୍ଷକଙ୍କ ବେତନ ଥିଲା ଟ୨୦ - ୧/୨ - ୨୫ ଏବଂ ତାଲିମପ୍ରାପ୍ତ ଶିକ୍ଷକଙ୍କ ଦରମା ଥିଲା ୨୫-୧/୨-୩୦ ଟଙ୍କା । ଅଥଚ ଗଡ଼ଜାତ ଅଞ୍ଚଳରେ ଶିକ୍ଷକମାନେ ଯଥାକ୍ରମେ ପାଉଥିଲେ ୨୨-୧/୨-୩୦ ଓ ୩୦-୧/୨-୪୦ ଟଙ୍କା"

ଏହା କେଉଁଠାରୁ ଓ କିପରି ହୋଇଥିଲା ତାହା ଶ୍ରୀ ରଥ ଜାଣିଥିବେ ବୋଧହୁଏ, କିନ୍ତୁ କହିନାହାନ୍ତି ।

ଯାହାସବୁ ଉନ୍ନତି ବା ସଂସ୍କାର ମୁଁ ବ୍ରିଟିଶ ପଲିଟିକାଲ୍ ଏଜେଣ୍ଟମାନଙ୍କଦ୍ୱାରାହିଁ କରାଇ ନେଇଥିଲି । ଯେତେବେଳେ ସେହି ଇଂରେଜ ହାକିମମାନେ ମୋଠାରୁ ପ୍ରଥମେ ଶୁଣିଲେ ଯେ ଏ ଦେଶରେ ପ୍ରାଇମେରୀ ସ୍କୁଲ୍ ଶିକ୍ଷକର ଦରମା ଦୁଇଟଙ୍କା, ତିନିଟଙ୍କା, ପାଞ୍ଚଟଙ୍କା ଓ ଅତିବଡ଼ ଦଶଟଙ୍କା, ସେମାନେ ପ୍ରଥମେ ବିଶ୍ୱାସ କରିପାରିଲେନାହିଁ । ମୋ ଆଗରୁ ଆଡ଼ଭାଇଜର ପୋଷ୍ଟରେ ସର୍ବଶ୍ରୀ ହରିହର ମିଶ୍ର, ମହେଶଚନ୍ଦ୍ର ପ୍ରଧାନ ଓ ସହସ୍ରବୁଦ୍ଧି ବହୁଗୁଣା ପ୍ରଭୃତି ଦକ୍ଷ ଓ ଗୁଣୀ ହାକିମମାନେ ଥିଲେ । କିନ୍ତୁ ଦରବାର ବା ଇଂରେଜ ପଲିଟିକାଲ୍ ଏଜେଣ୍ଟମାନଙ୍କ ଆଗରେ ଗଡ଼ଜାତର ଦରିଦ୍ର ଶିକ୍ଷକମାନଙ୍କର ଦୁର୍ଦ୍ଦଶା, ସେମାନଙ୍କ ମଧ୍ୟରୁ କେହି ହେଲେ ସେପର୍ଯ୍ୟନ୍ତ କିପରି ଉପସ୍ଥାପିତ କରିନଥିଲେ, ମୁଁ ଭାବି ବିସ୍ମିତ ହୋଇଥିଲି ।

## ପ୍ରତି ଶିକ୍ଷକର ଜୀବନବୀମା –

ଆଡ଼ଭାଇଜର ଭାବରେ ଗଡ଼ଜାତ ଶିକ୍ଷକମାନଙ୍କର ଦରମା ବଢ଼ାଇବା ସାଥେ ସାଥେ ମୁଁ ପ୍ରତ୍ୟେକ ସ୍କୁଲ୍‌ଶିକ୍ଷକ ଯେପରି ଲାଇଫ୍-ଇନ୍‌ସ୍ୟୁରାନ୍ସ ଭୋଗ କରିପାରିବ, ତାର ମଧ୍ୟ ବ୍ୟବସ୍ଥା କରୁଥିଲି । ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ ସେତେବେଳେ ହିନ୍ଦୁସ୍ଥାନ କୋ-ଅପରେଟିଭ୍ ଇନ୍‌ସ୍ୟୁରାନ୍ସ ସହିତ ସଂପୃକ୍ତ ଥିଲେ । ଏହି କମ୍ପାନୀ ଗଡ଼ଜାତର ପ୍ରତ୍ୟେକ ଶିକ୍ଷକକୁ କମ୍ ପ୍ରିମିୟମ୍ ନେଇ ଇନ୍‌ସିଓର୍ କରିବା ମୁଁ ଏ ସମ୍ପର୍କରେ ଯୋଗାଡ଼ କରୁଥିଲି । କାଳିନ୍ଦୀବାବୁଙ୍କ ଚିଠିଟି ପାଠକମାନଙ୍କର କୌତୂହଳପାଇଁ ଏଠାରେ ଦେଉଛି –

**Hindusthan Co-operative Insurance Society, Limited**
**Head Office - Hindusthan Buildings, Calcutta**

Cuttack
Date, 5th June, 1945

The Education Adviser,
Eastern States Agency, Sambalpur.

Dear Sir,

Further to your queries on the Staff Insurance Scheme for School Teachers already submitted to you, I have to say that you may adopt the scheme as itis, without the provision made in the said scheme for "Provident Fund" of the teachers. Even in the absence of such a fund you will find no difficulty in introducing the scheme that makes a minimum calculation of premiums payable by school teachers. Anticipating an early reply of your decision on the scheme already prepared specially for you.

Yours faithfully

Sd/- **K. C. Panigrahi**, Organiser

## ପ୍ରାଇମେରୀ ଶିକ୍ଷକ, ପୋଲିସ କନେଷ୍ଟବଲ୍ ଓ ଫରେଷ୍ଟଗାର୍ଡ଼ –

କିନ୍ତୁ ପ୍ରାଇମେରୀ ଶିକ୍ଷକର ଦରମାର ହାର କେଉଁ ନୀତିରେ ଠିଆହେବ – ସେ'ତ ଏକ ପ୍ରଶ୍ନ ! ଲେଖକ, ଆଡ଼ଭାଇଜର ହେବା ପୂର୍ବରୁ ଏ ପ୍ରଶ୍ନର ତ ଅସ୍ତିତ୍ୱ ନଥିଲା, ତେଣୁ ସମାଧାନ ବା ମିଳନ୍ତା କୁଆଡୁ ? ମୁଁ ପଲିଟିକାଲ୍ ଏଜେଣ୍ଟମାନଙ୍କୁ ବୁଝାଇଦେଇଥିଲି ଯେ, କୌଣସି

ରାଜ୍ୟର ପ୍ରାଇମେରୀ-ସ୍କୁଲ୍-ଶିକ୍ଷକର ଦରମା ସେହି ରାଜ୍ୟର କନେଷ୍ଟବଲ୍ ଓ ଫରେଷ୍ଟଗାର୍ଡ଼ଠାରୁ ବେଶି ହେବ ସିନା, କମ୍ ହେବା ଉଚିତ ନୁହେଁ । କାରଣ, ଗଡ଼ଜାତର ସାଧାରଣ ଗ୍ରାମବାସୀ ତା'ର ଦୈନନ୍ଦିନ ଜୀବନରେ ଏଇ ତିନୋଟି କର୍ମଚାରୀଙ୍କ ସହିତ ହିଁ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥାଏ । ଅନ୍ୟ ଦୁଇଜଣ ପରି, ସ୍କୁଲ୍ ମାଷ୍ଟ୍ରକୁ ଭୟ କରିବାର ତ ଗ୍ରାମ୍ୟ ଜନର କୌଣସି ହେଲେ କାରଣ ନାହିଁ । ସେଥିରେ ଯଦି ତାର ଦରମା ମଧ୍ୟ ସେମାନଙ୍କଠାରୁ କମ୍ ହୁଏ, ତେବେ ସମାଜରେ ତାର ସ୍ଥାନ କେଉଁଠି ?

ପଲିଟିକାଲ୍ ଏଜେଣ୍ଟମାନେ ଏହି ଯୁକ୍ତି ଗ୍ରହଣ କରି ମୁଁ ଯାହା ସ୍କେଲ୍-ଅବ୍-ପେ କରି ଦେଇଥିଲି, ତାକୁ ସେମାନେ ସମଗ୍ର ଭାବରେ ସମର୍ଥନ ଦେଇଥିଲେ । ମୋର ମନେଅଛି, ଏଇ ସ୍କେଲ୍-ଅବ୍-ପେ ସବୁ ପ୍ରବର୍ତ୍ତିତ ହେଲା ପରେ, ବହୁ ଷ୍ଟେଟ୍‌ର ସବ୍‌ଇନ୍ସପେକ୍ଟର ମୋ ପାଖକୁ କୃତଜ୍ଞତା ଜଣାଇବାପାଇଁ ଆସି କହିଥିଲେ ଯେ, ଅସମ୍ଭବ ସମ୍ଭବ ହେଲା । ଆଉ, ଆଠମଲ୍ଲିକର ରାଜାସାହେବ କହିଥିଲେ, ଥଟ୍ଟାରେ—ଆଚ୍ଛା ଆପଣ କଲେ ! ପ୍ରାଇମେରୀ ଶିକ୍ଷକର ପେ କନେଷ୍ଟବଲ୍‌ଠାରୁ ବେଶି ହେବାରୁ, କନେଷ୍ଟବଲ୍‌ମାନେ ବର୍ତ୍ତମାନ ପାଟିକଲେଣି ।

## ଅପବ୍ୟୟମୟ ଫାଙ୍କ ଆବାଜ୍ –

ଗଡ଼ଜାତମାନଙ୍କରେ ଏଡୁକେସନ ଆଡ଼ଭାଇଜର୍‌ର ଅଭିଜ୍ଞତା ଘେନି ମୁଁ ପରେ ଓଡ଼ିଶା ପ୍ରଦେଶରେ ଉତ୍ତର ଓ ଦକ୍ଷିଣ ଅଞ୍ଚଳରେ ଇନ୍ସପେକ୍ଟର ହେଲି । ଏଇ ପରବର୍ତ୍ତୀ ଅଭିଜ୍ଞତା କିନ୍ତୁ କେବଳ ବ୍ୟର୍ଥତା ଓ ତିକ୍ତତାମୟ । ମୁଁ ଦେଖିଲି, ଇନ୍ସପେକ୍ଟର ପୋଷ୍ଟଟି ଗୋଟିଏ ଅପବ୍ୟୟଶୀଳ ପୋଷ୍ଟ ଅଫିସ୍ ଛଡ଼ା ଆଉ କିଛି ନୁହେଁ । ଏ ଅଫିସର୍‌ର ଦାୟିତ୍ୱ ବହୁତ; କିନ୍ତୁ ସେ ଏକାନ୍ତ ଭାବରେ କ୍ଷମତା-ଶୂନ୍ୟ– ଏକ ବିରାଟ ଫାଙ୍କା ଆବାଜ୍ ମାତ୍ର । ଇନ୍ସପେକ୍ଟର ଇଚ୍ଛା କଲେ ଗୋଟାଏ ସୁଯୋଗ୍ୟ ଶିକ୍ଷକକୁ ଏକ ନୂଆ ପଇସା ପୁରସ୍କାର ଦେଇପାରିବନି କି ଅଯୋଗ୍ୟ ଶିକ୍ଷକକୁ ବାହାର ବି କରିପାରିବନି । ସେତେବେଳେ ଜିଲ୍ଲାବୋର୍ଡ଼ ସବୁ ଥିଲା । ଇନ୍ସପେକ୍ଟିଂ ଅଫିସର ଓ ଜିଲ୍ଲାବୋର୍ଡ଼ ଏହି ଦୁହିଁଙ୍କର ଦ୍ୱୈତ ଶାସନରେ ବିଚାରା ଶିକ୍ଷକମାନେ କେବଳ ପଶାଖେଳର ଗୋଟି ହେଉଥିଲେ । ସ୍କୁଲ୍‌ସବୁ ଦେଖି ଇନ୍ସପେକ୍ଟର କୌଣସି ସ୍କୁଲ୍‌ର ଦୋଷ, ଦୁର୍ବଳତା ବାରମ୍ବାର ଦେଖାଇଲେ ମଧ୍ୟ, ନା ମ୍ୟାନେଜିଂ କମିଟି, ନା ଡି.ପି.ଆଇ. କେହି ହେଲେ ଇନ୍ସପେକ୍ଟର କଥା ଶୁଣୁନଥିଲେ । ଦେଖିଲି, ଇନ୍ସପେକ୍ଟରଭାବରେ ମୋର ପୃଷ୍ଠା ପୃଷ୍ଠା ମନ୍ତବ୍ୟ କେବଳ ପଣ୍ଡଶ୍ରମ ମାତ୍ର । ସ୍ୱାଧୀନଭାବରେ ଯେଉଁଠି ହାକିମର କାମ କରିବାର କୌଣସି ଅବକାଶ ନାହିଁ, ସେ ପଦର କି ମୂଲ୍ୟ ? ଏପ୍ରକାର ଗୁଡ଼ିଏ ପଦ ସୃଷ୍ଟିକରି ସରକାର ଅକାରଣ କାହିଁକି ଗୁଡ଼ାଏ ଟଙ୍କା ବରବୋଦ କରିବାରେ ଯେ ଲାଗିଛନ୍ତି, ମୁଁ ଏପର୍ଯ୍ୟନ୍ତ ବୁଝିପାରିନି । କିନ୍ତୁ କୌଣସି ଡି.ପି.ଆଇ. ଏପର୍ଯ୍ୟନ୍ତ ନୈତିକ ସାହସ ଦେଖାଇବାର ଜଣାଯାଇନାହିଁ ଯେ, ସେ ଏ ସମ୍ପର୍କରେ ସରକାରଙ୍କୁ ବୁଝେଇଦେଇ କିଛି ସଂସ୍କାର ଆଣିବାକୁ ଚାହାନ୍ତି । କିନ୍ତୁ ଏ ଲେଖକର ଦୃଢ଼ମତ ଏଇ ଯେ, ଆଜି ଇନ୍ସପେକ୍ଟରକୁ ଯଦି ତା' ଅଞ୍ଚଳରେ ପ୍ରାଇମେରୀ ଓ ସେକେଣ୍ଡାରୀ ସ୍କୁଲମାନଙ୍କ

ଉପରେ ନିରଙ୍କୁଶ ସାର୍ବଭୌମ କ୍ଷମତା ଦେଇଦିଆଯାନ୍ତା, ତେବେ ପାଞ୍ଚବର୍ଷ ଭିତରେ ଦେଶର ସ୍କୁଲ୍‌ମାନଙ୍କର ଅବସ୍ଥା ଅକଳ୍ପନୀୟ ଭାବରେ ବଦଳିଯାନ୍ତା । ଶିକ୍ଷାବିଭାଗ କର୍ମଚାରୀଙ୍କ ଉପରେ ହଜାର ରକମର ତଥାକଥିତ ଲୋକପ୍ରତିନିଧି-ହାକିମଙ୍କ କର୍ତ୍ତୃତ୍ୱ ଓ ହସ୍ତକ୍ଷେପର ବ୍ୟବସ୍ଥା ଲଦି, ସରକାର ଏ ଦେଶରେ ଶିକ୍ଷା ବିଭାଗର ମେରୁଦଣ୍ଡଟିକୁ ମୂଳରୁ ଦୁର୍ବଳ କରିରଖିଛନ୍ତି । ଶିକ୍ଷା ବିଭାଗର ସକଳ ବିଭ୍ରାଟର ମୂଳ ଏହିଠାରେ ।

ଯା ମଧ୍ୟ ମୁଁ ଏଠି ଲେଖିଦେଉଛି ଯେ, ଏପ୍ରକାର ବିକେନ୍ଦ୍ରୀକୃତ କ୍ଷମତା ବିଚାରା ଇନ୍‌ସପେକ୍ଟର ବା ତା'ର ତଳ କର୍ମଚାରୀମାନଙ୍କୁ କେବେହେଲେ ମିଳିବନାହିଁ । କାରଣ, ଏହି ଚିରନ୍ତନ-ଦାସ-ମନୋଭାବାପନ୍ନ ଦେଶରେ କ୍ଷମତାର ମୋହ ଏତେ ପ୍ରବଳ ଯେ, କୌଣସି ହେଲେ କ୍ଷେତ୍ରରେ କେହିହେଲେ ସାମାନ୍ୟତମ କ୍ଷମତା ମଧ୍ୟ ଛାଡ଼ିବାକୁ ନାରାଜ । ଡି.ପି.ଆଇ.ତ ଏ ଦେଶରେ ଶିକ୍ଷାବିତ୍ ନୁହେଁ – ସେ ଶିକ୍ଷାବିଭାଗର ଇନ୍‌ସପେକ୍ଟର-ଜେନେରାଲ କହିଲେ ହିଁ ସଠିକ୍ ବର୍ଣ୍ଣନା ହେବ । ପ୍ରକୃତ ଶିକ୍ଷାବିତ୍ ହୋଇଥିଲେ, ନିଜ ଦେଶ ଓ ନିଜ ଜାତିର ସ୍କୁଲମାନଙ୍କର ପ୍ରକୃତ ଆଭ୍ୟନ୍ତରୀଣ ଉନ୍ନତିପାଇଁ ସେ ନିଜେ ଗୁଡ଼ାଏ କ୍ଷମତା ଇନ୍‌ସପେକ୍ଟରକୁ ଆଉ ଇନ୍‌ସପେକ୍ଟର ଗୁଡ଼ାଏ କ୍ଷମତା ଜିଲ୍ଲା ଇନ୍‌ସପେକ୍ଟର ଓ ହେଡ଼ମାଷ୍ଟରମାନଙ୍କୁ ଦେଇଦିଅନ୍ତେ । କାହିଁକି ଏହା ଘଟୁନି ? ଆସନଦତ୍ତ ହାକିମତକ ଗଲେ ଏ ଦେଶର ହାକିମମାନଙ୍କର ଆଉ ବାକି ରହେ କ'ଣ କି ? ଡିପୀସାହେବର ସେ ବୌଦ୍ଧିକ ମହିମା ଦେଇ ଆସନ ଅଳଙ୍କୃତ କରିବାକୁ କିଏ ଚାହେଁ, ସେ ଶକ୍ତି ବା କେତେକଙ୍କର ଅଛି ? ଆଉ ଭାରତୀୟ ମାତ୍ରର ଜୀବନ ଆଜି ହୋଇଉଠିଛି କେବଳ ଅର୍ଥ-କ୍ଷମତାର ଦୁର୍ବାର ଲାଳସା ।

ପୁଣି, ଢେଙ୍କାନାଳ ଷ୍ଟେଟ୍‌ରେ ଗୋଟିଏ ପ୍ରାଇମେରୀ ସ୍କୁଲ୍‌ରେ ଗୋଟିଏ ଅଧିକା ମାଷ୍ଟ୍ର ନିଯୁକ୍ତି କରିବାପାଇଁ ସବ୍‌ଇନ୍‌ସପେକ୍ଟର ଲେଖିବ ଡେପୁଟି ଇନ୍‌ସପେକ୍ଟରକୁ, ସେ ଲେଖିବେ ଡିଷ୍ଟ୍ରିକ୍ଟ ଇନ୍‌ସପେକ୍ଟରଙ୍କୁ, ସେ ଲେଖିବେ ଇନ୍‌ସପେକ୍ଟରଙ୍କୁ, ସେ ଲେଖିବେ ଡି.ପି.ଆଇ.ଙ୍କୁ, ସେ ଲେଖିବେ ସେକ୍ରେଟାରୀଙ୍କୁ, ସେ ପୁଣି ଅପେକ୍ଷା କରିବେ ମନ୍ତ୍ରୀଙ୍କ ଦସ୍ତଖତକୁ । ସମ୍ପୃକ୍ତ କାଗଜ ପୁଣି ଫେରି ଫେରି ଆସିବ କ୍ରମାନ୍ୱୟରେ । ସେତେବେଳକୁ ଦୁଇବର୍ଷ ଗତ ହୋଇଯାଇଥିବ । ସ୍କୁଲ୍, ବିନା ମାଷ୍ଟ୍ରରରେ ଚାଲିଥିବ । କୌଣସି ଡି.ପି.ଆଇ. ଏହି ମୂର୍ଖ, ଅକାମୀ ବ୍ୟବସ୍ଥାକୁ ବଦଳେଇବାପାଇଁ ଚେଷ୍ଟା ମାତ୍ର କଲେ କି ? କିନ୍ତୁ ଏଥିରେ କୌଣସି ଡିପାର୍ଟମେଣ୍ଟର ନିପୁଣତା ଆସିପାରେ କିପରି ? ଏ ପନ୍ଥା ଜନକଲ୍ୟାଣ ରାଷ୍ଟ୍ରର ନୁହେଁ – ଯା ପ୍ରକୃତରେ ହେଉଛି ସାମ୍ରାଜ୍ୟବାଦୀ ପନ୍ଥା । ଆମେ ଏମ୍ପାୟାର(ସାମ୍ରାଜ୍ୟ)କୁ ବାହ୍ୟରେ ତଡ଼ିଲୁ ମାତ୍ର, କିନ୍ତୁ ଆମ ଦେଶୀ-ଶାସକେ ଇମ୍ପେରିୟାଲିଜମ୍(ସାମ୍ରାଜ୍ୟ) ଓ ତାର ବାହନ ବ୍ୟୁରୋକ୍ରାସି(ହାକିମ-ଶାସନ)ର ସକଳ ମନ୍ଦ ଗୁଣଗୁଡ଼ିକୁ ଜାକିଧରିଛନ୍ତି । କାରଣ ତାହାହିଁ ଦେଉଛି ତାଙ୍କୁ କ୍ଷମତାର ଅପରିଚିତ ସୁଧାସ୍ୱାଦ । ବିକେନ୍ଦ୍ରୀକରଣ ନେଇ ବକ୍ତୃତା ଓ ଭାଷଣ ହେଉଥାଉ ତେଣେ ଅହରହ– କିନ୍ତୁ ପ୍ରକୃତ କ୍ଷମତା ହାତରୁ ଛାଡୁଛି କିଏ ? ସେତକ ଗଲେ, ପ୍ରଭୁତ୍ୱ ରହିଲା ଆଉ କିସ ? ଅପରପକ୍ଷରେ ଗଡ଼ଜାତଗୁଡ଼ିକର ଶାସନ ସ୍ୱାଭାବିକ ଭାବରେହିଁ ବିକେନ୍ଦ୍ରିକୃତ ଶାସନ ଥିଲା । ତାହାରି ଫଳରେହିଁ ସେତେବେଳେ ପ୍ରତ୍ୟେକ ଗଡ଼ଜାତର ପ୍ରତି ଅଞ୍ଚଳରେ ସବୁଠାରୁ ସୁପରିଚ୍ଛନ୍ନ, ଉଦ୍ୟାନବେଷ୍ଟିତ ସୁନ୍ଦରତମ ଗୃହଟି ଥିଲା ସ୍ଥାନୀୟ

ପ୍ରାଇମେରୀ ସ୍କୁଲ୍। ପରେ ଇନ୍ସପେକ୍ଟରଭାବରେ, ଭିତରେ ଭିତରେ ଲଜ୍ଜିତ ହେଲି ଦେଖି ଯେ, ବାଟରେ ଭଙ୍ଗାଦଦରା ଘରଟିଏ ଦେଖିଲେ ଧରିନେବ ଯେ ତାହାହିଁ ସ୍ଥାନୀୟ ପ୍ରାଇମେରୀ ସ୍କୁଲ୍। ଏ ଦୁଇ ଅବସ୍ଥାର ପ୍ରଭେଦର ଏକମାତ୍ର ହେତୁ ହେଉଛି, ବିକେନ୍ଦ୍ରୀକୃତ ପରିଚାଳନା ଓ ବ୍ୟକ୍ତିଗତ ଦାୟିତ୍ୱ। ଇନ୍ସପେକ୍ସନ୍ ଲାଇନରୁ ବହୁକାଳ ଅନ୍ତର ହେଲା ପରେ ମଧ ଗଡ଼ଜାତ ଅଞ୍ଚଳର ପ୍ରାଇମେରୀ ଶିକ୍ଷକମାନେ ବାଟରେ ଦେଖାହେଲେ ଦୁଃଖର ସହିତ କହୁଥାନ୍ତି– ''ଆଜ୍ଞା, ଦରମା ସେବ ଅପେକ୍ଷା ବେଶି ପାଉଛୁ। କିନ୍ତୁ ଆମ କାମ ଦେଖୁଛି କିଏ ? ସ୍କୁଲ୍‌ର ମା-ବାପ ତ ଆଉ କେହି ନାହିଁ।''

ଏଇ ହେଉଛି କେବଳ-ଫାଇଲ୍-ରିପୋର୍ଟ-ସମ୍ବଳ, କେନ୍ଦ୍ରୀକୃତ ଶାସନର ପରମ ମହିମା। ଦାୟିତ୍ୱ ଜଣକର, କ୍ଷମତା ଅନ୍ୟ ହାତରେ। ରାଜ୍ୟ ଭାସିଗଲେ ମଧ କେହି ଜଣେ ସେଥିପାଇଁ ଦାୟୀ ନୁହେଁ। ସମଗ୍ର ରାଜ୍ୟରେ ଆଜି ସେଥିପାଇଁ ବିଶୃଙ୍ଖଳ ଅବସ୍ଥା। ପ୍ରତ୍ୟେକ ସ୍ତରରେ ପ୍ରତ୍ୟେକ ବିନ୍ଦୁରେ ଉଭୟ ଦାୟିତ୍ୱ ଓ କ୍ଷମତାକୁ ଏକ ଜାଗାରେ ଛାଡ଼ିଦିଆଯାଉ, ପ୍ରତ୍ୟେକ କର୍ମଚାରୀକୁ ଗୋଟିଏ ନିର୍ଦ୍ଦିଷ୍ଟ କର୍ମପାଇଁ ପୂରା ଦାୟୀ ବୋଲି ଧରାଯାଉ, ସେହି ଗୋଟିକ କାମରେ ସଫଳତା ଓ ବିଫଳତା ଉପରେ କେହି କର୍ମଚାରୀର ଭବିଷ୍ୟତ୍ ନିର୍ଭର କରୁ, ତା'ପରେ ଦେଖ ଶାସନର ପ୍ରକୃତ ନୈପୁଣ୍ୟ ଓ କଲ୍ୟାଣ। ଏହା ହେଲେ ଏ ଦେଶର ଚେହେରା ପାଞ୍ଚବର୍ଷ ଭିତରେ ସମ୍ପୂର୍ଣ୍ଣ ବଦଳିଯାନ୍ତା।

---

### ସପ୍ତମ ଅଧ୍ୟାୟ

# ଗଡ଼ଜାତର ଅନ୍ୟ ଅଭିଜ୍ଞତା

## (୧)

## ମଧ୍ୟପ୍ରଦେଶରେ ଓଡ଼ିଆ ସଂସ୍କୃତି

ଏଡୁକେସନାଲ୍ ଆଡ଼ଭାଇଜର ଭାବରେ ମୋର ସବୁଠାରୁ ବିସ୍ମୟକର ଅଭିଜ୍ଞତା ହେଉଛି, ମଧ୍ୟପ୍ରଦେଶରେ ଓଡ଼ିଆ ଭାଷା ଓ ସଂସ୍କୃତିର ବ୍ୟାପ୍ତି । ମଧ୍ୟପ୍ରଦେଶର ସମଗ୍ର ପୂର୍ବାଞ୍ଚଳ, ବସ୍ତରରୁ ଆରମ୍ଭ କରି ଉତ୍ତରରେ ଯଶପୁର ଷ୍ଟେଟ୍ ଯାଏଁ, ଏପର୍ଯ୍ୟନ୍ତ ଓଡ଼ିଆ ରାଜ୍ୟ ଅଛି ବା ଏଇ ସେଇଦିନ ପର୍ଯ୍ୟନ୍ତ ରହିଥିଲା । ସମ୍ବଲପୁର ଜିଲ୍ଲାର ପଶ୍ଚିମକୁ ପ୍ରାୟ ଲାଗିଛି ରାୟପୁର, ବିଳାସପୁର ଜିଲ୍ଲା ଓ ପୂର୍ବର ଶାରନଗଡ଼, ରାୟଗଡ଼, ଉଦୟପୁର ଓ ଯାଶପୁର ଷ୍ଟେଟ୍ । ଉତ୍ତର ଦକ୍ଷିଣବ୍ୟାପୀ ଏଇ ସମଗ୍ର ଅଞ୍ଚଳର ଅନ୍ତତଃ ୫୦/୬୦ ମାଇଲ୍ ଓସାରର ଭୂଖଣ୍ଡରେ ଏପର୍ଯ୍ୟନ୍ତ କେବଳ ଓଡ଼ିଆ ଗାଁ ଓ ଓଡ଼ିଆ ଲୋକହିଁ ଅଛନ୍ତି । ଯାଛଡ଼ା ଅତ୍ରତତ୍ରଭାବରେ ବସତି କରିଥିବା ଓଡ଼ିଆଙ୍କୁ ମୁଁ ସୁଦୂର ଶକ୍ତି ଓ ତା'ଠାରୁ ଦୂରତର ବାବାର୍ଦ୍ଧା ଷ୍ଟେଟ୍ ପର୍ଯ୍ୟନ୍ତ ଦେଖିଛି ।

ଶେଷୋକ୍ତ ଷ୍ଟେଟ୍‌ରେ ଯାଜପୁର ଅଞ୍ଚଳର ଜଣେ ଓଡ଼ିଆ କଂସାରୀ ବସତି କରି ରହିଛନ୍ତି । ଦୁଇପୁରୁଷ ପରେ ମଧ୍ୟ ସେଇ ବିଚ୍ଛିନ୍ନ ରାଜ୍ୟରେ, ସେ ଖାଣ୍ଟି ଓଡ଼ିଆ ହୋଇ ରହିଥିବାର ଦେଖି ଆସିଛି, ପୁଣି ଇଂରେଜୀ ପାଠର ଗନ୍ଧ ନଥିଲେ ମଧ୍ୟ ତାଙ୍କର ଜାତୀୟ ପ୍ରୀତି ଦେଖ । ସେଇ ଷ୍ଟେଟ୍‌ର ରାଜଧାନୀଠାରୁ ମଧ୍ୟ ତାଙ୍କ ଗାଁ ୨୦/୨୫ ମାଇଲ ବାଟ । କିନ୍ତୁ ସେ ଶୁଣିପାରିଥିଲେ ଯେ, ଇସ୍କୁଲ୍ ଦେଖିବାକୁ ଯେଉଁ ସାହେବ ଆସୁଛନ୍ତି ସେ ଜଣେ ଓଡ଼ିଆ । ପ୍ରଥମବର୍ଷ ସେ ଚେଷ୍ଟାକରି ମତେ ଦେଖିପାରିଲେନାହିଁ । ତେଣୁ ଦ୍ୱିତୀୟବର୍ଷ ଯେକୌଣସି ମତେ ମୋତେ ଦେଖିବାପାଇଁ ମୁଁ ତାଙ୍କ ଗାଁ ନିକଟ ସ୍କୁଲ୍‌କୁ ଯିବାର ବହୁ ପୂର୍ବରୁ ସେଠି ମୋ ପାଇଁ ସେ ଅନେଇ ବସିଥିଲେ । ଅବଶ୍ୟ, ସ୍ଥାନୀୟ ଡେପୁଟୀ ଇନ୍ସିପେକ୍ଟର ଆଗରୁ ମତେ ତାଙ୍କ ବିଷୟରେ କହିଥିଲେ । କିନ୍ତୁ ପରିଚୟ କରାଇବାର କୌଣସି ଆବଶ୍ୟକତା ନଥିଲା । ଚୂଟି, ସୁନାକଣ୍ଠିର ମାଳି, ବଟୁଆ— ଗ୍ରାମ୍ୟ ଓଡ଼ିଆର ଏଇ ପରିଚିତ ଚିହ୍ନସବୁ ଦେଖି, ମୁଁ ପ୍ରଥମେ ତାଙ୍କୁ ଆପଣ 'ଓଡ଼ିଆ କି' ବୋଲି ପଚାରି ପକାଇଲି । ତା'ପରେ ଆଳାପ ହେଲା ଏବଂ ଜାଣିଲି ଯେ, ବୁଢ଼ା ପରିବାର ନେଇ ସେଠି ଅଛନ୍ତି; ରାଜଦ୍ୱାରରେ ମଧ୍ୟ ସାଧୁ ବ୍ୟବସାୟୀ ଭାବରେ ଭାରି ପ୍ରତିପତ୍ତି । ଯାଜପୁରରେ ଥିବା ଗାଁ ଓ କୁଟୁମ୍ବ ସଙ୍ଗେ ବରାବର ସମ୍ପର୍କ ବି ଅଛି ।

### ଲଛମାର ହିନ୍ଦୀ ଅନୁବାଦ –

ରାୟଗଡ଼ ଷ୍ଟେଟ୍ ସମ୍ବଲପୁର ଜିଲ୍ଲାକୁ ଲାଗିଛି । ରାଜଧାନୀ ରାୟଗଡ଼, ସମ୍ବଲପୁରଠାରୁ ଆକାର, ଆଧୁନିକତା ଓ ଧନସମ୍ପଦରେ ବହୁଗୁଣ ବୃହତ୍ତର, ଯଦିଓ ରାୟଗଡ଼ ଗୋଟିଏ ଛୋଟ

ଷ୍ଟେଟ୍ ମାତ୍ର; ଆମର ନୟାଗଡ଼, ତାଳଚେର ପରି । କିନ୍ତୁ ସେଠି ଏକ ବିରାଟ ଚାଉଳକଳ ଥିବାର ଦେଖିଛି ଓ ଏହା ଧାନ, ଚାଉଳ ରପ୍ତାନୀର ଏକ ପ୍ରଧାନ ବ୍ୟବସାୟ କେନ୍ଦ୍ର । ତା'ର ଟାଉନହଲ୍, କଟକ ଟାଉନହଲ୍‌ଠାରୁ ବହୁଗୁଣ ବୃହତ୍ତର ଓ ସମୃଦ୍ଧିମନ୍ତ । ମଧ୍ୟପ୍ରଦେଶର ଗଡ଼ଜାତଗୁଡ଼ିକ ଧନଧାନ୍ୟ ଓ ଆଧୁନିକତାରେ ଓଡ଼ିଶା ଗଡ଼ଜାତଗୁଡ଼ିକଠୁ ବହୁତ ଆଗରେ ଥିବାର ଦେଖିଛି । ବର୍ତ୍ତମାନ ହୁଏତ ଆହୁରି ଆଗେଇଯିବେଣି । ନନ୍ଦଗାଁଓ ଷ୍ଟେଟ୍ ବି ସେଇପରି ଗୋଟିଏ ଛୋଟ ଷ୍ଟେଟ୍ । ରାଜଧାନୀ ରାଜନନ୍ଦଗାଁ ସୁପରିଚାଳିତ ମ୍ୟୁନିସିପାଲିଟି, ବିଦ୍ୟୁତ୍ ଆଲୋକ ଓ ପାଇପ୍ ଜଳ ଭୋଗ କରେ, ଯାହା କଟକବାସୀ ସେତେବେଳେ ପାଇନଥିଲେ ଏବଂ ଏଇଠାରେ ଏକ ଭାରତ ପ୍ରସିଦ୍ଧ ଲୁଗାକଳ ମଧ୍ୟ ଅବସ୍ଥିତ ।

ବର୍ତ୍ତମାନ କେବଳ ଓଡ଼ିଆଙ୍କ କଥା କହେ । ଥରେ ରାୟଗଡ଼ରୁ କେତେ ମାଇଲ୍ ଦୂରବର୍ତ୍ତୀ ଏକ ଗାଁକୁ ଯିବାର ଥିଲା, ସ୍କୁଲ୍ ଦେଖି । ଷ୍ଟେଟ୍ ଗାଡ଼ିରେ କିଛିଦୂର ଗଲା ପରେ ଦେଖିଲି ଯେ ଗାଡ଼ି ବନ୍ଦ ହେଲା । କାରଣ, ଗ୍ରାମ୍ୟ ରାସ୍ତା ଭଲ ଅବସ୍ଥାରେ ନାହିଁ; କୁଲି ଲାଗି, ଆମର କାର୍ ଯିବାପାଇଁ ଆଗେ ଆଗେ ସାମାନ୍ୟ ମରାମତି ଚାଲିଛି । ଜଣେ କଣ୍ଟ୍ରାକ୍ଟର କୁଲିମାନଙ୍କୁ କାମ ବତାଉଛି । ମୁଁ ଛିଡ଼ାହୋଇ ଦେଖୁଥାଏ । କିନ୍ତୁ କଣ୍ଟ୍ରାକ୍ଟରର ଚେହେରା ଓ ତାର ହିନ୍ଦୀ-ଆଦେଶର ବୈଦେଶିକ ଭଙ୍ଗୀରୁ ମୋର ସନ୍ଦେହ ହେଲା । ମୁଁ ଡେପୁଟି ଇନ୍ସପେକ୍ଟରଙ୍କୁ ପଚାରିଲି, ସେ ଓଡ଼ିଆ କି । ସେ କହିଲେ ଯେ ହଁ, ସେ ଜଣେ ଓଡ଼ିଆ । ଲୋକଟି ବି ନମସ୍କାର କଲା । ମୁଁ ଯେଉଁ ଗାଁକୁ ଯାଉଛି ସେଇ ଗାଁର ସେ । ଗାଁକୁ ଯାଇ ଦେଖେ ତ ସମଗ୍ର ଗାଁଟା ଓଡ଼ିଆ ବସ୍ତି । ଲୋକେ ପ୍ରଥମେ ମୋ ସଙ୍ଗେ ହିନ୍ଦୀରେ କହୁଥିଲେ, ପରେ ଖାଣ୍ଟି ଓଡ଼ିଆରେ କଥାବାର୍ତ୍ତା କଲେ । ସ୍କୁଲ୍ ପରିଦର୍ଶନ ପରେ ଘରକୁ ଜବରଦସ୍ତି ନେଇ ଫଳାହାର ବାଢ଼ିଦେଲେ । ଠିକ୍ ଓଡ଼ିଆ ଘର । ସେଇମିତି କାନ୍ଥରେ ଲାଲ ଓ କଳାରଙ୍ଗର ଚିତ୍ର ଏବଂ ଗାଁରେ ଜଗନ୍ନାଥ ମନ୍ଦିର । ପଚାରି ବୁଝିଲି ଯେ ବହୁଦୂର ଧରି ସେ ଗାଁକୁ ଗାଁ କେବଳ ଓ୍ଡ଼ିଆବସ୍ତି । ଲୋକେ ଓଡ଼ିଆ କଥା ଏପର୍ଯ୍ୟନ୍ତ ଘରେ କହୁଛନ୍ତି, ବାହାରେ ବାଧହୋଇ ହିନ୍ଦୀ ବ୍ୟବହାର । ପିଲାଙ୍କୁ ଓଡ଼ିଆରେ ବ୍ୟୁତ୍ପନ୍ନ କରେଇବା ଭାରି ଇଚ୍ଛା—କିନ୍ତୁ ସୁବିଧା ନାହିଁ । ଘରେ ଘରେ କାହିଁ କାହିଁ ଓଡ଼ିଆ ଶିକ୍ଷାର ବ୍ୟବସ୍ଥା, ବାଧହୋଇ କରାଯାଇଛି ।

ରାୟଗଡ଼ର ଦକ୍ଷିଣକୁ ଶାରନଗଡ଼ ଷ୍ଟେଟ୍ । ମଧ୍ୟରେ ବ୍ୟବଧାନ ରାୟପୁର ଜିଲ୍ଲାର ଚନ୍ଦ୍ରପୁର-ପଦ୍ମପୁର ଜମିଦାରୀ ଅଞ୍ଚଳ । ମହାନଦୀର ଦୁଇଟି ଧାର ମଧ୍ୟ ପାରିହେବାକୁ ହୁଏ । ରାୟଗଡ଼ରେ ଥାଆନ୍ତି ଲୋଚନପ୍ରସାଦ ପାଣ୍ଡେ, ହିନ୍ଦୀ ସାହିତ୍ୟ ଜଗତରେ ସୁବିଦିତ ବ୍ୟକ୍ତି । ନିକଟରେ ତାଙ୍କର ସ୍ୱର୍ଗପ୍ରାପ୍ତି ଘଟିଯାଇଛି । ସେ ସମ୍ବଲପୁରରେ ମାଟ୍ରିକ୍ ପଢ଼ିଥିଲେ, ଓଡ଼ିଆ ଭଲ ଜାଣିଥିଲେ । ଓଡ଼ିଆରେ କବିତା ମଧ୍ୟ ଲେଖିଛନ୍ତି । ଓଡ଼ିଆ କବିତାକୁ ହିନ୍ଦୀ କବିତା ଅପେକ୍ଷା ବେଶି ମଧ୍ୟ ଆଦର ଓ ସମ୍ମାନ କରୁଥିଲେ । ଗଙ୍ଗାଧରଙ୍କ କୀଚକବଧର ଶ୍ଳୋକାବଳୀ ଆନନ୍ଦରେ ଆବୃତ୍ତି କରନ୍ତି । ମେଘଦୂତର ହିନ୍ଦୀ ଅନୁବାଦ ଖଣ୍ଡିଏ ସେ ମତେ ଥରେ ଦେଇଥିଲେ । ପାଣ୍ଡେଜୀ ପରେ ନିଜେ କହିଲେ ଯେ ରାଧାନାଥଙ୍କ ମେଘଦୂତ ଅନୁବାଦ ଯେପରି ମଧୁର କୋମଳ ହୋଇଛି ହିନ୍ଦୀ ଅନୁବାଦ ସେପରି ହୋଇପାରିନି । ଲୋଚନପ୍ରସାଦଙ୍କ ସାନଭାଇ ମୁକୁଟଧାରୀ ପାଣ୍ଡେ

ଫକୀରମୋହନଙ୍କ ଉପନ୍ୟାସର ହିନ୍ଦୀ ଅନୁବାଦ ସମ୍ବନ୍ଧରେ ପାଣ୍ଡେଜୀ ଏକ ମଜାର କଥା କହୁଥିଲେ । 'ଲଛମା' ଅନୁବାଦ ହୋଇ ହିନ୍ଦୀ ଜଗତରେ ପ୍ରଚାରିତ ହେଲା ପରେ, ନାଗପୁର ଓ ବେରାରର ମରାଠା ସାହିତ୍ୟିକ ମହଲରେ ଚାଞ୍ଚଲ୍ୟ ସୃଷ୍ଟି ହେଲା । ମରାଠାମାନେ ଚିତ୍କାର କଲେ, 'ମର୍ହାଟାମାନେ କ'ଣ କେବଳ ଲୁଣ୍ଠନକାରୀ ଦସ୍ୟୁ—ଯେମିତି ଏ ବହିରେ ବର୍ଣ୍ଣନା ହୋଇଛି ?' ଏଇ କ୍ରୁଦ୍ଧ ସମାଲୋଚନାରେ ପାଣ୍ଡେ ଭାଇମାନେ ଆଉ ସେନାପତିଙ୍କ ବହିର ୨ୟ ସଂସ୍କରଣ କରିବାକୁ ସାହସ କଲେନାହିଁ । ଲୋଚନପ୍ରସାଦ ପାଣ୍ଡେଙ୍କ ଗ୍ରାମବାସ କିନ୍ତୁ ଚନ୍ଦ୍ରପୁର ଜମିଦାରୀରେ, ଯଦିଓ ସେ ରାୟଗଡ଼ରେ ସେତେବେଳେ ବରାବର ରହୁଥିଲେ ।.ରାୟଗଡ଼ ଯିବାର ପ୍ରଥମ ଥରହିଁ ପାଣ୍ଡେଜୀ, ମୁଁ ଜଣେ ଓଡ଼ିଆ ସାହିତ୍ୟସେବୀ ଜାଣି,ସ୍ୱତଃପ୍ରବୃତ୍ତ ହୋଇ ମୋ ସାଙ୍ଗରେ ପରିଚିତ ହେବାକୁ ଆସିଥିଲେ । ତା'ପରେ ଯେତେଥର ଯାଏ, ପାଣ୍ଡେଜୀଙ୍କ ସଙ୍ଗେ ଦେଖାହୁଏ । ଥରେ ପାଣ୍ଡେଜୀ ମୋ ସାଙ୍ଗରେ ମୋଟରକାରର ସୁବିଧା ପାଇବା ଲାଗି ମୁଁ ରାୟଗଡ଼ରୁ ସାରନଗଡ଼ ଯିବାର ଜାଣି, ସାଙ୍ଗ ଧରିଲେ । ସେ ବାଟରେ ତାଙ୍କ ଗାଁ ପାଖରେ ଓହ୍ଲାଇଯିବେ, ମୁଁ ମୋ ବାଟେ ଯିବି ।

ମହାନଦୀର ଏକ ଧାରର ଗ୍ରୀଷ୍ମକାଳୀନ କାଠ-ପୋଲ ପାର୍‌ହେଲା ପରେ ଗାଡ଼ି ବନ୍ଦ ହେଲା, କୌଣସି କାରଣରୁ । ଦେଖିଲି, ବାହାରେ ଗୋଟିଏ ମଫସଲୀ ଛତିଶଗଡ଼ୀ ଲୋକ ଠିଆହୋଇଛି । ପାଣ୍ଡେଜୀଙ୍କୁ କହିଲି, "ପାଣ୍ଡେଜୀ, ପଚାରନ୍ତୁ ତ ସେ ଓଡ଼ିଆ କଥା ଜାଣେ କି ନା ।" ତାଠୁ ଜଣାଗଲା ଯେ ସେ ଓଡ଼ିଆ କହିଜାଣେନା । କିନ୍ତୁ ଅତୀବ ବିସ୍ମୟର ବିଷୟ ଏହି ଯେ ସାମାନ୍ୟ ସୂଚନା ପରେ ସେ ଲୋକ ଅବିକଳ ଓଡ଼ିଆ ଉଚ୍ଚାରଣରେ ଓଡ଼ିଆ ଭାଗବତ ଓ ଓଡ଼ିଆ ଗୋପୀଭାଷା ଆବୃତ୍ତି କରିବାକୁ ଲାଗିଲା, ଯେପର୍ଯ୍ୟନ୍ତ ଆମେ ତାକୁ ବନ୍ଦ ନକରିଛୁଁ ।

ଶ୍ରୀଲୋଚନପ୍ରସାଦ ପାଣ୍ଡେ ବହୁଦିନ ପରେ ମୋ ନିକଟକୁ ଦେଇଥିବା ଏକ ପତ୍ରରେ ପୂର୍ବର ଠିକ୍ ଏଇ ଘଟଣାଟି ସ୍ମରଣ କରାଇଦେଇଛନ୍ତି ଏବଂ ଦୁଃଖ ପ୍ରକାଶ କରି କହିଛନ୍ତି ଯେ, ସେଇ ଅଞ୍ଚଳମାନଙ୍କରେ ଛତିଶଗଡ଼ୀ ଜନସାଧାରଣଙ୍କର ଓଡ଼ିଆ ନାଟ, ଯାତ୍ରା, ସଙ୍ଗୀତ ଓ ସାହିତ୍ୟ ପ୍ରତି ଆଗ୍ରହ ଓ ଉତ୍ସାହ କ୍ରମେ ବଢୁଛି ସିନା—କମୁନି । ଏହା ଦେଖି ପାଣ୍ଡେଜୀ ଅତ୍ୟନ୍ତ ଚିନ୍ତିତ ! କିନ୍ତୁ ଉତ୍କଳର କୌଣସି ସୁପୁତ୍ର ଏ ଦିଗରେ ଚିନ୍ତା କରିବେ କି ?

ସେଦିନ ଶାରନଗଡ଼ର ଡାକବଙ୍ଗଳାରେ ବସିଛି । ସନ୍ଧ୍ୟାବେଳ । ଅଦୂରରେ କେତେକ ଛତିଶଗଡ଼ୀ ଶଗଡ଼ିଆ ରୋଷାଇ କରିବାର ଦେଖାଯାଉଛି । ମୁଁ ପଢୁଛି । ହଠାତ୍, ଓଡ଼ିଆ କବିତାର ଆବୃତ୍ତି ଶୁଣିଲି—ମଧୁର କଣ୍ଠରେ । ଦେଖିଲି ସେ ଧ୍ୱନି ଆସୁଛି ସେଇ ଶଗଡ଼ିଆମାନଙ୍କ ନିକଟରୁ । ଚପରାସୀକି କହିଲି ସେମାନଙ୍କୁ ମୋ ନିକଟକୁ ଆସିବାକୁ । ସେମାନେ ଦଳବଦ୍ଧ ହୋଇ ଆସିଲେ । ତାଙ୍କ ହାତରେ ଓଡ଼ିଆ ପୁରାଣ, ଓଡ଼ିଆ ଅକ୍ଷରରେ । କଥା କହୁଛନ୍ତି ଛତିଶଗଡ଼ୀ, କିନ୍ତୁ ପଢୁଛନ୍ତି ଓଡ଼ିଆ ସାହିତ୍ୟ ! ମୁଁ ତାଙ୍କୁ କହିଲି ବହିଟି ପଢ଼ିବାକୁ । ମୁଁ ସେପର୍ଯ୍ୟନ୍ତ ଭଙ୍ଗା ହିନ୍ଦୀରେ ସେମାନଙ୍କ ସାଙ୍ଗେ କଥା ହେଉଥାଏ । ସେମାନେ ପଢ଼ିବା ପୂର୍ବରୁ ପଚାରିଲେ —'ଆପଣ ୟାକୁ ବୁଝିପାରିବେ ?' ମୁଁ କେବଳ ହସିଲି ଓ ପଢ଼ିବାକୁ କହିଲି । ତାଙ୍କ ଭିତରେ ଗୋଟିଏ ଛୋଟ ବାଳକ ଥାଏ, ତାରି କଣ୍ଠ ସୁମିଷ୍ଟ । ସେଇ ପଢ଼ିଲା ଅନେକକ୍ଷଣ ଧରି । ତାଙ୍କୁ ବିଦାୟ ଦେଲି ଓ ମୋ ଦେଶ ଓ ଭାଷାର ଖଣ୍ଡ-

ବିଖଣ୍ଡିତ ଅବସ୍ଥା ଭାବି ଭାବି ଚକ୍ଷୁ ମୋର ଲୋତକସିକ୍ତ ହୋଇ ଆସିଲା ।

ପୂର୍ବେ ଛତିଶଗଡ଼ର ଅଧିକାଂଶ ଅଞ୍ଚଳ ସମ୍ବଲପୁର ମହାରାଜାଙ୍କ ଶାସନାଧୀନ ଥିଲା । ମୁଁ ଶୁଣିଲି ୧୯୦୫ ପର୍ଯ୍ୟନ୍ତ ଏଇସବୁ ମଧ୍ୟପ୍ରଦେଶୀ ଗଡ଼ଜାତମାନଙ୍କରେ ଓଡ଼ିଆହିଁ ରାଜକୀୟ ଭାଷା ଥିଲା । ସମ୍ବଲପୁର ପରି ଶାରନଗଡ଼ର ଅଧିଷ୍ଠାତ୍ରୀ ଦେବୀ ସମଲେଶ୍ୱରୀ । ରାଷ୍ଟ୍ରୀୟ ଜଗତରେ ଓଡ଼ିଆକୁ ଚାପି ହିନ୍ଦୀକି ପ୍ରତିଷ୍ଠାକରାହୋଇଛି ସତ, କିନ୍ତ ଜନସମାଜରେ, ନିଜ ଗୁଣରେ ବଞ୍ଚିରହିଛି ଓଡ଼ିଆ ଭାଷା ଓ ସାହିତ୍ୟ । ଏ ମୁଲକ ହିନ୍ଦୀର ନୁହେଁ । ହିନ୍ଦୀର ଆଗମନ ଶାସନଚକ୍ର ଦେଇ–ଅତି ନିକଟରେ । ଏ ଅଞ୍ଚଳର ଭାଷା ଛତିଶଗଡ଼ୀ । ଏହା ଏକ କଥିତ ଭାଷା–ଲିପିହୀନ ଓ ସାହିତ୍ୟହୀନ । ଦୈନନ୍ଦିନ ପ୍ରୟୋଜନ ଯଦିଓ ମେଣ୍ଟେ ହିନ୍ଦୀ-ଲରିଆ-ଓଡ଼ିଆର ଖେଚଡ଼ୀ, ଛତିଶଗଡ଼ୀ ଉପଭାଷାରେ; ଏ ଅଞ୍ଚଳର ଜନତାର ସାହିତ୍ୟିକ କ୍ଷୁଧା ଏପର୍ଯ୍ୟନ୍ତ ବି ମେଣ୍ଟାଇ ଆସୁଛି ଓଡ଼ିଆ । ମୁଁ ଶୁଣିଲି, ଖରାଦିନେ ରାୟଗଡ଼ ସହରର ପ୍ରତି ମହଲରେ ଓଡ଼ିଆ ଗୋଟିପୋ ନାଚ, ଭାଗବତ-ପୁରାଣ ପାରାୟଣ ଓ ପାଲାର ଆୟୋଜନ ହୁଏ ।

ଛତିଶଗଡ଼ ରାଜ୍ୟର ପ୍ରାଇମେରୀ ଶିକ୍ଷକମାନଙ୍କୁ ଉନ୍ନତ ରୀତିରେ ଶିକ୍ଷାଦାନ ପ୍ରଣାଳୀ ବତେଇବାଲାଗି ରାୟଗଡ଼ରେ ଥରେ ଗୋଟିଏ ଅଳ୍ପକାଳସ୍ଥାୟୀ ଟ୍ରେନିଂକେନ୍ଦ୍ର ଖୋଲା ହୋଇଥିଲା । ସେଥିପାଇଁ ମଧ୍ୟପ୍ରଦେଶ ଡି.ପି.ଆଇ.ଙ୍କୁ ଜଣାଇ ଦୁଇଜଣ ଅଭିଜ୍ଞ ଡେପୁଟି ଇନ୍ସପେକ୍ଟରଙ୍କୁ ଶିକ୍ଷକରୂପେ ଅଣାଯାଇଥିଲା । ମୁଁ ଏଇ କେନ୍ଦ୍ରର ସମାବର୍ତ୍ତନ ଉତ୍ସବର ପୁରୋଧାରୂପେ ରାୟଗଡ଼ ଯାଇ ଏକ ଡେପୁଟି ଇନ୍ସପେକ୍ଟରମାନଙ୍କ ସଙ୍ଗେ ପରିଚୟ ଲାଭ କରିଥିଲି । ସେମାନେ ଉଭୟେ ଉତ୍ତର ପ୍ରଦେଶୀୟ ଲୋକ । ମଧ୍ୟପ୍ରଦେଶର ପୂର୍ବାଞ୍ଚଳରେ କାମ କରିଥିବାରୁ ଓଡ଼ିଆ ଲୋକ ଓ ଭାଷା ସଙ୍ଗେ ସେମାନେ ପରିଚିତ ଥିଲେ । ସେମାନେ ଓଡ଼ିଆ ଗୋଟିପୋ ନାଟ ଦେଖିଥିଲେ ଓ ଓଡ଼ିଆ ସଙ୍ଗୀତର ମାଧୁର୍ଯ୍ୟ ନେଇ ମୋ ନିକଟରେ ଉଚ୍ଛ୍ୱସିତ ପ୍ରଶଂସା କରିବାକୁ ଲାଗିଲେ । ପ୍ରାଇମେରୀ ଶିକ୍ଷାର ଆଲୋଚନା ହେଉ ହେଉ ତାଙ୍କ ଭିତରୁ ଜଣେ କହିଲେ ଯେ ମଧ୍ୟପ୍ରଦେଶରେ ଜନସାଧାରଣ ପ୍ରାଇମେରୀ ଶିକ୍ଷା ପ୍ରତି ଅତ୍ୟନ୍ତ ବୀତସ୍ପୃହ । କିନ୍ତୁ ପଶ୍ଚିମାଞ୍ଚଳ ଅପେକ୍ଷା ପୂର୍ବାଞ୍ଚଳରେ ପ୍ରାଥମିକ ଶିକ୍ଷା ପ୍ରତି ବେଶି ଆଗ୍ରହ ଦେଖାଯାଏ । ସେ ଏହାର କାରଣସ୍ୱରୂପ ପୂର୍ବାଞ୍ଚଳରେ ଓଡ଼ିଆମାନଙ୍କର ସଂଖ୍ୟା-ବହୁଳତାକୁ ଦର୍ଶାଇଥିଲେ ଏବଂ କହିଲେ ଯେ, ଚନ୍ଦ୍ରପୁର ଅଞ୍ଚଳରେ ଥିବା ମିଶନାରୀମାନଙ୍କଠାରୁ ମଧ ସେ ଶୁଣୁଛନ୍ତି ଯେ ଛତିଶଗଡ଼ୀମାନଙ୍କ ଅପେକ୍ଷା ଓଡ଼ିଆମାନଙ୍କ ଭିତରେ ପ୍ରାଥମିକ ଶିକ୍ଷା ପ୍ରତି ବେଶି ଓ ପ୍ରକୃତ ଆଗ୍ରହ ଦେଖାଯାଏ । ମୁଁ ତାଙ୍କରିଠାରୁ ପ୍ରଥମେ ଶୁଣିଲି ଯେ ଚନ୍ଦ୍ରପୁରର ଚର୍ଚ୍ଚରେ ଇଉରୋପୀୟ ମିଶନାରୀମାନେ ଓଡ଼ିଆରେ ହିଁ ଧର୍ମପ୍ରଚାର କରନ୍ତି ।

ଛତିଶଗଡ଼ ଅତ୍ୟନ୍ତ ଅନୁନ୍ନତ ଥିବାର ଦେଖିଆସିଛି । ସେ ଅଞ୍ଚଳରେ ଯେତେ ହାକିମହୁକୁମା, ଏପରିକି ହାଇସ୍କୁଲ୍, ମିଡ଼ଲସ୍କୁଲ୍‌ର ଶିକ୍ଷକ ପର୍ଯ୍ୟନ୍ତ, ଅଧିକାଂଶ ପରଦେଶୀ ଥିଲେ । ପ୍ରାୟ ସମସ୍ତେ, ଉତ୍ତରପ୍ରଦେଶରୁ ଆମଦାନୀ କହିଲେ ଚଳେ । ଏଇମାନେହିଁ ହିନ୍ଦୀ ପୂରେଇଛନ୍ତି ସେ ଅଞ୍ଚଳରେ, ସ୍କୁଲ୍ ଓ କଚେରି ମାର୍ଫତରେ, ଯା'ଫଳରେ ଓଡ଼ିଆ ହୋଇଛି ବିଲୁପ୍ତ ବା

ବିଗତମହିମ । କିନ୍ତୁ ତତ୍‌ସତ୍ତ୍ୱେ, ମୋଟଉପରେ, ଏଇ ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନଙ୍କୁ ଓଡ଼ିଶାର ଓଡ଼ିଆଙ୍କ ଅପେକ୍ଷା ଅଧିକ ସ୍ୱଚ୍ଛଳ ଥିବାର ଦେଖିଆସିଲି । ଚାକିରିବାକିରିର ଉପର ସ୍ତରରେ ମଧ୍ୟ ଅନେକ ଓଡ଼ିଆଙ୍କୁ ସେଠି ଦେଖିଆସିଛି । ସେ ସମୟରେ ରାୟଗଡ଼ ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ଥିଲେ ଜଣେ ଓଡ଼ିଆ ।

ସେ ସମୟ ପର୍ଯ୍ୟନ୍ତ ମଧ୍ୟ ଶାରନଗଡ଼, ଯାଶପୁର ପ୍ରଭୃତି ଷ୍ଟେଟ୍‌ରେ କେତୋଟି ଖାଣ୍ଟି ଓଡ଼ିଆ ପ୍ରାଇମେରୀ ସ୍କୁଲ୍ ଥିଲା । ଏବେ ସେତକ ମଧ୍ୟ ଯିବଣି । ହିନ୍ଦୀର ଜଗନ୍ନାଥୀ ରଥ ଚକ୍ର ତଳେ କ୍ଷୀଣପ୍ରାଣ ଓଡ଼ିଆ କେତେକାଳ ବଞ୍ଚିରହିବାର ଆଶା କରାଯିବ ?

## (୨)

## ଗଡ଼ଜାତର ପ୍ରାକୃତିକ ସୁଷମା

ରାଜପ୍ରାସାଦମାନଙ୍କର ଆତିଥ୍ୟ, ରାଜପୁରୁଷମାନଙ୍କର ଦର୍ଶନ ବା ସାହଚର୍ଯ୍ୟ ଅଥବା ଉଚ୍ଚପଦର ମାନ ଓ ସ୍ୱଚ୍ଛଳତା, ଏସବୁ ମୋ ପକ୍ଷରେ ଯେତେ ଆକର୍ଷଣର ବସ୍ତୁ ନଥିଲା, ଥିଲା ଗଡ଼ଜାତର ପ୍ରାକୃତିକ ସୁଷମା । ପ୍ରାକୃତିକ ସୌନ୍ଦର୍ଯ୍ୟପାଇଁ ଓଡ଼ିଶା ପ୍ରକୃତରେ ଗର୍ବ କରିବାର କଥା । ଏଇ ସୌନ୍ଦର୍ଯ୍ୟ ଓଡ଼ିଶାର ଉପକୂଳ ଓ ପାର୍ବତ୍ୟ, ଉଭୟ ଅଞ୍ଚଳରେ ବିଭିନ୍ନ ଧାରାରେ ପ୍ରସାରିତ ହୋଇ ରହିଛି । କିନ୍ତୁ ଗଡ଼ଜାତମାନଙ୍କରେ ପ୍ରକୃତିର ଯେଉଁ ଆଦିମ, ଅବିନ୍ୟସ୍ତ, ଅବିକୃତ, ମାନବକରାସ୍ପର୍ଶିତ, ଭୀମକାନ୍ତ ଜାଙ୍ଗଲ ରୂପ ଏପର୍ଯ୍ୟନ୍ତ ରହିଛି, ତାହାହିଁ ମନକୁ ବିଶେଷଭାବରେ ଉଚ୍ଚାଟିତ କରେ । ଉପକୂଳଭୂମି, ମାନବର ବିଚାରହୀନ, କ୍ରୂର, ଖାଦ୍ୟାନ୍ୱେଷୀ ହସ୍ତରେ ଧ୍ୱସ୍ତ, କର୍ତ୍ତିତ ଓ ବିକାରଗ୍ରସ୍ତ ହୋଇସାରିଛି । ସେ ଅଞ୍ଚଳକୁ ନୟନପ୍ରୀତିକର କରି ରଖିଛି କେବଳ ପ୍ରକୃତିର ସେଇ ସେଇ ଛୋଟ ଛୋଟ ଦ୍ୱୀପଗୁଡ଼ିକ, ଯେଉଁଠି ମନୁଷ୍ୟର ସ୍ୱାର୍ଥହିଁ 'ଗ୍ରାମ' ନାମକ ନିଜର ଆବାସସ୍ଥଳୀକୁ ଛାୟାଶୀତଳ ରଖିବାକୁ ବା ଋତୁମାନଙ୍କରେ ଫଳାସ୍ୱାଦନ କରିବାପାଇଁ କେତୋଟି ଗଛକୁ ତା'ର ଧ୍ୱଂସର କବଳରୁ ଛାଡ଼ିଯାଇଛି । ଓଡ଼ିଶା, ବଙ୍ଗଳା ଓ ମାନ୍ଦ୍ରାଜ ଅଞ୍ଚଳରେ ଏତକ ହେଲେ ଏପର୍ଯ୍ୟନ୍ତ ଅଛି । କଲିକତାରୁ ଦିଲ୍ଲୀ ଓ ବମ୍ବେରୁ କଲିକତା ଦୀର୍ଘ ରେଳଯାତ୍ରା କଲାବେଳେ, ଦେଖିଛି ଉତ୍ତର ଓ ମଧ୍ୟଭାରତର ବହୁ ଅଞ୍ଚଳରେ ସେତକ ବି ନାହିଁ । ଚାରିଆଡ଼ କେବଳ ଦିଗ୍‌ବଳୟବ୍ୟାପୀ ରୁକ୍ଷ, ଧୂସର, ଟାଙ୍ଗର ସମତଳ । ସେଥିପାଇଁ ଯେବେ ଦିଲ୍ଲୀ ଯିବାକୁ ପଡ଼ିଛି, ସେ ଯାତ୍ରା ମତେ ଭୟଙ୍କର କଷ୍ଟକର ବୋଧ ହୋଇଛି । କିନ୍ତୁ ଉତ୍କଳର ଯେଉଁଆଡ଼କୁ ଯାଅ, ରେଳରେ ବା ମୋଟରରେ, ପଥର କ୍ଳାନ୍ତି ଅପନୋଦନ କରିନିଏ ମୁର୍ମୁମୁହୁ ପରିବର୍ତ୍ତିତ ପ୍ରକୃତିର ଅନ୍ତହୀନ ଚିତ୍ରପଟ ।

ସମଗ୍ରଭାବରେ ଗଡ଼ଜାତ, ବିଶେଷତଃ ଓଡ଼ିଶାର ଗଡ଼ଜାତ, ଏତେ ସୁଷମାମୟ ଯେ, କେଉଁ ବିଶିଷ୍ଟ ସ୍ଥାନ ମତେ ବିଶେଷଭାବରେ ମୁଗ୍ଧ କରିଛି ବୋଲି ପଚାରିଲେ ମୁଁ ହଠାତ୍ ଉତ୍ତର ଦେଇନପାରେ । ଅବଶ୍ୟ ଅନୁପମ-ସୌନ୍ଦର୍ଯ୍ୟ-ଗାମ୍ଭୀର୍ଯ୍ୟମୟ ସାତକୋଶିଆ ଅଛି । କିନ୍ତୁ ସେ ତ ସମଗ୍ର ଉତ୍କଳର ଗର୍ବର ବସ୍ତୁ, କେବଳ ଗଡ଼ଜାତର ନୁହେଁ । ମୁଁ ଯେଉଁ ଆକର୍ଷଣର କଥା କହୁଛି ତାହା ଆକସ୍ମିତ ନୁହେଁ, ସ୍ଥାନୀୟ ନୁହେଁ, କେବଳ ବା ଏକାନ୍ତ ନୁହେଁ । ତାହା ସର୍ବାଞ୍ଚଳିକ,

ସର୍ବବିଚ୍ଛୁରିତ । ମୋ ଆଖିରେ ତାହାହିଁ ଗଡ଼ଜାତ ଅଞ୍ଚଳର ବିଶେଷ ଗର୍ବ ଓ ଆକର୍ଷଣର କଥା । ଯେଉଁଆଡ଼େ ଆଖିପକାଅ, ପ୍ରକୃତି ତା'ର ଚିତ୍ରଶାଳା ମେଲି ରଖିଛି । ତା'ର ସୌନ୍ଦର୍ଯ୍ୟ-ଭୋଗପାଇଁ ତମକୁ କୌଣସି ବିଶେଷ ଶ୍ରମସ୍ୱୀକାର କରିବାକୁ ପଡ଼ିବନାହିଁ, ବା ବିବିକ୍ତ ସ୍ଥଳକୁ ଯିବାକୁ ହେବନାହିଁ । ସେ ତମପାଇଁ ସର୍ବତ୍ର ସର୍ବଭରଣଭୂଷିତା ଯୁବତୀ ପରି ରହସ୍ୟର ଅବଗୁଣ୍ଠନ ତଳେ ଶ୍ୟାମ-ସ୍ମିତ-ରେଖା ପ୍ରକଟିତ କରି ଦଣ୍ଡାୟମାନା ।

ଆମ୍ଭେମାନେ ଓଡ଼ିଶାକୁ 'ଉତ୍କଳ ଜନନୀ' କହି ବନ୍ଦନାଗୀତି ଗାଇଛୁଁ ବହୁତ— ଯେପରି କରିଆସିଛୁ ଭାରତ ପ୍ରତି । କିନ୍ତୁ କ୍ୱଚିତ୍, କେବେ, ମାଟି-କେଦାର-ଜଙ୍ଗଲ-ପାହାଡ଼-ଗ୍ରାମ-ନଗର-ସମନ୍ୱିତ ଏଇ ଦେଶ, ପ୍ରକୃତରେ ଗୋଟିଏ ଜୀବନ୍ତ ବ୍ୟକ୍ତିତ୍ୱ ଧରି ଆମ୍ଭମାନଙ୍କ ହୃଦୟରେ ପ୍ରକାଶ ପାଇଥାଏ—ଯେପରି କରନ୍ତି ଆମର ଆତ୍ମୀୟସ୍ୱଜନ । ଯାହା ସଙ୍ଗେ ଆମର ପରିଚୟ କେବଳ ଭୌଗୋଳିକ ମାନଚିତ୍ରର ବଙ୍କାଟଙ୍କା ରେଖା ଦେଇ, ତାକୁ ହୃଦୟରେ ପ୍ରତିମା ଦାନ କରିବା ସହଜକଥା ନୁହେଁ । ଦେଶପାଇଁ ଭାବିଛି ବହୁତ, ଜାତିପାଇଁ ଅନୁଭବ କରିଛି ଢେର୍, ବେଳେ ବେଳେ ଭାବର ଆତିଶଯ୍ୟରେ ଅଶ୍ରୁପାତ ମଧ୍ୟ କରିଛି, କିନ୍ତୁ ଦେଶର ମାଟି, 'ମା' ହୋଇ ହୃଦୟରେ କ୍ୱଚିଦ୍ ପ୍ରକାଶପାଇଛି । କିନ୍ତୁ ମୋର ଗଡ଼ଜାତ-ଭ୍ରମଣ ସମୟରେ ଏକ ବିଶିଷ୍ଟ ସ୍ଥାନର ପ୍ରାକୃତିକ ପରିବେଶରେ, ଏଇଧରଣର ଏକ ଅଦ୍ଭୁତ ଅନୁଭୂତି ମୋ ପ୍ରାଣରେ ମୁଁ ଅନୁଭବ କରିଛି ।

## ଚାରମାଳ —

କଟକ-ସମ୍ବଲପୁର ରାସ୍ତାରେ ଯେଉଁମାନେ ଯିବାଆସିବା କରନ୍ତି ସେମାନେ ରେଢ଼ାଖୋଲ ପାର ହେଲେ ଚାରମାଳ ବୋଲି ଗୋଟିଏ ଗାଁ ପଡ଼ିବାର ଜାଣିଥିବେ । ଏଇ ଚାରମାଳ ନିକଟରେ, କଟକଆଡ଼ୁ ବାଁ ପଟେ, ପ୍ରଧାନ ରାସ୍ତାକୁ ବାଟକାଟି ଜଙ୍ଗଲ ଭିତରକୁ ହାତୀରେ ଚଢ଼ି, ଦୁଇଥର ଯାଇଛି ପ୍ରାୟ ଦୁଇ ତିନି କୋଶ ଦୂରର କୌଣସି ଏକ ଗ୍ରାମ୍ୟ ସ୍କୁଲ ଦେଖିବାକୁ । ଜଙ୍ଗଲପଥ ଯାଇଛି ଏକ ଉପତ୍ୟକା ଭିତର ଦେଇ; ଦୁଇ ପାଖରେ ଛୋଟ ବଡ଼ ପାହାଡ଼, ଚାରିଆଡ଼େ ବୁଦ-ବୁଦକିଆ ଜଙ୍ଗଲ, ସ୍ଥାନେ ସ୍ଥାନେ ନବସ୍ଥାପିତ ନରକୁଟୀର, କାହିଁ କାହିଁ ନବ-କର୍ଷିତ ଶସ୍ୟକ୍ଷେତ୍ର । ହାତୀ ଉପରୁ ଏଇସବୁ ଦୃଶ୍ୟ ଦେଖୁ ଦେଖୁ ଠିକ୍ ସେଇ ରାସ୍ତାରେ ଦୁଇଥରଯାକ, ମୋର ହଠାତ୍ ମନରେ ହେଇଛି —''ଏଇ ଉତ୍କଳ ଜନନୀ, ଏଇ ମୋର ମା' ଓଡ଼ିଶା; ଏହାହିଁ ମୋ ମାତୃଭୂମିର ପ୍ରକୃତ ପ୍ରତିମା !'' ଭାବୁ ଭାବୁ ମୋର ଚକ୍ଷୁ ଆନନ୍ଦାଶ୍ରୁରେ ଆପ୍ଳୁତ ହୋଇଉଠିଥିଲା । ମାତ୍ର ସେଇ ସ୍ଥାନରେ, ସେଇ ଏକ ଭାବ ବାରମ୍ବାର କାହିଁକି ଓ କିପରି ଉଦ୍ଭବ ହେଲା, ମୁଁ ତା'ର କୌଣସି ବିଶ୍ଳେଷଣ କରିପାରିନି ।

## ମହିଷାପାଟ ଓ ପ୍ରକୃତିର ନିବିଡ଼ ସମ୍ପର୍କ —

ନୀଳଗିରି ଷ୍ଟେଟ୍‌ରେ ମହିଷାପାଟ ନାମକ ଏକ ଗ୍ରାମ ଅଛି । ନୀଳଗିରି ଟାଉନ୍‌ରୁ ଉତ୍ତରକୁ କିଛି ଦୂର ଯିବ ପକ୍କା ରାସ୍ତାରେ, ତା'ପରେ ବାଟକାଟି ଜଙ୍ଗଲ ରାସ୍ତାରେ ଯିବାକୁ ହେବ । ପକ୍କାରାସ୍ତା ଅଂଶତକ ମଟରରେ ଯାଇ ସେଠୁ ହାତୀରେ ଯାଇଥିଲି । ସାଥୀ କେବଳ

ସବ୍‌ଇନ୍‌ସପେକ୍ଟର ଓ ମାହୁନ୍ତ । ସେମାନେ ଅଭିଜ୍ଞ ବ୍ୟକ୍ତି । କିନ୍ତୁ ଆଶ୍ଚର୍ଯ୍ୟର କଥା, ଆମେ ସେଥର ବାଟକଣା ହେଲୁ । ଗଛ ଆଡ଼େଇ ଆଡ଼େଇ ଯାଇ ଯାଇ ଦେଖୁ ତ, ଆମେ ଯେଉଁଠୁ ଆରମ୍ଭ କରିଥିଲୁ ସେଇଠି ଆସି ପୁଣି ପହଞ୍ଚିଛୁ । ଚାରିଆଡ଼େ କେବଳ ଗଛ ଲଟା, ବୁଦା ଓ ବଣ । ଭୂମିରେ ମାନବର ପଦଚିହ୍ନ କାହିଁ ନାହିଁ । କିଛି ସମୟ ପରେ, ସେଇ ଅଞ୍ଚଳର ଜଣେ ଲୋକ ହଠାତ୍ ସାକ୍ଷାତରେ ଆସିବାରୁ, ଆମେ ତେଣିକି ବିନା ଦ୍ୱନ୍ଦ୍ୱରେ ମହିଷପାଟରେ ପହଞ୍ଚିଲୁ । ସେଠି ଗୋଟାଏ ସାମାନ୍ୟ ପ୍ରାଇମେରୀ ସ୍କୁଲ୍ । କିନ୍ତୁ ସ୍କୁଲ୍‌ଟି ଏପରି ସ୍ଥାନରେ ଅବସ୍ଥିତ ଯେ ଯେଉଁଆଡ଼କୁ ଚାହିଁବ ସେଆଡ଼େ ଗଗନଚୁମ୍ବୀପାହାଡ଼ । ସ୍କୁଲର ପଛ, ଆଗ, ଏପାଖ, ସେପାଖ, ଚତୁର୍ଦ୍ଦିଗରେ ଆଦିମ ଜଙ୍ଗଲର ବିଭୀଷିକାମୟ ଅଞ୍ଚଳ । ପ୍ରକୃତିର ସେଦିନର ସେ ମଧୁର, ଭୀଷଣ, ନିବିଡ଼ ଓ ନିକଟ ସମ୍ପର୍କ ମୁଁ ଆଜିଯାଏ ଭୁଲିପାରିନାହିଁ । ମନେରଖିଛ ମହିଷାପାଟ ସ୍କୁଲ ଓ ତାର ଭୀମକାନ୍ତ ପରିସ୍ଥିତି ।

ଅତ୍ୟନ୍ତ ପରିତାପର କଥା ଯେ, ଗଡ଼ଜାତର ଏଇ ଅନୁପମ, ଆଦିମ, ଆଲୁଳାୟିତ, ଭୀମକାନ୍ତ, ପାର୍ବତ୍ୟ ସୁଷମା ଆଜି ଧ୍ୱଂସ ହେବା ଉପରେ । ମୁନାଫାଖୋର କଣ୍ଟ୍ରାକ୍ଟରମାନଙ୍କର ବର୍ବର ଲାଳସାରେ ମୂଲ୍ୟବାନ୍ ଜଙ୍ଗଲସମ୍ପଦ ଲୁଟ୍‌ହୋଇ ଯାଉଥିବାର କରୁଣ କାହାଣୀ ମୁଁ ଏବେ ବହୁମୁଖରୁ ଶୁଣୁଛି । ଲୋକବସତି ବା ଶସ୍ୟକ୍ଷେତ୍ର ରଚନା ଛଳରେ ମାଇଲ ମାଇଲ ଧରି ଜଙ୍ଗଲ ପଦାହୋଇ ଯାଉଥିବାର ମୁଁ ମଧ ଦେଖିଲିଣି । ଗତ ମହାଯୁଦ୍ଧ ବେଳେ ବହୁ ଷ୍ଟେଟ୍‌ରେ ଜଙ୍ଗଲ ଏକାବେଳକେ ଶୂନ୍ୟହୋଇ ଯାଇଥିଲା ବୋଲି ଶୁଣାଯାଉଥିଲା । ଜାତୀୟ ସରକାର ସେଇ କ୍ଷତି ପୂରଣ କରିବାର ସବୁପ୍ରକାର ଯୋଜନା କରିବା ଦରକାର । ସେଣେ ପ୍ରକୃତିକୁ ଧ୍ୱଂସ କରି ଏଣେ ବନମହୋତ୍ସବ କରିବାର ମିଥ୍ୟାଚାର କରି ଲାଭ କ'ଣ ? ଇଂଲାଣ୍ଡରେ କେନ୍ଦ୍ର ସରକାର ଓ ମଫସଲର ଜମିଦାରମାନେ ଜଙ୍ଗଲ ନଥିବା ସ୍ଥାନରେ ଜଙ୍ଗଲ ସୃଷ୍ଟି କରିଛନ୍ତି, ଦେଶର ସୌନ୍ଦର୍ଯ୍ୟ ଓ ଆର୍ଥିକ ଉନ୍ନତି ଉଭୟ ଦିଗରୁ ଲାଭପାଇଁ । ଦେଶର ସୌନ୍ଦର୍ଯ୍ୟ-ହାନି ଯେପରି ନହୁଏ ସେଥିପାଇଁ ବ୍ରିଟିଶ୍ ସରକାର ଦେଶର ପ୍ରାକୃତିକ-ସୌନ୍ଦର୍ଯ୍ୟପାଇଁ ବିଖ୍ୟାତ ସ୍ଥାନଗୁଡ଼ିକୁ ପାର୍ଲିମେଣ୍ଟର କାନୁନ୍‌ଦ୍ୱାରା ଧ୍ୱଂସର ବର୍ବରତାରୁ ରକ୍ଷା କରିଛନ୍ତି । ଓଡ଼ିଶାର ଜାତୀୟ ସରକାର ଦେଶର ସ୍ୱାଭାବିକ ସୁଷମାକୁ ଧ୍ୱଂସମୁଖରୁ ରକ୍ଷା କରି, ତାକୁ ସଭ୍ୟତାର ସଂଯୋଗରେ ସହଜ ଉପଭୋଗର ସୀମା ଭିତରକୁ ଆଣି ପାରିଲେ ଏଇ ଦେଶ ଭାରତବର୍ଷର ସୁଇଜରଲାଣ୍ଡ ହୋଇଉଠନ୍ତା ଏବଂ ଲକ୍ଷ ଲକ୍ଷ ଟଙ୍କା ପୃଥିବୀର ସକଳ ଦେଶର ଯାତ୍ରୀମାନଙ୍କ ପକେଟ୍‌ରୁ ଆସି ଦେଶର ଦରିଦ୍ର ଗନ୍ତାଘରକୁ ଋଦ୍ଧିମନ୍ତ କରନ୍ତା ।

## ପ୍ରକୃତି ଯେଉଁଠି ଅଜେୟ ଓ ଅସ୍ପର୍ଶନୀୟ –

ଗାଙ୍ଗପୁର ପ୍ରଭୃତି କେତୋଟି ଷ୍ଟେଟ୍‌ରେ ବୃକ୍ଷ-ଧ୍ୱଂସ ଏପରି ବିଚାରହୀନଭାବରେ ବହୁ ବର୍ଷ ଧରି ଚାଲିଆସିଛି ଯେ ସେଠି ଆଜି କେବଳ ପଡ଼ିରହିଛି ରୁକ୍ଷ, ଅନୁର୍ବର ଟାଙ୍ଗର, କୋଶ କୋଶ ଧରି । କିନ୍ତୁ ସେଇ ଷ୍ଟେଟ୍‌ର ହେମଗିରି ଜମିଦାରିରୁ ଫେରିଲାବେଳେ ବାଟରେ ଏକ ପର୍ବତ ସ୍ଥାନରୁ ଏକ ଦୃଶ୍ୟ ଦେଖାଯାଏ; ଯାହା ପ୍ରକୃତିର ଅଜେୟ ଓ ଅସ୍ପର୍ଶନୀୟ ମହିମା

ଏପର୍ଯ୍ୟନ୍ତ ଘୋଷଣା କରେ । ସେଇ ସ୍ଥାନରୁ ଦିଗ୍‌ବଳୟ ପର୍ଯ୍ୟନ୍ତ ଦୃଷ୍ଟି ଯେତେଦୂର ଯାଇପାରେ, ଦେଖାଯାଏ କେବଳ ଘନ ବନାନୀର ଉଚ୍ଚାବଚ ଶ୍ୟାମଳ ତରଙ୍ଗମାଳା । କେବଳ ବାଧାହୀନ, ନିରବିଚ୍ଛିନ୍ନ, ସ୍ତବ୍ଧ, ଶ୍ୟାମ, ଗମ୍ଭୀର ମହାରଣ୍ୟ, ବିସ୍ତୃତ ହୋଇ ରହିଛି ସ୍ୱକୀୟ ମହିମାରେ । ଏପରି ବା ଯାଠାରୁ ଆହୁରି ଅଧିକ ସୁନ୍ଦର ଦୃଶ୍ୟ ଦେଖିଛି କୋରିଆ ଷ୍ଟେଟ୍‌ରେ । ଏଇ ଷ୍ଟେଟ୍‌ର ରେଲଷ୍ଟେସନ ଚିରିମିରୀରୁ ରାଜଧାନୀ ବୈକୁଣ୍ଠପୁର ୧୬ ମାଇଲ ଏବଂ ରାସ୍ତା ଏକ ପର୍ବତମାଳାର କଟିଦେଶରେ ଯାଇଛି । ଏଇ ରାସ୍ତାର ଏକାଧିକ ସ୍ଥାନରୁ ନିମ୍ନଭୂମିର ଦୃଶ୍ୟପଟ ଅତି ଚମତ୍କାର । ଏକ ସ୍ଥାନରେ ଦେଖାଯାଏ ଦିଗନ୍ତବିସ୍ତୃତ ପର୍ବତମାଳା— ପର୍ବତର ଊର୍ମି ପରେ ଊର୍ମି ଯେପରି ଚାଲିଛି ଦିଗ୍‌ବଳୟ ପର୍ଯ୍ୟନ୍ତ । ଯେବେ ଯାଇଛି, ଏ ରାସ୍ତାରେ ମୋଟର ଠିଆ କରାଇ ଏଇ ଅନୁପମ ଦୃଶ୍ୟକୁ ଭଲକରି ଟିକିଏ ଦେଖିନେଇଥାଏ ।

## ଆଠମଲ୍ଲିକର ସାବଲୀଳ ଘାଟି ରାସ୍ତା –

ଦୂରକୁ ଯିବାକୁ ହେବ ନାହିଁ, କଟକ-ସମ୍ବଲପୁର ରାସ୍ତାର ବଇନ୍ଦା ଛକରୁ ଆଠମଲ୍ଲିକ ଗଡ଼କୁ ଯିବାର ଯେଉଁ ରାସ୍ତା, ତା'ର ଦୁଇ ପାଖର ଦୃଶ୍ୟ କି ମନୋହର ! ଗିରି, ବନ, କେଦାର, ଗ୍ରାମ ଦେଇ ଚାଲିଛି ରକ୍ତିମ ପଥ । ପ୍ରାୟ ୧୩ ମାଇଲ ଧରି ପଡ଼େ ଘାଟି,.ଯାହର ଏକପାଖେ ନଭଶ୍ଚୁମ୍ବୀ ପର୍ବତ, ଆରପାଖେ ବହୁ ନିମ୍ନରେ ଲୁଚକାଳି ଖେଳି ଚାଲିଛି ଉପଳସ୍ତର-ନର୍ତ୍ତନରତା ଗିରିତରଙ୍ଗିଣୀ । ତାର ଆରପଟେ ପୁଣି ନଭଶ୍ଚୁମ୍ବୀ ପାହାଡ଼ । ନାନା ବନ-ବିହଙ୍ଗର କାକଳୀରେ ଏଇ ପଥ ଚିରମୁଖରିତ ଏବଂ ପର୍ବତର ଛତ୍ରଯୋଗୁ ସର୍ବଦା ଛାୟା ଶୀତଳ ଓ କିଞ୍ଚିତ୍ ଅନ୍ଧକାର । ଆଠମଲ୍ଲିକ ରାଜା ସାହେବଙ୍କ ସୌଜନ୍ୟ ଓ ପ୍ରାଚୁର୍ଯ୍ୟମୟ ଆତିଥ୍ୟ ମୁଁ ବହୁବାର ଭୋଗ କରି ଆସିଛି । କିନ୍ତୁ ମୋ ନିକଟରେ ତାଙ୍କ ଦରବାରର ଶ୍ରେଷ୍ଠ ଉପଭୋଗ୍ୟ ବସ୍ତୁ ହେଉଛି ସାବଲୀଳ ସେଇ ଘାଟି । ସେଇ ଘାଟି ଦେଇ ଯିବାଆସିବା କଲାବେଳେ ବରାବର ଭାବିଥାଏ, ବୈଦ୍ୟୁତିକ ରେଲ ସାହାଯ୍ୟରେ ଯଦି ସେହି ପାହାଡ଼ର ଶିଖର ଦେଶକୁ ସହଜରେ ଯାଇହୁଅନ୍ତା, ଆଉ ସେଠି ଥାଆନ୍ତା ଆରାମଦାୟୀ ନିବାସ, ଏ ଦେଶର ଲୋକେ ବୁଝନ୍ତେ ଇହଜୀବନଟାକୁ କିମିତି ଉପଭୋଗ କରାଯାଇପାରେ । ଇଉରୋପରେ ଏଇପରି ଶତ ଶତ ସ୍ଥାନକୁ ଏଇପ୍ରକାରେ ମନୁଷ୍ୟ-ଭୋଗ୍ୟ କରାଯାଇ ଅର୍ଥ, ସ୍ୱାସ୍ଥ୍ୟ, ବିଳାସର ଲୀଳାସ୍ଥଳୀରେ ପରିଣତ କରାଯାଇଛି ।

## ଯେଉଁଠି ଝଙ୍କୃତ ହୁଏ ବନବିହଗର ସମ୍ମିଳିତ ଅର୍କେଷ୍ଟ୍ରା –

ଗଡ଼ଜାତଗୁଡ଼ିକର ଗେଷ୍ଟ୍ ହାଉସ୍ ବା ଅତିଥିଶାଳାଗୁଡ଼ିକରେ ଚର୍ଚ୍ଚାର ବେଶ୍ ଭଲ ବନ୍ଦୋବସ୍ତ ଥିଲା । କେତେକ ଥିଲେ ପରିପୂର୍ଣ୍ଣ ଇଉରୋପୀୟ ଆଦବକାଇଦାରେ ତିଆରି; ଅବଶ୍ୟ ରେସିଡେଣ୍ଟ ଓ ପଲିଟିକାଲ ଏଜେଣ୍ଟମାନଙ୍କ ସୁବିଧାପାଇଁ ସେସବୁ ହୋଇଥିଲା, ଆମ ତମ ପାଇଁ ନୁହେଁ । ଏପ୍ରକାର ଆଧୁନିକ-ଆଡ଼ମ୍ବରମୟ ବହୁ ଅତିଥିଶାଳାରେ ଚର୍ଚ୍ଚିତ ହୋଇ ଆସିଥିଲେ ମଧ, ମତେ ସବୁଠୁ ଭଲଲାଗିଥିଲା ଛୋଟ ଖଣ୍ଡପଡ଼ା ଷ୍ଟେଟ୍‌ର ଛୋଟ ଗେଷ୍ଟ୍ ହାଉସ୍‌ଟି । ଏଇଟି ଘର ପରି ଛୋଟ, ଆଡ଼ମ୍ବରହୀନ ଏବଂ ଏକାବେଳକେ ଜଙ୍ଗଲର କୋଳରେ ଥୁଆ ଯେପରି ।

ସହରରୁ ଦୁଇମାଇଲ୍ ଦୂର, ସନ୍ଧ୍ୟା ହେଲେ ଏକାବେଳକେ ଜନଶୂନ୍ୟ ଓ ନୀରବ । ରାତ୍ରିରେ ନିଶାଚରଙ୍କ ଉପଦ୍ରବ ଆଶଙ୍କା, କିନ୍ତୁ ପ୍ରଭାତରେ ସେଠି ବାଜିଉଠେ ସହସ୍ର ବନବିହଗର ସମ୍ମିଳିତ ଅର୍କେଷ୍ଟ୍ରା । ତେଣୁ ଖଣ୍ଡପଡ଼ା ଷ୍ଟେଟ୍‌ର ମଧୁରତମ ସ୍ମୃତିରୂପେ ହୃଦୟରେ ରହିଯାଇଛି ସେଇ ଅତିଥିଶାଳାର ଆରଣ୍ୟକ ପରିବେଶ ।

ଢେଙ୍କାନାଳର କପିଳାସ ବା ପାଲଲହଡ଼ାର ମାଲ୍ୟଗିରି, ଗଡ଼ଜାତ-ସୌନ୍ଦର୍ଯ୍ୟ ଲକ୍ଷ୍ମୀଙ୍କର ଦୁଇଟି ପ୍ରସିଦ୍ଧ ନର୍ମ-ନିକେତନ । କିନ୍ତୁ ଯିବି ଯିବି ଭାବି ଏ ଦୁଇଟି ସ୍ଥାନ ଏପର୍ଯ୍ୟନ୍ତ ଦେଖିପାରିନାହିଁ । କିନ୍ତୁ ମୋର ସେଥିପାଇଁ ଶୋଚନା ନାହିଁ । ପ୍ରକୃତିକୁ ଅନୁଭବ ଓ ସମ୍ଭୋଗ କରିବାପାଇଁ ଦୂରତା, ଶ୍ରମ, ଅର୍ଥବ୍ୟୟ ବା କୌଣସି ତୀର୍ଥଯାତ୍ରାର ପ୍ରୟୋଜନ ନାହିଁ । ଘର ପଛଆଡ଼େ ଯେଉଁ ଛୋଟ ନଦୀଟି ନବବଧୂ ପରି ସଲଜ୍ଜ ଅଥଚ କ୍ଷିପ୍ର ପଦକ୍ଷେପରେ ପଳାଇଚାଲିଛି, ତାକୁ ଯେ ଆଦର କରି ଶିଖିନି, ତାର ଦକ୍ଷିଣ ଆମେରିକା ଯାଇ ପୃଥିବୀର ବୃହତ୍ତମ ନଦୀ ଆମେଜନ୍ ବକ୍ଷରେ ବାଷ୍ପୀୟ ପୋତରେ ବିଚରଣ କରି କିଛି ଲାଭ ବା ପ୍ରୟୋଜନ ଅଛି କି ? ଯେଉଁ ଲୋକ ନିଜ କୁଟୀରର ବାରନ୍ଦାରୁ କୃଷ୍ଣାରଜନୀରେ ଅଗଣ ଜ୍ୟୋତିଷ୍କଖଚିତ ବିରାଟ ଗଗନଗମ୍ବୁଜକୁ ଚାହିଁ ଚାହିଁ ସୃଷ୍ଟିର ଅଚିନ୍ତନୀୟ ମହିମାରେ ଅଭିଭୂତ ନହୋଇଛି, ହିମାଳୟର ଅଭ୍ରଂଲିହ ଶ୍ୱେତମୁକୁଟମାଳା ତାର ସ୍ଥୂଳତ୍ୱକ୍ ଉପରେ କିଛି ଅତୀନ୍ଦ୍ରିୟ ସ୍ପର୍ଶ ଆଣିପାରିବ କି ? ମୁଁ ଚାହେଁ ଆମ ଦେଶର ଲୋକେ ଶ୍ରମ ଓ ଅର୍ଥ ବୃଥା ବ୍ୟୟକରି ଦେବତାକୁ ଦେଖିବାପାଇଁ ସୁଦୂର ତୀର୍ଥସ୍ଥଳମାନଙ୍କୁ ଯିବା ଯେପରି ବନ୍ଦ କରିବେ ଓ ଦେବତାକୁ ଦେଖିବାକୁ ଶିଖିବେ ପ୍ରତିବେଶୀ ଠାରେ ବା ଦ୍ୱାରସ୍ଥ ଦରିଦ୍ରନାରାୟଣ ଭିତରେ, ସେହିପରି ମଧ ପ୍ରକୃତିକି ଆଦର କରି ଶିଖିବେ ତା'ର ସାଧାରଣ ଦୈନନ୍ଦିନ ପ୍ରକାଶ, ନିଜ ନିଜର ଆବାସସ୍ଥଳୀର ପରିବେଶ ଭିତରେ । ଦୂର ଜାଗାକୁ ଯାଇ ପ୍ରକୃତି ପ୍ରତି ସମ୍ମାନ ଦେଖାଇବା ଦରକାରନାହିଁ, ଦରକାର ପ୍ରକୃତି ସହିତ ଆତ୍ମୀୟତା । ଏ ଆତ୍ମୀୟତା ଆସିଲେ, ଗଛଟିଏ ଧ୍ୱଂସ କରିବା ପୂର୍ବରୁ ଆମେ ଗଛଟିଏ ପୋତି ବଞ୍ଚେଇବାକୁ ଚେଷ୍ଟା କରନ୍ତେ, ପ୍ରତ୍ୟେକ ଭାରତୀୟର ଗୃହ ବୃକ୍ଷର ଛାୟା ଓ ପୁଷ୍ପର ସୌରଭରେ ଉପଭୋଗ୍ୟ ହୋଇ ରହନ୍ତା ଏବଂ ସମଗ୍ର ଦେଶ ହୋଇଉଠନ୍ତା ଏକ ଉଦ୍ୟାନ, ଯେପରି ହୋଇଛି ଇଂଲାଣ୍ଡ ଓ ଜାପାନ ।

ମୁଁ ଗଡ଼ଜାତର ବା ଓଡ଼ିଶାର ପ୍ରକୃତିକୁ ଏଇପରିଭାବରେ ଦେଖିଆସିଛି—ବିଳାସ ରୂପେ ନୁହେଁ, ଦୈନନ୍ଦିନ ପ୍ରୟୋଜନ ଭାବରେ । ତେଣୁ ସ୍ମୃତିରେ ଜାଗ୍ରତ ରହିଛି ସାମାନ୍ୟ ସାମାନ୍ୟ ସ୍ଥାନ ବା ଦୃଶ୍ୟ ଯେଉଁଠି ମୁଁ ପ୍ରକୃତିର ଆଡ଼ମ୍ବର ନଦେଖିଥିଲେ ମଧ, ପାଇଛି ତା'ର ଘନିଷ୍ଠ ଆତ୍ମୀୟ ସ୍ପର୍ଶ । ସେହି ଆତ୍ମୀୟତା ଯୋଗୁଁ କାଙ୍କେର ଷ୍ଟେଟ୍‌ରେ କୌଣସି ସ୍କୁଲ୍ ଦେଖିଲାବେଳେ ଯେତେବେଳେ ଶୁଣିଲି ଯେ, ନିକଟରେ ମହାନଦୀ ବହିଯାଉଛି, ମୁଁ ଦୌଡ଼ିଥିଲି ତାକୁ ଦେଖିବାକୁ । ଦେଖିବାର କିଛି ନାହିଁ । ସେଠି ମହାନଦୀ କ୍ଷୀଣଶରୀରା, ତାର ସହସ୍ର ସହସ୍ର କ୍ଷୁଦ୍ର ଉପନଦୀ ଭିତରୁ ଗୋଟିଏ ଯେପରି, ଆଉ ଦରିଦ୍ରା ସ୍ତ୍ରୀ ପରି ବେଶଭୂଷଣହୀନା । କିନ୍ତୁ ତାକୁଇ ଦେଖି ପ୍ରାଣ ନାଚିଉଠିଲା । କାରଣ, ସେ ଯେ ମୋରି ମହାନଦୀ, ଅତି ପରିଚିତା, ଅତି ଆତ୍ମୀୟା, ଅତି ନିକଟର, ଅତି ଆପଣାର ଜୀବନ-ଧାରା ।

**ହାତୀ –**

ଗଡ଼ଜାତର ଜାଙ୍ଗଲ ପ୍ରକୃତିକି ଉପଭୋଗ କରିବାପାଇଁ ଜାଙ୍ଗଲବାହନ ହସ୍ତୀହିଁ ପ୍ରକୃଷ୍ଟ । ହାତୀ ଧୀରେ ଚାଲେ, ଆଉ ସମୁଚ୍ଚ ଆସନ ଯୋଗାଇଦିଏ । ତେଣୁ ଧୀରେ ଧୀରେ ଚାରିଆଡ଼କୁ ଅବଲୋକନ କରି କରି ଯିବାର ବିଶେଷ ଅବକାଶ ମିଳେ । ପ୍ରକୃତି ରାଜ୍ୟରେ ପ୍ରକୃତିର ଏଇ ଶାନ୍ତ, ବିରାଟ ଜୀବଟି ଗୋଟିଏ ପୁସ୍ତକର ଗୋଟିଏ ଅଧ୍ୟାୟ ପରି ଅତ୍ୟନ୍ତ ପ୍ରାସଙ୍ଗିକ ବୋଧହୁଏ । ବଣପାହାଡ଼ ଭିତରେ ସେ ଏକ ଚଳିଷ୍ଣୁ ପାହାଡ଼, ଆମରି ସୁବିଧାପାଇଁ ଜଡ଼ ପ୍ରକୃତି ଯେପରି ନିଜଠାରୁ ଖଣ୍ଡେ ଛିଣ୍ଡାଇ ଦେଇ ତାକୁ ଗତିଶୀଳ କରିଦେଇଛି । ମୁଁ ଓଡ଼ିଶା ଓ ଛତିଶଗଡ଼ ଉଭୟତ୍ର ହାତୀରେ ବହୁଦୂର ବୁଲିଛି । ପ୍ରଥମେ ଦୋଳାୟମାନ ହସ୍ତୀପୃଷ୍ଠ, ଶରୀରକୁ ଚାଲିବା କଷ୍ଟରୁ ଅଧିକ କଷ୍ଟ ଦେଇଥାଏ । ଦିନେ ହାତୀରେ ଗଲେ ତହିଁଆରଦିନ ଶେଯରୁ ଉଠିବାର ଶକ୍ତି ନ ଆସିପାରେ । କିନ୍ତୁ କଷ୍ଟ ସତ୍ତ୍ୱେ ଏକ 'ବଡ଼ ଜନ୍ତୁ'ର ଉଚ୍ଚ ପୃଷ୍ଠରୁ ପ୍ରକୃତିକି ଦେଖିବାର ଲୋଭରେ ମୁଁ ବାରମ୍ବାର ଆଗ୍ରହରେ ବସିଥାଏ । ଉଚିତ ପରିମାଣରେ ଗଦି ଓ ହାଉଦା ବାନ୍ଧିଦେଲେ କଷ୍ଟ ଅନେକ କମିଯାଏ । କାବାର୍ଦ୍ଧା ଷ୍ଟେଟ୍‌ର ହାତୀ ଏଇପରି ଭାବରେ ଆରାମଦାୟକ ହୋଇଥିଲା । ସେ ହାତୀ ସଂସ୍କୃତ-କାବ୍ୟବର୍ଣ୍ଣିତ ଜୀବ– ଶୁଣ୍ଢ ଓ ମସ୍ତକ ତା'ର ଥିଲା ଚିତ୍ରିତ, ଦୁଇପାଖରେ ଘଣ୍ଟିର ମଧୁର ଝନତ୍‌କାର, ଉପରେ ଆରାମଦାୟୀ ହାଉଦା । କିନ୍ତୁ ସବୁଠୁ ବୁଦ୍ଧିମାନ ହାତୀ ଦେଖିଛି ମୟୂରଭଞ୍ଜର କପ୍ତିପଦା ଜମିଦାରୀରେ । ଏଇ ହାତୀଟି ଆକାରରେ ଥିଲା ଛୋଟ, କିନ୍ତୁ ଏପରି ସିଆଣିଆ ଯେ, ଆଗରେ ଜାଣିବ ଯଦି ଗଛର କେଉଁ ଡାଳଟା ଯାତ୍ରୀଙ୍କ ମୁଣ୍ଡରେ ବାଜିପାରେ, ତେବେ ସେ ବାଟକାଟି ଯିବ; ଦେଖିବ ଯଦି ଆଗରେ କାଦୁଅ ଅଛି, ତେବେ ଭଲ ରାସ୍ତା ଖୋଜି ବଙ୍କେଇ ଯିବ । କାଠପୋଲ ଇତ୍ୟାଦି ପଡ଼ିଲେ ପ୍ରଥମେ ଗୋଡ଼ରେ ପରୀକ୍ଷା କରିବ ତାହା ଟାଣ ଅଛି କି ନାହିଁ, ତେବେ ଯାଇ ଅଗ୍ରସର ହେବ– ଠିକ୍ ଯେପରି ମନୁଷ୍ୟର ବ୍ୟବହାର । ନୀଳଗିରି ଷ୍ଟେଟ୍‌ରୁ ମୟୂରଭଞ୍ଜର ଉଦଳା ଥାନାକୁ ଗଲାବେଳେ କପ୍ତିପଦାରୁ ଏଇ ହାତୀ ନେଇଥିଲି । ସେ ଏକ ଅଭିଜ୍ଞତା ।

ଶୁଣୁଛି ସରକାରଙ୍କ ଜଙ୍ଗଲ ବିଭାଗ ଆଉ ହାତୀ ପ୍ରତି ଯତ୍ନ ଓ ନଜର ଦେଉନାହାନ୍ତି । ହୁଏତ କାହାର ଉର୍ବର ମସ୍ତିଷ୍କ ଭାବିନେଇଥିବ ସେ ଜୀପିର ଯୁଗରେ ଦ୍ୱିପୀର କୌଣସି ପ୍ରୟୋଜନ ନାହିଁ । କିନ୍ତୁ ମନେରଖିବାକୁ ହେବ ଯେ ହାତୀ ଆମରି ଜଙ୍ଗଲଦତ୍ତ ବାହନ ଏବଂ ଆମ ବଣଜଙ୍ଗଲ ସହିତ ତା'ର ସେ ଆନୁଷଙ୍ଗିକତା, ଆମେ ତା' ବିଦେଶୀ ଜୀପିଠାରୁ ପାଇବା ନାହିଁ । ପୁଣି ବ୍ୟୟସାଧ ତୈଳପାୟୀ ଜୀପ୍‌ଠାରୁ ଡାଳପତ୍ରଖିଆ ହାତୀ ଶସ୍ତା ନୁହେଁ କି ? ହାତୀ ଆମ ପାରମ୍ପରିକତାର ଏକ ଅଙ୍ଗ । ଆମ ସାହିତ୍ୟ, ସଂସ୍କୃତି, ରୂପକଥା ସଙ୍ଗେ ଏକାନ୍ତଭାବେ ଜଡ଼ିତ ଏହି ବିରାଟ ଜୀବକୁ ଆମର ଆଦୌ ଅବହେଳା କରିବା ଉଚିତ ନୁହେଁ, ବରଂ ପ୍ରତ୍ୟେକ ଷ୍ଟେଟ୍ ଓ ଜିଲ୍ଲାରେ ଗୋଟିଏ ଦୁଇଟି ସୁଶିକ୍ଷିତ ହାତୀ ଭଲଭାବରେ ପାଳି ରଖିବା ନିତାନ୍ତ ଉଚିତ । ଅଫିସରମାନଙ୍କ ମଫସଲ ଭ୍ରମଣପାଇଁ ଏହା ଜୀପ୍ ଅପେକ୍ଷା ଶସ୍ତା ଓ ଅଧିକ ସଂଗତ । କେବଳ ଭାରତ ନୁହେଁ, ପୃଥିବୀର ସବୁ ଦେଶର ଶିଶୁମାନଙ୍କର ହାତୀ ଅସୀମ କୌତୂହଳ ଉଦ୍ରେକ କରିଥାଏ । ବିଜ୍ଞ ନେହେରୁ ତେଣୁ ଦେଶଦେଶର ଶିଶୁମାନଙ୍କପାଇଁ ଭାରତରୁ ହାତୀ ପଠାଉଛନ୍ତି; ଆଉ, ଆମେ ଆମରି ସମ୍ପଦକୁ ଅବହେଳା କରିବା ?

---

## ଅଷ୍ଟମ ଅଧ୍ୟାୟ

# ଇନ୍ସପେକ୍ଟରର ଜାତିଗଠନ ଚେଷ୍ଟା

୧୯୪୦ରୁ ୧୯୪୯ ଯାଏ ଦୀର୍ଘ ନ'ବର୍ଷ, ଲେଖକ ଏକପ୍ରକାର ବାଧହେଲା କଟେଇବାକୁ, ସେଇ ଖୋର୍ଦ୍ଧା ସ୍କୁଲ୍-ବେଳର-ସ୍ୱପ୍ନର-ରାଜ୍ୟ, କିଶୋର ଜଗତରେ, ସେହି ପ୍ରାଇମେରୀ ଓ ସେକେଣ୍ଡାରୀ ସ୍କୁଲ୍‌ମାନଙ୍କର ଭିତରେ ଓ ବାହାରେ । ଗୋଟିଏ ହାଇସ୍କୁଲ୍‌ର କିଛିକାଳ ହେଡ଼ମାଷ୍ଟରୀ, ପୁଣି ପୂର୍ବତନ ଗଡ଼ଜାତ ରାଜ୍ୟମାନଙ୍କରେ ଶିକ୍ଷା ପରାମର୍ଶଦାତାର କାମ, ପୁଣି ଉଭୟ ଉତ୍ତର ଓ ଦକ୍ଷିଣ ଓଡ଼ିଶାରେ ସ୍କୁଲ୍ ଇନ୍ସପେକ୍ଟରୀ—ଏସବୁ ବାହାରକୁ ଖଣ୍ଡ ଖଣ୍ଡ ଦେଖାଗଲେ ମଧ୍ୟ ଲେଖକ ପକ୍ଷରେ ଏହା ସମଗ୍ରଭାବରେ ଏକ ଅଖଣ୍ଡ ଆତ୍ମିକ ଅଭିଜ୍ଞତା । କେବଳ ସେତିକି ନୁହେଁ, ପରେ ଲେଖକ ସମ୍ବଲପୁର କଲେଜରେ ସାତବର୍ଷକାଳ ଯାହା ପ୍ରିନ୍ସପାଲ ଭାବରେ କାମ କଲା, ତାହା ମଧ୍ୟ ଥିଲା ଏହି ଅଖଣ୍ଡ ଆତ୍ମିକ ଅଭିଜ୍ଞତାର ଏକ ଅଙ୍ଗାଙ୍ଗୀ ଅଂଶ । ଏ ଦେଶରେ ପ୍ରାଇମେରୀ ଓ ସେକେଣ୍ଡାରୀ ସ୍କୁଲ୍ ଓ କଲେଜକୁ ଆମେ ଖଣ୍ଡ ଖଣ୍ଡ କରି ଦେଖିବାରେ ଅଭ୍ୟସ୍ତ । ସମ୍ବଲପୁର କଲେଜର ପ୍ରିନ୍ସପାଲ ଥିଲାବେଳେ, ସ୍କୁଲ୍ ଓ କଲେଜ ଭିତରେ ଏକ ପରମ ବାଞ୍ଛନୀୟ ଆତ୍ମିକ ଏକତା ଆଣିବାକୁ ମୁଁ କିପରି ସାମାନ୍ୟ ଚେଷ୍ଟା କରିଥିଲି, ତାହା ପରେ ବର୍ଣ୍ଣନା ହେବ । ବର୍ତ୍ତମାନ ଏଡୁକେସନାଲ ଆଡ଼ଭାଇଜର ଓ ଇନ୍ସପେକ୍ଟର ଭାବରେ, ଏ ଦେଶର ଶିକ୍ଷା-ବ୍ୟବସ୍ଥା ଓ ବିଦ୍ୟାନୁଷ୍ଠାନମାନଙ୍କରେ ସାମାନ୍ୟ ପରିବର୍ତ୍ତନ ସୃଷ୍ଟି କରିବା ଲକ୍ଷ୍ୟରେ ମୁଁ କି କି ଚେଷ୍ଟା କରିଥିଲି, ତାହାରହିଁ ସାମାନ୍ୟ ସୂଚନା ଦିଏଁ—ଏ ଅଧ୍ୟାୟରେ ।

ଏସବୁ ବର୍ଣ୍ଣନାର ତାତ୍ପର୍ଯ୍ୟ ଏହା ଯେପରି ନହୁଏ ଯେ ଏହି ଲେଖକ ଶିକ୍ଷା ବିଭାଗର ସମଶ୍ରେଣୀକ ଅନ୍ୟ କର୍ମଚାରୀମାନଙ୍କଠାରୁ ଅଧିକ ବିଦ୍ୱାନ ଓ ନିପୁଣ । ମୋ ପକ୍ଷରେ ଏସବୁ ପ୍ରଚେଷ୍ଟା ଏକାନ୍ତରେ ଥିଲା ମୋର ଦେଶ ଓ ଜାତି ପ୍ରତି, ଦେଶର ଏକ 'ପବ୍‌ଲିକ୍ ସରଭାଣ୍ଟ୍'(ସମାଜ-ଭୃତ୍ୟ) ଭାବରେ ସଚେତନତାର ସାମାନ୍ୟ ବହିଃପ୍ରକାଶ ମାତ୍ର । ତେଣୁ ଏଇ ଲେଖକ ଯେଉଁ ଦୃଷ୍ଟିକୋଣରୁ ଶିକ୍ଷା ବିଭାଗରେ ସର୍ବତ୍ରହିଁ କାମ କରିଆସିଛି ସେହି ଦୃଷ୍ଟିକୋଣ ମାତ୍ରହିଁ ଏଠାରେ ବର୍ଣ୍ଣିତ ହେବାକୁ ଯାଉଛି ।

### ଇଂଲାଣ୍ଡ ଓ ଭାରତବର୍ଷ —

ଇଂରେଜ ପକ୍ଷରେ ଏ ଦେଶ ଥିଲା ଏକ ବିଜିତ ସାମ୍ରାଜ୍ୟ । ସାମ୍ରାଜ୍ୟ-ଶାସନ ଆଉ ସ୍ୱଦେଶ-ଶାସନ ଏକା କଥା ହୋଇନପାରେ । ନିପୁଣ ଓ ଚତୁର ଶାସକ ଇଂରେଜ, ସଭ୍ୟ ଶାସନ ନାମରେ ଯାହା ଯାହା ଏ ଦେଶରେ ଠିଆକରାଇଥିଲା, ସେସବୁ ଭିତରେ ଏକ ସାମ୍ରାଜ୍ୟକୁ ବଞ୍ଚେଇ ରଖିବା ଲକ୍ଷ୍ୟ ବରାବର ଅନ୍ତର୍ନିହିତ ଥିଲା । ଶିକ୍ଷା ବିଭାଗ ମଧ୍ୟ ସେଥିରୁ ବାଦ୍ ଯାଇନଥିଲା ।

ଦୃଷ୍ଟାନ୍ତସ୍ୱରୂପ, ପାଠ୍ୟପୁସ୍ତକକୁ ନିଆଯାଉ । ଇଂଲାଣ୍ଡରେ କୌଣସି ତଥାକଥିତ ଲେଖକ ବା କବି, ପାଠ୍ୟପୁସ୍ତକ ଲେଖି ଓ ସେଥିପାଇଁ ଧରାଧରି କରି ସେଗୁଡ଼ିକୁ ସ୍କୁଲ୍‌ପିଲାଙ୍କ ଉପରେ କୌଣସିମତେ ଲଦି, ଜୀବିକାର୍ଜନର ଉପାୟ କରିବାକୁ ଭାବିବ– ଏହା ଅକଳ୍ପନୀୟ । ଇଂଲାଣ୍ଡର ଶିକ୍ଷା ବିଭାଗ, ବିଭାଗୀୟ ଧୁରନ୍ଧରମାନଙ୍କଦ୍ୱାରା କେବଳ ସିଲାବସ ବା ପାଠ୍ୟକ୍ରମଟି ସ୍ଥିର କରିଦିଅନ୍ତି । ଆମ ଦେଶରେ ଯେପରି ବାସ୍ତବତାହୀନ, ଚିନ୍ତାହୀନ, ଲକ୍ଷ୍ୟ ଓ ଆଦର୍ଶହୀନ ସିଲାବସ ସବୁ ତିଆରି ହୁଏ ସେସବୁ ସେପରି ନୁହେଁ । * ବିଭାଗୀୟ ସିଲାବସ୍ ତିଆରି ସାଥିରେ ଇଂଲାଣ୍ଡର ଶିକ୍ଷା ବିଭାଗ, ସେହି ଅନୁସାରେ ପଢ଼େଇବାପାଇଁ ପ୍ରତି ବିଷୟ ଉପରେ ଶିକ୍ଷକଙ୍କପାଇଁ ଚମତ୍କାର ହାଣ୍ଡବୁକ୍ ମଧ ତିଆରି କରି ବାଣ୍ଟିଥାନ୍ତି –ତା'ଛଡ଼ା ଦପ୍ତରପକ୍ଷରୁ ଶିକ୍ଷା-ସଂପୃକ୍ତ ନାନା ବିଷୟ ଉପରେ ଜ୍ଞାନଗର୍ଭ ବୁଲେଟିନ୍ ସବୁ ବରାବର ପ୍ରକାଶିତ ହୁଏ । ଏପରି ଖଣ୍ଡିଏ ହେଲେ ବୁଲେଟିନ୍ ବା ହାଣ୍ଡବୁକ୍ ଓଡ଼ିଶା ଡି.ପି.ଆଇ. ଅଫିସରୁ ଏପର୍ଯ୍ୟନ୍ତ ବାହାରିନାହିଁ । ଏଠି ଡି.ପି.ଆଇ.ର ଏକ ବଡ଼ କାମ ମହାପାତ୍ର ବା ପାଣିଗ୍ରାହୀଙ୍କ ବହି ପଢ଼େଇବାକୁ ମାଷ୍ଟ୍ରଙ୍କୁ ବାଧ କରାଇବା । ଇଂଲାଣ୍ଡରେ ସେ ଦାୟିତ୍ୱ ପୂରାପୂରି ପ୍ରାଇମେରୀ ବା ସେକେଣ୍ଡାରୀ ସ୍କୁଲ୍ ହେଡ଼ମାଷ୍ଟରର ।

---

* ବିଜୁ ପଟ୍ଟନାୟକଙ୍କ ଉତ୍ସାହରେ ଓଡ଼ିଶାରେ ସିଲାବସ୍ ଓ ପାଠ୍ୟପୁସ୍ତକମାନଙ୍କର ଅଭିବାଦନୀୟ ସଂସ୍କାର-ପ୍ରଚେଷ୍ଟା ଆରମ୍ଭ ହୋଇଛି । ସେଥିରେ ଅଂଶଗ୍ରହଣ କରି ଲେଖକ ଦେଖିଲା ଯେ ପୂର୍ବ-ପ୍ରଚଳିତ ପ୍ରାଇମେରୀ ସିଲାବସ୍‌ର ତାତ୍ପର୍ଯ୍ୟ ତତ୍କାଳୀନ ଡି.ପି.ଆଇ.ଙ୍କ ମୁହଁରେ, ତାଙ୍କ ଅଫିସରଙ୍କ ମୁହଁରେ ଓ ସିଲାବସ୍ କାର୍ଯ୍ୟକାରୀ କରୁଥିବା ପ୍ରାଇମେରୀ-ଶିକ୍ଷକଙ୍କ ମୁହଁରେ ସମ୍ପୂର୍ଣ୍ଣ ଅଲଗା, ଅଲଗା । ଜଣାଗଲା, ଡି.ପି.ଆଇ. ପ୍ରଥମ ଥରପାଇଁ ଆମ ଆଗରେ ସେ ସିଲାବସ୍ ପାଠ କଲେ । ସିଲାବସ୍ ଗଢ଼ିବା, ନା ଅଧସ୍ତନମାନଙ୍କୁ ଉଠେଇବା ପକେଇବା ବା ପୁସ୍ତକ-ବଣ୍ଟନ, ଡି.ପି.ଆଇ.ର ଦକ୍ଷତା ଏ ଦେଶରେ ପ୍ରକୃତ ପରିଚୟ କ'ଣ ?

ଦେଶର ଶିକ୍ଷା ବିଭାଗର କର୍ମଚାରୀମାନେହିଁ ଦେଶରେ ମୌଳିକ ଚିନ୍ତାର ଆଦର୍ଶ ହେବା ଉଚିତ । ଥରେ ଓଡ଼ିଶାର ଏକବେଳର ଆଡ଼ଭୋକେଟ୍ -ଜେନେରାଲ୍‌ଙ୍କ ସହିତ ଗୋଟିଏ ଧର୍ମୀୟ ସଭାରେ ଯୋଗକେନ୍ଦ୍ର ଶିକ୍ଷା ଦେଇଥିଲି କଟକ ନଗରରେ । ସଭାପତି ଥିଲେ ଜଣେ ପ୍ରିନ୍ସପାଲ-ପ୍ରଫେସର ଶ୍ରେଣୀର ଲୋକ, ବର୍ତ୍ତମାନ ଓଡ଼ିଶା ଶିକ୍ଷା ବିଭାଗର ଏକ ମସ୍ତ ବଡ଼ପଣ୍ଡା । କିନ୍ତୁ ତାଙ୍କ ବକ୍ତୃତା ଶୁଣି ଶୁଣି ବନ୍ଧୁ ଆଡ଼ଭୋକେଟ୍ -ଜେନେରାଲ୍ ମୋ କାନରେ କହିଲେ ''ସଭ୍ୟ ଦେଶ ହୋଇଥିଲେ ଏକ ବକ୍ତୃତା ଯୋଗୁଁହିଁ ଏ ଲୋକ ଡିସ୍‌ମିସ୍ ହୋଇଥାନ୍ତା । ଏକ ଶିକ୍ଷା ଅନୁଷ୍ଠାନର ବଡ଼ କର୍ତ୍ତା, ଅଥଚ ଗୁଡ଼ାଏ ନନ୍-ସେନ୍ସ କହିଚାଲିଛି । ଏ କି ଶିକ୍ଷକ ଗଢ଼ିବେ ?'' ମୁଁ ବନ୍ଧୁଙ୍କୁ ଚୁପ୍ କରି କହିଲି–''ତମ ଦେଶର ସବୁଠାରୁ ପ୍ରଭାବଶାଳୀ କାଗଜ ତାଙ୍କ ପଛରେ – ଡିଫେଣ୍ଡର ଅବ୍ ଦ' ଫେଥ୍‌ଫୁଲ । ତେଣୁ ସେ ଅବାଧରେ ନନ୍‌ସେନ୍ସ କହିପାରନ୍ତି ।

କିନ୍ତୁ, ଏହି କି ଏକ ସ୍ୱାଧୀନରାଷ୍ଟ୍ର ଶିକ୍ଷା ବିଭାଗର ଯୋଗ୍ୟ ଚିତ୍ର ? ଏ ଦେଶର ଶିକ୍ଷା ବିଭାଗ ତାର ବଡ଼ ବଡ଼ କର୍ତ୍ତାଙ୍କଠାରୁ ମଧ ମୌଳିକ ଚିନ୍ତା ବା ଚିନ୍ତାର ସ୍ୱଚ୍ଛତା ଆଶାକରେନାହିଁ ? ନିଜର ପକେଟ୍ ଓ ପ୍ରମୋଶନକୁ ଗରମ ରଖିବାହିଁ ଏକମାତ୍ର ଲକ୍ଷ୍ୟ ଓ ଆଦର୍ଶ, ଶିକ୍ଷା ବିଭାଗରେ ମଧ ?

କିନ୍ତୁ ସାମ୍ରାଜ୍ୟଶାସକ ଇଂରେଜ, ଭାରତବର୍ଷର ଶିକ୍ଷା ବିଭାଗରେ ଇଂଲାଣ୍ଡର ଏହି ଗଣତାନ୍ତ୍ରିକ ଆଦର୍ଶ ପ୍ରଚଳିତ କରିନଥିଲେ । ସାମ୍ରାଜ୍ୟ ଶାସକଭାବରେ ତାଙ୍କର ନିତାନ୍ତ ଆବଶ୍ୟକ ଥିଲା ପାଠ୍ୟପୁସ୍ତକକୁ ନିୟନ୍ତ୍ରିତ କରିବା । କାରଣ, ଗୋଟାଏ ଜାତିର ଶିକ୍ଷକମାନେ ପାଠ୍ୟପୁସ୍ତକ ଜରିଆରେ ସେ ଜାତିର ନୂତନ ବଂଶଧରମାନଙ୍କୁ କ'ଣ ନଶିଖେଇ ପାରନ୍ତି ଓ କିପରି ଗଢ଼ିନପାରନ୍ତି ? ନିୟନ୍ତ୍ରିତ ନହେଲେ, ପରାଧୀନ ଜାତିର ଶିକ୍ଷକମାନେ ଟେକ୍‌ସ୍‌ବୁକ୍ ଦେଇ ପ୍ରତି ସ୍କୁଲ୍‌ରେ ବିଦ୍ରୋହୀ ଓ ବିପ୍ଳବୀ ଗଢ଼ିଚାଲିବେ ଅକ୍ଳେଶରେ । ଚତୁର କମ୍ୟୁନିଷ୍ଟମାନେ ଏଥିପାଇଁ ଯେଉଁଠି ଶାସକ-କ୍ଷମତାକୁ ଆସିଛନ୍ତି, ତାଙ୍କର ପ୍ରଥମ କାମ ହେଉଛି ଟେକ୍‌ସ୍‌ବୁକ୍-କଣ୍ଟ୍ରୋଲ୍, ଠିକ୍ ନିଜ ଆଦର୍ଶରେ ନୂତନ ବଂଶଧରଙ୍କୁ ଗଢ଼ିନେବାପାଇଁ, ସମସ୍ତ ପାଠ୍ୟପୁସ୍ତକର କଠୋର ନିୟନ୍ତ୍ରଣ । ଇଂରେଜ, ଭାରତରେ ପାଠ୍ୟପୁସ୍ତକଯାକ ଡି.ପି.ଆଇ.ର ନିୟନ୍ତ୍ରଣରେ ସେଇଥିପାଇଁ ରଖିଥିଲେ, ଯାହାକି ତାଙ୍କ ଇଂଲାଣ୍ଡରେ ଘଟିଲେ ସେଠି ସାଙ୍ଗେ ସାଙ୍ଗେ ବିପ୍ଳବ ହେବା ନିଶ୍ଚିତ ।

ସେହିପରି ମଧ ଇଂରେଜ, ଭାରତବର୍ଷରେ ପ୍ରତିଟି ଡିପାର୍ଟମେଣ୍ଟ ଶାସନ କରୁଥିଲେ ଏକ ଏକ ନିର୍ଦ୍ଦିଷ୍ଟ କୋଡ଼୍‌ଦ୍ୱାରା । ଶିକ୍ଷାବିଭାଗର ମଧ ଏକ କୋଡ୍ ସେମାନେ କରିଥିଲେ । ସେ କୋଡ୍, କାଜୁଏଲ୍ ଲିଭ୍ ବା ସ୍କୁଲ୍ କମିଟିମାନଙ୍କରେ ସାମ୍ପ୍ରଦାୟିକ ପ୍ରତିନିଧିତ୍ୱ ନେଇ ନାନା ନିୟମରେ ଭରପୂର ଥିଲା । କିନ୍ତୁ, ସେଥିରେ କୌଣସିଠାରେ ଆମେ ଦେଖିବାକୁ ପାଇବାନି, ଜାତି-ଗଠକ ଭାବରେ ସ୍କୁଲ୍-ଶିକ୍ଷକର ପ୍ରକୃତ କର୍ତ୍ତବ୍ୟ ଉପରେ କୌଣସି ହେଲେ ସୂଚନା ।

ପରିତାପର କଥା ଏହି ଯେ, ଭାରତବର୍ଷ ସ୍ୱାଧୀନ ହେଲେ ମଧ ଏ ଦେଶର ତଥାକଥିତ ଶିକ୍ଷାବିତ୍‌ମାନେ ସାମ୍ରାଜ୍ୟଶାସନପାଇଁ ବ୍ୟବସ୍ଥା ଓ ସ୍ୱଜାତିଶାସନର ବ୍ୟବସ୍ଥା ଭିତରେ କି ଆତ୍ମିକ ପ୍ରଭେଦ ଥାଇପାରେ– ତା' ଜାଣିପାରୁନାହାନ୍ତି । ସେହି ବ୍ରିଟିଶ୍-ଗଢ଼ା କୋଡ୍ ହିଁ ସ୍ୱାଧୀନ ଭାରତ-ରାଷ୍ଟ୍ରର ଶିକ୍ଷା ବିଭାଗର ବାଇବେଲ୍ ହୋଇ ରହିଛି । ପରିବର୍ତ୍ତନ କେବଳ ହୋଇଛି, ବ୍ରିଟିଶ୍-ଅଧୀନ ବେଳର ନିପୁଣତାର ମାନଦଣ୍ଡକୁ ତଳକୁ ଆଣିବାରେ ଓ ବିଦ୍ୟାନୁଷ୍ଠାନମାନଙ୍କୁ ଗୋରୁ ଗୁହାଳ ଓ ମାଛ ହାଟରେ ପରିଣତ କରିବାରେ । ତା' ନହେଲେ ଆମେ ଯେ ସ୍ୱାଧୀନ ହେଲୁ, ଏହାର ପ୍ରମାଣ କିପରି ଦେବା ? ଆମେ ଏକ ସ୍ୱାଧୀନ, ବଳିଷ୍ଠ, ମୌଳିକ ଚିନ୍ତା-ବିଶିଷ୍ଟ-ଜାତି, ଏହା ପ୍ରମାଣ କରିବାର ଆଉ କିଛି ଉପାୟ ଜଣାଅଛି କି ଆମକୁ ?

ଇଂଲାଣ୍ଡରେ ଇନ୍ସପେକ୍ଟର, ଆମ ଦେଶର ଇନ୍ସପେକ୍ଟର ପରି କେବଳ ହାକିମ ବା ଦୋଷପ୍ରଦର୍ଶକ ଉପରିସ୍ଥ କର୍ମଚାରୀ ନୁହେଁ । ସେ ହେଉଛନ୍ତି ସ୍କୁଲ୍, ସ୍କୁଲ୍‌ଶିକ୍ଷକ ଓ ହେଡ଼୍‌ମାଷ୍ଟରମାନଙ୍କ ବନ୍ଧୁ, ଉପଦେଷ୍ଟା ଓ ପରାମର୍ଶଦାତା । ସେ ଉପରେ ଅଛନ୍ତି, କାରଣ ତାଙ୍କଠାରୁ ହେଡ଼୍‌ମାଷ୍ଟର ଓ ମାଷ୍ଟରମାନେ ଗାଇଡାନ୍ସ, ସୂଚନା, ନୂତନ ଜ୍ଞାନ, ନୂତନ ବୁଦ୍ଧି ପାଇପାରିବେ । ଆମ ଦେଶପରି, ଜୀବନରେ ବାରମ୍ବାର ଫେଲ୍ ଓ ତୃତୀୟ ଶ୍ରେଣୀରେ ପାସ୍ କରି ମଧ ବିଲାତରୁ ଡିପ୍ଲୋମାଟାଏ ଘେନି ଚାଲିଆସିଲେ, ହାଇସ୍କୁଲ୍‌ମାନଙ୍କର ଇନ୍ସପେକ୍ଟର ହୋଇଯିବାର ଯେଉଁ ଦୃଶ୍ୟ ଦେଖାଗଲାଣି, ଏହା ଜାଣିଲେ ସେ ଦେଶର ଶିକ୍ଷାବିତ୍‌ମାନେ ଘୃଣାରେ ନାକରେ ହାତଦେବା ଛଡ଼ା ଆଉ କିଛି କରିବେ ନାହିଁ । ଆମେ କିନ୍ତୁ ଏ ଦୃଶ୍ୟ ବେଶ୍ ସହ୍ୟ କରିଚାଲିଛୁ ଯେପରି ଆମେ କରିଚାଲିଛୁ କଟକର ନର୍ଦ୍ଦମା ଓ ନରକ । ଶିକ୍ଷା ବିଭାଗରେ ଜାତିର ଏପରି ଘୋର ଅନିଷ୍ଟକାରୀ ଅନାଚାର ସବୁ ପୂରାଇ, ଏ ଦେଶର ନେତାମାନେ ସତରେ କ'ଣ ତାଙ୍କର ଅନ୍ତରରେ ବିଶ୍ୱାସ କରନ୍ତି ଯେ ଏ ଦେଶ ଓ ଜାତି ପ୍ରକୃତରେ ଏକ ମହାନ୍ ଜାତି ହୋଇ ଗଢ଼ିହେବ ?

## ଗଠନମୂଳକ ସର୍କ୍ୟୁଲାର –

ଯାହାହେଉ, ପଶ୍ଚିମ ଓଡ଼ିଶାର(ଗଡ଼ଜାତ ଅଞ୍ଚଳ) ଏଡୁକେଶନାଲ ଆଡ଼ଭାଇଜର ପୁଣି ଉତ୍ତର ଓ ଦକ୍ଷିଣ ଓଡ଼ିଶାର ଇନ୍ସପେକ୍ଟର ଭାବରେ ନିଜସ୍ୱ ଏକ କର୍ମପନ୍ଥା ମୁଁ ଅବଲମ୍ବନ କରିଥିଲି । ତାହା ଏହି – ପ୍ରତିକ୍ଷେତ୍ରରେ, ପ୍ରଥମେ ନିର୍ଦ୍ଦିଷ୍ଟ ଅଞ୍ଚଳର ଅନୁଷ୍ଠାନଗୁଡ଼ିକ ଥରେ ଦେଖିଆସେ, ତା' ପରେ ବିଚାର କରେ, କ'ଣ ଦେଖିଲି, କ'ଣ ଅଛି, କ'ଣ ନାହିଁ, କ'ଣ ରହିବା ଉଚିତ । ତା'ପରେ ସେ ସମ୍ପର୍କରେ ଅଧ୍ୟୟନ କରେ । ତା'ପରେ, ଜଣେ ଦି'ଜଣ ସୁନାମବନ୍ତ ଶିକ୍ଷକଙ୍କ ସହିତ କଥାବାର୍ତ୍ତା କରେ, ସେ ବିଷୟରେ । ତା'ପରେ ଯେତେବେଳେ ଶିକ୍ଷା ବା ଶିକ୍ଷାନୁଷ୍ଠାନର କୌଣସି ଏକ ସମସ୍ୟା ଉପରେ କେତେକ ସ୍ପଷ୍ଟ ଧାରଣାରେ ପହଞ୍ଚେ, ସେ ସମ୍ପର୍କରେ ଗୋଟିଏ ଗୋଟିଏ ସର୍କ୍ୟୁଲାର ଦିଏ । ସମଗ୍ର ଓଡ଼ିଶା ରାଜ୍ୟର ପଶ୍ଚିମ, ଦକ୍ଷିଣ ଓ ଉତ୍ତର, ଏଇ ତିନି ଭାଗର ଇନ୍ସପେକ୍ଟର ଥିଲାବେଳେ ସ୍କୁଲ୍‌ମାନଙ୍କର ତଦାନୀନ୍ତନ ଅବସ୍ଥା ଓ ପରିବେଶରେ ଯାହା ଯାହା କରଣୀୟ ମନେକରିଛି, ଏହି କ୍ରମରେ ସେଗୁଡ଼ିକ ଉପରେ ଅନେକ ସର୍କ୍ୟୁଲାର ଦେଇଛି । ଉତ୍ତର ଓଡ଼ିଶାର ଇନ୍ସପେକ୍ଟର ଥିଲାବେଳେ ବେସିକ୍ ସିଷ୍ଟମ ବିଷୟରେ ବିଭିନ୍ନ ଦୃଷ୍ଟିକୋଣରୁ ପତ୍ରପତ୍ରିକାରେ ଆଲୋଚନା କରିବାରୁ, ଦଣ୍ଡସ୍ୱରୂପ, ଇନ୍ସପେକ୍ଟର ପଦରୁ ତଡ଼ାଖାଇ ପ୍ରିନ୍ସପାଲ ରୂପେ ପଠାହେଲି । କିନ୍ତୁ ବେସିକ୍ ପଦ୍ଧତିର ମଧ୍ୟ ଭଲ ଅଂଶଗୁଡ଼ିକ ପୂର୍ବ ସ୍କୁଲ୍‌ମାନଙ୍କରେ କିପରି ବିନା ଖର୍ଚ୍ଚରେ ପ୍ରବର୍ତ୍ତିତ କରାଯାଇପାରିବ, ସେଥିପାଇଁ ଗାନ୍ଧିବାଦିମାନଙ୍କର ଅନ୍ଧ ବୁଝାମଣାର ବହୁ ଆଗରୁ, ଏକ ସର୍କୁଲାର ସମଗ୍ର ଉତ୍ତର ଓଡ଼ିଶାରେ ଜାରି କରାଇ ସାରିଥିଲି । ଏଇ ସର୍କ୍ୟୁଲାର ଓ ଏଇପରି ଆଉ ଅନେକ ସର୍କ୍ୟୁଲାର, ପରେ 'ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ' ପୁସ୍ତକରେ ପ୍ରକାଶିତ କରିଦେଇଛି ଓ ସେହି ପୁସ୍ତକଟି ବାରମ୍ବାର ସଂସ୍କରଣ ନେଉଥିବାରୁ ସେହି ଚିନ୍ତାଧାରା ଜନପ୍ରିୟତା ପାଇବା ପ୍ରମାଣିତ ହେଉଛି । ଶିକ୍ଷାସମ୍ପର୍କିତ ସର୍କ୍ୟୁଲାରଗୁଡ଼ିକର ଏ ଜନପ୍ରିୟତା– ଯାହାହେଉ ଆଶାର ଏଇ ବର୍ତ୍ତିକା ବଞ୍ଚାଇରଖିଛି ଯେ, ଜାତିର ଆତ୍ମା ଏକାବେଳକେ ଜଡ଼ ବା କଳୁଷିତ ହୋଇଯାଇନି – ଭଲ କଥାର ପ୍ରତିଧ୍ୱନି ଏବେ ବି ସେଠାରେ ବାଜୁଛି ।

ଶିକ୍ଷା ବିଭାଗ କହ ବା ଯେଉଁ ବିଭାଗ କହ ଆଜି ଦେଶରେ କେବଳ ଧରାବନ୍ଧା ଫାଇଲ-ଦୋରସ୍ତି-ନିପୁଣତାର ମହୋତ୍ସବ ଚାଲିଛି । କିନ୍ତୁ ନାଲିଫିତା କେଉଁଠି ଜାତି ଗଢ଼ିଲାଣି କି ? ଯେଉଁ ଲୋକେ ଜୀବନରେ କେବେହେଲେ ମୌଳିକ ଚିନ୍ତା କରିବାର ଜଣାଯାଇନାହିଁ ତାଙ୍କୁ ଡିପାର୍ଟମେଣ୍ଟ୍‌ର ହାକିମ ବନେଇଦେଲେ କି'ଣ, ମ୍ୟାଜିକ୍ ପରି ତାଙ୍କ ବ୍ୟକ୍ତିତ୍ୱର ପରିବର୍ତ୍ତନ ଘଟିଯିବ ଓ ସେ ଦେଶକୁ ସାଙ୍ଗେ ସାଙ୍ଗେ ଗଢ଼ିବାକୁ ଆରମ୍ଭ କରିବେ ? ଏ ଦେଶର ଲୋକପ୍ରତିନିଧିଗଣ ସତରେ କ'ଣ ଏଇ ହଟଚମଟରେ ବିଶ୍ୱାସ କରନ୍ତି ?

## ବିଦ୍ୟାନୁଷ୍ଠାନରେ ଡିସିପ୍ଲିନ୍ –

ଏକ ବଳିଷ୍ଠ, ଗରୀୟାନ, ମହିମମୟ ଜାତି ମୋର ଗଢ଼ିଉଠୁ, ଏହାହିଁ ମୋର ଏକାନ୍ତ କାମନା ଜୀବନବ୍ୟାପୀ ରହିଆସିଛି । ଶିକ୍ଷକ ଓ ଶିକ୍ଷାବିତ୍ ଭାବରେ ମୋର ଅଧିକାଂଶ କାମ, ଚିନ୍ତା, ନିର୍ଦ୍ଦେଶ ଓ ପ୍ରତିରୋଧ ମଧ୍ୟ ସେହି ଏକ ଲକ୍ଷ୍ୟରୁହିଁ ଘଟିଆସିଛି । ସେହି ସାଧନାର

ଦୃଷ୍ଟାନ୍ତସ୍ୱରୂପ ଏଠାରେ ଉତ୍ତର ଓଡ଼ିଶାର ଇନ୍‌ସପେକ୍ଟରଭାବରେ ଦେଇଥିବା ବହୁ ସର୍କ୍ୟୁଲାରମାନଙ୍କ ଭିତରୁ ଗୋଟିଏ ଏଯାବତ୍-ଅପ୍ରକାଶିତ ସର୍କ୍ୟୁଲାରର ଅନୁବାଦ ଏଠାରେ ଦେଉଛି ।

ନଂ ୭୭୭୬(୮୪) ଅଗଷ୍ଟ ୧୨, ୧୯୪୯, ଉତ୍ତର ସର୍କଲର ଇନ୍‌ସପେକ୍ଟରଙ୍କଠାରୁ–

ସବୁ ହାଇସ୍କୁଲ୍ ହେଡ଼ମାଷ୍ଟର ଓ ଜିଲ୍ଲା ଇନ୍‌ସପେକ୍ଟରମାନଙ୍କୁ ।

ବିଷୟ– ଶିକ୍ଷାନୁଷ୍ଠାନ ଓ ଛାତ୍ରମାନଙ୍କ ମଧ୍ୟରେ ବିନୟ (ଡିସିପ୍ଲିନ୍)ର ଅଭ୍ୟାସ ।

ମୋର ପୂର୍ବବର୍ତ୍ତୀ ସର୍କ୍ୟୁଲାରଗୁଡ଼ିକରେ ମୁଁ ଆପଣମାନଙ୍କୁ ବରାବର ନିବେଦନ କରିଆସୁଛି ଯେ, ଆପଣମାନେ ଆମର ଶିକ୍ଷାନୁଷ୍ଠାନଗୁଡ଼ିକୁ କେବଳ 'ପରୀକ୍ଷା -ପାସ୍‌ର- କେନ୍ଦ୍ରମାତ୍ର' ବୋଲି ଧାରଣା କରିବା ବନ୍ଦକରନ୍ତୁ । ସ୍ୱାଧୀନ ଭାରତରେ, ପ୍ରାଇମେରୀ ସ୍କୁଲ୍‌ଠାରୁ କଲେଜ ପର୍ଯ୍ୟନ୍ତ ସକଳ ବିଦ୍ୟାପୀଠକୁ 'ନାଗରିକ-ଗଠନ-କେନ୍ଦ୍ର'ଛଡ଼ା ଅନ୍ୟ କିଛି ବୋଲି ମନେକରିବା ଉଚିତ ନୁହେଁ । ମୋର ପୂର୍ବବର୍ତ୍ତୀ ସର୍କ୍ୟୁଲାର; ଯେଉଁଥିରେ ବିଦ୍ୟାଳୟମାନଙ୍କରେ ବେସିକ୍ ପଦ୍ଧତିର ଉତ୍କୃଷ୍ଟାଂଶ କିପରି ପ୍ରବର୍ତ୍ତିତ ହୋଇପାରିବ ବୋଲି ମୁଁ ନିର୍ଦ୍ଦେଶ ଦେଇଛି, ସେଥିରୁ ମୁଁ ଆପଣମାନଙ୍କ ସମ୍ମୁଖରେ ଉତ୍ପାଦନଶୀଳ, ଅପରିଚ୍ଛନ୍ନତା ଘୃଣାକରୁଥିବା ଓ ଶ୍ରମ ଓ ସୌନ୍ଦର୍ଯ୍ୟ ପ୍ରତି ସଶ୍ରଦ୍ଧଥିବା ଏକ ନୂତନ ନାଗରିକ ସମାଜର ଆଦର୍ଶ ଠିଆକରାଇଛି ।

କିନ୍ତୁ ବିନା ନିୟମ ଶୃଙ୍ଖଳାରେ କୌଣସି ଆଦର୍ଶ ଲବ୍ଧ ହେବନାହିଁ କି କୌଣସି ଶିକ୍ଷା ସମ୍ଭବ ହେବନାହିଁ । ଆଜି ଏ ଦେଶରେ ଡିସିପ୍ଲିନ୍‌ର କଥା ଚାରିଆଡ଼େ କୁହାଯାଉଛି । ତାହାହିଁ ସୂଚନା ଦିଏ, ଏ ଦେଶରେ ସେହି ପରମ ବାଞ୍ଛନୀୟ ଗୁଣର ଘୋର ଅଭାବ । ଆମର ଭବିଷ୍ୟତ ନାଗରିକମାନଙ୍କ ଚରିତ୍ରରେ ଏଇ ଗୁଣର ସଂଗଠନପାଇଁ ଶିକ୍ଷାନୁଷ୍ଠାନମାନଙ୍କଠାରୁ ଉତ୍ତମତର କ୍ଷେତ୍ର ଆଉ ଥାଇପାରେ କି ?

ମୁଁ ତେଣୁ ଆପଣମାନଙ୍କର ସ୍କୁଲ୍ ଓ ହଷ୍ଟେଲ୍‌ମାନଙ୍କରେ ଆପଣମାନେ କିପରି ବିନୟ, ଶୃଙ୍ଖଳା ଓ ନିୟମର ଏକ ବାତାବରଣ ସୃଷ୍ଟି କରିପାରିବେ, ସେଇ ଲକ୍ଷ୍ୟରେ ଆପଣମାନଙ୍କୁ କେତେକ ସୂଚନା ଦେବାକୁ ଯାଉଛି–

୧ । ଦେଖିବେ, ଯେଉଁଠି ପିଲାଏ ଏକାଠି ହେଲେ ସେଠି ସେମାନେ ବିଶୃଙ୍ଖଳା, ଗୋଳମାଳକାରୀ ଜନତା ପରି ବ୍ୟବହାର ନ କରି, ସେମାନେ ଆପେ ଆପେ ଯେପରି 'କ୍ୟୁ' କରି (ଏକ ପରେ ଏକ) ଠିଆ ହୁଅନ୍ତି ଓ କେହି କାହାକୁ ଠେଲିଦେଇ ଆଗକୁ ଯିବାର ବା ନିଜ କାମଟା ଆଗ କରିଯିବାର ଚେଷ୍ଟା ନ କରନ୍ତି । ଲାଇବ୍ରେରି, କ୍ଲାସ୍‌ରୁମ୍, ଗାଧୁଆ ସ୍ଥାନ, ଖାଇବାଘର, ଖେଳପଡ଼ିଆ–ସର୍ବତ୍ର ପିଲେ ଏଇପରି ସଂଯତ, ସୁଶୃଙ୍ଖଳ ବ୍ୟବହାରରେ ଯେପରି ଅଭ୍ୟସ୍ତ ହୁଅନ୍ତି, ତା' ଦେଖିବେ ।

୨ । ଦେଖିବେ, ଯେପରିକି ଶ୍ରେଣୀରେ, ହଷ୍ଟେଲ୍‌ରେ, ରୋଷାଇଘରେ ଓ ଏପରିକି ଖେଳପଡ଼ିଆରେ ପ୍ରତ୍ୟେକ ପିଲା ସମ୍ପୂର୍ଣ୍ଣ ଭାବରେ ନୀରବରହିହିଁ କାମ କରୁଛି । କାମ ପରିବର୍ତ୍ତରେ ବା କାମ କରୁ କରୁ ପାଟି କରିବା, ଏକ ଘୋର ଭାରତୀୟ ଦୁରଭ୍ୟାସ । ପାଞ୍ଚହଜାର ଇଂରେଜ ଏକତ୍ର ଥିଲେ ଟୁଣ୍ ଶବ୍ଦ ହେବନାହିଁ । କିନ୍ତୁ ପାଞ୍ଚଟି ଭାରତୀୟ ଏକାଠି ହୋଇଗଲେ, ସେମାନଙ୍କର

ପାଟିତୁଣ୍ଡରେ ପ୍ରତିବେଶୀର ପ୍ରାଣ ଅସହ୍ୟ ହୋଇଉଠିବ। ନିଜ କାମଟିକୁ ସଂପୂର୍ଣ୍ଣ ଧ୍ୟାନ ଦେଇ ଓ ସଂପୂର୍ଣ୍ଣ ନୀରବତାର ସହିତ କରିବା ପ୍ରତ୍ୟେକ ନାଗରିକର ପ୍ରଧାନ ଶିକ୍ଷା ହେବା ଉଚିତ। ଏଇ ବେଳୁ ପିଲାଙ୍କୁ ଶିଖାଅ ଯେ, କୌଣସିଠାରେ ହେଲେ ପାଟିକରି କଥା କହିବା ଆଗରୁ, ସେମାନେ ଚାରିପାଖେ ଥିବା ଅନ୍ୟମାନଙ୍କ କଥା ବିଚାରକୁ ଆଣିବେ – କାଳେ ଅନ୍ୟମାନଙ୍କ କାମରେ ବାଧା ଆସୁଛି କି ନା, ବିଚାରିବାକୁ।

୩। ସ୍କୁଲ୍ ବା ହଷ୍ଟେଲ୍‌ରେ ଧନୀ ଓ ଦରିଦ୍ର ପିଲେ ସମ୍ପୂର୍ଣ୍ଣ ସମାନଭାବରେ ଯେପରି ରହନ୍ତି ତା' ଦେଖିବେ। ଧନୀ ପିଲାଏ ହଷ୍ଟେଲ୍ ବା ସ୍କୁଲ୍‌ରେ ତାଙ୍କ ଧନର ପ୍ରଭାବ ଯେପରି ଆଦୌ ଦେଖାଇବାକୁ ଅବକାଶ ନ ପାଆନ୍ତି ଯଥା– ଅଲଗା ଖାଦ୍ୟ କରି ଖାଇବା, ସିଲ୍‌କ ପିନ୍ଧିବା, ଜୋତା ଓ ସାଇକେଲ୍ ବ୍ୟବହାର କରିବା ଇତ୍ୟାଦି।

୪। ବିଦ୍ୟାନୁଷ୍ଠାନର ଆତ୍ମିକ ଐକ୍ୟପାଇଁ ମୁଁ ଚାହେ ଯେ ସବୁ ପିଲେ ଗୋଟିଏପ୍ରକାର ପୋଷାକ ବ୍ୟବହାର କରିବେ; ଯେପରି ଅନ୍ୟ ଦେଶମାନଙ୍କରେ କରନ୍ତି। ଭାରତୀୟ ପରିବେଶକୁ ଖାପଖାଇଲା ପରି ମୁଁ ତିନୋଟି ପ୍ରସ୍ତାବ ଏ ଦିଗରେ ଦେଉଛି। ଆପଣ ଯେକୌଣସିଟିକି ବାଛି ନେଇପାରନ୍ତି–

(୧) ସମସ୍ତଙ୍କପାଇଁ କେବଳ ଧୋତି ଓ ଚାଦର

(୨) ସମସ୍ତଙ୍କପାଇଁ କେବଳ ଧୋତି ଓ ପଞ୍ଜାବି

(୩) ସମସ୍ତଙ୍କପାଇଁ କେବଳ ହାଫ୍‌ପ୍ୟାଣ୍ଟ୍ ଓ ହାଫ୍‌ସାର୍ଟ

(ନୋଟ୍–ଧୋତି ସାଥିରେ ସାର୍ଟ ବ୍ୟବହାର ଉଚିତ ନୁହେଁ। ସାର୍ଟଟା ଇଉରୋପୀୟ ଡ୍ରେସ୍‌ର ଅଂଶ ଓ ତାହାର ନିମ୍ନାଂଶ ଶରୀରର ମଧ୍ୟଦେଶକୁ ଢାଙ୍କିବାପାଇଁ ଉଦ୍ଦିଷ୍ଟ। ତାହା ବହିର୍ବସ୍ତ୍ର ନୁହେଁ। ତା'ଛଡ଼ା ସାର୍ଟର କଲାର ଠିକ୍ ରଖିବା ପାଇଁ ପ୍ରତ୍ୟହ ଇସ୍ତ୍ରି ଦରକାର। ମୋଚାକୋଚା କଲାରବାଲା ସାର୍ଟ ପିନ୍ଧିବା ସଭ୍ୟତାର ଚିହ୍ନ ନୁହେଁ। ଅନ୍ୟପକ୍ଷରେ ଧୋତି ଓ ପଞ୍ଜାବି ବା ଚାଦର ଅତି ସହଜରେ ଧୋଇହେବ ଓ ସେସବୁ ଇସ୍ତ୍ରି ଦର୍କାର କରନ୍ତି ନାହିଁ। ତେଣୁ ସ୍କୁଲ୍‌ମାନଙ୍କରେ ଧୋତି -ପଞ୍ଜାବି-ଚାଦର ପ୍ରବର୍ତ୍ତନ ଅଧିକ ଯୁକ୍ତିଯୁକ୍ତ।)

୫। ଶିକ୍ଷକମାନେ ମଧ୍ୟ ଭଲ ଡ୍ରେସ୍‌ରେ ଥିବା ଉଚିତ। ଢିଲାମିଲା ମୋଚାକୋଚା ମଇଳା ପୋଷାକ ଅଶିକ୍ଷା ଓ ଅନିପୁଣତାର ପରିଚୟ ଦିଏ। ଅଳ୍ପ ବ୍ୟୟରେ ଭାରତୀୟ ଶିକ୍ଷକପାଇଁ ଉତ୍ତମ, ମର୍ଯ୍ୟାଦାବନ୍ତ ପୋଷାକ ହେବ–ଧୋତି ଓ ଏକ ଲମ୍ବା ଗଳାବନ୍ଦ କୋଟ୍ ଓ ହଳେ ଚପଲ।

୬। ଶିକ୍ଷକ ପିଲାଙ୍କୁ ନଖାଇବାପାଇଁ ଉପଦେଶ ଦେଇ ନିଜେ ପିକା ବା ପାନ ଖାଇବା ଆଦୌ ଉଚିତ ନୁହେଁ।

୭। ଶିକ୍ଷକ ତାଙ୍କର କର୍ମ ଓ ବଚନରେ ଶୃଙ୍ଖଳାବନ୍ତ ଓ ମର୍ଯ୍ୟାଦାବନ୍ତ ରହିବେ। ଶିକ୍ଷକଙ୍କ ପୋଷାକ ପରିପାଟିସଂପନ୍ନ ଓ ପରିଷ୍କୃତ ରହିବା ଉଚିତ। ପଢ଼ାଇଲାବେଳେ ଅକାରଣ ଉଚ୍ଚପାଟି କରିବା ମଧ୍ୟ ତାଙ୍କର ଉଚିତ ନୁହେଁ।

୮ । ବିଦ୍ୟାନୁଷ୍ଠାନମାନଙ୍କରେ ଶିକ୍ଷକ ଓ ଛାତ୍ରର ସମ୍ବନ୍ଧ ପ୍ରାଚୀନ ଭାରତୀୟ ଆଦର୍ଶରେ ପ୍ରତିଷ୍ଠିତ ହେବା ଉଚିତ । ଶିକ୍ଷକ ପ୍ରତିଛାତ୍ର ପ୍ରତି ପିତା ଓ ବଡ଼ ଭାଇ ପରି ହେବେ ଓ ସେହିପରି ବ୍ୟବହାର କରିବେ ।

୯ । ଶିକ୍ଷକ ବରାବର କୌଣସି ନା କୌଣସି ଫଳପ୍ରସୂ କର୍ମରେ ନିଜକୁ ନିୟୋଜିତ ରଖିବେ, ଯେପରିକି ଛାତ୍ରମାନଙ୍କ ଆଖିରେ ସେ କର୍ମନିଷ୍ଠାର ଏକ ପ୍ରତ୍ୟକ୍ଷ ଆଦର୍ଶ ହୋଇ ରହିବେ ।

୧୦ । ଶିକ୍ଷକ କସ୍ମିନକାଳେ ତାସ-ପଶାଦି ଅକାରଣ-ସମୟ-ନଷ୍ଟକାରୀ ବ୍ୟସନରେ ନିଜକୁ ନିୟୋଜିତ କରିବେନାହିଁ । ପିଲାଙ୍କ ପକ୍ଷରେ ଏହା ଏକ ମାରାତ୍ମକ ଆଦର୍ଶ । ଇତି –

ମାୟାଧର ମାନସିଂହ ।

କେବଳ ସର୍କ୍ୟୁଲାର ଦେଲେ କି ହେବ – ପ୍ରତ୍ୟକ୍ଷ ଆଦର୍ଶ ଚାହି । ଏଇ ଲକ୍ଷ୍ୟରେ ମୁଁ ଓଡ଼ିଶାର ଆଦର୍ଶ ଶିକ୍ଷକମାନଙ୍କର ଏକ ଜୀବନୀମାଳା ପ୍ରକାଶ କରିବାକୁ ଚେଷ୍ଟାକରି, ଚାରିଆଡ଼େ ସର୍କ୍ୟୁଲାର [ନଂ ୫୦୩୮(୪), ତା ୨୨/୬/୧୮୯୬] ଦେଇଥିଲି । କିନ୍ତୁ ଏ ଦିଗରେ କିଛି ଘଟିବା ପୂର୍ବରୁ ମୁଁ ଇନ୍ସପେକ୍ଟର ପଦରୁ ତଡ଼ାଖାଇଗଲି ।

ଆଜି ମଧ୍ୟ ଭାବୁଛି ଯେ ଏପରି ଏକ ଜୀବନୀମାଳାର ପ୍ରକାଶ ଏକାନ୍ତ ଉଚିତ । ଆଉ ଶିକ୍ଷା ବିଭାଗହିଁ, ତାର ନିଜର ନୈପୁଣ୍ୟ ଓ ଆଦର୍ଶପାଇଁ ଏପରି ଏକ ଜୀବନୀମାଳାର ଆୟୋଜନ କରିବା ଉଚିତ ।

## ସ୍କୁଲ୍ ଓ ଜୀବନ –

କିନ୍ତୁ ଏଇ ସବୁ ସର୍କ୍ୟୁଲାର ଲେଖକ ଉତ୍ତର ଓଡ଼ିଶା ଇନ୍ସପେକ୍ଟର ଥିଲାବେଳେ ବିଶେଷ ଭାବରେ ପ୍ରଚାରିତ ହୋଇଥିଲେହେଁ ସେଗୁଡ଼ିକର ଚିନ୍ତା ଓ କଳ୍ପନାଗୁଡ଼ିକ, ବହୁକାଳ ଧରି ଗଢ଼ି ଉଠିଥିଲା । ଏଡୁକେଶନାଲ ଆଡ଼ଭାଇଜର ଥିଲାବେଳେ ମଧ୍ୟ ମୁଁ ଅନେକ ସର୍କ୍ୟୁଲାର ଦେଇଥିଲି । ମନେପଡୁଛି, ଏଇ ଆଦର୍ଶ-ଶିକ୍ଷକ-ଜୀବନୀମାଳାର ଚେଷ୍ଟା ସେଠି ବି କରିଥିଲି । ସେସବୁର ଶେଷ ପରିଣତି ଘଟିଛି ଉତ୍ତର ଓଡ଼ିଶାର ଇନ୍ସପେକ୍ଟର ଭାବରେ ଇସୁ କରିଥିବା ସର୍କ୍ୟୁଲାର ଗୁଡ଼ିକରେ । ଆଡ଼ଭାଇଜର ଥିଲାବେଳେ ଗଡ଼ଜାତମାନଙ୍କରେ ଆତ୍ମନିର୍ଭର ପ୍ରାଇମେରୀ-ସ୍କୁଲ୍, ପ୍ରାଚୀନ ଚାଟଶାଳୀ ସହିତ ଆଧୁନିକ ପ୍ରାଇମେରୀ ସ୍କୁଲ୍‌ର ମିଶ୍ରଣ ଓ ସ୍କୁଲଗୁଡ଼ିକର ଗ୍ରାମ୍ୟ କୃଷକର ଜୀବନ ସହିତ ସାମଞ୍ଜସ୍ୟ ବିଧାନପାଇଁ ମଧ୍ୟ ମୁଁ ଚେଷ୍ଟା କରିଥିଲି । ଏବେ ବି ଢେଙ୍କାନାଳ ଓ ନୀଳଗିରି ପ୍ରଭୃତି କୌଣସି କୌଣସି ପୂର୍ବ-ଗଡ଼ଜାତ ଅଞ୍ଚଳରେ ଲେଖକ-ପ୍ରଚଳିତ 'ଧାନବୁଣା' ଓ 'ଧାନକଟା' ଛୁଟି ପ୍ରଚଳିତ ଥିବାର ଶୁଣେ । ଲେଖକର ଦୃଢ଼ମତ ଯେ ପ୍ରତ୍ୟେକ ସ୍କୁଲ୍‌ପିଲା ତା ବାପାକୁ ତା'ର କୌଳିକବୃତ୍ତିରେ ସାହାଯ୍ୟ କରିବ । କେବଳ ସେହି ସୂତ୍ରରେ ହିଁ ଆମ ଦେଶର ଶିକ୍ଷିତ ଲୋକମାନଙ୍କର ଶାରୀରିକ ଶ୍ରମପ୍ରତି ଘୃଣା କଟିବ । ବାପ-ଦାଦି ଆଣ୍ଠୁଏ ପଙ୍କରେ ଧାନ ରୋଉଥିଲାବେଳେ, ପୁଅ-ପୁତୁରା ଯାଇଁ ଶୁଖିଲା ଗୋଡ଼ରେ ପ୍ରାଇମେରୀ ସ୍କୁଲ୍‌ରେ ହାଫ୍-ପ୍ୟାଣ୍ଟ ପିନ୍ଧି ବ୍ୟାୟାମ୍ ଶିଖିବ ଓ ଗଳ୍ପକଥନ ଶୁଣିବ, ଏହା ଏକ ନିତାନ୍ତ ଅଯୌକ୍ତିକ ଓ ଅସ୍ୱାସ୍ଥ୍ୟକର ଶିକ୍ଷାବ୍ୟବସ୍ଥା । ଏହା କେବେହେଲେ ଜାତି ବା ବ୍ୟକ୍ତିର କଲ୍ୟାଣଜନକ ହୋଇ ନପାରେ । ସେଇଥିପାଇଁ ଏଇ ଲେଖକ ସ୍କୁଲମାନଙ୍କ ଛୁଟି ତାଲିକାକୁ ନୂଆ କରି ଗଢ଼େଇ ଗଡ଼ଜାତମାନଙ୍କରେ ଚଳାଇଥିଲା । ମୋର ବିନୀତ ମତ ଏହି ଯେ, ଏପ୍ରକାର ପରିବର୍ତ୍ତିତ ଛୁଟି ବ୍ୟବସ୍ଥା ଏ ରାଜ୍ୟର

ସର୍ବତ୍ର ପ୍ରଚଳିତ ହେବା ଉଚିତ । ଏଡୁକେଶନାଲ ଆଡ଼ଭାଇଜର ଥିଲାବେଳେ ଶୁଣିଛି– ଏହାଦ୍ୱାରା ଧାନ ରୋଇବା ଓ କାଟିବାକୁ ଯାଇ ଅନେକ ଦରିଦ୍ର ଛାତ୍ର ବେଶ୍ ରୋଜଗାର କରିପାରିଥିଲେ ଯେପରି ଇଂଲାଣ୍ଡ ଓ ଆମେରିକାରେ ଗରିବ ପିଲାଏ ଛୁଟିରେ ରୋଜଗାର କରିଥାନ୍ତି । ପୁଣି ଅନେକ କୃଷକ ଅଭିଭାବକ ନିଜ ପିଲାଙ୍କୁ ଠିକ୍ ବେଳେ ଖେତ ଉପରେ ପାଇବାରୁ, ଅନେକ ମୂଲ-ଖର୍ଚ୍ଚରୁ ରକ୍ଷା ପାଇଥିଲେ । ଏଇଭାବରେ ଉପକୃତ ଲୋକଗୁଡ଼ିକ କେବେ ଦେଖାନଥିବା 'ଇସ୍କୁଲ୍-ସାହେବ'କୁ ଆଶୀର୍ବାଦ କରିଥିବାର, ଲେଖକ ଏକାଧିକ ସ୍ଥାନରେ ଶୁଣିବାକୁ ପାଇଥିଲା ।

## ସଂସ୍କୃତ ଓ ସଂସ୍କୃତି –

ଏହି ଲକ୍ଷ୍ୟରେ ମୁଁ ପ୍ରାଇମେରୀ ସ୍କୁଲ୍‌ଗୁଡ଼ିକ ହୁଏତ ସକାଳେ ବା ଉପରଓଳି ବସିବାର ସର୍କ୍ୟୁଲାର ମଧ୍ୟ ଦେଇଥିଲି ଯେପରିକି, ଖାଲି ଓଳିଟା ପିଲେ କୌଳିକବୃତ୍ତି ଶିଖିବାରେ ଦେଇପାରିବେ । ଏହାର ଦଶବର୍ଷ ପରେ, ମାଡ୍ରାସର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀରାଜଗୋପାଳାଚାରୀ ଠିକ୍ ଏଇ ବ୍ୟବସ୍ଥା ପ୍ରବର୍ତ୍ତିତ କରିବାକୁ ଚାହିଁଥିଲେ । କିନ୍ତୁ ବ୍ରାହ୍ମଣ-ବିରୋଧୀ ମାଡ୍ରାସୀଜନତା ଚିତ୍କାର କରିଉଠିଥିଲେ, ଚତୁର ରାଜଗୋପାଳାଚାରୀ ଏହାଦ୍ୱାରା ବୋଧହୁଏ କାଷ୍ଟ-ସିଷ୍ଟମର ଓ ତା' ଦେଇ ବ୍ରାହ୍ମଣ୍ୟପ୍ରାଧାନ୍ୟ କିପରି କାଏମ୍ ରହିବ, ତାହାରି ବ୍ୟବସ୍ଥା କରୁଛନ୍ତି । ଶିକ୍ଷାବିତ୍‌ଭାବରେ ମୁଁ କିନ୍ତୁ କହିବି, ଏହା ଥିଲା ଏକ ଭ୍ରାନ୍ତ ବିରୋଧ । ହୁଏତ ମାଡ୍ରାସରେ ତାହା ଅବ୍ରାହ୍ମଣ ଜନତାର ବହୁ ତିକ୍ତ ଅଭିଜ୍ଞତାର ପରିଣତି ହୋଇଥିବ । ମୁଁ କିନ୍ତୁ ଅନ୍ତରର ସହିତ ଚାହେ, ପ୍ରତ୍ୟେକ ଚଷାପିଲା ଚାଷକାମ ବା ଧୋବାପିଲା ଧୋବାକାମ ଯେପରି ଶିଖୁ, ସେହିପରି ଏ ଦେଶର ପ୍ରତ୍ୟେକ ବ୍ରାହ୍ମଣ ପିଲା ଉତ୍ତମଭାବରେ ସଂସ୍କୃତ ଓ ତାର କୌଳିକ ସଂସ୍କୃତିକୁ ଆୟତ୍ତ କରୁ । ଆଜି ଡିମୋକ୍ରାଶିରେ କୌଣସି ଗୋଟିଏ ଗୋଷ୍ଠୀର ସାମାଜିକ ବା ରାଷ୍ଟ୍ରିକ ଆଧିପତ୍ୟ ସିନା ଆମେ ଚାହିବାନି; କିନ୍ତୁ ସେହି ଗୋଷ୍ଠୀଠାରେ ନ୍ୟସ୍ତଥିବା ଆମ ଜାତିର ପାଞ୍ଚହଜାର ବର୍ଷର ସଂସ୍କୃତିକୁ କ'ଣ ଆମେ ନଷ୍ଟ ହୋଇଯିବାକୁ ଦେବା ? ସଂସ୍କୃତି, କୌଳିକତା ଓ ଉପଯୁକ୍ତ ବାତାବରଣ ଦରକାର କରେ । ଗାନ୍ଧି ଓ ରବୀନ୍ଦ୍ରନାଥ ଦୀର୍ଘ ପବିତ୍ର କୌଳିକତାର ଶେଷ ପରିଣତି ମାତ୍ର । ଧ୍ୱନିବିଜ୍ଞାନୀମାନେ ଆମ ସଂସ୍କୃତଭାଷାର ଉଚ୍ଚାରଣକୁ ପୃଥିବୀରେ ଆଦର୍ଶ କରି ଧରନ୍ତି ଓ ସେ କ୍ଷେତ୍ରରେ 'ଦକ୍ଷିଣୀ ବ୍ରାହ୍ମଣ' ସେମାନଙ୍କ ନିକଟରେ ବିସ୍ମୟକର ଜୀବନ୍ତ ଆଦର୍ଶ । ଡିମୋକ୍ରାଶି ନାମରେ ଆମେ ଯାକୁ ହରେଇଲେ କି ଆଉ ତାକୁ ପାଇବା ? ସଂସ୍କୃତ ମୋ ନିକଟରେ ଅନ୍ୟ ସହସ୍ର ଭାଷାମାନଙ୍କ ପରି ଗୋଟିଏ ଭାଷାମାତ୍ର ନୁହେଁ, ସଂସ୍କୃତ ମୋ ଜାତିର ପାଞ୍ଚହଜାର ବର୍ଷର ସଭ୍ୟତା ଓ ସଂସ୍କୃତିର ଜୀବନ୍ତ ପ୍ରତୀକ । ଅନେକେ କେବଳ ଡିଗ୍ରୀ ଡିପ୍ଲୋମା ଦେଖାଇ ଚାକିରି ପାଇପାରନ୍ତି; କିନ୍ତୁ ସଂସ୍କୃତ ଅଧ୍ୟାପକ ପଛରେ ଆମେ ପାଞ୍ଚହଜାର ବର୍ଷର ଅନନ୍ୟ ବାତାବରଣ ଚାହୁଁ । ଦେଶର ଚିନ୍ତା-ନାୟକମାନେ ମନେରଖିଲେ ଭଲହେବ ଯେ, ଭାରତୀୟ ସଂସ୍କୃତି କହିଲେ ଯାହା ବୁଝାଏ, ତାହା ସଂସ୍କୃତ ଭାଷା ଓ ବ୍ରାହ୍ମଣର ସଂସ୍କୃତି । ପ୍ରତ୍ୟେକ ବ୍ରାହ୍ମଣ ପରିବାରରେ ତାହା ପୁନରୁଜ୍ଜୀବିତ ହେଉ, ଏହାହିଁ ମୋର ଏକାନ୍ତ କାମନା । ସେଥିପାଇଁ ଦରକାର ହେଲେ ସ୍କୁଲ୍‌ର ଦୈନିକ ସମୟ ଓ ଛୁଟି ବଦଳେଇବା ମୁଁ ପ୍ରାଣଭରି ଚାହେ ।

## ନବମ ଅଧ୍ୟାୟ

# ଉଚ୍ଚଶିକ୍ଷାର ହୀନ ପ୍ରତାରଣା

ଉତ୍ତର ବାଲେଶ୍ୱରରେ ଲକ୍ଷ୍ମଣନାଥ ଏକ ଅତି ଛୋଟ ଗାଁ । କିନ୍ତୁ ସେଠାରେ ପ୍ରସିଦ୍ଧ ପ୍ରାଚୀନ ବଙ୍ଗାଳୀ ଜମିଦାର ରାୟ ମହାଶୟଙ୍କ ଘର । ଆର ଶତାବ୍ଦୀରେ ଏହି ଜମିଦାର ନିଜ ପିଲାଙ୍କ ପାଠପଢ଼ାପାଇଁ ସେହି ଛୋଟ ପଲ୍ଲୀରେ ମଧ୍ୟ ଏକ ହାଇସ୍କୁଲ୍ ଠିଆକରେଇଥିଲେ । ପୂର୍ବେ ସେମାନେ ନିଜ ପିଲାଙ୍କ ପଢ଼ାଦୃଷ୍ଟିରୁ ସେହି ହାଇସ୍କୁଲ୍‌ର କିଛିବା ଯତ୍ନ ନେଉଥିବେ । କିନ୍ତୁ, ଇ ଭିତରେ ବହୁକାଳରୁ ଜମିଦାର ବଂଶର ପତନ ଆରମ୍ଭ ହୋଇଯାଇଛି । ସେମାନଙ୍କର ପିଲେ କଟକ, କଲିକତାରେ ପଢୁଛନ୍ତି । ହାଇସ୍କୁଲ୍ ସହିତ ଜମିଦାର ବଂଶର ବିଶେଷ ସମ୍ପର୍କ ଆଉ ନାହିଁ କହିଲେ ଚଳେ । ମଠାଧୀଶ ନଥିଲେ ମଠର ଅବସ୍ଥା ଯେପରି ହେବାର ଅନୁମାନ କରାଯାଏ, ମୁଁ ଏ ସ୍କୁଲ୍ ଇନ୍ସପେକ୍ସନ୍ କଲାବେଳକୁ ତାର ଠିକ୍ ସେଇ ଅବସ୍ଥା ଦେଖିଲି । ସେତେବେଳେ ସେଠି କୌଣସି କ୍ଲାସ୍‌ରେ ପୂରା ୨୫ଟି ପିଲା ମଧ୍ୟ ନ ଥିଲେ । ହଷ୍ଟେଲ୍ ଏକପ୍ରକାର ଖାଲି । ଯେତେଦୂର ମନେପଡୁଛି, ସ୍କୁଲ୍‌ର ପୂର୍ବର ଗତ ୨୫ ବର୍ଷର ରେକର୍ଡ଼ ଦେଖି ଜାଣିଲି ଯେ, ସେ ସ୍କୁଲ୍‌ରୁ ଗୋଟିଏ ହେଲେ ପିଲା ସେ ଦୀର୍ଘକାଳ ଭିତରେ ଫାଷ୍ଟ୍ ଡିଭିଜନରେ ପାସ୍ କରିନି । ହାରାହାରି ପାସ୍ ସଂଖ୍ୟା ମଧ୍ୟ ଅତି ନଗଣ୍ୟ ଥିଲା ।

ଏପରି ଏକ ସ୍କୁଲ୍‌କୁ ବଞ୍ଚେଇ କି ଲାଭ କହ ତ ? ଇତିମଧ୍ୟରେ ଲକ୍ଷ୍ମଣନାଥର ଚାରିଆଡ଼େ ହାଇସ୍କୁଲ୍‌ମାନ ଠିଆହୋଇଗଲାଣି । ପୂର୍ବେ ହୁଏତ ଏଇସବୁ ଅଞ୍ଚଳର ପିଲେ ଲକ୍ଷ୍ମଣନାଥକୁ ଯାଉଥିଲେ । କିନ୍ତୁ ପଲ୍ଲୀ ଗାଁ ଲକ୍ଷ୍ମଣନାଥକୁ ଜଳେଶ୍ୱରର ପିଲା ଆଉ ଯିବେ କାହିଁକି ? କାରଣ ଜଳେଶ୍ୱରରେ ବର୍ତ୍ତମାନ ହାଇସ୍କୁଲ୍ । ସେହିପରି ଅନେକ ହାଇସ୍କୁଲ୍ ପାଖେ ପାଖେ ଠିଆହେଲାଣି । ତେଣେ ଲକ୍ଷ୍ମଣନାଥ ସ୍କୁଲ୍ ପ୍ରତି ସ୍ଥାନୀୟ ପ୍ରତିଷ୍ଠାତା ଜମିଦାରବଂଶ ବୀତସ୍ପୃହ । କାରଣ ତାଙ୍କ ପିଲେ ସେଠି ଆଉ ପଢୁନାହାନ୍ତି –କେବଳ ଯେଉଁଥିପାଇଁକି ହିଁ ସେ ପଲ୍ଲୀଗାଁରେ ମଧ୍ୟ ଦିନେ ଗୋଟିଏ ହାଇସ୍କୁଲ୍ ଠିଆକରାଯାଇଥିଲା ।

ବହୁତ ଭାବିଚିନ୍ତି ମୁଁ ଅବିଚଳିତ ଭାବରେ ମୋ ଇନ୍ସପେକ୍ସନ୍ ନୋଟ୍‌ରେ ଡି.ପି.ଆଇ.ଙ୍କ ନିକଟକୁ ଲେଖିଲି ଯେ, ଲକ୍ଷ୍ମଣନାଥ ପରି ଛୋଟ ଗାଁରେ ଏକ ବ୍ୟୟସାଧ୍ୟ ହାଇସ୍କୁଲ୍ ରଖିବାର କୌଣସି ଆବଶ୍ୟକତା ନାହିଁ । ଚାରିପଟେ ନୂଆ ହାଇସ୍କୁଲ୍ ସବୁ ଠିଆହେଲାଣି, ତେଣୁ ଏ ସ୍କୁଲ୍ ଉଠିଗଲେ ମଧ୍ୟ ଏ ଅଞ୍ଚଳରେ ହାଇସ୍କୁଲ୍ ଶିକ୍ଷାରେ କୌଣସି ବାଧା ଆସିବନି । ଏ ସ୍କୁଲ୍ ଉଠାଇ ଦିଆଯାଉ ।

ଏଇ ଲେଖକ ଯଦି ଆଉ କିଛିକାଳ ଇନ୍ସପେକ୍ଟର ଥାନ୍ତା, ତେବେ କେବଳ ଲକ୍ଷ୍ମଣନାଥ ନୁହେଁ, ତା' ପରି ଆଉରି ଅନେକ ଦରମରା ହାଇସ୍କୁଲ୍ ଉଠେଇଦେବାକୁ ସେ ସରକାରଙ୍କୁ ପରାମର୍ଶ ଦେଇଥାନ୍ତା । କାହିଁକି, ତାର କାରଣ କହେଁ ।

## ଅଯୋଗ୍ୟର ପୃଷ୍ଠପୋଷକତା –

ପୂର୍ବେ (ମୋ ସମୟ ପର୍ଯ୍ୟନ୍ତ) ପ୍ରତି ହାଇସ୍କୁଲ୍‌ରେ ଛାତ୍ରଦତ୍ତ ଫି ବାଦେ, ସେ ସ୍କୁଲ୍‌ର ବ୍ୟୟଜନିତ ବାକି ସମସ୍ତ ଟଙ୍କା ସରକାର ଦେଉଥିଲେ । ଫଳରେ ଯେଉଁ ସ୍କୁଲ୍‌ରେ ପିଲା ଯେତେ କମ୍ ଓ ଡେଫିସିଟ୍(ନିଅଣ୍ଟ) ଯେତେ ଅଧିକ (ଅର୍ଥାତ୍ ଯିଏ ଯେତେ ଅଯୋଗ୍ୟ) ସେ ସେତିକି ଅଧିକ ପରିମାଣରେ ସରକାରଙ୍କ ପୃଷ୍ଠପୋଷକତା ପାଉଥିଲା । ବସ୍ତୁତଃ ଏଇ ଏକମାତ୍ର ମାରାତ୍ମକ ନିୟମର ଫାଇଦା ଉପରେହିଁ ଏ ଦେଶର ମଠ-ମଠାଧୀଶ ରୀତିରେ ହାଇସ୍କୁଲ୍ ସବୁ ଗଢ଼ି ଉଠିଛି । ବର୍ତ୍ତମାନ ପ୍ରଚଳିତ ନିୟମ ମଧ୍ୟ ଅନେକ ପରିମାଣରେ ଯୋଗ୍ୟର ପୁରସ୍କାର ଅପେକ୍ଷା, ସେହି ପୂର୍ବପରି ଅଯୋଗ୍ୟର ପୃଷ୍ଠପୋଷକତାପାଇଁ ଅଧିକ ଉଦ୍ଦିଷ୍ଟ । କଟକର ପ୍ୟାରୀମୋହନ ଏକାଡେମୀ କେବଳ ନାମମାତ୍ର ସରକାରୀ ସାହାଯ୍ୟ ନିଏ । କିନ୍ତୁ ସରକାରଙ୍କ ନିୟମ ଏପରି ନିପୁଣ ଅନୁଷ୍ଠାନକୁ ଆଖିରେ ରଖି ତିଆରି ନହୋଇ, ଅଯୋଗ୍ୟ ଅନୁଷ୍ଠାନମାନଙ୍କୁ ଆଖିରେ ରଖିହିଁ ତିଆରି ହୋଇଛି ଓ ହେଉଛି । କିନ୍ତୁ ସେଥିରେ ବିସ୍ମିତ ହେବାର କଥା ନାହିଁ । କାରଣ ତା' ନହେଲେ ମଠ-ମଠାଧୀଶ ସମ୍ଭବ ହେବେ ନାହିଁ ।

## ସରକାରଙ୍କ ଗ୍ରାସ –

ଏବେ ପୁଣି ବିଶୃଙ୍ଖଳା, ଅପାରଗ, ଦରିଦ୍ର ସ୍କୁଲ୍‌ମାନଙ୍କୁ ସରକାର ନିଜ ହାତକୁ ନେଇ ନେବାର ଯେଉଁ ଧୂଆଁ ଉଠିଛି, ତାହା ବି ଏଇ ଅଯୋଗ୍ୟତାର ପୃଷ୍ଠପୋଷକତା କେବଳ ନୁହେଁ, ଖୁବ୍ ସମ୍ଭବତଃ ତାହା ଅସ୍ତଂଗମିତମହିମ ମଠାଧୀଶମାନଙ୍କର, ସରକାରୀ ବାଟ ଦେଇ ନିଜ ପୂର୍ବତନ ମଠମାନଙ୍କ ପରିଚାଳନାର ଏକ ଚତୁର ପନ୍ଥା ଛଡ଼ା ଆଉ କିଛି ନୁହେଁ ବୋଲି ମନେ ହେଉଛି ।

ପ୍ୟାରୀମୋହନ ଏକାଡେମୀ ପରି ଯେଉଁ ସ୍କୁଲ୍ ସୁପରିଚାଳିତ ହେବ ତାହାର ବ୍ୟୟ ସେ ନିଜେ ଉଠେଇବ, ଏଥିରେ ସନ୍ଦେହ ନାହିଁ । ପି.ଏମ୍. ଏକାଡେମୀ ଓ ସେହିପରି ଅନେକ ସ୍କୁଲ୍ ତାହାର ପ୍ରତ୍ୟକ୍ଷ ପ୍ରମାଣ । ସମବେତଭାବରେ ଶିକ୍ଷକମାନଙ୍କୁ ବା କେବଳ ହେଡ୍‌ମାଷ୍ଟରଙ୍କୁ ପୂରା ଦାୟିତ୍ୱ ଓ କ୍ଷମତା ଛାଡ଼ିଦେଲେ ଏହା ପ୍ରତ୍ୟେକ ସ୍କୁଲ୍‌ରେ ମଧ୍ୟ ସମ୍ଭବ ହେବ ବୋଲି ମୁଁ ବିଶ୍ୱାସ କରେ । ଇଂଲାଣ୍ଡରେ ଅଧିକାଂଶ ସ୍କୁଲ୍ ଓ କଲେଜ ଏବଂ ବିଶ୍ୱବିଦ୍ୟାଳୟ ମଧ୍ୟ ଏହିପରି ସ୍ୱୟଂସଂପୂର୍ଣ୍ଣ ରୀତିରେ ପରିଚାଳିତ । କେବଳ ଉନ୍ନତିମୂଳକ ଯୋଜନା ସବୁପାଇଁ ସେଠାରେ ସରକାର ସେସବୁ ଅନୁଷ୍ଠାନକୁ ଅର୍ଥ ଯାଚନ୍ତି । କିନ୍ତୁ ଅନୁଷ୍ଠାନମାନଙ୍କର ଦୈନନ୍ଦିନ ପରିଚାଳନାରେ ଉପରୁ ବା ବାହାରୁ କୌଣସିପ୍ରକାର ହସ୍ତକ୍ଷେପ ସେଠାରେ ଘଟେ ନାହିଁ ।

ଏ ଦେଶରେ କିନ୍ତୁ ନ୍ୟସ୍ତସ୍ୱାର୍ଥଙ୍କ ପ୍ରଭାବରେ ଅଯୋଗ୍ୟ, ଅପାରଗମାନଙ୍କର ପୃଷ୍ଠପୋଷକତା ଓ ଭାରବହନହିଁ ରାଷ୍ଟ୍ରୀୟ ନୀତିରୂପେ ଆଜି ଦଣ୍ଡାୟମାନ । ଏହି ଗୋଟାଏ ନୀତିଯୋଗୁହିଁ ଯେ ଏ ଜାତିର ଅଭ୍ୟୁତ୍‌ଥାନ ଓ ଚାରିତ୍ରିକ ଶକ୍ତିମତ୍ତା କେବେହେଲେ ସମ୍ଭବ ହେବନାହିଁ, ଏହା ଦୃଢ଼ଭାବରେ କୁହାଯାଇପାରେ ।

## ସ୍କୁଲ୍ ଓ ଗଣତନ୍ତ୍ର –

ଆମେ ଆମ ଦେଶପାଇଁ ଗଣତନ୍ତ୍ର ଶାସନ ଗ୍ରହଣ କଲେ । ଆମେ ବର୍ତ୍ତମାନ ଯାହା କିଛି ପରିବର୍ତ୍ତନ ଆଣିବାକୁ ଯିବା, ତାହାର ଏଇ ପରିପ୍ରେକ୍ଷିତରେହିଁ ବିଚାର ହେବା ଉଚିତ । ନଚେତ୍, ଗଣତନ୍ତ୍ର-ଆଦର୍ଶ କେବଳ କଥାର କଥା ହୋଇ ରହିବ । ଗଣତନ୍ତ୍ର ଶାସନର ପ୍ରକୃଷ୍ଟ ଆଦର୍ଶ ହେଉଛି ଇଂଲାଣ୍ଡ । ଇଂଲାଣ୍ଡର ବଳିଷ୍ଠ ଗଣତାନ୍ତ୍ରିକତା ଗଢ଼ାହୁଏ ତାର ସ୍କୁଲ୍ ଓ କଲେଜମାନଙ୍କରେ । ଇଂଲାଣ୍ଡର ସ୍କୁଲ୍ ଓ କଲେଜଗୁଡ଼ିକ ସେମାନଙ୍କ ଶିକ୍ଷକମଣ୍ଡଳି, ସେମାନଙ୍କର ପାଠ୍ୟପୁସ୍ତକ ନିର୍ବାଚନ, ସେମାନଙ୍କର ଛାତ୍ର-ଶୃଙ୍ଖଳା, ସବୁରେହିଁ ମନୋରମ ଗଣତାନ୍ତ୍ରିକ ନିୟମ ଓ ଐତିହ୍ୟ ଦ୍ୱାରା ପ୍ରଭାବିତ ଓ ପରିଚାଳିତ । ସର୍କାର ନିଜର ଓ ଲୋକୋପକାରୀ ହେଲେ ମଧ, ସେଠାର ସ୍କୁଲ୍-କଲେଜର କର୍ତ୍ତୃପକ୍ଷ, ସର୍କାର ବା ବାହାରର କୌଣସି ହସ୍ତକ୍ଷେପ ସହ୍ୟ କରିବେନାହିଁ । ଏହିପରି ଦୃଢ଼ ଗଣତନ୍ତ୍ର ରୀତିରେ ଗଢ଼ିଉଠେ ସମଗ୍ର ଇଂରେଜ ଜାତି କେବଳ ନୁହେଁ, ପ୍ରତ୍ୟେକ ଇଂରେଜ ନର ଓ ନାରୀ, ଯାହାଙ୍କର ଅସ୍ଥିମଜ୍ଜା ବି ଗଣତାନ୍ତ୍ରିକ । ସ୍ୱାଧୀନ ମତ, ସ୍ୱାଧୀନ କର୍ମ, ତୀବ୍ର ଆତ୍ମନିର୍ଭରତା, ଇଂରେଜର ପ୍ରାଣ । ସେହି ହେତୁ ଦରିଦ୍ର ଇଂରେଜ ନରନାରୀଗଣ ମଧ ଦରିଦ୍ରର-ତଥାକଥିତ-ବନ୍ଧୁ ଲେବର ପାର୍ଟିକୁ ଭୋଟ ନ ଦେଇ ଦେଇଥାନ୍ତି ଧନୀ କଞ୍ଜରଭେଟିଭ୍ ପାର୍ଟିକୁ, କାରଣ ସମାଜବାଦ ନାମରେ ଲେବର ପାର୍ଟି ଅତ୍ୟଧିକଭାବରେ ଇଂରେଜର ପ୍ରାଇଭେଟ୍ ଜୀବନ ଉପରେ, ତାର ବ୍ୟକ୍ତିଗତ ସ୍ୱାଧୀନତା ଉପରେ ହସ୍ତକ୍ଷେପ କଲାଣି ଓ ଆହୁରି ଅଧିକ କରିବାର ଆଶଙ୍କା । ଦ୍ୱିତୀୟ ମହାଯୁଦ୍ଧରେ କଞ୍ଜରଭେଟିଭ୍ ପାର୍ଟି ଦୀର୍ଘକାଳ ଇଂଲାଣ୍ଡ ଶାସନ କଲା ଏହି କାରଣରୁ ।

କିନ୍ତୁ ଭାରତବର୍ଷରେ ଆମେ ତେଣେ କାଗଜରେ ଗଣତାନ୍ତ୍ରିକ ଶାସନ ଗ୍ରହଣ କରି, ଏଣେ ଗୋଟାକୁ ଗୋଟା ସ୍କୁଲ୍ ଓ କଲେଜକୁ ସରକାର ହାତରେ ସମର୍ପିଦେବାର ମର୍ମ କ'ଣ ? ସର୍କାର ଶିକ୍ଷକ ବାଛିବେ, ପାଠ୍ୟପୁସ୍ତକ ବାଛିବେ, ମାଷ୍ଟ୍ରଙ୍କ ଦରମା ଦେବେ, ଟ୍ରାନ୍ସଫର୍ କରିବେ, ସ୍କୁଲ୍ ଘର ତିଆରି କରିଦେବେ, ଫର୍ଣ୍ଣିଚର୍ କିଣେଇଦେବେ–ଆଉ, ଲୋକେ କଣ କରିବେ ? ଓ ଲୋକେ ନିଜ କଥା ନିଜେ ବୁଝିବାର ଶିଖିବେ କେଉଁଠି ଓ କେଉଁଠୁ ? ଯେଉଁ ଦେଶରେ ଲୋକେ ଗୋଟେ ଗୋଟେ ସ୍କୁଲ୍ ନିଜେ ନିଜେ ଚଳାଇପାରୁନାହାନ୍ତି, ଗୋଟାଏ ବିରାଟ ଦେଶକୁ ଶାସନ କରିବାର ଦକ୍ଷତା ସେମାନେ ପାଇବେ କୁଆଡୁ ? ସେ ଦକ୍ଷତା କ'ଣ ଆକାଶରୁ ଖସିବ ? ଦୃଢ଼ ଧାରଣା ତେଣୁ ହେଉଛି ଯେ, ସ୍କୁଲ୍‌ଗୁଡ଼ିକୁ 'ସରକାରଙ୍କ ହାତକୁ ଦେଇଦେବା' ନୀତିଟି ବାହାରିଛି କୌଣସି ବା କେତୋଟି ପୂର୍ବତନ-ଜମିଦାର-ଶ୍ରେଣୀୟ ମଠାଧୀଶଙ୍କର । ସରକାରୀ ଟଙ୍କାରେ ନିଜ ନିଜର ପୂର୍ବସ୍ଥାପିତ ମଠଗୁଡ଼ିକୁ ବଞ୍ଚେଇ ରଖିବାର ସମ୍ପୂର୍ଣ୍ଣ ଅସଦୁଦ୍ଦେଶରୁ ।

କିନ୍ତୁ ଦେଶବାସୀ ଜାଣିରଖନ୍ତୁ ଯେ, ଏହା ଏକ ଅଯୌକ୍ତିକ, ଅଗଣତାନ୍ତ୍ରିକ ଓ ଜାତୀୟ-ଚରିତ୍ର-ହାନିକର ଘୋର ଆତ୍ମଘାତୀ ବ୍ୟବସ୍ଥା । ଆମେ ଆମର କି ଅନିଷ୍ଟ କରୁଛୁ, ଯାଦ୍ୱାରା ଆମେ ଜାଣିପାରୁନୁ । କିନ୍ତୁ ଦିନେ ଜାଣିବୁ । ଏଇପ୍ରକାର ସମ୍ପୂର୍ଣ୍ଣ ଶୈକ୍ଷିକ ଓ ଜାତୀୟ ଦୃଷ୍ଟିକୋଣରୁହିଁ ଉତ୍ତର ଓଡ଼ିଶାର ଇନ୍‌ସପେକ୍ଟର ଥିଲାବେଳେ ପୂର୍ବରୁ-ପ୍ରତିଷ୍ଠିତ-ହାଇସ୍କୁଲ୍-ମଠ(ଯଥା–ଲକ୍ଷ୍ମଣନାଥ) କେତୋଟି ପ୍ରତି ମୁଁ ବିରୋଧ ପ୍ରକାଶ କରିଥିଲି । ନୂଆ ଗଢ଼ିଉଠୁଥିବା

ଏଇ ଶ୍ରେଣୀର ଅନ୍ତତଃ ଦୁଇଟି ମଠକୁ ଯେପରି କଠୋରଭାବରେ ବିରୋଧ କରିବା ମୁଁ ଆରମ୍ଭ କରିଥିଲି, ସେ ଅଭିଜ୍ଞତା ମଧ ଜୀବନରେ ଭୁଲିପାରିବିନାହିଁ ।

ଏଥିରୁ ଗୋଟିଏ ହେଉଛି ଉତ୍ତର ବାଲେଶ୍ୱରର ଅ-ନାମକ ଛୋଟ ଗାଁର ହାଇସ୍କୁଲ୍‌କୁ ନେଇ । ସ୍ଥାପୟିତା ଥିଲେ ଜଣେ କଂଗ୍ରେସ କର୍ମୀ ଓ ସେ ଗାଁର ଜମିଦାର ଓ ଧନୀ । ସେ ଗାଁକୁ ଯିବାକୁ ଶଗଡ଼ ରାସ୍ତା ବି ସେତେବେଳେ ନଥିଲା । ସେତେବେଳେ ସେଠାରେ ଗୋଟାଏ 'ହାଇସ୍କୁଲ୍' ହେବାର କୌଣସି କାରଣ ନଥିଲା, କେବଳ ଜଣେ ବ୍ୟକ୍ତିଙ୍କ ପ୍ରତିଷ୍ଠା ବଢ଼ାଇବା ବ୍ୟତୀତ । ମ୍ୟାନେଜମେଣ୍ଟ (କଂଗ୍ରେସ କର୍ମୀଙ୍କର) ରେକଗ୍‌ନିଶନ୍‌ପାଇଁ ବାରମ୍ବାର ଅନୁରୋଧରେ ଦିନେ ମୁଁ ସେ ଗାଁକୁ ଗଲି । କିନ୍ତୁ ଦେଖିଲି ଯେ ସେଠାରେ ଗୋଟାଏ ମାଇନର ସ୍କୁଲ୍‌ର ବ୍ୟବସ୍ଥା ବି ନାହିଁ । ମୁଁ ସେ ସ୍କୁଲ୍‌କୁ ରେକଗ୍‌ନିଶନ୍ ଦେଲିନାହିଁ ।

କିନ୍ତୁ ଯାଏ କୁଆଡ଼େ ?

ଆସିଲା ଫୋନ୍ ଡି.ପି.ଆଇ.ଙ୍କଠୁଁ (ସେତେବେଳେ ଏସ୍.ରାୟ), ଆସିଲା ମନ୍ତ୍ରୀଙ୍କଠୁଁ । ଡି.ପି.ଆଇ. ରାୟ ନିଜେ ବି ବ୍ୟକ୍ତିଗତଭାବରେ ମତେ କହିଲେ । ତିନିମାସ ଭିତରେ ମୁଁ ବାଧ ହେଲି ଫେର୍ ସେହି ବାଟ-ନଥିବା-ଗାଁକୁ ଯିବାକୁ ଓ ଖୁବ୍ ସମ୍ଭବତଃ କେବଳ ଏକ ଆପେକ୍ଷିକ ସ୍ୱୀକୃତି ଦେବାକୁ ବାଧ ହେଲି; କାରଣ ଇ ଭିତରେ ମ୍ୟାନେଜମେଣ୍ଟ୍ ମୋ ପୂର୍ବ ରିପୋର୍ଟ ଅନୁସାରେ କିଛି କିଛି ସର୍ତ୍ତ ପୂରଣର ଚେଷ୍ଟା କରିଥିଲେ ଦେଖିଲି ।

ଆଉ ଏକ ସମଶ୍ରେଣୀକ ଘଟଣା ।

କଟକ ଜିଲ୍ଲାର ମ-ପୁର ନାମକ ଗ୍ରାମ, ଯାଜପୁରରୁ ଚଉଦମାଇଲ ପୂର୍ବକୁ । ସେତେବେଳର ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ'ମ'ଙ୍କ ନାଁରେ ନାମିତ ହୋଇ ଏକ ହାଇସ୍କୁଲ୍ ସେଠାରେ ଠିଆ କରାଯାଇଥିଲା । ପ୍ରତିଷ୍ଠାତା ସ୍ଥାନୀୟ ଖଣ୍ଡାୟତ ଜମିଦାର । ଘନଘନ ଚିଠି ଆସିଲା ସେ ସ୍କୁଲ୍‌କୁ ମଧ ରେକଗ୍‌ନିଶନ ଦେବାକୁ । ଘୋର ବର୍ଷା କାଳରେ ମୁଁ ଦିନେ ତେଣୁ ବାହାରିଲି । ଯାଜପୁରରୁ ମ୍ୟାନେଜମେଣ୍ଟ ଏକ ବଳଦଗାଡ଼ିର ବ୍ୟବସ୍ଥା କରିଦେଇଥିଲେ । ସେଦିନ ମୁଁ ଅଖିଆ ଓ ଘୋର ବର୍ଷାରେ ୨୮ ମାଇଲ୍ କାଦୁଅ-ପଙ୍କ ରାସ୍ତାରେ ଗଲି ଓ ଅଇଲି, ଏହି ତଥାକଥିତ 'ମ-ବିଦ୍ୟାପୀଠ' ପାଇଁ । କିନ୍ତୁ କି ବିଦ୍ୟାପୀଠ ଏ ? ଗୋଟାଏ ଉତ୍ତମ ପ୍ରାଇମେରୀ ସ୍କୁଲ୍‌ର ମଧ ବ୍ୟବସ୍ଥା ଥିବାର ସେଠାରେ ଦେଖିଲିନାହିଁ । ହଷ୍ଟେଲ୍ ନାହିଁ, ଲାଇବ୍ରେରି ନାହିଁ, ଶିକ୍ଷକମାନଙ୍କର ଘର ନାହିଁ, ଶିକ୍ଷକ ବି ନାହାନ୍ତି— ଅଥଚ ହାଇସ୍କୁଲ୍ ସ୍ଥାପନର ଦୁର୍ବାର ଅଭିଳାଷ ଓ ପ୍ରତାରଣା ।

ହାଇସ୍କୁଲ୍ ସମ୍ପର୍କରେ ଏ ପ୍ରକାର ହୀନ ଧାରଣା ଲୋକଙ୍କ ମନରେ ପୂରେଇଲା କିଏ ? କେଉଁଠୁ ସେମାନେ ଏ ପ୍ରେରଣା ପା'ନ୍ତି ? ହାଇସ୍କୁଲ୍ କହିଲେ ଏକ ମଠ-ମଠାଧୀଶ-ଧାରଣା ଛଡ଼ା ଏପ୍ରକାର ହୀନ ଆଦର୍ଶ ଲୋକେ ପୋଷଣ କରନ୍ତେ କିପରି ? ଯଦି 'ଉଚ୍ଚ ଶିକ୍ଷା'ର ପ୍ରସାର ପ୍ରକୃତ ଉଦ୍ଦେଶ୍ୟ ଥାଏ, ତେବେ 'ଉଚ୍ଚ' ଦରର ଶିକ୍ଷକ ଓ ହେଡ୍‌ମାଷ୍ଟର ତ ପ୍ରଥମ ଆବଶ୍ୟକତା ? କିନ୍ତୁ ସବୁଠାରେ ଦେଖିଛି, ସେହି ପ୍ରଥମ ଓ ପ୍ରଧାନ ଆବଶ୍ୟକତା ପ୍ରତି କର୍ତ୍ତୃପକ୍ଷ ଏକପ୍ରକାର ବୀତସ୍ପୃହ । ଉଚ୍ଚଶିକ୍ଷାର ପ୍ରତାରଣାରେ ଶିକ୍ଷକ —ସେ ଅମୂଲ୍ୟ ଚିଜ କାହିଁ ? କିଏ ବା ତାକୁ ପଚାରି ଯାଉଛି ? ତାର ଅଭାବ ଏ ଦେଶର କାହାରି ମସ୍ତକ ବ୍ୟଥାର କାରଣ ନୁହେଁ । ଅଥଚ ଉଚ୍ଚଶିକ୍ଷା ଦେଶରେ ମହାନଦୀର ବନ୍ୟାପରୁ ଅଧିକ ବେଗରେ ମାଡ଼ିଚାଲିଛି । — ର ମ-ମୁଁ ମ-

ପୁର ବିଦ୍ୟାପୀଠକୁ ରେକଗନିଶନ୍ ଦେଲିନାହିଁ ଓ କଠୋର ମନ୍ତବ୍ୟ ମଧ୍ୟ ଦେଲି ସେହି ଅନୁଷ୍ଠାନର କର୍ତ୍ତାମାନଙ୍କ ସମ୍ପର୍କରେ । ମୋର ମନେପଡୁଛି ଯେ ମୁଁ କହିଥିଲି, ସ୍ଥାନୀୟ ଜମିଦାର ଏ ଦେଶର ମୁଖ୍ୟମନ୍ତ୍ରୀଙ୍କ ନାମର ଅପବ୍ୟବହାର ଓ ଅପମାନ କରୁଛନ୍ତି, ଏପରି ଏକ ଅପରପ୍ରାଇମେରୀ ସ୍କୁଲ୍‌କୁ ଯୋଗ୍ୟନଥିବା ଅନୁଷ୍ଠାନକୁ ତାଙ୍କ ନାମରେ ନାମିତ କରି (ବୋଧହୁଏ ମତେ ଡରେଇ ରଖିବା ବା ପ୍ରଭାବିତ କରିବାପାଇଁ, ଆଗରୁ ଶୁଣାଇ ଦିଆଯାଇଥିଲା ଯେ, ମ-ବିଦ୍ୟାପୀଠର ସ୍ଥାପୟିତା ସ୍ଥାନୀୟ ଖଣ୍ଡାୟତ ଜମିଦାର ମୁଖ୍ୟମନ୍ତ୍ରୀଙ୍କ ଧର୍ମପୁତ୍ର ) ।

ଏଇ ଘଟଣାର ଅଳ୍ପକାଳ ପରେ ମୁଁ ମେହର କଲେଜକୁ ବଦଳି ହୋଇଗଲି । କିନ୍ତୁ କାଗଜରେ ପରେ ପଢ଼ିଲି, ମୋ ରିପୋର୍ଟ ଉପରେ ମ-ପୁର ଜମିଦାରଙ୍କର ମାନେଜର ଓ ମ-ବିଦ୍ୟାପୀଠର ସେକ୍ରେଟାରୀ ଯେ କି ସେ ଅଞ୍ଚଳର ଜଣେ ଜଣାଶୁଣା କଂଗ୍ରେସକର୍ମୀ ସେ ଅନଶନ ଆରମ୍ଭ କରିଦେଲେ । ପରେ ଘଟଣା କ'ଣ ହେଲା, ମୁଁ ଆଉ ଜାଣିନି ।

## ଯୋଗ୍ୟ ଅନୁଷ୍ଠାନ –

କିନ୍ତୁ ଉତ୍ତର ଓଡ଼ିଶାର ଇନ୍ସପେକ୍ଟର ଥିବା ଭିତରେ ଯୋଡ଼ିଏ ହାଇସ୍କୁଲ୍‌କୁ ମୁଁ ରେକଗ୍‌ନିଶନ୍ ଦେଇଥିଲି, ଯେଉଁଥିରେ କି ମୁଁ ଶିକ୍ଷାବିତ୍‌ଭାବରେ ଓ ଓଡ଼ିଶାର ନାଗରିକଭାବରେ ଆନନ୍ଦ ପାଇଥିଲି । ସେମାନଙ୍କ କଥା ମଧ୍ୟ ଏଠାରେ କହିରଖେ ।

ଗୋଟିଏ ହେଉଛି ଉତ୍ତର ବାଲେଶ୍ୱରରେ ଓଡ଼ିଶା ଆସମ୍ବ୍ଲିର ପୂର୍ବତନ ବାଚସ୍ପତି ଶ୍ରୀଯୁକ୍ତ ମୁକୁନ୍ଦପ୍ରସାଦ ଦାସଙ୍କ ଗ୍ରାମ, ଖଇରାରେ । କିନ୍ତୁ ଏହା ସହିତ ମୁକୁନ୍ଦପ୍ରସାଦ ଦାସଙ୍କର କୌଣସି ସମ୍ପର୍କ ଥିଲା ବୋଲି ମନେହେଉନି । ସେ ଗ୍ରାମର ଆଉ ଜଣେ ଭଦ୍ରଜନ, ଯେ କି ବାଲେଶ୍ୱରରେ ଓକିଲ (ଶ୍ରୀଯୁକ୍ତ ମଧୁସୂଦନ ଦାସ ?) ସେହିହିଁ ଏ ସ୍କୁଲ୍ ଠିଆ କରେଇଥିଲେ । ପ୍ରାଇଭେଟ୍ ଚେଷ୍ଟାରେ ଓଡ଼ିଶାର ଗୋଟିଏ ଗ୍ରାମରେ ଯାହା ସମ୍ଭବ, ଦାସ ମହାଶୟ ଓ ସ୍ଥାନୀୟ ଲୋକେ ତାହା କରିଥିଲେ । ତେଣୁ ବେଶ୍ ଖୁସି ଲାଗିଲା ତାହା ଦେଖି । ଅକୁଣ୍ଠିତ ଚିତ୍ତରେ ମୁଁ ସେ ସ୍କୁଲ୍‌କୁ ରେକଗ୍‌ନିଶନ୍ ଦେଇ ଦେଇଥିଲି ।

ଦ୍ୱିତୀୟ ହାଇସ୍କୁଲ୍ ଯାହାକୁ ରେକଗ୍‌ନିଶନ୍ ଦେବାରେ ମୁଁ ଆନନ୍ଦ ପାଇଥିଲି—ତାହା ହେଉଛି ନନ୍ଦକିଶୋର ବଳଙ୍କ ଗ୍ରାମ କୁଶୁପୁରରେ । କିନ୍ତୁ ତା'ର ଏକ ସ୍ୱତନ୍ତ୍ର ଇତିହାସ ଅଛି । ତେଣୁ ପର ଅଧ୍ୟାୟରେ ସେକଥା କୁହାଯାଉଛି ।

## ବାଲେଶ୍ୱର ଓ ମହତାବ –

ମୁଁ ଲକ୍ଷ୍ୟ କରିଥିଲି ଯେ, ବାଲେଶ୍ୱର ଜିଲ୍ଲାରେ ପ୍ରାଇମେରୀ ଶିକ୍ଷା ବେଶ୍ ପରିବ୍ୟାପ୍ତ । ପୁଣି ସୁଦୂର ମଫସଲ ଅଞ୍ଚଳରେ ନଳକୂଅ ସବୁ ମଧ୍ୟ ଥିବାର ଦେଖିଲି ।

ଶୁଣିଲି, ସେ ସବୁ ମହତାବଙ୍କ କୃତିତ୍ୱ । ବାଲେଶ୍ୱର ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ୍ ଥିଲାବେଳେ ମହତାବ ସେ ଜିଲ୍ଲାରେ ଲୋକଙ୍କପାଇଁ ଯାହା କରିଯାଇଥିଲେ, ଅନ୍ତତଃ ସେପର୍ଯ୍ୟନ୍ତ ଲୋକେ ଭୁଲିନଥିଲେ । ମୁଁ ନିଜେ ସେସବୁ ଦେଖି, ବାଲେଶ୍ୱର ମାଟି ମାଡ଼ିଲେ, ସେତେବେଳେ ମହତାବଙ୍କ ପ୍ରତି ସଶ୍ରଦ୍ଧ ହୋଇ ଉଠୁଥିଲି ।

———

## ଦଶମ ଅଧ୍ୟାୟ

# ସାମ୍ପ୍ରଦାୟିକତାର ଆଦ୍ୟ ସ୍ୱାଦ

ଗୋଟିଏ ଗ୍ରାମର ଲୋକେ, କୌଣସି ବିଶେଷ ଧନୀଲୋକ ବା ରାଜା-ଜମିଦାରର ବିନା ସହାୟତାରେ, ନିଜ ନିଜର ଛୋଟ ଛୋଟ ଚାନ୍ଦା ମିଶାଇ ଯାହା କରିବା ସମ୍ଭବ, ତାହା କୁଶୁପର ଗାଁରେ ନୂତନ ହାଇସ୍କୁଲ୍ ନିର୍ମାଣରେ ଘଟିଛି ବୋଲି ଓ ନୂତନ ସ୍କୁଲ୍‌ଟି ଗ୍ରାମ୍ୟ- ଜନତାର ସମବେତ ଚେଷ୍ଟାର ଏକ ପ୍ରତୀକ ବୋଲି ମନେହେଲା । ଏଠି ମଠ-ମଠାଧୀଶର ଛବି ଆଦୌ ନଥିଲା । ତେଣୁ ମୁଁ ଅକୁଣ୍ଠିତ ଚିତ୍ତରେ ଏ ସ୍କୁଲ୍‌କୁ ରେକଗ୍‌ନିଶନ୍ ଦେଲି । କିନ୍ତୁ ଏକଥା ସାଥିକି ଏକ ଦୁଃଖଦାୟକ ନଥାର ସୃଷ୍ଟି ହୋଇଗଲା; ଯାହାକି ସେତେବେଳେ ମୋର କଳ୍ପନାର ଅତୀତ ଥିଲା ।

ସେତେବେଳକୁ ଦେଶ ସ୍ୱାଧୀନ ହୋଇସାରିଥିଲା । ସ୍ୱାଧୀନ ଦେଶର ସରକାର, ଦେଶର ବରେଣ୍ୟ ପୁତ୍ରମାନଙ୍କର ସ୍ମୃତିକୁ ସମ୍ମାନ ଦେବା ଲକ୍ଷ୍ୟରେ ଭିନ୍ନ ଭିନ୍ନ ଅନୁଷ୍ଠାନକୁ ସେମାନଙ୍କ ନାମରେ ନାମିତ କରିବାପାଇଁ ଇଚ୍ଛା ପ୍ରକାଶ କରି ଇ' ଭିତରେ ସବୁ ଡିପାର୍ଟମେଣ୍ଟକୁ ସର୍କ୍ୟୁଲାର ଦେଇ ଅଫିସରମାନଙ୍କଠାରୁ ପରାମର୍ଶ ଚାହିଥିଲେ । ସେ ସର୍କ୍ୟୁଲାର ଆମ ଅଫିସ୍‌କୁ ମଧ୍ୟ ଆସିଥିଲା । କୁଶୁପୁର ହାଇସ୍କୁଲ୍‌କୁ ରେକଗ୍‌ନିଶନ୍ ଦେଲାବେଳେ, ମୋର ସେହି ସର୍କ୍ୟୁଲାର ମନେପଡ଼ିଲା । ଉତ୍କଳର ପଲ୍ଲୀପ୍ରାଣର ବରେଣ୍ୟ ବାହକ ଓ ବିଶିଷ୍ଟ ଶିକ୍ଷାବିତ୍ ନନ୍ଦକିଶୋର ବଳଙ୍କ ଗାଁରେ ନୂଆ ଗଢ଼ିଉଠୁଥିବା ହାଇସ୍କୁଲ୍‌କୁ, ତେଣୁ ନନ୍ଦକିଶୋର ବିଦ୍ୟାଳୟ ହେଉ ବୋଲି କହିବା ତ ମୋ ପକ୍ଷରେ ଏକାନ୍ତ ସ୍ୱାଭାବିକ ।

ଏବେ କୁଶୁପୁର ହାଇସ୍କୁଲ 'ନନ୍ଦକିଶୋର ବିଦ୍ୟାପୀଠ' ନାମରେହିଁ ପରିଚିତ । ସେଇ ନାମରେହିଁ ସେ ସ୍କୁଲ୍ ସରକାରଙ୍କଦ୍ୱାରା ସ୍ୱୀକୃତ ଓ ସରକାରଙ୍କ ସାହାଯ୍ୟପ୍ରାପ୍ତ । କିନ୍ତୁ ଯା ତଳେ କୁତ୍ସିତ ନାଟକର ଅଭିନୟ ହୋଇଯାଇଛି, ତାହା ପ୍ରାଣରେ ଏକ ତିକ୍ତ ସ୍ୱାଦ ଛାଡ଼ିଯାଇଛି ।

### ସାମ୍ପ୍ରଦାୟିକତା ଓ ସରକାରୀ ଅଫିସର –

ସେ କାଳରେ କୁଶୁପୁର ଗ୍ରାମରେ ବଳଙ୍କ ଗୋଷ୍ଠୀର ଲୋକ ଓ ସେହି ଗ୍ରାମର ଅନ୍ୟ ଏକ ଗୋଷ୍ଠୀର ଲୋକଙ୍କ ଭିତରେ ବାଦବିବାଦ ଲାଗିଥିଲା । କିନ୍ତୁ ମୁଁ ସେ ବିବାଦ କଥା ଜାଣନ୍ତି କିପରି ? କୁଶୁପୁର ଗାଁ ମୁଁ ସେଥିର ପ୍ରଥମେଇ ଦେଖିଲି । ତା'ପରେ, ଏପରି ବିବାଦ ତ ଓଡ଼ିଶାର ପଲ୍ଲୀ ଅଞ୍ଚଳରେ ବରାବର ଲାଗିଥାଏ । ସେଥିପାଇଁ ଅଫିସର ଶ୍ରେଣୀର ଲୋକେ ତାକୁ ଗୁରୁତ୍ୱ ନ ଦେଇ ଯାହା ଉଚିତ, ତାହା କରିଯିବା କଥା । ନଚେତ୍ ସେମାନେ ପରୋକ୍ଷରେ ଗ୍ରାମ୍ୟ କଳହକୁ ହିଁ ମୂଲ୍ୟ ଦେଲେ ବୋଲି ଧରିବାକୁ ହେବ ।

କୁଶୁପୁର ସ୍କୁଲ୍‌ର ରେକଗ୍‌ନିଶନ୍ ରିପୋର୍ଟ ଦେଇସାରିବାର ଅଳ୍ପଦିନ ଭିତରେ ମୁଁ ସମ୍ବଲପୁର ବଦଳି ହୋଇଗଲି । ଶୁଣିଲି, କୁଶୁପୁରରେ ବଳଙ୍କ ଗୋଷ୍ଠୀର ବିରୋଧୀ ଗୋଷ୍ଠୀ, ସ୍କୁଲ୍‌ଟି ବଳଙ୍କ

ନାଁରେ ନାମିତ ହେବାକୁ ଚାହିଲେନାହିଁ ଓ ତାଙ୍କର ପ୍ରତିନିଧିମାନେ ସରକାରଙ୍କୁ ଭେଟିଲେ, ଏହା ନକରେଇ ଦେବାକୁ । ଶୁଣିଥିଲି, ହାଇକୋର୍ଟରେ ମକଦ୍ଦମା କରିବାର ଚେଷ୍ଟା ବି କରିଥିଲେ ।

ଆମର ମଫସଲମାନଙ୍କରେ ଏପର୍ଯ୍ୟନ୍ତ ଜାତିଆଣଭାବ ଯେପରି ଜାଗ୍ରତ ରହିଛି, ସେଥିରେ କୁଶୁପୁରରେ ବଳଙ୍କ ଗୋଷ୍ଠୀର ବିରୋଧୀ ବନ୍ଧୁଗଣଙ୍କର ଏ ବ୍ୟବହାରରେ ମୁଁ ଆଦୌ ବିସ୍ମୟର କାରଣ ଦେଖୁନାହିଁ । କଟକ ସହରରେ ଏକ ବିବାହ-ଭୋଜିରେ ଉତ୍କଳ ବିଶ୍ୱବିଦ୍ୟାଳୟର ଜଣେ ଏକ୍ସ-ଭାଇସ୍-ଚାନ୍‌ସେଲର ନିଜକୁ ଖୁବ୍ ଉଚ୍ଚକୋଟୀର ବ୍ରାହ୍ମଣ ମନେ କରି ସେ କାଳରେ ଓଡ଼ିଶା ସେକ୍ରେଟୋରିଏଟ୍‌ରେ ରେଜିଷ୍ଟ୍ରାର୍ ଥିବା ସେନାପତି ନାମଧେୟ ଅନ୍ୟ ଜଣେ, ତାଙ୍କରି ପରି ଉପବୀତଧାରୀ ହେଲେହେଁ, ସେଇ ଏକ୍ସ- ଭାଇସ୍-ଚାନ୍‌ସେଲରଙ୍କ ମତରେ ତାଙ୍କଠାରୁ ନିମ୍ନସ୍ତରର ବ୍ରାହ୍ମଣ ବୋଲି, ସେ ଯେତେବେଳେ ସେହି ଏକ୍ସ-ଭାଇସ୍‌ଚାନ୍‌ସେଲରଙ୍କୁ ଭୋଜ୍ୟ ପରଷି ଦେଲେ, ତା' ଫଳରେ ଯେଉଁ ଦ୍ୱନ୍ଦ୍ୱ ଯୁଦ୍ଧ, ଯେଉଁ ପାଟିତୁଣ୍ଡ, ଯେଉଁ ବୀଭତ୍ସ ଦୃଶ୍ୟ ସେ ଏକ୍ସ- ଭାଇସ୍‌ଚାନ୍‌ସେଲର ଘଟାଇଥିଲେ, ତାହା ମୁଁ ନିଜ ଆଖିରେ ଦେଖିଛି । ଏ ଯଦି କଟକ ସହରରେ, ଗୋଟିଏ ଉଚ୍ଚ ଗୋଷ୍ଠୀ ଭିତରେ ଉଚ୍ଚ ଶିକ୍ଷିତ ମହଲରେ ଘଟେ, ତେବେ ଏକ ମଫସଲରେ ଦୁଇ ଭିନ୍ନ ଗୋଷ୍ଠୀ ଭିତରେ ଏପରି କାଣ୍ଡ ଘଟିବାରେ ବିସ୍ମିତ ବା ବ୍ୟଥିତ ହେବାର କି ଅଛି ? ମଫସଲ ଲୋକେ ବା ନନ୍ଦକିଶୋର ବଳଙ୍କ ମର୍ଯ୍ୟାଦା କି ବୁଝିବେ ? କିନ୍ତୁ ମୁଁ ଲଜ୍ଜିତ ଓ ଦୁଃଖିତ ଏଇ କାରଣରୁ ଯେ, ଏ ଦେଶର ଶିକ୍ଷା-ବିଭାଗର-ଉଚ୍ଚତମ-ଅଫିସର-ଶ୍ରେଣୀର ଶିକ୍ଷିତ ଲୋକ ମଧ୍ୟ ଏହି କୁତ୍ସିତ ଗ୍ରାମ୍ୟ-ବିବାଦରେ ପକ୍ଷ ନେଲେ, କେବଳ ହୁଏତ ମୋଠି କୌଣସି ପ୍ରକାର କାଦୁଅ ବୋଳିବାପାଇଁ ।

ମୋ ପରେ ଯିଏ ଉତ୍ତର ଓଡ଼ିଶାର ଇନ୍ସପେକ୍ଟର ହେଲେ, କୁଶୁପୁରର ବିରୋଧୀ ଲୋକମାନଙ୍କର ଦରଖାସ୍ତ ଓ ଆପତ୍ତି ସବୁର ଇନ୍‌କ୍ୱାରୀ ପାଇଁ ବୋଧହୁଏ ତାଙ୍କୁ ଡି.ପି.ଆଇ. କୁଶୁପୁର ପଠାଇଥିଲେ । ସେ ସମ୍ପର୍କରେ ସେ ଡି.ପି.ଆଇ.ଙ୍କୁ ଯେଉଁ ରିପୋର୍ଟ ଦେଇଥିଲେ ସମ୍ବଲପୁରରେ ପ୍ରିନ୍ସପାଲ ଥିଲାବେଳେ ତତ୍କାଳୀନ ଡି.ପି.ଆଇ. ମତେ ସେ ରିପୋର୍ଟର କପି ଦେଇ ମୋଠାରୁ ଜବାବ ମଧ୍ୟ ଚାହିଥିଲେ । ଏହି ସମଗ୍ର ଘଟଣାରେ ମୋର ଭାଇ-ଇନ୍ସପେକ୍ଟରଙ୍କର ଏହି ରିପୋର୍ଟ ହିଁ ମୋତେ ମର୍ମାନ୍ତିକ ବ୍ୟଥା ଦେଇଛି ।

ସେ ରିପୋର୍ଟରେ ଲେଖାଥିଲା ଯେ, କୁଶୁପୁରର ଶ୍ରୀ ବ-ପୃ ଓ ଅନ୍ୟାନ୍ୟମାନେ ମୋ ବିରୁଦ୍ଧରେ ଯେଉଁ ଅଭିଯୋଗ କରିଥିଲେ, ତାହାରି ଇନ୍‌କ୍ୱାରୀ କରିବାପାଇଁ ପରବର୍ତ୍ତୀ ଇନ୍ସପେକ୍ଟର କୁଶୁପୁର ଯାଇଥିଲେ । ବ-ପୃ ମହାଶୟାଦିଙ୍କର ମୂଳ ଅଭିଯୋଗପତ୍ର ମୁଁ ଦେଖିନାହିଁ । କିନ୍ତୁ ସେଇ ରିପୋର୍ଟରୁ ବୁଝିଲି ଯେ ମୋର ପରବର୍ତ୍ତୀ ଏହି ଇନ୍ସପେକ୍ଟର ଓ ଶ୍ରୀ ବ-ପୃ ଆଦି ଶିକ୍ଷିତ ବନ୍ଧୁଗଣ, ଉଭୟେ ବଳଙ୍କ ପରି ଦେଶମାନ୍ୟ ଏକ ଜାତୀୟ କବିଙ୍କ ସ୍ମୃତିକୁ ଅକାତର ଅକୁଣ୍ଠତାରେ ପଦାଘାତ କରିବାକୁ ପଛେଇ ନଥିଲେ ।

ଏ ରିପୋର୍ଟ ଯିଏ ପଢ଼ିବ ତା'ର ଏହି ଧାରଣା ହେବ ଯେ କେବଳ ଜଣେ ଘୋର-ସଂକୀର୍ଣ୍ଣ-ସାମ୍ପ୍ରଦାୟିକ-ମନୋଭାବାପନ୍ନ ଖଣ୍ଡାଏତ ଥିବାରୁ ଓ ବଳଙ୍କ ପୁଅ ଶ୍ରୀ କୃଷ୍ଣକିଶୋରଙ୍କ ଘରେ ରାତିଏ ମାଗଣା ଭୋଜନ ପାଇଥିବାରୁ ଓ କୁଶୁପୁରର ଖଣ୍ଡାଏତ କୁଳବଧୂମାନଙ୍କଦ୍ୱାରା ବନ୍ଦିତ

ହୋଇଥିବାରୁ ଏବଂ କୁଶୁପୁରର ଖଣ୍ଡାଏତ ପରିବାରମାନଙ୍କଦ୍ୱାରା ପ୍ରବର୍ତ୍ତିତ ହୋଇହିଁ, କୁଶୁପୁର ହାଇସ୍କୁଲ୍‌କୁ ମୁଁ ନନ୍ଦକିଶୋରଙ୍କ ନାମରେ ନାମିତ କରାଇବାକୁ ଚାହିଥିଲି ! ରିପୋର୍ଟର ଶେଷ ଆଡ଼ିକି ସ୍ପଷ୍ଟ କୁହାଯାଇଥିଲା ଯେ କୁଶୁପୁରର ପ୍ରଧାନ ଖଣ୍ଡାଏତ ପରିବାର ସବୁ ସ୍ୱର୍ଗତ ନନ୍ଦକିଶୋର ବଳଙ୍କର ଜ୍ଞାତି ଓ ଏକ ସ୍ଥାନରେ, ଏକ ଗୋଷ୍ଠୀରୂପେ ସ୍କୁଲ୍‌ଠାରୁ ଅଳ୍ପ ଦୂରରେ ବାସ କରନ୍ତି ଓ ସମ୍ଭବତଃ ସ୍କୁଲ୍‌କୁ ନନ୍ଦକିଶୋର ବଳଙ୍କର ନାମରେ ନାମିତ କରିବାର ସିଦ୍ଧାନ୍ତ ସେହିଠାରେ ନିଆଯାଇଥିଲା ।

ମାନନୀୟ ଇନ୍‌ସପେକ୍ଟର ମହୋଦୟ ସ୍ୱାଧୀନ ଭାରତ ସରକାରଙ୍କର ଜାତୀୟ ଅନୁଷ୍ଠାନମାନଙ୍କୁ ଜାତୀୟ ବୀରମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିବାର ଜେନେରାଲ ସର୍କ୍ୟୁଲାର, ବୋଧହୁଏ ମତେ କାବୁଅ ବୋଲି ଠିଆ କରାଇବାର ଅତ୍ୟଧିକ ପ୍ରଲୋଭନ ଯୋଗୁଁ ପାସୋରିଗଲେ । ତେଣୁ ଓଡ଼ିଶାର ପଲ୍ଲୀପ୍ରାଣ କବି ଓ ବିଶିଷ୍ଟ ଶିକ୍ଷାବିତ୍‌ଙ୍କ ଜନ୍ମ-ଗାଁରେ ଠିଆହୋଇଥିବା ନୂଆ ହାଇସ୍କୁଲ୍‌କୁ ତାଙ୍କ ନାଁରେ ଉତ୍ସର୍ଗୀକୃତ କରିବାର ଅଯୌକ୍ତିକ ପ୍ରସ୍ତାବ, ଜଣେ ଖଣ୍ଡାଏତ ଇନ୍‌ସପେକ୍ଟର ଓ କୁଶୁପୁରର ଖଣ୍ଡାଏତଙ୍କର ଗୋପନୀୟ ବିଚାର ନହେଲେ ସମ୍ଭବ ହୋଇନଥାନ୍ତା ବୋଲି ସେ ବିଶ୍ୱାସ କଲେ । କିନ୍ତୁ ନନ୍ଦକିଶୋର ବଳଙ୍କ ଜନ୍ମସ୍ଥାନର ହାଇସ୍କୁଲ୍‌କୁ ତାଙ୍କ ନାଁରେ ନାମିତ କରିବା ସାମ୍ପ୍ରଦାୟିକ ସଂକୀର୍ଣ୍ଣତା, ନା ତାକୁ ବିରୋଧ କରିବା ବା ସେହି ବିରୋଧକୁ ପ୍ରଶ୍ରୟ ଦେବା କୁତ୍ସିତ ସାମ୍ପ୍ରଦାୟିକ ସଂକୀର୍ଣ୍ଣତାର ସୂଚନା ଦିଏ ?

## ଘୋର ମିଥ୍ୟାମୟ ରିପୋର୍ଟ –

ନାନା ଅବାନ୍ତର ପ୍ରସଙ୍ଗ ସହିତ ଏକ ରିପୋର୍ଟ ଅଧିକାଂଶଭାବରେ ଘୋର ମିଥ୍ୟା ଜାଲରେ ହିଁ ପୂର୍ଣ୍ଣ ଥିଲା । ଲେଖକ, ରିପୋର୍ଟ-କଥିତଭାବରେ କସ୍ମିନକାଳେ ଖଣ୍ଡାଏତ ସମିତି ବା କୌଣସି ହେଲେ ରାଜନୈତିକ ବା ସାମ୍ପ୍ରଦାୟିକ ସମିତିର ସଭ୍ୟ ହୋଇନାହିଁ । ଯଦିବା ସେ କେବେ ହୋଇଥିଲା, ବିଚକ୍ଷଣ ଇନ୍‌କ୍ୱାରୀ ଅଫିସର କୁଶୁପୁର ଯାଇ ସେ ପରମ ସତ୍ୟ ଆବିଷ୍କାର କଲେ କିପରି ? ଖଣ୍ଡାଏତ ସମିତିର ହେଡ଼କ୍ୱାର୍ଟରସ୍ କୁଶୁପୁର ଗାଁ ବୋଲି ମତେ ବି ଜଣାନଥିଲା । ସେଠି ସେହି ବରେଣ୍ୟ ଶିକ୍ଷାବିତ୍ କ'ଣ ଏଇ ସମିତିର କାଗଜପତ୍ରରେ ମୋ ନାଁ ଦେଖି, ଏତେ ବଡ଼ ସତ୍ୟ ସରକାରୀ-ରିପୋର୍ଟରେ ଅକୁଣ୍ଠିତ ଚିତ୍ତରେ ଲେଖିଦେଲେ ? ପୁଣି ମି. ମଧୁସୂଦନ ଦାସ ଖ୍ରୀଷ୍ଟାନ୍ ସଭାର ସଭାପତି ହୋଇ, ଗୋପବନ୍ଧୁ ଦାସ ନିଜ ଗୋଷ୍ଠୀର ବ୍ରାହ୍ମଣ ପିଲାଙ୍କୁଇ କେବଳ ସମ୍ବୋଧନ କରି କବିତା ଲେଖି, ଅସାମ୍ପ୍ରଦାୟିକ ରହିଲାବେଳେ, ଖଣ୍ଡାଏତ କୁଳରେ ଜନ୍ମ ହୋଇ ଖଣ୍ଡାଏତ ବୋଲି ପରିଚୟ ଦେଲେ କୌଣସି ଲୋକର ଦୋଷ ଅପରାଧ ହେବ ବା କାହିଁକି ? ଓ ତାହା ପୁଣି ସରକାରୀ ରିପୋର୍ଟରେ ଏପରି କୁତ୍ସିତ ବର୍ଣ୍ଣରେ ଚିତ୍ରିତ ହେବ ! ଓ ହେବ ପୁଣି ଦେଶର ସର୍ବମାନ୍ୟ କବି ଓ ଶିକ୍ଷାବିତ୍‌ଙ୍କର ତାଙ୍କ ନିଜ ଗାଁରେ ସ୍ମୃତି ରକ୍ଷା ସମ୍ପର୍କରେ ? ବଡ଼ ଅଦ୍ଭୁତ ନ୍ୟାୟ ଓ ଦେଶପ୍ରାଣତା ଏ ଦେଶରେ ତ ! କୁଶୁପୁରରେ ମତେ ଖଣ୍ଡାଏତ ଗୋଷ୍ଠୀ ପ୍ରସେଶନ୍ କରିନେବା ଓ ଖଣ୍ଡାଏତ କୁଳବଧୂମାନେ ହରିଦ୍ରାରଞ୍ଜିତ-ଅକ୍ଷତ-ଓ-ଦୂର୍ବାଦଳ ଦେଇ ବନ୍ଦେଇବାର ଇନ୍‌ସପେକ୍ଟର ଶ୍ରୀ. ମି. ଯାହା ବର୍ଣ୍ଣନା ଏ ରିପୋର୍ଟରେ ଦେଇଛନ୍ତି ତାହା ଘୋର

ମିଥ୍ୟା, ସମ୍ପୂର୍ଣ୍ଣ ମିଥ୍ୟା ଓ ଅସମ୍ଭବ ମିଥ୍ୟା । ମୋ ଜାଣିବାରେ ଲେଖକର କୁଶୁପୁର ଯିବାବେଳର ଲୋକେ ଏପର୍ଯ୍ୟନ୍ତ ବି ବଞ୍ଚିଛନ୍ତି, ହୁଏତ କେବଳ ବି. ବର୍ମାଙ୍କ ଛଡ଼ା । କୌତୂହଳୀ ଲୋକ ବା ସ୍ୱୟଂ ସରକାର ଇନ୍‌କ୍ୱାରୀ କରି ଏ ଘଟଣାର ସତ୍ୟ - ମିଥ୍ୟା ଏବେ ବି ବୁଝିପାରନ୍ତି । ମୋ ନିଜ ଗାଁ ସମ୍ପର୍କରେ ସେପରି ଲେଖା ହୋଇଥିଲେ ମୁଁ ହୁଏତ କୋର୍ଟରେ ଆଶ୍ରୟ ନେଇଥାନ୍ତି, କାରଣ କୁଶୁପୁରରେ ଖଣ୍ଡାଏତ ବା ଅଖଣ୍ଡାଏତ କୁଳବଧୂ ଦୂରର କଥା, ଜଣେ ସାମାନ୍ୟ ସ୍କୁଲ୍ ଛାତ୍ରୀ ମଧ ମତେ ସମ୍ବର୍ଦ୍ଧନା ଜଣାଇବାପାଇଁ ଆସିନଥିଲେ ।

ମୋର କୃଷ୍ଣକିଶୋର ବଳଙ୍କ ଘରେ କୁଶୁପୁରରେ ସେଦିନ ରାତିଟି କଟାଇବା ମଧ ଇନ୍ସପେକ୍ଟର ଶ୍ରୀ. ମି. ବ୍ୟଞ୍ଜନାପୂର୍ଣ୍ଣ ଭାବରେ ଉଲ୍ଲେଖ ନକରି ଛାଡ଼ିନାହାନ୍ତି । ତାଙ୍କ ରିପୋର୍ଟରେ ସେ କିପରି ବୁଝିବେ ଯେ ମୁଁ କୃଷ୍ଣକିଶୋର ବଳ ବୋଲି କୌଣସି ଲୋକର ଆତିଥ୍ୟପାଇଁ ଲାଳାୟିତ ନଥିଲି ? ମୁଁ ଉତ୍କଳର ବରେଣ୍ୟ ପଲ୍ଲୀକବି ନନ୍ଦକିଶୋରଙ୍କ ପଲ୍ଲୀ-ବାସରେ ରାତିଏ କଟାଇବାର ଲୋଭ ସେଦିନ ସମ୍ବରଣ ପାରିନଥିଲି; ତାହା ପୁଣି ବରେଣ୍ୟ ଶିଳ୍ପୀ ବର୍ମା ଓ ବଳଙ୍କ ଜାମାତା ଓ ମୋର କଲେଜ-ସହପାଠୀ ଶ୍ରୀ ଗୋପୀନାଥ ସାମଲ (ସେତେବେଳେ କୁଶୁପୁର ହାଇସ୍କୁଲ୍‌ର ସେକ୍ରେଟାରୀ)ଙ୍କ ବାରମ୍ବାର ଅନୁରୋଧରେ । ସନ୍ଧ୍ୟା ହୋଇ ଆସିଥିଲା । ମୁଁ ବାହାରିଲି ପଟାମୁଣ୍ଡେଇ ଡାକବଙ୍ଗଳାରେ ରାତି କଟାଇବାପାଇଁ । ବର୍ମା ଓ ସାମଲ କିନ୍ତୁ କୁଶୁପୁରରେ ଓ ବଳଙ୍କ ଘରେ ରାତିଟି କଟାଇ ନେବାପାଇଁ ଅଡ଼ି ବସିବାରୁ ମୁଁ ଆଉ ନାହିଁ କରିପାରିଲିନାହିଁ । ପୁଣି ବଳଙ୍କ ଘରେ ରହିଲି ସିନା, ମୁଁ ସେଦିନ ନୈଶ୍ୟଭୋଜନ କଲି ପ୍ରକୃତରେ ଶ୍ରୀଯୁକ୍ତ ଦୀନବନ୍ଧୁ ସାହୁ (ଓଡ଼ିଶାର ଆଡ଼ଭୋକେଟ୍ ଜେନେରାଲ୍)ଙ୍କର ଶ୍ୱଶୁରଙ୍କ ଘରେ । କୁଶୁପୁରରେ ସାମ୍ପ୍ରଦାୟିକ ଦ୍ୱନ୍ଦ୍ୱର ଗନ୍ଧ ମଧ ମତେ ସେତେବେଳେ ଅଜଣା ଥିଲା । କୁଶୁପୁର ଏପରି ଏକ ବଡ଼ଗ୍ରାମ ଓ ସମ୍ପତ୍ତିଶାଳୀ ବ୍ୟବସାୟୀ ବସତି ବୋଲି ମଧ ମତେ ସମ୍ପୂର୍ଣ୍ଣ ଅଜଣା ଥିଲା । ମୁଁ ଯାହା ରିପୋର୍ଟ ଦେଲି ତାହା ଥିଲା ସମ୍ପୂର୍ଣ୍ଣ ନିରୀହ, ନିର୍ଦ୍ଦୋଷ ଓ ଦୁରଭିସନ୍ଧିଶୂନ୍ୟ ଅଭିବ୍ୟକ୍ତି ।

## ମୋର ପ୍ରେସ୍ ସ୍ଥାପନ ଚେଷ୍ଟା –

ଏଇ ରିପୋର୍ଟରେ ମୋର ସାମ୍ପ୍ରଦାୟିକତା ପ୍ରମାଣିତ କରିବା ଲକ୍ଷ୍ୟରେ 'ଖାରବେଳ' ଓ 'ନାୟକ' ନାମକ ଦୁଇଟି ପ୍ରେସ୍ ସହିତ ମୁଁ କିପରି ସମ୍ପୃକ୍ତ ଥିଲି ତାହା ମଧ ବର୍ଣ୍ଣିତ ଥିଲା । ଏଡୁକେଶନାଲ ଆଡ଼ଭାଇଜର ପଦ ଉଠିଗଲା ପରେ ମୁଁ ପ୍ରାୟ ତିନିମାସ କଟକରେ ବେକାର ବସିଥିଲି । ସେକଥା ଯଥାସ୍ଥାନରେ ପୂର୍ବେ କହିଛି । ସେତେବେଳେ ମୋର ଜୀବିକାପାଇଁ ମୁଁ ଗୋଟିଏ ପ୍ରେସ୍‌ର ଯୋଗାଡ଼ କରୁଥିଲି । କେବଳ ପ୍ରଚାରପାଇଁ, ଉତ୍କଳର ଶ୍ରେଷ୍ଠ ବୀରଙ୍କ ନାମାନୁସାରେ ତାର ନାମ ମଧ ଦେଇଥିଲି 'ଖାରବେଳ ପ୍ରେସ୍' । ସେତେବେଳେ କଳ୍ପନା ମଧ କରିନଥିଲି ଯେ 'ଖାରବେଳ' ନାମ ଖଣ୍ଡାଏତୀ ସାମ୍ପ୍ରଦାୟିକତାର ପ୍ରତୀକ ରୂପେ ଠିଆହେବ । ପରେ ଏହି ଖାରବେଳ ପ୍ରେସ୍‌କୁ ଏକ ଲିମିଟେଡ଼ କମ୍ପାନୀ କରି ବଡ଼ଧରଣର ଗଢ଼ିବାର ଚେଷ୍ଟା କରାଯାଉଥିଲା ଓ ତା'ର ଓକିଲ ଥିଲେ ସ୍ୱର୍ଗତ କାଶୀନାଥ ଦାସ ଆଡ଼ଭୋକେଟ୍–ଆମର ଜ୍ଞାତି ଓ ଆମର ଫାମିଲି-ଲଏର । ସେଇହିଁ ସବୁ କାଗଜପତ୍ର ଠିକ୍‌ଠାକ୍ କରୁଥିଲେ । କିନ୍ତୁ ଯେତେବେଳେ

ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିର ରେସିଡେଣ୍ଟ ମତେ ପ୍ରାଚ୍ୟ ଗଡ଼ଜାତମାନଙ୍କର ସ୍ମଲ୍ ସେଭିଂଗ୍‌ସ୍ ଆଡ଼ଭାଇଜର ପୋଷ୍ଟ ଓ ଏଣେ ଓଡ଼ିଶା ସରକାର ଆଡଲ୍‌ଟ ଏଡୁକେଶନ୍ ଅଫିସର ପୋଷ୍ଟ ଯାଚିଲେ, ମୁଁ ଶେଷୋକ୍ତ ପୋଷ୍ଟଟିକୁ ଆଖିବୁଜା ଗ୍ରହଣ କରି, ପ୍ରେସ୍‌ର ଜଞ୍ଜାଳରୁ ନିଜକୁ ମୁକ୍ତ କରି ବାହାରିପଡ଼ିଲି । ତା'ପରେ ସେ ପ୍ରେସ୍- ପ୍ରେସ୍ କ'ଣ ହେଲା, ମୁଁ କାହାକୁ ପଚାରିଯାଇନି । କିନ୍ତୁ ହାୟରେ ହାୟ, ସଂକଟରେ ପଡ଼ି ବେକାର ଲୋକର ଜୀବିକା ଖୋଜିବାର ଏକ ଅସିଦ୍ଧ ପ୍ରଯତ୍ନକୁ ପରେ ସାମ୍ପ୍ରଦାୟିକ ରାଜନୀତି ଓ ଏପରିକି କୁଶୁପୁରରେ ନନ୍ଦକିଶୋର ବିଦ୍ୟାପୀଠ ସ୍ଥାପନା ସହିତ କିପରି ଜଡ଼ିତ କରାଯାଇଛି, ପାଠକେ ଦେଖନ୍ତୁ । ପୁଣି ଇନ୍ସପେକ୍ଟର ଶ୍ରୀ ମି. 'ନାୟକ ପ୍ରେସ୍' ନାମକ ଆଉ ଏକ ପ୍ରେସ୍‌ର ମୁଁ ଅଂଶୀଦାର ଥିଲି ବୋଲି ଯାହା ରିପୋର୍ଟରେ ଲେଖିଛନ୍ତି ତାହା ଆଉ ଏକ ଘୋରତର ମିଥ୍ୟା ପ୍ରଚାର । ଏପରି ପ୍ରେସ୍ କଟକରେ କେବେ ଥିଲା ବୋଲି ମୋତେ ଜଣାନାହିଁ । ଅଂଶୀଦାର ହେବା ଦୂରେଥାଉ ।

କୌଣସି ସାମ୍ପ୍ରଦାୟିକ ସଂକୀର୍ଣ୍ଣତା ସହିତ ଜଡ଼ିତ ହେବା ଦୂରେଥାଉ ବରଂ ଯେତେବେଳେ ଖଣ୍ଡାଏତ ଆନ୍ଦୋଳନ ଏ ଦେଶରେ ତୀବ୍ର ହୋଇ ଉଠିଥିଲା, ସେତେବେଳେ ଏଇ ଲେଖକ ଖଣ୍ଡାଏତ ସମିତିର ତତ୍କାଳୀନ ମୁଖପତ୍ର 'ନାୟକ' ପତ୍ରିକାରେ କିପରି ତାର ପ୍ରତିବାଦ କରିଥିଲା ତାହାର ନମୁନା ପାଠକମାନଙ୍କ ବିଚାର ନିମନ୍ତେ ନିମ୍ନରେ ଦେଉଛି ।

(ନୋଟ୍—ବୋଧହୁଏ ମୁଁ ବିଲାତରୁ ଫେରିଲାବେଳକୁ ଅର୍ଥାତ୍ ୧୯୩୯ ବେଳକୁ, ୧୯୩୬ର ପ୍ରଥମ ଭାରତୀୟ ଲୋକପ୍ରତିନିଧି ଶାସନର ସଦ୍ୟ ପ୍ରତିକ୍ରିୟା ରୂପେ ଓଡ଼ିଶାରେ ଖଣ୍ଡାଏତ ଆନ୍ଦୋଳନ ଖୁବ୍ ତେଜିଉଠିଥିଲା । ଏଇ ଆନ୍ଦୋଳନର 'ନାୟକ' ବୋଲି ଏକ ମୁଖପତ୍ର ମଧ ବାହାରୁଥିଲା । ବୋଧହୁଏ, ପୂର୍ବତନ କଂଗ୍ରେସ ଏମ.ପି. ଶ୍ରୀଯୁକ୍ତ ନୃସିଂହଚରଣ ସାମନ୍ତସିଂହାର ସେତେବେଳେ 'ନାୟକ'ର ସମ୍ପାଦକ ଥାଆନ୍ତି । ମନେହେଉଛି ତାଙ୍କରି ଅନୁରୋଧରେ ଥରେ 'ନାୟକ'କୁ ମୁଁ ଏହି ଉପଦେଶାତ୍ମକ ଲେଖା ଦେଇଥିଲି ।)

" x x x ପ୍ରତିବର୍ଷ ଖଣ୍ଡାୟତ-କ୍ଷତ୍ରିୟ ସମିତିର ଏକ ଅଧିବେଶନ କଟକରେ ହୁଏ । ପ୍ରତିଥର ଖଣ୍ଡାୟତମାନଙ୍କ ତରଫରୁ ସରକାରୀ ଚାକିରିଆ ବେଶି ହୁଅନ୍ତୁ, ଏହା ବରାବର ଦାବି କରାଯାଏ । କର୍ତ୍ତୃପକ୍ଷଙ୍କ ଧାରଣା ବୋଧହୁଏ କୌଣସି ମହାପାତ୍ର, ବଳିୟାର ସିଂ ବା ସାମନ୍ତସିଂହାର ଯଦି ଡିପୋଟିଟାଏ ହୋଇଯାନ୍ତି ତେବେ ସମଗ୍ର ଖଣ୍ଡାଏତ ଜାତି ସେହି ଗୋଟିଏ ଦୀପରେ ଆଲୋକିତ ହୋଇଉଠିବ — ଏ ଧାରଣା ଏକାନ୍ତ ଭ୍ରାନ୍ତ ଓ ଏପ୍ରକାର ଦାବି ମହାନୁଭବତାର ପରିଚୟ ଦିଏନାହିଁ । ଚାକିରି ବ୍ୟକ୍ତିର ଉପକାରରେ ଆସେ, ଜାତିର ନୁହେଁ । ଓଡ଼ିଶା ଦେଶର ସବୁ ସରକାରୀ ଚାକିରି, ଖଣ୍ଡାଏତମାନଙ୍କୁ ଦିଆଗଲେ ମଧ ଖଣ୍ଡାଏତ ଜାତିର ଦୁର୍ଦ୍ଦଶା ଘୁଞ୍ଚିବନାହିଁ । xxx 'ନାୟକ' ଯଦି କେବଳ ଖଣ୍ଡାଏତ ଜାତିର ଫେନିଳ ଗୌରବକୁ କବିତା ଓ ପ୍ରବନ୍ଧରେ ପ୍ରକାଶ ନକରି କୃଷି, ବାଣିଜ୍ୟ, ସମାଜ, ସ୍ୱାସ୍ଥ୍ୟ, ଅର୍ଥନୀତି, ରାଜନୀତି ଓ ଦୈନନ୍ଦିନ ଜୀବନର ନାନା କଥା ନେଇ ସୁନ୍ଦର ସୁନ୍ଦର ଲେଖା ସରଳ ଭାବରେ ପ୍ରକାଶ କରେ, ତେବେ ତାହା ଉତ୍କଳର ଘରେ ଘରେ ପଠିତ ହେବ ଓ କେବଳ ଖଣ୍ଡାଏତ ଜାତିର ନୁହେଁ, ସମଗ୍ର ଓଡ଼ିଆ ଜାତିର ଉପକାରରେ ଆସିବ । ମନେରଖିବାକୁ

ହେବ, ଖଣ୍ଡାଏତର ଜନ୍ମ ଓଡ଼ିଶାପାଇଁ । ତା'ର ରକ୍ତରେ ସେ ଏ ଜାତିର ଐତିହାସିକ ମାଟିକୁ ଉର୍ବର କରିଛି ।'' ନାୟକ, ୩ୟ ବର୍ଷ, ୬ଷ୍ଠ ସଂଖ୍ୟା, ଆଷାଢ଼ ୧୩୪୬(୧୯୩୯)

ଯାହାହେଉ, ବିଚକ୍ଷଣ ଅଫିସର ଓ ଶିକ୍ଷାବିତ୍ ଶ୍ରୀ ମିତ୍ରଙ୍କର ଏ ପ୍ରକାର ରିପୋର୍ଟ ସତ୍ତ୍ୱେ କୁଶୁପୁର ହାଇସ୍କୁଲ୍ 'ନନ୍ଦକିଶୋର ବିଦ୍ୟାପୀଠ' ହୋଇ କିପରି ରହିଲା, ମୁଁ ଜାଣେନା । କିନ୍ତୁ ଉଦାର ଓ ଅସଂପ୍ରଦାୟିକ ବୋଲି ନିଜକୁ ପରିଚୟ ଦେଇ, ବଳଙ୍କୁ ଓ ମତେ ଏକ ସରକାରୀ ରିପୋର୍ଟରେ ସାଂପ୍ରଦାୟିକ ସଂକୀର୍ଣ୍ଣତାରେ ଜଡ଼ିତ କରି ଠିଆକରେଇଥିବା ଏହି ଅଫିସର ଓ ତାଙ୍କ ପୃଷ୍ଠପୋଷକବର୍ଗ କହିପାରିବେ କି, ଶିକ୍ଷାବିଭାଗର କୌଣସି ଅଫିସର ଯେ କି ଭାରତରେ ମାତ୍ର ତୃତୀୟ ଶ୍ରେଣୀ ଏମ.ଏ. ଓ ଷ୍ଟେଟ୍ - ଟଙ୍କାରେ ବିଲାତ ଯାଇ ଫେଲ୍ ହୋଇ ଫେରିଥିଲେ (ହୁଏତ ସମଗ୍ର ଭାରତରେ ଅଦ୍ୱିତୀୟ) ଓ ଯାହାଙ୍କର କୌଣସି ଏଡୁକେଶନ-ଡିଗ୍ରୀ ପୁଣି ମଧ୍ୟ ନଥିଲା, ସେ ମହାଶୟ ଓଡ଼ିଶା ଶିକ୍ଷା ବିଭାଗରେ କ୍ଲାସ୍ ୱାନ୍, ଜୁନିଅର ଆଡ଼ମିନିଷ୍ଟ୍ରେଟସ୍ ସର୍ଭିସ ଓ ସିନିଅର ଆଡ଼ମିନିଷ୍ଟ୍ରେଟିଭ୍ ସର୍ଭିସ ସବୁ ଅବଲୀଳାକ୍ରମେ ଡେଇଁ ଡେଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ତାଙ୍କ ବିରୋଧରେ ଓଡ଼ିଶା ଆସେମ୍ବ୍ଲିରେ ପ୍ରକାଶ୍ୟ ନିନ୍ଦାବାଦ କଲେହେଁ, ଜଏଣ୍ଟ ଡି.ପି.ଆଇ. ହୋଇ କିପରି ବିଦାୟ ନେଲେ ? ଏପରି ଲୋକ ପକ୍ଷରେ କ୍ଲାସ୍ ୱାନ୍ ପାଇବାର ଅସମ୍ଭବ ସମ୍ଭବ ହେଲା କିପରି ? ଏସବୁ କଅଣ ସାମ୍ପ୍ରଦାୟିକ ନିର୍ମଳତାରେ ଘଟିଯାଇଛି ? କିନ୍ତୁ ବଳଙ୍କ ଗାଁରେ ଥିବା ହାଇସ୍କୁଲ୍ ସହିତ ବଳଙ୍କ ନାଁ ଯୋଡ଼ିବାର ଇଚ୍ଛା ପ୍ରକାଶ କଲେଇ ଆଉ ଜଣେ କ୍ଲାସ୍ ୱାନ୍ ଅଫିସର ସାମ୍ପ୍ରଦାୟିକ ହୋଇଉଠେ ! ସେମାନେ କହିବେ କି ପୁଣି ଇଂରାଜୀ ଓ ଓଡ଼ିଆରେ ଡବଲ୍ ଏମ୍.ଏ .(ଓଡ଼ିଆରେ ଫାଷ୍ଟ୍ କ୍ଲାସ୍ ଓ ଗୋଲ୍ଡମେଡ଼ାଲିଷ୍ଟ୍) ସମଗ୍ର ବିହାର-ଓଡ଼ିଶାରେ ଡି.ଇଡି. ପରୀକ୍ଷାରେ ପ୍ରଥମ, ସଂଗୀତବିତ୍, ସୂକ୍ଷ୍ମରସବୋଧ, ସୁବକ୍ତା, ସୁ-ଅଭିନେତା, ସୃଜନଶୀଳ ସୁଲେଖକ ଏବଂ ପ୍ରସିଦ୍ଧ ଅଧ୍ୟାପକଙ୍କୁ ମୂଳରୁ ଗଢ଼ିଆଣୁଥିବା ଓଡ଼ିଶା ସାହିତ୍ୟ ଆକାଡ଼େମୀର ସେକ୍ରେଟାରୀ ପଦରୁ ତଡ଼ି, ତାଙ୍କ ଜାଗାରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ କି ଅଧିକ ଶୈକ୍ଷିକ ଓ ସାଂସ୍କୃତିକ ଯୋଗ୍ୟତା ଆବିଷ୍କାର କରି ନିମ୍ନଶ୍ରେଣୀର ଅନ୍ୟ ଜଣକୁ ଆଣି ବସାଇଦେଲେ ? ଏଠି ସାମ୍ପ୍ରଦାୟିକ ଓ ଆଞ୍ଚଳିକ ସଂକୀର୍ଣ୍ଣତାର ପ୍ରଶ୍ନ ଉଠେନାହିଁ, କିନ୍ତୁ କୁଶୁପୁର ହାଇସ୍କୁଲ୍‌କୁ ବଳଙ୍କ ନାଁ ଦେବାର ପ୍ରସ୍ତାବକୁ ଜଣେ ଇନ୍ସପେକ୍ଟର ସାମ୍ପ୍ରଦାୟିକ ବୋଲି ସରକାରୀ ରିପୋର୍ଟରେ ଲେଖିପାରନ୍ତି । ଏ ରାଷ୍ଟ୍ରରେ କେତେକଙ୍କର ଗୋଷ୍ଠୀ-ପତ୍ର-ପତ୍ରିକା-ଜନିତ-ଅପ୍ରତିହତ ପ୍ରଭାବର ଏହା ଉନ୍ମତ୍ତ ଆତ୍ମସଚେତନତା ଛଡ଼ା ଆଉ କଣ ହୋଇପାରେ ? ଅର୍ଥାତ୍ ''ଆମେ ଯାହା ଇଚ୍ଛା କରିଯିବା । ଦେଖିବା କିଏ କଣ କରିବ । ସବୁ ପତ୍ର-ପତ୍ରିକା ତ ଆମରି ହାତରେ ଓ ସେହି ସୁବିଧା ଯୋଗୁଁ ଦଳ, ଶାସନ, ସବୁଠି ଆମର ଦୁର୍ନିବାର ପ୍ରଭାବ । କୁକୁର ଗୁଡ଼ାକ ଭୁକୁଥାନ୍ତୁ । ପାଟି କଲେଇ ବାଡ଼େଇ ଚୁପ୍ କରିବାକୁ ଆମର ପତ୍ରପତ୍ରିକା ଅଛି ।''

## ଉଚ୍ଚ ହାଇସ୍କୁଲ୍ ଓ ନୀଚ ପ୍ରାଇମେରୀ –

ଉତ୍ତର ଓଡ଼ିଶାର ଇନ୍ସପେକ୍ଟରିର ଏତେ କଥା କହିଲିଣି ସିନା, ମୁଁ ପ୍ରକୃତରେ ଦକ୍ଷିଣ ଓଡ଼ିଶାରେହିଁ ଆଗ ଇନ୍ସପେକ୍ଟର ଥିଲି । ପରେ ହେଲି ଉତ୍ତର ଓଡ଼ିଶାରେ । କଥାଲହସରେହିଁ,

ଆଗ ଉତ୍ତର ଓଡ଼ିଶା କଥା କହିପକାଇଲି ।

କିନ୍ତୁ ଦକ୍ଷିଣ ଓଡ଼ିଶାରେ ମୁଁ ମାତ୍ର ୩/୪ ମାସ ଇନ୍ସପେକ୍ଟର ଥିଲି । ତେଣୁ ସେଠାରେ ଅଭିଜ୍ଞତାର ପୁଞ୍ଜି ବଡ଼ କମ୍ । କେବଳ ଦୁଇ ତିନିଟି କଥା ମନେପଡୁଛି । ତାହାହିଁ କହିରଖେଁ ।

ଦକ୍ଷିଣ ଓଡ଼ିଶାର ହାଇସ୍କୁଲ୍‌ଗୁଡ଼ିକ ଇନ୍ସପେକ୍ସନ୍ କରି ଦେଖିଲି ଯେ ସେ ଅଞ୍ଚଳର ହେଡ଼ମାଷ୍ଟର, ଶିକ୍ଷକ ଓ ସ୍କୁଲ୍‌ଗୁଡ଼ିକର ପରିଚାଳନା, ଉତ୍ତର ଓଡ଼ିଶାର ସମଶ୍ରେଣୀକ ସ୍କୁଲ୍‌ଗୁଡ଼ିକର ଅବସ୍ଥା ଅପେକ୍ଷା ଢେର୍ ଉଚ୍ଚତର । ସେ ଅଞ୍ଚଳରେ ହାଇସ୍କୁଲ୍‌ମାନଙ୍କରେ ବିଜ୍ଞାନ ଯେପରି ପଢ଼ା ହେଉଥିଲା, ତାହା ଉତ୍ତର ଓଡ଼ିଶାର ଆଇ.ଏସସି. ଷ୍ଟାଣ୍ଡାର୍ଡ଼ର । ସେ ସବୁର ଲାବୋରେଟରୀ ମଧ୍ୟ ସେଇପରି ଥିଲା । ଏସବୁ ମାଡ୍ରାସ ସିଷ୍ଟମର ଫଳ । ଦୁଇ ଅଞ୍ଚଳ ମିଶିଲାବେଳେ, ଏ ଦେଶର ତତ୍କାଳୀନ ଡି.ପି.ଆଇ. ତ୍ରିପାଠୀ ଯଦି ପ୍ରକୃତରେ ଶିକ୍ଷାବିତ୍ ହୋଇଥାନ୍ତେ ତେବେ ଉତ୍ତରାଞ୍ଚଳର ନୀଚତର ବ୍ୟବସ୍ଥାକୁ ଦକ୍ଷିଣାଞ୍ଚଳ ଉପରେ ନ ଲଦି, ଉତ୍ତରାଞ୍ଚଳକୁ ଦକ୍ଷିଣର ଷ୍ଟାଣ୍ଡାର୍ଡ଼କୁ ଉଠେଇବାକୁ ଚେଷ୍ଟା କରିଥାନ୍ତେ । କିନ୍ତୁ ସେ ଠିକ୍ ଓଲଟା କାମ କରିବାଦ୍ୱାରା ଓଡ଼ିଶାର ଦକ୍ଷିଣାଞ୍ଚଳ ପ୍ରତି ଅନ୍ୟାୟ କରିବା ସଙ୍ଗେ ସଙ୍ଗେ ସମଗ୍ର ଓଡ଼ିଶାର ସେକେଣ୍ଡାରୀ ସ୍କୁଲ୍‌ର ମାନଦଣ୍ଡକୁ ନ୍ୟୂନକରି, ଦେଶର ସମୂହ ଅନିଷ୍ଟ କରିଯାଇଛନ୍ତି ବୋଲି କହିବି । କିନ୍ତୁ ଆଶ୍ଚର୍ଯ୍ୟର କଥା, ଦକ୍ଷିଣ ଅଞ୍ଚଳର ପ୍ରାଇମେରୀ ଶିକ୍ଷା ଅତି ଅବହେଳିତ ଓ ନିମ୍ନସ୍ତରରେ ଥିବାର ଦେଖିଲି । ଅଧିକାଂଶ ଶିକ୍ଷକ ଅନଟ୍ରେଣ୍ଡ୍ ଓ ପୁରୁଣା ଚାଟଶାଳୀ ଅବଧାନଙ୍କ ସ୍ତରର । ଗଞ୍ଜାମ, କୋରାପୁଟରେ ଅନେକ ସ୍ଥାନରେ ପ୍ରାଇମେରୀ ଶିକ୍ଷକମାନଙ୍କୁ ଭେଟି, ହାଇସ୍କୁଲ୍ ସବୁ ଯେଉଁଠି ଏପରି ଉଚ୍ଚସ୍ତରରେ, ସେଠି ପ୍ରାଇମେରୀ ସ୍କୁଲ୍ ସବୁ କିପରି ଏପରି ହେୟ ଅବସ୍ଥାରେ ଅଛନ୍ତି, ଭାବି ଭାବି ଅତ୍ୟନ୍ତ ବିସ୍ମିତ ହୋଇଥିଲି । ହୁଏତ ଅବସ୍ଥା ଏଇ ଭିତରେ ବଦଳିବଣି କିଛି ।

## ହାଇସ୍କୁଲ୍‌ରେ ହସ୍ତକ୍ଷେପର ପ୍ରତିବାଦ –

ସେତେବେଳେ ଜିଲ୍ଲାବୋର୍ଡ଼ର ରାଜତ୍ୱ ଥିଲା । ଦକ୍ଷିଣାଞ୍ଚଳରେ ମାଡ୍ରାସ ସିଷ୍ଟେମ୍ ଅନୁଯାୟୀ, ସେକେଣ୍ଡାରୀ ଏଡୁକେଶନ ମଧ୍ୟ ଜିଲ୍ଲାବୋର୍ଡ଼ ହାତରେ ଥିଲା । ଫଳରେ ପ୍ରାଇମେରୀ ଶିକ୍ଷକମାନଙ୍କ ସହିତ ହାଇସ୍କୁଲ୍ ଶିକ୍ଷକଗୁଡ଼ିକ ମଧ୍ୟ ଦଳୀୟ ଜିଲ୍ଲାବୋର୍ଡ଼ ଚେୟାରମାନ୍‌ଙ୍କର ପଶାପାଲିର ଗୋଟି ପରି ବ୍ୟବହୃତ ହେଉଥିଲେ । ମୁଁ ଥିଲାବେଳେ ଗଞ୍ଜାମ ଜିଲ୍ଲାବୋର୍ଡ଼ କଂଗ୍ରେସ ଦଳ ହାତରେ ଥିଲା । ଯେ ଚେୟାରମାନ୍ ଥିଲେ ସେ ଥିଲେ ମୋର ଜଣାଶୁଣା ଲୋକ । ମୁଁ ଇନିସ୍ପେକ୍ଟର ଥିବା ଭିତରେହିଁ, ଜାଣିବାକୁ ପାଇଲି, କୌଣସି ସ୍କୁଲ୍‌ର ହେଡ଼ମାଷ୍ଟରଙ୍କ ଅଜ୍ଞାତରେ, ଚେୟାରମାନ୍, ସେ ସ୍କୁଲ୍‌ର କେବଳ ଏକ ଆସିଷ୍ଟାଣ୍ଟ୍ ଟିଚରକୁ ନୁହେଁ, ଜଣେ ପିଅନକୁ ମଧ୍ୟ ଅନ୍ୟତ୍ର ବଦଳି କରିଦେଇଛନ୍ତି । ଏହା ସେଇ ଅଞ୍ଚଳର ଚିରାଚରିତ, ଗତାନୁଗତିକ ଘଟଣା ଥିଲା । ବିଦ୍ୟାନୁଷ୍ଠାନରେ ବାହାରର ପ୍ରଭାବର ମୁଁ ଏପରି ବିରୋଧରେ ଯେ, ସେତେବେଳେ ଇନ୍‌ସ୍ପେକ୍ଟରିର ଆରମ୍ଭରେହିଁ, ମୁଁ ଏହାର ଦୃଢ଼ ପ୍ରତିବାଦ କରି, ଚେୟାରମାନ୍‌ଙ୍କ ନିକଟକୁ ଏକ କଡ଼ଡ଼ାପତ୍ର ଲେଖିଥିଲି । କିନ୍ତୁ ଚେୟାରମାନ୍ ତା'ର କୌଣସି ଉତ୍ତର ଦେଇନଥିଲେ ।

ସ୍କୁଲ୍‌ମାନଙ୍କରେ ହେଡ଼ମାଷ୍ଟର ଓ ତାଙ୍କର ସହକର୍ମୀମାନଙ୍କ ଛଡ଼ା ଆଉ କାହାରି ହସ୍ତକ୍ଷେପ ଆଦୌ ଉଚିତ ଓ କଲ୍ୟାଣକର୍ ନୁହେଁ, ନୁହେଁ, ନୁହେଁ । ଏ ଦେଶର ତଥାକଥିତ ନେତୃବର୍ଗ ଓ ଶାସକବର୍ଗ ଏଇତକ ଅନ୍ତତଃ ଯେପର୍ଯ୍ୟନ୍ତ ହୃଦ୍‌ବୋଧ ନକରିପାରିଛନ୍ତି, ସେପର୍ଯ୍ୟନ୍ତ ଏ ଦେଶର ବିଦ୍ୟାନୁଷ୍ଠାନମାନଙ୍କରେ ଷ୍ଟାଣ୍ଡାର୍ଡ଼ ଓ ଡିସିପ୍ଲିନ୍‌ର ସମ୍ମାନ କେବଳ ଅସମ୍ଭବ ନୁହେଁ, ଜାତୀୟ ଚରିତ୍ରର ଉନ୍ନତି ମଧ ଅସମ୍ଭବ ।

ଦକ୍ଷିଣ ଓଡ଼ିଶାରେ ଚାରିମାସ ମାତ୍ର ଇନ୍‌ସ୍ପେକ୍ଟର ଥିଲି । କିନ୍ତୁ ସେହିକାଳ ଭିତରେ ସେଠାରେ ଏକ ହେଡ଼ମାଷ୍ଟର-ସମ୍ମିଳନୀ, ହାଇସ୍କୁଲ୍-ସଂପୃକ୍ତ ସମସ୍ୟାମାନଙ୍କ ବିଚାରପାଇଁ, କରାଇ ନେଇଥିଲି । 'ଶିକ୍ଷକର ଭୂମିକା' ନେଇ ସେହି ସମ୍ମିଳନୀରେ ଦେଇଥିବା ବକ୍ତୃତା ପରିଶିଷ୍ଟରେ ଦେଇଦେଉଛି ।

## ବିଚିତ୍ର କୃତଜ୍ଞତା –

ଇନ୍‌ସ୍ପେକ୍ଟର ପଦରୁ ଅନ୍ତରିତ ହେବାର ବହୁବର୍ଷ ପରେ, ସେହି ପଦରେ ଥାଇ, କରିଥିବା କୌଣସି ସାମାନ୍ୟ କଥାର ନ୍ୟାୟ ବିଚାର ପାଇଁ ଲେଖକ କିପରି ବିଚିତ୍ର କୃତଜ୍ଞତା-ପ୍ରଦର୍ଶନର ସାକ୍ଷାତ୍ ପାଇଥିଲା, ସେହି କୌତୂହଳକର ଘଟଣାଟି ଏଠାରେ ଉଲ୍ଲେଖ କରି ଏ ଅଧ୍ୟାୟ ଶେଷ କରେ ।

ସମ୍ବଲପୁରରେ ଥାଏ । ଖରାଛୁଟିରେ କଟକ ଆସିବା ଭିତରେ ହଂଗେରୀୟ ବନ୍ଧୁ ଡକ୍‌ଟର ଚାର୍ଲସ୍ ପାଂବ୍ରୀଙ୍କୁ କୋଣାର୍କ ବୁଲାଇଆଣି ଫେରୁଥାଏ । ଆମେ ଭୁବନେଶ୍ୱର ନିକଟ ଏକ ନଈପୋଲ ପାଖରେ ଅଟକିଲୁ । ଷ୍ଟେଟ୍ ଗେଷ୍ଟଭାବରେ ପାଂବ୍ରୀ ଟୋଲ୍‌କିପର୍ ନିକଟରେ ସଂପୃକ୍ତ ଖାତାରେ ଲେଖାଲେଖି କରୁଥାନ୍ତି, ମୁଁ ନିକଟରେ ଏକ ଗଛତଳ ଅନ୍ଧାରରେ ଠିଆହୋଇ ବାହାରର ଜ୍ୟୋତ୍ସ୍ନା ଉପଭୋଗ କରୁଥାଏ । ହଠାତ୍ ସେହି ଅନ୍ଧକାରରେ, ପଛଆଡୁ ମୋ ହାତଟା କିଏ ଜାକିଧରିଲା । ମୁଁ ଚମକିପଡ଼ିଲି । ମୋର ହଠାତ୍ ଅନୁଭବ ହେଲା ଯେ, ମଡ଼ର୍ ! ମୁଁ ଲମ୍ଫ ଦେଇ ରାସ୍ତାର ଜ୍ୟୋତ୍ସ୍ନାଲୋକକୁ ଆସି ଚିତ୍କାର କଲି, କିଏ ତୁମେ ? ପ୍ରାୟାନ୍ଧକାର ଭିତରୁ ସେହି କଳ୍ପିତ ଆତତାୟୀ କିନ୍ତୁ ଆଣ୍ଠୁରେ-ମୁଣ୍ଡ-ଲଗାଇ ଜୁହାର କରି କହିଲା–''ହଜୁର, ଆପଣ କୋଣାର୍କ ଯାଇଛନ୍ତି ବୋଲି ଜାଣି ମୁଁ ଫେରିବା ବାଟକୁ ଅନାଇ ରହିଛି, କେବଳ ମୋର କୃତଜ୍ଞତା ଜଣାଇବାପାଇଁ । ମୁଁ ପଚାରିଲି, ''କି କୃତଜ୍ଞତା ? କେଉଁଥିପାଇଁ ?'' ସେ କହିଲା ''ଆଜ୍ଞା, ମୁଁ ଜଣେ ପ୍ରାଇମେରୀ ସ୍କୁଲ୍ ଶିକ୍ଷକ । ବହୁକାଳ ବହୁଲୋକଙ୍କୁ ଆପତ୍ତି କରି କରି ଯାହା ହୋଇ ନ ଥିଲା, ଆପଣ ଇନ୍‌ସ୍ପେକ୍ଟର ଥିଲାବେଳେ ମୋ ଦୁଃଖ ଶୁଣି ମତେ ଅମୁକ ଜାଗାରୁ ଅମୁକ ଜାଗାକୁ ଯେ ବଦଳି କରିଦେଲେ, ମୁଁ ସେଥିପାଇଁ ଆପଣଙ୍କ ନିକଟରେ ଗଭୀର କୃତଜ୍ଞ । ତାହାହିଁ ଜଣାଇବାପାଇଁ ଏଠି ଅପେକ୍ଷା କରି ରହିଛି ।''

ଆଶ୍ଚର୍ଯ୍ୟ ! ଏପ୍ରକାର ଆପତ୍ତି ବା ତା ଉପରେ ମୋର ନ୍ୟାୟବିଚାର, ମୋର କିଛିହିଁ ମନେନଥିଲା, କି ନାହିଁ । ସେ ଶିକ୍ଷକ ଏପର୍ଯ୍ୟନ୍ତ ମୋର ଅପରିଚିତ । ପୁଣି, ମୁଁ କୋଣାର୍କ ଯାଇଛି ବୋଲି, ସେ ଜାଣିଲେ ବା କିପରି ?

# ଦଶମ ଅଧ୍ୟାୟର ପରିଶିଷ୍ଟ

## ଦକ୍ଷିଣାଞ୍ଚଳ ପ୍ରଧାନଶିକ୍ଷକ ସମ୍ମିଳନୀରେ ବକ୍ତୃତା - ଶିକ୍ଷକର ଭୂମିକା

### (ଇଂରାଜୀରୁ ଅନୁବାଦ)

ପ୍ରିୟ ବନ୍ଧୁଗଣ,

ଆମେ ସମସ୍ତେ ଅନୁଭବ କରୁଛୁ ଯେ, ପୃଥିବୀ-ପୃଷ୍ଠରେ ମନୁଷ୍ୟଜୀବନ ଆଜି ଯେପରି ଅନିଶ୍ଚିତ ଓ ଅସୁଖୀ, ଏପରି କେବେ ହୋଇନଥିଲା । ତେଣୁ, ଜୀବନର ପ୍ରତିବିମ୍ବ ଭାବରେ, ବିଦ୍ୟାଳୟମାନଙ୍କରେ କେବଳ ଅଭିଯୋଗମାନଙ୍କର ଇସ୍ତାହାର ପାଇବାରେ ବିସ୍ମୟ କ'ଣ ?– କେବଳ ନିରପରାଧ ଆମମାନଙ୍କ ଛଡ଼ା, ଆମେ ଅଭିଯୋଗ ସବୁ ଖଞ୍ଜି ରଖିଛେଁ– ସମାଜ, ଶାସନ ଏବଂ ଈଶ୍ୱରଙ୍କ ବିରୋଧରେ ମଧ୍ୟ । କିନ୍ତୁ ଭାବିବାର କଥା ଏହି ଯେ, ବର୍ତ୍ତମାନ ଯଦି ଏକ ମନ୍ଦକାଳ ବୋଲି ଧରାଯାଏ, ତେବେ ଶିକ୍ଷକର ସାମାଜିକ ଉପଯୋଗିତା ପ୍ରମାଣ କରିବାକୁ ଏହାଠାରୁ ଉପଯୁକ୍ତତର ବେଳ ଆଉ କାହିଁ ? ଜାତି ବା ମାନବଜାତିର ଗଠକ ବୋଲି ନିଜକୁ ପ୍ରଚାର କରି ଆମେ ବହୁ ଦାବି ବାଢ଼ିବାରେ ଲାଗିଛୁ ; କିନ୍ତୁ ଆମ ଦାବିର ଯଥାର୍ଥତାର ପରୀକ୍ଷା ହୁଏତ ଆଜିର ଅରାଜକତାମୟ ସମାଜରେ । ତାହା ପ୍ରମାଣ କରି ନପାରିଲେ ଆମ ଦାବିର କୌଣସି ମୂଲ୍ୟଇ ରହିବନି ।

ଆମ ସମସ୍ତଙ୍କ ପ୍ରତି ଶିକ୍ଷା ଯେ ଏକ ଜୀବିକା, ଏହା ପ୍ରକାଶ କରିବାରେ କୌଣସି ଲଜ୍ଜା ନଥିବାର କଥା । ସମାଜରେ ଶ୍ରମ-ବିଭାଗ-ନିୟମ ଅନୁସାରେ ଜଣେ ମନୁଷ୍ୟ ଆଉ ଜଣେ ମନୁଷ୍ୟକୁ ମାରିବାପାଇଁ ଯେଉଁ ଦରମା ବା ସମ୍ମାନ ପାଇଥାଏ ବା ଜଣେ ମନୁଷ୍ୟ ଗଛଲତାକୁ ଦେଖାଚାହାଁ କରିବାକୁ ଯାହା ପାଇଥାଏ, ଆଉ ଜଣେ, ମନୁଷ୍ୟ ପିଲାକୁ ମନୁଷ୍ୟ କରି ଗଢ଼ିବାର ଦାୟିତ୍ୱପୂର୍ଣ୍ଣ କାମପାଇଁ ତାହା ଦାବି କରିବାରେ କି ଲଜ୍ଜା ଅଛି ? କିନ୍ତୁ ଜଣେ ସାଧାରଣ ସୈନିକର ମାରଣ-କ୍ଷମତା ପରି ଜଣେ ସାଧାରଣ ଶିକ୍ଷକର ମନୁଷ୍ୟ-ଗଠନ-କ୍ଷମତା, ସମସ୍ତେ ବିନା ବାଧାରେ ମାନିଯିବେ ତ ? ଆମର ସବୁ ଦାବି ସେହି ପ୍ରଶ୍ନର ଉତ୍ତର ଉପରେ ନିର୍ଭର କରେ ।

ଆମେ ଶିକ୍ଷାକୁ ଜୀବିକା ବୋଲି ଯଦି ଗ୍ରହଣ କଲେ, ତାକୁ ଆଇନ ବା ଚିକିତ୍ସା ପରି ଏକ ସମ୍ମାନିତ ବିଦ୍ୟା-ବ୍ୟବସାୟରୂପେ ପରିଣତ କରିବାର ଦାୟିତ୍ୱ ଆମମାନଙ୍କରହିଁ ହେବା ଉଚିତ । କେବଳ ସେହି ପନ୍ଥାରେହିଁ ଶିକ୍ଷା-ବ୍ୟବସାୟ ପ୍ରତି ସମସ୍ତଙ୍କର ସମ୍ମାନ ଆପେ ଆପେ ବଢ଼ିଯିବ । ବାହାରର ଲୋକେ ଆମମାନଙ୍କର ଦୋଷ, ଦୁର୍ବଳତା, ନିମ୍ନତା ଦେଖାଇବା ପରିବର୍ତ୍ତରେ, ଆମେ ଆମ ବ୍ୟବସାୟର ମାନକୁ ଏପରି ଉଚ୍ଚ ରଖିବା ଯେ ଆମ ଭିତରୁ ଆମ ବ୍ୟବସାୟ ପ୍ରତି ଅସମ୍ମାନ ଓ ବେଖାତିର ଆଣୁଥିବା ଅଜ୍ଞ ଅନିପୁଣଯାକ ଆପେ ଆପେ ବାହାରିଯିବେ ଓ ଯେଉଁତକ ରହିବେ ସେମାନେ ପ୍ରକୃତରେ ଜାତି ପ୍ରତି ଜ୍ଞାନର ଦିହୁଡ଼ି ବୋଲି ବିବେଚିତ ହେବେ । ବ୍ରିଟିଶ୍ ସାମ୍ରାଜ୍ୟ ଓ ବ୍ରିଟିଶ୍ ଜାତିର ମହିମା ଓ ନିପୁଣତାର ବୀଜ ଆମେ ପାଇବା ଇଂଲାଣ୍ଡର ପବ୍ଲିକ୍ ସ୍କୁଲ୍‌ମାନଙ୍କରେ । ଆମ ଘର ପାଖରେ ବଙ୍ଗାଳୀ ଜାତିର ଅଭ୍ୟୁଦୟ ଆଲୋଚନା କଲେ ମଧ୍ୟ ଆମେ ଦେଖିବା ଯେ ଏକ ବା ଦୁଇପୁରୁଷର ଗୁଡ଼ିଏ ଅଜ୍ଞାତନାମ ହେଡ୍‌ମାଷ୍ଟରହିଁ ସେ ଜାତିକି ଏପରି ଗଢ଼ି ଠିଆକରେଇ ଯାଇଛନ୍ତି ।

## ଆମର କର୍ତ୍ତବ୍ୟ –

ଆମର ଏଇ ପ୍ରିୟ ପ୍ରଦେଶ ଓଡ଼ିଶାକୁ ନୂଆକରି ଗଢ଼ିବାପାଇଁ ଆମର ସେହିପରି ଦଳେ ଜାତିଗତପ୍ରାଣ ହେଡ୍‌ମାଷ୍ଟର ଦର୍କାର । ପ୍ରତି ହେଡ୍‌ମାଷ୍ଟର ନିଜକୁ ଜଣେ ଇଲେକ୍ଟ୍ରିକାଲ୍ ଇଞ୍ଜିନିୟର ଓ ନିଜ ସ୍କୁଲ୍‌କୁ ଏକ ଶକ୍ତିଶାଳୀ ଡାଇନାମୋ ଭାବିବେ । ତାଙ୍କ ଦାୟିତ୍ୱରେ ଥିବା ସେହି ମାନବିକ ଡାଇନାମୋରୁ ବର୍ଷ ପରେ ବର୍ଷ ସହସ୍ର ସହସ୍ର ବିଦ୍ୟୁତ୍‌କଣା ବିଚ୍ଛୁରିତ ହୋଇ ଚାରିଆଡ଼େ ଆଲୋକ ଓ ଉତ୍ତାପ ବିକିରଣ କରିବେ । ଯଦି ଏହି ମାନବିକ ଡାଇନାମୋ ସବୁ ବିଶୃଙ୍ଖଳ ଓ ବେକାମୀ ହୋଇ ରହନ୍ତି ତେବେ ଜାଣିରଖ ଯେ ହୀରାକୁଦ ବା ଡୁଡୁମାରୁ ଯେଉଁ ଜଳବିଦ୍ୟୁତ୍ ଏ ଦେଶକୁ ନବଯୁଗ ଦେବାର ଆଶା କରାଯାଉଛି, ତା ପରିବର୍ତ୍ତରେ ତାହା ଏ ଦେଶକୁ ଏକ ଦୁଃଖମୟ ରାଜ୍ୟହିଁ କରିଯିବ ।

ସ୍ୱାଧୀନ ଭାରତରେ ଆମେ ଗୁଡ଼ାଏ ଅପରିପକ୍ୱ, ଅଗଭୀର, କୌଣସିପ୍ରକାର ମେରୁଦଣ୍ଡହୀନ, କେବଳ-ଚାକିରି-ଖୋଜା ମାଟ୍ରିକ୍ ଓ ଗ୍ରାଜୁଏଟ୍ ସୃଷ୍ଟି ନକରି ଏଇପରି ଜୀବନ୍ତ ବିଦ୍ୟୁତ୍‌କଣା ସବୁ ସମାଜରେ ବିଞ୍ଚିଯିବାର ଚେଷ୍ଟା କରିବା ଉଚିତ ।

## ସାବଧାନୀ –

ସ୍ୱାଧୀନତା ନାମରେ ଆମ ଲୋକେ ଡିସିପ୍ଲିନ୍ ଶବ୍ଦର ବିକୃତ ଅର୍ଥ କରିବା ମଧ୍ୟ ସ୍ୱାଭାବିକ । ସମସ୍ତଙ୍କପାଇଁ ଶସ୍ତା ପାସ୍‌ର ଦାବି ହେଲାଣି ଓ ଆହୁରି ହେବ । ସ୍କୁଲ୍‌ଗୁଡ଼ିକୁ ଦଳୀୟ ରାଜନୀତିର ପଶାପାଲିଭାବରେ ବ୍ୟବହାର କରିବାର ଆଶଙ୍କା ମଧ୍ୟ ବରାବର ରହିଛି ଏବଂ ଏହି ପ୍ରକାରର ସର୍ବଗ୍ରାସୀ ବିଶୃଙ୍ଖଳା ଭିତରେ ଆମେ ରହିବା ସ୍କୁଲ୍‌ଗୁଡ଼ିକର ଦାୟିତ୍ୱରେ, ଯେଉଁଠାରେ ଭବିଷ୍ୟତ ଜାତି ଗଢ଼ାହେବାର ଆଶା କରାଯାଏ । ଆମେ ଚତୁର୍ଦ୍ଦିଗର ବିଶୃଙ୍ଖଳାକୁ ବଢ଼େଇବା ନା ଆମର ସ୍ୱୟଂ-ନିର୍ଦ୍ଧାରିତ ନୀତିଗୁଡ଼ିକୁ ଜାଗ୍ରତ ଭାବରେ ରକ୍ଷାକରି, ଜାତି ପ୍ରତି ଆମର କର୍ତ୍ତବ୍ୟ ଆମେ ପାଳିବା ? ବନ୍ଧୁଗଣ, ଶେଷୋକ୍ତ ପନ୍ଥା କ୍ଳେଶଦାୟକ ହେଇପାରେ କିନ୍ତୁ ସେହି ପଥହିଁ ଆମର ପଥ ।

ଆଜି ପୃଥିବୀ ଘୃଣା, ଅବିଶ୍ୱାସରେ ବହୁଧା-ବିଭକ୍ତ । ଧର୍ମାନ୍ଧତା ଯୋଗୁଁ ଆମ ଜନ୍ମଭୂମି ଭାରତ ମଧ୍ୟ ଆଜି ବିଭକ୍ତ ଓ ମନୁଷ୍ୟର ରକ୍ତ ଓ ଲୋତକରେ ତାର ମାଟି ଆଜି ଆର୍ଦ୍ର । ଏଣେ ଆମ ଭିତରେ ଭାଷା ଓ କାଷ୍ଟ୍(ଜାତି) ଓ ପ୍ରାଦେଶିକ ଜାତୀୟତାର ଅନ୍ଧତା ମଧ୍ୟ ଅନୁକୂଳ ବେଳପାଇଁ ଅପେକ୍ଷା କରି ରହିଛନ୍ତି । ସୁବିଧା ପାଇଲେ, ବିଦ୍ୱେଷର ଅଗ୍ନିକାଣ୍ଡକୁ ସାହାଯ୍ୟ କରିବେ । ଈଶ୍ୱର ଓ ଆମର ପ୍ରିୟ ଓ ଐତିହାସିକ-ଗୌରବମୟ ଏହି ଜନ୍ମଭୂମିକୁ ସ୍ମରଣକରି, ଆମେ ଶିକ୍ଷକମାନେ ଏହି ମାରାତ୍ମକ ଅନ୍ଧତା ସବୁର ଗଳା ଯେପରି ନଷ୍ଟ କରିପକାଉଁ । ଇତିହାସରେ ଭାରତ ପ୍ରେମର, ଆଲୋକର ଓ ଶାନ୍ତିର ବାର୍ତ୍ତା-ବାହକ ହୋଇଆସିଛି । ଆମେ ଆମ ମାତୃଭୂମିର ଏହି ଐତିହାସିକ ଭୂମିକାକୁ ଭୁଲିଯିବା କି ? ଆମେ ଶିକ୍ଷକମାନେ ତାହା ଭୁଲିଯାଇ, ଆମ ଚାରିଆଡ଼େ ଛୋଟ ଛୋଟ ବିଦ୍ୱେଷ ଓ ସଂକୀର୍ଣ୍ଣତାର ପାଚେରି ଠିଆକରାଇ, ଆମର ବିରାଟ ଜାତୀୟତାକୁ ଯଦି ବିସ୍ମୃତ ହୋଇଯାଉ, ତେବେ ଏ ଦେଶର ଭବିଷ୍ୟତ୍ ନାହିଁ ବୋଲି କହିବାକୁ ହେବ । *

(ଅଧୁନା-ବିଲୁପ୍ତ 'ପ୍ରୋଗ୍ରେସ୍'- ନାମକ ଇଂରାଜୀ ମାସିକ ପତ୍ରିକାର ପ୍ରଥମ ଭାଗ, ସଂଖ୍ୟା ୧୬ରୁ ସଂଗୃହୀତ)

---

## ଏକାଦଶ ଅଧ୍ୟାୟ

# ମେହେର କଲେଜରେ ନୂତନ ସଂସାର

ପବିତ୍ର-ଖଦଡ଼-ପରିଧାୟୀ, ଗାନ୍ଧି-ସଖ୍ୟ-ଗୌରବାନ୍ୱିତ ଓ ଅହିଂସ-ମନ୍ତ୍ର-ଦୀକ୍ଷିତ ଓଡ଼ିଶାର କେତେକ ଶ୍ରେଷ୍ଠ କଂଗ୍ରେସ ନେତୃବୃନ୍ଦଙ୍କ ଜୈତ୍ରକେତନରେ ସେମାନଙ୍କର ଜୀବନରେ ଏକ ମହାବିଜୟର ଏଇ ଏକ ସଂକେତ, ଅଲିଭା ଅକ୍ଷରରେ ଜାଜ୍ୱଲ୍ୟମାନ ରହିଥିବ ଯେ, ସେମାନଙ୍କ ପ୍ରଚାରିତ ବେସିକ-ପଦ୍ଧତି ଉପରେ ନିଜର ସ୍ୱାଧୀନ ମତଟି କେବଳ ଦେବାରୁହିଁ ଦିନେ ଏ ଦେଶର ଜଣେ ଲେଖକ ଓ ଶିକ୍ଷାବିତ୍‌ର ମସ୍ତକ ସେମାନେ ଭକ୍ଷଣ କରିବାକୁ ବସିଥିଲେ । ଶେଷରେ, ଶିକ୍ଷାବିଭାଗ ସେଇ ଲୋକକୁ ଇନ୍‌ସ୍ପେକ୍ସନ୍ ଡିପାର୍ଟମେଣ୍ଟରୁ ନିର୍ବାସିତ କରିନେବାରେହିଁ ସେମାନଙ୍କର ରୋଷାଗ୍ନି କିଞ୍ଚିତ୍ ସନ୍ତୁଷ୍ଟ ହୋଇଥିଲା ଓ ସେ ଲୋକ, ସେ ଘାଟିରୁ କୌଣସିମତେ ପ୍ରାଣରକ୍ଷା କରି ଏପର୍ଯ୍ୟନ୍ତ ବଞ୍ଚିଛି ଓ ଏଇ ବହି ଯେ ଆଜି ଲେଖୁଛି, ତାହା କେବଳ ବିଧାତାର ଆଶୀର୍ବାଦ ।

ଯେଉଁମାନେ କୌଣସି ଏକ ବିଶେଷ ଶିକ୍ଷାପଦ୍ଧତିକୁ ନିଜର କୋଠସମ୍ପତ୍ତି ବୋଲି ମନେ କରି ସେ ସମ୍ପର୍କରେ ଆକାଡେମିକ୍ ଆଲୋଚନାକୁ ମଧ୍ୟ ସହ୍ୟ କରିପାରନ୍ତିନାହିଁ, ସେମାନଙ୍କର ବାହାରକୁ ଦିଶୁଥିବା ତଥାକଥିତ ଉଦାର ଚେତନା ତଳେ ସେମାନଙ୍କର ଭିତରେ ଥିବା ଉତ୍କଟ ସଂକୀର୍ଣ୍ଣତା ଓ ଅହମିକା ସହଜରେ ଅନୁମେୟ ।

ଏଇ ଘଟଣାର ଦଶବର୍ଷ ପରେ, ୧୯୫୯ରେ, ଓଡ଼ିଶା ଆସେମ୍ଲିର ସଦସ୍ୟଗଣ(କଂଗ୍ରେସ ମେମ୍ବର ସହିତ) ସର୍ବମୁଖରେ, ତୀବ୍ରଭାବରେ, ମନସନ୍ତୋଷ କରି, ବେସିକ-ପଦ୍ଧତି ବିରୋଧରେ ଭାଷଣମାନ ଦେଲେ । କିନ୍ତୁ ୧୯୪୮ରେ ଏ ଦେଶର ଜଣେ ଲେଖକ ଓ ଶିକ୍ଷାବିତ୍ ସେହି ପଦ୍ଧତିର କେବଳ ସାମାନ୍ୟ ବିରୋଧ ଉଚ୍ଚାରଣ କରିଥିଲା ବୋଲି ତଥାକଥିତ ଅହିଂସଧର୍ମୀ ଗାନ୍ଧିବାନାଧାରୀ ନେତୃବୃନ୍ଦ ତାର ରକ୍ତମାଂସ ଭକ୍ଷଣପାଇଁ ଚିତ୍କାର କରିଉଠିଥିଲେ ।

କିନ୍ତୁ ଏକ ବିରାଟ ରାଜନୈତିକ ଦଳର ପ୍ରଭାବ ଓ ରାଷ୍ଟ୍ରର କୋଟି କୋଟି ମୁଦ୍ରାର ଅକୁଣ୍ଠ ବ୍ୟୟ ମଧ୍ୟ ବେସିକ୍-ପଦ୍ଧତିକୁ ଏ ଦେଶରେ ସୁସ୍ଥ ସବଳ କରିପାରିନାହିଁ । ଦଶବର୍ଷ ତଳେ ଜଣେ ସାମାନ୍ୟ ଲୋକ ଯାହା ଦେଖେଇଦେଇଥିଲା ସେହି ଖୁଣଗୁଡ଼ିକହିଁ ଏଇ ବେସିକ୍-ପଦ୍ଧତିର ପ୍ରକୃତ ଚେହେରାରୂପେ ଆଜି ଦେଶ ଆଗରେ ଦଣ୍ଡାୟମାନ । କିନ୍ତୁ କୋଟି କୋଟି ରାଷ୍ଟ୍ରୀୟ ମୁଦ୍ରାର ଅପବ୍ୟୟ ଏବେ ବି ଚାଲିଛି ବେସିକ୍ ପଛରେ; ଏ ଦେଶରେ ଘୋର ମତାନ୍ଧତା, ଛଦ୍ମତା ଓ ଅପଜାତୀୟତାର ସୁନ୍ଦରତର ଦୃଷ୍ଟାନ୍ତ ନାହିଁ ଏହି କ୍ରମାଗତ ଅପବ୍ୟୟଠାରୁ ।

ଯାହାହେଉ, ବେସିକ୍ ବିରୋଧରେ କହିବାର ଅପରାଧ ଯୋଗୁଁ ଏଇ ଲେଖକ ହଠାତ୍ ଇନ୍‌ସ୍ପେକ୍ଟରର ପଦରୁ ବଦଳି ହୋଇ ସଂପୂର୍ଣ୍ଣ ଅପ୍ରତ୍ୟାଶିତ ଭାବରେ ଗଙ୍ଗାଧର ମେହେର

କଲେଜର ପ୍ରିନ୍ସପାଲ ରୂପେ ଯେ ବଦଳି ହେଲା, ଦଣ୍ଡଦାତା ଓ ଦଣ୍ଡଭୋକ୍ତା କେହି ସେତେବେଳେ କଳ୍ପନା କରିନଥିଲେ ଯେ, ଏ ନିର୍ବାସନ ଏକ ସୁଖମୟ ପୁରସ୍କାରରେ ପରିଣତ ହେବ । ଶେଷରେ ଏହା ପ୍ରକୃତରେ ହେଲା ଲେଖକ ପ୍ରତି, ନିର୍ବାସିତର ଏକ ନୂତନ ରାଜ୍ୟ ସ୍ଥାପନ ।

ତତ୍କାଳୀନ ଡି.ପି.ଆଇ. ମତେ ବାଲେଶ୍ୱର, ବଲାଙ୍ଗୀର, ସମ୍ବଲପୁର ଆଦି ଭିନ୍ନ ଭିନ୍ନ କଲେଜ ବାଛିବାକୁ କହିଥିଲେ । ମୁଁ ସମ୍ବଲପୁର ଛଡ଼ା ଅନ୍ୟ ସବୁଠାକୁ ଯିବାକୁ କହିଥିଲି । କାରଣ, ଏଡୁକେଶନାଲ ଆଡ଼ଭାଇଜର ଥିଲାବେଳେ ମୋର ପ୍ରିୟତମ ସନ୍ତାନଟିକୁ ମୁଁ ସେଠାରେ ହରାଇଥିବାରୁ, ଆଉ ସମ୍ବଲପୁର ମାଡ଼ିବାକୁ ମୋର ଇଚ୍ଛାନଥିଲା; କିନ୍ତୁ ଡି.ପି.ଆଇ. ସେଇ ସ୍ଥାନକୁହିଁ ଯିବାକୁ ବାଧ କଲେ ମତେ ।

ସାତ-ଆଠବର୍ଷ ଭିତରେ ସେଠି ପ୍ରିନ୍ସପାଲ ଭାବରେ କ'ଣ କଲି ତାହାର କାଟାଲଗ୍ ଦେବାକୁ ମୁଁ ଯାଉନାହିଁ । ଜଣେ ସାମାନ୍ୟ ଆଦର୍ଶବାଦୀ ଶିକ୍ଷାବିତ୍ ଭାବରେ ମୋର ଚେଷ୍ଟା, ସେହି ଚେଷ୍ଟାର ପ୍ରତିରୋଧ, ମୁଁ ପୁଣି ସେହି ପ୍ରତିରୋଧର କିପରି ସମ୍ମୁଖୀନ ହୋଇଛି, ମୋର ଭୁଲ୍ ଓ ମୁଁ ତାର ପୁଣି କିପରି ସମ୍ମୁଖୀନ ହୋଇଛି – ଏଇ ସବୁର ଅଭିଜ୍ଞତାହିଁ ଏଇ ଗ୍ରନ୍ଥର ଉପଜୀବ୍ୟ । କାରଣ, ଏଇ ଅଭିଜ୍ଞତାର ରେକର୍ଡ଼ହିଁ, ଏପରିକି ମୋର ପ୍ରମାଦର ବର୍ଣ୍ଣନା ମଧ୍ୟ ଭବିଷ୍ୟତ୍‌ରେ ସମଧର୍ମା ସହଯାତ୍ରୀ ବର୍ଗର ଉପକାରରେ ଆସିବ; ଏହାହିଁ ଏ ଗ୍ରନ୍ଥର ଆଭିମୁଖ୍ୟ– ନଚେତ୍ ଏହା ଲେଖିବାର କୌଣସି ଯଥାର୍ଥତା ନଥିଲା ।

## ନିମ୍ନମାନ ଓ ଅନୈକ୍ୟ –

ଆଜି ଭାରତବର୍ଷରେ ପ୍ରଚଳିତ ଶିକ୍ଷାପ୍ରଣାଳୀର ପ୍ରଧାନ ଦୋଷ ଏହି ଯେ, ଏହା ବହୁଧା ଖଣ୍ଡିତ ଓ ଖଣ୍ଡଗୁଡ଼ିକ ପରସ୍ପର ଭିତରେ ସମ୍ପର୍କଶୂନ୍ୟ । ପ୍ରାଇମେରୀଠାରୁ ହାଇସ୍କୁଲ୍, ପୁଣି ହାଇସ୍କୁଲ୍‌ରୁ କଲେଜ, ପ୍ରତ୍ୟେକେ ପ୍ରତ୍ୟେକଠାରୁ ଅଲଗା ଅଲଗା । ପୁଣି ପ୍ରାଇମେରୀର ଚାଟଶାଳୀ ସାଥେ ଶତ୍ରୁତା, ବେସିକ୍‌ର ଶତ୍ରୁତା ଉଭୟ ଚାଟଶାଳୀ ଓ ପ୍ରାଇମେରୀ ସହିତ । ଯେଉଁଠି ଶିକ୍ଷା ବ୍ୟବସ୍ଥାର ଐକ୍ୟ ବା ଏକପ୍ରାଣତା ବା ଏକାଭିମୁଖିତା ସ୍ଥିର ହୋଇପାରୁନି, ସେଠି ଗୋଟାଏ ନୂତନ ଜାତି ଗଢ଼ାହେବ କିପରି ? ଏବେ କମିଟି, କମିଶନ୍ ବସିଲେ, ମୋଟା ମୋଟା କିତାପ ବାହାର କଲେ; କିନ୍ତୁ ସମଗ୍ର ଜାତିପାଇଁ ଗୋଟିଏ ପରିପୂର୍ଣ୍ଣ, ଆନୁପାତିକ, ଏକୀଭୂତ ଶିକ୍ଷାପଦ୍ଧତି କେହି ତ ଦେଇପାରିଲେନି । ପୁଣି ସବୁ ବଡ଼ ବଡ଼ କଥା କୁହାଯାଉଛି, ଅଥଚ ବିଦ୍ୟାର 'ଷ୍ଟାଣ୍ଡାର୍ଡ଼'କୁ ଉପରକୁ ଉଠେଇବାର କଥା କେହି ତୁଣ୍ଡରେ ଧରୁନାହାନ୍ତି । ସମଗ୍ର ପୃଥିବୀରେ ଭାରତବର୍ଷରେ ଶିକ୍ଷାର ମାନଦଣ୍ଡ ଯେପରି ନିମ୍ନ ଓ ହେୟ, ସେପରି କୌଣସିଠାରେ ହେଲେ ନାହିଁ । କୋଡ଼ିଏ ମାର୍କ ଗ୍ରେସ୍ ଦେଇ ଯେଉଁଠି ପିଲାଙ୍କୁ ପାସ୍ କରାଯାଏ, ସେଠି ଅବସ୍ଥା ଯେ ବିଶୃଙ୍ଖଳା ଓ ଅଧୋଗମନଶୀଳ ହେବ, ଏଥିରେ କି ବିସ୍ମିତ ହେବାର କିଛି ଅଛି ?

ଗଙ୍ଗାଧର ମେହେର କଲେଜରେ ମୁଁ ଏଇସବୁ ଦିଗରେ କିଛି ପ୍ରଯତ୍ନ କରିଥିଲି । ଶିକ୍ଷାବିଭାଗର ସର୍ବାଂଶ ସହିତ ଏକ ଆନୁପାତିକ ସମ୍ବନ୍ଧ ସ୍ଥାପନ ସଙ୍ଗେ ସଙ୍ଗେ ପ୍ରତ୍ୟେକ ଶିକ୍ଷାନୁଷ୍ଠାନ କିପରି ଏକ, ଏକ ସ୍ୱୟଂସମ୍ପୂର୍ଣ୍ଣ ଏକକ ହେବା ଉଚିତ, ତାହାହିଁ ଥିଲା ମୋର ମୌଳିକ ଲକ୍ଷ୍ୟ ଓ ଆଦର୍ଶ ।

ସେହି ଯତ୍ନ କେତେଦୂର ସଫଳତା ଲାଭ କରିଥିଲା, ତାହା ଅନ୍ୟମାନେ କହିବେ । ମୁଁ କେବଳ ମୋ ଚେଷ୍ଟାଗୁଡ଼ିକର 'କାହିଁକି' ଓ 'କିପରି'ର ବର୍ଣ୍ଣନା କଲେହେଁ ଯଥେଷ୍ଟ ହେବ ବୋଧହୁଏ ।

## ରୋଷେଇଶାଳାର ସଂସ୍କାର –

ମୁଁ ସମ୍ବଲପୁର କଲେଜରେ ଯୋଗଦେବାର ଦିନେ ଦୁଇଦିନ ପରେ ସକାଳେ କଲେଜ୍ କମ୍ପାଉଣ୍ଡରେ ବୁଲୁଛି, ଦେଖିଲି ଅନେକ ପିଲା ଏକା ଏକା ବା ଦଳ ଦଳ ହୋଇ, ଏଣେତେଣେ ଲୁଙ୍ଗ ପିନ୍ଧି ବୁଲୁଛନ୍ତି । ମୁଁ ସେମାନଙ୍କୁ ପଚାରିଲି, ହଷ୍ଟେଲରେ ଷ୍ଟଡ଼ି-ପିରିଅଡ଼(ପଢ଼ାବେଳ) ଅଛି କି ନାହିଁ ଓ ଯଦି ଅଛି, ସେମାନେ ନପଢ଼ି ବୁଲୁଛନ୍ତି କାହିଁକି । ସେମାନଙ୍କଠାରୁ ଉତ୍ତର ପାଇଲି ଯେ କଲେଜ ହଷ୍ଟେଲରେ ଷ୍ଟଡ଼ି-ପିରିଅଡ଼ ବୋଲି କିଛି ନାହିଁ । ପୁଣି ସକାଳେ ଜଳଖିଆର କୌଣସି ବ୍ୟବସ୍ଥା ନ ଥିବାରୁ ସେମାନେ ନିକଟବର୍ତ୍ତୀ ରେଳ-ଷ୍ଟେସନ୍‌କୁ ଚା-ଜଳଖିଆ ଖାଇବାକୁ ଯାଆନ୍ତି ।

ମୁଁ ଶୁଣି ସ୍ତମ୍ଭିତ ହେଲି । ମୋ ଆଗରୁ ଏତେ ପ୍ରିନ୍ସପାଲ ଗଲେଣି । ଅଥଚ ପିଲାଙ୍କର ଏହି ମୌଳିକ ବ୍ୟବସ୍ଥାଟା କରିଯାଇ ପାରିନାହାନ୍ତି ? ଜଣେ କଲେଜ ଅଧକ୍ଷର କର୍ତ୍ତବ୍ୟ କ'ଣ, ଖାଲି କାଗଜରେ ଦସ୍ତଖତ ମାରିବା ?

ଯାର କିଛିଦିନ ପରେ ହଷ୍ଟେଲ୍ ପିଲେ ମତେ ଖାଇବାକୁ ଡାକିଲେ । ପ୍ରଥମଥରପାଇଁ ହଷ୍ଟେଲ୍‌ରେ ତଥାକଥିତ ଡାଇନିଂରୁମ୍‌ରେ ପହଞ୍ଚିଲି । ମାଟି ଚଟାଣ । ପିଲେ ତଳେ ବସୁଛନ୍ତି, ଏକ ଏକ ଚଟେଇ ଉପରେ । ଘରଟି ପାଣିରେ ପୋଛା ହୋଇଥିବାରୁ, ଏକପ୍ରକାର କର୍ଦ୍ଦମାକ୍ତ । ମୁଁ ଯାହାହେଉ ବସିଲି; କିନ୍ତୁ ଦେଖିଲି, ପାଦ୍ୟଠାରୁ ଖାଦ୍ୟ ଆହୁରି କଦର୍ଯ୍ୟ । ସାମାନ୍ୟ ଟିକିଏ ପାଣିଆ ଡାଲି ଓ ସାମାନ୍ୟ ଟିକିଏ ତରକାରି । ଦ୍ୱିତୀୟ ଥର ପରିବେଷଣ ନାସ୍ତି । ଅନେକପିଲା ପ୍ରଥମଥର ଯେଉଁ ଭାତ ବଢ଼ା ହୋଇଥିଲା, ତାକୁ ଛାଡ଼ିଦେଇ ପଳାଇବାର ଦେଖିଲି । କାହାକୁ କିଛି କହିଲିନି ; କିନ୍ତୁ ଏ ଦୃଶ୍ୟ ମତେ ଗଭୀର ଦୁଃଖ ଦେଲା ।

ମୁଁ ନିଜକୁ ପଚାରିଲି– ମୁଁ ଏଠି କାହିଁକି ଅଛି ? ମୋ ଜାତିର ଏଇ ଶତ ଶତ ତରୁଣ ମୋ ଜିମାରେ ବର୍ତ୍ତମାନ । ଏଇ ହେଉଛି ଏମାନଙ୍କର ଶରୀର ଓ ମନର ବଢ଼ିବାର ଓ ଗଢ଼ାହେବାର ସମୟ ; କିନ୍ତୁ ଠିକ୍ ସେଇ ବେଳରେ, ଏମାନେ କି ବିଶୃଙ୍ଖଳା ପରିସ୍ଥିତିରେ ବାସ କରୁଛନ୍ତି । କି ଦୀନହୀନ ଖାଦ୍ୟ ଖାଉଛନ୍ତି ଏମାନେ ? ଏମାନେ କି ମଣିଷ ହେବେ ? କି ଆଦର୍ଶ ଶିଖିଲେ ? ଏଇ କୁତ୍ସିତ, ବିଶୃଙ୍ଖଳା ପରିବେଶରେ ବଢ଼ିଲେ ଉତ୍ତମ ବ୍ୟକ୍ତିତ୍ୱ ଫୁଟିବାର ଆଶା କରାଯାଇପାରେ କି ?

ଏଇଥିରୁ ହିଁ ଆରମ୍ଭହେଲା ଗଙ୍ଗାଧର ମେହେର କଲେଜରେ ରୋଷେଇଶାଳାର ସଂସ୍କାର । ୩ମାସ ଭିତରେ ପିଲାଙ୍କୁ, ସେମାନଙ୍କ ପ୍ରତିରୋଧ ସତ୍ତ୍ୱେ, ଟେବୁଲ ଚୌକିରେ ବସି ଖୁଆଇଲି । କଲେଜ ଟ୍ରଷ୍ଟ ଫଣ୍ଡରୁ ମୋ ନିଜ ଦାୟିତ୍ୱରେ (ଦୁଇଥରରେ) ବୋଧହୁଏ ଦଶ ସହସ୍ର ସରିକି ଟଙ୍କା ଧାରଆଣି ସୁନ୍ଦର ନୂଆ ଥାଳି-ଗିନାର ସେଟ୍ ପ୍ରତିପିଲାପାଇଁ କିଣି ଅଣାଇଲି । ପୁଣି ପିଲେ ଯେତିକି ଟଙ୍କା ଆଗରୁ ବ୍ୟୟ କରୁଥିଲେ, ସେଇ ଟଙ୍କାରେହିଁ କଲେଜର ନିଜର କାଣ୍ଟିନ୍ ଓ ଅଧା-ସରକାରୀ ମେସ୍‌ରେ ଜବାନ୍‌ମାନଙ୍କୁ ଯଥେଷ୍ଟ ଓ ପ୍ରଚୁର ପରିମାଣରେ ଉତ୍ତମ ଜଳଖିଆ ଓ ଭୋଜନ ଯୋଗାଇପାରିଲି ।

ସମ୍ବଲପୁର କଲେଜର ଖାଦ୍ୟବ୍ୟବସ୍ଥା ଶୀଘ୍ର ଆଦର୍ଶ ସ୍ଥାନୀୟ ହୋଇଉଠିଲା । ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ମୁଖ୍ୟତାରେ ଗଠିତ ୟୁନିଭରସିଟି ଇନ୍‌ସ୍ପେକ୍ଟରମାନେ (ବର୍ତ୍ତମାନର ଭାଇସ୍‌ଚାନ୍‌ସେଲର ଡକ୍ଟର ପରିଜା ତା'ର ଜଣେ ମେମ୍ବର ଥିଲେ) ମଧ୍ୟ, ଏ ସମ୍ପର୍କରେ ଏଇ ଅଭିମତ ଦେଇଥିଲେ ।

''କଲେଜ(ଗ.ମେ.କ.) ମେସ୍ ଆଦର୍ଶବାଦ-ପ୍ରଣୋଦିତ ପରି ବୋଧହେଲା । ପ୍ରତି ମିଲ୍‌ର ଦାମ ମାତ୍ର ପାଞ୍ଚଣା ଦି'ପଇସା (୧୯୫୩ ସାଲର କଥା) । କିନ୍ତୁ ପିଲାମାନେ ସେଇ ଦାମ୍‌ରେ ଭାତ, ଡାଲି ଓ ତିନିଟା ତରକାରି ପାଇବା ସଙ୍ଗେ ସଙ୍ଗେ, ତାରି ଭିତରେ ରହୁଛି ପରିଚାଳନା ଖର୍ଚ୍ଚ । ପ୍ରିନ୍ସିପାଲ ପରିଚାଳନାରେ ଏକ ମିତବ୍ୟୟ ପଦ୍ଧତି ପ୍ରବର୍ତ୍ତିତ କରିଥିବାରୁ ଏହା ସମ୍ଭବ ହୋଇଛି । ପିଲାମାନଙ୍କୁ ଖାଇବା ପରେ ମାଟି ଚଟାଣରେ ବସିବାକୁ ପଡୁନି । ସେମାନଙ୍କପାଇଁ ଟେବୁଲ୍ ଓ ବେଞ୍ଚ୍ ଯୋଗାଇ ଦିଆଯାଇଛି । ଯୋଗାଇ ଦିଆଯାଇଥିବା ଜଳଖିଆ ମଧ୍ୟ ଉତ୍ତମ । ସବୁ ଜିନିଷ ଏକ ମ୍ୟାନେଜରଙ୍କ ତତ୍ତ୍ୱାବଧାନରେ ହଷ୍ଟେଲ୍ ମେସରେ ତିଆରି ହେଉଛି । ବାହାର ବଜାରରୁ କିଛି କିଣାହୁଏନା । ୭୦୦ ଟଙ୍କାରେ ଆରମ୍ଭ ହୋଇଥିବା ଏକ କୋ-ଅପରେଟିଭ୍ ସୋସାଇଟି ବର୍ତ୍ତମାନ ବର୍ଷରେ ୪୦ ହଜାର ଟଙ୍କାର ବ୍ୟବସାୟ ଦେଖାଉଛି । କଲେଜର ପରିବା-ବଗିଚା ହଷ୍ଟେଲ୍‌ର ଚାହିଦା ଅନେକାଂଶରେ ପୂରଣ କରେ । ମନେହେଉଛି ଯେ, ଏଇ କଲେଜର ମେସ୍ ପରିଚାଳନା ସର୍ବତ୍ର ଅନୁକରଣୀୟ ଏବଂ ସବୁ କଲେଜ ଓ ସ୍କୁଲ୍‌ମାନଙ୍କରେ ପ୍ରବର୍ତ୍ତିତ ହେବା ଉଚିତ ।''

୧୯୫୪, ସେପ୍ଟେମ୍ବର ୨୭ ତାରିଖର ଅମୃତବଜାର ପତ୍ରିକାରେ ପ୍ରକାଶିତ ନିମ୍ନଲିଖିତ ସମ୍ବାଦ ମଧ୍ୟ କୌତୂହଳପ୍ରଦ–

''ଆମର ବିଶେଷ ସମ୍ବାଦଦାତାଙ୍କ ନିକଟରୁ–

ସମ୍ବଲପୁର, ସେପ୍ଟେମ୍ବର ୨୪

ଜଣେ ରାଜ୍ୟପାଳଙ୍କ ଯାତ୍ରାର ଇତିହାସରେ ଏହାହିଁ ବୋଧହୁଏ ପ୍ରଥମ ଘଟଣା ହେବ ଯେ, ଓଡ଼ିଶାର ରାଜ୍ୟପାଳ ଶ୍ରୀ ପି.ଏସ୍. କୁମାରସ୍ୱାମୀ ରାଜା, ଆଗରୁ-ଗଢ଼ା-ପ୍ରୋଗ୍ରାମରେ-ନଥିଲେ ରାଜ୍ୟପାଳ କୌଣସିଠାରେ ଚା-ପାନ ମଧ୍ୟ ନକରିବାର ଯେଉଁ କଟକଣା ଥାଏ, ତାକୁ ସମ୍ବଲପୁରର ଗଙ୍ଗାଧର ମେହେର କଲେଜ ପରିଦର୍ଶନ କଲାବେଳେ କଲେଜର ନିଜର କାଣ୍ଟିନ୍, ତାଙ୍କୁ ଯେତେବେଳେ କଫି ଓ ଇଡ଼ିଲି ଯାଚିଲା, ସେ ତାହା ନଭାଙ୍ଗିବାର ଲୋଭ ସମ୍ଭାଳି ପାରିନଥିଲେ । କଲେଜର ପିଲାଙ୍କ ସହିତ ଖୁସିଗପ କରି କରି ଗଭର୍ଣ୍ଣର୍ ପିଲାଙ୍କଠୁ କଲେଜର ନାନା ବିଷୟ ବୁଝିଥିଲେ ଏବଂ ଶୁଣି ବିସ୍ମିତ ହୋଇଥିଲେ ଯେ, ଏଠା କଲେଜରେ ପିଲାଙ୍କ ଖାଇବା-ରହିବା ଖର୍ଚ୍ଚ ମାତ୍ର ୪୫ଟଙ୍କା, ଯେତେବେଳେ ସ୍ୱଳ୍ପବ୍ୟୟୀ ମାଡ୍ରାସରେ ହଷ୍ଟେଲ୍‌ମାନଙ୍କରେ ଏହା ୭୫ଟଙ୍କାରୁ କମ୍ ନୁହେଁ ।''

ମୋର ଧାରଣା ଯେ, ପ୍ରତ୍ୟେକ ବିଦ୍ୟାନୁଷ୍ଠାନରେ ହଷ୍ଟେଲ ହେବା ଉଚିତ ସେହି ଅନୁଷ୍ଠାନରେ ଅଧ୍ୟକ୍ଷର ନିପୁଣତାର ପ୍ରକୃଷ୍ଟ ପରିଚୟ । ଆଉ, କିଚିନ୍ ବା ରୋଷେଇଶାଳା ପ୍ରତ୍ୟେକ ବିଦ୍ୟାନୁଷ୍ଠାନର ଏକ ଅପରିହାର୍ଯ୍ୟ ପ୍ରଧାନ ଅଙ୍ଗ ବୋଲି ବିଚାରିତ ହେବା ଓ ଅଧ୍ୟକ୍ଷଙ୍କର

ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତାହା ପରିଚାଳିତ ହେବା ଉଚିତ । 'ଶିକ୍ଷା' ବା ଏଡୁକେଶନ ହେଉଛି କିଶୋର ଓ ତରୁଣର ଦେହ, ବୁଦ୍ଧି ଓ ଆତ୍ମା, ମନୁଷ୍ୟ-ବ୍ୟକ୍ତିତ୍ୱର ଏଇ ତିନି ପ୍ରଧାନ ଅଂଶକୁ ସାନୁପାତିକ ସୁସମଞ୍ଜସ ରୀତିରେ ଗଢ଼ିବା । ଏଥିରୁ ଦେହ ଅଂଶଟି ଗଢ଼ା ହେବ ହଷ୍ଟେଲ୍ ମେସ୍, ଖେଳପଡ଼ିଆ ଓ ଜିମ୍ନେସିଅମ୍‌ରେ; ବୁଦ୍ଧି ଗଢ଼ାହେବ କ୍ଲାସ୍-ରୁମ୍‌ରେ, ଆଉ ଆତ୍ମା ଗଢ଼ାହେବ ଅଧ୍ୟକ୍ଷ, ଶିକ୍ଷକ; କିନ୍ତୁ ବିଶେଷକରି ଅଧ୍ୟକ୍ଷଙ୍କର ଉଦାର ନିଷ୍ପାପ ବ୍ୟକ୍ତିତ୍ୱର ପ୍ରଭାବରେ । ଯଦି ଆମେ ପ୍ରକୃତରେ ଉତ୍ତମ ବିଦ୍ୟାନୁଷ୍ଠାନ ସବୁ ଦେଶରେ ଚାହୁଁ ଓ ଚାହୁଁ ମଧ୍ୟ ଯେ ଆମର ସେହି ବିଦ୍ୟାନୁଷ୍ଠାନଗୁଡ଼ିକ କେବଳ ପାସ୍-ଫ୍ୟାକ୍ଟରି ନ ହୋଇ ଜାତିଗଠନର କେନ୍ଦ୍ର ହେଉ, ତେବେ ଆମେ ଶିକ୍ଷାର ଏଇ ତିନି ଅଙ୍ଗରୁ କୌଣସି ହେଲେ ଅଙ୍ଗକୁ ବାଦ ଦେଇପାରିବାନି ବା ଅବହେଳା ମଧ୍ୟ କରିପାରିବାନି । ଗୋଟାକୁ ବାଦ୍ ଦେଲେଇ ଆଉ ଦି'ଟା ଦୂଷିତ ହୋଇଉଠିବେ ଓ ତାହା ବ୍ୟକ୍ତି ଓ ଜାତି, ଉଭୟର ଅକଲ୍ୟାଣକର ହେବ । ତାହାହିଁ ଘଟୁଛି ବ୍ୟାପକଭାବରେ ଆଖି ଆଗରେ ।

ଭାରତବର୍ଷରେ ଆଦର୍ଶବାଦର ଅଭାବ ନାହିଁ । ବଡ଼ ବଡ଼ କଥା ଏ ଦେଶରେ କୁହାଯାଇଥାଏ ବହୁତ ; କିନ୍ତୁ ତା'ର କମ୍ ଅଂଶ କାର୍ଯ୍ୟରେ ପରିଣତ ହୁଏ । ବିଶେଷକରି ସୁନାଗରିକତା ଓ ଭଦ୍ରତାର ଜ୍ଞାନ ଓ ଅଭ୍ୟାସ, ଉଭୟରହିଁ ବଡ଼ ଅଭାବ ଏ ଦେଶରେ । ବଡ଼ ଅଭାବ ଏ ଦେଶରେ ସୁଶୃଙ୍ଖଳ, ବିନୟଶୋଭିତ, ବିଚାରପ୍ରତିଷ୍ଠ ଜୀବନର । କଲେଜରେ ରନ୍ଧନଶାଳାର ଓ ପିଲାଙ୍କ ଖାଦ୍ୟର ଉନ୍ନତି ବିଧାନ ସଙ୍ଗେ, ମୁଁ ସେଥିପାଇଁ ସମଗ୍ର କଲେଜରେ ଡିସିପ୍ଲିନ୍‌ର ଅନେକ କଠୋର ବ୍ୟବସ୍ଥା ମଧ୍ୟ କରିଥିଲି । ନିୟମ ମଧ୍ୟ କରିଥିଲି ଯେ, ଖାଇଲାବେଳେ ସମସ୍ତେ ଚୁପ୍‌ଚାପ୍ ବସିବେ, ପାଟିଗୋଳ କରିବେନି । ଏହା ଏକ ଭାରତୀୟ ଦୁରଭ୍ୟାସ । ହଜାର ହଜାର ଇଂରେଜଙ୍କୁ ଏକାଘରେ ଖାଇବାର ଦେଖିବ; କିନ୍ତୁ ପିନ୍‌କଣ୍ଟାଟିଏ ପଡ଼ିଲେ ଶୁଣାଯିବ ସେଠି । ଏତେ ଡିସିପ୍ଲିନ୍ ସେ ଜାତିର । ତାରି ଫଳରେ ସେ ଜାତି ମହିମମୟ । ଆମେ ଯଦି ୧୫ ମିନିଟ୍ ମାତ୍ର ସମୟ ଚୁପ୍ ରହିପାରିବାନି, ଜାତିଭାବରେ ବା ବ୍ୟକ୍ତିଭାବରେ ଆମଠୁ କି ସିଦ୍ଧି ଆଶା କରାଯାଇପାରେ ? ଆମର ଜାତୀୟ ଆଚାର ଅଭ୍ୟାସ ସବୁ ଏପରି ସ୍ୱାର୍ଥ-କେନ୍ଦ୍ରିକ ଯେ, ସମୂହର କଲ୍ୟାଣ ଦୃଷ୍ଟିରେ, କେହି ସାମାନ୍ୟତମଭାବରେ ମଧ୍ୟ ନିଜକୁ ସଂଯତ କରିବାକୁ ପ୍ରସ୍ତୁତ ନୁହନ୍ତି ।

ମୁଁ ତେଣୁ ପ୍ରଥମେ ପ୍ରଥମେ ପିଲାଙ୍କ ମଙ୍ଗଳପାଇଁ ମେହେର କଲେଜରେ ଯାହା ଆରମ୍ଭ କରେ, ପିଲେଇ ତା'ର ପ୍ରତିରୋଧ କରୁଥିଲେ । କ'ଣ ୟାର ପ୍ରତିକାର ହୋଇପାରେ ? ଦେଖିଲି ଯେ, ମୁଁ ଯାହାସବୁ କରୁଛି, ସେଗୁଡ଼ିକ ଯଦି ହାଇସ୍କୁଲ୍ ସ୍ତରରେ କରାଯାଇଥାନ୍ତା, ତେବେ କଲେଜକୁ ଆସିଲା ବେଳକୁ ପିଲାମାନଙ୍କର ଆଚରଣ ଅଲଗା ହୋଇଥାନ୍ତା । ଆମ ଦେଶରେ କଲେଜ ସଙ୍ଗେ ପାର୍ଶ୍ୱବର୍ତ୍ତୀ ହାଇସ୍କୁଲ୍‌ଗୁଡ଼ିକର ଅଙ୍ଗାଙ୍ଗୀ ସମ୍ପର୍କ ନଥିବାରୁ ସିନା ଏୟା ଘଟୁଛି ? ଯଦି ବସ୍ତୁତଃ ପ୍ରାଇମେରୀ, ସେକେଣ୍ଡାରୀ ଓ କଲେଜ, ସମସ୍ତେ ଏକତ୍ରହୋଇ ଆମ ଜାତିର ନୂତନ ବଂଶଧରଙ୍କୁ ମୂଳରୁ ଗଢ଼ିଆଣନ୍ତେ, ତେବେ ସିନା ବିଦ୍ୟାନୁଷ୍ଠାନଗୁଡ଼ିକ ପ୍ରକୃତରେ ଜାତି ନିର୍ମାଣର କେନ୍ଦ୍ର ହୁଅନ୍ତେ ? ଏବେ କଲେଜ କେବଳ ହାଇସ୍କୁଲ୍‌ମାନଙ୍କରୁ ପିଲା ଗୋଟେଇବାର ଏକ ଏକ ଡିପୋ ଓ ହାଇସ୍କୁଲ୍‌ଗୁଡ଼ିକ ସେଇପରି ପ୍ରାଇମେରୀମାନଙ୍କର । ଏଟା କି ଗୋଟାଏ ବାଞ୍ଛନୀୟ ବ୍ୟବସ୍ଥା ହୋଇପାରେ ?

## ହାଇସ୍କୁଲ୍ ଓ କଲେଜର କୁଟୁମ୍ବିତା ସ୍ଥାପନା –

ଏଇପରି ଭାବି ଭାବି ମୁଁ ଦିନେ ମୋ କଲେଜକୁ ପଶ୍ଚିମ ଓଡ଼ିଶାର ହାଇସ୍କୁଲ୍‌ମାନଙ୍କର ସାଂସ୍କୃତିକ, ଆତ୍ମିକ ଓ ବୌଦ୍ଧିକ କେନ୍ଦ୍ର କରିବା ଉଦ୍ଦେଶ୍ୟରେ ଏକ ଅଭିନବ ବ୍ୟବସ୍ଥା କରିଥିଲି । ଦେଶର ଶିକ୍ଷାପଦ୍ଧତି ଗୋଟିଏ ପରସ୍ପର-ସମ୍ପୃକ୍ତ ପରିପୂର୍ଣ୍ଣ ଏକକ ହେବାର, ଯାହା ମୁଁ ପ୍ରଚାର କରି ଆସୁଛି, ମୋର ଏ ଚେଷ୍ଟା ଥିଲା ତାହାରହିଁ ପରୀକ୍ଷା । ଏକ କଲେଜର ପ୍ରିନ୍‌ସପାଲ ଭାବରେ, ଆଖପାଖର ୫୦।୬୦ ହାଇସ୍କୁଲ୍‌ର ହେଡ଼ମାଷ୍ଟରମାନଙ୍କୁ ମୁଁ ଦିନେ ଏକ ସର୍କ୍ୟୁଲାରପତ୍ର ଦେଇଥିଲି । ତଳେ ତା'ର ଅନୁବାଦ ଦେଲି –

ସମ୍ବଲପୁର<br>
ଫେବୃଆରୀ, ୧୯୫୩

**ହାଇସ୍କୁଲ୍‌ର ହେଡ଼ମାଷ୍ଟରଙ୍କୁ–**

ପ୍ରିୟ ମହାଶୟ,

ଆପଣଙ୍କ ସ୍କୁଲ୍‌ରୁ ପାସ୍ କରି ପିଲା କଲେଜକୁ ଆସିବା କଥା ଭାବିଲାବେଳେ ତାଙ୍କ ମନରେ ପ୍ରଥମେ ଗଙ୍ଗାଧର ମେହେର କଲେଜ ଆସୁଥିବ ବୋଲି ଧରି ନେଉଛି । ୧୯୪୪ରେ ଏଇ କଲେଜ ଆରମ୍ଭ ହେଲାବେଳୁ ଏଇ କଲେଜକୁ ଆପଣଙ୍କ ପିଲେ ବରାବର ଆସୁଛନ୍ତି ବୋଲି ମୁଁ ବିଶ୍ୱାସ କରେ । ବର୍ତ୍ତମାନ ମଧ ଆପଣଙ୍କର ପିଲେ ଏଠାରେ ପଢୁଥିବେ । ଆପଣଙ୍କ ଅନୁଷ୍ଠାନ ଓ ଚାରିପାଖର ଅନ୍ୟ ସମଧର୍ମା ଅନୁଷ୍ଠାନମାନଙ୍କ ସହିତ ମୋ କଲେଜର ସେହି ଆତ୍ମିକ ଓ ସାଂସ୍କୃତିକ ସମ୍ବନ୍ଧକୁ ଘନିଷ୍ଠତର କରିବା ଓ ଯେପରିକି ଆପଣ ଏ କଲେଜକୁ ଆପଣଙ୍କର ସ୍ୱାଭାବିକ କେନ୍ଦ୍ରାନୁଷ୍ଠାନ ବୋଲି ଭାବିବେ, ତାହାହିଁ ଆପଣଙ୍କୁ ମୋର ଏ ପତ୍ର ଦେବାର ଉଦ୍ଦେଶ୍ୟ ।

ଆପଣ ମନେରଖିବେ ଯେ ଆପଣ ଓ ଆପଣଙ୍କ ସହକର୍ମୀମାନେ ସେହି କାମ କରୁଛନ୍ତି, ଯାହା ମୁଁ ଓ ମୋର ଲେକଚରର୍‌ମାନେ ଏଠାରେ କରୁଛୁଁ । ସେ କାମଟି ହେଉଛି, ଭାରତୀୟ ଗଣରାଷ୍ଟ୍ରର ଭବିଷ୍ୟତ ନାଗରିକମାନଙ୍କୁ ଗଢ଼ିବା । ଆପଣ ଆମକୁ କେବଳ ବି.ଏ., ବି. କମ୍. ଗଢ଼ିବାରୂପକ ନିକୃଷ୍ଟ କର୍ତ୍ତବ୍ୟରେହିଁ ଏବଯାଏଁ ସହାୟତା କରିଆସିଛନ୍ତି, ଏବେ ନାଗରିକ ଗଢ଼ିବାର ଉତ୍କୃଷ୍ଟ କର୍ତ୍ତବ୍ୟରେ ସହାୟକ ହୁଅନ୍ତୁ ।

ମୁଁ ଏ କଲେଜର ପ୍ରିନ୍ସପାଲଭାବରେ ଯୋଗଦେବା ପରଠାରୁ ଉପରୋକ୍ତ ଲକ୍ଷ୍ୟରେ କିଛି କିଛି କ୍ଷୁଦ୍ର ବ୍ୟବସ୍ଥା କରିଆସୁଛି – ବୃହତ୍, ବ୍ୟାପକ ବ୍ୟବସ୍ଥା ମୋ ଶକ୍ତିର ବାହାରେ, ଆପଣ ଜାଣନ୍ତି । କିନ୍ତୁ ପିଲେ କଲେଜକୁ ଆସିଲାବେଳକୁ ଗୋଟାଏ ଆକାର ଧରିଯାଉଛନ୍ତି ଓ କଲେଜ ସମ୍ପର୍କରେ ତାଙ୍କର ଅନେକ ଭ୍ରାନ୍ତଧାରଣା ବଦ୍ଧମୂଳ ହୋଇଯାଉଛି । ତେଣୁ ମୁଁ ଏଠାରେ ସେମାନଙ୍କ ମଙ୍ଗଳପାଇଁ ଯାହା ଯାହା ବ୍ୟବସ୍ଥା କରୁଛି, ସେମାନେ ବା ତାଙ୍କ ଭିତରୁ କେତେକ ଅନ୍ତତଃ–ତା'ର ବରାବର ବିରୋଧ କରିବାର ଦେଖାଯାଉଛି । ମତେ ତାଙ୍କୁ ନାଗରିକ ଜୀବନର ମୌଳିକ ନିୟମଗୁଡ଼ିକ ମଧ ଶିଖେଇବାକୁ ପଡୁଛି ଯାହାକି ସ୍କୁଲ୍‌ରେହିଁ ସେମାନଙ୍କର ଅଭ୍ୟାସଗତ ହୋଇପଡ଼ିଥାନ୍ତା । ମୁଁ ସେଥିପାଇଁ ଅନୁଭବ କଲି ଯେ, ଯଦି ଏଇ କଲେଜ ଓ ତା'ର ଚାରିପାଖର

ପରିପୋଷକ ହାଇସ୍କୁଲ୍‌ଗୁଡ଼ିକ ଆତ୍ମିକଭାବରେ ସଂଘବଦ୍ଧ ହୋଇପାରନ୍ତେ ଓ ଏକ ସାଧାରଣ ଜାତୀୟ ଆଦର୍ଶରେ ଅନୁପ୍ରାଣିତ ହୋଇପାରନ୍ତେ, ତେବେ ମୋର ଶ୍ରମ ବହୁପରିମାଣରେ ଲଘୁ ହୋଇ ଆସନ୍ତା । ତେଣୁ ମୁଁ ଆପଣଙ୍କ ଆଗରେ କେତେଗୁଡ଼ିଏ ବାସ୍ତବ ବ୍ୟବସ୍ଥା ବାଢ଼ୁଛି, ଯେଉଁଥିରେ କି ମୋର ବିଶ୍ୱାସ, ଆପଣ ମୋର ସହାୟତା କରିପାରିବେ ।

୧ । ଆପଣଙ୍କ ସ୍କୁଲ୍‌ର ପିଲେ ମାଟ୍ରିକ୍ୟୁଲେଶନ ପରୀକ୍ଷାରେ ପାସ୍ କରିସାରିଲା ପରେ, ଆପଣ ମତେ ସେମାନଙ୍କ ଭିତରୁ କେବଳ ସେଇ କେତୋଟି ପିଲାଙ୍କର ଗୋଟିଏ ତାଲିକା ପଠାଇଦେବେ– ଯେଉଁମାନେ, ଆପଣଙ୍କ ମତରେ, କଲେଜ-ପଢ଼ାରୁ ଉପକାର ପାଇପାରିବେ । ସେମାନଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ସ୍ଥାପନରେ ମତେ ଏହା ବହୁତ ସାହାଯ୍ୟ କରିବ । ଅଯୋଗ୍ୟ ଅବାଞ୍ଛିତ ପିଲା କଲେଜରେ ଭର୍ତ୍ତିହୋଇ ଅକାରଣ ଗୋଳମାଳ କରିବା ମଧ୍ୟ ଏହାଦ୍ୱାରା ବହୁପରିମାଣରେ ନିରୋଧ ହେବ । ଆପଣ ମତେ କୌଣସି ପିଲାର କିଛି ବିଶିଷ୍ଟତା ଥିଲେ, ତାହା ମଧ୍ୟ ବ୍ୟକ୍ତିଗତଭାବରେ ଜଣାଇବେ, ଯାହାଦ୍ୱାରା ସେ କଲେଜରେ ପଢ଼ିଲା ଭିତରେ, ତାର ସେହି ବିଶିଷ୍ଟତାର ଅଭିବର୍ଦ୍ଧନର ବ୍ୟବସ୍ଥା ଆମେ ଏଠାରେ କରିପାରିବୁ ।

୨ । କଲେଜରେ ପଢ଼ିବାପାଇଁ ଯେଉଁ ଆର୍ଥିକ ସାମର୍ଥ୍ୟ ଦରକାର, ତା' ପାଇଁ ଆଗରୁ ପ୍ରସ୍ତୁତ ହୋଇଥିବାକୁ, ଆପଣଙ୍କ ପିଲାଙ୍କୁ କହିରଖିବେ । ବଡ଼ ଦୁଃଖର ସହିତ ମୁଁ ଦେଖିଆସୁଛି ଯେ, ଅନେକ ପିଲା ଅର୍ଥାଭାବରୁ ପଢ଼ା-ମଝିରେ କଲେଜ ଛାଡ଼ି ପଳାଉଛନ୍ତି । ଏହା ହେବା ଉଚିତ ନୁହେଁ ।

୩ । କଲେଜରୁ ଗରିବ ପିଲାଙ୍କୁ କିଛି କିଛି ସାହାଯ୍ୟ ମିଳେ । କିନ୍ତୁ ଏଇ ସର୍ତ୍ତରେ ଯେ, ସେମାନେ କଲେଜପାଇଁ କିଛି ନା କିଛି କାମ କରିବେ । ଆମ ଲୋକେ ମାଗିବାରେ ଏପରି ଅଭ୍ୟସ୍ତ ଯେ, କୌଣସି ଉପକାରକୁ କାମ ଦେଇ ଶୁଝିବାଟାକୁ ସେମାନେ ଆଦୌ ପସନ୍ଦ କରନ୍ତି ନାହିଁ । ଆପଣ ଆପଣଙ୍କ ପିଲାଙ୍କୁ ମୂଳରୁ ଶ୍ରମ, ବିଶେଷତଃ ଯାହା ସମୂହଭାବରେ ଗୋଷ୍ଠୀକଲ୍ୟାଣରେହିଁ ହେଉଛି, ତାପାଇଁ ଯେପରି ଲଜ୍ଜିତବୋଧ ନକରନ୍ତି ।

୪ । ସ୍କୁଲ୍‌ରେ ଥିଲାବେଳେ ଆପଣ ପିଲାଙ୍କୁ ଏଇ କେତୋଟି କଥା ବରାବର ଶିଖାଇବେ —ପାଟିତୁଣ୍ଡ ନକରି ନୀରବରେ କାମକରିବା ଓ ଚଳାଚଳ ହେବାର ଅଭ୍ୟାସ, ପ୍ରତ୍ୟେକ ଲୋକପ୍ରତି ଭଦ୍ର ବ୍ୟବହାର, ପୁଣି ସ୍ୱାର୍ଥପରଭାବରେ କେବଳ ନିଜର ତୁରନ୍ତ ଲାଭର କଥା ନ ଭାବି, ଅନ୍ୟମାନଙ୍କ ପ୍ରତି, ପ୍ରତିବେଶୀ ପ୍ରତି ଓ ବିଶେଷକରି ଯେଉଁ ଗୋଷ୍ଠୀରେ ସେମାନେ ବାସ କରୁଛନ୍ତି ତାର ସ୍ୱାର୍ଥପ୍ରତି ଯେପରି ସେମାନେ ବିଚାରଶୀଳ ହୁଅନ୍ତି । ଆମର ଗଣତନ୍ତ୍ର-ରାଷ୍ଟ୍ର ଗଣତାନ୍ତ୍ରିକ ରୀତିରେ କେବେହେଲେ ଚଳିପାରିବ ନାହିଁ, ଯଦି ଆମର ତରୁଣ ନାଗରିକମାନେ ମୂଳରୁ ଏକ ଶକ୍ତିଶାଳୀ ଗୋଷ୍ଠୀ-ଭାବ ନିଜ ପ୍ରାଣରେ ନବଢ଼ାନ୍ତି । ଆମ ଭାରତବର୍ଷର ଲୋକେ ଅତିମାତ୍ରାରେ ଆତ୍ମକେନ୍ଦ୍ରିକ ।

୫ । ଆପଣଙ୍କ ପିଲେ ନିଜ କକ୍ଷଟିମାନ ଓ ତାର ଆଖପାଖ, ନିଜ ହାତରେ ସଫା ରଖିବାର ଅଭ୍ୟାସ କରନ୍ତୁ ଓ ସେ ଅଭ୍ୟାସ କଲେଜକୁ ମଧ୍ୟ ସାଥିରେ ଆଣନ୍ତୁ । ତାଙ୍କୁ ଯେକୌଣସି ଶାରୀରିକ ଶ୍ରମ ହସି ହସି ଓ ହୃଦ୍ୟତାର ସହିତ କରିବାକୁ ଏବଠୁ ଶିଖାନ୍ତୁ ।

୬ । ଶେଷରେ ତାଙ୍କର ପାଠପଢ଼ା ସମ୍ପର୍କରେ ଏଇ କେତୋଟି ସାମାନ୍ୟ କଥା ବରାବର ମନେରଖିବାକୁ କହିବେ –

(କ) ସେମାନେ ରାଜନୀତି ସହିତ କୌଣସି ସମ୍ପର୍କ ରଖିବେନାହିଁ । ପଢ଼ା ଛାଡ଼ି ଜୀବନକ୍ଷେତ୍ରରେ ପଶିଲେ ଯାଇ ତାର ବେଳ ଆସିବ । ପଢ଼ା ହେଉଛି ଜୀବନପାଇଁ ପ୍ରସ୍ତୁତି । ଛାତ୍ରାବସ୍ଥାରେ, ରାଜନୀତି ଯୋଗୁ, ଏଇ ପ୍ରସ୍ତୁତି ଯେପରି ନଷ୍ଟ ନହୁଏ ।

(ଖ) ସକାଳେ ଦୁଇଘଣ୍ଟା ଓ ଉପରଓଳି ଦୁଇଘଣ୍ଟା – ଅନ୍ତତଃ ଏଇତକ ସମୟ, ମନଦେଇ ପାଠପଢ଼ିବାର ମାନସିକ ସଂଯମ ସେମାନଙ୍କୁ ଶିଖାନ୍ତୁ । ଇଲେକ୍‌ସନ୍, ଫୁଟବଲ ଖେଳ ପ୍ରଭୃତି କ୍ଷଣିକ; ଉତ୍ତେଜନା ଉପରେ ବୃଥା ସମୟ ନଷ୍ଟ କରିବାକୁ ସେମାନଙ୍କୁ ଦିଅନ୍ତୁ ନାହିଁ ।

(ଗ) ଅନ୍ତତଃ ଦୁଇଟି ଭାଷା –ମାତୃଭାଷା ଓ ଇଂରାଜୀରେ ସେମାନେ ଟାଣ ଯେପରି ହୁଅନ୍ତି, ତାର ଚେଷ୍ଟା କରିବାକୁ ସେମାନଙ୍କୁ କହନ୍ତୁ । ବର୍ତ୍ତମାନ, ସାଧାରଣ ଛାତ୍ରର ଭାଷା-ଜ୍ଞାନ ଅତି ଦୁର୍ବଳ । ତାହାହିଁ ବହୁ ଫେଲ୍‌ର ବୃହତ୍ତମ କାରଣ ।

(ଘ) ପିଲାଙ୍କୁ ମୂଳରୁ ଲାଇବ୍ରେରି ବ୍ୟବହାର କରିବାକୁ ଶିଖାନ୍ତୁ । ସ୍କୁଲ୍ କଲେଜରେ କେବଳ ବାଜେ ଉପନ୍ୟାସ ପଢ଼ି ସେମାନଙ୍କର ସମୟ ନଷ୍ଟକରିବା ଆପଣ ନିଶ୍ଚୟ ଚାହାନ୍ତି ନାହିଁ । ସ୍କୁଲ୍ କଲେଜକୁ ନିଆସି ତ ନଭେଲ ପଢ଼ା ହୋଇପାରନ୍ତା । ତେଣୁ ତାକୁ ଛାଡ଼ି ପ୍ରତ୍ୟେକ ଛାତ୍ର, ଜ୍ଞାନର ଗୋଟିଏ କୌଣସି ଶାଖାଧରି ସେଥିରେ ବିଶିଷ୍ଟତା ଲାଭ କରିବାର ଚେଷ୍ଟା କରୁ ।

(ଙ) ଆପଣଙ୍କର ପ୍ରତ୍ୟେକ ପିଲାଙ୍କୁ କହିରଖିବେ ଯେ, ସେ ବାହାରର ରାଜନୈତିକ ପ୍ରଚାରକଙ୍କ ଅପେକ୍ଷା, ପ୍ରିନ୍ସିପାଲ ଓ ଲେକ୍‌ଚରର୍‌ମାନଙ୍କଠାରେ ଅଧିକ ବିଶ୍ୱାସ ସ୍ଥାପନ କରିବେ ।

ଆଶାକରୁଛି ଯେ ଆପଣଙ୍କଠାରୁ ସହଯୋଗ ପାଇବି ଏ ଦିଗରେ । । ଇତି ।

ବିଶ୍ୱାସଯୋଗ୍ୟ

ମାୟାଧର ମାନସିଂହ

## ସଦ୍ଯୁକ୍ତି ଦେଇ ସଦାଦର୍ଶ –

କେବଳ ଅନ୍ୟମାନଙ୍କୁ ଏଇପ୍ରକାର ଉପଦେଶ ଦେଇ ମୁଁ ମୋର କର୍ତ୍ତବ୍ୟ ଶେଷ କରିନଥିଲି । ମୋ ନିଜ କଲେଜରେ ଗୋଟିଏ ଉନ୍ନତ ବାୟୁମଣ୍ଡଳ ଓ ଆଦର୍ଶକୁ ବଞ୍ଚାଇ ରଖିବାର ଚେଷ୍ଟା ମୁଁ ଅବିଶ୍ରାନ୍ତଭାବରେ କରୁଥାଏ । ଏ ଦିଗରେ ପିଲାଙ୍କ ଲୁଗା ପିନ୍ଧାଠୁ, ଲାବରେଟରି, ଲାଇବ୍ରେରି-ବ୍ୟବହାର ପର୍ଯ୍ୟନ୍ତ ଯାବତୀୟ ଛୋଟ ଛୋଟ ବିଷୟ ଉପରେ ନୋଟିସ୍ ଦେଇ ଚାଲିଥାଏ । ସେଥିରୁ କେତେକ ତତ୍କାଳୀନ ମେହେର କଲେଜ କାଲେଣ୍ଡରରେ ସ୍ଥାନ ପାଇଥିଲା । ଶେଷରେ ପିଲାଙ୍କ ଆଗରେ ବରାବର ଗୋଟାଏ ଉନ୍ନତ ଆଦର୍ଶ-ଜୀବନର ଚିତ୍ର ଥୋଇ ରଖିବାପାଇଁ କଲେଜ କାନ୍ଥରେ ଗୁଡ଼ାଏ ମାକ୍‌ସିମ୍ ବା ସୂକ୍ତି ମରାଇଦେଲି । ୟାର ପ୍ରାୟ ଦୁଇବର୍ଷ ପରେ ଏକ ମାଗାଜିନ୍‌ରେ ପଢ଼ିଲି ଯେ ସୋଭିଏଟ୍ ରୁଷିଆର ପ୍ରତି ସ୍କୁଲ୍-କଲେଜରେ ଏପ୍ରକାର ମାକ୍‌ସିମ୍ ସବୁ ଟଙ୍ଗା ହୋଇଥାଏ । ସମାନୁଭବୀ ଶିକ୍ଷକ ଓ ଶିକ୍ଷାବିତ୍‌ଙ୍କ ଜାଣିବାପାଇଁ ଏଇ ମାକ୍‌ସିମ୍‌ଗୁଡ଼ିକ ଏଠାରେ ଦେଉଛି । ଏ ଦିଗରେ କୁତୂହଳୀପାଠକ, ନିକଟରେ ପ୍ରକାଶିତ ଲେଖକର 'ଶିକ୍ଷାର

କି, କ'ଣ ଓ କାହିଁକି' ପୁସ୍ତକ ଦେଖିପାରନ୍ତି । ସେଥିରେ ଗଙ୍ଗାଧର ମେହେର କଲେଜର ଓ ରୁଷୀୟ ବିଦ୍ୟାୟତନମାନଙ୍କର ମାକ୍‌ସିମ୍‌ଗୁଡ଼ିକ ପାଖାପାଖି ଦିଆଯାଇଛି । ଏଠାରେ କେବଳ ମେହେର କଲେଜରେ ମରାଯାଇଥିବା ମୋର ମାକ୍‌ସିମ୍‌ଗୁଡ଼ିକ ଦିଆଗଲା ।

**ବାଳକମାନଙ୍କ ନିମନ୍ତେ –**

୧ । ଜନନୀ ଭାରତ ଆଶାକରେ ଯେ ତାର ପ୍ରତ୍ୟେକ ସନ୍ତାନ ନିଜ ନିଜ କର୍ତ୍ତବ୍ୟ ପାଳନ କରିବ ।

୨ । ଯେତେବେଳେ ତୁମକୁ ଅବସର ମିଳୁଛି, ଅସୁନ୍ଦରଭାବରେ ଗୋଳମାଳ ନକରି, ଚାଲିଯାଅ ଲାଇବ୍ରେରି ବା ଲାବରେଟରିକୁ ଯେଉଁଠାରେ ଜ୍ଞାନ-ସଂଗ୍ରହ କରିବ । ତାହାହିଁ ତୁମକୁ ଜୀବନରେ ସାହାଯ୍ୟ କରିବ ।

୩ । ନୀରବତା, ସକଳ ସଂସ୍କୃତିର ପ୍ରଥମ ସୋପାନ । ନୀରବରେ କାମ କରିଯାଅ ଓ ନୀରବରେ ଚଲାବୁଲା କର ।

୪ । ସଭ୍ୟ ସାମାଜିକ ଜୀବନର ମୂଳପତ୍ତନ ହେଉଛି ଅନ୍ୟ ପ୍ରତି ବିଚାରଶୀଳ ହେବା । ସବୁବେଳେ ନିଜକୁ ଏଇସବୁ ପ୍ରଶ୍ନ ପଚାର – ମୁଁ ଅନ୍ୟମାନଙ୍କ ମନରେ ଆଘାତ ଦେଉନାହିଁ ତ ? ଅନ୍ୟମାନଙ୍କ କାମରେ ବାଧା ଦେଲାପରି ମୁଁ କିଛି କରୁଛି କି ? କାହାପ୍ରତି କିଛି ଅନ୍ୟାୟ କରୁଛି କି ?

୫ । ଗଣତନ୍ତ୍ର ଭାରତର ଗୌରବବର୍ଦ୍ଧନପାଇଁ ନିଜକୁ କୌଣସି ବିଶେଷ ଦିଗରେ ଆଜିଠାରୁ ପ୍ରସ୍ତୁତ କର – ଏପରିକି ଏକ ଉତ୍ତମ ମେହେନ୍ତରଭାବରେ ମଧ୍ୟ ।

୬ । ପରସ୍ପର ପ୍ରତି ଓ ଅଚିହ୍ନା ଲୋକପ୍ରତି ଭଦ୍ର ହୁଅ । ଶିକ୍ଷକମାନଙ୍କ ଆଗରେ ନମ୍ର ହୁଅ ।

୭ । କଲେଜରେ ଖରାପ ଛାତ୍ର ହୋଇ ତମେ ଭାରତର ଭଲ ନାଗରିକ ହୋଇପାରିବ ବୋଲି ଆଶା କରନାହିଁ ।

୮ । ତମେ ଯେଉଁ ଯେଉଁ ସମସ୍ୟାର ସମ୍ମୁଖୀନ ହେଉଛ, ସେଥିପାଇଁ ତମେ ସିଧା କୌଣସି ଶିକ୍ଷକଙ୍କ ନିକଟକୁ ଯାଅ । ମନେରଖ ଯେ ସେ ତମକୁ ନିର୍ଦ୍ଦେଶ ଓ ସାହାଯ୍ୟ ଦେବାପାଇଁ ଏଠାରେ ଅଛନ୍ତି ।

୯ । ଆମର ଜନରାଷ୍ଟ୍ର ଭାରତ ତମଠୁ ଚତୁରତା ବା ଡିଗ୍ରୀ ଅପେକ୍ଷା, ସାଧୁତା ଓ ନିପୁଣତାହିଁ ବେଶି ଆଶା କରେ । ଯେକୌଣସି ଛୋଟ କାମଟା, ଯଦି ଖରାପଭାବରେ କରାଯାଏ, ତେବେ ତାହା ଯେକୌଣସି ବଡ଼ କାମକୁ ବ୍ୟର୍ଥ କରିଦେବ ।

୧୦ । ବ୍ୟକ୍ତିଗତଭାବରେ ଭଦ୍ର ଓ ଗୋଷ୍ଠୀଗତଭାବରେ ଶୃଙ୍ଖଳାଶୀଳ ହୁଅ ।

ଏମ୍. ମାନସିଂ
ପ୍ରିନ୍ସପାଲ,
ଜି.ଏମ୍. କଲେଜ, ସମ୍ବଲପୁର

## ବାଳିକାମାନଙ୍କ ପାଇଁ –

୧ । ଭାରତର ପ୍ରତ୍ୟେକ କନ୍ୟା ନିଜକୁ ଏଇ ପ୍ରଶ୍ନ ପଚାରିବା ଉଚିତ୍ ଯେ – ମୋ ଦେଶକୁ ମୋର ଦାନ କ'ଣ ହେବା ଉଚିତ ?

୨ । ମାତୃତ୍ୱହିଁ ନାରୀର ମହିମମୟ ବ୍ୟବସାୟ । ସ୍ୱାସ୍ଥ୍ୟ, ଚରିତ୍ର ଓ ଜ୍ଞାନ ମଧ୍ୟ ଦେଇ ମାତୃତ୍ୱପାଇଁ ନିଜକୁ ପ୍ରସ୍ତୁତ କର ।

୩ । ଆମ ଜାତି, ତୁମକୁ ତା'ର କୋଟି କୋଟି ଶିଶୁର ଶିକ୍ଷକଭାବରେ, ଦେଶର ବୀର ସୈନିକମାନଙ୍କର ଶୁଶ୍ରୂଷାକାରିଣୀଭାବରେ ଏବଂ କୋଟି କୋଟି ଗୃହର ରାଣୀଭାବରେ ଚାହେ । ଏଇ ତିନି ଆଦର୍ଶରୁ ଯେଉଁଟିକି ହେଲେ ବାଛିନେଇ ସେଥିପାଇଁ ପ୍ରସ୍ତୁତ ହୁଅ ।

୪ । ବାଳକମାନଙ୍କ ସହିତ ଭଉଣୀ ପରି ବ୍ୟବହାର କର । ତାଙ୍କୁ ତମେ ଭୟ କରିବାର କୌଣସି କାରଣ ନାହିଁ । ସେମାନେ ବରଂ ତୁମକୁ ଭୟ କରିବାର କଥା ।

୫ । କେବଳ ଦେହ ଓ ମନରେ ଶୁଦ୍ଧ ରହିପାରିଲେହିଁ ତମେ ଜାତିକୁ ଶ୍ରେଷ୍ଠ ସେବା ଦେଇପାରିବ ।

୬ । ଚତୁର୍ଦ୍ଦିଗରେ ସୁଷମା, ପବିତ୍ରତା ଓ ସଂସ୍କୃତିର ଆଲୋକ ବିକିରଣ କରି ପ୍ରଦୀପ ପରି ଜ୍ୱଳନ୍ତ ରହ ।

୭ । ଯେ ବିବାହ ଯୌତୁକ ଦାବି କରେ ତାକୁ ପଦାଘାତ କର । ଯେଉଁ ବିବାହରେ ତମେ ଦୋକାନର ପଣ୍ୟ ପରି ବ୍ୟବହୃତ ହେବ, ତାଠାରୁ ଦେଶସେବାରେ ନିୟୋଜିତ କୁମାରୀ-ବ୍ରତ ବହୁଗୁଣରେ ଶ୍ରେୟସ୍କର ନୁହେଁ କି ?

୮ । ନାରୀହିଁ ଜଗତର ପ୍ରକୃତ ସ୍ରଷ୍ଟା । ସେ କେବଳ ଜାତିର ସ୍ରଷ୍ଟା ନୁହେଁ, ସେଇହିଁ ପୁଣି ସୃଷ୍ଟି କରେ କଳା, କବିତା, ନୃତ୍ୟ, ଗୀତ, ସାହିତ୍ୟ ଓ ଗୃହ । ନିଜକୁ ଏପରି ପରମ ସୃଷ୍ଟି କ୍ରିୟାର କେନ୍ଦ୍ରରୂପେ କଳ୍ପନା କରିନିଅ ଓ ସେ ଭୂମିକା ପାଇଁ ତୁଚ୍ଛ ଗଳ୍ପ ବା କଳହରେ ସମୟ ନଷ୍ଟ ନକରି ସବୁବେଳେ କିଛି ନା କିଛି ସୁନ୍ଦର ଓ ଉପକାରୀ ବସ୍ତୁ ସୃଷ୍ଟି କରିବାରେ ଲାଗିଥାଅ ।

୯ । ସ୍ୱାସ୍ଥ୍ୟ ଓ ସାରଲ୍ୟହିଁ ପ୍ରକୃତ ସୌନ୍ଦର୍ଯ୍ୟ । ମହାର୍ଘ ବସନ ଓ ଭୂଷଣକୁ ପରିହାର କରିବ ।

୧୦ । ଜଣେ ନାରୀର କୋମଳ କରପଲ୍ଲବରେ ଜଣେ ପୁରୁଷର ସକଳ ଆଶା ଓ ପ୍ରେରଣା ନିହିତ । ସେହି ପରମ ବିଶ୍ୱାସ ଓ ଭରସାର ଯୋଗ୍ୟ କର ନିଜକୁ ।

ଏମ୍. ମାନସିଂ

ପ୍ରିନ୍ସପାଲ, ଜି.ଏମ୍. କଲେଜ, ସମ୍ୱଲପୁର

କୌଣସି କୁତୂହଳୀ ପାଠକ, ସେ ସମୟର ଗଙ୍ଗାଧର ମେହେର କଲେଜର ବାର୍ଷିକ କ୍ୟାଲେଣ୍ଡର ଖଣ୍ଡିଏ ଯୋଗାଡ଼ କରିପାରିଲେ ସେଇଥିରୁ ଲେଖକର ସମସ୍ତ କ୍ଷୁଦ୍ର ଚେଷ୍ଟାର ଏକ ଚିତ୍ର ସେ ପାଇପାରିବେ । ତତ୍କାଳୀନ ଡି.ପି.ଆଇ. ଡକ୍ଟର ବଳଭଦ୍ର ପ୍ରସାଦ ଏଇ କ୍ୟାଲେଣ୍ଡର ପାଇଁ ମତେ ଏଇ ପତ୍ର ଦେଇଥିଲେ–

''ପ୍ରିୟ ଡକ୍ଟର ମାନସିଂ, ତମ କଲେଜ-କ୍ୟାଲେଣ୍ଡରଟି ଦେଖି ମୁଁ ଅଶେଷଭାବରେ ପ୍ରୀତ । ମୁଁ ଆଶାକରୁଛି ତମେ ସବୁ ପ୍ରିନ୍ସପାଲମାନଙ୍କ ପାଖକୁ ଏଥିରୁ ଗୋଟିଏ ଗୋଟିଏ କପି ପଠାଇଥିବ ।''

ଉପର ମହଲର ଜଣକଠୁ ଏତିକି ସଦିଚ୍ଛାହିଁ ଯାହା ଭାଗ୍ୟରେ ମିଳିଛି କିନ୍ତୁ କଲେଜଟିକୁ ଏକ ଉତ୍ତମ ଅନୁଷ୍ଠାନ କରି ଗଢ଼ିବାର ସକଳ ଚେଷ୍ଟାର ଫଳସ୍ୱରୂପ କି ଦୁଃଖ, କି ନିନ୍ଦା, କି ନିର୍ଯାତନା ଯେ ପୁରସ୍କାରଭାବରେ ପାଇ ମୁଁ ଗଙ୍ଗାଧର ମେହେର କଲେଜ ଶେଷରେ ଛାଡ଼ିଲି, ତାହା ପର ଅଧ୍ୟାୟରେ ବର୍ଣ୍ଣିତ ହେବ ।

## ମେହେର କଲେଜର ନବକଳେବର –

ମୁଁ ଯେଉଁ ବର୍ଷ ସମ୍ବଲପୁର କଲେଜରେ ଯୋଗଦେଲି ସେବର୍ଷ ସେ କଲେଜର ବିଶ୍ୱବିଦ୍ୟାଳୟର ପରୀକ୍ଷା ଫଳ ଥିଲା ସମଗ୍ର ଦେଶରେ ସବୁଠାରୁ ନ୍ୟୂନତମ । ମୋର ରହିବାର ଶେଷ ତିନିବର୍ଷ ସେହି ଫଳ ହୋଇଉଠିଥିଲା ସବୁଠାରୁ ଉଚ୍ଚତମ । ମାସିକ ପରୀକ୍ଷା ପ୍ରବର୍ତ୍ତନ କରି ଅଦ୍ଭୁତଭାବରେ ଏପ୍ରକାର ପରିବର୍ତ୍ତନ ଘଟାଯାଇ ପାରିଥିଲା । ଏସବୁ ଗଳ୍ପ ନୁହେଁ । ରେକର୍ଡ଼ର କଥା । ଯେକୌଣସି ଲୋକ ଇଚ୍ଛା କଲେ ଗଙ୍ଗାଧର ମେହେର କଲେଜକୁ ଯାଇ ବା ୟୁନିଭରସିଟି ରେକର୍ଡ଼ ଯାଞ୍ଚ କରିପାରନ୍ତି । ପୁଣି ମୁଁ ଗଙ୍ଗାଧର ମେହେର କଲେଜକୁ ଗଲାବେଳକୁ ଲେକଚରର୍‌ମାନେ ସେତେବେଳକୁ ଦଶ ବାରବର୍ଷ ଧରି ଗୁହାଳ-ଅଯୋଗ୍ୟ କୁଡ଼ିଆରେ ରହିଥାନ୍ତି, କଲେଜଠାରୁ ଅଧମାଇଲ ଦୂର ବୁଢ଼ାରଜା ପାହାଡ଼ ତଳେ । ଅଥଚ ଏଣେ କଲେଜ ଟ୍ରଷ୍ଟ ଫଣ୍ଡରେ ଦଶଲକ୍ଷ ଟଙ୍କା ଜମାଥାଏ । ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି । ଭାବି ଭାବି, ଦିନେ ସେ କାଳେ ସେଠି ବିଭାଗୀୟ କମିଶନର ଥିବା ମିଷ୍ଟର ବି. ଶିବରମନଙ୍କୁ (ପରେ ଓଡ଼ିଶାର ଚିଫ୍ ସେକ୍ରେଟାରୀ) ଏକ ପତ୍ର ଦେଲି । ସେପର୍ଯ୍ୟନ୍ତ ତାଙ୍କ ସହିତ ମୋର ପରିଚୟ ଦୂରେ ଥାଉ, ଦେଖା ବି ହୋଇନଥିଲା । ମୁଁ ତାଙ୍କୁ ଲେଖିଲି ଏଇ ମର୍ମରେ ଯେ, ''ଆପଣ ଏ ସ୍ଥାନର ସର୍ବୋଚ୍ଚ ଶାସନକର୍ତ୍ତା । ଆପଣଙ୍କର ସବୁ ବିଭାଗ ଉପରେ ଦୃଷ୍ଟିଦେବା ଉଚିତ । କଲେଜ-ଟ୍ରଷ୍ଟ ଫଣ୍ଡ୍‌ରେ ଲକ୍ଷ ଲକ୍ଷ ଟଙ୍କା ଜମାହୋଇ ରହିଛି, ଅଥଚ ଏ କଲେଜର ହଷ୍ଟେଲ ନାହିଁ, ନିଜର ଘର ନାହିଁ (ସେପର୍ଯ୍ୟନ୍ତ ଜିଲ୍ଲା ସ୍କୁଲ୍‌ରେ ହେଉଥାଏ) ଆଉ, ଲେକ୍‌ଚରର୍‌ମାନେ ଗୁହାଳ ଘରେ ରହୁଛନ୍ତି, ଏହା ବଡ଼ ନିନ୍ଦାର କଥା । ଆପଣ ଦୟାକରି ସହଯୋଗ କରନ୍ତୁ । ତେବେ ସବୁ ହୋଇପାରିବ ।''

ହେଲା, ପ୍ରକୃତରେ କାମ । ତାଙ୍କରି ସହାୟତାରେ ସମ୍ବଲପୁର କଲେଜର ଷ୍ଟାଫ୍-କଲୋନି, ହଷ୍ଟେଲ୍ ଓ ପରିବର୍ଦ୍ଧିତ-କଲେଜ-ଗୃହ ଆଦି ଆଖିଆଗରେ ଗଢ଼ିଉଠିଲା । ସମ୍ବଲପୁର କଲେଜର ପ୍ରିନ୍ସପାଲ କ୍ୱାର୍ଟସ ଏପର୍ଯ୍ୟନ୍ତ ହୋଇଛି କି ନାହିଁ, ଜାଣେ ନାହିଁ । ମୁଁ ସେଠା ଛାଡ଼ିଲା ପର୍ଯ୍ୟନ୍ତ ତ ହୋଇନଥିଲା । ସେଥିପାଇଁ ମୁହିଁ ଅବଶ୍ୟ ଦାୟୀ ଥିଲି । ବାରମ୍ବାର ଅନୁରୁଦ୍ଧ ହେଲେହେଁ ପ୍ରିନ୍ସପାଲ କ୍ୱାର୍ଟସ୍ ପାଇଁ ମୁଁ ଆଦୌ ନିଘା ଦେଇନଥିଲି । ମୁଁ ଧରିବସିଥିଲି, 'ମୋର ଷ୍ଟାଫ୍ ଓ ପିଲେ ଆଗ ଭଲ ଘରେ ରହନ୍ତୁ ।' ମୁଁ ସେଇ କ୍ଷୁଦ୍ର, ପୁରାତନ ଜିଲ୍ଲା ସ୍କୁଲ୍ ହେଡ଼ମାଷ୍ଟର କ୍ୱାର୍ଟସ୍‌ରେ ହିଁ ଥାଏ ।

## ଗୁରୁ ଓ ଛାତ୍ର –

ସମ୍ବଲପୁର କଲେଜରେ ମୋର ଛାତ୍ରମାନଙ୍କୁ ନିବିଡ଼ଭାବରେ ଜାଣିବାପାଇଁ ମୁଁ ଏକ ନୂତନ ଯନ୍ତ୍ରା ଧରିଥିଲି, ଦିନାକେତେ । ଫୋର୍ଥ ଇୟର୍ ଓ ସେକେଣ୍ଡ ଇୟରର୍ ପିଲେ ପରୀକ୍ଷା ଦେଇ କଲେଜ ଛାଡ଼ି ଚାଲିଯିବେ । ସେଇମାନଙ୍କ ଭିତରୁ ପ୍ରତ୍ୟହ ଦଶ ଦଶ ଜଣ କରି ଡାକି ତାଙ୍କର

ଘର କଥା, ତାଙ୍କର ଅଭିଳାଷ, ତାଙ୍କର ଆର୍ଥିକ ଅବସ୍ଥା, କଲେଜରେ ପଢ଼ାପଢ଼ିର ସୁବିଧା-ଅସୁବିଧା ସବୁ ବୁଝୁଥାଏ ଓ ତା' ସବୁ ଏକ ନୋଟ୍‌ଖାତାରେ ଟିପି ରଖୁଥାଏ । ପାଖରେ ଏପର୍ଯ୍ୟନ୍ତ ଥିବା ସେଇ ନୋଟ୍‌ଖାତାର ପୃଷ୍ଠା ଓଲଟେଇ ଯାହାସବୁ ଦେଖିଲି, ସେଥିରୁ ଗୋଟିଏ ଦୁଇଟି ଉଦାହରଣ ପାଠକମାନଙ୍କୁ ଉପହାର ଦେଇ ଏ ଅଧ୍ୟାୟ ଶେଷ କରେଁ–

## ଶ୍ରୀ ଠାକୁରଚରଣ ପ୍ରଧାନ –

ରୋଲ୍ ୭, ଫୋର୍ଥ ଇୟର୍ –ଇକନମିକ୍ସ, ଓଡ଼ିଆ, ଇକନମିକ୍ସରେ ଅନର୍ସ । ରେଢ଼ାଖୋଲ ବାସସ୍ଥାନ । ଗତ ଚାରିବର୍ଷ ହେଲା ମେହର ଛାତ୍ରାବାସରେହିଁ ଅଛନ୍ତି । ପିତା ଜଣେ ଚଷା । ଦଶ ଏକର ଖଣ୍ଡେ ଜମି । ମାସରେ ୩୦ ଟଙ୍କା ଯାଏ ଘରୁ ପାଏ । ଗତବର୍ଷ ସେ ସୋସାଲ୍ ସର୍ଭିସ୍ ଗିଲ୍‌ଡ଼ରୁ ସାହାଯ୍ୟ ପାଇଥିଲା । ଏ ବର୍ଷ ପାଇନି । ସେମାନେ ୩ ଭାଇ, ଏକ ଭଉଣୀ । ଜଣେ ଭାଇ ରେଢ଼ାଖୋଲ ମିଡ଼ିଲ ସ୍କୁଲ୍‌ରେ ପଢୁଛି । ବି.ଏ. ପାସ୍ ପରେ ତାର ଏକ ଚାକିରି ନିତାନ୍ତ ଦରକାର । ବଉଦ ହାଇସ୍କୁଲ୍‌ରୁ ସେକେଣ୍ଡ ଡିଭିଜନରେ ମାଟ୍ରିକ୍ ପାସ୍ । ଏଠି ଆଇ.ଏ. ତୃତୀୟ ଶ୍ରେଣୀ । ଏଠି ଲାଇବ୍ରେରିରୁ ବହି ପାଇବା ବିଷୟରେ ଆପତ୍ତି ।

ଦ୍ୱିତୀୟ ଦେଖା- ୨। ୧୧ । ୧୯୫୨

ଲାଇବ୍ରେରି ବିଷୟରେ ତାଙ୍କର ଆଉ ଆପତ୍ତି ନାହିଁ। (ପ୍ରିନ୍ସପାଲ ତଦବିର କରିବା ଫଳରେ)

## ମୀନକେତନ ପୁରୋହିତ –

ମାଟ୍ରିକ୍(ବରଗଡ଼ରୁ) ପ୍ରଥମ ଶ୍ରେଣୀ । ଆଇ.ଏସ୍‌ସି.(କମ୍ପାର୍ଟମେଣ୍ଟାଲ୍) ସପ୍ଲିମେଣ୍ଟାରି, କିନ୍ତୁ ପ୍ରଥମ ଶ୍ରେଣୀ ମାର୍କସ୍ । ବି.ଏ.ରେ ବିଷୟ–ଫିଲସଫି, ଓଡ଼ିଆ, ଇଂରାଜୀ(ଅନର୍ସ) । ପିତା, ବରଗଡ଼ ସବ୍‌ଡିଭିଜନରେ କନକପଲ୍ଲୀ ଗ୍ରାମର ଏକ କୃଷକ । ମାତ୍ର ୧୩ ଏକର ଜମି । ପିତାଙ୍କର ଏକମାତ୍ର ସନ୍ତାନ । ଶୈଶବରୁ ମାତୃହୀନ, ପିତା ଆଉ ବିବାହ କରିନାହାନ୍ତି । ମାଉସୀ ଦ୍ୱାରା ପାଳିତ । ବରଗଡ଼ରେ ଥିବା ଓକିଲ-ମଉସା ତାର ପଢ଼ାଖର୍ଚ୍ଚ ଦିଅନ୍ତି । ଏଇ ମଉସା ବିଶ୍ୱକେଶନ ମିଶ୍ର ଜଣେ ପରୋପକାରୀ ଲୋକ । ସେ ଅନେକ ଗରିବ ପିଲାଙ୍କୁ ସାହାଯ୍ୟ କରିଛନ୍ତି । ସେ ଚାହାନ୍ତି ମୀନକେତନ ଆଇ.ଏ.ଏସ୍. ପାଇଁ ଚେଷ୍ଟାକରୁ କିମ୍ବା ଏମ୍.ଏ., ବି.ଏଲ୍.ପାସ୍ କରି ଏକ ଆଡ଼ଭୋକେଟ୍ ହେଉ । ଏ ହେଉଛି ସେଇ କେତୋଟି ଛାତ୍ରମାନଙ୍କ ଭିତରୁ ଜଣେ, ଯେ କି ଗତ ଷ୍ଟ୍ରାଇକ୍(କଲେଜ-ଫି ବଢ଼ିବା ଯୋଗୁଁ ଓଡ଼ିଶାବ୍ୟାପୀ ଷ୍ଟ୍ରାଇକ୍) ବେଳେ ଷ୍ଟ୍ରାଇକ୍‌ର ବିରୋଧରେ ଠିଆ ହୋଇଥିଲେ । ଲାଇବ୍ରେରି ବିରୋଧରେ କୌଣସି ଅଭିଯୋଗ ନାହିଁ । ଯାହା ବହି ଦରକାର, ସେ ପାଏ । ସେ ଫୁଟବଲ୍ ଓ ଭଲି ଖେଳେ । ସେ ତାଙ୍କ ସ୍କୁଲ୍‌ର ଶ୍ରେଷ୍ଠ ଏଗାର ଜଣ ଖେଳାଳି ଭିତରେ ଜଣେ ଥିଲେ । କଣ୍ଠ ଓ ଯାନ୍ତ୍ରିକ ସଂଗୀତ ମଧ୍ୟ କିଛିଭାବରେ ଆୟତ୍ତ । (ଏଇ ମୀନକେତନ ବର୍ତ୍ତମାନ ଇଂରାଜୀ ଲେକ୍‌ଚରର୍)

## କବିତା-ଦରଖାସ୍ତ –

ପିଲାଙ୍କ କଥା କହୁ କହୁ ଆଉ ଏକ ମଜାର କଥା ବି ମନେପଡୁଛି ।

ଗରିବ ପିଲାଙ୍କୁ ସାହାଯ୍ୟ ଦେବାପାଇଁ ସମ୍ବଲପୁରରେ ବହୁତ ପଣ୍ଠା କରିଦିଆଯାଇଥିଲା । କିଏ ପାଇବ, ତାହା ବାଛିବାପାଇଁ କମିଟି ଥାଏ । ସେମାନେ ଯାହା କରନ୍ତି, ସେଥିରେ କୌଣସି ପ୍ରକାର ହସ୍ତକ୍ଷେପ ନକରି ମୁଁ ପାସ୍ କରିଦିଏ ।

ଏକ ବର୍ଷ କଲେଜରେ ଥିଲେ ଦୁଇଜଣ ପ୍ରଫୁଲ୍ଲ ମିଶ୍ର । ସେଥିରୁ ଜଣେ ପାଇଲା, ଆଉ ଜଣେ ପାଇଲାନି । ଯେଉଁ ଜଣକ ନପାଇଲା ସେ ଦିନେ ଆସି ମତେ ଅଫିସରେ ଦେଖାକରି ଅଭିଯୋଗ କଲା ଯେ ସେଇ ପ୍ରଫୁଲ୍ଲ ମିଶ୍ରହିଁ ସାହାଯ୍ୟ ପାଇବାର କଥା । ସଂପୃକ୍ତ ଲେକ୍‌ଚରରର ଭୁଲ୍‌ରେ ତା ପ୍ରତି ଅନ୍ୟାୟ କରିଛନ୍ତି । ମୁଁ ପ୍ରଥମେ ବିରକ୍ତ ହେଲି ପିଲାଟି ଉପରେ ଓ କହିଲି ସେହି ସଂପୃକ୍ତ ଲେକ୍‌ଚରର୍‌ଙ୍କୁ ପୁଣି ଯାଇ ଦେଖାକରିବାକୁ ।

ଛାତ୍ରଟି ଲେକ୍‌ଚରର୍‌ଙ୍କୁ ଦେଖାକରିବ କ'ଣ, ତହିଁ ଆରଦିନ ମୋ ପାଖକୁ ତା'ର ସମସ୍ତ ଦୁଃଖ ବର୍ଣ୍ଣନା କରି ଏକ ଦୀର୍ଘ କବିତା ପଠାଇଦେଲା । ମୁଁ ତ ପଢ଼ି ସ୍ତମ୍ଭିତ । ସଙ୍ଗେ ସଙ୍ଗେ ସଂପୃକ୍ତ ଲେକ୍‌ଚରର୍‌ଙ୍କୁ ଡକାଇ ଏଇ କବି ପ୍ରଫୁଲ୍ଲର ପ୍ରାର୍ଥିତ ସାହାଯ୍ୟର ତୁରନ୍ତ ବ୍ୟବସ୍ଥା କରିଦେଲି ।

ଏଇ ପ୍ରଫୁଲ୍ଲ ମୋର ଦ୍ୱିତୀୟ ପୁତ୍ର ସାଥିରେ ମେହର କଲେଜରୁ ପ୍ରଥମ ଶ୍ରେଣୀରେ ଆଇ.ଏ.ପାସ୍ କଲା ଓ ସେହି ସୂତ୍ରରେ କଲେଜର ମାନ ରକ୍ଷା କଲା । ଆଇ.ଏ.ରେ ମେହର କଲେଜରୁ ଏହି ଦୁଇଜଣ ବୋଧହୁଏ ପ୍ରଥମକରି ଫାଷ୍ଟ ଡିଭିଜନ୍ ଦେଖିଲି । ବି.ଏ.ରେ ଇଂଲିଶ୍ ଅନର୍ସ ରଖି ପାସ୍ କରି, ଏବେ ସର୍ବଭାରତୀୟ ପ୍ରତିଯୋଗିତାରେ କୃତକାର୍ଯ୍ୟ ହୋଇ ପ୍ରଫୁଲ୍ଲ ଇତିମଧ୍ୟରେ I.P.S. ହୋଇଛି ।

ସାହାଯ୍ୟ ପାଇବା ପରେ ଯେଉଁ କବିତାଟି ପ୍ରଫୁଲ୍ଲ ଲେଖିଦେଇଥିଲା, ପାଠକମାନଙ୍କ କୌତୂହଳାର୍ଥେ ତାହା ଏଠାରେ ଦେଲି–

ଅକିଂଚନ ମୁଁ, କିଛି ନାହିଁ ପାଶେ,
ପଢ଼ିବାକୁ ମୋର ଅଛି ଦୁରାଶା
ହେ ମୋର ଗୁରୁ, ହେ ମୋର କବି
ସଫଳ ହୋଇଛି ମୋ'ରି ଆଶା ।
କୃପା ବରଷଣେ, ନିଷ୍ପେଷିତର
ହୃଦୟେ ଦେଇଛି ସାହସ ଦେଖା,
ଧନ୍ୟବାଦ ହେ ମଣିଷ-ବନ୍ଧୁ,
ଦେଖିଲି ମେଘରେ ରୁପେଲି ରେଖା ।
ନିଅ ହେ ମୋହର ଧନ୍ୟବାଦ,
ନିଷ୍କପଟର ହୃଦୟ-ବାଣୀ
ଠେଲିଦେବ ନାହିଁ, ଅର୍ଘ୍ୟ ମୋର ଏ
ନମସ୍କାର, ମୁଁ ନେଲି ମେଲାଣି ।

———

## ଦ୍ୱାଦଶ ଅଧ୍ୟାୟ

# ମେହର କଲେଜରେ ବିବିଧ ଅଭିଜ୍ଞତା

### ୧ । ଛାତ୍ର-ବିଶୃଙ୍ଖଳା –

କଟକର ଏକ ପ୍ରସିଦ୍ଧ ପଣ୍ୟାଳୟର ଉପର ତଳରେ ମୁଁ ଦିନେ କ'ଣ କିଣାକିଣି କରୁଛି, ହଠାତ୍ ଜଣେ ବେଶ୍ ସୁସ୍ଥ-ସୁନ୍ଦର-ସୁବେଶ ଯୁବକ ମତେ ଆସି ନମସ୍କାର କଲେ ଓ କହିଲେ, ''ଆପଣ ମତେ ଚିହ୍ନିପାରୁନାହାନ୍ତି ବୋଧହୁଏ । ମୁଁ ଆପଣଙ୍କର ସମ୍ବଲପୁରରେ ଛାତ୍ର ଥିଲି, ବର୍ତ୍ତମାନ ଏଇଠି ଓକିଲାତି କରୁଛି ।''

''ଓଃ, ବୁଝିଲି । ଖୁବ୍ ମୋଟା ହୋଇଯାଇଛ, ଦେଖୁଛି । ତମ ସ୍ୱାସ୍ଥ୍ୟର ଏତେ ଭଲ ପରିବର୍ତ୍ତନ ଘଟିଛି ଯେ ଚିହ୍ନିବା ସହଜ ନୁହେଁ । ଯାହାହେଉ, ବଡ଼ ଆନନ୍ଦିତ ହେଲି ତୁମକୁ ଦେଖି ଏତେଦିନପରେ, ବିଶେଷରେ ତମେ ସୁପ୍ରତିଷ୍ଠିତ ଥିବାର ଦେଖି ।''

ତା'ପରେ ପରସ୍ପରଠାରୁ ବିଦାୟ ନେଲୁ । ମୋର ବର୍ତ୍ତମାନ ସ୍ମରଣହେଲା ଯେ ମୁଁ ମେହର କଲେଜରେ ପ୍ରିନ୍ସପାଲ ହେବା ପରେ ଏଇ ତରୁଣ-ବନ୍ଧୁ ହେଉଛନ୍ତି ପ୍ରଥମ କେତୋଟି ଛାତ୍ରମାନଙ୍କ ମଧ୍ୟରୁ ଜଣେ– ଯାହାଙ୍କୁ କି ମୁଁ କଲେଜରେ ଡିସିପ୍ଲିନ୍‌ପାଇଁ ଉଚ୍ଚ ଜୋରିମାନା କରିଥିଲି ଓ ସେଥିପାଇଁ ମତେ ଏକ ସଂକଟର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ଘଟଣାଟି ଏଇପରି ଘଟିଥିଲା ।

ମୁଁ କଲେଜରେ ଯୋଗଦେବାର ଅଳ୍ପକାଳ ଭିତରେ ଶ୍ରୀଯୁକ୍ତ ମହତାବ କଲେଜକୁ ଗଲେ ବକ୍ତୃତା ଦେବାକୁ । ସନ୍ଧ୍ୟାବେଳେ ସଭା ହୋଇଥିଲା । ସଭା ସରିଲା, ମହତାବ ବାହାରକୁ ଆସିଲେ । ମୁଁ ସାମାନ୍ୟ ଦୂରରେ ଥାଏ । ତାଙ୍କୁ ପିଲା ଘେରି ରହିଥାନ୍ତି ।

ସେତେବେଳେ ସମ୍ବଲପୁର କଲେଜ ହେଉଛି ଓଡ଼ିଶାରେ ଏକମାତ୍ର କଲେଜ, ଯେଉଁଠି କମର୍ସ ଥିଲା ଏକ ନୂଆ ବିଷୟ । କିନ୍ତୁ ବି.ଏ., ବି.ଏସ୍‌ସି. ପରି ବି.କମ୍.ର ମାନ-ମର୍ଯ୍ୟାଦା ସେ ପର୍ଯ୍ୟନ୍ତ ଠିକ୍ ହୋଇନଥାଏ । ଓଡ଼ିଶାରେ କମର୍ସପାଇଁ ଏକମାତ୍ର କଲେଜ ଥିବାରୁ, ସେତେବେଳେ ସମ୍ବଲପୁର କଲେଜରେ କମର୍ସ ପଢ଼ିବାପାଇଁ ଓଡ଼ିଶାର ସବୁ ଜିଲ୍ଲାରୁ ପିଲେ ଆସୁଥିଲେ । ବାହାରର ଏକ କମର୍ସ ପିଲାଗୁଡ଼ିକହିଁ ସେତେବେଳେ ସମ୍ବଲପୁର କଲେଜରେ ସବୁ କଥାରେ ନେତୃତ୍ୱ ନେଉଥିଲେ; କିନ୍ତୁ ମୁଁ ତ ନୂଆ ଆସିଥାଏ । ଏଇ କମର୍ସ ପିଲାଙ୍କ ଭିତରେ କମର୍ସର ଅନିର୍ଦ୍ଦିଷ୍ଟ ଭବିଷ୍ୟତ୍ ନେଇ ଯେ ଅସନ୍ତୋଷର ନିଆଁ ଜଳୁଥିଲା, ତା' ମତେ ସେପର୍ଯ୍ୟନ୍ତ ଜଣାନଥିଲା । ତାହା ସେହି ସଭାରେ ଜଣାପଡ଼ିଲା । କମର୍ସ ପିଲେ ମହତାବଙ୍କୁ ପଚାରିଲେ ଯେ ବି.ଏ., ବି.ଏସ୍‌ସି. ପରି ବି.କମ୍. ମଧ୍ୟ ଓ.ଏ.ଏସ୍. ଓ ଆଇ.ଏ.ଏସ୍. ପରୀକ୍ଷାପାଇଁ ବିଚାରଣୀୟ ହେବନାହିଁ କାହିଁକି ?

ହଲ୍ ଭିତରେ ମହତାବଙ୍କଠାରୁ ଏଥର ସନ୍ତୋଷଜନକ ଉତ୍ତର ନପାଇ, ପିଲେ ମହତାବଙ୍କ ପିଛା ପିଛା ବାହାରକୁ ଆସିଲେ । ସେମାନେ ମହତାବଙ୍କଠାରୁ ଏକ ନିର୍ଭର ଜବାବ ଏ ବିଷୟରେ ଆଶା କରୁଥିଲେ ।

ରାଜନୈତିକ ପୁରୁଷର ପ୍ରତ୍ୟେକ ଉପଯାଚକକୁ ପ୍ରତିଶ୍ରୁତି ଦେବାରେ କୌଣସି କୁଣ୍ଠା ବା କୃପଣତା ନକରିବା ସ୍ୱାଭାବିକ ଧର୍ମ ହେଲେହେଁ ଏବଂ ଶ୍ରୀଯୁକ୍ତ ମହତାବଙ୍କର ଏ ଧର୍ମର କୌଣସି ଅଭାବ ନଥିଲେହେଁ, ସେ ଏ କ୍ଷେତ୍ରରେ ପିଲାଙ୍କ ନିକଟରେ କୌଣସି କମିଟ୍‌ମେଣ୍ଟ୍ କଲେନାହିଁ । କାରଣ, ବି.କମ୍.ର ଭବିଷ୍ୟତ୍, ବିଶ୍ୱବିଦ୍ୟାଳୟ ବା ଭାରତ ସର୍କାର ସ୍ଥିର କରିବେ । ତାପାଇଁ ଲେଖାଲେଖି ହେଉଛି ବା ଲେଖାଲେଖି କରିବା ବୋଲି କହିହିଁ ସେ ପିଲାଙ୍କୁ ବୋଧ ଦେବାକୁ ଲାଗିଲେ ।

କିନ୍ତୁ ଟୋକା ରକ୍ତ ତ ? ପିଲେ ମହତାବଙ୍କୁ ଘେରିରହିଲେ ଓ ଦାବି କଲେ ଯେ ସେ ସେହିଠାରେ ସେହିକ୍ଷଣରେ ଜବାବ ଦେଇଯାଆନ୍ତୁ ।

ପିଲା ଓ ମହତାବଙ୍କ ବ୍ୟୂହର ସାମାନ୍ୟ ଦୂରରେ ମୁଁ ଠିଆହୋଇଥାଏଁ । କଥାବାର୍ତ୍ତା କ୍ଷିପ୍ରଗତିରେ ଚାଲିଥାଏ । ସବୁ ମୋତେ ବୁଝା ପଡୁନଥାଏ । ଘଟଣାର ତାତ୍ପର୍ଯ୍ୟ ମୁଁ ପରେ ଯାଇ ବୁଝିଲି, ସ୍ପଷ୍ଟଭାବରେ ଶ୍ରୀଯୁକ୍ତ ମହତାବ କୌଣସିମତେ କାର୍‌ରେ ବସି ଚାଲିଗଲେ । ଯିବା ପୂର୍ବରୁ ସେ କିନ୍ତୁ ପିଲାଙ୍କ ବ୍ୟବହାରରେ ବିରକ୍ତିର ସ୍ପଷ୍ଟ ଚିହ୍ନ ଦେଖାଇ ଯାଇଥିଲେ ।

ମହତାବ ଚାଲିଗଲା ପରେ ପରେ ମୁଁ ପିଲାଙ୍କୁ ତିରସ୍କାର କଲି । ତା'ପରେ ଯେଝା ଘରକୁ ଗଲୁ । ରାତି କଟିଲା । ତହିଁ ଆରଦିନ ମୁଁ କଲେଜକୁ ଆସିବା ପରେ ମୋର ପ୍ରଥମ କାମ ହେଲା, ପାଞ୍ଚଟି ରିଙ୍ଗ୍ ଲିଡ଼ରଙ୍କୁ ପାଞ୍ଚଟଙ୍କା କରି ଜୋରିମାନାର ନୋଟିସ୍ ଦେବା ।

ପିଲେ ଏପ୍ରକାର ଦଣ୍ଡବିଧାନ ଆଦୌ ଆଶା କରିନଥିଲେ । ସତ୍ୟ କହୁଛି, କଲେଜରେ ସେତେବେଳେ ଡିସିପ୍ଲିନ୍ ବୋଲି ଗୋଟିଏ କଥା ଆଦୌ ନଥିଲା କହିଲେ ଚଳେ । ବହୁ ମୁଖରୁ ଶୁଣିଛି, ମୋର କୌଣସି ପୂର୍ବବର୍ତ୍ତୀ ପ୍ରିନ୍ସପାଲଙ୍କୁ ପିଲେ କୌଣସି ଏକ ଷ୍ଟ୍ରାଇକ୍‌ବେଳେ ତାଙ୍କ ବଙ୍ଗଳାରେ (ମୁଁ ମଧ ପରେ ଯେଉଁଠି ଥିଲି) ଏକାଧିକ ଦିବସ ବନ୍ଦୀ କରି ରଖିଥିଲେ । ସେ ତାଙ୍କ ଘରୁ, ସେ କେତେଦିନ ଆଦୌ ବାହାରିପାରିନଥିଲେ । ଏପରି ଯେଉଁଠି ଥିଲା ବାତାବରଣ, ସେଠି ଜଣେ ରାଜନୈତିକ ନେତାଙ୍କୁ ଟିକିଏ ଜୋର୍‌ରେ କଥା କହିବା ଯୋଗୁଁ ଜୋରିମାନା ହେବ, ତାହା ପିଲେ କଳ୍ପନା କରିବେ କିପରି ?

ମୋ ଦଣ୍ଡର ପ୍ରତିବାଦରେ ପିଲେ କିନ୍ତୁ ପ୍ରାୟୋପବେଶନର ଘୋଷଣା ଦେଇଦେଲେ । ମୁଁ ଏକ କଲେଜ-ବ୍ୟାପୀ ସମୂହ ଷ୍ଟ୍ରାଇକ୍‌ର ଆଶଙ୍କା ବି କରୁଥାଏ । ତଥାପି ମୁଁ ଅଟଳ ରହିଲି । ଦିନେ ଗଲା । ଦୁଇଦିନ ଗଲା । ମୁଁ ଉପବାସ କରୁଥିବା ପିଲାଙ୍କୁ ଦେଖିବାକୁ ଗଲିନି କି କମ୍ପ୍ରମାଇଜ୍ (ରାଜିନାମା) ପ୍ରସ୍ତାବକୁ ମଧ କର୍ଣ୍ଣପାତ କଲିନି । ସେତେବେଳଯାଏଁ ମୋର ପିଲାପିଲିଙ୍କି ମୁଁ ସମ୍ବଲପୁର ନେଇନଥାଏ । ଏକୁଟିଆ ଥାଏ । ଦ୍ୱିତୀୟ ଦିନର ମଧରାତ୍ରିରେ ମୋର ଶୟନ-ଗୃହର ବାହାରେ, ବାତାୟନ ନିକଟରେ ଠିଆହୋଇ, ପରେ କଂଗ୍ରେସ-ଗଣତନ୍ତ୍ର ମିଳିତ ମନ୍ତ୍ରିମଣ୍ଡଳର କମ୍ୟୁନିଟି-ଡେଭଲେପ୍‌ମେଣ୍ଟ ବିଭାଗର ମନ୍ତ୍ରୀ ଶ୍ରୀଯୁକ୍ତ ଲକ୍ଷ୍ମୀପ୍ରସାଦ ମଶ୍ର

ଉଚ୍ଚସ୍ୱରରେ 'ସର୍' 'ସର୍' ଡାକିବାରୁ ମୋର ହଠାତ୍ ନିଦ୍ରାଭଙ୍ଗ ହେଲା । ଲକ୍ଷ୍ମୀପ୍ରସାଦ ସେତେବେଳେ ଫୋର୍ଥ ଇୟର୍‌ର ଛାତ୍ର ଅଦମନୀୟ ଛାତ୍ରନେତା ଓ ବାଗ୍ମୀ । ମୋର ନିଦ୍ରାଭଙ୍ଗ ହେବାମାତ୍ରେ ମୁଁ ତ ଧରିନେଲି ଯେ ଉପବାସୀ ଛାତ୍ରଙ୍କ ଭିତରୁ କେହି କ'ଣ ଗୁରୁତର କାଣ୍ଡ କରିଛି ।

କିନ୍ତୁ ଲକ୍ଷ୍ମୀପ୍ରସାଦ ସେତେବେଳେ ଶାନ୍ତି ପ୍ରସାଦ(ପ୍ରସ୍ତାବ) ନେଇହିଁ ଆସିଥିଲେ । ସେ କହିଲେ ଯେ ଉପବାସୀ ପିଲେ ବିନାସର୍ତ୍ତରେ କ୍ଷମା ମାଗୁଛନ୍ତି । ମୁଁ କହିଲି, ତା'ହେଲେ ମୁଁ ଜୋରିମାନା ପ୍ରତ୍ୟାହାର କରିନେବି କାଲି । ସେମାନଙ୍କୁ କହ, ଖାଇବାକୁ ।

ସେହି ଉପବାସୀ ଛାତ୍ରମାନଙ୍କ ଭିତରେ ମୋର ଆଜିର ଓକିଲବନ୍ଧୁ ଜଣେ ଥିଲେ । ମୋର ବିଶ୍ୱାସ, ସେ ଆଜି ମୋ ସହିତ ଏକମତ ହେବେ ଯେ, ମୋର ଜୋରିମାନା କରିବା ଓ ଜୋରିମାନା ପ୍ରତ୍ୟାହାର କରିବା ଉଭୟ ଯଥାର୍ଥ ଥିଲା । ପୁଣି ତାଙ୍କର, ଦେଶର ଜଣେ ମୁଖ୍ୟମନ୍ତ୍ରୀଙ୍କି ଜବରଦସ୍ତି ନିଜର ମତକୁ ଆଣିବାପାଇଁ ଅଭଦ୍ର ବ୍ୟବହାର କରିବା ଓ କଲେଜ ପ୍ରିନ୍ସପାଲର ଦଣ୍ଡାଦେଶ ବିରୋଧରେ ପ୍ରତିବାଦ କରିବା ଉଦ୍ଦେଶ୍ୟରେ ଉପବାସ କରିବା ମଧ୍ୟ ଉଭୟ ଅଯଥାର୍ଥ ଥିଲା ।

## ୨ । ମୁଖ୍ୟର ଗୁରୁତ୍ୱପୂର୍ଣ୍ଣ ଲଘୁ କାମସବୁ –

ଡିସିପ୍ଲିନ୍ ପରି, କଲେଜରେ ଭଦ୍ରତାର ଅଧ୍ୟୟନର, ଶିଷ୍ଟାଚାରର ବାତାବରଣ ଯେପରି ଘେରିରହେ ସର୍ବଦା, ଏହାହିଁ ହେଲା ମୋର ଲକ୍ଷ୍ୟ । ଶତ ଶତ ଛାତ୍ରଙ୍କ ଭିତରେ କୌଣସି ଜଣେ ହେଲେ ପିଲା ପ୍ରତି ମୋର ବ୍ୟକ୍ତିଗତ ବୈରଭାବ ନଥିଲା । ସାମୂହିକଭାବରେ ମୁଁ କଲେଜକୁ ଭଲ ପାଉଥିଲି । ତା'ର ସମ୍ମାନକୁ କ୍ଷୁଣ୍ଣ କଲାପରି ଯାହା ଅଭାବ ମୋ ଆଖିରେ ପଡୁଥିଲା, ତା'ର ନିରପେକ୍ଷ ପ୍ରତିବିଧାନ ମୁଁ କରୁଥିଲି । ତାହାହିଁ ଥିଲା ମୋର ଡିସିପ୍ଲିନ୍‌ର ଆଦର୍ଶ । ମୁଁ ସମ୍ବଲପୁର କଲେଜର ପିଲାଙ୍କୁ, ତାଙ୍କ ଲେକ୍‌ଚରରମାନଙ୍କୁ ନମସ୍କାର କରିବାକୁ (ଯାହା କି ସେମାନେ କରୁନଥିଲେ), ଲୁଗା-ପଟା କିପରି ପିନ୍ଧିବାକୁ ହେବ, କିପରି ଖାଇବ, ଘରେ କିପରି ପଢ଼ିବ, କ'ଣ ବା ପଢ଼ିବ–ଏସବୁ ଛୋଟ ଛୋଟ ବିଷୟରେ ମଧ୍ୟ ଏକାଧିକବାର ଉପଦେଶ ଦେଇଛି(ପରିଶିଷ୍ଟ ଦେଖ) । ଏସବୁପାଇଁ ଏବେ ବି ମୁଁ ଆଦୌ ଲଜ୍ଜିତ ନୁହେଁ । କାରଣ, ଯଦିବା କେହି ପ୍ରତିଭାବାନ୍ ପ୍ରିନ୍ସପାଲ୍ ଭାବିପାରନ୍ତି ଯେ ମହାମହିମ ପ୍ରିନ୍ସପାଲର ଏ ସବୁ ଯୋଗ୍ୟ କାମ ନୁହେଁ, ମୋର କିନ୍ତୁ ମତ ଏହି ଯେ, ଏହା କେବଳ ପ୍ରିନ୍ସପାଲ୍ ନୁହେଁ, ଡି.ପି.ଆଇ.ର, ପ୍ରତି ଇନ୍ସପେକ୍ଟରର ଓ ପ୍ରତି ହେଡ୍‌ମାଷ୍ଟରର କାମ । ଏହା ଦେଶରେ ପ୍ରତି ପିତାର ମଧ୍ୟ କାମ । ଦେଶର ଆଜି ସର୍ବପ୍ରଥମ ଓ ସର୍ବପ୍ରଧାନ କର୍ତ୍ତବ୍ୟ–ପିଲାଙ୍କୁ ଆମର ଆଗାମୀ ବଂଶଧରଭାବରେ, ଯତ୍ନରେ ସଭ୍ୟ, ଭଦ୍ର, କର୍ମଠ କରି ଗଢ଼ିବା । ସେଥିପାଇଁ ଅନେକ ଛୋଟ ଛୋଟ କଥାରେ ତାଙ୍କୁ ଆମକୁ ବାଟ ଦେଖାଇବାକୁ ପଡ଼ିବ । ବଡ଼ମାନଙ୍କର ସେହିହିଁ ମୁଖ୍ୟ କାମ ।

## ୩। ନିରପେକ୍ଷ ପରୀକ୍ଷା –

ଏଡିନବରାରେ ଭାରତୀୟ ଛାତ୍ରମାନଙ୍କର ଏକ ପ୍ରାଚୀନ ପ୍ରତିଷ୍ଠିତ ଅନୁଷ୍ଠାନ ଅଛି । ମୁଁ ଯେବେ ସେଠିକି ଯାଇଥିଲି, ମୋ ହାତରେ ସେହି ଅନୁଷ୍ଠାନର ସେକାଳର ସେକ୍ରେଟାରୀ,

ସେହି ଅନୁଷ୍ଠାନ ସମ୍ପର୍କରେ ଏକ ଛାପା ପରିଚୟ-ପୁସ୍ତିକା ଗୁଞ୍ଜିଦେଇଥିଲେ, ଯେପରିକି ମୁଁ ସେହି ସଂସ୍ଥାର ଏକ ମେମ୍ବର ହୁଏ । ପୁସ୍ତକଟି ପଢ଼ିଲି । ତା'ର ଏକ ଛୋଟ ଉପକ୍ରମଣିକା ଲେଖିଥାନ୍ତି ଏଡିନବରା ବିଶ୍ୱବିଦ୍ୟାଳୟର ତତ୍କାଳୀନ ଭାଇସ୍-ଚାନ୍ସେଲର୍ ।

ଭାଇସ୍‌ଚାନ୍‌ସେଲର ଭାରତୀୟ ଛାତ୍ରମାନଙ୍କ ବିଷୟରେ ଅନ୍ୟାନ୍ୟ କଥା କହିବା ଭିତରେ, ଏହି ବିସ୍ମୟ ପ୍ରକାଶ କରିଥିଲେ। ଯେ ଭାରତୀୟ ଛାତ୍ରମାନେ ପରୀକ୍ଷା ସରିଲେ ତାହା ଶେଷ କଥା ବୋଲି ମନେନକରି, ଦୟା ରଖିବାପାଇଁ ପରୀକ୍ଷକଙ୍କୁ ଯାଇ ଦେଖାକରନ୍ତି ! ଏ କିପରି କଥା ? ରହସ୍ୟମୟ ଭାରତବର୍ଷର ଜାତୀୟ ଚରିତ୍ରରେ ଏ କି ରହସ୍ୟ !

ଏଡିନ୍‌ବରା ବିଶ୍ୱବିଦ୍ୟାଳୟର ଭାଇସ୍‌ଚାନ୍‌ସେଲର କିପରି ଜାଣିବେ ଯେ ଏହି 'ଧରାଧରି', ସମଗ୍ର ଭାରତୀୟ ଚରିତ୍ରର ଏକ ବ୍ୟାପକ ଦୁରାରୋଗ୍ୟ ରୋଗ । ଇଣ୍ଡିଆନ ଷ୍ଟୁଡେଣ୍ଟ ବିଲାତରେ ଧୋତି ଛାଡ଼ି ପ୍ୟାଣ୍ଟ୍-କୋଟ୍-ଟାଇ ପିନ୍ଧି ବୁଲିଲେ ମଧ, ଏଇ ଭାରତୀୟ ରୋଗଟାକୁ ସାତ ସମୁଦ୍ର ଡିଆଇଁ ଯତ୍ନର ସହିତ ଧାଥିରେ ନେଇଯାଇଥାଏ ନିର୍ଲଜ୍ଜଭାବରେ । ମେହର କଲେଜର ପ୍ରିନ୍ସପାଲଭାବରେହିଁ ଏଇ ରୋଗ ବ୍ୟାପକ ଭାବରେ ଛାତ୍ରମାନଙ୍କୁ ଆକ୍ରମିତ କରିଥିବାର ପ୍ରଥମକରି ମୁଁ ଜାଣିଲି । ମୋର ମେହର କଲେଜର ସେକାଳର ସହକର୍ମୀମାନେହିଁ ଆଜି ସାକ୍ଷ୍ୟ ଦେବେ ଯେ, ସେ କଲେଜରେ ଜଏନ୍ କରିବାର ପ୍ରଥମ ଦୁଇବର୍ଷ ଭିତରେ ନାନା ନୋଟିସ୍ ଦେଇ ଏହି ଜଘନ୍ୟ ରୋଗକୁ ସେଠାରେ କିପରି ସମୂଳେ ଉତ୍ପାଟିତ କରାଯାଇପାରିଥିଲା ।

ମୋର ଅନୁରୋଧ, ଆଜି ଦେଶରେ ସର୍ବତ୍ର, ସବୁ ବିଦ୍ୟାନୁଷ୍ଠାନରେ ଏଇ ରୋଗର ମୂଳ ଉତ୍ପାଟନପାଇଁ ବ୍ୟାପକ ଓ କଠୋର ପ୍ରଯତ୍ନ ଆରମ୍ଭ ହେବା ଉଚିତ । ଧରାଧରି କରି ପାସ୍ ବା ଫାଷ୍ଟ୍‌କ୍ଲାସ୍ ବା ଗୋଲ୍‌ଡମେଡ଼ାଲ୍‌ର ଆୟୋଜନ, ମାତ୍ର ଜଣେ ବ୍ୟକ୍ତିବିଶେଷକୁ ଉପକୃତ କରିବା ସାଥେ ସାଥେ ଆମର ସମଗ୍ର ଜାତିର ଚରିତ୍ର କିପରି ପୋକଡ଼ା କରୁଛି, ତାହାହିଁ ଭାବିବାର ବିଷୟ ନୁହେଁ କି ? ଯେଉଁ ଶିକ୍ଷକ ଓ ପରୀକ୍ଷକଙ୍କୁ ଏପରି କୁତ୍ସିତ ଅପରାଧରେ ସନ୍ଦେହ ମାତ୍ର କରାଯିବ, ତାଙ୍କ ପ୍ରତି କଠୋରତମ ଦଣ୍ଡବିଧାନ ହେବା ଉଚିତ ନୁହେଁ କି ? ଏ ଅପକର୍ମ ଦେଶରେ ଏପରି ପରିବ୍ୟାପ୍ତ ହେଲାଣି ଯେ ଏହା ବର୍ତ୍ତମାନ ପ୍ରକାଶ୍ୟରେ କ୍ରିୟମାଣ ଓ ଆଲୋଚିତ ହେଉଛି । ନିକଟରେ ଏକ ବଙ୍ଗଳା ପତ୍ରରେ ଏକ କାର୍ଟୁନ ବାହାରିଥିଲା, ଯେଉଁଥିରେ ଜଣେ ପିତା, ସାର୍ଟିଫିକେଟ୍-ଯୋଗାଡ଼କାରୀ ପୁତ୍ରକୁ ଭର୍ତ୍ସନା କରି କହୁଛି–

''ବଜାରରେ ଫାଷ୍ଟକ୍ଲାସ୍ ଏମ୍.ଏ.ଗୋଲ୍ଡମେଡ଼ାଲ ଓ ପିଏଚ.ଡି. ଶସ୍ତାରେ ବିକ୍ରି ହେଉଥିଲାବେଳେ, ସିନିୟର କେମ୍ବ୍ରିଜ୍ ସାର୍ଟିଫିକେଟ୍‌ପାଇଁ ଏତେ ପଇସା ଅପବ୍ୟୟ କଲୁ କାହିଁକି ?''

## ୪ । ନିରକ୍ଷରର ବିଜ୍ଞବାଣୀ –

ସମ୍ବଲପୁର ଏକ ପଥୁରିଆ ଜାଗା । ଖରାଦିନେ ଭୀଷଣ ଗ୍ରୀଷ୍ମ ହୁଏ ଓ ବଡ଼ ଅଭାବ ଘଟେ ପାଣିର । କଲେଜ କମ୍ପାଉଣ୍ଡ୍‌ରେ ଦୁଇଟା ପୁରୁଣା କୂଅ ଥିଲା । ଖରାଦିନେ ସେ ଦୁଇଟାଯାକ ଶୁଖିଯାଏ । ସପ୍ଲିମେଣ୍ଟାରି ପରୀକ୍ଷାପାଇଁ ଆସି ହଷ୍ଟେଲ୍‌ରେ ରହିବା ପିଲେ ଭାରି କଷ୍ଟ ପାନ୍ତି ।

ସ୍ଥିର କଲି, କଲେଜ ଭିତରେ କୌଣସି ନିମ୍ନ ଜମିରେ ଆଉ ଏକ କୂଅ ଖୋଳିବାକୁ ହେବ । ମି. ଶିବରମଣ ତ ଥାନ୍ତି କମିଶନର । ଶ୍ରୀଯୁକ୍ତ ଆର.ପି.ପାଢ଼ୀ ଥାନ୍ତି ଡେପୁଟି କମିଶନର । କଲେଜ ସମ୍ପର୍କରେ ଏମାନଙ୍କୁ କ'ଣ ଅନୁରୋଧ କରିଛି ଯାହା ଏମାନେ ମନା କରି ଦେଇଛନ୍ତି, ମୋର ମନେନାହିଁ । କୂଅ କଥା କହିବାରୁ, ଗୋଟିଏ ନୂଆ କୂଅପାଇଁ ମଧ୍ୟ ଏମାନେ ମାଇନର ଇରିଗେସନ୍ ପ୍ରୋଜେକ୍ଟରୁ ୩ ହଜାର ଟଙ୍କା ଗ୍ରାଣ୍ଟ୍ ଦେଇଥିଲେ ।

ନିକଟବର୍ତ୍ତୀ ଏକ ଗାଁର ଏକ ଛୋଟ ଗୌନ୍ତିଆର ଏ ଦିଗରେ ଅଭିଜ୍ଞତା ଥିବାର ଶୁଣି ତାଙ୍କୁଇ କଣ୍ଟ୍ରାକ୍ଟ ଦେଲି । ଲୋକଟି ପ୍ରାୟ ନିରକ୍ଷର । କିନ୍ତୁ ଏଇ ଘଟଣା ଭିତରେ ମୁଁ ନିରକ୍ଷର ଗୌନ୍ତିଆଠାରୁ ଏକ ମହାବାଣୀ ଲାଭ କଲି ।

ଗୌନ୍ତିଆ ଯେତେବେଳେ କାମ ଆରମ୍ଭ କରିବାକୁ ଆସିଲେ, ମୁଁ ତାଙ୍କୁ କହିଲି, ସମଗ୍ର କମ୍ପାଉଣ୍ଡରେ ବୁଲି ଆଗ ଠିକ୍ କରିବାକୁ, କେଉଁଠି ପ୍ରଚୁର ପାଣି ଖରାଦିନେ ବି ମିଳିବ । ସେ ଦିନେ ଦୁଇଦିନ ପରେ ଆସି ମୋ ବଂଗଲୋ ଆଗରେ ଏକ ଜାଗା ଠିକ୍ କରିଛି ବୋଲି କହିଲେ ।

ମୁଁ ତାଙ୍କୁ ତାହା ସେ କିପରି ଜାଣିଲେ ବୋଲି ପଚାରିବାରୁ, ସେ ପ୍ରଥମେ କହିବାକୁ ନାରାଜ ଥିବାର ଜଣାଗଲା; କିନ୍ତୁ ବେଶି ଅନୁରୋଧ କରିବାରୁ ସେ ଏଇୟାହିଁ କହିଲେ –

''ଟିକିଏ ମାଟି ଖୋଳି, ମେଞ୍ଚେ ତୁଳା ଥୋଇଦେବ ଓ ତାକୁ ଏକ ବାଉଁଶିଆ ବା ଟୋକେଇ ଦେଇ ଘୋଡ଼ାଇ ରଖିବ । ରାତି ପାହି ସକାଳ ହେଲେ, ଖୋଲି ଦେଖିବ । ଯଦି, ତୁଳାଟା ପାଣିରେ ଓଦା ହୋଇଯାଇଛି, ତେବେ ଜାଣିବ ଯେ, ସେଠି ପାଣି ପଡ଼ିବ ।''

ସତକୁ ସତ ସେଠି ଅଳ୍ପ ତଳେ ପାଣି ପଡ଼ିଲା । ନୂଆ କୂଅ ହେଲା । ବରପାଲିର ଆମେରିକାନ୍ ଫ୍ରେଣ୍ଡ୍‌ସ ଗୋଟିଏ ଶସ୍ତା ପମ୍ପ ଆବିଷ୍କାର କରିଥିବାର ଜାଣି ତାଙ୍କୁ ଚିଠି ଲେଖିଥିବାରୁ ଗୋଟାଏ ପମ୍ପ୍ ଆଣି ବସାଇଲି । ପ୍ରଚୁର ଓ ଭଲ ପାଣି ମଧ୍ୟ ପଡ଼ିଲା । ମୁଁ ତ ଖରାଦିନେ କଟକ ଚାଲିଆସେ । ସେ କୂଅ ହେଲା ପରେ, ଖରାଛୁଟି ପରେ ଫେରି ଶୁଣେ ଯେ, ସେ କୂଅଟିହିଁ ଖରାଛୁଟିଯାକ କେବଳ କଲେଜ ନୁହେଁ, ଆଖପାଖ ଶତ ଶତ ଲୋକଙ୍କର ଏକମାତ୍ର ଆଶ୍ରୟ ହୋଇଛି । ଆଶାକରେ ବର୍ତ୍ତମାନ ମଧ୍ୟ ତା'ର ସେହି ଗୌରବ ଥିବ ! ଏହି କୂପର ଶୁଭ ଦେଇଥିଲେ ହେମଲତା ।

ଆମେ କୂପପାଇଁ ଯେଉଁ ତିନିହଜାର ଟଙ୍କା ଗ୍ରାଣ୍ଟ୍ ପାଇଥିଲୁ, ସେଥିରୁ ଟଙ୍କା କିଛି ବଳିଲା । ଗୌନ୍ତିଆ-କଣ୍ଟ୍ରାକ୍ଟର ନିରକ୍ଷର ହେଲେହେଁ, ଚତୁର । ଗ୍ରାଣ୍ଟ୍ ପ୍ରକୃତରେ କେତେ ତାହା ସେ ଅନ୍ୟ ସୂତ୍ରରୁ ଜାଣି, ସମୁଦାୟ ଟଙ୍କାଟି ଦାବି କଲେ । ମୁଁ କିନ୍ତୁ ପି-ଡବ୍ଲ୍ୟୁ-ଡି ରେଟ୍ ଅନୁସାରେ ପି-ଡବଲ୍ୟୁ-ଡି ଲୋକଙ୍କୁ ଡକାଇ ମାପଚୁପ କରାଇ ତାହାର ଯାହା ପ୍ରକୃତ ପାଉଣା ହେବାର କଥା, ତା'ଠୁ ମଧ୍ୟ ଆଉ କିଛି ଅଧିକ ତାଙ୍କୁ ଦିଆଇ ବିଦାୟ କରାଇଥିଲି । ସାମାନ୍ୟ ଯାହା ବଳକା ଟଙ୍କା, ଗରିବ ପାଣ୍ଠିକି ଯାଇଥିଲା ।

ଏଇ କୂଅ ଚାର୍ଜରେ ଜଣେ ଲେକ୍‌ଚରରଙ୍କୁ ରଖାଇଥିଲି, ହିସାବକିତାବ ରଖିବାକୁ, କେତେ କୁଲି କେତେଦିନ କାମ କଲେ ତାର ହିସାବ ରଖିବାକୁ ଓ ତତ୍‌ସମ୍ପର୍କୀୟ ସବୁକାମ କରାଇବା ପାଇଁ ।

ଗୌନ୍ତିଆ କଣ୍ଟ୍ରାକ୍ଟରଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଏଇ ଲେକ୍‌ଚରରଙ୍କ ସାଥିରେହିଁ ଥିଲା । ମୋ ସହିତ ନୁହେଁ । ଗୌନ୍ତିଆ ମନେ ମନେ ଭାବିଲେ ଯେ ସେଇ ଲେକ୍‌ଚରର ତାଙ୍କୁ ଠକୁଛନ୍ତି ଓ ହିସାବ ଏପଟ ସେପଟ କରି ତାଙ୍କ ଉଚିତ ପାଉଣା ତାଙ୍କୁ ଦେଉନାହାନ୍ତି ।

ଗୌନ୍ତିଆ ଦିନେ ତାଙ୍କ ପାଉଣା ନେଇ ମୋ ଅଫିସକୁ ଆସିଲେ ଓ କାହା ନାଁ ନଧରି, ଜଗତରେ ଧର୍ମ-ଅଧର୍ମର ପ୍ରତିଦ୍ୱନ୍ଦ୍ୱିତା ଅହରହ କିପରି ଚାଲିଛି, ସେ ସେଇଆଡ଼ୁ କଥା ଆରମ୍ଭ କଲେ । ଘଟଣାକୁ ଏପରି 'ବ୍ର'ଡ୍ ପ୍ରିନ୍ସପାଲ'(ଉଦାରନୀତି) ଉପରେ ଥୋଇ ଏଇ ନିରକ୍ଷର ଲୋକ କଥା କହୁଥିବାର ଦେଖି ମତେ ଭାରି ଭଲଲାଗିଲା । କଥା ଭିତରେ ଗୌନ୍ତିଆ କହିଲେ—

''ହଜୁର୍, ଏଇ ଯେ ଧର୍ମ-ଦେବତା ପ୍ରତିଦିନ ଆକାଶରେ ବୁଲି ବୁଲି ଯାଉଛି, ସେ କାହିଁକି ଯାଉଛି, ଆସୁଛି ? ସେ କଣ ଆମ ଅଗଣାରେ ମେଲାହୋଇଥିବା ଧାନ ଶୁଖେଇବାକୁ ଖାଲି ଆସୁଛି, ଯାଉଛି ?'' ସେ ଆମ ପ୍ରତ୍ୟେକର ପାପପୁଣ୍ୟ ଦେଖି, ଟିପିକରି ନେଇଯାଉଛି ସିନା ।''

ଜୀବନରେ କେବଳ ସତ୍ୟର ସନ୍ଧାନ ପାଇବାପାଇଁହିଁ ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ, ରାମକୃଷ୍ଣ, ବିବେକାନନ୍ଦ, ଗାନ୍ଧି, ଅରବିନ୍ଦ, ରମଣହର୍ଷି—ଏହିସବୁ ମହାପୁରୁଷଙ୍କ ବାଣୀକୁ, ପିଲାଏ ମିଷ୍ଟାନ୍ନ ପ୍ରତି ଯେଉଁ ଆଗ୍ରହ ଦେଖନ୍ତି, ସେହି ଆଗ୍ରହର ସହିତ ମୁଁ ପଢ଼ିଆସିଛି । କିନ୍ତୁ ଏଇ ବିଶ୍ୱ-ମାନବମାନଙ୍କ ମହାବାଣୀ ସହିତ ଏକ ପାରାଗ୍ରାଫ୍‌ରେ ଚିରଖୋଦିତ ହୋଇ ରହିଛି ମୋ ଚିତ୍ତପଟରେ, ସମ୍ବଲପୁରର ସେହି ମୂର୍ଖ ଗୌନ୍ତିଆର ବାଣୀ । ସମ୍ବଲପୁରରେ ମୋର ବାରବର୍ଷ ଅଧିବାସ ଭିତରେ (ଏଡୁକେଶନାଲ ଆଡ଼ଭାଇଜରଭାବରେ ଚାରିବର୍ଷ ଓ ପ୍ରିନ୍ସପାଲଭାବରେ ୮ ବର୍ଷ) ଆଉ କୌଣସି ଲୋକ ମୁଖରୁ ଏପରି ଜ୍ଞାନଗର୍ଭ ବାଣୀ ମୁଁ ଶୁଣିନାହିଁ ।

ସେହି ବିସ୍ମୃତ-ନାମ ସମ୍ବଲପୁରୀ ଗୌନ୍ତିଆ ତେଣୁ ମୋର ଏକ ଗୁରୁ । ସୂର୍ଯ୍ୟ କେବଳ ଆମ ଅଗଣାର ଧାନ ଶୁଖାନ୍ତିନି । ବିଶ୍ୱଦେବତାର ସେହି ବିରାଟ ଚକ୍ଷୁ, ଆମ ଚିତ୍ତର ପ୍ରତିଟି ପଳାତକ ଚିନ୍ତା ଓ ଆମ ଅବୟବମାନଙ୍କର ପ୍ରତିଟି କର୍ମକୁ ସେ ନଜର ଦେଇଯାଆନ୍ତି । ତେଣୁ ସେ ସିନା 'ଧର୍ମଦେବତା', ଭାରତବର୍ଷ ଜନତାର କଳ୍ପନାରେ । ଭାରତବର୍ଷ ତାର ନିରକ୍ଷର ଜନସାଧାରଣଙ୍କୁ ବିନା ପୁସ୍ତକ-ଜ୍ଞାନରେ କିପରି ସାଧୁ, ନୀତିବାନ୍, ଧର୍ମଭୀରୁ ଓ ବିଜ୍ଞ କରି ରଖିଥିଲା, ସମ୍ବଲପୁରର ସେହି ଗୌନ୍ତିଆ-କଣ୍ଟ୍ରାକ୍ଟର ଏକ ପ୍ରକୃଷ୍ଟ ଉଦାହରଣ ।

## ୫ । ଆତ୍ମ-ସଂଶୋଧନ –

ମୋର ଛୋଟ ପରିବାରର କ୍ଷୁଦ୍ର ପରିସର ଭିତରେ ଅନେକ ସମୟରେ ପୁସ୍ତକ ହୋଇ ଉଠିଛି ଏକ ଅତ୍ୟନ୍ତ ଅନାକାଂକ୍ଷିତ ଓ ଜଞ୍ଜାଳଦାୟୀ ଅତିଥି । କିପରି ଏହାର ସମାଧାନ ଅନ୍ୟମାନେ କରନ୍ତି, ମୁଁ ଜାଣେନା । କିନ୍ତୁ କେବଳ ଭଦ୍ରଭାବରେ ବଞ୍ଚିବାପାଇଁ, ନିୟମିତ କାଳ ବ୍ୟବଧାନରେ, ଦିନେ ଆଗ୍ରହର-ସହିତ ଓ ଧନ-ବ୍ୟୟକରି ଅଣାଯାଇଥିବା ପୁସ୍ତକ-ଅତିଥିମାନଙ୍କୁ, ମୁଁ ଆଉ ଦିନେ ଘରୁ ବଳେ ନ ତଡ଼ିଲେ ମତେ ଭଲଲାଗେନାହିଁ । ଏପରି ବହୁବାର କରି ମଧ ଜମା ହେବା ବହି ଓ ମାଗାଜିନ୍ ମୋର କ୍ଷୁଦ୍ର ଗୃହରେ ବରାବର ଏକ ଜଞ୍ଜାଳ ହୋଇ ଏବେ ବି ରହିଛନ୍ତି ।

ଦିନେ କଲେଜରେ ସେକାଳର ଲାଇବ୍ରେରିଆନ୍ (ଓଡ଼ିଶାର ଜଣେ ଜଣାଶୁଣା ଲେଖକ) ମୋ ବଙ୍ଗଳାରେ ମୋ ପଢ଼ାଘରକୁ ଆସିଲେ ମୋ ସହିତ କଥାବାର୍ତ୍ତା କରିବାକୁ । କଥାବାର୍ତ୍ତା ଭିତରେ ସେ ଦେଖିଲେ ଯେ ସେ ଘରଯାକ ଖାଲି ବହି–ଖଟତଳେ , ମେଜତଳେ, ଏଠି, ସେଠି, ସର୍ବତ୍ର ବହିର ଗଦା । ସେ କହିଲେ, 'ସାର୍, ଏତେ ବହି କିପରି ଜମା ହୋଇଛି ? କଣ କରିବେ ଯାକୁ ସବୁ ?' ମୁଁ କହିଲି, ''କେତେକ ମୋର କିଣା । କେତେକ ବୋର୍ଡ୍ ଅବ୍ ଷ୍ଟଡ଼ିଜ୍‌ର ମେମ୍ବରଭାବରେ ଆସିଛି । କେତେକ ପ୍ରେଜେଣ୍ଟ୍ । ଏଇପରିଭାବରେ ଆସ୍ତେ ଆସ୍ତେ ଜମା ହୋଇ ହୋଇ ଏପରି ଅବସ୍ଥାକୁ ଆଇଲାଣି ।''

କହିରଖେଁ ଯେ ସେହି ସମ୍ବଲପୁରରେ ଥିଲାବେଳେ ହିଁ, କଲେଜର ଦୁଇ ହଷ୍ଟେଲ୍‌କୁ, କଟକର ରାଣୀହାଟ ସ୍କୁଲ୍‌କୁ, ଆମ ଗାଁ ସ୍କୁଲ୍‌କୁ, ଡକ୍ଟର ଆଇଜାକ୍ ସାନ୍ତ୍ରାଙ୍କ ହାତୀବାଡ଼ି କୁଷ୍ଠାଶ୍ରମକୁ ଶତ ଶତ ପୁସ୍ତକ ବାଣ୍ଟିଦେଇଥିଲି । ଏଇ ସମୟକୁ ଜମା ହୋଇଥିବା ବହିଗୁଡ଼ିକ ସଦ୍ୟ ଥିଲା । ସେପର୍ଯ୍ୟନ୍ତ ସେମାନଙ୍କର ସମାଧାନ ହୋଇନଥିଲା । ସେଥିରୁ କେତେଗୁଡ଼ିଏ ବହି ମୁଁ ପରେ ପଢ଼ିବି ବୋଲି ଭାବିଥାଏ । କିନ୍ତୁ ବଛାବଛି ହୋଇନଥାଏ । ସେଇମିତି ଗଦାହୋଇ ଥୁଆ ହୋଇଥାଏ ।

ଲାଇବ୍ରେରିଆନ୍ ଗୋଟିଏ ଦୁଇଟି ଗଦାରୁ ଖଣ୍ଡେ ଖଣ୍ଡେ ଇଂରାଜୀ ବହି ଦେଖିଲେ ଓ କହିଲେ, ''ସାର୍, ଏସବୁ ତ ଆମ ଲାଇବ୍ରେରିର ଯୋଗ୍ୟ । ଆମର ଯେଉଁ ସବୁ ବହି ଅଛି, ତାକୁ ଆମ ଫାଷ୍ଟ-ସେକେଣ୍ଡ ଇୟର ପିଲେ ବୁଝିବା ମୁସ୍କିଲ୍–ଆଜିକାଲି ପିଲାଙ୍କର ଯାହା ଇଂରାଜୀ ଜ୍ଞାନ ! ମୁଁ ଭାବୁଛି, ଆମର ଠିକ୍ ଫାଷ୍ଟ-ସେକେଣ୍ଡ-ଇୟର ପିଲା ବୁଝିଲା ଭଳି ବହି ନାହିଁ । ଏଥିରୁ କେତେ ଖଣ୍ଡ ଆମର ଏଇ ଅଭାବ ପୂରଣ କରିପାରେ ।''

ମୁଁ କହିଲି–''ତେବେ ନେଇଯାଅ ଯେତେଖଣ୍ଡ ସେ ଦିଗରେ ଭଲହେବ ବୋଲି ଭାବୁଛ ।''

ଲାଇବ୍ରେରିଆନ୍ କେତେବେଳେ ବଙ୍ଗଳାକୁ ଆସି ବହି ବଛାବଛି କରି ନେଇଗଲେ । କେତେଖଣ୍ଡ ନେଲେ, କି ତାର ମୂଲ୍ୟ, ମୁଁ କିଛି ଜାଣିନଥିଲି ଓ ଘଟଣାଟିକୁ ସମ୍ପୂର୍ଣ୍ଣ ଭୁଲିଗଲି ।

ପ୍ରାୟ ଦୁଇମାସ ପରେ ଲାଇବ୍ରେରିଆନ୍ ଦିନେ ଆସି ମତେ ମୋ ଅଫିସରେ କହିଲେ, '''ସାର୍, ଗୋଟିଏ ବିଲ୍ ଦିଅନ୍ତୁ ।''

''କି ବିଲ୍ ?''

''ଆପଣଙ୍କର ସେ ବହିଗୁଡ଼ାକପାଇଁ ।''

''ନା ନା, ତମେ ସେଇମିତି ଲାଇବ୍ରେରିରେ ରଖିଦିଅ । ମୁଁ ବିଲ୍ ଦେଇ ପଇସା ନେବି ? ତା' ପରେ ସେଗୁଡ଼ାକର ଦାମ୍ କି ମତେ ଜଣା ? କି ବିଲ୍ ଦେବି ?

ସେ କହିଲେ– ''ଶୁଣନ୍ତୁ । ଏ ହେଲା ସରକାରୀ କଲେଜ । ସରକାର ଟଙ୍କା ଦେଉଛନ୍ତି ବହି କିଣିବାକୁ । ଏଠି ଦାନର ସ୍ଥାନ ନାହିଁ । ପ୍ରାଇଭେଟ୍ ଅନୁଷ୍ଠାନ ହୋଇଥିଲେ, ଆପଣଙ୍କ ଦାନର ମୂଲ୍ୟ ଥାନ୍ତା । ଏଠି କ'ଣ ଟଙ୍କାର ଅଭାବ ଅଛି ଯେ ଆପଣ ଦାନ କରିବେ ? ବହିଗୁଡ଼ିକ ପ୍ରକୃତରେ ଭଲ । ଫାଷ୍ଟ୍‌ଇୟାର, ସେକେଣ୍ଡଇୟାର ପିଲାଙ୍କପାଇଁ ଠିକ୍ ଉପଯୁକ୍ତ ବହି ଆମର ନଥିଲା । ଏଗୁଡ଼ିକ ସେମାନେ ବୁଝିବେ । ତେଣୁହିଁ ମୁଁ ରଖିଲି । ଆପଣ ଜିନିଷ ଦେବେ ଓ ସେଥିପାଇଁ ପଇସା ନେବେ । ଏଇମିତି ତ ହୁଏ । ବହି ଦେବ, ପଇସା ନେବ । ଭାବିବାର କ'ଣ ଅଛି ?''

ବହିସବୁ ଲାଇବ୍ରେରିରେ ସେତେବେଳକୁ ନମ୍ବର ହୋଇସାରିଲାଣି । ଆର୍ଥିକ ବର୍ଷର ଶେଷକାଳ । ପ୍ରତି ହେଡ୍‌ରେ ଖର୍ଚ୍ଚ ତ ପୁଣି ଦେଖାହେବ । ତେଣୁ ଲାଇବ୍ରେରିୟାନ ବା ହେଡ଼ କ୍ଲର୍କ କାଗଜପତ୍ର ଠିକ୍ କରେଇନେଲେ । ବହିର ସଂଖ୍ୟା ମୋର ମନେନାହିଁ । ମାତ୍ର, ମୋର ଯେପରି ମନେପଡୁଛି, ଲାଇବ୍ରେରିୟାନ ନିଜେ ଦାମ କଷାକଷି କରିବା ଫଳରେ ସେ ବାବଦରେ ମୋର ପ୍ରାପ୍ୟ ହୋଇଥିଲା ମାତ୍ର ଦେଢ଼ଶଟି ମୁଦ୍ରା । କିନ୍ତୁ ଦେଢ଼ଶ ଟଙ୍କା ବା ଦେଢ଼ଶ ପଇସା ହେଉ, କୌଣସି ଘଟଣାର ନୈତିକତା ବା ଅନୈତିକତା ଆମେ ସଂଖ୍ୟା ବା ପରିମାଣରୁ ତ ବିଚାର କରିବାନି । ଲଘୁ କୁହାବୋଲାରେ ଏ ଘଟଣା ଘଟିଗଲା ସିନା; କିନ୍ତୁ ମୁଁ ବରାବର ଅନୁଭବ କରୁଥାଏଁ ଯେ ଏ କାମଟା ବେଠିକ ନହେଲେ ମଧ, ଅସୁନ୍ଦର ହେଲା । ପରମହଂସଦେବ କହିଛନ୍ତି, ଅଳନ୍ଧୁ ଲାଗିଥିବା ଘରେ ଯେତେ ସାବଧାନ ହୁଅ, ନିଶ୍ଚେ ଦେହରେ ବା ଲୁଗାପଟାରେ ଅଳନ୍ଧୁ ଲାଗିଯିବ । ଗୃହ ଭିତରେ ବା ବାହାରେ, ଭିନ୍ନ ଭିନ୍ନ କର୍ମକ୍ଷେତ୍ରରେ, ପ୍ରକୃତ ସାଧୁଭାବାପନ୍ନ ଲୋକ ବି ବେଳେ ବେଳେ ଅନ୍ୟମନସ୍କଭାବରେ ଦଶଜଣର କଥାରେ ଭାସି ଗୋଟିଏ ଅସାଧୁ କର୍ମରେ ଲିପ୍ତ ହୋଇଯାଇପାରନ୍ତି । ବୁଦ୍ଧ ତେଣୁ ଶିଷ୍ୟମାନଙ୍କୁ ବରାବର କହିଆସିଛନ୍ତି, ସର୍ବଦା "ଅପ୍ରମତ୍ତ" ରହିବାକୁ । ଅର୍ଥାତ୍, ପ୍ରତ୍ୟେକ ମୁହୂର୍ତ୍ତରେ ଆମେ ଯାହା କରୁଛୁଁ ତାହା ବିଷୟରେ ସମ୍ପୂର୍ଣ୍ଣ ସଜ୍ଞ ରହିବା ଉଚିତ, କାରଣ ପ୍ରତ୍ୟେକ ମୁହୂର୍ତ୍ତର କର୍ମ ବା ଚିନ୍ତାରେ, ଆମେ ଭବିଷ୍ୟତ୍‌ର ସୁଖ-ଦୁଃଖର ବୀଜ ବପନ କରିଚାଲିଛୁ ଏବଂ ପାଠକେ, ତମ ଭିତରରୁ ଯିଏ ଉଚ୍ଚତର ଓ ପୁଣ୍ୟତର ଜୀବନାଭିଳାଷୀ, 'Beware of the Woman' । ମନୁଷ୍ୟ ଭିତରେ କାମିନୀ ଓ କାଞ୍ଚନ-ସଂପୃକ୍ତ ଅଶୁଚି ପ୍ରାୟ ସହାବସ୍ଥାନ କରନ୍ତି । ନାରୀର ଧନ-ପିପାସା ତାର ସନ୍ତାନ-ପିପାସାଠାରୁ ସାମାନ୍ୟ କମ୍ ମାତ୍ର । ମହୀୟସୀ କସ୍ତୁରବାଙ୍କ କଥା ସ୍ମରଣ କରନ୍ତୁ । କସ୍ତୁରବା ଯେ ତାଙ୍କ ସ୍ୱାମୀ ପରି ସମଭାବରେ ବରେଣ୍ୟା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଆଶ୍ରମ ନିୟମ ଲଂଘନକରି ସେ ବାପୁଙ୍କୁ ଲୁଚାଇ ଟଙ୍କା ରଖିଥିବାରୁ, ବାପୁ ଅନଶନ କରିଥିଲେ । ପୁଣି ଏସବୁ କଥା ଯେ କହୁଚି, ତା ଜୀବନ, ନାରୀ-ଜନର କାବ୍ୟ-ମହିମାଯୁକ୍ତ ପ୍ରଣୟରେ ଉଦ୍‌ପ୍ଲାବିତ ହୋଇଛି; କିନ୍ତୁ ପ୍ରକୃତି ଅପୂର୍ଣ୍ଣ ଏବଂ ଠିକ୍ ସେହି କାରଣରୁ ହିଁ ହୁଏତ ମନୋହର । ଶିଶୁର ଅପୂର୍ଣ୍ଣତାହିଁ ବୋଧହୁଏ ତାକୁ ଏତେ ପ୍ରିୟ କରେ । ସର୍ବଗୁଣସମ୍ପନ୍ନ ରବୀନ୍ଦ୍ରନାଥ ଆମର ସେ ଶ୍ରଦ୍ଧା ଆକର୍ଷଣ କରନ୍ତି ନାହିଁ, ଯେପରି କରୁଥିଲା କୁତ୍ସିତଦର୍ଶନ ଓ ବହୁ ଭାବରେ ଅପୂର୍ଣ୍ଣ ଗାନ୍ଧିର ବ୍ୟକ୍ତିତ୍ୱ । ପ୍ରାୟେଣ ସାମଗ୍ର୍ୟବିଧୌ ଗୁଣାନାଂ ପରାଙ୍‌ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ । 'କୌଣସି ବ୍ୟକ୍ତିଠାରେ ଗୁଣମାନଙ୍କର ସମଗ୍ରତା ଦେବାରେ ବିଶ୍ୱସ୍ରଷ୍ଟା ପରାଙ୍ମୁଖ ଥିଲାପରି ବୋଧହୁଏ ।' ଆମର ପ୍ରିୟ ମହାକବି ନିଜର ଗଭୀର ଅଭିଜ୍ଞତାରୁ ସିନା ଏହା ଲେଖି ଯାଇଛନ୍ତି ? ଏ ଲେଖକ ନିକଟରେ ପାପ ବୋଲି ସାଧାରଣରେ ଯାହା ଧାରଣା, ତାହା ନାହିଁ । ସେ କେବଳ ଦୁଇଟି କର୍ମକୁ ପାପ ବୋଲି ମନେକରିଆସିଛି – (୧) ଜୀବ ଓ ମାନବ ପ୍ରତି ଅକାରଣ କଷଣ ଓ (୨) ଯାହା ନିଜର ବ୍ୟକ୍ତିତ୍ୱକୁ ଦୁର୍ବଳ କରେ । ଘଟଣାଚକ୍ରରେ ଜୀବନରେ ଯେଉଁ ୬/୭ ଥର ଲେଖକର ମେରୁଦଣ୍ଡ ବଙ୍କା ହୋଇଛି, ଲେଖକ ସେହି କେତୋଟି ଅଭିଜ୍ଞତା ସମ୍ପର୍କରେ ତେଣୁ ସଚେତନ ରହିଆସିଛି ।

ଘଟଣାର ତିନି ଚାରି ମାସ ପରେ କଲେଜର ଜଣେ ଛାତ୍ରନେତା (ସୋସାଲିଷ୍ଟ) ଯାହାକୁ ଥରେ ଦଣ୍ଡିତ କରିଥିଲି, ସେ ଷ୍ଟୁଡେଣ୍ଟ୍‌ସ କମନ୍‌ରୁମ୍‌ରେ ଏଇ ଘଟଣା ସମ୍ପର୍କରେ କ'ଣ ଆକ୍ଷେପ କରିବାର ମୋ କାନକୁ ଯେତେବେଳେ ଆସିଲା, ଘଟଣା ଉପରେ ମୋର ବିସ୍ମୃତି ହଠାତ୍ ଭାଙ୍ଗିଲା । ସୋସାଲିଷ୍ଟ୍ ପାର୍ଟିର କାଗଜରେ କ'ଣ ବାହାରିଲା ବୋଲି ଶୁଣିଲି । କାଳ ବିଳମ୍ବ ନ କରି ହେଡ୍ କିରାଣିକି ଡାକି ଆଦେଶ ଦେଲି–''ସଙ୍ଗେ ସଙ୍ଗେ ଫେରାଇନିଅ ଟଙ୍କା ।'' ଲାଇବ୍ରେରିୟାନ୍‌କୁ ଡାକି କହିଲି, ''ମୋ'ଠୁ ଯେତେ ବହି ନେଇଥିଲ ସବୁଥିରେ 'ପ୍ରେଜେଣ୍ଟେଡ୍' ବୋଲି ଲେଖିଆଣ, ମୁଁ ଦସ୍ତଖତ୍ କରେ ।''

ଏତିକିରେ ମୋର ବିକ୍ଷୁବ୍ଧ ବିବେକ ଶାନ୍ତ ହେଲାନି । ମୁଁ ମୋର ଆପାତଭୁଲ୍‌ର ଏକ ପ୍ରାୟଶ୍ଚିତ୍ତ କରିବାର ମଧ୍ୟ ସ୍ଥିର କରି, ନିଜକୁ ଜୋରିମାନା କଲି ତିନିଶ ମୁଦ୍ରା (ଦେଢ଼ଶ'ର ଅପରାଧ କ୍ଷାଳନପାଇଁ) । ସେ ସ୍ୱ-ଆଦିଷ୍ଟ-ଓ-ପ୍ରଦତ୍ତ-ଜୋରିମାନାରେ ଉତ୍କୃଷ୍ଟ ସମାଜ-ସେବା ପାଇଁ କଲେଜରେ ଏକ ସ୍ୱର୍ଣ୍ଣପଦକ ସୃଷ୍ଟି କଲି । ମୋ' ନାମାଙ୍କିତ ଉପହୃତ ପୁସ୍ତକାବଳି ଓ ସ୍ୱର୍ଣ୍ଣ ପଦକ ଏବେବି ମେହେର କଲେଜରେ ଥିବ ।

ମୋର ମେହେର କଲେଜ ପରିଚାଳନାରେ ଅନ୍ୟ କୌଣସି ଗଲତି ଖୋଜି ନପାଇ, କେବଳ ଏଇ ଗୋଟିଏ ଘଟଣାକୁ କେହି କେହି ବିକୃତ ଓ ଖଣ୍ଡିତ କରି ପ୍ରଚାର କରୁଥିବା ମୋ ଗୋଚରକୁ ଆସିଛି । କୁତ୍ସାର ସୁବିଧା ନିମନ୍ତେ ସେମାନେ ଘଟଣାର ଦ୍ୱିତୀୟାଂଶଟି ଉଲ୍ଲେଖ ନ କରି କେବଳ ପ୍ରଥମାଂଶଟିର ପ୍ରଚାର କରିଥାନ୍ତି । କୌଣସି ରକମର ପୂର୍ଣ୍ଣତା ଦାବି କରିବାର ମୂର୍ଖତା ଏ ଲେଖକର ନାହିଁ । ପୂର୍ଣ୍ଣ ହୋଇଥିଲେ ଏ ଧରାରେ ମୋର ଜନ୍ମ ହେବାର ଆବଶ୍ୟକ ନଥିଲା । ସକଳ ଅପୂର୍ଣ୍ଣତାକୁ ପୂରଣ କରି କରି ପୂର୍ଣ୍ଣତା ଆଡ଼କୁ ଯିବା ହିଁ, ଜୀବନ । ଲେଖକର ସମଗ୍ର ଜୀବନ ଧରି ସେହି ଦୁର୍ବଳ ଚେଷ୍ଟାହିଁ ଚାଲିଆସିଛି । ଅନ୍ୟେ ଏଭେରେଷ୍ଟ୍ ଜୟ କଲାବେଳକୁ ଆମପରି ହୀନଶକ୍ତି ଲୋକ, ସାଧାରଣ-ଜନପଥରେ ମଧ୍ୟ ଝୁଣ୍ଟିପଡ଼ି ଜଖମ ହେବା ସ୍ୱାଭାବିକ । ଡି.ପି.ଆଇ. ଓ ତତ୍କାଳୀନ ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ କାନକୁ ବି ଏକଥା ନିଆଯାଇଥିଲା । ମନ୍ତ୍ରୀ, ମୁହଁରେ ଓ ଡି.ପି.ଆଇ. ପ୍ରସାଦ, ଚିଠିରେ ମଧ୍ୟ ଏ ସମ୍ପର୍କରେ ପଚାରିଥିଲେ ମତେ । ପୂର୍ବାପର ଘଟଣା ବର୍ଣ୍ଣନା ପରେ ସମସ୍ତେ ଚୁପ୍‌ଚାପ୍ ରହିଥିଲେ; କିନ୍ତୁ ନିନ୍ଦୁକର ମୂଖ କିଏ ବନ୍ଦ କରିପାରେ ?

## ୬ । ଗଲ୍‌ତି-ଗବେଷଣା –

ଏଇ ଅଧମ ଲେଖକଟିର ଗଲ୍‌ତି ଖୋଜି ବାହାର କରିବାପାଇଁ ଓଡ଼ିଶାରେ ଏତେ ସତ୍ୟମୟ, ବିଦ୍ୱାନ, ମହାନ୍ ଓ ବଳବାନ୍ ଲୋକ ସେ ଆତୁର-ଅନୁସନ୍ଧିତ୍ସୁ ଓ ଗବେଷକ, ତାହା ଏହି ସମୟର ଗୋଟିଏ ଘଟଣାରେହିଁ ମତେ ବିଶେଷକରି ଜଣାପଡ଼ିଲା ।

ଥରେ ମେରାମଣ୍ଡଳି ଷ୍ଟେସନରୁ ମୁଁ ଓ ସମ୍ବଲପୁରର ତତ୍କାଳୀନ ଓଡ଼ିଆ ଡେପୁଟି କମିଶନର ଏକା କାର୍‌ରେ ଗଲୁ । ଗପ କରି କରି ଯାଉଥାଉ । ମଝିରେ ସେ ପଚାରିଲେ–''ଶିକ୍ଷାମନ୍ତ୍ରୀ–ଶ୍ରୀ-ଙ୍କ ସଙ୍ଗେ ଆପଣଙ୍କର କିପରି ପଡ଼େ ?''

ମୁଁ–''ସେ ତ ମନ୍ତ୍ରୀ, ମୁଁ ତ ଜଣେ ଶିକ୍ଷା ବିଭାଗର ସାମାନ୍ୟ ଏମ୍ପ୍ଲୟୀ । ମୋର ତାଙ୍କ ସାଙ୍ଗେ ପଡ଼ିବା ନପଡ଼ିବା ପ୍ରଶ୍ନଇବା କାହିଁ ? ତେବେ, ଭଦ୍ରଜନଭାବରେ ମୋର ତାଙ୍କ ସହିତ ଅପଡ଼ ହେବାର ତ କୌଣସି କାରଣ ନାହିଁ । ବରଂ ମୁଁ ତାଙ୍କପ୍ରତି, ତାଙ୍କର ବିଚକ୍ଷଣତାପାଇଁ ନୀରବରେ ପ୍ରଶଂସମାନ । ଆପଣ କାହିଁକି ଏପରି କହୁଛନ୍ତି ?''

ସେ–''ଶୁଣନ୍ତୁ, ମନ୍ତ୍ରୀ ପ୍ରଥମଥର ସମ୍ବଲପୁର ଆସି ଆମକୁ ଆପଣଙ୍କ ବିରୋଧରେ କ'ଣ ଶୁଣାଯାଉଛି, ତାହା ପଚାରିଲେ । ଆମେ କହିଲୁ ଯେ ତାଙ୍କ ବିରୋଧରେ କହିବାର କିଛି ନାହିଁ । ବରଂ ତାଙ୍କ ଅଧ୍ୟକ୍ଷତାରେ କଲେଜର ସର୍ବବିଧ ଉନ୍ନତି ହେଉଛି ଓ ଷ୍ଟାଫ୍, ଷ୍ଟୁଡ଼େଣ୍ଟସ୍ ଓ ସମାଜ, ସମସ୍ତଙ୍କ ନିକଟରେ ସେ ପ୍ରିୟ । ମନ୍ତ୍ରୀ ଦ୍ୱିତୀୟଥର ସମ୍ବଲପୁର ଆସି ମଧ୍ୟ ଠିକ୍ ପୂର୍ବପରି ଆପଣଙ୍କ ବିରୋଧରେ ଘଟଣା ଖୋଜିଲେ ଓ ଆମେ ଆପଣଙ୍କ ବିଷୟରେ ସବୁ ଭଲ କହିବାରୁ ସେ ବିଶ୍ୱାସ ଗଲେନାହିଁ । ଆମେ (ଡେପୁଟି କମିଶନର ଓ କମିଶନର) ତେଣୁ କହିଲୁ–''ଦେଖନ୍ତୁ ଆମେ ଏଠାରେ ଶାସନ-ମୁଖ୍ୟ । ଆପଣ ଅନ୍ୟ କାହା କଥା ଶୁଣିବେନି । ଆମର କଥା ବିଶ୍ୱାସ କରନ୍ତୁ ଯେ ଡକ୍ଟର ମାନସିଂହଙ୍କ ବିରୋଧରେ କହିବାର କିଛି ନାହିଁ ।''

କିନ୍ତୁ ମୋର ନିନ୍ଦା-ଗବେଷକ ଶିକ୍ଷାମନ୍ତ୍ରୀ ଶ୍ରୀ–ର ମହାଶୟ, ଏଠି ନିରାଶହୋଇ, ଧରିଲେ ଯାଇ ଲେଖକର ଟୋକାବେଳେ-ଲେଖା ଖଣ୍ଡେ ନାଟିକାକୁ । ତାହା ଖରାପ ସାହିତ୍ୟ ବୋଲି ପ୍ରମାଣିତ କରିବାପାଇଁ ଢେର୍ ଚେଷ୍ଟା କଲେ; ଶୁଣିଲି ତାକୁ ଅନୁବାଦ କରି ତତ୍କାଳୀନ ଓଡ଼ିଶା ଗଭର୍ଣ୍ଣରଙ୍କୁ ବି ଶୁଣାଇଲେ । ମୁଁ ଭୀଷଣ ଆଶଙ୍କା କରୁଥିଲି ଯେ ସେ ବହିକୁ ନିଷିଦ୍ଧ କରି ଏକ ସରକାରୀ ଇସ୍ତାହାର ଯେକୌଣସି ଦିନ ବାହାରିବ । କାହିଁକି ବାହାରିଲାନାହିଁ, ମୁଁ ଜାଣେନା । କିନ୍ତୁ ସେଦିନ, ବଡ଼ ଅଧିକାର ଓ ଛୋଟ ମନର ଏପ୍ରକାର ସହାବସ୍ଥାନ ଦେଖି ଅତି ବିସ୍ମିତ ହୋଇପଡ଼ିଥିଲି ।

## ୭। ଆଧୁନିକ ଗୁରୁ –

ମୋ ବେଳେ ମେହେର କଲେଜର ଷ୍ଟାଫ୍ ଓ ପ୍ରିନ୍ସପାଲ ଏକ ପରିବାର ପରି ଚଳୁଥିଲେ । ସେକଥା ଆଗରୁ କହିଛି । ଛଡ଼ାଛଡ଼ା ରହିଲେ, ଷ୍ଟାଫ୍ ଓ ଅପରିଚିତ ସହସ୍ର ସହସ୍ର ଛାତ୍ରମାନଙ୍କ ଭିତରେ ପ୍ରିନ୍ସପାଲର ଆତ୍ମିକ ପରିଚୟ ସମ୍ଭବ ହେବ କିପରି ?

ସମ୍ବଲପୁରରେ ମୁଁ ଓ ମୋର ସ୍ତ୍ରୀ ବରାବର ଅଧ୍ୟାପକମାନଙ୍କ ଘରକୁ ଯାଉଥିଲୁ–କେବଳ ସାମାଜିକତାର ଆନନ୍ଦ ପାଇବାପାଇଁ ଓ ଆମ୍ଭେମାନେ ସମସ୍ତେ ଯେ ସହକର୍ମୀ ମାତ୍ର, ଏଇ ଭାବଟା ଫୁଟାଇବାପାଇଁ । ସେଥିରେ କୌଣସି କପଟାଚାର ବା ମେକାନିକାଲ କିଛି ନଥିଲା । ତଳଆଡ଼ୁ ହୋଇଥିଲେ, ଯାହା ଦେଖାଯାନ୍ତା ଖୋସାମତ ପରି, ଉପରଆଡ଼ୁ ହେବାରୁ ତଳସ୍ତରରେ ତାର ଆତ୍ମିକ ଓ ନୈତିକ କ୍ରିୟା ଭଲ ହେବାର କଥା । ହେଉଥିଲା ମଧ୍ୟ ।

ଏସବୁ ଏଡୁକେଶନ କୋଡ୍ ବା ସର୍ଭିସ୍ କୋଡ୍‌ରେ ଲେଖାନାହିଁ କି ମତେ ଏ ବିଷୟରେ କେହି ପରାମର୍ଶ ଦେଇନଥିଲେ । ପ୍ରିନ୍ସପାଲଭାବରେ ଏହା ମୋର କରିବାର କଥା ଭାବି ମୁଁ କରୁଥାଏ ।

ମେହେର କଲେଜରେ ମୁଁ ଧୂମପାନ ବନ୍ଦ କରିବାର ଚେଷ୍ଟା କରିଥିଲି । କଲେଜ୍ କମ୍ପାଉଣ୍ଡ ଭିତରେ କେହି ବିଡ଼ି ସିଗାରେଟ୍ ପିଇବେନାହିଁ, ଏଥିପାଇଁ ବୁଝେଇ ସୁଝେଇ ଓ ପରେ ଧମକ ଦେଇ ଏକାଧିକ ନୋଟିସ୍ ଦେଇଥିଲି ।

ପିଲେ ଲୁଚେଇ ଯାହା କରନ୍ତୁ, ବାହାରେ ମାନିବାର ମୁଖା ଅନ୍ତତଃ ଦେଖାଇଲେ ।

କିନ୍ତୁ କଲେଜ୍‌ଷ୍ଟାଫ୍, ଦିନେ ଏକ ବିରାଟ ଦରଖାସ୍ତ ଆଣି ମୋ ସାମନାରେ ଥୋଇଲେ, ସେମାନଙ୍କର ପିକା ଖାଇବାର ଜନ୍ମଗତ ଅଧିକାରକୁ ସାବ୍ୟସ୍ତ କରିବାକୁ । କ'ଣ କରିବି ଏ କ୍ଷେତ୍ରରେ ? ବାଧହୋଇ ସେମାନଙ୍କୁ କହିଲି, ''ହେଉ ଖାଅ କିନ୍ତୁ ପିଲା ଯେପରି ନ ଦେଖନ୍ତି ।''

ଆଉ ଏକ ଘଟଣା ।

ବିଶ୍ୱବିଦ୍ୟାଳୟର ପରୀକ୍ଷାରେ ଅଧିକାଂଶ ପିଲା ଫେଲ୍ ହୁଅନ୍ତି, କେବଳ ଇଂରେଜୀ ଯୋଗୁଁ । ବର୍ଷକୁ ବର୍ଷ ଏୟା ଘଟୁଥିବାର ଦେଖି, ବର୍ଷେ ମୁଁ ନୋଟିସ୍ ଦେଇଦେଲି ଯେ, ମାଟ୍ରିକ୍‌ରେ ଯେଉଁମାନେ ଇଂରାଜୀରେ ଶହେରୁ ଅନ୍ତତଃ ୩୬ ରଖି ନଥିବେ ସେମାନଙ୍କର ଆଡ଼ମିସନ୍ ହେବନି । ମୁଁ ଏହା ପିଲା ଓ ଅଭିଭାବକଙ୍କ ଉପକାରପାଇଁହିଁ କରିଥିଲି ; କିନ୍ତୁ ଘୋର ମଧ ପ୍ରତିବାଦ କଲେ ସହକର୍ମୀ ଅଧ୍ୟାପକ ବନ୍ଧୁଗଣ । କେବଳ ପ୍ରତିବାଦ ନୁହେଁ, ହାଇକୋର୍ଟ ରିଟ୍‌ର ବ୍ୟଞ୍ଜନା ବି ଦେଲେ । କାରଣ, କାହାର ଶଳା କି କକାପୁଅଭାଇର ଆଡ଼ମିସନ୍ ହୋଇପାରି ନଥାନ୍ତା, ମୋ ପ୍ରସ୍ତାବ କାର୍ଯ୍ୟକାରୀ ହେଲେ ।

ପରେ ଭାବିଲି, କେବଳ ମୋ କଲେଜରେ ମୁଁ ଏହା କଲେ ହେବନି । ଏହା ସମଗ୍ର ରାଜ୍ୟରେ ହେବା ଉଚିତ । ତେଣୁ ସେ ପ୍ରସ୍ତାବ ଉଠେଇନେବାକୁ ମୁଁ ବାଧ ହୋଇଥିଲି; କିନ୍ତୁ ଆଜିକାଲିର ଗୁରୁମାନଙ୍କର ଏପରି ମତି-ଗତି ଦେଖି ମତେ ବଡ଼ ବାଧିଥିଲା ସେତେବେଳେ । ଭାରତର ସଂସ୍କୃତିକୁ ସମଗ୍ର ଜଗତର ଚିନ୍ତାଶୀଳ ଲୋକେ ନମସ୍କାର କରନ୍ତି । ସେ ସଂସ୍କୃତିର ଏକ ପ୍ରଧାନ ଅଂଶ, ଜ୍ଞାନର ମର୍ଯ୍ୟାଦା ଓ ଗୁରୁ-ଶିଷ୍ୟ ଓ ପିତା-ପୁତ୍ରର ବିନୟ-ମନୋହର ସମ୍ପର୍କ । ଏଇ ସୁନ୍ଦର ମହାନ୍ ସଂସ୍କୃତିକୁ ଆମେ କେବଳ ବଞ୍ଚେଇ ରଖିପାରୁ, ଆମ ସ୍କୁଲ୍ କଲେଜ ଦେଇ । କିନ୍ତୁ ଆମର ଶିକ୍ଷକ-ଅଧ୍ୟାପକ ଯଦି ଇତରଜନ ପରି ବ୍ୟବହାର କରିବେ, ତେବେ ଦେଶ କାହାଠୁ ଆଦର୍ଶ ଶିଖିବାର ଆଶା କରିବ ?

## ୮ । କଲେଜର ବଣ-ଭୋଜି –

ଯେତେଦିନ ମେହେର କଲେଜରେ ଥିଲି, କାର୍ତ୍ତିକ ପୂର୍ଣ୍ଣିମା ଦିନ ସମଗ୍ର କଲେଜକୁ ନେଇ ଏକ ବଣଭୋଜି ହେଉଥିଲା । ସେଗୁଡ଼ିକର ଆନନ୍ଦୋଚ୍ଛଳ ସ୍ମୃତି ଏପର୍ଯ୍ୟନ୍ତ ଚିତ୍ତରେ ଅଲିଭା ହୋଇ ରହିଛି । ପ୍ରତ୍ୟେକ ଶିକ୍ଷାନୁଷ୍ଠାନର ଛାତ୍ର ଓ ଶିକ୍ଷକ କେବଳ ଥରେ ନୁହେଁ, ଏକାଧିକବାର ଏହିପରି ପରସ୍ପରକୁ-ନିକଟତର-କରାଇବା ସାମାଜିକ ଉତ୍ସବର ଆୟୋଜନ କରିବା ଉଚିତ ।

ଥରକର ସ୍ମୃତି ଅନ୍ୟଥରମାନଙ୍କଠାରୁ ଅଧିକ ଜାଗ୍ରତ ରହିଛି । ତାହାହିଁ କହେ । ହୀରାକୁଦର ଏକ ନିର୍ଜନ ଅଂଶରେ ଆମେ ସେଥର ଆସ୍ଥାନ ଜମାଇଥାଉ । ପିଲେ ଓ ତତ୍ତ୍ୱାବଧାରକ ଶିକ୍ଷକବୃନ୍ଦ ଆଗରୁ ଚାଲିଯାଇଥାନ୍ତି । ମୁଁ ଗଲାବେଳକୁ ଅପରାହ୍ନ ହୋଇଯାଇଥିଲା । ଯାଇ ଦେଖେ, ଅତି

ରମଣୀୟ ସ୍ଥାନ । ବାଲୁକା -ଶଯ୍ୟା ଉପରେ ଲମ୍ବମାନ ଏକ ଛୋଟ ଅରଣ୍ୟ, ଯାର ଘନ ସୁଶୀତଳ ଛାୟାରେ ଆମର ବସାଉଠାର ବ୍ୟବସ୍ଥା । ନିମ୍ନରେ ବହିଯାଉଛି ମହାନଦୀର ଏକ ଶାଖା । ହେମନ୍ତ କାଳ । ମହାନଦୀର ନୀଳ ନୀର ନୀଳତର ହୋଇଉଠିଛି । ପିଲାଏ ଦଳ ଦଳ ହୋଇ ପହଁରୁଛନ୍ତି । କିଛି ସମୟ ଧରି ଠିଆହୋଇ ସେସବୁ ଦେଖୁ ଦେଖୁ ଆଉ ଲୋଭ ସମ୍ବରଣ କରିପାରିନଥିଲି । ସେତେବେଳେ ଦ୍ୱିତୀୟ ପୁତ୍ର ଲଳିତେନ୍ଦୁ ସେହିଠାରେ ଛାତ୍ର ଥିଲା । ଦୁହେଁ, ଘରେ ସକାଳୁ ଗାଧୋଇ ଖାଇ ଯାଇଥିଲୁ । କିନ୍ତୁ ବର୍ତ୍ତମାନ ଦୁହେଁ, ପୋଷାକ ଖୋଲିଦେଇ ମହାନଦୀର ନୀଳନୀରର ଅପୂର୍ବ ଆକର୍ଷଣରେ ଝାମ୍ପଦେଲୁ । ବୁଡ଼ି, ପହଁରି, ଭାସି, ବସି, ପ୍ରାୟ ଘଣ୍ଟାଏ ଖଣ୍ଡେ ମହାନଦୀର ସ୍ନେହଶୀତଳ ମାତୃକୋଳରେ ଶିଶୁ ଖାଲି ଜନନୀଦେହର ସ୍ପର୍ଶରେ ବୁଡ଼ି ରହିଲାପରି ବିଭୋର ହୋଇ ବିହାର କଲୁ । ଏକାବେଳକେ କ୍ଳାନ୍ତ ନହେଲାଯାଏ ବାପ-ପୁଅ ପାଣିରୁ ଉଠିଲୁନାହିଁ ।

ଏହାର ଏକ ତୁଳନୀୟ ଘଟଣା ମଧ୍ୟ ବରାବର ମନେପଡ଼ିଥାଏ । ଜୀବନର ଶେଷପାଦରେ ଠିଆହୋଇ ପଛକୁ ଅନାଇଲେ ଘଟଣାବହୁଳ ଏହି ଜୀବନର କେଉଁ ଅଭିଜ୍ଞତାର ପୁନରାବର୍ତ୍ତନ ଏ ମନ ଚାହେ ? ରାଜରାଣୀ ସୀତା, ଅଯୋଧ୍ୟାର ରାଜପ୍ରାସାଦରେ ରହି, ବନଭୂମି-ବିହାରର ସ୍ୱପ୍ନ ଦେଖୁଥିଲା ପରି, ଆଜି ହୀରାକୁଦରେ ମହାନଦୀ ଜଳରେ ସେ ଦିନର ସନ୍ତରଣର ସୁଖକୁ ହିଁ ଚିତ୍ତ ବାରମ୍ବାର ଖୋଜୁଛି । ତାହା ଟଙ୍କା ପଇସାରେ କିଣିହୁଏନା । ତାହା ପ୍ରକୃତିର ସଖ୍ୟଜନିତ ସୁଖ । ଆଜି ନଗରଜୀବନର ବିକୃତ, କଳୁଷିତ ଅବସ୍ଥିତି ଭିତରେ ଅନ୍ତର୍ଲୋକରୁ ବାରମ୍ବାର ଆର୍ତ୍ତ ପିପାସାର ଆହ୍ୱାନ ବାହାରିଆସୁଛି, ପ୍ରକୃତିର ଅନାବିଳ ସଖ୍ୟର ସେହି ଜୀବନମୟ ପ୍ରାଚୁର୍ଯ୍ୟପାଇଁ; କିନ୍ତୁ କାହିଁ ସେ ସୌଭାଗ୍ୟ ?

ସେହି ସମ୍ବଲପୁରରେ ଥାଏ । ଖରାଛୁଟିରେ କଟକ ଆସିଥାଏ । ବନ୍ଧୁ ଡକ୍ଟର ଚାର୍ଲସ୍ ଫେବ୍ରୀଙ୍କୁ ପୁରୀ-କୋଣାର୍କ ବୁଲାଇଆଣି ତାଙ୍କରି ସାଥିରେ ପୁରୀ ସର୍କିଟ୍ ହାଉସ୍‌ରେ ଦି ଦିନ ଥିଲି । ଏଥର ବି ସାଥିରେ ଥିଲା ଲଳିତ । ଦୁଇଦିନଯାକ, ଏକ ନୋଳିଆକୁ ବଡ଼ିସକାଳୁ ସାଥିରେନେଇ ବାପ-ପୁଅ, ପୂର୍ବେ ମହାନଦୀ ଜଳରେ ନିଜକୁ ହଜେଇଦେଲାପରି, ମହୋଦଧିର ଉତ୍ତାଳ ଲହରୀମାଳା ନିକଟରେ ଠିକ୍ ସେହିପରି ଆତ୍ମସମର୍ପଣ କଲୁ । କେବଳ ସ୍ନାନ ମାତ୍ର । କିନ୍ତୁ ପ୍ରାଣରେ କି ସ୍ଫୂର୍ତ୍ତି, ରକ୍ତରେ କି ଉନ୍ମାଦନା, ହୃଦୟରେ କି ଉତ୍ସାହ, ସମଗ୍ର ଚେତନାରେ କି ସେ ଅବର୍ଣ୍ଣନୀୟ ଆନନ୍ଦ !

ମନୁଷ୍ୟ ପ୍ରାଣର ପରମତମ ସୁଖ ବୋଧହୁଏ କୌଣସି ନା କୌଣସି ପ୍ରକାର ଅବଗାହନ ବା ଅଭିଷେକ । ଭଲପାଇବା ଏଇପରି ଏକ ଅଭିଷେକ ବୋଧହୁଏ । ସେହିପରି ମଧ୍ୟ ଜ୍ଞାନଚର୍ଚ୍ଚା, ଆବିଷ୍କାର, ଦେଶପ୍ରେମ ଓ ଭିନ୍ନ ଭିନ୍ନ ଆଦର୍ଶ । ଶୋଇବା, ଅର୍ଥାତ୍ ଚେତନା ହରେଇବା, ଆମର ମଧ୍ୟ ସୁଖର ଏକ ପ୍ରତୀକ । ଆମର ଗଭୀରାତ୍ମା ମଗ୍ନ ହେବାକୁ, ଲୁପ୍ତ ହେବାକୁ ଲୋଡ଼ୁଛି ବରାବର, କାହାର ସଖ୍ୟରେ, କାହାର ସେବା, କାହାର ଆପ୍ରିସିଏସନ୍‌ରେ ବା ପ୍ରକୃତିର ଉଦାର ଆଲିଙ୍ଗନରେ ।

ଦୀର୍ଘଜୀବନର ଏତେ ଘଟଣା ଭିତରେ, ଦିଥର ସ୍ନାନର ସ୍ମୃତି ଯେ ଏପରି ବ୍ୟାପକଭାବରେ ମୋର ଚିତ୍ତକୁ ଅଧିକାର କରିବସିଛନ୍ତି, ତାର ଅନୁଶୀଳନ କରି କରି ମୁଁ ନିଜେ ଅନେକ ସମୟରେ

ବିସ୍ମିତ ହୋଇଛି । ମନେ କେବଳ ପଡୁଛି ମେହେର କଲେଜର ବଣଭୋଜିର ବିମଳ ଆନନ୍ଦ ଓ ଏକ ଭୋଜି ବେଳେ ସେହି ସ୍ନାନାନନ୍ଦ । ପିଲେ ଯାତ୍ରା କରନ୍ତି, କାରିକେଚର୍ ଦେଖାନ୍ତି । ମାଜିକ୍ ଦେଖାନ୍ତି । ବଡ଼ ବର୍ଣ୍ଣମୟ ହୋଇଉଠେ ସେହି କେତେଘଣ୍ଟା ।

## ୯ । ଅପୂର୍ଣ୍ଣ ବାସନା –

ମେହେର କଲେଜଟିକି ଗୋଟିଏ ସ୍ୱୟଂସମ୍ପୂର୍ଣ୍ଣ, ସୁନ୍ଦର, ସମ୍ମାନିତ ବିଦ୍ୟାନୁଷ୍ଠାନ କରି ଗଢ଼ିବାହିଁ ମୋର ଲକ୍ଷ୍ୟ ଥିଲା । ମୋର ଏହି ସ୍ୱପ୍ନ ଅନେକ ପରିମାଣରେ ସାଧିତ ହୋଇଥିଲା । କୋ-ଅପରେଟିଭ୍ ଷ୍ଟୋର୍‌ରେ ପିଲେ ତାଙ୍କର ଯାବତୀୟ ଦୈନନ୍ଦିନ ବ୍ୟବହାର୍ଯ୍ୟ ଦ୍ରବ୍ୟାଦି ପାଉଥିଲେ– ବାହାରକୁ ଯିବାର ଦରକାର ନଥିଲା । ମେସ୍ ଓ କାଣ୍ଟିନ୍ ବସାଇ ଓ ସେ ସବୁକୁ ସୁପରିଚାଳିତ କରାଇ, ପିଲାଙ୍କ ଭୋଜନ ଓ ଜଳଖିଆର ଅତି ଉତ୍ତମ ବ୍ୟବସ୍ଥା ସେଇ କଲେଜ କମ୍ପାଉଣ୍ଡ୍ ଭିତରେହିଁ କରାହୋଇ ପାରିଥିଲା । ଏସବୁ ଏପରି ଚାଲିଥିଲା ଯେ, ବାହାରର ଲୋକେ ବି କଲେଜ ମେସ୍ ଓ କାଣ୍ଟିନ୍‌ର ସୁବିଧା ନେଲେ । କାରଣ, ଏତେ ଶସ୍ତାରେ ଏପରି ଉତ୍କୃଷ୍ଟ ଖାଦ୍ୟ ସହରରେ ଅନ୍ୟତ୍ର ମିଳିବା ଅସମ୍ଭବ ଥିଲା । ଗୋଶାଳା ପ୍ରତିଷ୍ଠା କରି ପିଲାଙ୍କୁ ଦୁଧ ଯୋଗାଇ ଦିଆଗଲା । କଲେଜ-ବଗିଚାକୁ ବଢ଼େଇ, ବର୍ଷା ଓ ଶୀତ ଦିନରେ ପ୍ରଚୁର ପରିବା ଉତ୍ପନ୍ନ କରାଗଲା । କଲେଜର ବିଦ୍ୟାର ସମ୍ମାନ ଉପରକୁ ଉଠିଲା ଓ କଲେଜ, ବିଶ୍ୱବିଦ୍ୟାଳୟର ପରୀକ୍ଷାମାନଙ୍କରେ ପ୍ରତିବର୍ଷ ନାମ ରଖିଲା । କଲେଜ, ନିଜର ଗୋଟିଏ ଉଚ୍ଚାଙ୍ଗ 'ମାସିକ'-ପତ୍ର ମଧ୍ୟ ପ୍ରକାଶ କଲା । କଲେଜର ବାର୍ଷିକ ଡ୍ରାମାକୁ ମଧ୍ୟ ଲୋକେ ଚାହିଁରହିଥିଲେ ଓ ଟିକଟ୍ କିଣି ଦେଖିବାକୁ ଧାଇଁଲେ । ଷ୍ଟାଫ୍‌ମାନଙ୍କପାଇଁ ଚମତ୍କାର ଘର ସବୁର ସୁନ୍ଦର ଏକ କଲୋନୀ ଠିଆ କରାହେଲା । କଲେଜର ନୂଆ ବିଲ୍ଡିଂ ହେଲା । ପିଲାଙ୍କପାଇଁ ପ୍ରଶସ୍ତ ନୂତନ ଛାତ୍ରାବାସର ପ୍ଲାନ୍ ଇତ୍ୟାଦି ସବୁ ହୋଇସାରି ମୂଳଫଉନ ପଡ଼ିଲା । ଏଇ ଅବସ୍ଥାରେ ମୁଁ ସମ୍ବଲପୁରରୁ ବିଦାୟ ନେଲି ।

କିନ୍ତୁ ମୋର କ'ଣ ଆଉ କିଛି କରିବାର ନଥିଲା ? ହଁ, ନିଶ୍ଚୟ ଥିଲା । ବର୍ତ୍ତମାନ ବି ଅଛି, ଯଦିବା ମୁଁ ମେହେର କଲେଜର କିଛି ନୁହେଁ ।

ଏଇୟା, ଏଇୟା ମୁଁ ମେହେର କଲେଜରେ କହିବାକୁ ଚାହିଥିଲି, ଯାହା କିନ୍ତୁ ନହେଉଣୁ, ମତେ ସେଠୁ ତଡ଼ିଦିଆଗଲା –

## କ । ହଷ୍ଟେଲ୍‌ରେ ପ୍ରତିଦିନ ନୂତନ ଖାଦ୍ୟର ପରିବେଷଣ –

ଆମର ଭାରତୀୟ ଖାଦ୍ୟ 'ମନୋଟୋନସ୍', ଏକଘରିଆ ବା ଏକତାରିଆ । ସାରା ଜୀବନଯାକ, ପ୍ରତିଦିନ, ଏଓଳି ଓ ସେଓଳି, କେବଳ ସେଇ ଭାତ, ଡାଲି, ତରକାରି । ଆମର ଯାହାକୁ ଭୋଜି କହନ୍ତି, ସେ ମଧ୍ୟ ବଙ୍ଗଳାରେ ଯାହା ବହନ୍ତି ଥୋଡ଼, ବଡ଼ି, ଖଡ଼ା ଓ ଖଡ଼ା, ବଡ଼ି, ଥୋଡ଼୍ । ଭାଇସଚାନ୍‌ସେଲରଙ୍କଠୁ କିରାନି ପର୍ଯ୍ୟନ୍ତ ସବୁଠି ସେଇ ଏକା ଖାଦ୍ୟ । କାହାରି ମୁଣ୍ଡରେ ଗୋଟିଏ କିଛି ନୂତନ ଉଦ୍ଭାବନ କରିବାର ଭାବଇ ପଶୁନି, ଏ ଦେଶରେ ।

ଅଥଚ, ମୋର ହଂଗେରୀୟ ବନ୍ଧୁ ଡକ୍ଟର ଚାର୍ଲସ୍ ଫାବ୍ରୀ କହନ୍ତି ଯେ, ହଂଗେରୀୟ ଚଷା

ମଧ୍ୟ ଯଦି କାଲି ଯାହା ଖାଇଥିଲା, ତାକୁ ଆଜି ବି ସେୟା ଦେବ ତା' ସ୍ତ୍ରୀ, ତେବେ ସେ ସ୍ତ୍ରୀ ନିଶ୍ଚେ ଗାଳିଖାଇବ ତା'ଠୁ । ଇଂଲାଣ୍ଡ ଓ ଆମେରିକାର ସ୍କୁଲ୍‌ମାନଙ୍କରେ ପିଲାଙ୍କୁ ମଧ୍ୟାହ୍ନ ଭୋଜନ ଦିଆଯାଏ । ସ୍କୁଲ୍ କର୍ତ୍ତୃପକ୍ଷ ବାପା-ମାଙ୍କଠୁ ସପ୍ତାହେ ଆଗରୁ ଲେଖେଇ ଆଣନ୍ତି, ପିଲା ଘରେ ଗତ ସପ୍ତାହରେ ପ୍ରତ୍ୟହ କ'ଣ ଖାଇଥିଲା ଓ ଆଗାମୀ ସପ୍ତାହରେ ସେ ଘରେ କ'ଣ କ'ଣ ପ୍ରତ୍ୟହ ଖାଇବାର ବ୍ୟବସ୍ଥା । ତା'ହେଲେ, ସ୍କୁଲ୍ ପିଲାଙ୍କୁ ସେହି ଖାଦ୍ୟ ନଦେଇ ଅନ୍ୟ ଖାଦ୍ୟ ଦେବ । ସମ୍ବଲପୁର କଲେଜରେ ଆମ ଖାଦ୍ୟରେ ଏଇ ନୂତନତା ଆଣିବାର ଏକ ପରୀକ୍ଷା ସର୍ଜନଙ୍କ ସହିତ ଏ ସମ୍ପର୍କରେ ମୋର ଚିଠିପତ୍ର କଲେଜ ଅଫିସ୍‌ରେ ଏପର୍ଯ୍ୟନ୍ତ ଥିବ ବୋଧହୁଏ । ଆମର ଖାଦ୍ୟ ସୁଷମ ହେବ, ପୁଣି ବରାବର ବଦଳୁଥିବ, ଏ ଦିଗରେ ପ୍ରକୃତରେ ଆମ ଜାତି, ବିଶେଷକରି ସ୍ତ୍ରୀଲୋକମାନଙ୍କୁ ଏକ ବ୍ୟାପକ ଶିକ୍ଷା ଦିଆଯିବା ଉଚିତ । କୌଣସି ଅନୁଷ୍ଠାନର ଅଧିକାରୀ ନହେଲେ, ଏ ପରୀକ୍ଷା କରିହେବନି । ସେ ସୁଯୋଗ ତ ମୋଠୁ କାଢ଼ିନିଆଯାଇଛି । ଆଉ କେହି ହେଲେ ସେ ଦିଗରେ ଧ୍ୟାନ ଦିଅନ୍ତୁ, ମୋର ଏ ସ୍ୱପ୍ନ ସଫଳ ହେଉ ।

## ଖ । କଲେଜରେ କୁକ୍‌କୁଟ ପାଳନ –

ମେହେର କଲେଜ, ନିଜର ଦୁଧ ଓ ପରିବା ଯୋଗାଡ଼ କରିପାରିଥିଲା । ଭାବିଥିଲି, ଗୋଟିଏ ପୋଲଟ୍ରି ଫାର୍ମ କରି ପିଲାଙ୍କୁ ନିୟମିତଭାବରେ ଶସ୍ତାରେ ଅଣ୍ଡା ଯୋଗାଇବି । ଏ ବିଷୟରେ ମଧ୍ୟ ଭେଟରିନାରୀ ଡିପାର୍ଟମେଣ୍ଟ ସହିତ ଲେଖାଲେଖି କରି ଗୋଟିଏ ସ୍କିମ୍ ଅଣାଇଥିଲି । ତାହା ମେହେର କଲେଜରେ ଏବେବି ଥିବ । ମେହେର କଲେଜରେ ମୋର ଶେଷ ବର୍ଷଟାକୁ ସରକାର ଜଞ୍ଜାଳମୟ ନ କରିଥିଲେ ଏ ସ୍କିମ୍‌ଟା ମଧ୍ୟ ମୁଁ ଆରମ୍ଭ କରିଦେଇଥାନ୍ତି । ମେହେର କଲେଜର ବର୍ତ୍ତମାନ କର୍ତ୍ତୃପକ୍ଷ ଏହି ପରୀକ୍ଷା କରିପାରନ୍ତି । ପ୍ରତ୍ୟେକ ବିଦ୍ୟାନୁଷ୍ଠାନରେ ଏହା ହେବା ଉଚିତ । କାରଣ ଆମ ଖାଦ୍ୟରେ ପ୍ରୋଟିନ୍‌ର ବଡ଼ ଅଭାବ । ଅଣ୍ଡା ସବୁଠୁ ଶ୍ରେଷ୍ଠ ପ୍ରୋଟିନ୍ ଯୋଗାଏ, ଆଉ ଶସ୍ତାରେ ।

## ଗ । ମେହେର କଲେଜର ସଂପ୍ରସାରଣ –

ମେହେର କଲେଜର ଭବିଷ୍ୟତ ଅଭିବୃଦ୍ଧି ଲାଗି, ମୁଁ ତାର ଆଗ ଓ ପଛ, ବାମ ଓ ଦକ୍ଷିଣରେ, ବୁଢ଼ାରଜା ପାହାଡ଼ଠାରୁ ବ୍ରୁକ୍‌ସହିଲ୍ ପାହାଡ଼ ପର୍ଯ୍ୟନ୍ତ ଜମି ସବୁ ଆକ୍ୱାର କରିବା ପାଇଁ କେବଳ ସ୍ୱପ୍ନ ଦେଖିନଥିଲି, ସେ ଦିଗରେ କାମ ବି କରିଥିଲି । କଲେଜପାଖ ରେଳ-ଷ୍ଟେସନକୁ ସେଠାରୁ ମାଇଲିଏ ଦୂରକୁ ଉଠେଇ ଦେବାକୁ ଓ ଷ୍ଟେସନ୍ ଆଡ଼କୁ ଯାଇଥିବା କଲେଜ ସାମନା ରାସ୍ତାଟାକୁ ଉଠାଇ ନେବାପାଇଁ ମୁଁ ଯେଉଁ କରେସ୍‌ପଣ୍ଡେନ୍‌ସ କରିଥିଲି, ତାହା ଏବେ ବି କଲେଜ ଅଫିସରେ ଥିବ । ଏ ଦେଶ ଯଦି ପ୍ରକୃତରେ ବିଦ୍ୟା ଓ ବିଦ୍ୟାମନ୍ଦିରକୁ ସମ୍ମାନ ଦେଇଜାଣିଥାନ୍ତା, ତେବେ ଏ ଦେଶର ସରକାର ଅକ୍ଷରେ ଅକ୍ଷରେ ମୋର ପ୍ରସ୍ତାବ ଗ୍ରହଣ କରିଥାନ୍ତେ । ସେ ପ୍ରସ୍ତାବରେ ମୋର କୌଣସି ସାମାନ୍ୟତମ ସ୍ୱାର୍ଥହିଁ ନଥିଲା । ମୁଁ ଯାହା କହୁଥିଲି ତାହା ଦେଶ, ଜାତି ଓ ମେହେର କଲେଜର ଭବିଷ୍ୟଦ୍ କଲ୍ୟାଣ ଦୃଷ୍ଟିରୁ । ଓଡ଼ିଶା ସରକାର ରାଜା ଜମିଦାରଙ୍କ ଦଦରା ପାଲେସ୍ ସବୁ ଲକ୍ଷ ଲକ୍ଷ ଟଙ୍କାରେ କିଣି, ସେସବୁର ମରାମତିରେ ପୁଣି ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ

କରିପାରନ୍ତି, କିନ୍ତୁ ସମ୍ବଲପୁର କଲେଜର ଅବଶ୍ୟମ୍ଭାବୀ ଅଭିବୃଦ୍ଧିପାଇଁ ଆଗରେ ପଛରେ ଥିବା କେତେକ ଏକର ଧାନଜମି କିଣିବାର ମୋର ଯେଉଁ ପ୍ରସ୍ତାବ, ତାହା ତତ୍କାଳୀନ କର୍ତ୍ତୃପକ୍ଷଙ୍କୁ ଅସମ୍ଭବ ଦେଖାଗଲା । କିନ୍ତୁ ସେହି ଅସମ୍ଭବ ସ୍ଥାନରେ ବର୍ଷ ଦୁଇଟା ଭିତରେ ପ୍ରାଇଭେଟ୍ ଘରମାନଙ୍କର ଏକ କ୍ଷୁଦ୍ର ସହର ଆପେ ଆପେ ଗଢ଼ି ଉଠିବା ସମ୍ଭବ ହୋଇପାରିଲା । ସେଦିନର ଶିକ୍ଷାମନ୍ତ୍ରୀ ନିଜେ ଯାଇ ଦେଖିଆସନ୍ତୁ, ସେସବୁ ଜମି କଲେଜପାଇଁ ରଖିଥିଲେ, କେତେକ ସୁବିଧା ହୋଇଥାନ୍ତା, ମେହେର କଲେଜର ।

## ଘ । ମେହେରଙ୍କର ମର୍ମର-ମୂର୍ତ୍ତି –

ଗଙ୍ଗାଧର ମେହେର କଲେଜରେ ସମ୍ବଲପୁରର ସୁଯୋଗ୍ୟ ଚିତ୍ରକର ମୁରଲୀଧର ଟାଲିଙ୍କ ଅଙ୍କିତ ମେହେରଙ୍କର ଏକ ବୃହତ୍ ସୁନ୍ଦର ତୈଳଚିତ୍ର ସ୍ଥାପନ କରାଇ ଆସିଛି । ମୋର ସ୍ୱପ୍ନ କିନ୍ତୁ ଥିଲା, କଲେଜର ନୂଆ ବିଲ୍ଡିଂ ସମ୍ମୁଖରେ ମେହେରଙ୍କର ଏକ ପୂର୍ଣ୍ଣାବୟବ ଦଣ୍ଡାୟମାନ ମର୍ମର ପ୍ରସ୍ତରର ମୂର୍ତ୍ତି ସ୍ଥାପନ କରିବାକୁ । ଏବେ ମେହେରଙ୍କ ଶତବାର୍ଷିକୀ ଉତ୍ସବର ଅଙ୍ଗରୂପେ କବିଙ୍କର ଏକ ବ୍ରୋଂଜବଷ୍ଟ କଲେଜ ଆଗରେ ଥୁଆ ହୋଇଛି ବୋଲି ଶୁଣୁଛି । କିନ୍ତୁ ବଷ୍ଟ୍ ଭଲ ହୋଇନି ବୋଲି ସମ୍ବଲପୁରବାସୀଙ୍କଠୁ ଶୁଣୁଛି ଓ ତାହା ପୁଣି କଲେଜ ତୁଳନାରେ ଅତି ଛୋଟ ହୋଇଯାଇଛି । ଆଶାକରେ ସମ୍ବଲପୁରବାସୀ ଅଳ୍ପ ବ୍ୟୟସାଧ ମୋର ସେହି ପୁରୁଣା ସ୍ୱପ୍ନଟିକୁ, ସରକାରଙ୍କୁ ଆଦୌ ଭିକ୍ଷା ନକରି, ନିଜେ ନିଜେ ଦିନେ ପୂରଣ କରିବେ ।

## ଙ । କଲେଜର ଟ୍ରଷ୍ଟଫଣ୍ଡର ପୁନର୍ଗଠନ –

ହଷ୍ଟେଲ୍ ଓ ଷ୍ଟାଫ୍ କ୍ୱାର୍ଟର ପ୍ରଭୃତିରେ ସମ୍ବଲପୁରର ପୂର୍ବତନ ଡେପୁଟି କମିଶନର ମି.ଆଜ୍‌ଫର (ସେ ବର୍ତ୍ତମାନ ଇଷ୍ଟ୍ ପାକିସ୍ତାନର ଚିଫ୍ ସେକ୍ରେଟାରୀ) ଗଢ଼ି ଯାଇଥିବା କଲେଜର ଟ୍ରଷ୍ଟ ଫଣ୍ଡର ୭/୮ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଗଲା, ମୋରି ଆଖିତଳେ ।

ମୋର ସ୍ୱପ୍ନ ଥିଲା, ଟ୍ରଷ୍ଟ ଫଣ୍ଡରେ, ଫେର୍ ସମ୍ବଲପୁରରୁ ଚାନ୍ଦା ଉଠାଇ, ସେତିକି ଟଙ୍କା ଜମା କରିଦେବା, ଯା'ର ସୁଧରୁ କି ପ୍ରତିବର୍ଷ ଅନ୍ତତଃ ଜଣେ ସମ୍ବଲପୁରର ପିଲା ଟ୍ରେନିଂପାଇଁ ବିଦେଶ ଯାଇପାରିବ ।

ଏ ପ୍ରସ୍ତାବ ମୁଁ ମୌଖିକଭାବରେ କାହାକୁ କାହାକୁ କହିଥିଲି । କିନ୍ତୁ ଶେଷ ବର୍ଷର ଜଞ୍ଜାଳ ଓ ଅସ୍ଥିରତା ଯୋଗୁଁ କାଗଜ କଲମରେ କିଛି ହୋଇପାରିଲାନି ।

ସମ୍ବଲପୁରବାସୀ ଏ ଦିଗରେ ମଧ ଚେଷ୍ଟା କରିବେ ।

## ଚ । ପିଲାଙ୍କ ଶରୀର ଗଠନ –

ହଷ୍ଟେଲର ସବୁ ପିଲାଙ୍କୁ ବାଧ କରି ପ୍ରତିଦିନ ସକାଳେ ବ୍ୟାୟାମ ନେବାର ଅଭ୍ୟାସ କରେଇବା ମୁଁ ଆରମ୍ଭ କରାଇଥିଲି । କିନ୍ତୁ କେତେକ ଅସୁବିଧା ଯୋଗୁ ବ୍ୟାପକ ବା ବାଧ ଭାବରେ କରାଇପାରିନଥିଲି । ସମ୍ବଲପୁରର ଲୋକେ ଓଡ଼ିଶାର 'ହାଇଲାଣ୍ଡର' ବୋଲି ଜଣା । ଗତ ପୁରୁଷ ପର୍ଯ୍ୟନ୍ତ ସମ୍ବଲପୁରବାସୀଙ୍କର ଏ ଗୌରବର ଦାବି ଥିଲା । ଓଡ଼ିଶାର କୌଣସି

ଅଂଶରେ ଏବେ ବି, ଏତେ ସଂଖ୍ୟାରେ ସପୁଷ୍ଟ-ସୁଗଠିତ-ଶରୀର ନାରୀ ଓ ପୁରୁଷ ଦେଖିବାକୁ ମିଳିବେନି, ଯେତେ ସଂଖ୍ୟାରେ ଆମେ ଦେଖିବାକୁ ପାଇବା ସମ୍ବଲପୁରରେ । ସମ୍ବଲପୁରର ପ୍ରସିଦ୍ଧ 'ପୂଜାରୀ' ବଂଶର କେତେଜଣଙ୍କର ଅପଘନର ଯେଉଁ ଲୋଭନୀୟ ବର୍ଣ୍ଣ, ଉଚ୍ଚତା ଓ ପ୍ରସାର ଦେଖିଛି, ତାହା ଓଡ଼ିଶାରେ ଅନ୍ୟ କୌଣସିଠାରେ ଦେଖିନି ।

କିନ୍ତୁ ଦୁଃଖର ବିଷୟ, ଦ୍ୱିତୀୟ, ତୃତୀୟ ପୁରୁଷ ଆଡ଼କୁ ସେ ବପୁଗୌରବ ସମ୍ବଲପୁରିଆଙ୍କଠୁ ବି ଗଲାଣି । ଡକ୍ଟର ସାନ୍ତା ଓ ଡକ୍ଟର ଜନାର୍ଦ୍ଦନ ପୂଜାରୀ, ଉଭୟେ ଲମ୍ବାଚୌଡ଼ା ମଣିଷ; କିନ୍ତୁ ତାଙ୍କ ପୁଅମାନେ ସେମାନଙ୍କର ଅଧା । ବର୍ତ୍ତମାନ ଏହି ଶାରୀରିକ ଅଧଃପତନ ଓଡ଼ିଶାର ଚାରିଆଡ଼େ ମୁଁ ଲକ୍ଷ୍ୟକରି ଅନେକ ବେଳେ ଚିନ୍ତିତ ହୁଏ । ଆମ ନିଜ ଗାଁରେ ବି ଏହି ଅଧଃପତନ ପ୍ରତ୍ୟକ୍ଷ-ପ୍ରମାଣ ଧରି ବିରାଜିତ । ପ୍ରକୃତି-ନିର୍ଦ୍ଦିଷ୍ଟ ଭାବରେ ଠୁରା ଜାପାନୀ ତା'ର ଖାଦ୍ୟ ବଦଳାଇ ଓ ବ୍ୟାୟାମ କରି ଡେଙ୍ଗା ହେଉଛି, ଅଥଚ ଦିନେ ଲମ୍ବା-ଚଉଡ଼ା ଥିବା ଓଡ଼ିଆ, ଆଖିଆଗରେ ରୁଗ୍ଣ, କ୍ଷୀଣ ଓ ବାମନ ହେବା ଉପରେ ।

ତେଣୁ ମୁଁ ଚାହେଁ, ବର୍ତ୍ତମାନ ଆମର ସବୁ ସ୍କୁଲ୍ ଓ କଲେଜମାନଙ୍କରେ ବାଧ୍ୟ ଓ ବ୍ୟାପକ ଭାବରେ ପିଲା (ଝିଅ ଓ ପୁଅ)ଙ୍କୁ ବ୍ୟାୟାମ କରେଇବା ଓ ଶରୀର ଚର୍ଚ୍ଚା ନେଇ ସେମାନଙ୍କ ଚିତ୍ତରେ ସଂଜ୍ଞତା ଜାଗ୍ରତ କରେଇବା । ସୁସ୍ଥ, ସୁନ୍ଦର, ସୁଗଠିତ ଶରୀର ଏ ଦେଶର ପ୍ରତ୍ୟେକ ନାଗରିକର ଶିକ୍ଷା-ସଂସ୍କୃତିର ଅପରିହାର୍ଯ୍ୟ ଅଂଶ ବିବେଚିତ ହେବା ଉଚିତ ।

## ଛ । ହୀରାଖଣ୍ଡ ୟୁନିଭରସିଟି –

ଓଡ଼ିଶାରେ ଦ୍ୱିତୀୟ ବିଶ୍ୱବିଦ୍ୟାଳୟ– ହୀରାଖଣ୍ଡ ବିଶ୍ୱବିଦ୍ୟାଳୟ– ସମ୍ବଲପୁରରେହିଁ ହେବ, ଏହା ମୁଁ ପ୍ରଥମ ପଞ୍ଚବାର୍ଷିକ ଯୋଜନାର ପ୍ରଚାର ସପ୍ତାହରେ ଶିକ୍ଷା-ଯୋଜନା ଉପରେ ବକ୍ତୃତା ଦେବାକୁ ଯାଇ କହିଥିଲି । ତତ୍କାଳୀନ କମିଶନରଙ୍କୁ କୁହାଇ ବୁଲାଇ ଏଥିପାଇଁ ବୁର୍ଲାରେ ହଜାରେ ଏକର ଜମି ସାଇତି ରଖିଥିବାପାଇଁ ଲେଖିଥିବାର ମନେପଡୁଛି । ସେ ଭବିଷ୍ୟଦ୍‌ବାଣୀ ସଫଳ ହେବାର ଡେରିନାହିଁ ବୋଧହୁଏ । ମେହେର କଲେଜ ସେହି ବିଶ୍ୱବିଦ୍ୟାଳୟର କେନ୍ଦ୍ର ହେବ ନିଶ୍ଚୟ । ଆଶାକରେ ତା' ପୂର୍ବରୁ ମେହେର କଲେଜକୁ ଏକ ଆଦର୍ଶ, ପୂର୍ଣ୍ଣାବୟବ ବିଦ୍ୟାନୁଷ୍ଠାନ କରିବା ଦିଗରେ ମୋର ଯେଉଁ ଅପୂର୍ଣ୍ଣ ବାସନା ସବୁ ରହିଯାଇଛି ଏବଂ ଯାହାସବୁ ଯଥାର୍ଥ ଓ ଆବଶ୍ୟକ, ସେସବୁ କ୍ରମେ ରୂପଲାଭ କରିବ ।

ମୋ-ବେଳର ମେହେର କଲେଜ ସମ୍ପର୍କରେ କେତେକ ଡକୁମେଣ୍ଟ ଏହି ଅଧ୍ୟାୟରେ ପରିଶିଷ୍ଟଭାବରେ ଦେଇଦେଉଛି ।

---

# ଦ୍ୱାଦଶ ଅଧ୍ୟାୟର ପରିଶିଷ୍ଟାବଳି

## ୧ । ମେହେର-କଲେଜ-ମେସ୍‌ର ବିପ୍ଳବାତ୍ମକ ସଂସ୍କାର -

Extract from the Inspection note on the G.M. College by the General Inspection Committee appointed by the University in 1953.

"The college mess seems to have something ideal about it. Each meal consisting of rice and four other items is said to cost -/5/6 only, which includes also the establishment cost. This is possible because of economical management introduced by the Principal. The students do not have to squat on the floor in the dining hall. They have been provided with dining tables and benches for sitting. The supply of tiffin is also good. Articles are prepared in the hostel kitchen under the supervision of the Manager. Nothing is purchased from the market. A Co-operative Store is maintained which, with a small capital of Rs. 700/- now makes an annual turn-over of something like Rs. 40,000/-. The vegetable garden supplies a part of the requirements of the mess. It seems that this aspect of the hostel management is worth emulating and may be profitably introduced in all other institutions – both schools and colleges.

## ୨ । ତତ୍କାଳୀନ ଡି.ପି.ଆଇ.ଙ୍କ ମେହେର କଲେଜ ପରିଚାଳନା ଉପରେ ମନ୍ତବ୍ୟ

GANGADHAR MEHER COLLEGE, SAMBALPUR

1. Visited the Gangadhar Meher College at Sambalpur on the 26th November, 1951. I was taken round the college and hostel premises and the college garden by the Principal of the college. I also availed myself of the opportunity of listening to a few lectures delivered by some members of the staff and attended a lecture on Phonetics delivered by Sri Dhal, a lecturer in Sanskrit and Oriya.
2. Dr. Mansingha, the present Principal of the college, has been able to introduce certain improvements which are enumerated below:–
   - (i) Hostel life has been completely overhauled.
   - (ii) The Canteen, the Co-operative Store and the Mess have been well-organised and there was perfect discipline prevailing in the hostel life.
   - (iii) The cost of each mess meal has been considerably reduced.
   - (iv) I was very pleased to notice that the Co-operative Store caters both for the needs of the members of the staff and the students.

(v) The dining room has also been organised in a satisfactory manner. The unique ticket system with dining manners has been introduced.

(vi) Monthly tests are now being held.

(vii) The library has been reorganised and students are now free to pick and choose their books from the shelves which are kept open. The system is working exceedingly well.

(viii) This is the only college in Orissa that publishes regularly two issues of the college magazine every year.

(ix) The college garden has improved considerably and production of vegetables has been very satisfactory.

(x) Every students who gets an aid from the Social Service Guild of the college has to work either in the gardens, hostel mess or at the night schools maintained by the college. This should be emulated by other colleges in the State.

3. I am glad to note that the Principal interviews about 10 students almost every day in order to establish personal contact with them and keeps a record of each student after interview.

4. The Principal has borrowed Rs. 2000/- from the Trust Committee and has supplied uniform, eating plates and pots to 200 boys in the hostel. The smokeless Maganlal Chullas which have been put up in the hostels have resulted in a saving of Rs.5/- every day.

5. Repairs to the Zilla school temporary building were undertaken under the personal supervision of the Principal, with a cost of Rs. 2,500/- for which the Public Works Department estimate was excessively prohibitive. The work done by the Principal in this matter is commendable. There are other minor improvement which I need not emphasize in my report.

6. On the whole, I was very much satisfied with the way in which various activities of the college have been orgainsed by the present Principal. This he has been able to achieve with the active co-operation of the staff and the students.

7. The college premises and the compound have been well-kept and there has been an atmosphere of tidiness and neatness in the college and hostel premises.

8. The college has no doubt many needs. In these days of financial stringency it is difficult for me to secure funds, but I shall endeavour to help the institution as far as possible.

ପାଣିଗ୍ରାହୀଙ୍କର ଏ ସବୁ କାଣ୍ଡ କାରଖାନା ଦୂରରୁ ଦେଖି ଓ ହଠାତ୍-ଦେଖାଦେଇଥିବା ଓଡ଼ିଆ ସାହିତ୍ୟର ବରେଣ୍ୟ ସଂଗଠକ ଓ ପରିଚାଳକମାନଙ୍କ ସହିତ ସମଆସନରେ ବସିବାର ଯୋଗ୍ୟତା ଏ ଲେଖକର ନଥିବାର ଭାବି, ସେତେବେଳର ମହାପ୍ରତାପଶାଳୀ ଲିଙ୍ଗରାଜ ପାଣିଗ୍ରାହୀଏ ମନ୍ତ୍ରୀ ଥିଲାଯାଏଁ, ଓଡ଼ିଶା ସାହିତ୍ୟ ଆକାଡେମୀର କୌଣସି ମିଟିଂରେ କେବଳ ଯୋଗ ଦେଇନଥିଲା ନୁହେଁ, ବରଂ ତାଙ୍କର ଦର୍ପଜ୍ୱର୍ଜର ସିରସ୍ତାକୁ ଓଡ଼ିଶା-ସାହିତ୍ୟ-ଆକାଡ଼େମୀର ସଦସ୍ୟତ୍ୱରୁ ମଧ୍ୟ ଇସ୍ତଫା ଦେବାର ପତ୍ର ସେ ପଠାଇ ଦେଇଥିଲା ।

ଯାହାହେଉ, ଜାତୀୟ-ସାହିତ୍ୟ-ଆକାଡେମୀର ଓଡ଼ିଆ ଆଡ଼ଭାଇଜରୀ ବୋର୍ଡ଼ର ଏକ ମିଟିଂ ୧୯୫୯, ଜୁନ୍ ୬ ତାରିଖରେ ଉତ୍କଳ ବିଶ୍ୱବିଦ୍ୟାଳୟର ଜ୍ଞାନକୋଷ ଅଫିସ୍‌ରେହିଁ ବସିଥିଲା । ଦିନବେଳେ ବସୁଥିବାରୁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମହତାବ ମେମ୍ବରମାନଙ୍କୁ ଏକ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରିଥିଲେ । ଜାତୀୟ ସାହିତ୍ୟ ଆକାଡେମୀର ସହକାରୀ ସମ୍ପାଦକ ଶ୍ରୀଯୁକ୍ତ ପ୍ରଭାକର ମାଚ୍ୱେ ମଧ୍ୟ ସେଦିନ ସେଠାରେ ଉପସ୍ଥିତ ଥିଲେ । ମେମ୍ବରଭାବରେ ସଚ୍ଚି ରାଉତରାୟ ବି ଥିଲେ । ମଧ୍ୟାହ୍ନ ଭୋଜନ ଭିତରେ ମେମ୍ବରମାନଙ୍କ ସହିତ କଥୋପକଥନ କରୁ କରୁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମହତାବ ଏଇ ଲେଖକ ଓଡ଼ିଶା-ସାହିତ୍ୟ-ଆକାଡେମୀରେ କାହିଁକି ଯୋଗଦେଉନାହିଁ, ଏକଥା ଉତ୍‌ଥାପନ କରିଥିଲେ ଏବଂ ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଶ୍ରୀଯୁକ୍ତ ପ୍ରଭାକର ମାଚ୍ୱେଙ୍କୁ, ମତେ ଆକାଡେମୀରେ ଯୋଗଦେବାକୁ ପ୍ରବର୍ତ୍ତେଇବାକୁ ଅନୁରୋଧ କରିଥିଲେ ।

ପରେ କଟକ ସର୍କିଟ୍ ହାଉସ୍‌ରେ ଶ୍ରୀଯୁକ୍ତ ମାଚ୍ୱେଙ୍କ ସହିତ କାଳିନ୍ଦୀବାବୁ, ସଚ୍ଚି ରାଉତରାୟ ଓ ଏଇ ଲେଖକର ଏ ସମ୍ପର୍କରେ ଦୀର୍ଘ ଆଲୋଚନା ହେଲା । ଶେଷରେ ଓଡ଼ିଶା-ସାହିତ୍ୟ-ଆକାଡେମୀର ସମ୍ବିଧାନକୁ ବଦଳାଇ ତାକୁ ଯଥାସମ୍ଭବ ସରକାରୀ କର୍ତ୍ତୃତ୍ୱରୁ ମୁକ୍ତ କରି ଓଡ଼ିଶାର ସର୍ବାଞ୍ଚଳର ବୁଦ୍ଧିଜୀବୀମାନଙ୍କର ପ୍ରକୃତ ପ୍ରତିନିଧିମୂଳକ ଏକ ଅନୁଷ୍ଠାନ କରି କିପରି ଗଢ଼ାଯାଇ ପାରେ, ତାର ବିଚାର ହେଲା । ସେହି ଅନୁସାରେ ଏକ ଚିଠାସମ୍ବିଧାନ ତିଆରି ହୋଇ କାଳିନ୍ଦୀବାବୁ, ସଚ୍ଚି ରାଉତରାୟ ଓ ଏଇ ଲେଖକ ପକ୍ଷରୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଓ ଶିକ୍ଷାମନ୍ତ୍ରୀ ମହତାବଙ୍କ ନିକଟକୁ ପଠାଗଲା ।

ଆମେ ମିଳିତଭାବରେ ସେହି ଚିଠା ସହିତ ଶ୍ରୀଯୁକ୍ତ ମହତାବଙ୍କୁ ଯେଉଁ ଚିଠି ଦେଇଥିଲୁ, ତାହା ଏହି—

''ମାନନୀୟ ମହାଶୟ,

ନିମ୍ନ ଦସ୍ତଖତକାରୀ ଓ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆପଣଙ୍କର ସହକର୍ମୀ ଆମେ ତିନିଜଣ ନିମ୍ନଲିଖିତ ଘଟଣା ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛୁଁ । ତାହା ଏହି ଯେ,ଓଡ଼ିଶା ସରକାରଙ୍କଠାରୁ ସମସ୍ତ ସାହାଯ୍ୟ ପାଇ ମଧ, ଓଡ଼ିଶା-ସାହିତ୍ୟ- ଆକାଡେମୀ, ଦୁଇବର୍ଷ ତଳେ ଏହାର ଜନ୍ମବେଳେ ଯେଉଁ ଆଶା ଜାଗ୍ରତ କରାଇଥିଲା ତାହା ପୂରଣ କରିପାରିନାହିଁ । ଏଇ ଭିତରେ ପ୍ରେସିଡେଣ୍ଟ ପରେ ପ୍ରେସିଡେଣ୍ଟ ଓ ସେକ୍ରେଟାରୀ ପରେ ସେକ୍ରେଟାରୀ ଗଲେଣି କିନ୍ତୁ ଆକାଡ଼େମୀର ସ୍ଥାଣୁ ଅବସ୍ଥାର କୌଣସି ପରିବର୍ତ୍ତନ ଘଟିନାହିଁ । ଓଡ଼ିଶାର ମୁଖ୍ୟମନ୍ତ୍ରୀଭାବରେ

ଓଡ଼ିଶା ସାହିତ୍ୟର ପ୍ରୟୋଜନାଦି ନିମନ୍ତେ ଆପଣ ଯେଉଁ ସଚେତନତା ଦେଖାଉଛନ୍ତି, ସେଥିପାଇଁ ଆମ୍ଭେମାନେ ସୁଖୀ । ଏହା ଆପଣଙ୍କ ସୌଜନ୍ୟ ଯେ ଆପଣଙ୍କ ସହିତ ସହଯୋଗ କରି ଏହି ଓଡ଼ିଶା-ସାହିତ୍ୟ-ଆକାଡ଼େମୀକୁ ଏକ ଜୀବନ୍ତ ଓ ଫଳପ୍ରସୂ ଅନୁଷ୍ଠାନ କରି ଗଢ଼ିବା ପାଇଁ ଆମ୍ଭମାନଙ୍କୁ ଆପଣ ଅନୁରୋଧ କରିଛନ୍ତି । ମାତୃଭାଷା ଓ ମାତୃଭୂମିର ସେବା ନିମନ୍ତେ ନିଜକୁ ନିୟୋଜିତ କରିବାଠାରୁ ଅଧିକ ସୁଖ ଆମ୍ଭମାନଙ୍କର କଣ ଥାଇପାରେ ? କିନ୍ତୁ ଆମେ ଅନୁଭବ କରୁଛୁଁ ଯେ ସାହିତ୍ୟ ଆକାଡେମୀର ବର୍ତ୍ତମାନ ସମ୍ବିଧାନ ଯେପରି ଅଛି ସେଥିରେ ଆମ୍ଭମାନଙ୍କର କାମ୍ୟ ଲକ୍ଷ୍ୟସବୁ ଆୟତ୍ତ ହେବା ସମ୍ଭବ ନୁହେଁ । ଆମ୍ଭେମାନେ ତେଣୁ ସେହି ସମ୍ବିଧାନରେ ନିମ୍ନଲିଖିତ ପରିବର୍ତ୍ତନ ସବୁ ଅଣାଯାଉ ବୋଲି ଜଣାଉଛୁଁ ।''

ଆମ ସଂସ୍କାରର ମୁଖ୍ୟ ଲକ୍ଷ୍ୟ ଥିଲା, ସାହିତ୍ୟ ଆକାଡେମୀରେ ନିର୍ବାଚନ ପ୍ରଥାକୁ ପ୍ରତିଷ୍ଠିତ କରିବା ଓ ତାହାକୁ ସ୍ୱୟଂସମ୍ପୂର୍ଣ୍ଣ କରିବା, ପ୍ରେସିଡେଣ୍ଟ ଓ ସମ୍ପାଦକଙ୍କର ଯୋଗ୍ୟତାବଳିକୁ ଗୌରବାବହ ସ୍ତରରେ ରଖିବା ଓ ସର୍ବୋପରି ଆକାଡେମୀକୁ କେବଳ ରାଜନୈତିକ ଓଡ଼ିଶା ନୁହେଁ, ନିଖିଳ ପ୍ରାକୃତିକ ଉତ୍କଳର ପ୍ରତିନିଧି-ଅନୁଷ୍ଠାନ କରି ତା ଦେଇ ଓଡ଼ିଆ ଜାତି ଭିତରେ ଜାତୀୟ ଚେତନା ଜାଗ୍ରତ କରାଇବା ।

## ଆକାଡେମୀର ଆକାଡେମିତ୍ୱ –

ଓଡ଼ିଶା ରାଜ୍ୟରେ ଆକାଡେମୀ ଏକ ନୂଆ ପଦାର୍ଥ ହୋଇପାରେ ବା ଅଜ୍ଞ କେତେକ, ନିଜର ହେୟ ଓ ଦୟନୀୟ ମାନସିକ ସ୍ତରରୁ ତାକୁ କେବଳ ଚାକିରି ଓ କ୍ଷମତା ପ୍ରୟୋଗର ଖେଳନାରୂପେ ବ୍ୟବହାର କରିପାରନ୍ତି, କିନ୍ତୁ ସେମାନଙ୍କର ବୁଝିବା ଉଚିତ ଯେ ଆକାଡ଼େମୀ ଏକ ବିଶ୍ୱବ୍ୟାପୀ ଅନୁଷ୍ଠାନ ଓ ସର୍ବତ୍ର ଯେଉଁ ଐତିହ୍ୟ, ଯେଉଁ ଲକ୍ଷ୍ୟ ଓ ଯେଉଁ ରୀତିରେ ଆକାଡେମୀ ସବୁ ପରିଚାଳିତ ହୁଏ, ଓଡ଼ିଶାରେ ତାହା ସେପରି ପରିଚାଳିତ ନହେଲେ ତାହା ଯୋଗୁଁ ସମଗ୍ର ଦେଶ ଓ ଜାତିକୁ ଉପହସିତ ହେବାକୁ ହେବ, ଯେପରି ହୋଇଉଠିଛି ଓଡ଼ିଆ ଏମ୍.ଏ. । ଆକାଡେମୀ ହେଲା ଏକ ଜାତିର ସମସ୍ତ ବୌଦ୍ଧିକ ସାଧନାର ଶେଷ ଓ ଶ୍ରେଷ୍ଠ ନିକଷ ଓ ନିଶାଣ । ସେଠାରେ ଯେଚ୍ଛା ସିଏ ଲୋକର ସ୍ଥାନ ନାହିଁ । ତାହା ପଦପ୍ରତିପତ୍ତିର ଆଖଡ଼ା-ଘର ନୁହେଁ । ଏପରି ଚେଷ୍ଟା କରିବାହିଁ ଜାତିଭାବରେ ଆମର ମୂର୍ଖତା ପ୍ରମାଣ କରିବ ଓ କରୁଛି । ପୃଥିବୀର ସବୁ ସଭ୍ୟ ଦେଶରେ ଯେକୌଣସି ଜ୍ଞାନ ବିଭାଗର ସର୍ବଶ୍ରେଷ୍ଠ ସ୍ରଷ୍ଟା ଓ ଅନୁଶୀଳନ ମଣ୍ଡଳୀର ମିଳନ ସ୍ଥାନହିଁ ସେହି ବିଭାଗର ଆକାଡେମୀ । ସେପରି ଏକ ଆକାଡେମୀର, କେବଳ ମେମ୍ବରଟିଏ ହେବାହିଁ ସେହି ବିଭାଗୀୟ ଯେକୌଣସି ଲୋକ ପକ୍ଷରେ ବିରାଟ ପ୍ରତିଷ୍ଠା । ଜୀବନବ୍ୟାପୀ ସାଧନା ବା ବିରାଟ ପ୍ରତିଭାର ଆଦରରୂପେହିଁ ଏହିପ୍ରକାର ସଭ୍ୟପଦ ମିଳିଥାଏ ଓ ମିଳିବାର କଥା । ପୃଥିବୀର ଅନ୍ୟ ସମସ୍ତ ପ୍ରସିଦ୍ଧ ଆକାଡେମୀମାନଙ୍କର ପ୍ରପିତାମହୀ ଓ ସ୍ୱୟଂ-ବିଖ୍ୟାତା 'ଫ୍ରେଞ୍ଚ ଆକାଡେମୀ'ର ଚିର-ନିର୍ଦ୍ଦିଷ୍ଟ ମେମ୍ବର-ସଂଖ୍ୟା ମାତ୍ର ଚାଳିଶ । ଏମାନଙ୍କୁ 'ଫର୍ଟିମୋର୍ଟାଲ୍ସ' ବା 'ଅମର ଚାଳିଶ' କୁହାଯାଏ । ଏହି ଚାଳିଶ ଜଣଙ୍କ ଭିତରୁ ଜଣେ ହେବା, ଏପରି କଠୋର ସିଦ୍ଧି ଯେ, ଫ୍ରାନ୍ସର ଏକାଧିକ ବିଖ୍ୟାତ ଲେଖକ, ଆଶା କରି କରି ମରି ଯାଇଛନ୍ତି

ପଛେ ତା'ର ମେମ୍ବର ହୋଇପାରିନାହାନ୍ତି । ମେମ୍ବର ମରିଯିବା ହେତୁ ଜାଗା ଖାଲି ରଖାଯାଏ ବରଂ, କିନ୍ତୁ ଫ୍ରେଞ୍ଚ୍ ଆକାଡ଼େମୀ ଯାହାକୁ ଇଚ୍ଛା ତାହାକୁ ସେ ଜାଗା ଦେଇଦେବେ ନାହିଁ । ଫ୍ରେଞ୍ଚ୍ ଆକଡ଼େମୀ ବା ତା' ଅନୁକରଣରେ ଗଢ଼ାଯାଇଥିବା ଅନ୍ୟ ଯେତେ ଜାତୀୟ ଆକାଡ଼େମୀ, ସେସବୁ ପରିପୂର୍ଣ୍ଣଭାବରେ ସ୍ୱାଧୀନ ଓ ସ୍ୱୟଂସମ୍ପୂର୍ଣ୍ଣ । କୌଣସିଠାରେ ସେସବୁ ସରକାରୀ ଶାସନକଳର ଅଂଶ ହୋଇନଥାନ୍ତି । କମ୍ୟୁନିଷ୍ଟମାନଙ୍କର ଏକଛତ୍ର ଶାସନରେ ମଧ୍ୟ ରୁଷୀୟ ସାହିତ୍ୟ ଓ ବିଜ୍ଞାନ ଆକଡେମୀ ସବୁ ଏକାନ୍ତଭାବରେ ବୁଦ୍ଧିଜୀବୀମାନଙ୍କର ସ୍ୱୟଂ-ନିୟନ୍ତ୍ରିତ ଅନୁଷ୍ଠାନ । ରୁଷିଆ, ଇଂଲାଣ୍ଡ, ଇଟାଲୀ ପ୍ରଭୃତି ସକଳ ଜ୍ଞାନଦୀପ, ଦେଶରେ ଆକାଡ଼େମୀର ଷ୍ଟାଣ୍ଡାର୍ଡ଼ ଓ ରୀତି ମଧ୍ୟ ଫ୍ରେଞ୍ଚ୍ ଆକଡ଼େମୀ ପରି ।

## ଲେଖକର ସେହି ବିଫଳ ସ୍ୱପ୍ନ –

ଏଇ ଲେଖକ ଗତ କୋଡ଼ିଏବର୍ଷ ଧରି ଓଡ଼ିଶା-ସାହିତ୍ୟ ଆକାଡେମୀର ସମ୍ନିଧାନକୁ ମିଶାଇ ପରେ ପରେ ତା'ର ମାତୃଭାଷାର ଉନ୍ନୟନପାଇଁ ଯେଉଁ ଭିନ୍ନ ଭିନ୍ନ ଯୋଜନା ଦେଇ ଆସିଛି, ତାହାର ମୋଟାମୋଟି ଇତିହାସ ହିଁ ଏଠାରେ ଦିଆଗଲା । ଏଇ ଲେଖକର ମୌଳିକ ସ୍ୱପ୍ନ ଏହି ଯେ, ନିୟମକାନୁନ ଓ ବିଚାର କର୍ମପାଇଁ ଯେପରି ହାଇକୋର୍ଟ, ପାଠଶାଠପାଇଁ ଯେପରି ବିଶ୍ୱବିଦ୍ୟାଳୟ, ସାହିତ୍ୟ ପାଇଁ ସେହିପରି ଏକ ସ୍ୱୟଂ-ଚାଳିତ, ସ୍ୱତନ୍ତ୍ର ଅନୁଷ୍ଠାନ ଠିଆ କରାଯାଇ ପାରନ୍ତା । କେବଳ ପାଠ୍ୟ-ପୁସ୍ତକର ଚର୍ବିତ-ଚର୍ବଣର ପରୀକ୍ଷା ପାଇଁ ବିରାଟ ଓ ବ୍ୟୟବହୁଳ ଏକ ବିଶ୍ୱବିଦ୍ୟାଳୟ ଯଦି ଠିଆ କରାଯାଇପାରେ, ଜାତିର ପ୍ରାଣ, ବୁଦ୍ଧି ଓ ମନ ସହିତ ଯାହାର ଅଙ୍ଗାଙ୍ଗୀ ସମ୍ପର୍କ, ଯାହା ନେଇ ହିଁ ଗୋଟିଏ ଜାତି ସଭ୍ୟ, ଶିକ୍ଷିତ ଓ ଅଭିଜାତ ମନୁଷ୍ୟ-ଗୋଷ୍ଠୀ ବୋଲି ସମ୍ମାନିତ ହେବାର କଥା, ଯାହାହିଁ କେବଳ ଜାତିର ଆତ୍ମା ଓ ଚରିତ୍ରକୁ ଶୁଦ୍ଧ ଓ ସୁଗଠିତ କରିପାରେ, ଦୁଇକୋଟି ଲୋକର ସେହି ଭାଷା ଓ ସାହିତ୍ୟ ପାଇଁ କ'ଣ ଏକ ସ୍ୱତନ୍ତ୍ର ସାହିତ୍ୟ-ବିଶ୍ୱବିଦ୍ୟାଳୟ ବସାଇବା ଗୋଟାଏ ଉଦ୍ଭଟ କଳ୍ପନା ବୋଲି ଧରାଯିବ ?

''ଓଡ଼ିଆ-ସାହିତ୍ୟ-ଆକାଡେମୀ'', ଲେଖକର ଥିଲା ସେହି ସ୍ୱପ୍ନ । ଲେଖକ କଳ୍ପନା କରିଥିଲା ଯେ, ଓଡ଼ିଶା-ସାହିତ୍ୟ-ଆକାଡେମୀ ଏକ ଓଡ଼ିଆ-ଭାଷା-ସାହିତ୍ୟ ବିଶ୍ୱବିଦ୍ୟାଳୟରୂପେ ଦଣ୍ଡାୟମାନ ହେବ, ଯାହାର ଏକ ବିଭାଗରେ ଚାଲିଥିବ ବିବିଧ ଅଭିଧାନ, ଜ୍ଞାନକୋଷ ଓ ଭାଷାତାତ୍ତ୍ୱିକ ଆଲୋଚନା ଓ ପ୍ରକାଶନାବଳି; ଆଉ ଏକ ବିଭାଗ ନେବ ସକଳ ବୈଜ୍ଞାନିକ ପ୍ରକାଶନର ଭାର; ଆଉ ଏକ ବିଭାଗରେ ଚାଲିଥିବ ଜନତାକୁ ନୂଆକରି ଗଢ଼ିବାର ସାହିତ୍ୟ ରଚନା, ଆଉ ଏକ ବିଭାଗରେ ରହିବ ପ୍ରାଚୀନ ସାହିତ୍ୟର ନବ-ସଂସ୍କରଣର ଆୟୋଜନ; ଆଉ ଏକ ବିଭାଗରେ ରହିବ ବିଶ୍ୱସାହିତ୍ୟର ଶ୍ରେଷ୍ଠ ପୁସ୍ତକମାନଙ୍କର ଅନୁବାଦ, ପୁଣି ଅନ୍ୟ ବିଭାଗ ନେଇପାରେ ଜାତିକୁ ଉତ୍କୃଷ୍ଟ ପାଠ୍ୟ-ପୁସ୍ତକ ଯୋଗାଇବାର ଭାର । ଏ ବିଶ୍ୱବିଦ୍ୟାଳୟର ସ୍ୱତନ୍ତ୍ର ପ୍ରେସ୍ ରହିବ । କେବଳ ଛାପାଖର୍ଚ୍ଚ ମୂଲ୍ୟରେ ଲକ୍ଷ ଲକ୍ଷ ପୁସ୍ତକ ପ୍ରକାଶିତ ହୋଇ ଜନତା ମଧ୍ୟରେ ପ୍ରଚାରିତ ହେବ, ଯେପରି ସୋଭିଏଟ୍ ରୁଷିଆରେ ହେଉଛି, ବ୍ୟାପକଭାବରେ ଜନଶିକ୍ଷା ଲକ୍ଷ୍ୟରେ । କେବଳ ଓଡ଼ିଶାରେ ନୁହେଁ, ଓଡ଼ିଶା-ସାହିତ୍ୟ-

ଆକାଡ଼େମୀ ଦେଇ ବଙ୍ଗ, ବିହାର, ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶରେ ରହିଯାଇଥିବା ଲକ୍ଷ ଲକ୍ଷ ଓଡ଼ିଆ ନରନାରୀଙ୍କ ଭିତରେ ଓଡ଼ିଆ ସାହିତ୍ୟକୁ ବୁଣି ଦେଇଯିବାର ସ୍ୱପ୍ନ ମୁଁ ଦେଖିଥିଲି—ନରସିଂହ, କପିଳେନ୍ଦ୍ରର ଜାତିକି ଓ ସାରଳା-ଜଗନ୍ନାଥ-ଗୋପାଳକୃଷ୍ଣ-ରାଧାନାଥର ଭାଷାକୁ ସେହି ବିଚ୍ଛିନ୍ନ ଅବହେଳିତ ଅଞ୍ଚଳମାନଙ୍କରେ ବଞ୍ଚେଇ ରଖିବାକୁ ।

ସାହିତ୍ୟ ମାଧ୍ୟମରେ ଜାତିକି ଗଢ଼ିବାପାଇଁ ଓଡ଼ିଶାର ଏହି ସାମାନ୍ୟ ଲେଖକ ଗତ କୋଡ଼ିଏ ବର୍ଷ ଧରି ଏଇପରିଭାବରେ କେବଳ ସ୍ୱପ୍ନ ଦେଖିଆସିନି, ସେ କ୍ଷୀଣ ଅଥଚ ଅବିରାମଭାବରେ ଚେଷ୍ଟା ମଧ୍ୟ କରିଆସିଛି । ଆଜିଯାଏ ସ୍ୱପ୍ନ ସଫଳ ହୋଇନାହିଁ । କିନ୍ତୁ ଆଶା, ଦିନେ ହୁଏତ କିଏ ତାର ସ୍ୱପ୍ନର ଓ ଯତ୍ନର ମୂଲ୍ୟ ବୁଝିବ ।

## ଛିନ୍ନ ସମ୍ପର୍କ –

ପୂର୍ବେ କହିଛି ଯେ, ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ଶିକ୍ଷାମନ୍ତ୍ରୀ ଥିଲାବେଳେହିଁ ମୁଁ ଓଡ଼ିଶା ସାହିତ୍ୟ-ଆକାଡେମୀର ମେମ୍ବରତ୍ୱରୁ ଇସ୍ତଫା ଦେଇଦେଇଥିଲି । ପରେ ଶ୍ରୀ ମହତାବ ଶିକ୍ଷାମନ୍ତ୍ରୀ ହେବାରେ ତାଙ୍କର ଓ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କର ବ୍ୟକ୍ତିଗତ ଅନୁରୋଧରେ ଓଡ଼ିଶା- ସାହିତ୍ୟ - ଆକାଡେମୀର କେତୋଟି ମିଟିଂରେ ମାତ୍ର ଯୋଗଦେଇଥିଲି । ସେପର୍ଯ୍ୟନ୍ତ ମୋର ସେହି ପୂର୍ବ ଇସ୍ତଫା ଗୃହୀତ ନହୋଇ ରଖାହୋଇଥାଏ । କିନ୍ତୁ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ବିତାଡ଼ିତ ହୋଇ ଯେତେବେଳେ ସ୍ୱୟଂ ମହତାବ ଓଡ଼ିଶା-ସାହିତ୍ୟ-ଆକାଡେମୀର ପ୍ରେସିଡେଣ୍ଟ ରୂପେ ଦେଖା ଦେଲେ, ସେତେବେଳେ ମୁଁ ଜିଦ୍ କଲି ଯେ ମୋର ପୂର୍ବ ଇସ୍ତଫାପତ୍ର ଗୃହୀତ ହେଉ । ଶ୍ରୀ ମହତାବ ସେତକ କରି ମୋର କୃତଜ୍ଞତାଭାଜନ ହୋଇଛନ୍ତି । କାରଣ ମହତାବ-ପାଣିଗ୍ରାହୀଙ୍କ କର୍ମକୌଶଳ ହେତୁ, ଏକ ଐତିହାସିକ ଜାତି ଓ ଭାଷାର ସାହିତ୍ୟ ଆକାଡେମୀ ଯେପରି ଗୌରବମୟ ବ୍ୟକ୍ତିତ୍ୱ ଓ ବିଜ୍ଞତା ନେଇ ଠିଆହୋଇଛି, ସେଥିରେ ଯେଉଁ ମୂର୍ଖ ଏ ବୀଜ ପୋତି ମଧ୍ୟ ତାହା ସହିତ ଆଜି ଛିନ୍ନ ସମ୍ପର୍କ, ଏହା ତାକୁ ଅନ୍ତତଃ ଏକ ଅକଳୁଷ ବିବେକ ଦେଇପାରିଛି । କୌଣସି କୌଣସି ଓଡ଼ିଆ ସାହିତ୍ୟିକ-ରାଜନୈତିକ ସ୍ୱ ସ୍ୱ ପତ୍ର ପତ୍ରିକାରେ ଓଡ଼ିଶା-ସାହିତ୍ୟ -ଆକାଡେମୀ ଉପରେ କିଛିକାଳ ବେଶ୍ ବିଷ ଉଦ୍‌ଗିରଣ କରି ଚାଲିଥିଲେ, ଯେପର୍ଯ୍ୟନ୍ତ ସେମାନେ ନିଜକୁ ଅପାଂକ୍ତେୟ ଭାବୁଥିଲେ । କିନ୍ତୁ ଆକାଡେମୀର ସଦସ୍ୟତାର ମହାନ୍ ଗୌରବ ପ୍ରାପ୍ତି ମାତ୍ରେ ସେମାନଙ୍କ ଆଖିରେ ଆକାଡେମୀର ସବୁ ଭଲ ହୋଇ ଉଠିଲା । ଏମାନଙ୍କର ଗୌରବାବହ ସଖ୍ୟ ଆମପରି ଅଧମଙ୍କ ଭାଗ୍ୟରେ ଜୁଟିବ କିପରି ?

## ଶିକ୍ଷା-ପରୀକ୍ଷା-ସଂସ୍କାର –

ମେହର କଲେଜରେ ପରୀକ୍ଷା ସଂସ୍କାର କିପରି ଆରମ୍ଭ କରିଥିଲି, ତାହା ପୂର୍ବେ କୁହାଯାଇଛି । ଏହାକୁ ଦେଶବ୍ୟାପୀ କରିବା ଲକ୍ଷ୍ୟରେ, ଲେଖକର ପ୍ରସ୍ତାବ ଅନୁସାରେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଏକ ପରୀକ୍ଷା-ସଂସ୍କାରକ-କମିଟି ଗଢ଼ା ହୋଇଥିଲା (ଦେଖନ୍ତୁ ପରିଶିଷ୍ଟ) । ଆଲୋଚନା ଅନେକ ଅଗ୍ରଗତି ମଧ୍ୟ କରିଥିଲା । ବିଦ୍ୟାନୁଷ୍ଠାନମାନଙ୍କର ଆଭ୍ୟନ୍ତରୀଣ-ମାର୍କ-ସଂଗ୍ରହ ଥିଲା

ସେହି ପ୍ରସ୍ତାବର ଏକତମ ପରିଣତି ମାତ୍ର । ଇ ଭିତରେ ପରୀକ୍ଷା-ସଂସ୍କାର-କମିଟି ଆଉ କ'ଣ ଅଧିକା କରିଛନ୍ତି, ମୁଁ ଜାଣେନାହିଁ । କାରଣ, ଯଦିଓ ପ୍ରସ୍ତାବକଭାବରେ ମୋର ଏ କମିଟିରେ ଅନ୍ତତଃ କୋ-ଅପ୍‌ଟଡ୍ ମେମ୍ବର ହୋଇ ମଧ୍ୟ ରହିବା‌ର କଥା, ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ, କଲେଜ ଛାଡ଼ିବା ପରେ ମତେ ଆଉ ଏଥିରେ ସ୍ଥାନ ଦେଇନାହାନ୍ତି ।

## ତିନିବର୍ଷିଆ ଡିଗ୍ରୀ –

ବେସିକ୍ ପଦ୍ଧତି ବିରୋଧରେ ବାକ୍ୟୋଚ୍ଚାରଣ କରି ତ ଦଣ୍ଡିତ ହୋଇଥିଲି । ଶିକ୍ଷାମନ୍ତ୍ରୀ ରାଧାନାଥ ରଥଙ୍କ କୁରାଢ଼ିରେ ଉତ୍କଳ ବିଶ୍ୱବିଦ୍ୟାଳୟ ଦିଖଣ୍ଡ ହୋଇ ଯେଉଁ ସେକେଣ୍ଡାରୀ ବୋର୍ଡ଼ ଗଢ଼ାଗଲା ତାହାର ମଧ୍ୟ ମୁଁ ବିରୋଧ କରିଥିଲି । ସେହି ସମୟର ସିନେଟ୍ ପ୍ରସିଡ଼ିଙ୍ଗସ୍ ଦେଖିଲେ ତାହା ଜଣାପଡ଼ିବ । ଏ ହତ୍ୟାକାଣ୍ଡ ଫଳରେ ଓଡ଼ିଶାରେ ସେକେଣ୍ଡାରୀ ଶିକ୍ଷାର ସାମାନ୍ୟତମ ଅଧିକ ଉନ୍ନତି ହୋଇଛି ବୋଲି ବୋଧକରିବାର କାରଣ ଅଛି କି ?

ଉତ୍କଳ ବିଶ୍ୱବିଦ୍ୟାଳୟର ଆକାଡେମିକ୍ କାଉନ୍‌ସିଲର ପ୍ରସିଡ଼ିଙ୍ଗ୍‌ସ ଦେଖିଲେ ଜଣା ମଧ୍ୟ ଯିବ ମୁଁ ଏବର ତିନିବର୍ଷୀୟା-ଡିଗ୍ରୀର ମଧ୍ୟ ବରାବର ବିରୋଧ କରିଥିଲି । ଦୃଢ଼ମତ ଦେଇଥିଲି ଯେ, ପୂର୍ବର ଆଇ.ଏ.,ଆଇ.ଏସ୍.ସି.କୁ ଭାଙ୍ଗିବାର କୌଣସି ଦରକାର ନାହିଁ । ଆଇ.ଏ, ଆଇ.ଏସ୍.ସି, ଆମ ଜାତୀୟ ଜୀବନରେ ବହୁ ଚାହିଦା ମେଣ୍ଟାଉଥିଲେ । ତାଙ୍କୁ ଭାଙ୍ଗନି । ଯଦି ବି.ଏ., ବି.ଏସ୍‌ସି.ର ମାନ ବଢ଼ାଇବାକୁ ଚାହ, ତେବେ ଆଇ.ଏ., ଆଇ.ଏସସି, ପରେ ପିଲାଙ୍କୁ ତିନିବର୍ଷ ପଢ଼ାଅ ଓ ତେଣେ ଏମ୍.ଏ., ଏମ.ଏସି.ସି.ର ମାନ ମଧ୍ୟ ବଢ଼ାଅ । *

ବିଶ୍ୱବିଦ୍ୟାଳୟର ତର୍କ-କ୍ଷେତ୍ରରେ ତିନିବର୍ଷୀୟା-ଡିଗ୍ରୀ-କୋର୍ସ ସମ୍ପର୍କରେ ମୋ କଥା କିନ୍ତୁ ରହଲାନି । ଭାବିଲି, ଯା' ଉପରେ ପତ୍ରପତ୍ରିକାରେ ଲେଖିବି । ଗୋଟିଏ ଲେଖା 'ଷ୍ଟେଟ୍‌ସମ୍ୟାନ'କୁ ପଠାଇଲି । ବୋଧହୁଏ ଟିକିଏ ଡେରି ହୋଇଗଲା ।

---

*DR. M. MANSINHA : The establishment of Higher Secondary Schools and the introduction of one-year Pre-University course after Matriculation, both seem to be impracticable. Dr. Prasad has explained the monetary and other difficulties. Let us have something independently, if we are determined to make improvements in the quality of our Degrees. My suggestion is that instead of having a Pre-University course, why not have a three-year degree course after Intermediate ? That alone will improve the quality of our graduates.

I think, in the last meeting of Academic Council, I suggested this. Trained I.As. and I.Scs. have been very useful and are very much in demand.

(Minutes of the Meeting of the Academic Council held on the 22nd & 23rd December, 1955)

ଯାହାହେଉ ପାଠକମାନଙ୍କର କୌତୂହଳ ପାଇଁ 'ଷ୍ଟେଟ୍‌ସମ୍ୟାନ୍'ର ଉତ୍ତରଟି ଏଠାରେ ଦେଇଦେଉଛି ।

Statesman House, Calcutta
THE STATESMAN
The Statesman Private Limited

December 16th, 1957

Dear Dr. Mansinha,
Your article is interesting, but the issue is a dead one; the three-year degree course has now been accepted by almost every State. So the article, if published, would have no effect.

Yours sincerely
Sd/- (Chanchal Sarkar), Asst. Editor

କିନ୍ତୁ ଷ୍ଟେଟ୍‌ସମ୍ୟାନ୍‌ର ସହ-ସମ୍ପାଦକ ୧୯୫୭ରେ ଯେଉଁ ବିଷୟକୁ 'ମୃତ' (ଡେଡ୍) ଭାବିନେଇଥିଲେ, ତାହା ଏପର୍ଯ୍ୟନ୍ତ ଜୀବିତ ଅଛି ବୋଧହୁଏ । ତିନିବର୍ଷିଆ କୋର୍ସ ସ୍ୱର୍ଣ୍ଣାଣ୍ଡ ପ୍ରସବ କରିବାର ଯେଉଁ ଆଶା କରାଯାଉଥିଲା, ତାହା ତ ହେଉନି, ବରଂ ଇଣ୍ଟରମିଡ଼ିଏଟକୁ ଭାଙ୍ଗି ହାଇଏର ସେକେଣ୍ଡାରୀ, ପ୍ରାକ୍‌ବିଶ୍ୱବିଦ୍ୟାଳୟ, ପ୍ରାକ୍-ପ୍ରଫେସନାଲ୍ ଇତ୍ୟାଦି ଲଣ୍ଡଭଣ୍ଡ ବ୍ୟାପାରରେ ସମ୍ପୃକ୍ତ ସମସ୍ତେ ଉତ୍ୟକ୍ତ ହୋଇସାରିଲେଣି । ଆଶା କରୁଛି ଏସବୁ ପରିବର୍ତ୍ତିତ ହୋଇ ସୁସ୍ଥାବସ୍ଥା ପୁଣି ଫେରିଆସିବ ।

## ସ୍ୱପ୍ନସମ୍ବଳ ସଂସ୍କାରକ –

କିନ୍ତୁ ଏପରି ବ୍ୟର୍ଥ-ସଂସ୍କାର-ପ୍ରଚେଷ୍ଟା ସବୁରେ ମୁଁ କାହିଁକି ଯେ ଲାଗିଆସିଛି, ଏବେ ଶେଷ ଜୀବନରେ ବସି ବସି ଭାବିଲେ, ନିଜେଇ ବିସ୍ମିତ ହେଉଛି । ଭାବିବା ଓ ଭାବନାକୁ ସ୍ପଷ୍ଟ କରି କହିବାର ଏକ ଅକ୍ଷମଣୀୟ ଦୁର୍ବଳତା ରହିଆସିଛି, ଯାହାପାଇଁ କେତେ ହିନସ୍ତା ଏ ଜୀବନ ନ ଭୋଗିଲା ! କିନ୍ତୁ ସ୍ୱଭାବ ଯାଏ କେତେକେ ?

## ପାଠ୍ୟପୁସ୍ତକ ସଂସ୍କାର –

ଶିକ୍ଷା ବିଭାଗରୁ ବିଦାୟ ନେଇ ବିଶ୍ୱବିଦ୍ୟାଳୟର ଏନ୍‌ସାଇକ୍ଲୋପିଡ଼ିଆ ବିଭାଗର ଭାର ବହନ କଲା ପରେ ମଧ୍ୟ ସେହି ପୁରୁଣା ଅଭ୍ୟାସର ବଶବର୍ତ୍ତୀ ହୋଇ ପାଠ୍ୟପୁସ୍ତକ-ସଂସ୍କାର ଉପରେ 'ପ୍ରଜାତନ୍ତ୍ର'ରେ ଲେଖିବା ଆରମ୍ଭ କଲି । ଯା ଉପରେ ଦୀର୍ଘକାଳବ୍ୟାପୀ ଆଲୋଚନା ମଧ୍ୟ ଚାଲିଥିଲା । ଡକ୍ଟର ପ୍ରସାଦଙ୍କୁ ମେହେର କଲେଜରେ ଥିବାବେଳେହିଁ ଏ ସମ୍ପର୍କରେ ଏକ ଲମ୍ବା ଚିଠି ଲେଖିଥିବାର ମନେଅଛି । ବର୍ତ୍ତମାନ 'ପ୍ରଜାତନ୍ତ୍ର'ରେ ଲେଖି ଶ୍ରୀ ମହତାବ (ସେତେବେଳେ ମୁଖ୍ୟମନ୍ତ୍ରୀ ଓ ଶିକ୍ଷାମନ୍ତ୍ରୀ)ଙ୍କ ଦୃଷ୍ଟିକୁ ଏହି ଗୁରୁତର ଜାତୀୟ ସମସ୍ୟା ପ୍ରତି ଆକର୍ଷିତ କରାଇବାର ଚେଷ୍ଟା କରିଥିଲି କେବଳ ନୁହେଁ, ଶ୍ରୀ ମହତାବଙ୍କ ବିଚାରପାଇଁ ପାଠ୍ୟ-ପୁସ୍ତକ-ସଂସ୍କାରର ଏକ ଯୋଜନା ମଧ୍ୟ ଦେଇଥିଲି (ଦେଖନ୍ତୁ ପରିଶିଷ୍ଟ) । ପାଠକେ ସେଥିରୁ ଲକ୍ଷ୍ୟ କରିବେ ଯେ ମୁଁ କେବେହେଲେ

ପାଠ୍ୟ-ପୁସ୍ତକର 'ରାଷ୍ଟ୍ରୀକରଣ' ସପକ୍ଷରେ ମତ ଦେଇ ନାହିଁ । ଏବେ ବି ଏହା ମୋର ମତ ନୁହେଁ । ଡିମୋକ୍ରାସି ବା ଗଣତନ୍ତ୍ର ପ୍ରତି ଏହା ଏକ ଆତ୍ମଘାତୀ ବ୍ୟବସ୍ଥା । ଏହା କମ୍ୟୁନିଷ୍ଟମାନଙ୍କରହିଁ ଅପରିହାର୍ଯ୍ୟ କର୍ମଧାରା । ପ୍ରକୃତ ଡିମୋକ୍ରାଟିକ୍ ରାଜ୍ୟ ଇଂଲାଣ୍ଡ ବା ଆମେରିକାରେ ଏପରି ହେଲେ, ସେ ଦେଶରେ ବିପ୍ଳବ ହେବ । ପାଠ୍ୟ-ପୁସ୍ତକ-ସମ୍ପୃକ୍ତ ସକଳ ଗଲ୍‌ତିପାଇଁ ଏ ଦେଶର ଶିକ୍ଷା ବିଭାଗର ଉଚ୍ଚତମ କର୍ତ୍ତା ଡି.ପି.ଆଇ. ଓ ଶିକ୍ଷକମାନେହିଁ ଏକାନ୍ତଭାବରେ ଦାୟୀ । ଏ ଦେଶରେ ତ ଏତେ ଶିକ୍ଷକ-ସମ୍ମିଳନୀ ବସୁଛି, କୌଣସିଠି କୌଣସି ପାଠ୍ୟ-ପୁସ୍ତକ ଖରାପ ବା ଅବାଞ୍ଛିତ ବୋଲି କେବେ ପ୍ରସ୍ତାବ ଗୃହୀତ ହେବାର ପାଠକେ ଜାଣିବାକୁ ବା ଦେଖିବାକୁ ପାଇଛନ୍ତି କି ? ଏ ଦେଶରେ ଏପ୍ରକାର କାମ ଶିକ୍ଷକକଙ୍କଠାରୁ ଆପଣ ଆଶା କରିବେନାହିଁ । କେବଳ ଆଶାକରିବେ ଦରମା ବୃଦ୍ଧିର ପ୍ରସ୍ତାବ ଓ ଷ୍ଟ୍ରାଇକ୍‌ର ଧମକ । ଏତେ ଇଣ୍ଡିଆନ୍ ଡି.ପି.ଆଇ. ମଧ ଜଣକ ପରେ ଜଣେ ଗଲେ, କାହିଁ, ଜଣେହେଲେ ତ ଏପ୍ରକାର ଏକ ପ୍ରଧାନ ଜାତି-ଗଠନ-ବ୍ୟବସ୍ଥାର ଗଲ୍‌ତି ସବୁ ନିଜ ଅଫିସରେ ଘଟୁଥିଲେହେଁ ତା' ପ୍ରତି ସାମାନ୍ୟତମ ସଚେତନତା ଦେଖାଇନାହାନ୍ତି । ଜଣେ ଇଂରେଜ ଡି.ପି.ଆଇ. ଥିଲା, ଯାହାକୁ ପ୍ରକୃତ ଡ.ପି.ଆଇ. କୁହାଯିବ । କାରଣ ତା'ର ମୁଖ୍ୟ କାମ ଥିଲା ଏଇ କ୍ଷେତ୍ରରେ, ଯାହା ଏକାନ୍ତ ଉଚିତ । କିନ୍ତୁ ତା'ପରେ ? ଯେଉଁ ଦେଶରେ ଏକପକ୍ଷରେ ଶିକ୍ଷକ ଓ ଅନ୍ୟପକ୍ଷରେ ଶିକ୍ଷା ବିଭାଗର ଉଚ୍ଚତମ କର୍ତ୍ତାଙ୍କର ମଧ ଏଇ ହେଲା ମାନସିକତା ଓ ଆଭିମୁଖ୍ୟ, ସେଠି ପାଠ୍ୟ-ପୁସ୍ତକ କିଏ ଛପେଇବ, କିଏ ବିକିବ, କିଏ ଲାଭ ନେବ, ଏଇ ସବୁର ଏପଟ ସେପଟରୁ ଦେଶରେ ଭାବ-ବିପ୍ଳବ ଓ ଶିକ୍ଷା-ବିପ୍ଳବର ଛତୁ ଆପେ ଆପେ ଫୁଟିଯିବ କି ? ଅସମ୍ଭବ ସେ ଆଶା ।

ଶ୍ରୀ ବିଜୁ ପଟ୍ଟନାୟକଙ୍କର କର୍ତ୍ତୃତ୍ୱରେ ଯେଉଁ ଟେକ୍‌ଷ୍ଟ ବୁକ୍ ସଂସ୍ଥାର କମିଟି ପ୍ରବର୍ତ୍ତିତ ହେଲା, ସେଥିରେ ମୁଁ ଓଡ଼ିଆ, ସୋସାଲ୍ ଷ୍ଟଡ଼ିଜ୍(ସାମାଜିକ ପାଠ) ଓ ପ୍ରାକ୍-ବିଦ୍ୟାଳୟର ସିଲାବସ୍ ଗଠନରେହିଁ ବିଶେଷ ଭାଗ ନେଇ ସମ୍ପୃକ୍ତ ସିଲାବସ୍‌ଗୁଡ଼ିକ ଡ୍ରାଫ୍‌ଟ କରିଦେଇଥିଲି । ଏ ସଂସ୍ଥା ସହିତ ମୋର ଅନ୍ୟ ସମ୍ପର୍କ କିଛି ନଥିଲା ବା ନାହିଁ ।

## ଶ୍ରେଣୀ ଓ ସାର୍ଟିଫିକେଟ୍‌ର ମାରାତ୍ମକ ଅଯୌକ୍ତିକତା –

ଆମ ଶିକ୍ଷା ବ୍ୟବସ୍ଥାରେ ସାମଗ୍ରିକ ସଂସ୍କାରର ମୂଳଦୁଆରୂପେ ମୁଁ ସମସ୍ତ ପରୀକ୍ଷାରୁ ତୃତୀୟ ଶ୍ରେଣୀ * ପାସ୍ ଉଠାଇଦେବାକୁ ଓ ବିଶେଷକରି ମାଟ୍ରିକ୍ୟୁଲେସନ ପରୀକ୍ଷାରେ କୌଣସି ପ୍ରକାର ହେଲେ ଶ୍ରେଣୀ ନରଖିବାକୁ ମଧ ଥରେ ପ୍ରସ୍ତାବ ଆଣିଥିଲି । କାରଣ, ଆମ ଦେଶର ଏହି

---

* ଇଲଷ୍ଟ୍ରେଟେଡ୍ ଉଇକ୍ଲିର ଅକ୍ଟୋବର ୮, ୧୯୬୧ ସଂଖ୍ୟାରେ ଉତ୍ତର ପ୍ରଦେଶର ପ୍ରସିଦ୍ଧ ଉର୍ଦ୍ଦୁକବି ଓ ଶିକ୍ଷାବିତ୍ ଫିରାକ୍ ଗୋରଖପୁରୀ ସେହି ପତ୍ରିକାର ପୂର୍ବ ଏକ ସଂଖ୍ୟାରେ ପ୍ରକାଶିତ ମୋର ଭାରତୀୟ-ଶିକ୍ଷା-ସମ୍ପୃକ୍ତ ପ୍ରବନ୍ଧକୁ ଲକ୍ଷ୍ୟ କରି ଏଇପରି ଲେଖିଥିଲେ–

''Dr. Mansinha in his devastating criticism of Education in India, published in the Illustrated Weekly of India of April 23, 1961, has spoken many home-truths. Every conscientious lover of education will agree with him that the third division should be abolished.etc.''

ଶ୍ରେଣୀ-ବଣ୍ଟନ-ବ୍ୟବସ୍ଥା ଏକ ଭୀଷଣ ଅଯୌକ୍ତିକ କର୍ମ ବୋଲି ମୁଁ ବରାବର ମନେ କରି ଆସୁଛି । ଜୀବନରେ ଆମେ ଦେଖୁଛୁ ଯେ ଅନେକ ତୃତୀୟ ଶ୍ରେଣୀ ପିଲା ମଧ୍ୟ ପରେ ଖୁବ୍ ଭଲ କରିଛନ୍ତି । ପୁଣି ଅନେକ ପ୍ରଥମ ଶ୍ରେଣୀ ବି ଆଉଥରେ ପ୍ରଥମ ଶ୍ରେଣୀ ଦେଖୁନାହାନ୍ତି, ପରୀକ୍ଷାରେ ବା ଜୀବନରେ । ଗୋଟାଏ ମାର୍କ୍‌ର ଏପଟ ସେପଟରେ ଗୋଟିଏ ପିଲାର କପାଳରେ ଜୀବନଯାକ ଦାଗ ରହିଯାଉଛି 'ତୃତୀୟ ଶ୍ରେଣୀ' ବୋଲି । ମୋ ମତରେ ଏହା କେବଳ ଅଯୌକ୍ତିକ ଓ ଅର୍ଥହୀନ ବ୍ୟବସ୍ଥା ନୁହେଁ, ଏହା ଏକ ଘୋର ଅମାନବିକ କର୍ମ । ହୀନ ତୃତୀୟ ଶ୍ରେଣୀକୁ ତ କଲେଜରେ ପଶିବାକୁ ଦେଉଛ, ଯେପରି ଦେଉଛ ଗୌରବାବହ ପ୍ରଥମ ଶ୍ରେଣୀକୁ । ପ୍ରଭେଦ କ'ଣ ? ଚାକିରିବେଳେ ତୃତୀୟ, ଦ୍ୱିତୀୟ ଓ ପ୍ରଥମ– ସମସ୍ତେ ତ ଏକା ସ୍କେଲ୍ ଅଫ୍ ପେ ଭୋଗ କରନ୍ତି । କାହିଁକି ତେଣୁ ଏ ଜାତି ବିଭାଗ ? କି ତାର ତାତ୍ପର୍ଯ୍ୟ ? ତିନି ବିଷମ ଶ୍ରେଣୀର ପିଲା କଲେଜପାଠପାଇଁ ଯଦି ଏକାପରି ଯୋଗ୍ୟ ବିବେଚିତ ହେଲେ, ତେବେ ତମର କଲେଜ-ପାଠର କିଇବା ମାନଦଣ୍ଡ ? ଗୋଟିଏ ମାନଦଣ୍ଡ ହେଲେ ରଖ ଓ କହ ଯେ ଏଇ ମାନଦଣ୍ଡରେ ଯେ ପହଞ୍ଚିବ ସେଇ କେବଳ କଲେଜରେ ପଢ଼ିବାର ଯୋଗ୍ୟ ବିବେଚିତ ହେବ । ସେଠି ଶ୍ରେଣୀର ପ୍ରଶ୍ନ ଉଠାଉଛ କାହିଁକି ଓ କିପରି ? ପ୍ରତି ପରୀକ୍ଷାର୍ଥୀ ଗୋଟିଏ ଲେଖାଏଁ କାର୍ଡ଼ ପାଇବେ, ଯେଉଁଥିରେ ତା'ର ପ୍ରତି ବିଷୟରେ ମାର୍କ ଲେଖାଥିବ । ଯଦି ତମ ମାନଦଣ୍ଡକୁ ସେ ଆସିପାରୁନି, ତେବେ ତାକୁ ପୁଣି ପରୀକ୍ଷାରେ ବସିବାକୁ ଦିଅ, ଯେତ୍ତେ ଥର ତା'ର ଇଚ୍ଛା; ଯେପର୍ଯ୍ୟନ୍ତ ସେ ତମ ମାନଦଣ୍ଡରେ ନପହଞ୍ଚୁଛି । ସେ ମାନଦଣ୍ଡକୁ ସନ୍ତୁଷ୍ଟ ନକଲାଯାଏଁ ତାହାର କଲେଜରେ ପ୍ରବେଶ ନିଷେଧ ବୋଲି ଦୃଢ଼ ଓ ପରିଷ୍କାର ଭାବରେ କହ । ବୃଥାରେ ଗୁଡ଼ାଏ ଅର୍ଥହୀନ ଶ୍ରେଣୀ-ବିଭାଗ ବା ଫେଲ୍-ଫାଲ୍ ମାୟାଜଗତ କାହିଁକି ସୃଷ୍ଟି କରିଚାଲିଛ ? ଶିକ୍ଷା ବିଭାଗର ପ୍ରତ୍ୟେକ ସ୍ତର ବା ବିନ୍ଦୁରେ ପ୍ରତ୍ୟେକଟି ବ୍ୟବସ୍ଥା ଯୁକ୍ତିଯୁକ୍ତ ଓ ଚିନ୍ତାପୂର୍ଣ୍ଣ ହେବା ଏକାନ୍ତ ଉଚିତ । ଏକାନ୍ତ ଭାବରେ ବୁଦ୍ଧିଜୀବୀର ବିଭାଗ ହୋଇ ଏ ଦେଶର ଶିକ୍ଷା-ବିଭାଗ ମଧ୍ୟ କଣ ଚିନ୍ତାହୀନଭାବରେ କାମ କରି ଚାଲିଥିବ; ଏକ ଗଡ଼୍‌ଡଲିକା ଶ୍ରେଣୀ ପରି ?

ମୋର ଦୃଢ଼ ବିଶ୍ୱାସ, ବର୍ତ୍ତମାନର ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ମଝିକୁ କଲେଜରେ ପଶିବାର ଏକମାତ୍ର ମାନଦଣ୍ଡ ଧରି ଆମେ ପିଲାଙ୍କୁ ସେହି ମାନଦଣ୍ଡରେ ପହଞ୍ଚିବା ପାଇଁ ଯଦି ଏକାଧିକବାର ସୁବିଧା ଦିଅନ୍ତେ ତେବେ ସହସ୍ର ସହସ୍ର ପିଲା ଯେଉଁମାନେ ଜୀବନଯାକ ଏବେ 'ତୃତୀୟ ଶ୍ରେଣୀ' ବୋଲି ବା ଫେଲ୍ ବୋଲି ନିନ୍ଦିତ ରହୁଛନ୍ତି, ସେମାନେ ନିଶ୍ଚୟ ଉଚ୍ଚତର ଶ୍ରେଣୀର ଗୌରବ ଅର୍ଜନ କରିପାରନ୍ତେ ।

ଥରେ ମାତ୍ର ମାଟ୍ରିକ୍ୟୁଲେସନ୍ ପରୀକ୍ଷା କରିବ ଓ ତା'ରି ଉପରେ ନିର୍ଭର କରି ଗୋଟେ ପିଲାକୁ ଜୀବନଯାକ ଫେଲ୍ ବା ତୃତୀୟ ଶ୍ରେଣୀ କରି ଛାଡ଼ିଯିବ, ଇଏ କି ଯୁକ୍ତି ? ପୁଣି, ଫେଲ୍-ପିଲାକୁ, ତୃତୀୟ ଶ୍ରେଣୀ-ପାସ୍‌ର ଘୃଣା ଅର୍ଜନ କରିବାକୁ ଯଦି ଅନୁମତି ଦଉଛ, ଉଭୟ ଦ୍ୱିତୀୟ ଓ ତୃତୀୟ ଶ୍ରେଣୀର ପିଲାକୁ ପ୍ରଥମ ଶ୍ରେଣୀର ଗୌରବ ଅର୍ଜନ କରିବାକୁ ଆଉ ସୁଯୋଗ ନ ଦେବ କାହିଁକି ?

ମୋର ଏ ପ୍ରସ୍ତାବକୁ ସମସ୍ତେ ହସି ଉଡ଼େଇ ଦେଇଥିଲେ, ତତ୍କାଳୀନ ସିଣ୍ଡିକେଟ୍‌ରେ । କିନ୍ତୁ ମୋର ଦୃଢ଼ବିଶ୍ୱାସ, ଶ୍ରେଣୀ ଓ ସାର୍ଟିଫିକେଟ୍‌ର ଦୌରାତ୍ମ୍ୟର ସମୂଳ ନିଷ୍କାସନ, ଏ ଦେଶରେ ଶିକ୍ଷା-କ୍ଷେତ୍ରରେ ଏକାଧାରରେ ଆଦ୍ୟତମ ଓ ଗୁରୁତମ ସଂସ୍କାର ।

ସର୍ବଦା ଅସ୍ଥାନ-ଅବସ୍ଥାପିତ ଏକ ଅପାଂକ୍ତେୟ ଲୋକର, ତା' ଦେଶ ଓ ଜାତିକି ଗଢ଼ିବାର ଏହିପ୍ରକାର ବିବିଧ ବିଫଳ ସ୍ୱପ୍ନର ଆଉ ଏକ ଦୃଷ୍ଟାନ୍ତ ଦେଇ ଏ ଅଧ୍ୟାୟ ଶେଷ କରେଁ ।

ଓଡ଼ିଶାରେ କମ୍ ଲୋକ ଜାଣିଥିବେ ଯେ ସମଗ୍ର ଦେଶର ଶିକ୍ଷା-ବ୍ୟବସ୍ଥାର ପୁନର୍ଗଠନ ଲକ୍ଷ୍ୟରେ ମୁଁ ଇଂରାଜୀରେ ଏକ ପୂରା କିତାପ ପ୍ରାୟ ୨୫ ବର୍ଷତଳେ ଛାପି ବାଣ୍ଟିଥିଲି । ବହିଟିର ନାମ ଥିଲା 'Citizen Education' । ଗୋପବନ୍ଧୁ ସାହିତ୍ୟ ମନ୍ଦିର ତରଫରୁ ଛାପା ହୋଇଥିଲେ ମଧ୍ୟ ଏ ଦେଶରେ ନା 'ସମାଜ' ନା ଅନ୍ୟ ପତ୍ର-ପତ୍ରିକା ବା ବ୍ୟକ୍ତି ତା'ର ନାମୋଚ୍ଚାରଣ କରିନାହାନ୍ତି । ଅଥଚ ଦୁଇଟି ସର୍ବ-ଭାରତୀୟ ଶିକ୍ଷା-ବିଜ୍ଞାନ-ପତ୍ରିକାରେ ତା'ର ଉଚ୍ଛ୍ୱସିତ ପ୍ରଶଂସା ପ୍ରକାଶିତ ହୋଇଥିଲା, ଯାହା ପଢ଼ି ନିଜେ ଲେଖକ ବିଶେଷ ବିସ୍ମିତ ହୋଇଥିଲା । ପାଠକମାନଙ୍କ କୌତୂହଳପାଇଁ ପରିଶିଷ୍ଟରେ Indian Journal of Education (ଆଲାହାବାଦ) ଓ Progress of Education (ପୁନା)ର ଅଭିମତ ଦେଇ ସେହି ବିସ୍ମୃତ-କିତାପଟିକୁ କେବଳ ଜ୍ଞାତ-ସ୍ତରକୁ ଆଣିବାକୁ ଚେଷ୍ଟା କରିଛି ।

## ଚତୁର୍ଦ୍ଦଶ ଅଧ୍ୟାୟର ପରିଶିଷ୍ଟ-୧

୧୯୫୪ ମାର୍ଚ୍ଚ ୨୨, ୨୩ ଓ ୨୬ ତାରିଖରେ ବସିଥିବା ଉତ୍କଳ ବିଶ୍ୱବିଦ୍ୟାଳୟର ଆକାଡେମିକ କାଉନ୍‌ସିଲ୍‌ରେ ଓଡ଼ିଆରେ କଲେଜ ପାଠ୍ୟପୁସ୍ତକ ରଚନା ଓ ପରୀକ୍ଷା-ପ୍ରଣାଳୀ-ସଂସ୍କାର ଉପରେ ଡକ୍ଟର ମାନସିଂହଙ୍କଦ୍ୱାରା ଆଗତ ପ୍ରସ୍ତାବାବଳି ।

## କଲେଜ-ସ୍ତରରେ ଓଡ଼ିଆରେ ପାଠ୍ୟ-କିତାପ ରଚନାର ପ୍ରସ୍ତାବ:—

96. Dr. M. MANSINHA :- I move.

Dr. Mansinha's resolution regarding compiling text-books in the regional language.

"Resolved that considering the increasing importance of regional languages in post independent India, which are expected to be the medium of instruction in the colleges after 10 years in the different linguistic regions, a Committee be formed to report at the next meeting of the Academic Council what steps should be taken to expedite compilation to text-books in Oriya in time, for University studies and examinations. They shall report the financial responsibilities of the Government and the University in the matter and also the organisational set up needed for the purpose."

The Committee to consist of –

Dr. B. Prasad ...Chairman

Members – Dr. B.K. Behura( to act as Secretary)

Dr. Radhanath Rath

Dr. Mahendra Misra

Dr. Bansidhar Samantarai

## ପରୀକ୍ଷା-ପ୍ରଣାଳୀ-ସଂସ୍କାର-ପ୍ରସ୍ତାବ –

97. Dr. M. MANSINHA –

Dr. Mansinha's resolution to reform the examination system.

I move that a Committee be formed to report to the Academic Council at its next meeting, on to what extent and manner, we should reform our examination system in accordance with the recommendations of the University Education Commission of 1949, so as to improve the quality of our products, which is very unsatisfactory at present.

The Committee to consist of –

Dr. G.B. Banerjee ... Chairman

Members – Principal, Training College (To act as Secretary)

Mr. Satrughna Nath

Dr. Radhanath Rath

Mr. B. B. Das

Dr. M. Mansinha

X X X

Dr. B. Prasad – The Commitee should consist of almost all the teachers of the Training College and some other people as accepted by the House. I propose that the composition will be as follows–

1. Principal, Training College,
2. Mr. Satrughna Nath
3. Dr. R. N. Rath
4. Dr. M. Mansinha
5. Mr. B. B. Das
6. All teachers of the Training College

The proposal was seconded and accepted. It was further decided that the Committee should submit its report for consideration.

## ପରୀକ୍ଷା-ସଂସ୍କାର-କମିଟିର ରିପୋର୍ଟ –

**Examination System in the University**

A meeting of the Committee appointed to discuss the resolution of Dr. M. Mansinha on the modification of examination in the light of the recommendations of the University Education Commission was held on the 1st and 2nd November, 1964 at 5.30 P.M. with Dr. Mansinha in the chair.

Members present –

1. Dr. M. Mansinha in the chair
2. Shri B. N. Rath
3. Shri B. B. Das
4. Dr. R. Rath
5. Dr. R. C. Das
6. Shri S. Das
7. Shri R. S. Senapati

Various aspects of the resolution were discussed and relevant portion of the University Commission Report and of the Secondary Education Commission Report were read out, discussed and the following recommendations were made by the Committee for consideration of the Academic Council.

1. That one-third of the marks allotted to each subject be reserved for work done during the course of instruction and be assigned in the following manner –

There shall be five progress tests of 45 minutes' duration during the year, followed by a comprehensive test of three hours' duration in the 1st and 3rd years of the college courses. Similarly there shall be two progress tests followed by a comprehensive test in the 2nd and 4th years. The progress tests will contribute to one-third and the comprehensive test to two-thirds of the total marks, for consideration of class promotions and for selection for the University Examination. And for the University Examination the seven progress tests administered by the colleges during the course of instruction will contribute to one-third of the total marks in each subject and the University Examination will contribute to two-thirds of the total.

**The nature of the progress tests**

For each subject there shall be a Board of Teachers consisting of one representative from each college, which will formulate the progress tests to be conducted throughout the year to ensure uniformity. This is suggested as a preliminary measure to let the colleges be acquainted with the principles of objective text-construction. If the Board so desires, help from available experts may be taken.

2. That the principle of Compartmental Examination, subjectwise, be accepted forthwith dividing the college courses into groups. It is suggested that there may be two groups in I.A. and I.Sc. one for the languages and the other for the rest. In B.A. there may be three groups, one for the languages and two for the optional subjects. In B.Sc. each subject will form a group. There should be no compartmental examination in Honours subjects. Candidates will have the option to take the whole examination or to take it by groups. A candidate will be deemed to have passed a group if only he or she passes in each constituent subject of the group.

In view of the above suggestions, the question of fixing up the pass marks for each group may be reviewed.

3. The Committee is in entire agreement with the recommendations of the University Commission for the modification and improvement of the existing essay-type examination. But it feels that for this purpose it is very necessary that the paper-setters and examiners should be persons who are actually teaching the books convered.

4. The Committee feels that no examination should be of more than three hours' duration and there should not be more than one examination per day.

Sd. M.Mansinha
Sd. B. N. Rath
Sd. B. B. Das
Sd. R. Rath
Sd. R. C. Das
Sd. S. Das
Sd. R. S. Senapati

The 2nd Nov, 1954.

## ପରିଶିଷ୍ଟ-୨

## ଓଡ଼ିଶା ଆର୍ଟସ୍ ଏଣ୍ଡ କ୍ରାଫ୍ଟସ୍ କଲେଜର ଯୋଜନା

D.O. No. 2985

Dr. M. Mansinha, M.A., Ph.D. (Durham)

Principal, G. M. College
Sambalpur,
The 13th August, 1954.

Dear Mr. Rath,

I am sending herewith a scheme for the establishment of a school of arts and crafts in Orissa for discussion in the Syndicate.

I shall be much obliged if you kindly find a place for it in the agenda of the next meeting of the Syndicate as promised by you and as desired by other members of the Syndicate.

Yours sincerely
Sd. M. Mansinha

Sri G. C. Rath,
Registrar, Utkal University, Cuttack.

## ପରିଶିଷ୍ଟ-୩

## ସିଟିଜେନ୍ ଏଡୁକେଶନ୍ ନାମକ ପୁସ୍ତକ ଉପରେ ଅଭିମତ

### (୧)

ଇଣ୍ଡିଆନ ଜର୍ଣ୍ଣାଲ ଅବ୍ ଏଡୁକେଶନ୍ (Vol. VII Nos. 9-10)ର ଅଭିମତ–

Citizen Education – By Dr. Mayadhar Mansinha, M.A., D.Ed., Ph.D. (Durham). Published by the Gopabandhu Sahitya Mandir, P.O. Chandin Chauk, Cuttack (Orissa).

The title of the book is a little misleading. By Citizen Education one generally understands Education for Citizenship in its restricted sense. But the author of this remarkable booklet has used these words to embrace the whole field of National Education and Educational Reconstruction. Dr. Mansinha is no admirer of the present system of education but at the same time he has no patience with those who tinker with reforms. His book is divided into two sections. First comes an analysis of the argument which will save many readers from losing their way. The "Fundamental Whys and Wherefores of Education", written in the form of a chat between the Reader and the Author give insight into the author's mind and heart and bring out clearly his views on various problems of Education,

viz. the necessity of school education, the unreal nature, the expensiveness, the uniformity and the unproductiveness of the present-day education, and the pros and cons of free and compulsory education. The second part is more constructive. It gives in detail the author's scheme of reorientation of education consisting of (1) General Education and (2) Higher Education.

The General Education should cover the period of infancy and pre-adolescence from the age of 5 to 14 or 15. It should train the hands and eyes by (a) Arts and Crafts, by (b) Knowledge of Arts and Science, by (c) Character Formation and Religious Education. It should have : a Primary School stage from the age of 5 to 11 consisting of the Three R's and Fairy. Tale period – 5 to 7 and the proper primary education period – 7 to 11; and an Elementary School stage from the age of 11 to 15 to teach sciences, mathematics, geography and astronomy, civics, economics, commerce, cultural history of the world, Hindustani and English, provincial literature, hygiene, carpentry and market-gardening.

The Higher Education should give higher instruction, both general and technical. Each district might have an Arts College, a school of medicine, a school of arts and crafts, a school of agriculture and others of similar type. Science classes should always be attached to allied technical institutions.

The author has made a great many suggestions with regard to the Academy of Research and Publication, the function of Universities, the female education, the medium of instruction, the examination, school teachers, the holidays, the oriental education and Direction and Inspection.

Dr. Mansinha has been very ambitious in undertaking to expound schemes of educational reconstruction in its various aspects– economic, social political, spiritual, in a booklet of 59 pages. He has endeavoured to accomplish his task with more than oridinary skill although we are afraid he has touched only a fringe of each problem. But his enthusiasm is catching and what he lacks in details is more than made up by his emphasis on the outline. He is definite in his suggestions but has been unable to amplify many of these owing to the limitation of space. The author's undeniable brilliance and complete self-assurance make this a book to be reckoned with. Those who accept the postulates on which his thorough-going scheme of Educational Reform is founded will welcome the

assistance it gives to their cause, while those who profoundly disagree will yet find it instructive and thought-provoking. We wish the book could have been got up better. But war time publications cannot be fastidious with regard to their publishers.

## ପ୍ରଗ୍ରେସ୍ ଅବ୍ ଏଡୁକେଶନ୍(Vol XIX, No. 4-5), ପୁନାର ଅଭିମତ

### CITIZEN EDUCATION

By Dr. M. Mansinha, M.A., Ph.D., E.Ed., published by G.S. Mandir, P.O. Chandinchauk, Cuttack-1.

The book embodies the views of the writer on what the present Indian education is and what it should really be. The preface tells us why the author, who has been in touch with the educational Institutions for the last many years is so much dissatified with the present 'bookish and impractical' education and why he puts forth a 'scheme' of his own, evolved out of experience and study, which will make the boy a true citizen of India, even at these unusual times.

The first section deals with the fundamental 'why and wherefores' of Education and expresses in strong terms the feelings of the writer against the present system, which forgets the needs of the country and turns the nation's manhood into misfits and unfits.

The observations, many of which are rather strongly worded, probably because of the intense feelings of the writer, are such as can be agreed to by those who have studied the present condition of Indian education. Dr. Mansinha rightly points out that our education is divorced from life but he does something more, he offers his 'humble scheme, showing practical ways of eradicating the evils of the present system of education in India and realising the ideals adumbrated here.' He does not merely end with criticism as many do, but comes forth with a constructive and thoughtful scheme of his own, for which he really deserves credit. He calls his scheme, 'citizen education' for it rests on a system that will make every educated man a producer rather than a mere consumer of wealth, that will make him contribute something to fertilise the soil he lives on,' and that will make him a citizen first and an individual afterwards.

The second part, which is more important and thought-provoking gives in details the scheme, together with the 'new suggestions'

showing how it should be worked out. It is impossible to discuss in details in this brief review, the 'scheme' of the writer, so eloquently put forth, and raising so many issues. The writer's observations, on General Education, The Teaching of English medium of Instruction, Female Education etc. are really refreshing and at times original, though one may not agree with him in certain details. We need not point out that the 'scheme' is worth trying, at least, in certain respects, shough we are afraid that schemes of this type, however valuable and practical they may be, cannot be executed properly unless they are sufficiently backed by 'manpower.'

Suffice it for us to say that the 'scheme' detailed in part II deserves to be critically studied and given a fair trial by those who control Education. Mr. Mansinha deserves praise for giving to the Educational World a very thoughtful 'treatise' aiming at reorganising the present systems, shaping it to suit the needs of the country and making it truly national and rational, a treatise, that embodies the wisdom and experience of a thoughtful and sincere worker who has the interest of his country at heart.

## ପରିଶିଷ୍ଟ - ୪

## ପାଠ୍ୟପୁସ୍ତକ ସଂସ୍କାର ଯୋଜନା

### (ତତ୍କାଳୀନ ଶିକ୍ଷାମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ନିକଟରେ ଉପସ୍ଥାପିତ)

Dear Sir,

I am grateful to you that in response to my letter of 9.12.1960, you have asked me in your D.O. letter No. 1962- C.M. of 16th December, 1960, to supply you with **Precise Suggestions** for improving textbooks in Orissa. I hope the enclosed small note will make my humble suggestions clear to you.

The **Precise Suggestions** are contained in the **Summary** at the end of the Note, which describe the justification for the suggestions.

Thanking you most sincerely for the keen interest that you show for improving education in this State.

I remain<br>
Yours sincerely,<br>
Sd/- ( M. Mansinha )

Dr. H. K. Mahtab,<br>
Chief Minister, Orissa,<br>
New Capital, Bhubaneswar.

## A NOTE ON THE REORGANISATION OF TEXTBOOKS FOR PRIMARY AND SECONDARY SCHOOLS IN ORISSA

At present, the text-books in Orissa receive official sanction from two agencies. One is the D.P.I.s' office and the other, the Board of Secondary Education. But the irony or the situation is that neither the D.P.I. nor the Secretary, Board of Secondary Education ever, opens even the covers of one single book, out of the hudreds that get introduced in our schools, under their signatures. The machinery of selection is so circuitous that no particular person could be held responsible for the rottenness of books selected. The D.P.I. is an otherwise very busy officer. For one man to look after Colleges, Training Institutes, High Schools, Primary Schools, Basic Schools, Ashram Schools and all the rest of them and attend also conferences and Committees and still spare time to go through the hundreds of textbooks in all subjects, is to expect the impossible. The same may be said of the Secretary or the Chairman of the Board of Secondary Education.

Hence, **firstly,** it is suggested that this unrealistic and undesirable state of affairs should be put an end to, at once. Sanction of textbooks should not lie with these overbusy officers under whose signature these are passed off, but who actually cannot spare time, to look into even one of them. The person under whose signature the books shall get sanction, should be solely responsible for each one of them.

**Secondly,** the textbooks in Orissa, are dividedly selected by two agencies. The D.P.I. selects books for some classes, leaving the Secondary Board to select for others, neither consulting the other for a co-ordinated plan. This is another educational wrong that is being non-chalantly committed by our authorities, forgetting that education is a continuous and integrated process.

I wonder how our great educationists so cleanly forget, that Primary, Middle and Secondary education is one compact whole, that the various **classes are not 'educational units'** but are merely **time-units,** devised for only functional convenience, that a textbook prescribed for the lowest class is, and should be, integrally related to that, in the same category, chosen for the highest and should thus be reviewed together by one single competent authority or person as parts of one continuous whole, rather than by as many as the number of books submitted, without one single unitary inspiration or co-ordinating force guiding them to one common objective.

**Thirdly,** while it is desirable that all the textbooks from Class I to Class XI, taking this entire period as a continuous educational unit, should be selected by one authority it is still more so that the textbooks themselves should be prepared in graded and integrated series for each subject and not as isolated fragments for this and that class, as is criminally practised in Orissa today. The writer or publisher for example, who in a hurry to get a little money, somehow produces a book for Class V. or Class VII, should be asked to show, to what graded and continous plan of his, covering the entire unit of primary-*cum*-secondary eduation, those particular books belong. Otherwise, those books should not be considered at all. The authorities in Orissa, perpetrate a veritable educational crime, by asking and accepting books for particular classes, absolutely unrelated with what goes before and what comes after. This is the biggest factor in encouraging and patronising unworthy writers and publishers and is the fecund mother of scandalous rackets in the world of textbooks. If the authorities demanded from textbook writers and publishers only **complete series of textbooks** covering the whole unit of primary and secondary education written according to graded plans based on scientific educational principles, then, sure enough, occupation of half the tribe of textbook writers and publishers would be gone at once and the racket in textbooks would vanish.

Viewed in this light, the syllabi formulated by the authorities are also ridiculously defective. A recent syllabus for Oriya readers, published by the Board of Secondary Education made no sense, not only educationally, but even linguistically. This is both a shame and a national calamity.

But anybody interested in this matter, so vital to the wellbeing of our nation, might just pay a visit to the Stewart School at Cuttack to see for himself how textbooks are planned and selected. There, he will find exactly what this writer has been clamouring for. And this is the practice in all civilised countries. Nowhere a textbook is selected for a particular class without questioning its integral relationship with those studied before and those to be studied after.

**Fourthly,** the baneful practice of selecting textbooks **every year,** leaves no time for anybody concerned with the whole affair, for a review of the reactions to the books already selected. It is a suicidally hectic process, and most undesirable in the field of education where deep thinking, liesurely planning, and slow processing should be the fundamental condition. But without caring for the reactions to

previous selections, we in Orissa, go on blindly announcing new textbooks year after year. Financially, this has been a curse also to innumerable parents in this poor land of ours.

**Fifthly,** the inordinate importance given to textbooks in our schools should also be considerably curtailed. This is highly un-educational in principle. A text-book is only a guide to the subject-teacher. There is no absolute educational logic to compel each student to buy and posses particular books. The student comes to a school to master a subject, and not to memorise a particular book (more often than not a worthless one) of a particular writer. Both teaching and examinations should be run on **subjects,** rather than on particular **books** by particular authors, compulsorily taught on the supposed direction of the D.P.I. or the Board of Secondary Education.

With this reorientation also, the scandalous rackets in the textbook would disappear to a very large extent.

**Sixthly,** as a corallary to the above, even the selected textbooks by particular authors should not be declared compulsory for any school or school teacher. There is educational necessity to make the syllabus and the syllabus-based examinations compulsory for all schools. But there is no meaning in making the textbooks also compulsory. It is this practice alone, of all factors, that creates all the evils in textbook production. A worthy teacher can as well train his students in any subject strictly according to syllabus, without using any textbook. Or, he may use whatever textbook he likes. Why compel him to use a particular book by a particular writer ? This does good to nobody except to the rapacious publishers. This should be stopped.

**Seventhly,** all our textbooks should be planned and written, inspired with the one grand idea of making India great and to make democracy a live force in our day-to-day life. The individual contribution of each citizen to the total greatness of the Nation should be emphasised all through and the role of the citizen as a producer of the Nation's wealth and prosperity should be constantly drilled into young minds. The ideal and practice of hard work, of struggles and trials should be made parts of the character of the new generation through textbooks of all subjects.

## SUMMARY

My **precise suggestions,** therefore are as follows –

1. The selection of textbooks should not be the responsibility of of officers like the D.P.I. or chain man of the Secondary Board, who are otherwise very busy and cannot spare the time needed for deep thinking, thorough revisioning and comprehensive planning that should lie behind them. The selection of textbooks should not be announced under signature of officers who cannot be held responsible for their contents. This turns out a Governmental deceit practised on each of our new generations.

2. This most vital work, on the otherhand, should be entrusted to an independent Committee of experts and educationists. Headed by an elderly Educationist of very high intellectual reputation and integrity, this Committee shall consist of only experts, one each for each subject. For example, for Georgraphy, the Committee shall call in as a member, the Professor or an Assistant Professor of Georgraphy of the Ravenshaw College or any other college. The same principle is to be followed in respect of all other subjects.

3. This Committee shall not merely accept or reject, without giving any reason, the books submitted for review, as is the practice now, but shall extend helpful co-operation and guidance to authors and publishers in getting satisfactory textbooks prepared.

4. This Committee shall also help the concerned authorities in formulating reasonable, intelligent, graded and practical syllabi for all subjects in our schools. The existing syllabi stand in need of thorough revision.

5. The text-books in all subjects shall be judged as **whole sets,** covering the complete unit of primary-*cum*-secondary education and should never be accepted as unconnected, isolated fragments.

6. There shall be a gap of at least **five years** between one announcement of textbooks and another, so that all concerned (the proposed textbook committee, the publishers and the teachers) shall get enough time to understand what is worthy and what is defective in the books previously introduced and shall start preparing the next sets in the light of their collective experience of the books already in use.

7. To diminish the most undesirable predominance of textbooks in our educational system, examinations should be so reoriented as to be based mostly on the fundamentals of the subjects themselves, rather than on particular textbooks.

8. As a corollary to the suggestion (7) above it should be made unambiguously clear to teachers all over the country, that there should be absolutely no obligation for any school to use any particular textbook. All that the Education Department shall demand from the teachers is that subjects are taught in different classes properly and according to the syllabus. The Department need not show any interest at all in particular books of particular publishers being studied in schools. Their only concern should be on how a child masters a subject.

9. All textbooks for our schools, not excluding even those in the Sciences and Mathematics, should be planned and written with our eyes on one single super-objective, that is, the **rebuilding of the Democratic Republic of India.** Every word, every sentence in each lesson of the textbooks should be viewed in the light of that vital need of our Nation at present.

10. This applies, in particular, to the Literature Reader series. It is the Literature Readers that shall really help build the new generation. All other subjects only 'inform'. Literature alone 'forms' the young mind.

And it is through this medium only that the Communist Government of Russia have built up the most advanced Nation on the Earth,at present, out of an illiterate superstitious mass, in just 40 years' time.

We have yet to realise what a powerful means textbooks are, for good, as well as and much more so, for evil.

---

## ପଞ୍ଚଦଶ ଅଧ୍ୟାୟ

# ସହଜ ଓ ଅପକାରକ ଡିଗ୍ରୀର ବିରୋଧ

### ବିଶ୍ୱବିଦ୍ୟାଳୟର ବ୍ୟକ୍ତିତ୍ୱ –

ବିଶ୍ୱବିଦ୍ୟାଳୟ ହେଲା ଦେଶର ତରୁଣ ସମାଜକୁ ଜ୍ଞାନଦୀପ୍ତ କରି ଗଢ଼ି, ବାହାର ଜଗତକୁ ଛାଡ଼ିଦେବାର ସାଧନା-ପୀଠ । କେବଳ ଅଭିଶପ୍ତ ଭାରତବର୍ଷରେହିଁ କଲେଜ ବା ବିଶ୍ୱବିଦ୍ୟାଳୟକୁ ଯେକୌଣସିମତେ ଖଣ୍ଡିଏ ଖଣ୍ଡିଏ ଡିପ୍ଲୋମା ମାରିନେବାର ଏକରକମ ସିଭିଲ୍-ସପ୍ଲାଇ-ଅଫିସ୍ ବୋଲି ଧରାଯାଏ । ଠିକ୍ ସେହି ଯୋଗୁଁ ଓ ସେହି ପରିମାଣରେ ହିଁ ଏ ଜାତି ଅପାରଗ ଓ ଦୋଷଦୁଷ୍ଟ ହୋଇ ରହିଛି ଓ ରହିବ । ସ୍ୱାଧୀନତା ପର ଭାରତବର୍ଷରେ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ସର୍ବତ୍ର ଯେ ଅଧୋଗାମୀ ହୋଇଛି, ଏହା ବର୍ତ୍ତମାନ ପ୍ରକାଶ୍ୟ ଆଲୋଚନା ଓ ଉଚ୍ଚତମ କର୍ତ୍ତୃପକ୍ଷଙ୍କର ମସ୍ତକ-ବ୍ୟଥାର କାରଣ ହୋଇଛି । ଏହି ଅଧୋଗତିର ମୁଖ୍ୟ କାରଣ ଏହି ଯେ, ଏ ଦେଶରେ ସାଧାରଣ ଲୋକଙ୍କ କଥା ଛାଡ଼, ବିଶ୍ୱବିଦ୍ୟାଳୟର ତଥାକଥିତ ପ୍ରଫେସରମାନେ ମଧ୍ୟ ବିଶ୍ୱବିଦ୍ୟାଳୟକୁ ଏକାନ୍ତଭାବରେ ଏଇ ସ୍ୱୟଂସମ୍ପୂର୍ଣ୍ଣ, ଜ୍ଞାନ-ତପସ୍ୟାର ଓ ଜାତିର-ତରୁଣ-ସମାଜର-ଗଠନ-ପୀଠ ବୋଲି ମନେନକରି ତାକୁ ନିଜର ପ୍ରତିଷ୍ଠା ଓ ସେହି ଲକ୍ଷ୍ୟରେ ସହଜଲଭ୍ୟ ଅନୁଗ୍ରହ ବଣ୍ଟନର କ୍ଷେତ୍ର ବୋଲି ମନେ କରୁଛନ୍ତି । ଚାରିଆଡ଼େ ତେଣୁ ବିଶୃଙ୍ଖଳା । କିନ୍ତୁ ଆଜି ବି ଯାଅ ଇଂଲାଣ୍ଡ, ଜର୍ମାନୀ ଓ ଜାପାନ ପ୍ରଭୃତି ସଭ୍ୟ, ଜ୍ଞାନଦୀପ୍ତ ଦେଶମାନଙ୍କୁ, ସେଠି ଆଜି ବି ପ୍ରତି ବିଶ୍ୱବିଦ୍ୟାଳୟରେ, ପ୍ରତି କଲେଜରେ ଓ ପ୍ରତି ସ୍କୁଲ୍‌ରେ ଦେଖିବ ଏପରି ଶିକ୍ଷକ ଓ ଶିକ୍ଷୟିତ୍ରୀ ଯାହାଙ୍କର ଜୀବନର ଏକମାତ୍ର ଲକ୍ଷ୍ୟ ହେଉଛି, ସଂପୃକ୍ତ ଦେଶର ତରୁଣ ସମାଜକୁ ଜ୍ଞାନଦୀପ୍ତ ଓ ବଳିଷ୍ଠ-ବ୍ୟକ୍ତିତ୍ୱ-ସମ୍ପନ୍ନ ମନୁଷ୍ୟ ଭାବରେ ଗଢ଼ି ଛାଡ଼ିଯିବା । କିନ୍ତୁ ବିରାଟ ଏଇ ଭାରତବର୍ଷର ସହସ୍ର-ସହସ୍ର ବିଦ୍ୟାୟତନରେ ଆଜି କାହିଁ ଏ ଜ୍ଞାନ ସାଧନା ଓ ଜାତିପ୍ରୀତିର ମହନୀୟ ଆଦର୍ଶ ? ବିଶ୍ୱବିଦ୍ୟାଳୟର ଏକମାତ୍ର ଲକ୍ଷ୍ୟ ଯେଣୁ ହେବା ଉଚିତ ଜାତିର ତରୁଣ ସମାଜକୁ ଜ୍ଞାନଦୀପ୍ତ, ଉତ୍ତମ ଓ ବଳିଷ୍ଠ ମନୁଷ୍ୟ କରି ଗଢ଼ିବା, ତେଣୁ ସେଠାରେ ପାଠ୍ୟକ୍ରମ, ଅଧ୍ୟାପକ ନିର୍ବାଚନ, ଅଧ୍ୟାପନା ଓ ପରୀକ୍ଷାର ପ୍ରକାର, ସମସ୍ତହିଁ ସେହି ଲକ୍ଷ୍ୟରେ ସଂଗଠିତ ହେବାର କଥା । ସଦ୍ୟ, ଶସ୍ତା ଲାଭ ପାଇଁ କୌଣସି ବିଭାଗରେ ହେଲେ ଲକ୍ଷ୍ୟର ମାନବିନ୍ଦୁକୁ ତଳକୁ ଖସେଇ ଦେବା ଛାତ୍ର, ଅଧ୍ୟାପକ ବା କର୍ତ୍ତୃପକ୍ଷ କାହାରି କଳ୍ପନାକୁ ମଧ୍ୟ ଆସିବାର କଥା ନୁହେଁ । ପାଠ୍ୟକ୍ରମ, ଅଧ୍ୟାପନା, ପରୀକ୍ଷା ଓ ଅଧ୍ୟାପକର ଜ୍ଞାନ ଓ ବ୍ୟକ୍ତିତ୍ୱ—ଯେଉଁଠାରେ ହେଲେ ମାନବିନ୍ଦୁକୁ ତଳକୁ ଖସାଅ ନା କାହିଁକି, ତାହା ଜାତିର ଆଗାମୀ ବଂଶଧର ଉପରେ ସମୂହଭାବରେ ମାରାତ୍ମକ ପ୍ରତିକ୍ରିୟା ସୃଷ୍ଟି କରିବ । ତେଣୁ ଗତ ଶତାବ୍ଦୀ ପର୍ଯ୍ୟନ୍ତ ଚସର-ସେକ୍ସପିୟର-ମିଲ୍‌ଟନ୍‌ଙ୍କ ସୃଷ୍ଟି

ଦ୍ୱାରା ଅସାମାନ୍ୟ ଭାବରେ ସମୃଦ୍ଧ ହୋଇଥିଲେହେଁ ଇଂଲାଣ୍ଡର ଅକ୍ସଫୋର୍ଡ଼ ଓ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟମାନଙ୍କରେ ଇଂରାଜୀ ଭାଷା ଓ ସାହିତ୍ୟକୁ ପାଠ୍ୟ-ନିର୍ଘଣ୍ଟରେ ସ୍ଥାନ ଦିଆଯାଉନଥିଲା । ସେପର୍ଯ୍ୟନ୍ତ ସେ ବିଶ୍ୱବିଦ୍ୟାଳୟମାନଙ୍କର ପ୍ରଫେସରମାନେ ନିଜ ଭାଷା ଇଂରାଜୀକୁ ଗ୍ରୀକ୍, ଲାଟିନ୍‌ର ସମକକ୍ଷ ବୋଲି ଭାବୁ ନ ଥିଲେ ଓ ଶସ୍ତା ଜାତୀୟ ପ୍ରେରଣାରେ ଇଂରାଜୀକୁ ପାଠ୍ୟ ନିର୍ଘଣ୍ଟରେ ପୂରାଇ, ସେମାନେ ବିଶ୍ୱବିଦ୍ୟାଳୟର ଲକ୍ଷ୍ୟ ଓ ମାନବିନ୍ଦୁକୁ ତଳକୁ ଖସାଇବାକୁ ଚାହୁଁନଥିଲେ ।

## ପାଠ୍ୟ-ବିଷୟର ସହଜାତ ମୂଲ୍ୟ –

ଶିକ୍ଷା-ଶାସ୍ତ୍ର ସହିତ ଯେଉଁମାନେ ପରିଚିତ, ସେମାନେ ଜାଣନ୍ତି ଯେ, ପ୍ରତ୍ୟେକଟି ଅଧିତବ୍ୟ ବିଷୟର, ସଂସାରରେ ତାର ବ୍ୟାବହାରିକ ମୂଲ୍ୟ ଛଡ଼ା, ଏକ ଅନ୍ତର୍ନିହିତ ଗୁଣ ଥାଏ, ଯାହା ବିଦ୍ୟାର୍ଥୀର ବୁଦ୍ଧି ଓ ଆତ୍ମାକୁ ଗଢ଼ିବାରେ ସାହାଯ୍ୟ କରିଥାଏ । ଜ୍ୟାମିତି ଶାସ୍ତ୍ରର ଜୀବନରେ ପ୍ରୟୋଜନୀୟତା ଖୁବ୍ କମ୍ । କିନ୍ତୁ ଜ୍ୟାମିତିକୁ ପ୍ରାଚୀନ ଗ୍ରୀକ୍‌ମାନେ ପିଲାଙ୍କ ପାଠ୍ୟକ୍ରମରେ ଉଚ୍ଚସ୍ଥାନ ଦେଇଥିଲେ, କାରଣ, ତା'ଦ୍ୱାରା ପିଲାର ବିଚାର-ଶକ୍ତି ବଢ଼ିବାର ଆଶା କରାଯାଏ । ସବୁ ଲୋକେ ସଙ୍ଗୀତଜ୍ଞ ହୋଇପାରିବେ ନାହିଁ । କିନ୍ତୁ ପ୍ରାଚୀନ ଗ୍ରୀକ୍‌ମାନେ ତାଙ୍କ ବିଦ୍ୟାଳୟମାନଙ୍କରେ ସଙ୍ଗୀତକୁ ମଧ୍ୟ ବାଧ୍ୟତାମୂଳକ ବିଷୟ ରଖିଥିଲେ, କାରଣ ସେମାନେ ବୋଧକରୁଥିଲେ ଯେ, 'ମ୍ୟୁଜିକ୍' ମନୁଷ୍ୟର କର୍ମ, ଚିନ୍ତା ଓ ବ୍ୟବହାରରେ ସାମଞ୍ଜସ୍ୟ ଓ ଛନ୍ଦୋମୟତା ଆଣିବାରେ ସାହାଯ୍ୟ କରିବ । ଏବେ ଏଇ କାରଣରୁ ୟୁରୋପର ସର୍ବତ୍ର ସ୍କୁଲ୍‌ମାନଙ୍କରେ 'ମ୍ୟୁଜିକ୍' ବ୍ୟାପକଭାବରେ ଶିକ୍ଷା ଦିଆଯାଏ । ମ୍ୟୁଜିକ୍ ପରି, ଠିକ୍ ସେହିପରି ବୌଦ୍ଧିକ କାରଣରୁ, ବ୍ୟାକରଣ ବା ଚିତ୍ରାଙ୍କନର ମଧ୍ୟ ପାଠ୍ୟକ୍ରମମାନଙ୍କରେ ଏବେ ବ୍ୟବସ୍ଥା ରହୁଛି । ଏ ପ୍ରତ୍ୟେକଟିରୁ ବିଚାରଶକ୍ତି, ସ୍ମୃତି, ସଙ୍ଗତ-ଜ୍ଞାନ ଓ ସୌନ୍ଦର୍ଯ୍ୟ-ପ୍ରୀତି ପ୍ରଭୃତି ଆମ ମାନସର ଭିନ୍ନ ଭିନ୍ନ ବିଭାଗକୁ ଗଢ଼ିବାରେ ସାହାଯ୍ୟ ମିଳେ ।

ଗୋଟିଏ ଗୋଟିଏ ବିଷୟପରି ଗୋଟିଏ ଗୋଟିଏ ଭାଷା ଓ ସାହିତ୍ୟ ମଧ୍ୟ ମନ ଉପରେ ଏକ ଏକ ସ୍ୱତନ୍ତ୍ର ପ୍ରଭାବ ପକାଇବା ଆଶା କରାଯାଏ । ସ୍ୱାଧୀନତା-ପର କଲିକତା ହତ୍ୟାକାଣ୍ଡ ପରେ ପରେ କଲିକତାରେ ବାର୍ଷିକ ସଂସ୍କୃତ-କନ୍‌ଭୋକେଶନ୍ ବସିଥିଲା ଓ ଲେଖକର ଏବେ ବି ମନେଅଛି, ତା' ଉପରେ ପ୍ରସିଦ୍ଧ 'ଷ୍ଟେଟ୍‌ସମାନ୍' କାଗଜ ଯେଉଁ ସୁଚିନ୍ତିତ ସମ୍ପାଦକୀୟ ଲେଖିଥିଲେ ସେଥିରେ ସମ୍ପାଦକ ଏଇ କଥା କହିଥିଲେ ଯେ, ''ଗ୍ରୀକ୍, ଲାଟିନ୍, ଆରବୀ, ପାର୍ସି ବା ସଂସ୍କୃତ ପ୍ରଭୃତି କ୍ଲାସିକାଲ ସାହିତ୍ୟମାନଙ୍କର ଅନୁଶୀଳନରେ ମନୁଷ୍ୟର ଚରିତ୍ର ଏକ ଉଚ୍ଚସ୍ତରକୁ ଉଠିଯିବାର ଆଶା କରାଯାଉଥିଲା । ସଂସ୍କୃତ ବା ପାର୍ସିରେ ଶିକ୍ଷିତ ଓ ଦୀକ୍ଷିତ ପ୍ରକୃତ ପଣ୍ଡିତଜନ ରାସ୍ତାରେ କାହାକୁ ପଛଆଡୁ ଛୁରା ମାରିବା ବା ଗୃହଦାହ କରିବାର କଳ୍ପନା ଆମେ କରିପାରିବାନି ।''

ଏହି ମତର ଦୃଷ୍ଟିକୋଣରୁ ବିଶ୍ୱବିଦ୍ୟାଳୟରେ ଓଡ଼ିଆ-ପାଠ୍ୟକ୍ରମବ୍ୟବସ୍ଥାରେ କି ଅନ୍ତର୍ନିହିତ ବୌଦ୍ଧିକ ଶକ୍ତି, କି ପରିମାଣରେ ଆମର ତରୁଣ ସମାଜକୁ ଏହା ଗଢ଼ିପାରିବ, ତାହା ବିଚାର କରିବାର କଥା ନୁହେଁ କି ?

## ପରୀକ୍ଷକ ଓ ପରୀକ୍ଷିତ –

ସ୍ୱାଧୀନୋତ୍ତର ଭାରତରେ ବିଶ୍ୱବିଦ୍ୟାଳୟ ପାଠରେ ଆଉ କୌଣସି 'ଷ୍ଟାଣ୍ଡାର୍ଡ୍' ନାହିଁ ବୋଲି ଚାରିଆଡ଼େ ପ୍ରକାଶ୍ୟ ଆଲୋଚନା ହେଉଛି । ଅନ୍ୟ ବିଭାଗରେ ଯାହା ବା କିଛି ଅବଶେଷ ଅଛି, ତା'ର ଦୀନତମ ଓ ହୀନତମ ଅବସ୍ଥା ଆଜି ଘଟିଛି ହୁଏତ ଭାରତୀୟ ଭାଷାମାନଙ୍କରେ, ଯେହେତୁ ମୁଁ ଦୃଢ଼ନିଶ୍ଚୟ ଯେ ମୋ ଜାତି ଉଠିବ କେବଳ ଏଇ ଓଡ଼ିଆ ବିଭାଗର ଉନ୍ନତି ଦ୍ୱାରା, ଯେପରି ଉଠିଛନ୍ତି ଇଂରେଜ ବା ଋଷାନ୍‌ମାନେ ବା ଆମ ପାଖରେ ଥିବା ବଙ୍ଗାଳୀ ଜାତି, ତାଙ୍କ ଭାଷା ଦେଇ ଓ ସେହି କାରଣରୁ ଓ ସେହି ଅନୁପାତରେହିଁ ବଡ଼ ବୋଲି ସେମାନେ ଚାରିଆଡ଼େ ସମ୍ମାନ ପାଉଛନ୍ତି, ଏ ଦିଗରେ ମୁଁ ଆନ୍ତରିକତାର ସହିତ ମୋର ସାମାନ୍ୟ ଚେଷ୍ଟାକରି ଆସିଛି ଏବଂ ଅଯୋଗ୍ୟତାର-ପୃଷ୍ଠପୋଷକତା କରିବାକୁ ଯାଇ ମୋର ପ୍ରିୟ ଓ ବରେଣ୍ୟ ମାତୃଭାଷାର ଅଧଃପତନ ଓ ଅସମ୍ମାନ ମୋ ଆଖିଆଗରେ ଘଟୁଥିବାର ଦେଖିହିଁ, ଏ ପୁସ୍ତକର ପୂର୍ବ ଅଧ୍ୟାୟ ଓ ଏହି ଅଧ୍ୟାୟରେ ସେ ସମ୍ପର୍କରେ ଆଲୋଚନା କରି ମୋର ଦେଶବାସୀଙ୍କର ସେ ଦିଗରେ ସଚେତନତା ଆଣିବାକୁ ଚେଷ୍ଟା କରୁଛି ।

କିନ୍ତୁ ଭାରତୀୟ ଭାଷା କହ ବା ମନୁଷ୍ୟ-ଜ୍ଞାନର ଯେକୌଣସି ବିଭାଗ କହ ଆଜି ଏ ଦେଶରେ ବିଦ୍ୟାଚର୍ଚ୍ଚାର ସାମଗ୍ରିକ ଅଧଃପତନର କାରଣ କ'ଣ ?

## ସହଜ ଓ ଅସାଧୁ ପରୀକ୍ଷା –

ଯେଉଁଠି ଜ୍ଞାନଦଣ୍ଡକୁ ଅବାଧରେ କଟୁରିରେ କଟାହୁଏ, ନିଜନିଜର ଛୋଟ-ଛୋଟ ଲକ୍ଷ୍ୟର ଅନୁରୋଧରେ, ସେପରି ଅଜ୍ଞ, ଅସଭ୍ୟ ପରିସ୍ଥିତିରେ ବିଦ୍ୟାଦେବୀ ସନ୍ତୁଷ୍ଟ ରହିପାରନ୍ତି କି ? ସରସ୍ୱତୀଙ୍କ ପୂଜା ନାମରେ ଚାନ୍ଦା ଉଠେଇ, ଭୋଜିଭାତ ଖାଇ ଲାଉଡ଼ସ୍ପିକର୍ ଓ ବ୍ୟାଣ୍ଡ୍ ବାଜା ବଜେଇ, ପ୍ରଶେସନ୍ କରିବାରେ କି ମହାନ୍ ସାଧନା ବା ଆଦର୍ଶ ଥାଇପାରେ ତାହା ଲେଖକକୁ ଆଜଣା । ଏ ଦେଶରେ ଆଜି ଜଣେ ହେଲେ ହେଡ଼ମାଷ୍ଟର ବା ପ୍ରିନ୍ସପାଲ୍‌ର ସତ୍‌ସାହସ ନାହିଁ ଯେ ପିଲାଙ୍କୁ 'ସାରସ୍ୱତ' ଆରାଧନାର ପ୍ରକୃତ ତତ୍ତ୍ୱ ଓ ମାର୍ଗ ବୁଝାଇ, ଏପ୍ରକାର ହାନିକର ଇତରତାରୁ ଟାଣି, ସେମାନଙ୍କୁ ସତ୍‌ମାର୍ଗରେ ନେଇପାରିବ । ଆମର ବିଦ୍ୟାନୁଷ୍ଠାନମାନଙ୍କରେ ବିଦ୍ୟାର ଦେବତା ସରସ୍ୱତୀ ଓ ଗଣେଶ ପୂଜାର ଘୋର ହାନିକର ଭଣ୍ଡତା ପରି ଆମ ଦେଶରେ ପରୀକ୍ଷା ବି ଆଜି ଏକ ଉପହାସରେ ପରିଣତ ହେଲାଣି ।

୧୦୦ ମାର୍କରୁ ୩୦ ମାର୍କ ରଖିଲେ ପାସ୍ ପାଇବେ ପିଲେ—ଏହା ପୃଥିବୀରେ କୌଣସିଠାରେ ହୁଏନା ଓ ଏହା ପରୀକ୍ଷାର ଏକ ଘୋର ଦୁଃଖାନ୍ତକ ଓ ଲଜ୍ଜାକର ପ୍ରହସନ ଛଡ଼ା ଆଉ କିଛି ନୋହିପାରେ । ଅଧିକନ୍ତୁ ସେଥିରେ ପୁଣି ଗ୍ରେସ୍‌ମାର୍କ ଓ ଧରାଧରି ବା ପରୀକ୍ଷା-ବାହାରେ-ପରୀକ୍ଷକ-ସହିତ ସମ୍ପର୍କ ସ୍ଥାପନର ଚେଷ୍ଟା, ଯାହା ଏକ ମାରାତ୍ମକ ଅନୈତିକ ଓ ଅସାମାଜିକ ଅଭ୍ୟାସ ।

ଏହି ବୌଦ୍ଧିକ ଭଣ୍ଡତା ଚାଲିଥିଲା ଯାଏ, ଯେତେ ଡାମ୍, ରେଲବାଇ, ବନ୍ଦର, ଜେଟପ୍ଲେନ୍ କର, ଏ ଜାତିର ଅନ୍ତର୍ନିହିତ ଉନ୍ନତି କେବେ କି ହେଲେ ସମ୍ଭବ ହେବ ? କେବେକି ଏ ଜାତି

ଡିସିପ୍ଲିନ୍ ଶିଖିବ ? କେବେ କି ଏ ଜାତି ଏକ ଆତ୍ମପ୍ରତ୍ୟୟଶୀଳ, ଆତ୍ମଗୌରବମୟ, ପୌରୁଷଚେତନଜାତି ହୋଇ ଉଠିପାରିବ ? କେବେ କି ଆମ ସମାଜର କୌଣସି ସ୍ତରରେ ବା ଶାସନର କୌଣସି ହେଲେ ବିଭାଗରେ, ଧରାଧରି- ଚୋରାଚୋରି ବନ୍ଦ ହୋଇପାରିବ ?

ହେବ କିପରି ? ଯେଉଁ ବୟସରେ ଓ ଯେଉଁ ଅବସ୍ଥାରେ ପ୍ରତି ଦେଶ ଓ ଜାତିର କିଶୋର ତରୁଣ ସମାଜ, ପର-ଜୀବନର ଏକାନ୍ତ ଉଚିତ ମାର୍ଗ ଭାବରେ କଠୋର ଶ୍ରମ, ଆତ୍ମବିଶ୍ୱାସ ଓ ଡିସିପ୍ଲିନ୍ ଆଦିରେ ଅଭ୍ୟସ୍ତ ହୋଇଥାନ୍ତି, ସେତିକିବେଳେ ପରା ଆମେ ପାଠକୁ କଲୁ ସହଜ, ପରୀକ୍ଷାକୁ କଲୁ କୋହଳ, ପୁଣି ବ୍ୟବସ୍ଥା ବି ରଖିଲୁ ପରୀକ୍ଷାରେ 'ଅନୁଗ୍ରହ' (ଗ୍ରେସ୍)ର ଓ ପୁଣି ତଦୁପରି ସ୍ୱୟଂ ପରୀକ୍ଷକଙ୍କୁ ମଧ୍ୟ ଧରାଧରି କରିପାରିବାର ? * ପିଲାବେଳେ ଆମେ ତରୁଣର ଚରିତ୍ରରେ କେଉଁ ଗୁଣର ଆଦର୍ଶଟା ପ୍ରତିଷ୍ଠିତ କଲୁ ଯେ ପରେ ଆମ ଜାତିରେ ସେ ଗୁଣଟାର ପ୍ରକାଶ ହେଲାନି ବୋଲି ଆମେ ଦୁଃଖ କରିବା ?

ସହଜ ପାସ୍‌ର ଅଯୌକ୍ତିକତାର ଉତ୍‌ପାଟନ ଲକ୍ଷ୍ୟରେ ଗଙ୍ଗାଧର ମେହେର କଲେଜର ପ୍ରିନ୍ସିପାଲ୍ ଥିଲାବେଳେ ମୁଁ ପିଲାଙ୍କୁ ବାଧ୍ୟତାମୂଳକ ଏମ୍-ଆଇ-ଏଲ-ଓଡ଼ିଆ ଛଡ଼ା ଅନ୍ୟ କୌଣସି ଓଡ଼ିଆ ନେବାକୁ ବରାବର ମନା କରୁଥିଲି । ଆଇ.ଏ. ଓ ବି.ଏ.ରେ ପିଲେ ଆଡ୍‌ମିସନ ନେଲାବେଳେ ମୋ ପାଖକୁ ଯେତେବେଳେ ଫର୍ମ ସବୁ ଶେଷ ଦଶକତ୍‌ପାଇଁ ଆସେ, ମୁଁ ଦେଖୁଥିଲି ପ୍ରତି ପିଲା କି-କି ସବ୍‌ଜେକ୍‌ଟ ନେଉଛି । ଓଡ଼ିଆର ବାହୁଲ୍ୟ ଆଖିରେ ପଡ଼ିଲା ମାତ୍ରେ, ସମ୍ପୃକ୍ତ ପିଲାକୁ ଡକାଇ ଏଇପରି ଉପଦେଶ ଦେଉଥିଲି–''ଦେଖ, ଓଡ଼ିଆରେ ତମେ ଯାହା ଏଠି ପଢ଼ିବ, ତାକୁ ତମେ ନିଜେ-ନିଜେ ଗାଁରେ ବସି ତ ପଢ଼ିପାରିଥାନ୍ତ । ତମ ଗାଁ'ରେ ଅପର ପ୍ରାଇମେରୀ ପାସ୍ କରିଥିବା ଜଣେ ବାଳିକା ମଧ୍ୟ ଘରେ ରହି ଏସବୁ କାବ୍ୟ, ଉପନ୍ୟାସ ଅକ୍ଳେଶରେ ପଢ଼ିପାରିବ । ତମେ ବାପ-ମା'ଙ୍କ ଟଙ୍କା ଖର୍ଚ୍ଚ କରି କଲେଜରେ ନାଁ ଲେଖେଇଲ କ'ଣ ଏହି ଶସ୍ତା ପାଠ ପଢ଼ିବାକୁ ? ଟଙ୍କା ଖର୍ଚ୍ଚ କରୁଛ ଓ ସମୟ ନଷ୍ଟ କରୁଛ । ତେଣୁ କିଛି ନୂଆ କଥା ଶିଖିଯାଅ, ଯାହା ଘରେବସି ପଢ଼ିପାରନ୍ତନାହିଁ, କିନ୍ତୁ ଯାହା ଭଲକରି ଶିଖିଥିଲେ ଜୀବନରେ ଦିନେ ଭଲ କାମ ଦେବ । ପଢ଼ ଇକନମିକ୍ସ, ପଢ଼ ପଲିଟିକ୍ସ, ହିଷ୍ଟ୍ରି ବା ସାଂସ୍କ୍ରିଟ୍ । ପଢ଼ ଭଲ କରି ଇଂରାଜୀ ଭାଷା ଓ ସାହିତ୍ୟ । ନୂଆଜ୍ଞାନ, ନୂଆବିଦ୍ୟା ଅର୍ଜନ କରିବାର ଯଦି ଇଚ୍ଛା ନ ଥିଲା, ତେବେ ଏଠିକି ରାମବିଭା ପଢ଼ିବାକୁ ଆସିଲ ଏତେ ଟଙ୍କା ଖର୍ଚ୍ଚ କରି ? ତା' ତ ତମ ଗାଁ ପ୍ରାଇମେରୀ ସ୍କୁଲ୍ ଶିକ୍ଷକ ତୁମକୁ ବୁଝେଇ ଦେଇଥାନ୍ତେ ।''

କୌଣସିମତେ ଶସ୍ତା ଓ ସହଜରେ ଶିକ୍ଷାର ମାର୍କାଟା ପାଇଯିବା ଓ ଦିଆଇଦେବା ଆଜି ଏ ଦେଶରେ ଉଭୟ ଛାତ୍ର ଓ ଅଧ୍ୟାପକମାନଙ୍କ ଭିତରେ ମଧ୍ୟ ଏପରି ଗଭୀର ଓ ବ୍ୟାପକଭାବରେ ବ୍ୟାପ୍ତ ଯେ, ମୋର ଲେକ୍‌ଚର ଅନେକ କ୍ଷେତ୍ରରେ ଅସୁଖକର ବୋଧହେଉଥିଲା । କିନ୍ତୁ, ତା' ସତ୍ତ୍ୱେ ସମ୍ବଲପୁର ଛାଡ଼ିଲା ପର୍ଯ୍ୟନ୍ତ, ପ୍ରତି ବର୍ଷର ଆଡ଼ମିସନ୍ ବେଳେ, ମୁଁ ପିଲାଙ୍କୁ ଓଡ଼ିଆରୁ ଛଡ଼ାଇ ଅନ୍ୟ ନୂତନ ବିଷୟରେ ପୂରେଇବାର ଚେଷ୍ଟା ବରାବର କରିଆସୁଥିଲି । କେବଳ ସେତିକି ନୁହେଁ, ତେଣେ ବିଶ୍ୱବିଦ୍ୟାଳୟରେ ଏହି ସଂପୃକ୍ତ ନିୟମର ଏକ ସଂଶୋଧନ ମଧ୍ୟ

---

* ଏହି ସମ୍ପର୍କରେ ଜଣେ ଅଧ୍ୟାପକଙ୍କ କୀର୍ତ୍ତି ପରିଶିଷ୍ଟରେ ଦ୍ରଷ୍ଟବ୍ୟ ।

ଅଣାଇଥିଲି ଏଇ ଲକ୍ଷ୍ୟରେ ଯେ, ପିଲେ ଆଇ.ଏ ଓ ବି.ଏ.ରେ ଯେପରି ଗୋଟିଏରୁ ଅଧିକ ଓଡ଼ିଆ ପତ୍ର ନେଇପାରିବେନାହିଁ । (ପରିଶିଷ୍ଟ ଦ୍ରଷ୍ଟବ୍ୟ)

## ମୋ ଭାଷା ଓ ସାହିତ୍ୟର ଅପମାନ –

ଓଡ଼ିଶା ଦେଶର କଲେଜମାନଙ୍କର ପ୍ରାୟ ସବୁ ଓଡ଼ିଆ ଅଧ୍ୟାପକ ଏଇ ଲେଖକର ପରିଚିତ । ବ୍ୟକ୍ତିଗତ ଓ ସାମାଜିକ ଭାବରେ ସମସ୍ତେ ମୋର ପ୍ରିୟ । କାହାରି ଜଣକ ପ୍ରତି ହେଲେ ମଧ୍ୟ ମୋର ବ୍ୟକ୍ତିଗତ ବିଦ୍ୱେଷ ନଥାଇପାରେ । ଏଇ ଲେଖକର କର୍ମଜୀବନ ବା ବୌଦ୍ଧିକ ଜୀବନର କୌଣସି କ୍ଷେତ୍ରରେ ହେଲେ ସେମାନେ ତା'ର ପ୍ରତିଦ୍ୱନ୍ଦୀ ବୋଲି ତାର ଭାବିବାର କୌଣସି କାରଣ ନଥିଲା ବା ନାହିଁ । କିନ୍ତୁ ଏକ ଶିକ୍ଷାବିତ୍ ଭାବରେ, ମୋ ଜାତିର ତରୁଣ ସମାଜର କଲ୍ୟାଣ ଲକ୍ଷ୍ୟରେ ଓ ମୋ ମାତୃଭାଷା ଓ ତା'ର ସାହିତ୍ୟର ମର୍ଯ୍ୟାଦା ଦୃଷ୍ଟିରୁ ହିଁ ମତେ କେତେକ ଅପ୍ରିୟ ସତ୍ୟକଥା କହିବାକୁ ପଡ଼ିଛି । କାରଣ ମୁଁ ଚାହିବି କି ମୋ ଭାଷା ଓ ସାହିତ୍ୟ କେବଳ ମୁଷ୍ଟିମେୟ ଲୋକର ଜୀବିକାର ସୁବିଧାପାଇଁ, ଉପହାସର ପାତ୍ରହୋଇ ଜଗତ ଆଗରେ ଠିଆ ହେବ ? ମୁଁ ଚାହିବି ନାହିଁ କି ଓଡ଼ିଆରେ ଫାଷ୍ଟକ୍ଲାସ୍ ଇଂରାଜୀ ଫାଷ୍ଟକ୍ଲାସ୍ ସହିତ ସମାଜ ବୌଦ୍ଧିକମୂଲ୍ୟବନ୍ତ ବୋଲି ବିବେଚିତ ହେବ ? ମୁଁ ଚାହିବି କି ମୋର ପରମ ନମସ୍ୟ ଭଞ୍ଜ, ମେହେର, ଗୋପାଳକୃଷ୍ଣ, ଭୀମଭୋଇ ପ୍ରଭୃତି ମୋ ସାହିତ୍ୟର ପରମ ସ୍ରଷ୍ଟୃବର୍ଗ, ଅନିପୁଣ, ଅଯୋଗ୍ୟମାନଙ୍କ ଶସ୍ତା ଡିଗ୍ରୀ ଓ ଜୀବିକାପାଇଁ, ସହଜମାର୍ଗ ରୂପେ ବ୍ୟବହୃତ ହେବେ ଓ ସେଥିପାଇଁ ଉପହସିତ ହେବେ ?

## ରାମମୋହନଙ୍କ ସତର୍କ ବାଣୀ –

ରାଜା ରାମମୋହନ ରାୟଙ୍କୁ ଆଧୁନିକ ଭାରତର ଓ ଭାରତୀୟ ଜାତୀୟତାର ପିତା ବୋଲି ଯାହା କୁହାଯାଇଥାଏ, ତାହା ଏକାନ୍ତ ଯଥାର୍ଥ । କିନ୍ତୁ ତାଙ୍କ ନିକଟରେ ଭାରତୀୟ ଜାତୀୟତାର ଏ ଅର୍ଥ ନଥିଲା ଯେ, ଭାରତ, ଜ୍ଞାନ-ବିଜ୍ଞାନରେ ପୃଥିବୀରେ ଶ୍ରେଷ୍ଠ, ସେ ସ୍ୱୟଂସମ୍ପୂର୍ଣ୍ଣ ଓ ତା'ର ଅନ୍ୟଠାରୁ କିଛି ଶିଖିବାର ନାହିଁ । ସଂସ୍କୃତ, ଆରବୀ, ପାର୍ସି, ହିବ୍ରୁ ପ୍ରଭୃତି ସମୃଦ୍ଧ ପ୍ରାଚ୍ୟ ଭାଷାମାନଙ୍କରେ ମହାନ ପଣ୍ଡିତ ରାମମୋହନ ସେଦିନ କହିଥିଲେ, ''ଯଦି ଭାରତବର୍ଷ ସପ୍ତଦଶ ଶତାବ୍ଦୀର ଅନ୍ଧକାର ଓ କୁ-ସଂସ୍କାରକୁ ଫେରିଯିବାକୁ ଚାହେ, ତେବେ ଏ ଦେଶର ବିଦ୍ୟାପୀଠମାନଙ୍କରେ ପଢ଼ାଯାଉ ସଂସ୍କୃତ ଓ ଆରବୀ । କିନ୍ତୁ ଭାରତବର୍ଷ ଯଦି ସଭ୍ୟ ଓ ଅଗ୍ରସର ହେବାକୁ ଚାହେ, ତେବେ ଏ ଦେଶର ବିଦ୍ୟାଳୟମାନଙ୍କରେ ପଢ଼ାଯାଉ ଇଂରାଜୀ ଭାଷା ଓ ସାହିତ୍ୟ ଏବଂ ଇଉରୋପୀୟ ବିଜ୍ଞାନରାଜି ।'' ଇଷ୍ଟଇଣ୍ଡିଆ କମ୍ପାନୀ ସେଦିନ ଦୂରଦ୍ରଷ୍ଟା ରାମମୋହନଙ୍କ ଉପଦେଶ ଶୁଣିଥିଲା ବୋଲି ଭାରତ ଆଜି ଯାହା ତାହା ହୋଇ ପାରିଛି । ରାଜା ରାମମୋହନଙ୍କ କଥା ରକ୍ଷା ନହୋଇଥିଲେ ଭାରତ ସ୍ୱାଧୀନ ହୋଇନଥାନ୍ତା କି ବିବେକାନନ୍ଦ, ଗାନ୍ଧି, ନେହେରୁ, ରବୀନ୍ଦ୍ରନାଥ ଓ ରମଣ ସମ୍ଭବ ହୋଇନଥାନ୍ତେ । ସେହିପରି ସହସ୍ର ବର୍ଷ କେବଳ ଓଡ଼ିଆ ଏମ୍.ଏ. ପଢ଼ା ଚାଲିଥିଲେ ମଧ୍ୟ କେବଳ ସେୟାକୁ ପଢ଼ି ଜଣେ ରାଧାନାଥ ବା ଗୋପୀନାଥ ନନ୍ଦ ବାହାରିବା ଅସମ୍ଭବ ହେବ ।

## ଭାରତୀୟ ଭାଷାର ଏମ୍.ଏ. ଉପାଧି –

ଏହା ଯେ ଏଇ ଲେଖକର ଏକ ଖିଆଲୀମତ ମାତ୍ର; ତାହା ନୁହେଁ । ଓଡ଼ିଶାର ପୂର୍ବତନ ଡି.ପି.ଆଇ., ଡକ୍ଟର ବଳଭଦ୍ର ପ୍ରସାଦଙ୍କ ସହିତ ଏ ବିଷୟରେ ଲେଖକର ବହୁ ଆଲୋଚନା ହେଲାପରେ, ସେହିହିଁ ଓଡ଼ିଆ ଏମ୍.ଏ.ର 'କ୍ୱାଲିଟି' ବଢ଼ାଇବା ଲକ୍ଷ୍ୟରେ ମତେ ଓଡ଼ିଆ ଏମ୍.ଏ. ସିଲାବସ୍‌ର ସଂସ୍କାର କରିବାକୁ ପ୍ରଥମେ ପ୍ରବର୍ତ୍ତାଇଥିଲେ (ପରିଶିଷ୍ଟ ଦ୍ରଷ୍ଟବ୍ୟ) । ହିନ୍ଦୀ-ଭାଷୀ ଡକ୍ଟର ପ୍ରସାଦ କେବଳ ଓଡ଼ିଆ ଏମ୍.ଏ. ନୁହେଁ, ହିନ୍ଦୀ ଏମ୍.ଏ.ମାନଙ୍କ ବିଷୟରେ ମଧ୍ୟ ସର୍ବଦା କଟୁ-ମଧୁର ମନ୍ତବ୍ୟ ପ୍ରକାଶ କରୁଥିଲେ । ଏ ପ୍ରସଙ୍ଗରେ ସେ ଜଣେ ଉତ୍ତର ଭାରତୀୟ ବନ୍ଧୁଙ୍କ ସହିତ ଯାହା ଥରେ ତାଙ୍କର ଆଲୋଚନା ହୋଇଥିଲା, ତାହା ସେ ବରାବର ମତେ କହୁଥିଲେ । ତାହା ଏହି ଡକ୍ଟର ପ୍ରସାଦ ହିନ୍ଦୀ ଏମ୍.ଏ.ର 'କ୍ୱାଲିଟି' ପରୀକ୍ଷାପାଇଁ ହିନ୍ଦୀ ସପକ୍ଷରେ ଲଢୁଥିବା ତାଙ୍କ ବନ୍ଧୁଙ୍କୁ ଚାଲେଞ୍ଜ୍‌ଦେଇ କହିଥିଲେ–''ଦେଖ, ମତେ ଗୋଟିଏ ହେଲେ ହିନ୍ଦୀ ଏମ୍.ଏ.ର କଥା କହ, ଯେ କି ଆଇ.ଏ.ଏସ୍. ଓ ଆଇ.ପି.ଏସ୍. ପ୍ରଭୃତି ସର୍ବଭାରତୀୟ ପରୀକ୍ଷାମାନଙ୍କରେ କୃତକାର୍ଯ୍ୟ ହୋଇଛି–ଗୋଟିଏ ମାତ୍ର ଦୃଷ୍ଟାନ୍ତ !'' ପ୍ରସାଦଙ୍କ ବନ୍ଧୁ ନିରୁତ୍ତର ହୋଇଥିଲେ । ପ୍ରସାଦଙ୍କ ସେଇ ଚାଲେଞ୍ଜ୍ ଯେକୌଣସି ଓଡ଼ିଆ ଏମ୍.ଏ. ପ୍ରତି (ଫାଷ୍ଟକ୍ଲାସ୍ ଓ ଡକ୍ଟରଙ୍କ ସମେତ) ମଧ୍ୟ ପ୍ରୟୋଗ କରାଯାଇପାରେ । ଖାଲି ଆରବୀ,ପାର୍ସି ଓ ସଂସ୍କୃତରେ ଆବଦ୍ଧ ରହି ଭାରତୀୟ ପଣ୍ଡିତ ଓ ମୌଲବୀ ଊନବିଂଶ ଶତାବ୍ଦୀରେ ନିଜ ନିଜକୁ ବିରାଟ ଜ୍ଞାନୀ ବୋଲାଇବାର ମୂଢ଼ତା ଉପରେ ଦୂରଦ୍ରଷ୍ଟା ରାମମୋହନ ଯେଉଁ ସାବଧାନୀ ବାଣୀ ଶୁଣାଇଥିଲେ ଓ ଯେଉଁ ଆଶଙ୍କା ପ୍ରକାଶ କରିଥିଲେ, ଆନ୍ତର୍ଜାତିକ-ସାହିତ୍ୟ-ଅଜ୍ଞ, ନିମ୍ନ-ସିଦ୍ଧି-ସନ୍ତୁଷ୍ଟ, କେବଳ ଶସ୍ତା-ଏମ୍.ଏ. ଡିଗ୍ରୀର ବ୍ୟବସ୍ଥା ଯୋଗୁ ହିଁ ସହଜରେ ଅଧ୍ୟାପକ ସ୍ତରକୁ ଉଠିଆସୁଥିବା ଗୁଡ଼ାଏ ଲୋକଙ୍କ ସମ୍ପର୍କରେ ଏ ଲେଖକର ସେହି ଆଶଙ୍କା ଓ ସେହି ସାବଧାନୀବାଣୀ । ଓଡ଼ିଆ ଏମ୍.ଏ. ଦଳର କୌଣସି ମୁଖ୍ୟଙ୍କୁ ସଭାରେ ଠିଆକରେଇଦିଅ, ସେ ଅନ୍ତତଃ ଛ'ଘଣ୍ଟାକାଳ ଗଭୀର ଚିନ୍ତା ଓ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ଦେଇପାରିବେ ଓ ରାଧାନାଥଙ୍କ ଛ'ପୃଷ୍ଠାର ଚନ୍ଦ୍ରଭାଗା ଉପରେ, ପ୍ରତି-ପୃଷ୍ଠା ଉପରେ ଛ'ଶତ ପୃଷ୍ଠାର ଖଣ୍ଡିଏ, ଖଣ୍ଡିଏ ବିରାଟ ସମାଲୋଚନା ଗ୍ରନ୍ଥ ଲେଖିପକାଇବାର ଉଦ୍ଭଟ ପାରଗତାରେ ବାହ୍ୱାସ୍ଫୋଟ ମାରିପାରିବେ । ଯେକୌଣସି ସଭ୍ୟ ଦେଶର ସାହିତ୍ୟରେ ଏ ପ୍ରକାର ଦାମ୍ଭିକତାକୁ 'ଷ୍ଟୁପିଡ଼ିଟି' ଓ 'ନନ୍‌ସେନ୍ସ' ଛଡ଼ା ଆଉ କିଛି କୁହା ହୁଅନ୍ତାନି । ଆଉ, ଏପ୍ରକାର ଅହମିକା କେବଳ ଘୋର ମୂର୍ଖତାରୁହିଁ ଆସେ । ଏ ପ୍ରକାର ଦାମ୍ଭିକତା ଆସେ କେବଳ ପ୍ରଭାବଶାଳୀ ପତ୍ରିକା, ଦଳ ବା ଗୋଷ୍ଠୀର ପୃଷ୍ଠପୋଷକତାରୁ ସିନା, ପ୍ରକୃତ ପାଣ୍ଡିତ୍ୟରୁ ନୁହେଁ । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଆମ ଦେଶର ପଣ୍ଡିତମାନଙ୍କଠିଁ ଏହି ମୂର୍ଖତା ସମଗ୍ର ଭାବରେ ବିରାଜିତ ଥିଲା । ରାଜା ରାମମୋହନ ଏହି ସଂକୀର୍ଣ୍ଣତାଜନିତ ମୂର୍ଖତା ବିରୋଧରେହିଁ ଦେଶବାସୀଙ୍କୁ ଚେତାବନୀ ଶୁଣାଇଥିଲେ । ଏ ଲେଖକର ଓଡ଼ିଆ ଏମ୍.ଏ.ମାନଙ୍କ ସମ୍ପର୍କରେ ସେହି ଚେତାବନୀ ମାତ୍ର !

ଉତ୍କଳ ବିଶ୍ୱବିଦ୍ୟାଳୟର ସେ କାଳରେ ପ୍ରଚଳିତ ଓଡ଼ିଆ ଏମ୍.ଏ.ର ସିଲାବସ୍ (ଏବେ ଅଛି କି ନା କହିପାରିବିନାହିଁ) ଯାହା ବହୁକାଳ ଧରି ଚଳିଆସୁଥିଲା, ତାହା ସ୍ପଷ୍ଟ ପ୍ରମାଣିତ

କରୁଥିଲା ଯେ ତା'ର ବିଧାତା ଧର୍ମ ଓ ସାହିତ୍ୟ ଭିତରେ ପ୍ରଭେଦ ଜାଣିନଥିଲେ ଓ ପ୍ରକୃତ ସାହିତ୍ୟିକ ମୂଲ୍ୟବୋଧ ତାଙ୍କୁ ଅଜ୍ଞାତ ଥିଲା । ଇଂରେଜୀ ସାହିତ୍ୟରେ ପ୍ରୋଟେଷ୍ଟାଣ୍ଟିଜମ୍ ଓ କାଥଲିସିଜମ୍‌ର ତୁଳନାର ସ୍ଥାନ ନାହିଁ । କିନ୍ତୁ ଓଡ଼ିଆରେ ଗୌଡ଼ୀୟ ବୈଷ୍ଣବବାଦ ଓ ଉତ୍କଳୀୟ ବୈଷ୍ଣବବାଦର ତୁଳନା ଏକ ମୁଖ୍ୟ ବିଷୟ । ମଥୁରାମଙ୍ଗଳର ସମାଲୋଚନାର ପ୍ରଥମ ପାଦ ହେଲା ଯେ ତା'ର କବି ଉତ୍କଳୀୟ ବୈଷ୍ଣବ ଥିଲେ । ତା' ପରେ ସବୁ ଠିକ୍ । ସାରଳା ଦାସ ଯେ ମହାକବି ଥିଲେ, ତାର ପ୍ରମାଣ ହୁଏତ ସେ ଜଗନ୍ନାଥଙ୍କୁ ପଞ୍ଚଧା ମୂର୍ତ୍ତି ବୋଲି ବର୍ଣ୍ଣନା କରିଛନ୍ତି, ଚତୁର୍ଦ୍ଧାମୂର୍ତ୍ତି ଭାବରେ ନୁହେଁ । ଏହି କ୍ରମରେ ଗୁଣ୍ଡିଚା ଯାତ୍ରା ଏକ ଶ୍ରେଷ୍ଠ କବିତା, କାରଣ କବି ଏମାର ମଠକୁ ରାମଗିରି ଓ ବଡ଼ଦାଣ୍ଡର ନର୍ଦ୍ଦମାକୁ ବେତ୍ରବତୀ ନଦୀ ବୋଲି ବର୍ଣ୍ଣନା କରି ପାରିଛନ୍ତି । ଏପରି କଳ୍ପନା ବିଶ୍ୱର କେଉଁ ସାହିତ୍ୟରେ ସମ୍ଭବ ? ଏହି କ୍ରମରେ ଗୋପାଳକୃଷ୍ଣ ଓ୍ୟାଡ଼ସ୍‌ଓ୍ୱର୍ଥଙ୍କ ସହିତ ମଧ ତୁଳିତ ହୋଇପାରନ୍ତି । ଏପ୍ରକାର ସାହିତ୍ୟିକ ଆଲୋଚନା ଯେ ବିଚାରର ବାହାରେ, ଏ କଥା ପୁଣି ଏ ଦେଶରେ ଅଧ୍ୟାପକଙ୍କୁ ଶୁଣେଇବାକୁ ହେବ ? ଆନ୍ତର୍ଜାତିକ-ସାହିତ୍ୟ-ସହିତ-ସମ୍ପର୍କହୀନ ରହି ବୀଭତ୍ସ ଆତ୍ମ-ସନ୍ତୋଷ ଫଳରେହିଁ ଏପ୍ରକାର ହେୟ ମୂଲ୍ୟବୋଧ ଆସେ । ଆଜି କୌଣସି ହେଲେ ଭାରତୀୟ ବା ପ୍ରାଚ୍ୟ ସାହିତ୍ୟ, ଆନ୍ତର୍ଜାତିକ ସମ୍ପର୍କକୁ ପ୍ରତ୍ୟାଖ୍ୟାନ କରି ଶ୍ରୀ-ବୃଦ୍ଧି-ସମ୍ପନ୍ନ ହେବାର ଆଶାକରି ପାରେନା । ଘରର ଦ୍ୱାର ବାତାୟନସବୁ ବନ୍ଦକରି ତା ଭିତରେ ମନୁଷ୍ୟ ସ୍ୱାସ୍ଥ୍ୟଭୋଗ ଆଶାକରିପାରେ କି ? ତେଣୁ ହୁଏତ ଓଡ଼ିଆ ଏମ୍.ଏ. ନାମକ ଏକ ସ୍ତୂପ ଠିଆକରି ଆମେ ଯେ ଜାଣି ଜାଣି ଆମ ଭାଷାର ଅଗ୍ରଗତି ଓ ଉନ୍ନତି ଉଭୟକୁ ହତ୍ୟା କରିବାର କି ବ୍ୟବସ୍ଥା କରିଛୁ ତାହା ଏ ଦେଶର ବୁଦ୍ଧିଜୀବୀଗଣ ଭାବିବାର କଥା । ଲେଖକର ଏ ଦିଗରେ ସଂସ୍କାର-ଚେଷ୍ଟା ଥିଲା; କେବଳ ଏହି ଚିନ୍ତାରୁ । କିନ୍ତୁ ଡକ୍ଟର ପ୍ରସାଦ ମତେ ଏ ଦିଗରେ ଅଯାଚିତଭାବରେ ଉତ୍ସାହିତ ନକରିଥିଲେ, ମୋର ଏ ଦିଗରେ ପ୍ରଚେଷ୍ଟାର କୌଣସି ଆକାର ଧରି ନ ଥାନ୍ତା ।

ଡକ୍ଟର ପ୍ରସାଦଙ୍କ ପ୍ରରୋଚନାରେହିଁ ଓଡ଼ିଆ ଏମ୍.ଏ. ସିଲାବସ୍‌ର ମୁଁ ଯେଉଁ ସଂସ୍କୃତ ରୂପ ବିଶ୍ୱବିଦ୍ୟାଳୟ ଆଗରେ ଉପସ୍ଥାପିତ କରିଥିଲି ତାହା ଏଇପରି ଥିଲା —ପ୍ରଥମ ପତ୍ର—ପୁରାଣ ଓ ମହାକାବ୍ୟ(ସାରଳା ଦାସଙ୍କଠାରୁ ଆଧୁନିକ କାଳ ପର୍ଯ୍ୟନ୍ତ) (୧୦୦ ମାର୍କ), ଦ୍ୱିତୀୟ ପତ୍ର—କାବ୍ୟ (ମଧ୍ୟ ଯୁଗରୁ ଆଧୁନିକ କାଳ ପର୍ଯ୍ୟନ୍ତ) (୧୦୦ମାର୍କ), ତୃତୀୟ ପତ୍ର—ଗୀତ ଓ ଗୀତି କବିତା (ବୌଦ୍ଧ-ଗୀତିଠାରୁ ଆରମ୍ଭ କରି ପଲ୍ଲୀଗୀତି, କୋଇଲି ଚଉତିଶା, ଚଉପଦୀ ଓ ଭଜନ ଦେଇ ଆଧୁନିକ କବିମାନଙ୍କର ଖଣ୍ଡ-କବିତା ପର୍ଯ୍ୟନ୍ତ) (୧୦୦ ମାର୍କ), ଚତୁର୍ଥ ପତ୍ର—ପ୍ରଥମାଂଶ—ଗଦ୍ୟ ରଚନା ଓ ଉପନ୍ୟାସ (୫୦ ମାର୍କ); ଦ୍ୱିତୀୟାଂଶ—ଗଳ୍ପ, ପ୍ରବନ୍ଧ ଓ ଗଦ୍ୟ ସାଟାୟାର (୫୦ ମାର୍କ), ପଞ୍ଚମ ପତ୍ର — ଭାଷାତତ୍ତ୍ୱ ଓ ସାହିତ୍ୟର ବୈବର୍ତ୍ତନିକ ଇତିହାସ (୧୦୦ ମାର୍କ), ଷଷ୍ଠ ପତ୍ର—ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମାଲୋଚନା ଓ ଓଡ଼ିଆ କାବ୍ୟ-କବିତାର ଛନ୍ଦ-ତତ୍ତ୍ୱ (୧୦୦ ମାର୍କ), ସପ୍ତମ ପତ୍ର—ପରିପୋଷାକ ଭାଷା— ପ୍ରାକୃତ ଓ ସଂସ୍କୃତ (୫୦+୫୦ ମାର୍କ), ଅଷ୍ଟମ ପତ୍ର—ପରୀକ୍ଷା ହଲ୍‌ରେ ୨୦୦୦ ଶବ୍ଦର ଯେକୌଣସି ସାହିତ୍ୟିକ ପ୍ରବନ୍ଧ ରଚନା ବା କୋଡ଼ିଏ ହଜାର ଶବ୍ଦସମ୍ବଳିତ ଏକ ଅନୁଶୀଳନ ପତ୍ର ଆଗରୁ ପ୍ରସ୍ତୁତ କରି ଉପସ୍ଥାପନ(୧୦୦ ମାର୍କ) ।

## ଓଡ଼ିଆରେ ରିସର୍ଚ୍ଚ –

ଓଡ଼ିଆ ପୋଷ୍ଟ-ଗ୍ରାଜୁଏଟ୍ ଶ୍ରେଣୀରେ ରିସର୍ଚ୍ଚର ପରିବେଶ ସୃଷ୍ଟି କରିବା ଓ ସେହି ସୂତ୍ରରେ ବୃହତ୍ତର ଓଡ଼ିଆ-ସାହିତ୍ୟ-ଇତିହାସ ଲେଖେଇବା ଲକ୍ଷ୍ୟରେ ଶେଷୋକ୍ତ ବ୍ୟବସ୍ଥା ରଖାଯାଇଥିଲା । ଏହି ଯୋଜନାର ବିଶଦୀକରଣପାଇଁ ଯେଉଁ ନୋଟ୍ ଦିଆଯାଇଥିଲା, ସେଥିରେ ଶେଷ ଆଡ଼କୁ ଏୟା ଲେଖାଥିଲା– ''ବିଶ୍ୱବିଦ୍ୟାଳୟର ଉଦାର ପରମ୍ପରା ଆଦୌ କ୍ଷୁଣ୍ଣ ହେବ ନାହିଁ, ଯଦି ଓଡ଼ିଆ ଏମ୍.ଏ.ର ଛାତ୍ରଗଣ, ଭାଷାତତ୍ତ୍ୱ ଓ ସାହିତ୍ୟ-ସମାଲୋଚନାର ଆଲୋଚନା ବେଳେ, ସେମାନଙ୍କର ଇଂରାଜୀ ଏମ୍.ଏ. ପଢ଼ା-ସାଥୀମାନଙ୍କ ସଙ୍ଗରେ ଇଂରାଜୀ ଏମ୍.ଏ. ଶ୍ରେଣୀରେ ଯାଇ ବସନ୍ତି । ମୋର ବିଶ୍ୱାସ, ଇଂରାଜୀ ଏମ୍.ଏ.ର ଛାତ୍ରମାନେ ଯଦି ସଂସ୍କୃତ ଅଳଙ୍କାର ଉପରେ କେତୋଟି ଲେକ୍‌ଚରରେ ଯୋଗ ଦିଅନ୍ତେ, ତେବେ ନିଶ୍ଚୟ ଉପକୃତ ହୁଅନ୍ତେ । ସମ-ଗୁଣୀ ବିଭାଗମାନଙ୍କ ଭିତରେ ଏପ୍ରକାର ସହଯୋଗ, ବିଶ୍ୱବିଦ୍ୟାଳୟରେ ସଂସ୍କୃତିମୟ ବାତାବରଣ ସୃଷ୍ଟି କରିବାର ଆଶା କରାଯାଏ ।''

ମୋର ପ୍ରସ୍ତାବିତ ଏହି ସଂସ୍କାର ଉତ୍କଳ ବିଶ୍ୱବିଦ୍ୟାଳୟର ଆକାଡେମିକ୍ କାଉନ୍‌ସିଲରେ ପଡ଼ି ପାସ୍ ହୋଇଯାଇଥିଲା । ସମ୍ବଲପୁର କଲେଜ ଛାଡ଼ିଲା ପରେ, ଲେଖକର ବିଶ୍ୱବିଦ୍ୟାଳୟର ପରୀକ୍ଷାଦି ସହିତ କୌଣସି ସମ୍ପର୍କ ଆଉ ରହିଲାନାହିଁ । ତେଣୁ ସେ ପ୍ରସ୍ତାବ ସବୁର ଦଶା ପରେ କ'ଣ ହେଲା, ତା' ମୁଁ କହିପାରିବିନାହିଁ ।

ଓଡ଼ିଆ ଏମ୍.ଏ. ପାଠକୁ ଇଂରାଜୀ ବା ଇକନମିକ୍‌ସ ପରି ମର୍ଯ୍ୟାଦାବନ୍ତ ଓ ମୂଲ୍ୟବାନ କରିବା ଯଦି କାହାରି ଇଚ୍ଛା ଥାଏ ତେବେ ଏଇ ଲାଇନ୍‌ରେ ଯେକୌଣସି ଦିନ ସଂସ୍କାର ଆଣିବା ଏକାନ୍ତ ଜରୁରୀ ବୋଲି ବିଚାରିବାର କଥା । ତତ୍‌ପରିବର୍ତ୍ତେ ବର୍ତ୍ତମାନ ଓଡ଼ିଆ ଏମ୍.ଏ. ଉପାଧି ବୁଦ୍ଧିଜୀବୀମାନଙ୍କର କାହିଁକି ଏକ ଉପହାସର ବସ୍ତୁ ହୋଇଉଠିଛି, ତାହାର ଏକ ଦୃଷ୍ଟାନ୍ତ ଏଠାରେ ଦିଏଁ ।

ଏମ୍.ଏ. ପରୀକ୍ଷାପାଇଁ କୌଣସି କବିଙ୍କର କେବଳ ଖଣ୍ଡିଏ ଗ୍ରନ୍ଥ ପାଠ୍ୟପୁସ୍ତକ ଭାବରେ ନିର୍ଦ୍ଦିଷ୍ଟ ଥିଲେ ମଧ ପରୀକ୍ଷାର୍ଥୀମାନେ ସେହି କବିଙ୍କର ଅନ୍ୟଗ୍ରନ୍ଥ ଓ ସମଗ୍ର କୃତିତ୍ୱ ସହିତ ପରିଚିତ ହେବାର ଆଶା କରାଯାଏ । ଏହା ନହେଲେ ଏ ପରୀକ୍ଷାପ୍ରତି ମାଷ୍ଟର ଅବ୍ ଆର୍ଟ୍‌ସ ପଦ ଦିଆଯିବ କିପରି ? ଏମ୍.ଇ. ଓ ଏମ୍.ଏ. ପରୀକ୍ଷା ଭିତରେ ପ୍ରଭେଦ ତା'ହେଲେ କ'ଣ, ଏମ୍.ଏ.ରେ ମଧ ଯେଉଁ ବହିଟି ନିର୍ଦ୍ଦିଷ୍ଟ ପାଠ୍ୟ, କେବଳ ସେହି ବହିଖଣ୍ଡ ଛଡ଼ା ପରୀକ୍ଷାର୍ଥୀ ଅନ୍ୟ ବହି ଜାଣିବେନି ? କୌଣସି ବର୍ଷ ଗଙ୍ଗାଧରଙ୍କ 'କବିତା କଲ୍ଲୋଳ' ଏହିପରିଭାବରେ ଏମ୍.ଏ.ରେ ପାଠ୍ୟ ଥିଲା । କୌଣସି ବର୍ଷ କୌଣସି ପ୍ରଶ୍ନକର୍ତ୍ତା 'ଓଡ଼ିଆ-ଭାଷାଧିକାରୀ-ଉପାଧି' (ଓଡ଼ିଆ ଏମ୍.ଏ.) ଆଶା କରୁଥିବା ପରୀକ୍ଷାର୍ଥୀମାନଙ୍କୁ କେବଳ କବିତା କଲ୍ଲୋଳରେ ଆବଦ୍ଧ ନରହି, ମେହେର ପ୍ରତିଭାର ସାମଗ୍ରିକତା ନେଇ ପ୍ରଶ୍ନ କରିଥିଲା । ଏବର ପଣ୍ଡିତମ୍ମନ୍ୟ କର୍ତ୍ତାମାନଙ୍କ ଦୃଷ୍ଟିରୁ ଏ ହେଲା ଏକ ଅକ୍ଷମଣୀୟ ଅପରାଧ । ସେହି ବର୍ଷଠାରୁ ସେହି ପ୍ରଶ୍ନକର୍ତ୍ତାଙ୍କୁ ଓଡ଼ିଆ ଏମ୍.ଏ. ପରୀକ୍ଷା ସହିତ ସମ୍ପର୍କଶୂନ୍ୟ କରିଦିଆଯାଇଛି । ଏହି ପାଠ ଓ ପରୀକ୍ଷା ଦିନେ ବ୍ୟକ୍ତି-କୈନ୍ଦ୍ରିକ ଥିଲା ଯେ

ସେତେବେଳେ ପରୀକ୍ଷକ ଓ ପ୍ରଶ୍ନକର୍ତ୍ତାମାନଙ୍କ ମଧ୍ୟରେ ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ବିନାୟକ ମିଶ୍ରଙ୍କୁ ମଧ୍ୟ ପୂରେଇ ଦିଆଯାଉନଥିଲା । ପାଠକ ଏଇଥିରୁ ବୁଝିବେ ଯେ ଏଇସବୁ ତଥାକଥିତ ପରୀକ୍ଷା, ପ୍ରକୃତ ବିଦ୍ୟା-ପରୀକ୍ଷା ନା ମାନ ଓ ଅର୍ଥର ଉଖୁଡ଼ା-ଭାଗ ? ଯେଉଁମାନେ ଓଡ଼ିଆ ଏମ୍.ଏ. ପରକ୍ଷାର୍ଥୀଙ୍କୁ ଏମ୍.ଇ. ପିଲାଙ୍କପରି ଖଣ୍ଡିଏ ନିର୍ଦ୍ଦିଷ୍ଟ ପୁସ୍ତକରେ ଆବଦ୍ଧ ନରହି ଏକ ପ୍ରସିଦ୍ଧ ଓଡ଼ିଆ କବିର ସମଗ୍ରତା ଉପରେ ପରୀକ୍ଷା କରିବାକୁ ଯିବାରୁ ପ୍ରଶ୍ନକର୍ତ୍ତାଙ୍କ ଅଯୋଗ୍ୟ ଘୋଷଣା କଲେ, ତାଙ୍କ ଭିତରେ ଥିବା ଜଣେ ବିରାଟ ବେବର୍ତ୍ତା ବୋଧହୁଏ ଠିକ୍ ସେହିବର୍ଷ ସଚ୍ଚିଦାନନ୍ଦ ଦେବଙ୍କର 'ବୈଦିକ ପ୍ରକୃତି'କୁ ନାଟକ ବିଚାରି ପ୍ରଶ୍ନ କରିଥିଲେ (୧୯୬୧) । ଓଡ଼ିଆ ଏମ୍.ଏ.ରେ ଓ ଖବରକାଗଜରେ ସେହି ଅସାଧାରଣ ବିଦ୍‌ବତ୍ତାର ପ୍ରକାଶ୍ୟ ପ୍ରତିବାଦ ମଧ୍ୟ ହୋଇଥିଲା । ଏହିପରି ପଣ୍ଡିତମାନେ ହର୍ତ୍ତା-କର୍ତ୍ତା ଥିବାରୁ ନା ଓଡ଼ିଆ ଏମ୍.ଏ. ଉପହାସର ବସ୍ତୁ ହୋଇ ଉଠିଛି ।

## ରୁଷିଆର ହାଇସ୍କୁଲ୍ ଓ ଆମର ଓଡ଼ିଆ ଏମ୍.ଏ. –

ଆଜି ଅନ୍ୟ ଦେଶର ଲୋକେ ଚନ୍ଦ୍ର ଆଲୋକରେ ଉପନିବେଶ କରିବାକୁଗଲାବେଳେ, ଏଠି ତଥାକଥିତ ଓଡ଼ିଆ ପ୍ରଫେସରଗଣ, ଗୌଡ଼ୀୟ ବୈଷ୍ଣବ ଓ ଉତ୍କଳୀୟ ବୈଷ୍ଣବ ମତର ତୁଳନା, 'ମଥୁରା ମଙ୍ଗଳ'ରେ କୃଷ୍ଣ-ଚାଣୁର ମଲ୍ଲ-ଯୁଦ୍ଧର ବର୍ଣ୍ଣନା, ବିଦଗ୍ଧ ଚିନ୍ତାମଣିରେ ରାଧାର ବିରହାଶ୍ରୁ ସହିତ ଲାବଣ୍ୟବତୀର ତନ୍ନାମିକା ନାୟିକାର ବିରହାଶ୍ରୁର ଉଷ୍ଣତାର ତଫାତ୍‌ର ତୁଳନାକୁ ପ୍ରକୃଷ୍ଟ ସାହିତ୍ୟ-ଚର୍ଚ୍ଚା ବୋଲି ସେଥିରେ କେବଳ ମତ୍ତ ହେବା ନୁହେଁ, ସେଥିଲାଗି ବାହ୍ୱାସ୍ଫୋଟନ ମାରିବା ଓ ଏଇ ଅସାଧାରଣ କୃତିତ୍ୱପାଇଁ ପଦ-ପଦବୀ ଓ ଉଚ୍ଚ ଦରମା ହାର ପ୍ରଭୃତିର ଦାବି କରିବା ଏ ଦେଶରେ ଘୋର ବୌଦ୍ଧିକ ଓ ବିଡ଼ମ୍ବନାର ଉଭୟ ହାସ୍ୟକର ଓ ଦୁଃଖାତ୍ମକ ଦୃଶ୍ୟ ଛଡ଼ା ଆଉ କିଛି ହୋଇପାରେ କି ? ଏ ଦୃଶ୍ୟର ବିପରୀତରେ, ଅନ୍ୟ ଭାଷାର ଏମ୍.ଏ. ସ୍ତରର କଥା ଛାଡ଼ିଦିଅ, ସୋଭିଏଟ୍ ରୁଷିଆର ହାଇସ୍କୁଲ୍‌ମାନଙ୍କରେ ରୁଷୀୟ ସାହିତ୍ୟ ଅଧାପନାର ମାନଦଣ୍ଡ କେତେ ଉଚ୍ଚ, ତାହାର ଧାରଣାପଇଁ ପାଠକମାନଙ୍କ ଆଗରେ ନିମ୍ନଲିଖିତ ଚିତ୍ରଟି ଧରାଇ ଦେଉଛି ।

''ସୋଭିଏଟ୍ ସେକେଣ୍ଡାରୀ ସ୍କୁଲ୍‌ର ଉଚ୍ଚତର ଶ୍ରେଣୀମାନଙ୍କରେ ରୁଷୀୟ ସାହିତ୍ୟର ଐତିହାସିକ ବିବର୍ତ୍ତନ ଦୃଷ୍ଟରୁ ଅଧାପନା କରାଯାଇଥାଏ । ଛାତ୍ରମାନେ ରୁଷୀୟ ସମାଜ ଉପରେ ସାହିତ୍ୟର ପ୍ରଭାବ ଆଲୋଚନା କରନ୍ତି । ପୁଣି ସେମାନେ ଅନୁଶୀଳନ କରନ୍ତି ରୁଷୀୟ ସାହିତ୍ୟରେ ଜାତୀୟତା ଓ ଦେଶ ପ୍ରେମର ଅଂଶ ଓ ସବୁ ଜାତିର ବିପ୍ଲବ ଓ ମୁକ୍ତି ସଂଗ୍ରାମରେ ଏ ସାହିତ୍ୟ କିପରି ମୁଖ୍ୟ ଭାବରେ ସହାୟତା କରିଛି । ସେମାନେ ଗୋଟିଏ ସାହିତ୍ୟିକ ରଚନାର ଆଦର୍ଶଗତ ଆଭିମୁଖ୍ୟ, ତାହାର ରଚନାଶୈଳୀ, ଯୋଜନା, ଚରିତ୍ର ସମାବେଶ ଓ ଭାଷା ଇତ୍ୟାଦିର ବିଚାର ମଧ୍ୟ ଶିଖନ୍ତି; ସାହିତ୍ୟର ଭିନ୍ନ-ଭିନ୍ନ ଯୁଗର ବିବର୍ତ୍ତନ ଓ ପ୍ରଧାନ ସାହିତ୍ୟିକ ଧାରାମାନଙ୍କ ସହିତ ମଧ୍ୟ ପରିଚିତ ହୁଅନ୍ତି; ସାହିତ୍ୟ ପାଠ୍ୟକ୍ରମ ଭିତରେ ଛାତ୍ର, ବିଶ୍ୱ-ସାହିତ୍ୟର ପ୍ରଧାନ-ପ୍ରଧାନ ରଚନାମାନଙ୍କ ସହିତ ମଧ୍ୟ ପରିଚିତ ହୋଇଥାଏ ଏବଂ ବିଶ୍ୱସାହିତ୍ୟରେ ରୁଷୀୟ ସାହିତ୍ୟର

ମୁଖ୍ୟ ଭୂମିକା ସମ୍ବନ୍ଧରେ ଅବଗତ ହୁଏ । ଅଷ୍ଟମରୁ ଦଶମ ଶ୍ରେଣୀ ଭିତରେ, ଦଶମ ଶତାବ୍ଦୀରୁ ଆରମ୍ଭ କରି ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ରୁଷୀୟ ସାହିତ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ପ୍ରଧାନ-ପ୍ରଧାନ ରଚନାବଳୀ ପଠିତ ହୁଏ ।''

ପବ୍ଲିକ୍ ଏଡୁକେଶନ, ଇଉ. ଏସ୍.ଏସ୍. ଆର୍., ୱାଇ., ଏନ୍. ମେଡ଼ିନିସ୍କି, ପୃ.୬୪, ୬୫

## ମାଷ୍ଟର୍ ଅବ୍ ଲିଟରେଚର ଡିଗ୍ରୀ –

ଏଇସବୁ ଦେଖି ଲେଖକର ବର୍ତ୍ତମାନ ଏଇ ମତ ଯେ ଆମ ଦେଶର ପରିସ୍ଥିତିକି ଚାହିଁ, ଆମ ବିଶ୍ୱବିଦ୍ୟାଳୟରେ ଏଣିକି ଇଂରାଜୀ ବା ଓଡ଼ିଆ ଏମ୍.ଏ. ପାଠକୁ ସ୍ୱତନ୍ତ୍ର ନରଖି ଗୋଟିଏ ସାଧାରଣ 'ମାଷ୍ଟର୍ ଅବ୍ ଲିଟରେଚର' ଡିଗ୍ରୀ ଖୋଲାଯାଉ ଓ ଯେକୌଣସି ଭାଷା ଓ ସାହିତ୍ୟର ଅଧ୍ୟାପନାପାଇଁ ଏହି ଡିଗ୍ରୀକୁହିଁ ଆଦ୍ୟ ଆୟୋଜନ ବୋଲି ଗ୍ରହଣ କରାଯାଉ । ଏହି ଡିଗ୍ରୀପାଇଁ ଛାତ୍ରକୁ ନିଜ ଭାରତୀୟ ଭାଷା ଛଡ଼ା, ଅନ୍ତତଃ ଦୁଇଟି ବିଶ୍ୱ-ଭାଷା ସହିତ ପରିଚିତ ହେବାକୁ ବାଧ ହେବାକୁ ପଡ଼ିବ । ସେ ଦୁଇଟି ହେଉଛନ୍ତି ସଂସ୍କୃତ ଓ ଇଂରେଜୀ । ସଂସ୍କୃତ ନଜାଣିଲେ ଭାରତକୁ ଜାଣିହେବନି, ଇଂରାଜୀ ନଜାଣିଲେ ବିଶ୍ୱକୁ ଜାଣିହେବନି, କି ସାହିତ୍ୟ କ'ଣ ତା ବୁଝିହେବନି । ବି.ଏ.ରେ ସଂସ୍କୃତ ନଥିଲେ ବା ଅନ୍ୟଥା, ସେହି ସ୍ତରର ସଂସ୍କୃତ ଜ୍ଞାନ ନଥିଲେ ଓ ବି.ଏ.ର ବାଧ୍ୟତାମୂଳକ ଇଂରାଜୀରେ ସେମାନଙ୍କର ଅନ୍ତତଃ ଶତକରା ୫୧ ମାର୍କ ନଥିଲେ, ସେମାନଙ୍କୁ ଏ ଡିଗ୍ରୀର ଛାତ୍ର ରୂପେ ଗ୍ରହଣ କରାଯିବନାହିଁ । ଏହି ଏମ୍.ଏ.ର ଆଠଟାଯାକ ପତ୍ର ଇଂରାଜୀ, ସଂସ୍କୃତ ଓ ଓଡ଼ିଆ ସାହିତ୍ୟ (ବା ଅନ୍ୟ ଭାରତୀୟ ସାହିତ୍ୟ)ର ଆଲୋଚନା ଉପରେ ବାଣ୍ଟିଦିଆଯିବ ।

ଅନେକ ଗତାନୁଗତିକ-ବୁଦ୍ଧି-ମାତ୍ର ପଣ୍ଡିତେ ୟାକୁ ହସିପାରନ୍ତି । କିନ୍ତୁ ଟିକିଏ ଭିତରକୁ ପଶି ଆଲୋଚନା କଲେ ସେ ଦେଖିପାରିବେ ଯେ, ଆଧୁନିକ ଯୁଗରେ ଭାରତରେ ବା ଓଡ଼ିଶାରେ ପ୍ରକୃତ ମୂଲ୍ୟବାନ୍ ସୃଷ୍ଟି ଯେ କେହି କରିଯାଇଛନ୍ତି, ତାଙ୍କ କଲମ ପଛରେ ଉପର-ବର୍ଣ୍ଣିତ 'ମାଷ୍ଟର୍ ଅବ୍ ଲିଟରରେଚର୍' ଡିଗ୍ରୀହିଁ ଅଦୃଶ୍ୟଭାବରେ କାମ କରିଛି । ଅର୍ଥାତ୍ ସେ ଇଂରାଜୀ, ସଂସ୍କୃତ ଓ ନିଜ ଭାଷା ସହିତ ସମାନଭାବରେ ପରିଚିତ ଥିଲେ । ଦେଖ ରବୀନ୍ଦ୍ରନାଥ, ଦେଖ ରାଧାନାଥ, ଫକୀରମୋହନ ଓ ମଧୁସୂଦନ, ଦେଖ ବଙ୍କିମ ଓ ଶରତ୍ । ପ୍ରତିଭାବାନ୍ ଲେଖକ ବା ସାହିତ୍ୟିକର କୌଣସି ଡିଗ୍ରୀ ଦରକାର ନାହିଁ, କିନ୍ତୁ ଯେକୌଣସି ଭାରତୀୟ ଭାଷାରେ ଯେ କେହି, ମୂଲ୍ୟବାନ୍ କିଛି ସୃଷ୍ଟି କରିବାକୁ ଇଚ୍ଛା କଲେ, ନିଜ ଭାଷା ଛଡ଼ା ଆଜି ତାଙ୍କର ଏକପକ୍ଷରେ, ଭାରତୀୟ ଜ୍ଞାନ ଓ ସଂସ୍କୃତିର ଆଧାର ସଂସ୍କୃତ ଓ ଅନ୍ୟପକ୍ଷରେ ଆନ୍ତର୍ଜାତୀୟ ଜ୍ଞାନର ଆଧାର ଇଂରାଜୀ ସହିତ ଘନିଷ୍ଠ ପରିଚୟ ଅପରିହାର୍ଯ୍ୟ । କେଶବ କୋଇଲି ଓ ମନବୋଧ ଚଉତିଶା ଉପରେ ଫାଷ୍ଟକ୍ଲାସ୍ ଏମ.ଏ. ଗୋଲ୍ଡମେଡ଼ାଲ୍ ଦେଖାଇ ଆଜିର ଯୁଗରେ ସାହିତ୍ୟିକ ବା ସାହିତ୍ୟର ଅଧ୍ୟାପକ ବୋଲେଇବା ଘୋର ଉପହସନୀୟ ମୂର୍ଖତା ଛଡ଼ା ଆଉ କିଛି ନୋହିପାରେ । ଗୋଟିଏ ତେଲୁଗୁ ପ୍ରବଚନ ଏହିପରି ଅଛି–'ରାମ ପାଲିଙ୍କିରେ ଯିବାର ଦେଖି, ଶ୍ୟାମ ପୋଖରୀ ହୁଡ଼ା ଉପରେ ଠିଆହେଲା', ଅର୍ଥାତ୍ ସେହିପରି ଭାବରେ ସେ ରାମର ସମାନ ହେବାକୁ ଚେଷ୍ଟା କଲା । ସେହିପରି ହୁଏତ ଆଜି ଓଡ଼ିଆରେ ଏମ୍.ଏ. ଫାଷ୍ଟକ୍ଲାସ୍, ଗୋଲ୍ଡମେଡ଼ାଲର ଲେବୁଲ୍ । ଏହା

କୌଣସି-କୌଣସି ବ୍ୟକ୍ତିର ଅଭିମାନ ଓ ଆସ୍ପର୍ଦ୍ଧାକୁ ସନ୍ତୋଷ ଦେଇପାରେ, କିନ୍ତୁ ଲେଖକର ଦୃଢ଼ ଧାରଣା ଯେ, ଏହାଦ୍ୱାରା ତାର ମାତୃଭାଷା ଓ ସାହିତ୍ୟର ସାମାନ୍ୟତମ ଉନ୍ନତି ହେବାକୁ ଯାଉନି। ରାଧାନାଥ ଯଦି ଇଂରାଜୀ ଜାଣିନଥାନ୍ତେ ସେ ଓଡ଼ିଆ ଭାଷାକୁ କି ନୂତନ ଉପହାର ଦେଇପାରିଥାନ୍ତେ ? ଯଦି ପ୍ରତିଭାବାନ୍, କିନ୍ତୁ ଇଂରାଜୀ-ଅନଭିଜ୍ଞ ରାଧାନାଥ କିଛି ଦେଇ ପାରି ନଥାନ୍ତେ, ତେବେ କମଲଲୋଚନ ଚଉତିଶା ବା ଗୁଣ୍ଡିଚା ବିଜେକୁ ବିଶ୍ୱର ଶ୍ରେଷ୍ଠ ସାହିତ୍ୟ ମନେକରୁଥିବା ଓ ଗୋଦାବରୀଶ ମିଶ୍ରଙ୍କୁ ଟେନିସନ୍ ସହିତ ତୁଳନା କରୁଥିବା ଲୋକ କ'ଣ ଦେଇପାରିବେ, ଏ ଭାଷାକୁ ? ଅନ୍ଧ ଅନ୍ଧେନ ନୀୟମାନ ଅବସ୍ଥାକୁ ଯେ ପୁଣି ଆସିଗଲେ ଆମେ । ମୃତ୍ୟୁଞ୍ଜୟ ରଥ ବା ଗୋପୀନାଥ ନନ୍ଦ ଆଉ ଦେଖାଦେବେନି, କି ରାଧାନାଥ, କି ନନ୍ଦକିଶୋରଙ୍କୁ ଆମେ ଆଉ ଭେଟିବାନି। ଆସିବେ ଏଥର ବର୍ଷ ପରେ ବର୍ଷ କେବଳ ଗଣ୍ଡା ଗଣ୍ଡା ଶସ୍ତା ଡିଗ୍ରୀଧାରୀ ଅଯୋଗ୍ୟର ଦଳ। ଏମାନେ ଜାଣିଲେ କ'ଣ ଯେ, ଏକ ଅନୁନ୍ନତ ଭାଷାକୁ ଉଠେଇବେ ଏମାନେ ?

## ବ୍ୟକ୍ତି ଓ ଶ୍ରେଣୀ –

ପାଠକେ, ଗୋଟିଏ ସମଗ୍ର ଶ୍ରେଣୀ ବିରୋଧରେ କହିବା ଅଯୌକ୍ତିକ ବୋଲି, ଆପଣମାନଙ୍କ ଅପେକ୍ଷା ଏ ଲେଖକ ଅଧିକ ସଚେତନ । କେବଳ ସଚେତନ ନୁହେଁ, ଗଭୀରଭାବରେ ଦୁଃଖିତ ଓ ବ୍ୟଥିତ; କିନ୍ତୁ ସଂସ୍କାରର ଆନ୍ଦୋଳନ, ପ୍ରତିଷ୍ଠିତ ସଂସ୍ଥା ବା ଶ୍ରେଣୀ ବିରୋଧରେହିଁ ହୁଏ, ବ୍ୟକ୍ତି ବିରୋଧରେ ନୁହେଁ । ବାପୁଜୀ ଇଂରେଜ ଶାସନକୁ ସଇତାନୀ ବୋଲି କହିଲା ବେଳେ, ତାଙ୍କର ଶତ ଶତ ଉଦାରମନା ଇଂରେଜ ବନ୍ଧୁଙ୍କର ଅସ୍ତିତ୍ୱ ଭୁଲିଯାଇନଥିଲେ । ପୁଣି ଗୋଟିଏ ମୁଷ୍ଟିମେୟ ଶ୍ରେଣୀର ସ୍ୱାର୍ଥପାଇଁ ଦୁଇକୋଟି ଲୋକର ଏକ ଐତିହାସିକ ଭାଷା ଓ ସାହିତ୍ୟର ସ୍ୱାର୍ଥ ଭୁଲିଯିବା ବୋଧହୁଏ ଅଯଥାର୍ଥ ହେବ । ପୁଣି ଅନେକ ଓଡ଼ିଆ ଅଧ୍ୟାପକ ନିଜେ ସେ ନିଜ ବିଭାଗର ଆମୂଳ ସଂସ୍କାର ଚାହାନ୍ତି, ତାହା ଏ ଲେଖକ ଉତ୍ତମରୂପେ ଜାଣେ; କାରଣ, କହିରଖେ ଯେ, ଏହି ପ୍ରବନ୍ଧଟି ପ୍ରତିନିଧି ସ୍ଥାନୀୟ ଦୁଇ ଜଣାଶୁଣା ଓଡ଼ିଆ ଅଧ୍ୟାପକମାନଙ୍କଦ୍ୱାରା 'ଆପ୍ରୁଭ୍ଡ଼' (ସମ୍ମତିପ୍ରାପ୍ତ) ହେଲା ପରେ ହିଁ ଏହା ପ୍ରକାଶ କରିବାକୁ ଦିଆଯାଇଥିଲା । ସେମାନଙ୍କ ନାମ ମୁଁ ପ୍ରକାଶ କରିପାରିବିନାହିଁ। କାରଣ, ଆଜି ଏ ଦେଶରେ ଜଣେ ଓଡ଼ିଆ ଅଧ୍ୟାପକ ଏକ ଚୁଗୁଲିଜୀବୀ ପତ୍ରିକା ସହିତ ସଂପୃକ୍ତ ଥିବାରୁ, ଓଡ଼ିଆ ଏମ୍.ଏ. ବିରୋଧରେ ବା ସେହି ଲୋକର ସ୍ୱାର୍ଥ ବା ପାଣ୍ଡିତ୍ୟରେ ସାମାନ୍ୟତମ ଆଞ୍ଚ ଆଣିଲା ଭଳି ଯାହାକୁ ଦେଖାଯିବ, ସେହି ଚୁଗୁଲିପତ୍ରିକା ତାର ଆଗାମୀ ସଂଖ୍ୟାରୁ ତା ବିରୋଧରେ ଆରମ୍ଭ କରିଦେବ କୁତ୍ସା-ରଟନା । ଏହି ମଣି-କାଞ୍ଚନ ମିଳନ ଓଡ଼ିଆ ସାହିତ୍ୟ ଓ ସମାଜରେ ଆଜି ଏକ କୋକୁଆଭୟ ରୂପେ ଦଣ୍ଡାୟମାନ ଓ ଏ ଦେଶରେ ସ୍ୱାଧୀନଚିନ୍ତା ଓ ସ୍ପଷ୍ଟବାଦିତାର ବେକ ମୋଡ଼ିରଖିଛି । ଏହି ପ୍ରବନ୍ଧର ପ୍ରଚୁର କୁତ୍ସା ମଧ୍ୟ ସେହି ପତ୍ରିକାରେ ଉଦ୍‌ଗୀର୍ଣ୍ଣ ହୋଇଥିଲା । କୁତ୍ସାକୁ କାହାର ଭୟ ନାହିଁ ? କୁତ୍ସାର ଏହି ବିଭୀଷିକା ଯୋଗୁଁ ଓ ଶ୍ରେଣୀରେ ରହି ଶ୍ରେଣୀର କେତେକ ବେବର୍ତ୍ତା ବା ପଣ୍ଡାମାନଙ୍କ ବିରୁଦ୍ଧରେ, ବା ସମୂହ ଭାବରେ ଶ୍ରେଣୀ ବିରୋଧରେ ପାଟି ଫିଟେଇବା ଏମାନଙ୍କ ପକ୍ଷରେ ସମ୍ଭବ ନୁହେଁ। ସଂସ୍କାରାଶାୟୀ ଲେଖକ, ସେ ଶ୍ରେଣୀର ବାହାରେ । ଏ ଲେଖକ ଦେଖୁଛି ଯେ, ଏକ ଶସ୍ତା ବୁଦ୍ଧିଜୀବୀ ଦଳର ଅଭ୍ୟୁଦୟ,

ତା'ର ପ୍ରିୟ ଭାଷା ଓ ସାହିତ୍ୟକୁ ମଧ୍ୟଯୁଗର ଅନ୍ଧକାରକୁ ନେବା ଉପରେ । ତେଣୁ ସେ ତା'ର ଦେଶ, ଜାତି,ଭାଷା ଓ ସାହିତ୍ୟର ସ୍ୱାର୍ଥ ଓ ଭବିଷ୍ୟତ ଦୃଷ୍ଟିରୁ ଦୁଇଶ ବର୍ଷ ତଳେ ରାଜା ରାମମୋହନଙ୍କ ପରି ନିଜ ଭାଷାର ପଣ୍ଡିତଂମ୍ମନ୍ୟ ମୂର୍ଖମାନଙ୍କ ବିରୋଧରେ ପାଟି ଫିଟେଇବାକୁ ବାଧ ହୋଇଛି ଓ ତା'ର ଦେଶବାସୀଙ୍କୁ ଏକ ଓ୍ୱାର୍ଣ୍ଣିଂ ଦେଇ ଯାଉଛି—ଦେବାଟା ଏକ ଜରୁରୀ ନୈତିକ କର୍ତ୍ତବ୍ୟ ମନେକରି । ଆଶା, ଦିନେ ଦେଶବାସୀ ସେ ଓ୍ୱାର୍ଣ୍ଣିଂର ମୂଲ୍ୟ ବୁଝିବେ ।

ଓଡ଼ିଆ ଅଧ୍ୟାପକ ନିଜେଇ ଓଡ଼ିଆ-ଅଧ୍ୟାପନାର ଆମୂଳଚୂଳ ସଂସ୍କାର ଯେ ଚାହାନ୍ତି, ଏକ ଜଣାଶୁଣା ଓଡ଼ିଆ ଅଧ୍ୟାପକଙ୍କର ନିମ୍ନଦତ୍ତ ପତ୍ରଟିହିଁ ତାହା ପରିପୂର୍ଣ୍ଣଭାବରେ ପ୍ରମାଣ କରିବ । 'ନବଜୀବନ'ରେ ଏହି ପ୍ରବନ୍ଧ ପ୍ରକାଶିତ ହେଲା ପରେ (କିଞ୍ଚିତ୍ ଭିନ୍ନଭାବରେ) ଏକାଧିକ ଓଡ଼ିଆ ସାହିତ୍ୟିକ ଓ ଅଧ୍ୟାପକ ଏହାର ପ୍ରତିଟି କଥା ସତ୍ୟ ବୋଲି, ମୋ ଆଗରେ କହିଯାଇଛନ୍ତି, କିନ୍ତୁ ଆଲୋଚନାରେ ଯୋଗ ଦେଇପାରିନାହାନ୍ତି, ବୋଧହୁଏ ପୂର୍ବୋକ୍ତ ଚୁଗୁଲି-ପତ୍ରିକାର ଭୟରେ ।

**ଭଦ୍ରଖ କଲେଜ**
**୨୪/୩**

**ମାନନୀୟେଷୁ,**

ମୋର ନମସ୍କାର ଜାଣିବେ । ନିଆଁଖୁଣ୍ଟାରୁ ଆପଣଙ୍କ ପ୍ରବନ୍ଧ ବିଷୟ ଜାଣି ଆଜି 'ନବଜୀବନ'ର ଦୁଇଟି ସଂଖ୍ୟାରୁ ପ୍ରବନ୍ଧଟି ପଢ଼ିଲି । ପ୍ରବନ୍ଧଟି ପଢ଼ି ମତେ ଏତେ ଭଲଲାଗିଲା ଯେ, ଆପଣଙ୍କୁ ପତ୍ର ନଲେଖି ରହିପାରିଲିନାହିଁ । ମୁଁ ନିଜେ ଓଡ଼ିଆ ଅଧ୍ୟାପକ ହେଲେ ମଧ ଓଡ଼ିଆ ଅଧ୍ୟାପକମାନଙ୍କ ବିଷୟରେ ଆପଣ ଯେଉଁ ମନ୍ତବ୍ୟ କରିଛନ୍ତି, ମୁଁ ଅନେକ ଦିନ ହେଲା, ଦୁଃଖର ସହିତ ତାହାହିଁ ଉପଲବ୍ଧି କରିଆସୁଛି । ଅପ୍ରିୟ ହେଲେ ବି ଆପଣ ସତ୍ୟକଥା ଲେଖିଛନ୍ତି । ଅବଶ୍ୟ ଏହାର ବ୍ୟତିକ୍ରମ ଅଛି । କିନ୍ତୁ ବ୍ୟତିକ୍ରମ ତ ବିଧାନ ନୁହେଁ । ଆପଣଙ୍କର ଅଧିକାଂଶ ଯୁକ୍ତି ଓ ମତ ସହିତ ମୁଁ ଏକମତ । ଏହିଭଳି ନିର୍ଭୀକଭାବରେ ଆମର ସାମ୍ପ୍ରତିକ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ଆପଣ ମତ ପ୍ରକାଶ କରି ପ୍ରବନ୍ଧମାନ ଲେଖନ୍ତୁ । କୁଶଳରେ ଥିବେ ଆଶା କରେଁ ।

ଇତି

ସ୍ନେହାଧୀନ

ଡକ୍ଟର ମାୟାଧର ମାନସିଂହ                କୃଷ୍ଣଚରଣ ବେହେରା

## ପଞ୍ଚଦଶ ଅଧ୍ୟାୟର ପରିଶିଷ୍ଟାବଳୀ

## ପରିଶିଷ୍ଟ - ୧

## ଓଡ଼ିଆ ଅଧ୍ୟାପନାର ଆମୂଳ ସଂସ୍କାର ଓ ଚେଷ୍ଟା

Extract from the minutes of the meeting of the Academic Council held on the 14th, 15th and 19th December, 1953, in the Utkal University office at Cuttack.

Business brought forward by members—

No. 33. Dr. M. Mansinha

Sir, I beg to move that a committee be appointed to examine Oriya studies at the undergraduate and postgraduate stages in our University and submit report to the next session of the Academic Council on how matters could be improved with regard to syllabus, textbooks and examination. The Committee be constituted as follows–

Ray Bahadur A.B.Mohanty

Dr. K. K. Kar

Sri Raj Kishore Ray

Sri Baikunthanath Patnaik

Sri Bidhu Bhusan Das

Dr. Karunakar Kar to act as Convener and Secretary

It was agreed that the resolution be referred to the Board of Studies in Oriya which will consider it along with the scheme which will be submitted by Dr. Mansinha.

## ପରିଶିଷ୍ଟ-୨

## କେବଳ ଶସ୍ତା ପାସ୍-ଲକ୍ଷ୍ୟରେ ଓଡ଼ିଆ ନେବା ନିବାରଣର ଚେଷ୍ଟା

Meeting of the Academic Council, dated 14th, 15th & 19th December, 1953. (Resolution No.20)

**Original Resolution of Dr. M. Mansinha**

1. That in view of the fact that M.I.Ls. are now compulsory for the Intermediate & Degree Examinations of our University, these may be dropped as group subjects for these examinations with effect from 1953 as, study of these languages over and over again to the exclusion of other important subjects, is seriously affecting the mental equipment of our future citizens and the quality of our degree and diplomas.

2. That with the exclusion of M.I.L. as group subjects, the papers for compulsory M.I.Ls. for Intermediate and Degree Examinations be treated as those on English for purpose of more progressive study of these languages by our students then has been the case so far.

**Resolution as acceapted by the Academic Council**

"RESOLVED that at the Intermediate stage candidates who offer one of the M.I.L.S. as an optional subject should be exempted from offering M.I.L. compulsory but should appear at two M.I.L. papers and at one paper in the corresponding classical language. The papers are to be grouped together.

Mr. B.N. Patnaik's amendment was to fix the minimum pass mark for the classical paper as '25'.

The above resolution together with the amendment of Mr.Patnaik was accepepted by the Council and was referred to the Standing Committee to amend the Regulations for framing necessary amendments to Regulations.

## ପରିଶିଷ୍ଟ-୩

## ଓଡ଼ିଆ ଏମ୍.ଏ. ଅଧ୍ୟାପନାର ସଂସ୍କାର

D.O. No. 914

Dr. M. Mansinha, M.A. Ph.D. (Durham)

Principal, G.M. College, Sambalpur, February 16, 1955.

My dear Dr. Prasad,

Enclosed is a scheme for reorganising Oriya studies in the Utkal University in compliance with your request. The estimate of expenditure has to be done in consultation with you and also the fixing of the status and scale of pay of the personnel in different posts. I have sent a copy of this to the Registrar, Utkal University so as to reach in time to be accepted for the agenda of the next meeting of the Academic Council which you desired in your phone talk to me. I would like to have discussions with you on the 24th instead of on the 27th as you desired. The revised and recast scheme may then be sent to the University office.

Yours sincerely
Sd/- M. Mansinha

Dr. B. Prasad, D.Sc. (London)
Director of Public Instruction,
Orissa, Cuttack.

### A SCHEME
### FOR REORGANISING POSTGRADUATE ORIYA STUDIES IN THE UTKAL UNIVERSITY

**Introduction--**

The Utkal University was created for the supposed purpose of expanding, advancing and upholding the Oriya language, literature and culture. I think, as a symbol of this aspect of a new University at Cuttack, a postgraduate Department in Oriya was created in the Ravenshaw College with all the necessary paraphernalia and

expenditure and Oriya was made to play a dominant role at all levels of the University courses. We all feel now that neither measure has been fruitful in any way in realising the dreams of the progenitors of the University who had visualised a glorious future of Oriya language and literature by merelý having a separate University for Orissa. Radhakrishnan Report has remarked that the new University at Cuttack has failed so far to influence the national life and culture in any way, (pp. 527).

Nowhere has a language advanced by merely opening an M.A. examination in that language. In the meantime, postgraduate Oriya studies are being conducted in three Universities, not alone at the Ravenshaw College under the Utkal University. Of the three, that at Santiniketan only is doing some respectable work through research and publications.

If postgraduate Oriya studies in the Utkal University have to be reorganised, adequate provisions have to be made for scholarly researches and publications as is being done in, say, Annamalai University where a separate Tamil College has been founded for the purpose.

I would therefore suggest that the Utkal University should have a new institution combining the M.A. classes with researches and publications, side by side. The Oriya M.A. examination has also to be remodelled to make it stand on par with other postgraduate studies in the University and give the advanced students of Oriya thorough knowledge of the fundamental literary principles besides their specialised study of Oriya language and literature.

In the meantime the State and the Union Government and the University itself have been making announcements and incipiant efforts to encourage literary and scholarly productions. As far as Orissa is concerned, I am sure, there is not adequate personnel of the right type to carry on such activities through more than one channel. I am afraid, the right type personnel available in Orissa is not sufficient for even one single institution. So, it would be wise to combine all such activities, represented by the Oriya literature Improvement Committee, the postgraduate Oriya Classes of the Ravenshaw College, the proposed State Shahitya Akademi etc., etc., into one, single, efficient, respectable and adequate body under the auspices of the Utkal University.

I would call this multipurpose institute as the Oriya Academy or Utkal-bharatee. This will have five sections-(1) Researches (2)

Compilations (3) Translations (4) Publications and also (5) Advanced teaching in Oriya language and literature. The Tamil College of Anamalai University has been doing similar work with great efficiency and scholarliness. Viswabharati is also doing similar work under almost exactly these lines. The section 5 will be the postgraduate Oriya Department with direct relation to section 2. i.e., Researches, which will also have its own independent staff. While section 5 will be under the semi-independent charge of a Professor, all sections including section 5 will be under the over-all charge of a Director or Rector, co-ordinating the activities of all the branches.

**Details of Organisation**

1. Postgraduate Oriya Department, (section 5 of the proposed Oriya Academy.)

The courses of study will be recast as follows in line with the syllabus of Postgraduate English Courses in our own and other Universities and that of M.I.Ls in other Universities. (Separate enclosure).

2. Researches, Compilations, Translations, Publications, (sections 1,2,3 and 4).

Nobody can say how each of these sections will develop gradually in years to come. To start with, all sections may be put directly under the charge of the Director of the Academy, he being assisted by at least 3 assistants (one of whom being an M.A. in Sanskrit and another M.A. in Oriya, both with good academic records all through), 3 scribes, 3 clerks, 1 dufftary, 3 peons and 1 menial servant.

The compilations will include such stupendous undertaking as the Oriya Encyclopaedia the compiling of an authoritative Oriya Dictionary on the lines of Oxford Dictionaries.

Researches will be both on individual Oriya authors as well as on total literacy periods and problems.

Translation will be undertaken of 100 best books in the world into Oriya literature (as is being planned by the National Shahitya Akademi). Publications will be on the lines of the Viswabharatee and the Mysore University, comprising (1) a popular series on all aspects of Human knowledge and (2) Scholarly publications of highly specialised character such as on Philolosy, Prosody etc., or authenticated editions of particular authors.

**Estimate of Expenditure.** (To be presented later)

x x x x

**Remodelled Courses of Studies of P.G. Oriya Examination**

There shall be eight papers each carrying 100 marks and being of four hours' duration.

Paper I– Epics and Puranas (from Sarala Das to modern times)–100.

Paper II– Kavyas–Medieval and Modern– 100

Paper III– Songs and Lyrics (From Baudha Gan O Dohan to Modern times)–100.

Paper IV–

Part I– Drama and Novel – 50

Part II– Stories, Essays and Satires–50

Paper V- Histories of language and literautre and principles of Philology-100

Paper VI – Principles of literary criticism, Western and Indian, and Principles of Oriya Prosody-100

Paper VII– Subsidiary languages (Pali and Prakrti 50 marks + Sanskrit 50 marks).

Paper VIII– Two essays or one dissertation on any literary topic covering about twenty thousand words – 100

(Note:– The existing syllabus for the M.A. examination in Oriya appears to be inadequate, fragmented and unsuitable for coherent and comprehensive study of the whole subject. Such an important subject like poetry, for instance, is placed in two papers. The Kavya, perhaps the most peculiar feature of the Oriya literature has no paper at all. History of Oriya literature for which there is no authoritative and comprehensive book as yet, has no reason to usurp one full paper, nor has History of Oriya language any more claim to another full paper. The Puranas and Epics are completely left out. The word "Poetry" cannot cover such stupendous experiments. The present syllabus is irritatingly burdened also with such absolutely non-literary topics as Orissan Vaisnavism and Gaudiya Vaishnavism which are fit only for Theological symmposia. These therefore have not been permitted any place of undue importances in the proposed syllabus. The so-called subsidiary language has not much relation or utility to the main subject. My information is that generally Hindi and Bengali, the latter mostly, is taken up and the candidates are tested in puerile fashion. Even without being a part of Oriya M.A. Examination, these

languages are now studied in remote interiors of the State by even semiliterate girls. So, there is no point in burdaning the M.A. syllabus with such unnecessary stuff. On the other hand, feeling the importance of a back-ground of Pali and Sanskrit for any scholar in Oriya, I have provided both, in a compulsory paper, in place of two papers i.e., Pali plus Prakrit and the subsidiary language. In my recasting I have tried to eliminate these defects and to present a simpler and more comprehensive one. A tentative list of textbooks and reference books covering the different papers is also appended, to enable members of the Academic Council to understand how the proposed syllabus shall be more complete and comprehensive picture of Oriya literature and shall be more intellectual in scope and content, than the existing one. It will be in the appropriate attitude of the University, if for the study of such common topics as principles of Philology and literary crtiticism, students of the Oriya M.A. Classes were allowed to join their friends in the English M.A. Classes. Those of the English section would be amply rewarded, I believe, if they attended a few lecturers on Sanskrit poetics in the Postgraduate Oriya Department. Such mutual co-operation between these two important Literature Departments of the University is sure to generate a healthy cultural atmosphere which is most desired)".

## ପରିଶିଷ୍ଟ-୪

### ପରୀକ୍ଷାର ସୁରକ୍ଷା –

ବିଦ୍ୟାକ୍ଷେତ୍ର ଆଜି ତାର ପୂର୍ବର ପବିତ୍ରତା, ଶାଳୀନତା, ଗାମ୍ଭୀର୍ଯ୍ୟ ଓ ଗୁରୁତା କିପରି ବୀଭତ୍ସ ନିର୍ଲଜ୍ଜତା ସହିତ ହରାଇ ଚାଲିଛି ଓ ତାହା ଆଜି ସଂକ୍ରାମକ ବ୍ୟାଧି ପରି ଆମ ଦେଶରେ କି ଭାବରେ ପରିବ୍ୟାପ୍ତ, ତା'ର ବିଭୀଷିକାମୟ ସଚେତନତା ମତେ ପ୍ରଥମେ ଆଣି ଦେଲା, ଜଣେ ଉଚ୍ଚପଦସ୍ଥ ଓଡ଼ିଆ ଅଧ୍ୟାପକଙ୍କର ସଂପୂର୍ଣ୍ଣ-ଅପ୍ରତ୍ୟାଶିତ, ଅଶୋଭନୀୟ ଓ ଅବୈଧ, ନିମ୍ନଦତ୍ତ ପତ୍ରଟି । ପତ୍ରରେ ଥିବା ବାକ୍ୟମାନଙ୍କର ଅଯଥାର୍ଥତା ଓ ଅଜ୍ଞତା ପାଠକମାନଙ୍କୁ ବୁଝାଇଦେବା ଲକ୍ଷ୍ୟରେହିଁ କେତୋଟି ଟିପ୍ପଣୀ ସହିତ ମୋର ଉତ୍ତରଟି ସନ୍ନିବେଶିତ କରିରଖିଲି । କୌଣସି ଛାତ୍ର ଏପରି ଲେଖିଥିଲେ, ବିଶ୍ୱବିଦ୍ୟାଳୟର ନିୟମ ଦୃଷ୍ଟିରୁ ସେ ଦଣ୍ଡିତ ହୋଇଥାନ୍ତା । କିନ୍ତୁ ବ୍ୟକ୍ତିଗତ ଭାବରେ, ବୟସ ଦୃଷ୍ଟିରୁ ମୁଁ ହୁଏତ ତାକୁ କେବଳ ସାବଧାନ କରାଇ କ୍ଷମା ଦେଇଥାନ୍ତି । କିନ୍ତୁ ଦେଶର ଜଣେ ଉଚ୍ଚପଦ-ଓ-ଦରମା ବିଶିଷ୍ଟ ଅଧ୍ୟାପକ ଯେଉଁଠି ଏପରି କର୍ମ କରନ୍ତି, ସେଠି ଏ ଅପରାଧକୁ ଗର୍ହିତତମ ଜାତୀୟ ଅଭ୍ୟାସ ବୋଲି କହିବାକୁ ହେବ; ଯାହାକି ଏକ ଜାତି ପକ୍ଷରେ ଘୋରତମ ନିନ୍ଦନୀୟ ଅବସ୍ଥା । ଆମେ ଆଜି ସେହି ଅବସ୍ଥାରେ ଆସି ପହଞ୍ଚିଛେ

କି ? ଯେକୌଣସି ସଭ୍ୟ ଦେଶରେ ଏହି ପତ୍ର ଯୋଗୁହିଁ ଏହି ଅଧ୍ୟାପକ ନିଶ୍ଚିତ ଭାବରେ ତାଙ୍କ ପଦପଦବୀ ହରାଇଥାନ୍ତେ । ଏଠି କିନ୍ତୁ ଦୁର୍ନୀତି, ଦୁରଭ୍ୟାସ ଓ ଦୁଷ୍କର୍ମ ଏପରି ଭାବରେ ଜାତୀୟ ଧର୍ମରେ ପରିଣତ ହେଲାଣି ଯେ, ଏସବୁର ବିପରୀତହିଁ କ୍ଷମତାପନ୍ନ ନ୍ୟସ୍ତସ୍ୱାର୍ଥ ଦଳର ଚକ୍ଷୁଶୂଳ ବ୍ୟାପାର । ପୁଣି ଏପ୍ରକାର ତଥାକଥିତ ବୁଦ୍ଧିଜୀବୀଙ୍କ ପଛରେ ଗୋଷ୍ଠୀ-ସ୍ୱାର୍ଥ-ସଂରକ୍ଷକ ପ୍ରଭାବଶାଳୀ ପତ୍ରପତ୍ରିକା ମଧ୍ୟ ଠିଆ—ଡିଫେଣ୍ଡର୍ ଅବ୍ ଦ ଫେଥଫୁଲ୍ । ପରୱା କ’ଣ ? କିନ୍ତୁ ଦେଶବାସୀ ଏହାର ମାରାତ୍ମକତା କ୍ରମେ ବୁଝିବେ ଓ ତଦନୁଯାୟୀ କଠୋର ବ୍ୟବସ୍ଥା କରିବେ ବୋଲି ଆଶାରଖିହିଁ ଏଠାରେ ଏହି ଦୁଃଖଦାୟକ ଅଭିଜ୍ଞତାଟି ଲେଖିରଖିଲି ।

## ଅଧ୍ୟାପକଙ୍କ ପତ୍ର –

ମାନନୀୟେଷୁ,

ଆପଣ ନିଜକୁ ଜଣେ ବୌଦ୍ଧ ବୋଲି ପରିଚୟ ଦେଉଛନ୍ତି । ଜଣେ ନିରପେକ୍ଷ, ଉଦାର ବ୍ୟକ୍ତି ବୋଲି ମୋର ଏପର୍ଯ୍ୟନ୍ତ ଧାରଣା ଥିଲା । କିନ୍ତୁ କଥା ନୁହେଁ, କାର୍ଯ୍ୟ ହିଁ ଅସଲ ପ୍ରମାଣ । ତହିଁରେ ଆପଣଙ୍କ ପ୍ରକୃତ ସ୍ୱରୂପ ପଦାରେ ପଡ଼ିଛି । ସାହିତ୍ୟ ଏକାଡ଼େମୀ ନ ଚାହିଁଲେ ବି ଆପଣ କି ହେତୁରୁ ଚକ୍ରଧରବାବୁଙ୍କ ପାଣ୍ଡୁଲିପିଟି ଛପାଇବାକୁ ପଠାଇଥିଲେ ଓ ମୋ’ ପାଣ୍ଡୁଲିପିଟି ଯେପରି ଛାପା ନହୁଏ, ସେଥିଲାଗି ଯାହା ଅନ୍ତରାୟ ସମ୍ଭବ, ସୃଷ୍ଟି କରିଥିଲେ ? ସୁଖର କଥା, କର୍ତ୍ତୃପକ୍ଷ ଓଡ଼ିଆ ସାହିତ୍ୟିକଙ୍କ ମନୋବିଜ୍ଞାନ ଭଲରୂପେ ଅଧ୍ୟୟନ କରିପାରିଛନ୍ତି । ୨-୩ଜଣଙ୍କୁ ଛାଡ଼ିଦେଲେ ଜଣେ ଅନ୍ୟଜଣଙ୍କ ବିରୋଧରେ ବାହାର ଲୋକଙ୍କ ଆଗରେ କହୁଛି । କହିବା ଲୋକ ଭିତରେ ଆପଣ ଜଣେ । କର୍ତ୍ତୃପକ୍ଷ ଆପଣଙ୍କ ପକ୍ଷପାତିତା ବୁଝିପାରିଛନ୍ତି । ମୋ ପ୍ରାପ୍ୟ ପାଇବାରେ କୌଣସି ଅସୁବିଧା ହୋଇନାହିଁ । ‘‘x x x x’’ ନପଠାଇ, ଆପଣ ପ୍ରଦର୍ଶନୀକି ଚକ୍ରଧରବାବୁଙ୍କ ଖଣ୍ଡେ ଚଟି ବହି ପଠାଇଥିଲେ । ଇଂ—ପ୍ରବନ୍ଧରେ ଜଣେ ସାଧାରଣ କବିଭାବରେ ସୌଜନ୍ୟ ଦୃଷ୍ଟିରୁ ମୋ ନାମ ସ୍ୱୀକାର କରିନାହାନ୍ତି । ମୋ’ ପ୍ରତି ଏ ଅସୂୟାର ହେତୁ କ’ଣ ? ଆପଣଙ୍କ ସ୍ଥାନ କ’ଣ ଏତେ ଲୋଭନୀୟ ହୋଇଛି ଯେ ମୁଁ ମାଡ଼ି ବସୁଛି ? ନିଶ୍ଚିନ୍ତଭାବରେ ଜାଣନ୍ତୁ ଯେ ଆପଣ ମୋତେ ପରିଚିତ ନକଲେ ମୋର ବିଶେଷ କ୍ଷତି ନାହିଁ । ଆପଣଙ୍କ ସୁପାରିସ୍‌ରେ ମୁଁ ବଞ୍ଚିନାହିଁ କି ବଞ୍ଚିବିନାହିଁ । ଯେଉଁ ଉଚ୍ଚସ୍ତରରେ ପରିଚୟ ପାଇଲେ ମନୁଷ୍ୟ ଗୌରବାନ୍ୱିତ ବୋଧକରେ, ସେ ଉଚ୍ଚସ୍ତରେ ଆପଣ ନାହାନ୍ତି । ଆପଣ ନିଜେ ଗୋଟା ଭାରତବର୍ଷରେ ଅପରିଚିତ । ମୋର ପରିଚୟ ନଦେଲେ ଦୁଃଖର ହେତୁ ନାହିଁ । କିନ୍ତୁ ଯେଉଁ ସୁଯୋଗ ଆପଣଙ୍କୁ ଦିଆଗଲା, ତା’ର କି ଅପବ୍ୟବହାର କଲେ, ତାହାହିଁ ଭାବୁଛି । ମୋ ପ୍ରତି ଯେଉଁ ଅବିଚାର କରିଆସୁଛନ୍ତି, ତାହା ପୁଞ୍ଜୀଭୂତ ହୋଇ ଏଇ ଆକାରରେ ଦେଖା ହେଲା । ପ୍ରତିବାଦ ନକରିବା ଅନ୍ୟାୟ ହେବ ବୋଲି ଅନିଚ୍ଛାସତ୍ତ୍ୱେ ଲେଖିଲି । କବିବର ରାଧାନାଥ ଲେଖକମାନଙ୍କୁ କି ଉତ୍ସାହ ଦେଉଥିଲେ, ଆପଣ କି ପରମ୍ପରା ସୃଷ୍ଟି କରୁଛନ୍ତି, ଟିକିଏ ଭାବିବେ । ମୁଁ ଏହା ଲେଖି ଦୁଃଖିତ, କିନ୍ତୁ ଭାବ ଚାପିରଖିବା ଆଉ ସମ୍ଭବ ହେଲାନାହିଁ । ଆପଣଙ୍କ ପ୍ରତି ମୋର ଯେଉଁ ଶ୍ରଦ୍ଧା ଥିଲା, ତାହା ଦୂର ହୋଇଯାଇଛି । ଆପଣଙ୍କ କାର୍ଯ୍ୟହିଁ ସେଥିଲାଗି ଦାୟୀ ଜାଣିବେ ।’’ ଇତି ।

## ଲେଖକର ଉତ୍ତର ଓ ଟିପ୍‌ପଣୀ –

କଟକ

ତା ୧୨ । ୯ । ୧୯୫୮

ପ୍ରିୟ.......

ତମର ୧୦ । ୮ । ୫୮ର ପତ୍ରଟି ପାଇ ତମକୁ ଅନ୍ତରର ଆଶୀର୍ବାଦ ଦେଉଛି । ତମେ କିନ୍ତୁ କେତେଗୁଡ଼ିଏ ମିଛକଥା ଲେଖିଛ । ହୁଏତ ଘଟଣା କ'ଣ ଜାଣିନ – କେବଳ କଳ୍ପନା କରିଛ ।

ତମେ ଲେଖିଛ–''ସାହିତ୍ୟ ଆକାଡେମୀ ନଚାହିଲେ ବି ଆପଣ କି ହେତୁରୁ ଚକ୍ରଧରବାବୁଙ୍କ ପାଣ୍ଡୁଲିପିଟି ଛପାଇବାକୁ ପଠାଇଥିଲେ ।''

ଏ ଅଭିଯୋଗର ତ କୌଣସି ହେଲେ ସତ୍ୟ ନାହିଁ; ବରଂ ୩-୪ ବର୍ଷ ତଳେ ଚକ୍ରଧରବାବୁଙ୍କର ଓଡ଼ିଆ ପଲ୍ଲୀଗୀତିର ଏକ ଇଂରାଜୀ ଅନୁବାଦର ପାଣ୍ଡୁଲିପି ମୋ ବିଚାରକୁ ଆସିଥିଲା । ମୁଁ ତାହା ଯେପରି ଅଛି ବା ଥିଲା, ସେ ଅବସ୍ଥାରେ ବାହାରକୁ ବାହାରିବାର ଯୋଗ୍ୟ ନୁହେଁ ବୋଲି ମତ ଦେଇଥିଲି । ସେଥିପାଇଁ ଚକ୍ରଧରବାବୁ ମତେ ବରାବର ଦୋଷ ଦେଇ ଆସୁଛନ୍ତି । ତାଙ୍କର ଅନ୍ୟ କୌଣସି ପାଣ୍ଡୁଲିପି ତ ମୁଁ ଆକାଡେମୀକି ପଠାଇନାହିଁ । ଏ ଖବର ତମେ ଆକାଡେମୀ ଅଫିସକୁ ଲେଖି ବୁଝିପାର ।

ତମରି ପାଣ୍ଡୁଲିପିହିଁ ଏବେ ମୋ ବିଚାରକୁ ଆସିଥିଲା । ସେ ପାଣ୍ଡୁଲିପି ସାଥିରେ ତମର ମୋଟା କିତାବ '–'କୁ ମିଳାଇ ପଢ଼ିଲି – ଦେଖିଲି ବିଷୟ ଏକା । ଯାହା ଆଗରୁ ବହି ଆକାରରେ ବାହାରିସାରିଛି, ତାହା ସାହିତ୍ୟ ଆକାଡ଼େମୀର ପ୍ରକାଶନ ବୋଲି ପୁଣି ବାହାରିବ କିପରି ? ପୁଣି ଯଦିବା ସାହିତ୍ୟ ଆକାଡ଼େମୀ ପକ୍ଷରୁ ଓଡ଼ିଆ ପଲ୍ଲୀଗୀତିର ଏକ ଚୟନିକା ପ୍ରକାଶ ପାଏ, ତେବେ ତାହା କୌଣସିମତେ ଚକ୍ରଧରବାବୁଙ୍କ ସଂଗ୍ରହକୁ ସମ୍ପୂର୍ଣ୍ଣ ଉପେକ୍ଷା କରିନପାରେ । ତାହା ଅନ୍ୟାୟ ହେବ । ଯାହା ତମର ଓ ତାଙ୍କର ଶ୍ରେଷ୍ଠାଂଶ ଏକାଠି କରି ବାହାର କରିବ, ତାହାହିଁ ହେବ ପ୍ରତିନିଧିମୂଳକ ।

ମୁଁ ସାହିତ୍ୟ ଆକାଡେମୀକୁ ମୋର ଏଇ ନିରପେକ୍ଷ ମତହିଁ ଦେଇଥିଲି । ଯଦି ଚକ୍ରଧର ମହାପାତ୍ରଙ୍କୁ (ଯେ କି ଗୋଷ୍ଠୀ ଭାବରେ ତମର ବନ୍ଧୁବାନ୍ଧବ ହୋଇପାରନ୍ତି, ମୋର ଆଦୌ କିଛି ନୁହନ୍ତି) ନ୍ୟାୟ ବିଚାର ଦେବାରେ ତମେ ତମ 'ସୌଭାଗ୍ୟ'ର ଅନ୍ତରାୟ ବୋଲି ମତେ ଧର, ତେବେ ମୁଁ ତମର ଅଭିଯୋଗ ଓ ଅଭିଶାପକୁ ଆନନ୍ଦର ସହିତ ମୁଣ୍ଡପାତି ନେଉଛି ।

ତମ ପତ୍ରରେ କି ଏଗ୍‌ଜିବିଶନ୍ କଥା ଉଠେଇଛ, ମୁଁ ଠଉରେଇପାରୁନି । ଯଦି ସାହିତ୍ୟ ଆକାଡେମୀ ତରଫରୁ ଦିଲ୍ଲୀରେ ହୋଇଥିବା ପୁସ୍ତକ ଏଗ୍‌ଜିବିଶନ୍‌ର କଥା କହୁଛ, ତେବେ ବି ତମେ ଭୁଲ୍ ବୁଝିଛ । କାରଣ, ଆର୍ତ୍ତବାବୁହିଁ ତା'ର ଚାର୍ଜରେ ଥିଲେ । ତା' ସାଙ୍ଗେ ମୋର କୌଣସି ସମ୍ପର୍କ ନଥିଲା ।

ଇଂରାଜୀ ପ୍ରବନ୍ଧ କଥା ଲେଖିଛ । ମୋର ମନେହେଉଛି, ତମର ନାଁ ତ ସେଥିରେ ଉଲ୍ଲେଖ ଅଛି । ସେ ଲେଖା ମୋ' ପାଖରେ ବର୍ତ୍ତମାନ ନାହିଁ । ତେବେ ଏତିକି କହିବାରେ ମୋର କୌଣସି ଲଜ୍ଜା ନାହିଁ ଯେ, ତମ ନାଁ ଯଦି ମୁଁ ଛାଡ଼ିଯାଇଥାଏ, ତେବେ ତାହା ଏକ ସିରିଅସ୍ ଓମିଶନ୍ ନିଶ୍ଚୟ ।

ପ୍ରିୟ–, ତମ ଅପେକ୍ଷା ମୁଁ ନିଜେ ଖୁବ୍ ବେଶୀ ଜାଣେ ଯେ ମୁଁ ଆଦୌ ଉଚ୍ଚ ବା ଲୋଭନୀୟ ଅବସ୍ଥାରେ ନାହିଁ । ପୁଣି, ମୁଁ ଗୁଣରେ ଓ କର୍ମରେ, ଯଥାଯୋଗ୍ୟ ଭାବରେ ଅପାଂକ୍ତେୟ । ତମେ ମୋ ଆସନପାଇଁ ଲୋଭ କରିବା ତ କୌଣସି କାରଣହିଁ ନାହିଁ – ତେଣୁ ତମକୁ ମୋର ପ୍ରତିଦ୍ୱନ୍ଦ୍ୱୀ ବୋଲି ଭାବିବାର କଳ୍ପନା ବା ମୋ ମନକୁ ଆସନ୍ତା କାହିଁକି ? ତେବେ ଏତିକି ମୋର ହୃଦ୍‌ବୋଧ ହେଉଛି ଯେ, ମୁଁ ଯଦି ପ୍ରକୃତରେ 'ଉଚ୍ଚ' ବା 'ଲୋଭନୀୟ' ଆସନରେ ବସିଥାନ୍ତି ଓ ସେ ଆସନରୁ ତମ ପ୍ରତି ପ୍ରକୃତରେ ଅନ୍ୟାୟ କରିଥାନ୍ତି,ତେବେ ଏହା ନିଶ୍ଚୟ ଯେ ତମଠୁ ମୁଁ ଏ ପ୍ରକାର ଚିଠି କେବେ ପାଇନଥାନ୍ତି ।

ତମେ ନିଜ ଗୁଣରେ ଆଜି ଧନୀ, ସୁପ୍ରତିଷ୍ଠିତ ଓ ପ୍ରଧାନ । ତେଣୁ ମୋର ଆଶିଷ ତମର ଅନାବଶ୍ୟକ । ତଥାପି ପ୍ରାଣର ଆଶୀର୍ବାଦ ଦେଇ ବିଦାୟ ନେଉଛି । । ଇତି ।

ତମର ଶୁଭାକାଂକ୍ଷୀ
**ମାୟାଧର ମାନସିଂହ**

## ନୋଟ୍‌-୧ : ଟାଉଟରିର ବ୍ୟାପକ ଅଭ୍ୟାସ ?–

ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କର ଆତ୍ମଚରିତରେ ଜଣେ ଅଧ୍ୟାପକଙ୍କର ହଠକାରିତା ସମ୍ପର୍କରେ ନିଜର କୃତଜ୍ଞତା ଛାଡ଼ିଯାଇଛନ୍ତି । ଏକାଧିକ ବନ୍ଧୁ କହିଛନ୍ତି ଯେ, ଯେଉଁ ଉଚ୍ଚପଦସ୍ଥ ଓଡ଼ିଆ ଅଧ୍ୟାପକ ଏ ଲେଖକ ନିକଟକୁ ନିଜ ସ୍ୱାର୍ଥରେ ବାଧା ଆଶଙ୍କା କରି ଉପରୋକ୍ତ ଅଭଦ୍ର ଓ ଅବୈଧ ପତ୍ର ଲେଖିପାରିଥିଲେ, ପଣ୍ଡିତ ମିଶ୍ରଙ୍କ ବୀଭତ୍ସ ଅଭିଜ୍ଞତା ମଧ୍ୟ ସେହି ଅଧ୍ୟାପକଙ୍କ ସମ୍ପର୍କରେ । ସେ ନହୋଇ, ଆଉ ଯେ କେହି ହୋଇଥିଲେ ମଧ, ସେଥିରୁ ଆଜି ଆମର ଦୈନିକ ଦୁରବସ୍ଥା କେତେଦୂର ତାହା ବୁଝିବାକୁ ହେବ । କାରଣ ଯେଉଁ ଦେଶରେ ଶିକ୍ଷକ-ଅଧ୍ୟାପକ ସବୁ ଧରାଧରିରେ ବିଶ୍ୱାସୀ ଓ ଅଭ୍ୟସ୍ତ, ସେଠି ଏକ ସୁସ୍ଥଚେତନ ଉଦ୍ୟମଶୀଳ ଜାତି ଗଢ଼ିବା ଅସମ୍ଭବ ନୁହେଁ କି ? ପାଠକେ ଦେଖିପାରିବେ ବୋଧହୁଏ, ମୋ ଅଭିଜ୍ଞତା ସହିତ ପଣ୍ଡିତ ଗୋଦାବରୀଶଙ୍କ ଅଭିଜ୍ଞତା କିପରି ପୂରା ଖାପଖାଇଯାଉଛି ।

''xx ଧରାଧରି କରି ମୋଦ୍ୱାରା ଅଯଥା ସୁବିଧା କରାଇନେବାକୁ ବାହାରନ୍ତି, କମ୍ । ୧୯୪୮ ମସିହାରେ ଜଣେ ଅଧ୍ୟାପକ କୌଣସି ବିଶ୍ୱବିଦ୍ୟାଳୟ ଉପାଧିପାଇଁ ପ୍ରବନ୍ଧ ଲେଖିଥିଲେ । ତାହା ପରୀକ୍ଷା କରିବାକୁ ତିନିଜଣଙ୍କ ମଧ୍ୟରେ ଜଣେ ଭାବରେ ମୋ ନାମ ଥିଲା । ମାତ୍ର ଚେଷ୍ଟା କରି ମୋତେ ରଖାଗଲାନାହିଁ। ସେହି ଅଧ୍ୟାପକ ପୁଣି ୧୯୪୯ ମସିହାରେ ସରକାରୀ ପାହ୍ୟାରେ ଉଚ୍ଚପଦ ନିମନ୍ତେ ପ୍ରାର୍ଥୀ ହେଲେ । ତାଙ୍କ ପ୍ରାର୍ଥୀତ୍ୱ ପବ୍ଲିକ୍ ସର୍ଭିସ୍ କମିସନ୍‌ରେ ପରୀକ୍ଷିତ ହେବା ସ୍ଥିର ହେଲା । ଶିକ୍ଷା ବିଭାଗ ଡିରେକ୍ଟର ସେଥିପାଇଁ ସେହି କମିସନ୍‌ରେ ବସିବାକୁ ମତେ ଅନୁରୋଧ କଲେ । ସରକାରଙ୍କ ସହ ମୋର ମତଭେଦ ସତ୍ତ୍ୱେ, କର୍ତ୍ତବ୍ୟ ଅନୁରୋଧରେ ମୁଁ ସ୍ୱୀକୃତି ଜଣାଇଲି । ସେଥିପାଇଁ ଦିନ ଧାର୍ଯ୍ୟ ହେଲା । ମାତ୍ର ଅଧ୍ୟାପକଙ୍କ ମନରେ ସନ୍ଦେହ ହେଲା ଯେ ମତେ ଧରାଧରି କରି ସେ କାର୍ଯ୍ୟ ଉଦ୍ଧାର କରିପାରିବେନାହିଁ। ସୁତରାଂ ଶିକ୍ଷା ବିଭାଗ ମନ୍ତ୍ରୀଙ୍କଠାରୁ, କୌଣସି ବଡ଼ କର୍ତ୍ତୃପକ୍ଷଙ୍କୁ ଧରି, ମତେ କଟାଇ ଆଉ ଜଣକୁ ଦିଆଇଦେଲେ ।'' (ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ । ୨୧ ପୃଷ୍ଠା, ୧୯୫୮ ପ୍ର:ସଂ:)

ବ୍ରିଟୀଶ୍ ରାଜତ୍ୱରେ ଯେଉଁମାନେ ବଢ଼ିଥିଲେ ସେମାନେ ଏ ବୀଭତ୍ସତା କଳ୍ପନା କରି ପାରିବେ ନାହିଁ । ଇଂଲାଣ୍ଡର ନୀଚତମ ନାଗରିକ ମଧ ପରୀକ୍ଷା ଉପରେ 'ଧରାଧରି' କଳ୍ପନା କରି ପାରିବେ ନାହିଁ, ଏବଂ କୌଣସି ଦେଶରେ ଏହା ହୋଇପାରେ ବୋଲି ମଧ ବିଶ୍ୱାସ ଯିବେନି । ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ ପିଏଇଚ୍.ଡି. ଓ ଫାଷ୍ଟକ୍ଲାସ୍ ସୃଷ୍ଟି କରିବାରେ ଭିନ୍ନ ଭିନ୍ନ ଡିପାର୍ଟମେଣ୍ଟର ପ୍ରଫେସରମାନଙ୍କର ଏବେ ପ୍ରତିଯୋଗିତା ଚାଲିଛି ବୋଲି କୁହାଯାଉଛି । ଏହିପରି ପରୀକ୍ଷାର ଫାର୍ସସବୁ ଠିଆକରି ଜାତି ଭାବରେ ଆମେ ଯେ ପଳେ ପଳେ ଆତ୍ମହତ୍ୟା କରିଚାଲିଛୁ, ଏଥିରେ କି ସନ୍ଦେହ ଥାଇପାରେ ? ପୁଣି ଯେଉଁ ବିଷୟରେ ମାସେ ମାତ୍ର ପରିଶ୍ରମ କଲେ ଏମ୍.ଏ.ର ଅନ୍ତତଃ ସେକେଣ୍ଡ କ୍ଲାସ୍ ମିଳିଯାଏ, ସେଥିରେ ଫାଷ୍ଟକ୍ଲାସ୍ ସୁନା ମେଡ଼ାଲର ବା ସେ ବିଭାଗର ଅଧାପନାର ମଧ କି ମୂଲ୍ୟ ? ଜୀବନଯାକ ଥାର୍ଡ଼କ୍ଲାସ୍, ଅଥଚ ଏମ୍.ଏ.ରେ ଗୋଲ୍ଡ ମେଡ଼ାଲ୍ ଫାଷ୍ଟକ୍ଲାସ୍ ! ଏହା ଉଭୟ ପରିହାସ ଓ ପରିତାପର କଥା ଛଡ଼ା ଆଉ କ'ଣ ହୋଇପାରେ ? ଏପରି ଫାଷ୍ଟକ୍ଲାସ୍ ଯେ ସମ୍ପୃକ୍ତ ବିଷୟ ଓ ଅଧାପକବର୍ଗ ପ୍ରତି କେବଳ ନୁହେଁ, ସମଗ୍ର ବିଶ୍ୱବିଦ୍ୟାଳୟ ପ୍ରତି ଏକ ଅସମ୍ମାନ, ଏହା ଭାବି ଦେଖିବାର କଥା ନୁହେଁ କି ?

## ନୋଟ୍-୨ : ରାଧାନାଥୀ ଉତ୍ସାହ ଓ ଶସ୍ତା ସାଲ୍ୟୁଟ୍ –

ଏହି ଲେଖକକୁ ଗାଳିଦେବା ଲକ୍ଷ୍ୟରେହିଁ ଉଚ୍ଚପଦସ୍ଥ ଓଡ଼ିଆ ଅଧାପକ ମୋର ଅଧମ ନାମ ସହିତ କବିଗୁରୁ ରାଧାନାଥଙ୍କ ନାମ ଉଚ୍ଚାରଣ କରି ମତେ ଅଭାଜନ ଗୌରବ ଦେବା ସାଥେ ସାଥେ, 'ରାଧାନାଥୀ'-ଉତ୍ସାହର ଦୃଷ୍ଟାନ୍ତ ଉଠାଇ, ନିଜ ବିଷୟ ଓଡ଼ିଆ ସାହିତ୍ୟରେହିଁ ନିଜର ଘୋରତମ ଅଜ୍ଞତା ପ୍ରକାଶ କରିଛନ୍ତି । କାରଣ, ରାଧାନାଥ କୌଣସି କ୍ଷେତ୍ରରେ ଅଯୋଗ୍ୟକୁ ଉତ୍ସାହ ଦେଇଯାଇନାହାନ୍ତି । ଅଯୋଗ୍ୟତାର ଅଭିନନ୍ଦନପାଇଁ ଏହା ଏକ ଘୋର ଅଜ୍ଞପ୍ରଚାର ମାତ୍ର । କୌଣସି ପ୍ରତିଭାବାନ୍ ଲୋକ ତାହା କରିପାରେନା, ରାଧାନାଥ ତାହା ଆଦୌ କରିନାହାନ୍ତି, କୌଣସିଠାରେ । ତରୁଣୀ ନାରୀ-କବି ଅନ୍ନପୂର୍ଣ୍ଣାଙ୍କୁ ମଧ ରାଧାନାଥ କବିତା ଆଦୌ ନଲେଖିବାକୁ ଉପଦେଶ ଦେଇଥିଲେ ଓ ତାହା ଯଥାର୍ଥ ଉପଦେଶ ଥିଲା । ଅଧାପକ ତାହା ଜାଣିନଥିଲେ, ଜାଣିରଖନ୍ତୁ ଓ ସେଥିରୁ ଶିଖନ୍ତୁ । ପ୍ରକୃତ-ପ୍ରତିଭାବାନ୍ ଲୋକଠାରୁ ସାଲ୍ୟୁଟ୍ ପାଇବା ଏତେ ସହଜ ବୋଲି କେବଳ ଏଇ ଶ୍ରେଣୀର ଶସ୍ତା-ଡିଗ୍ରୀ-ଲବ୍ଧ ଓଡ଼ିଆ ଅଧାପକମାନେହିଁ ଦାବି କରିପାରନ୍ତି । ଏ ଅଧାପକେ ବୁଝିରଖନ୍ତୁ ଯେ, ରାଧାନାଥର ପ୍ରତିଭା, ସାଲ୍ୟୁଟ୍ ଦେଇପାରେ କେବଳ ମେହରର ପ୍ରତିଭାକୁ – ଇତରକୁ ଉତ୍ସାହ ଦେଇପାରେ, କେବଳ ଆଉ ଏକ ଇତର । ପତ୍ରପତ୍ରିକାରେ କୁତ୍ସାର ଭୟ ବା ପଦସ୍ଥ ପ୍ରଭାବଶାଳୀଠାରୁ ଅନିଷ୍ଟର ଭୟରେ ପ୍ରତିଭା, ସାଲ୍ୟୁଟ୍ ଦେଇନପାରେ କୌଣସି ଅଯୋଗ୍ୟତାକୁ, ଯେପରି କରୁଛନ୍ତି ଏବେ ବହୁ ଲେଖକ-ଅଧାପକ । ମ୍ୟୁଚୁଆଲ୍ ଆଡମିରେଶନ୍ ସୋସାଇଟି ବା ପରସ୍ପର-ପ୍ରଶଂସା-ସଂଘ ସ୍ଥାପନ କଲେ ସାଲ୍ୟୁଟର ମଧ ଅଭାବ ରହେନା । ଏବେ ଓଡ଼ିଆ ସାହିତ୍ୟରେ ସେ ପ୍ରକାର ପାରସ୍ପରିକ ସ୍ତୁତି-ଗାନର ପ୍ରଚୁରତା ମଧ ବେଶ୍ ଲକ୍ଷିତ ହେଉଅଛି – ତେଣୁ ଭାବନା କ'ଣ ? ଏଇ ଲେଖକ ରା'ର ସାଲ୍ୟୁଟ୍ କିନ୍ତୁ ଓଡ଼ିଆ ସାହିତ୍ୟର ପ୍ରକୃତ ପ୍ରତିଭାବାନ୍ ସ୍ରଷ୍ଟା ଓ କର୍ମୀଙ୍କୁ

କେବଳ ଦେଇଆସିଛି । ଗୋପାଳକୃଷ୍ଣ-ଗଙ୍ଗାଧର ଭୀମ ଭୋଇ-ବ୍ରଜନାଥ-ନୀଳକଣ୍ଠ-ରାଧାନାଥ-କୃଷ୍ଣଚନ୍ଦ୍ର-କେଦାରନାଥଙ୍କ ପରି ଓଡ଼ିଶାର ବହୁ ପ୍ରତିଭା-ଓ-ସାଧନାବନ୍ତ, ହୁଏତ, ତା'ଠାରୁ ପ୍ରଥମ କରି ଯଥାର୍ଥ ପୂଜା ପାଇଛନ୍ତି । କିନ୍ତୁ ଇତର, ଅଯୋଗ୍ୟଙ୍କୁ ସାଲ୍ୟୁଟ୍ ବା ଉତ୍ସାହ ଦେବାରେ ସେ ଅଭ୍ୟସ୍ତ ନୁହେଁ । ପୁଣି ପାଠକେ ଜାଣିରଖିବା ଉଚିତ ଯେ, ଲେଖକ ଯେଉଁମାନଙ୍କୁ ପୂର୍ଣ୍ଣପ୍ରାଣରେ ସମ୍ବର୍ଦ୍ଧନା ଜଣାଇଛି, ସେମାନେ କୌଣସିପ୍ରକାରେ ଲେଖକକୁ ଅନୁଗ୍ରହ କରିବା ଅବସ୍ଥାରେ ନଥିଲେ ଓ ତାକୁ ଅନୁଗୃହୀତ ମଧ କରିନାହାନ୍ତି । ଯେଉଁମାନଙ୍କୁ ସାଲ୍ୟୁଟ୍ (ଅବଶ୍ୟ, ଅନ୍-ଡିଜର୍ଭିଂ) ଦେଲେ ଲେଖକର ବହୁବିଧ ପାର୍ଥିବ ଉନ୍ନତି ହୋଇପାରିଥାନ୍ତା, ସେମାନଙ୍କୁ ଯେ ଲେଖକ ଦେଇପାରିନାହିଁ, ତାହା ଲେଖକ ପକ୍ଷରେ ଉଭୟ ବୈଷୟିକ ମୂର୍ଖତା ଓ ଦୁର୍ଭାଗ୍ୟ କହିବାକୁ ହେବ । କିନ୍ତୁ ତାହା ଲେଖକର ବିବେକକୁ ବିଶୁଦ୍ଧ ରଖିପାରିଛି – ସେହିହିଁ ପରମ ଲାଭ ।

## ନୋଟ୍-୩ : ଅଧ୍ୟାପକଙ୍କ ସଂକଳନ ଉପରେ ମିଳିତ ଅଭିମତ –

ଏହି ବରେଣ୍ୟ ଅଧ୍ୟାପକ ମୋର ପ୍ରତିକୂଳ ମତ ବିରୋଧରେ ଜାତୀୟ ସାହିତ୍ୟ ଆକାଡେମୀକୁ ଅପିଲ ମଧ କଲେ, ଫଳରେ ଏକ ସବ୍-କମିଟି ଗଢ଼ାହେଲା – ପ୍ରହ୍ଲାଦ ପ୍ରଧାନ, ଗୌରୀକୁମାର ବ୍ରହ୍ମା ଓ ଏ ଲେଖକକୁ ନେଇ । ଏହା ଜଣାଶୁଣା କଥା ଯେ, ବ୍ରହ୍ମା ଓ ପ୍ରଧାନ ଏ ଲେଖକର ମତକୁ ମାନିଯିବାର କୌଣସି ଆଶଙ୍କାର କାରଣ ନାହିଁ । କିନ୍ତୁ ସେମାନେ ବହୁ ଆଲୋଚନା କରି ମୁଁ ଯାହା ମତ ଦେଇଥିଲି ଆଗରୁ, ଠିକ୍ ସେହି ମତହିଁ ଆକାଡେମୀକୁ ପଠାଇଦେଲେ । ତାହା ଏହି ଯେ – (୧) ଅଧ୍ୟାପକଙ୍କ ସଂଗ୍ରହର ଖାଣ୍ଟିତ୍ୱ ବା ସାହିତ୍ୟିକ ଗୁଣ ଉତ୍କଳ-ବୁଦ୍ଧିଜୀବୀ-ସମାଜରେ ସମାଦୃତ ହୋଇନାହିଁ । (୨) ଏଥିରୁ ଅଧିକାଂଶ ଯାହାକୁ ପଲ୍ଲୀକବିତା କୁହାଯାଉଛି, ତାହା, ତା ଆଦୌ ନୁହେଁ । (୩) ତା'ପରେ ଏଗୁଡ଼ିକ ଅଲ୍‌ରେଡ଼ି ଓଡ଼ିଶାରେ ଛପାହୋଇ ମାର୍କେଟ୍‌ରେ ମିଳୁଥିଲା ବେଳେ, ଅଧ୍ୟାପକ ଏଗୁଡ଼ିକୁ ଏକ ନୂତନ-ପୁସ୍ତକ ବୋଲି ସାହିତ୍ୟ ଆକାଡେମୀକି ହାବୁଡ଼େଇବା ଏକାନ୍ତ ଅନୁଚିତ ।''

ପୃଥିବୀରେ ସର୍ବତ୍ର, କୌଣସି ଭାଷାର ଅଧ୍ୟାପକମାନଙ୍କର ଏକ ମୁଖ୍ୟ କର୍ତ୍ତବ୍ୟ, ସେହି ଭାଷାର ସାଧନା ଓ ପ୍ରତିଭାକୁ ରେକଗ୍‌ନାଇଜ୍ କରିବା ଓ ଲୋକଙ୍କ ଆଖିକି ସେ ସବୁକୁ ଆଣିବା, ଯଦି ତାହା ଅଜ୍ଞାତ ଥାଏ । କିନ୍ତୁ ଅନ୍ୟ ଜଣଙ୍କର ଜୀବନମୟ ସାଧନାକୁ ଚପାଇ,ନିଜ ଶସ୍ତା ଡିଗ୍ରୀ ଓ ପଦର ସୁବିଧା ଯୋଗୁଁ ସେହି ପୂର୍ବବର୍ତ୍ତୀ ଦୁଃସ୍ଥ ସାଧକର ଗୌରବକୁ ଆତ୍ମସାତ୍ କରିବାର ଏକ ହେୟ ଦୃଷ୍ଟାନ୍ତ ଓଡ଼ିଶାରେ ଏହି ଅଧ୍ୟାପକ ରଖିଗଲେ । ଯଦି ସେ କିଛି ନୂତନ ପାଇଲେ, ତେବେ ତାଙ୍କର ଭଦ୍ର ଓ ଶିକ୍ଷିତ ବ୍ୟବହାର ହୋଇନଥାନ୍ତା କି, ସେଗୁଡ଼ିକୁ ପୂର୍ବସାଧକଙ୍କୁ– ''ଦେଖନ୍ତୁ ତ ଆପଣଙ୍କ ସଂଗ୍ରହରେ ଏସବୁ ଅଛି କି ନାହିଁ, ମୁଁ ଆପଣଙ୍କ ସଂଗ୍ରହରେ କିଛି ଯୋଗ କରି ପାରିଲେ, ଖୁସି ହେବି''–ଏତକ କହି ପଠାଇଦେବା ?

---

## ଷୋଡ଼ଶ ଅଧ୍ୟାୟ

# ମେହେର କଲେଜ ସାମ୍ନାରେ ସୀମାନ୍ଦୋଳନ

୧୯୫୬, ଜାନୁଆରୀ ୧୯ ତାରିଖ ସନ୍ଧ୍ୟାରେ ଗଙ୍ଗାଧର ମେହେର କଲେଜର ସେ କାଳର ନେତୃସ୍ଥାନୀୟ ପିଲାଏ ମତେ ମୋ ବଙ୍ଗଳୋରେ ଆସି ଦେଖାକଲେ ଓ ଜଣାଇଲେ ଯେ, ସେମାନେ ସୀମାକମିଶନର ଓଡ଼ିଶା-ସଂପୃକ୍ତ ରାୟ ବିରୋଧରେ ତହିଁ ଆରଦିନ(୨୦ ତାରିଖ) ଠାରୁ ଷ୍ଟ୍ରାଇକ୍ କରିବେ ।

ସେତେବେଳକୁ କଟକରେ ବୋଧହୁଏ ପାଞ୍ଚଦିନ ଖଣ୍ଡେ ଷ୍ଟ୍ରାଇକ୍ ଇତ୍ୟାଦି ଚାଲୁହୋଇ ସାରିଲାଣି । କଟକରେ ଟ୍ରେନ୍-ବସ୍ ଚଳାଚଳ ବନ୍ଦ ହୋଇଯାଇଥିବାରୁ ଆମେ ସେତେବେଳେ ସମ୍ବଲପୁରରେ କଟକର ଖବର ପାଉଥାଉଁ, କଲିକତା କାଗଜମାନଙ୍କ ସ୍ତମ୍ଭରୁ । ପିଲାଏ ସେସବୁ ପ୍ରତ୍ୟହ ପଢ଼ି ଉତ୍ୟକ୍ତ ହେବା ସ୍ୱାଭାବିକ । ତଥାପି, ମୋ' ଆଗରେ ଷ୍ଟ୍ରାଇକ୍ କରିବାର ପ୍ରସ୍ତାବ କରିବାରୁ, ମୁଁ ସେମାନଙ୍କୁ ଷ୍ଟ୍ରାଇକ୍ କରିବାର ବ୍ୟର୍ଥତା ବୁଝେଇ କହିଲି ଯେ, ''ତମେ ପିଲେ ଏଠି ଶୋଭାଯାତ୍ରା କରିବାଦ୍ୱାରା ଷଢ଼େଇକଳା-ଖରସ୍ୱାଁ କିପରି ତମ ହାତକୁ ଆସିଯିବ ବୋଲି ଭାବୁଛ, ମୁଁ ବୁଝିପାରୁନି ।''

କଥାକୁ ବାଆଁରେଇ ପିଲେ କହିଲେ—''ସାର୍, ପୁରୀ, କଟକ, ବାଲେଶ୍ୱର ଚାରିଆଡ଼େ ପିଲେ ଷ୍ଟ୍ରାଇକ୍ କଲେଣି – ଆମେ ନ କଲେ ଅସୁନ୍ଦର ହେବ । ଆମେ କେବଳ ଦୁଇଦିନ ସହାନୁଭୂତି ସୂଚକ ଷ୍ଟ୍ରାଇକ୍ କରି, ଫେର୍ କ୍ଲାସ୍‌ରେ ଯୋଗଦେବୁ ।''

ତରୁଣମାନଙ୍କର ଅତିରିକ୍ତ ଉତ୍ସାହ-ବାଷ୍ପ କୌଣସି ନିର୍ଗମନ-ନଳୀ ଦେଇ ବାହାରି ନଗଲା ଯାଏଁ ସେମାନେ ଶାନ୍ତ ହେବେ କି ? ମୁଁ ତେଣୁ ଆଉ ବାଧା ଦେଲିନି । କିନ୍ତୁ ସେମାନଙ୍କଠାରୁ ପ୍ରତିଶ୍ରୁତି ଆଦାୟ କଲି ଯେ, ସେମାନଙ୍କର ଷ୍ଟ୍ରାଇକ୍ ଯେପରି ସମ୍ପୂର୍ଣ୍ଣ ଶାନ୍ତିପୂର୍ଣ୍ଣ ହେବ ଓ ଜନସାଧାରଣ ଓ କୌଣସି ବ୍ୟକ୍ତି ପ୍ରତି ସାମାନ୍ୟ ଅସୁବିଧା ଯେପରି ସେମାନେ ସୃଷ୍ଟି ନକରନ୍ତି । ସେମାନେ ପରମ ଉତ୍ସାହରେ ପ୍ରତିଶ୍ରୁତି ଦେଇ ଚାଲିଗଲେ ।

୨୦ ତାରିଖ ଜାନୁଆରୀ, ୧୯୫୬, ମେହେର କଲେଜ ଖୋଲାଥିଲା । ପ୍ରିନ୍ସପାଲ୍ ଓ ଲେକ୍‌ଚରରମାନେ ଯଥାସମୟରେ କଲେଜକୁ ଆସିଲେ – କିନ୍ତୁ ପିଲେ ଆସିଲେନି । ସମଗ୍ର ଦିନ ମୁଁ ଅପେକ୍ଷା କରିଥାଏ, କିଛି ଗୋଳମାଳ ଯଦି ଘଟେ— ପିଲାଙ୍କ ଯୋଗୁଁ, ତାହା ଜାଣିବାକୁ । କିନ୍ତୁ, ପିଲେ କୌଣସିଠାରେ ଅସାମାଜିକ ବା ବୈନାଶିକ କିଛି କାହିଁ କରିଥିବାର ଗୋଟାଏ ହେଲେ ସମ୍ବାଦ ଆମ କାନକୁ ଆସିଲାନି । ସମ୍ବଲପୁରର ତତ୍କାଳୀନ ଡେପୁଟି କମିଶନର ଓ ଏସ୍.ପି. ଦୁହେଁ ଯଦିଓ ପ୍ରିନ୍ସପାଲଙ୍କର ଅତି ଜଣାଶୁଣା ଥିଲେ, ଥରେ ହେଲେ ପ୍ରିନ୍ସପାଲଙ୍କୁ ଫୋନ୍‌ରେ ଜଣାଇନଥିଲେ ଯେ, କଲେଜ ପିଲେ ନଗର ବା କଚେରିରେ କାହିଁ ଅଶୋଭନୀୟ ଗୋଳମାଳ କରିଛନ୍ତି ବା କରୁଛନ୍ତି ।

୨୦ ତାରିଖ କଟିଗଲା । ପୂର୍ବଦିନ ପରି ୨୧ ତାରିଖ ୧୦-୩୦ ମିନିଟ୍ ବେଳେ ମୁଁ କଲେଜକୁ ଯିବା ପୂର୍ବରୁ ଘରେ କିଛି ଖାଉଛି, ଏଇ ସମୟରେ ଦଳେ ପିଲା ଦଉଡ଼ିଆସି ଡାକଛାଡ଼ିଲେ ଯେ, ''ସାର୍ ଆସନ୍ତୁ, ପୋଲିସ୍ ଫାୟାର କରୁଛି ପିଲାଙ୍କ ଉପରେ ।''

ମୁଁ ଖିଆ ଛାଡ଼ି ପିଲାଙ୍କ ପଛେ ପଛେ ଧାଇଁଲି । ଯାଇ ଦେଖେ ଯେ, କଲେଜ କମ୍ପାଉଣ୍ଡ୍ ଲୋକାରଣ୍ୟ । ଛାତ୍ର ଅପେକ୍ଷା ବାହାର ଲୋକହିଁ ବେଶି । ଚାରିଆଡୁ ଭଙ୍ଗାଇଟା ଫିଙ୍ଗାଯାଉଛି ।

## ପ୍ରିନ୍ସିପାଲ୍‌ର ପୋଲିସକୁ ରକ୍ଷା –

ମୋର ପ୍ରଥମ ପ୍ରତିକ୍ରିୟା ହେଲା, ଏଇ ଇଟା-ପଥର-ଫିଙ୍ଗା ବନ୍ଦ କରିବା । ମୁଁ ପାଗଳ ପରି ନୂତନ-କଲେଜ-ବିଲ୍ଡିଂ ସାମ୍ନାରେ ଥିବା ଖୋଲା ପଡ଼ିଆରେ ଚାରିଆଡ଼େ ବୁଲି ଚିତ୍କାର କଲି ଇଟା-ପଥର-ଫିଙ୍ଗା ବନ୍ଦ କରିବାକୁ । ପାଖରେ ଥିବା ଛାତ୍ରମାନଙ୍କୁ ଅନୁରୋଧ କଲି ସେମାନେ ଚାରିଆଡ଼େ ବିଞ୍ଚି ହୋଇଯାଇ ପ୍ରଥମେ ଏଇ ଇଟା-ଫିଙ୍ଗା ବନ୍ଦ କରନ୍ତୁ । କୌଣସିମତେ ପୋଲିସ୍‌କୁ ଉତ୍ୟକ୍ତ ନକରିବାକୁ ମୁଁ ବୁଝାଇଲାଗିଲି । ଉତ୍ୟକ୍ତ ହେଲେ, ପୋଲିସ ଫାୟାର କରିବାକୁ ଯଥେଷ୍ଟ ଯଥାର୍ଥତା ପାଇଯିବ । ଯାହାହେଉ, ମୋର ଚାରିଆଡ଼େ ଚିତ୍କାର କରି ଡାକିବା ଫଳରେ ମୁଁ କ୍ଷେତ୍ରକୁ ଆସିବାର କେତେ ମିନିଟ୍ ଭିତରେହିଁ ଇଟା-ଫିଙ୍ଗା ପ୍ରକୃତରେ ବନ୍ଦହୋଇଗଲା ।

ଯା ପରେ ମୁଁ ବର୍ତ୍ତମାନ ନିକଟବର୍ତ୍ତୀ ରେଲ୍ ଷ୍ଟେସନ୍‌ରେ ମୁତୟନ ରହିଥିବା ପୋଲିସ ଫୋର୍ସ ଆଡ଼କୁ ଚାଲିଲି, ସେମାନଙ୍କ ସହିତ କଥା ହେବାପାଇଁ । ଠିକ୍ ଏଇ ସମୟରେ ଦେଖିଲି, କଲେଜର ଦ୍ୱିତୀୟ ଫାଟକ ନିକଟରେ, ସଡ଼କ ଉପରେ, ଦି'ଚାରିଟା ଲୋକ ପୋଲିସ ଭ୍ୟାନ୍‌ରେ ନିଆଁ ଲଗାଉଛନ୍ତି । ମତେ ଦୂରରୁ ଧୂଆଁ ଦେଖାଗଲାଣି । ମୁଁ ବର୍ତ୍ତମାନ ସେ ଆଡ଼େ ଦଉଡ଼ିଲି । ଦେଖିଲି ଅଗ୍ନି-ସଂଯୋଜକମାନଙ୍କ ଭିତରେ ମୋର ଛାତ୍ର ବି ଅଛନ୍ତି । ମୁଁ ଅଗ୍ନିକ୍ରିୟା ତୁରନ୍ତ ବନ୍ଦ କରାଇ, ସେଠି ପିଲାଙ୍କୁ ଏକ ଛୋଟ ବକ୍ତୃତା ଏଇପରି ଦେଲି, ''ଦେଖ ପିଲେ, ଏ ଭାରି ଅନ୍ୟାୟ କାମ, ମୂର୍ଖତାର କାମ । ଏ ଭ୍ୟାନ୍ ଏସ.ପି.ର ବ୍ୟକ୍ତିଗତ ଦ୍ରବ୍ୟ ନୁହେଁ – ଏ ଆମ ଦେଶର ସମ୍ପତ୍ତି । ଜାତିର ଧନରେ କିଣା । ଏ ନଷ୍ଟ ହେଲେ, ଫେର୍ ଆମରି ପଇସାରେ ଯା ବଦଳରେ ଆଉ ଏକ ଭ୍ୟାନ୍ କିଣାହେବ । ତେଣୁ ନଷ୍ଟ କରୁଛ କାହାକୁ ? ନିଜ ଧନକୁ ସିନା ? ଜାତୀୟ ସମ୍ପତ୍ତି ନଷ୍ଟ କରନି । କାରଣ ତାହା ପୋଲିସ୍‌ର ନୁହେଁ, ଆମ ସମସ୍ତଙ୍କର ।''

ପିଲେ ଏ ଦୃଷ୍ଟିକୋଣରୁ ତ ଘଟଣା ସବୁକୁ ଦେଖିନଥିଲେ । ସେମାନେ ପ୍ରକୃତରେ ଦବିଗଲେ । ତା' ପରେ ମୁଁ ଦୁଇ ତିନୋଟି ପିଲାଙ୍କୁ ସେଠି ମୋର ପ୍ରତିନିଧି ଭାବରେ ଜଗାଇ ରଖିଲି, ଯେପରି କି ପୋଲିସ୍ ଭ୍ୟାନ୍ ପ୍ରତି କୌଣସି ଅନିଷ୍ଟ ନହୁଏ, ସେମାନେ ତା ଦେଖିବେ । ସୁଖର କଥା, ପିଲେ ମୋ କଥା ଅକ୍ଷରେ ଅକ୍ଷରେ ମାନିଥିଲେ । ବ୍ୟାପକ ଅରାଜକତା ଭିତରେ ପୋଲିସ୍ ଭ୍ୟାନ୍ ଅକ୍ଷୁଣ୍ଣ ରହିଥିଲା ।

ବର୍ତ୍ତମାନ ମୁଁ ଷ୍ଟେସନ୍ ଆଡ଼କୁ ଚାଲିଲି । ଇଟା-ଗେଟମା ଫିଙ୍ଗାଫିଙ୍ଗି ବନ୍ଦ ହୋଇ ଯାଇଥିବାରୁ, ବର୍ତ୍ତମାନ ଦଳେ ପିଲା ମୋ ପଛେ ପଛେ ଚାଲିବାକୁ ଆରମ୍ଭ କଲେଣି । ଆଗରେ, କଲେଜହତାର ପାଚେରି ଉପରେ ରେଲ ଷ୍ଟେସନ ଆଡୁ ଗୁଳିଭରା ବନ୍ଧୁକ କଲେଜ ଆଡ଼କୁ ଲକ୍ଷ୍ୟ କରି, ଏକ

ଡଜନ ଆର୍ମଡ଼ ପୋଲିସ୍ ଦଣ୍ଡାୟମାନ – ସଙ୍କେତ ମାତ୍ରେ ଫାୟାର କରିବେ । ରାଇଫଲ୍‌ଗୁଡ଼ିକର ବାୟୋନେଟ୍ ସବୁ ଖରାରେ ଚକ୍ ଚକ୍ କରିବାର ମୁଁ ସ୍ପଷ୍ଟ ଦେଖୁଛି । ତଥାପି ମୁଁ ପାଦେ ପାଦେ ଆଗେଇ ଚାଲିଲି । ଏଇ ସମୟରେ ପୋଲିସ୍ ପଟୁ କେହି ହଠାତ୍ ଚିତ୍କାର କରି କହିବାର ଶୁଣାଗଲା–''ଆଉ ପାଦେ ଆଗେଇଛ ତ ଫାୟାର କରିବୁ ।''(ୱାନ୍ ଷ୍ଟେପ୍ ଫରଓ୍ୱାର୍ଡ଼ ଏଣ୍ଡ ଉଇ ଉଇଲ୍ ଫାୟାର୍ '') । ଏହା ଶୁଣିବା ମାତ୍ରେ ଦି'ଟା ପିଲା ମୋର ଦି'ଟା ହାତକୁ ପଛକୁ ଟାଣିନେଲେ ଓ ଆଉ ଦି'ଜଣ ମୋ ଦି' ଗୋଡ଼କୁ ଧରିପକାଇ ମତେ ଅଟକାଇ ଦେଇ, ବିକଳ ଅନୁରୋଧରେ କହିଲେ–''ସାର୍, ଆଉ ଯାଆନ୍ତୁନାହିଁ । ପୋଲିସ୍ ନିଶ୍ଚୟ ଏଇ ଫାୟାର କରିବ ।''

ଏକ ମୁହୂର୍ତ୍ତ, ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ସେଇଠି ଅଟକି ରହିଲି । ମୁଁ ପ୍ରକୃତରେ ଯାଉଥାଏ, ବନ୍ଧୁ, ଏସ.ପି. ଶ୍ରୀ ଚାନ୍ଦଙ୍କ ସାଥିରେ କଥା ହୋଇ ଏହି ଗୋଳମାଳର ଏକ ଆପୋସ ସମାଧାନ କରିବାକୁ । ଏଇ ଯିବା ଭିତରେହିଁ ମୁଁ ଦେଖିସାରିଥାଏ, ଏସ.ପି. ନିଜେ ମୋ କମ୍ପାଉଣ୍ଡ୍ ଭିତରେ ପଶି ଗୋଟେ ପିଲାକୁ ବାଡ଼େଇ ବାଡ଼େଇ ତଡ଼ିନେବାର । ମୁଁ ତାଙ୍କ ନିକଟରେ ସେହିକ୍ଷଣି ଏହାର ପ୍ରତିବାଦ କରିବାକୁ ମଧ୍ୟ ଚାହୁଁଥିଲି । ମୁଁ ଏବେ କରେ କ'ଣ ?

ପୋଲିସ୍ ଅଦୂରରେ । ଆମେମାନେ ପରସ୍ପରକୁ ସ୍ପଷ୍ଟ ଦେଖିପାରୁଛୁ । ବନ୍ଧୁକର ଅଗ୍ରଭାଗଗୁଡ଼ିକ ସୂର୍ଯ୍ୟକିରଣରେ ଚକ୍ ଚକ୍ କରୁଛି । ସାମାନ୍ୟତମ ଅବୁଝାମଣାରେ ପୋଲିସ୍ ନିଶ୍ଚୟ ଫାୟାର କରିଦେଇପାରେ, ଭାବିନେଲି । ଆଗ ବନ୍ଦ କରିବାକୁ ହେବ କୌଣସିମତେ, ସେହି ଦୁର୍ଘଟଣା । ହଠାତ୍ ଅନ୍ତରର କି ପ୍ରେରଣା ବଳରେ ମୁଁ ଆତ୍ମ-ସମର୍ପଣର ସଂକେତରୂପେ ଦୁଇହାତ ଉପରକୁ ଟେକିଦେଇ ବାରମ୍ବାର ଇଂରାଜୀରେ ଚିତ୍କାର କଲି–''ମୁଁ ପ୍ରିନ୍ସପାଲ୍, ତୁମ ଅଫିସର-ଇନ୍-ଚାର୍ଜଙ୍କ ସହିତ କଥା ହେବାକୁ ଚାହେଁ ।'' ମୋ ଦେଖାଦେଖି ପିଲା ବି ବର୍ତ୍ତମାନ ଚିତ୍କାର କଲେ–''ପ୍ରିନ୍ସପାଲ୍ ! ପ୍ରିନ୍ସପାଲ୍ ।''

ଯାହାହେଉ ଭାଗ୍ୟର କଥା, ବର୍ତ୍ତମାନ ବନ୍ଧୁକ ସବୁ ସାଙ୍ଗେ ସାଙ୍ଗେ ତଳକୁ ନିଆଗଲା । ଯାତ୍ରା ବର୍ତ୍ତମାନ ନିରାପଦ ଭାବି,ମୁଁ ଷ୍ଟେସନ୍ ପ୍ଲାଟ୍‌ଫର୍ମ ଆଡ଼କୁ ଧୀରେ ଧୀରେ ଗତି କଲି ।

ମୋର ଦୃଢ଼ବିଶ୍ୱାସ, ସେହି ସଂକଟକାଳରେ ମୁଁ ଯଦି ସାମାନ୍ୟତମ ଅସଂଯମତା କିଛି ଦେଖାଇଥାଆନ୍ତି, ଆଜି ଏହା ଲେଖିବାକୁ ମୁଁ ନଥାନ୍ତି । କେତେକ ପିଲା ଓ ଲୋକ ମଧ୍ୟ ମୋ ସାଥିରେ ଜୀବନ ହରାଇଥାନ୍ତେ, ସେହି ମୁହୂର୍ତ୍ତରେ ।

ବର୍ତ୍ତମାନ ପ୍ଲାଟ୍‌ଫର୍ମରେ ଏସ.ପି. ଓ ଏସ.ଡି.ଓ.ଙ୍କୁ ଭେଟି ସେମାନଙ୍କୁ ବୁଝାଇବାରେ ଲାଗିଲି ଯେ ସେମାନେ ଦୟାକରି ଯଥାଶୀଘ୍ର ସ୍ଥାନ ତ୍ୟାଗ କରି ଚାଲିଯାନ୍ତୁ । ସେମାନେ ଥିଲା ଯାଏ ଛାତ୍ର ଓ ଜନତା ଭିତରେ ଉତ୍ତେଜନା କମିବାର ଆଶା କରାଯାଏନା । ସେମାନେ ଯାହାହେଉ ମୋ କଥାରେ, ଆସ୍ତେ ଆସ୍ତେ ପ୍ଲାଟ୍‌ଫର୍ମ ଛାଡ଼ି ଫେରିବାକୁ ବସିଲେ । ଅଟକିଥିବା ଝାରସୁଗୁଡ଼ା-ସମ୍ବଲପୁର ରେଲ ଗାଡ଼ି ବର୍ତ୍ତମାନ ଚାଲିଲା ।

ମୁଁ କିନ୍ତୁ ଏ କ୍ଷେତ୍ରରେ ଏହା ଦେଖି ବିସ୍ମିତ ହେଲି ଯେ, ଏସ.ପି. ଓ ଏସ.ଡି.ଓ. ପ୍ରଭୃତି ଉଚ୍ଚ କର୍ମଚାରୀ ସବୁ ଭୀଷଣ ଉତ୍ତ୍ୟକ୍ତ ହୋଇଉଠିଥାନ୍ତି, ଯେପରି ଗ୍ରାମ୍ୟ କଳହରେ ଦୁଇପଟର ଲୋକ

ହୋଇଥାନ୍ତି । ପିଲେ ଷ୍ଟ୍ରାଇକ୍ କରିବା ଉଚିତ କି ନା ତାହାର ବିଚାର ସ୍ୱତନ୍ତ୍ର, କିନ୍ତୁ ତରୁଣମାନେ ଦେଶ ଓ ଜାତିପାଇଁ ତ କିଛି କରୁଥିଲେ, ନିଜପାଇଁ ନୁହେଁ – ସେଥିରେ ଏପରି ଉତ୍ୟକ୍ତ ହେବାର କ'ଣ ଥିଲା ? ଶାନ୍ତି-ଶୃଙ୍ଖଳା-ରକ୍ଷାର ଭାରପ୍ରାପ୍ତ ଲୋକେ ନିରାସକ୍ତ ଭାବରେ କାମ କରିଯିବା ସିନା ଆଶା କରାଯାଏ ? ପୋଲିସ୍ ଓ ମାଜିଷ୍ଟ୍ରେଟ୍ ଯଦି ନିଜକୁ ସଂଯତ ନ କରିପାରିବେ, ସେମାନେ ମବ୍‌ର ଅସଂଯମକୁ ସମ୍ଭାଳିବେ କିପରି ?

ଫେରିଲା ବାଟରେ ଏସ.ପି. ଓ ମୁଁ କଥା ହେଉ ହେଉ କଲେଜ କମ୍ପାଉଣ୍ଡ ଭିତରେ ପଶିଗଲୁ । ଆମେ ଷ୍ଟ୍ରାଇକ୍ ନେଇ ଯୁକ୍ତିତର୍କ କରୁଛୁ, ତେଣେ ପିଲେ ତ ଆସି ବେଢ଼ିଗଲେ ଓ ମତେ ନିର୍ବାକ୍ ସଙ୍କେତ ଦେଇଦେଲେ ଯେ, ସେମାନେ ଏସ.ପି. କି ଛାଡ଼ିବେନି । ମୁଁ ବର୍ତ୍ତମାନ ପୂର୍ବ ଅପେକ୍ଷା ଆହୁରି ଗୁରୁତର ଏକ ସଂକଟରେ ପଡ଼ିଲି । ଏସ.ପି. ନାରାୟଣ ଚାନ୍ଦ କଳାହାଣ୍ଡିର ଲୋକ – ମୋର ଜଣାଶୁଣା ଲୋକ । ତାଙ୍କ କର୍ତ୍ତବ୍ୟ ସେ କରୁଥାନ୍ତି, ମୋ କର୍ତ୍ତବ୍ୟ ମୁଁ କରୁଥାଏ । ତାଙ୍କ ପ୍ରତି ମୋର ବ୍ୟକ୍ତିଗତ ବୈରଭାବର ପ୍ରଶ୍ନ ଆସିବ କାହୁଁ ? କିନ୍ତୁ ପିଲେ ତ ଏ ସ୍ତରକୁ ଆସିପାରିବେନି ? ଆଉ, ସେମାନେ ନିଜ ଆଖିରେ ଦେଖିଛନ୍ତି ଏସ.ପି. ତାଙ୍କ ସାଙ୍ଗମାନଙ୍କୁ ନିଜ ହାତରେ ପିଟିବା । ସେମାନେ ଭାବିଲେ, ଏଇ ତ ପ୍ରତିହିଂସାର ଏକ ସୁବର୍ଣ୍ଣ ସୁଯୋଗ ।

ଏଇ ସଂକଟବେଳେ, ମୁଁ ଚାନ୍ଦଙ୍କୁ ଦୁଇହାତରେ ଆଲିଙ୍ଗନ କରି ଆସ୍ତେ ଆସ୍ତେ କଥା କହି କହି ପିଲାଙ୍କ ବ୍ୟୂହ କଟାଇ ଯେପରି ତାଙ୍କୁ ଆଣି ସଡ଼କ-ଉପରେ ଥିବା ଓ ମୋରି-ଦ୍ୱାରା-ଅକ୍ଷୁଣ୍ଣ ରଖାଯାଇଥିବା ତାଙ୍କ ଭ୍ୟାନ୍ ନିକଟରେ ପହଞ୍ଚାଇଦେଲି, ତାହା ଏକ 'ମିରାକ୍‌ଲ' (ବିସ୍ମୟକର ଘଟଣା) ବୋଲି ଧରିବାକୁ ହେବ । ଏସ.ପି.ଙ୍କୁ ଭ୍ୟାନ୍ ନିକଟରେ ପହଞ୍ଚାଇ ଦେଲାମାତ୍ରେ ଏକ ପରମ ସ୍ୱସ୍ତି ମୁଁ ଅନୁଭବ କଲି । ଆଜି ବୁଝୁଛି, ମୋର ଉପସ୍ଥିତିହିଁ କେବଳ ସେଦିନ ଉତ୍ୟକ୍ତ ତରୁଣ ଦଳକୁ, ଏସ.ପି. ପ୍ରତି ହିଂସ୍ର କର୍ମ କରିବାରୁ ନିବୃତ୍ତ କରିଥିଲା । ଚାନ୍ଦ୍, ସମ୍ପୂର୍ଣ୍ଣ ନିରସ୍ତ୍ର ସେତେବେଳେ । ପୋଲିସ୍‌ବାହିନୀ ବହୁ ଦୂରରେ । ଚାରିଆଡ଼େ ଉତ୍ୟକ୍ତ ଛାତ୍ରଙ୍କର ବ୍ୟୂହ । କି ଘଟିଥାନ୍ତା କହି ହେବନି ।

ମୁଁ ଏସ.ପି.ଙ୍କୁ ତାଙ୍କ ଭ୍ୟାନ୍ ନିକଟରେ ଛାଡ଼ିଦେଇ, କଲେଜ ଆଡ଼କୁ ଫେରିଲି । ପିଲେ ବର୍ତ୍ତମାନ କହିଲେ ଯେ, ଅନେକ ପିଲା ଆହତ ହୋଇ ହସ୍ପିଟାଲକୁ ନିଆହୋଇଛନ୍ତି । ଅନେକ ପିଲା ଆରେଷ୍ଟ ହୋଇ ଥାନାକୁ ନିଆହୋଇସାରିଛନ୍ତି । ମୁଁ ବର୍ତ୍ତମାନ ହସ୍ପିଟାଲରେ ଥିବା ପିଲାଙ୍କ ଖବର ବୁଝିବାପାଇଁ ମୋ ଅଫିସ୍‌କୁ ଯାଇ ହସ୍ପିଟାଲ୍‌କୁ ଫୋନ୍ କଲି । କଥାବାର୍ତ୍ତା ହୋଇ ତଳକୁ ଆସି ଶୁଣିଲି ଯେ, ଇତିମଧ୍ୟରେ ଫେରିଲାବେଳେ, ପୋଲିସ୍ କୌଣସି କାରଣ ନ ଥିଲେ ମଧ୍ୟ, ପଛରୁ ଫାୟାର କଲେ । ସେହି ଫାୟାର ଫଳରେ ଲକ୍ଷ୍ମୀ ପ୍ରସାଦ ମିଶ୍ର (କଂଗ୍ରେସ-ଗଣତନ୍ତ୍ର ମିଳିତ ଶାସନରେ ମନ୍ତ୍ରୀ) ଓ ଶ୍ରଦ୍ଧାକର ସୂପକାରଙ୍କ ପୁଅ ଆଦି ଆହତ ହୋଇ ହସ୍ପିଟାଲକୁ ନିଆହୋଇସାରିଲେଣି ।

ଯା ପରେ ମୁଁ ସେଦିନ ସନ୍ଧ୍ୟା ପର୍ଯ୍ୟନ୍ତ କେବଳ ହସ୍ପିଟାଲ ଓ ଥାନା ଭିତରେ ତନ୍ତୀ-କଣ୍ଡା ପରି ଏପଟ ସେପଟ ହୋଇଥିଲି । କେଉଁଠିକି ଆଗ, କେଉଁଠିକି ପରେ ଗଲି, ମୋର ଠିକ୍ ମନେପଡୁନାହିଁ । ତେବେ ଏକ ଏକ ସ୍ଥାନର ଦୃଶ୍ୟ ମୋର ସ୍ପଷ୍ଟ ମନେପଡୁଛି ।

## ପିଲାଙ୍କ ଜାମିନ୍ –

ହସ୍ପିଟାଲ୍‌ରେ ଯାଇ ଦେଖିଲି ଯେ, ଲକ୍ଷ୍ମୀ ପ୍ରସାଦ ସମ୍ପୂର୍ଣ୍ଣ ସଂଜ୍ଞାହୀନ । ତାଙ୍କ ପିତା ପାଗଳ ପରି ଏଣେତେଣେ ହେଉଛନ୍ତି ଓ ବେଳେବେଳେ ପିଲାଙ୍କ ପରି କାନ୍ଦିପକାଉଛନ୍ତି । ମୁଁ ତାଙ୍କୁ କିଛି ସାନ୍ତ୍ୱନା ଦେଲି, ଯାହାର କୌଣସି ଅର୍ଥ ନଥିଲା ସେ କାଳରେ । ଶ୍ରଦ୍ଧାକର ସୂପକାରଙ୍କ ପ୍ରୁଅର ଆଘାତ ସେତେ ଗୁରୁତର ହୋଇନଥିଲା । କିନ୍ତୁ ଗୋଟିଏ ଛାତ୍ର ଓ ଆଉ ଜଣେ ବଙ୍ଗାଳୀ ଭଦ୍ରଲୋକ ପୋଲିସ୍‌ଠାରୁ ଏପରି ମାଡ଼ ଖାଇଥାନ୍ତି ଯେ, ସେମାନେ ଭୟଙ୍କର ଭାବରେ କୁଛାଉଥାନ୍ତି ଓ ଚିତ୍କାର କରୁଥାନ୍ତି । ପ୍ରତ୍ୟେକଙ୍କ ପାଖରେ କିଛି କିଛି କାଳ କଟାଇ, ଦେହ ଆଉଁଶି ଫେରିଲି ।

ହସ୍ପିଟାଲ୍‌ରୁ ଯାଇ ଥାନାରେ ପହଞ୍ଚି ମୁଁ ପ୍ରଥମେ ଚାହିଲି ମୋ ପିଲାଙ୍କୁ ମୁଁ ଦେଖିବି । ସେତେବେଳେ ଥାନାରେ ଏସ.ପି. ଚାନ୍ଦ ଓ ଡି.ଆଇ.ଜି. ଶ୍ରୀକାନ୍ତ ଘୋଷ ମଧ୍ୟ ଥାନ୍ତି । ସେମାନେ ମତେ ପିଲାଙ୍କୁ ଦେଖିବାକୁ ବ୍ୟବସ୍ଥା କରିଦେଲେ । ହାଜତ୍ ଘର ଖୋଲାହେଲାମାତ୍ରେ ଦେଖିଲି,ଘର ଭିତରେ ଘରେ ପିଲା । ସେମାନେ ମତେ ଦେଖିଲା ମାତ୍ରେ ଭାବାବେଗରେ କଇଁକଇଁ ହୋଇ କାନ୍ଦିବାକୁ ଲାଗିଲେ । ମୁଁ ତାଙ୍କୁ ସାନ୍ତ୍ୱନା ଦେବାରୁ କାନ୍ଦ ବନ୍ଦ ହେଲା । ସେତେବେଳକୁ ଦୁଇଟା ବାଜିଗଲାଣି, କିନ୍ତୁ ସେମାନେ ଖାଇନାହାନ୍ତି କିଛି । ମୁଁ ପୋଲିସ୍ ଅଫିସରମାନଙ୍କୁ ଯାଇ କହିଲି ପିଲାଙ୍କର ଖାଇବାର ବ୍ୟବସ୍ଥା କର ଶୀଘ୍ର, ମୁଁ ପଇସା ଦେବି । ସେମାନେ ତତ୍‌କ୍ଷଣାତ୍ ଖାଇବାର ବ୍ୟବସ୍ଥା କଲେ । ଥାନା ବାରଣ୍ଡାରେ ଖଲି ପକାଇ ପିଲେ ଗାଁ ଭୋଜି ପରି ଖାଇଲେ ।

ବର୍ତ୍ତମାନ ମୁଁ ପୋଲିସ୍‌କି ପଚାରିଲି ଯେ, ମୋ ପିଲାଙ୍କୁ ସେମାନେ କ'ଣ କରିବାକୁ ଚାହାନ୍ତି ବର୍ତ୍ତମାନ ?

ସେ କହିଲେ– 'ପିଲାଙ୍କୁ ଜେଲ୍‌କୁ ନିଆଯିବ । ସେଇଠି ରହିବେ ସେମାନେ ।'

ମୁଁ ଭାବିଲି 'ବାପ-ମା ମୋ ଜିମା ଛାଡ଼ିଦେଇଛନ୍ତି ଏମାନଙ୍କୁ । ମୁଁ ସ୍ୱାଧୀନ ହୋଇ ମୋ ଘରେ ସୁଖନିଦ୍ରା ଯିବି, ଆଉ ଏ ପିଲେ ରହିବେ ଜେଲ୍‌ରେ ବନ୍ଦୀହୋଇ ! କି ଅପରାଧ କରିଛନ୍ତି ଏମାନେ ? ଏମାନେ ଜେଲ୍‌ରେ ରହିଲେ ମୋ ପ୍ରାଣରେ ଶାନ୍ତି ଅସମ୍ଭବ ।''

ପୋଲିସ୍‌କୁ ପଚାରିଲି, ଏମାନଙ୍କୁ ଜାମିନ୍‌ରେ ଛାଡ଼ି ଦିଆଯିବ କି ନାହିଁ । ସେମାନେ ଏଥିପାଇଁ ଦ୍ୱିଧାରେ ହଁ କଲେ । ମୁଁ ତେଣୁ ପିଲାଙ୍କୁ ଆସି କହିଲି, ସେମାନେ ଟାଉନ୍‌ରେ କେଉଁ କେଉଁ ଭଦ୍ରଲୋକ, ଅବା ତାଙ୍କର କେଉଁ ଜଣାଶୁଣା ଲୋକ ଥିବାର ଜାଣନ୍ତି, ଯେ କି ବେଲ୍ ଠିଆ ହୋଇ ତାଙ୍କୁ ନେଇଯିବେ ? ବାହାରେ ଥିବା ଛାତ୍ରଙ୍କଦ୍ୱାରା ସହରର ଜଣାଶୁଣା ଓକିଲମାନଙ୍କ ମତି-ଗତି ଜାଣି ଆସିବାର ଚେଷ୍ଟା କଲି । କିନ୍ତୁ ଘୋର ଲଜ୍ଜା ଓ ପରିତାପର ସହିତ ଏଠାରେ ବ୍ୟକ୍ତ କରିବାକୁ ହେଉଛି ଯେ, ସେଦିନ ସମ୍ବଲପୁରର କୌଣସି ଓକିଲ, ନେତା ବା ଲୋକ ପିଲାଙ୍କପାଇଁ ବେଲ୍ ଠିଆ ହେବାକୁ ବାହାରିଲେନାହିଁ ।

ଶେଷରେ ମୁଁ ଭାବିଲି, ''ସରକାରୀ ଚାକିରିଆ ଭାବରେ ମୋର ବେଲ୍ ଠିଆହେବାର ବାଧା ଥିଲେ ମଧ୍ୟ ପିନ୍ସପାଲ୍ ଭାବରେ, ମୁଇଁ ତ ଏଇ ପିଲାଙ୍କର ଏଠି ଦ୍ୱିତୀୟ ପିତା ଓ ପ୍ରଥମ

ବନ୍ଧୁ । ଏମାନଙ୍କର ଦୁଃଖ-ସୁଖପାଇଁ ମୁଁ ତ ପୂରା ଦାୟୀ ।''

ପୋଲିସ୍‌କି କହିଲି, ''ମୁଁ ପିଲାଙ୍କ ପାଇଁ ବେଲ୍ ଠିଆହେଉଛି । ସେମାନଙ୍କୁ ଛାଡ଼ିଦିଅ ।'' ସେଇୟାହିଁ ହେଲା । ପିଲେ ହାଜତରୁ ବାହାରିଆସିଲେ ।

## ଗୁଳି ଚଳେଇବାର ପୂର୍ବ ସିଦ୍ଧାନ୍ତ ? –

ଏ ହେଲା ୧୯୫୬ ଜାନୁଆରୀ ୨୧ ତାରିଖର ଘଟଣା । ସେଦିନ ସନ୍ଧ୍ୟାକୁ କଲେଜକୁ ଫେରି ହଷ୍ଟେଲ୍ ସୁପରିନ୍‌ଟେଣ୍ଡେଣ୍ଟମାନଙ୍କୁ ଡକାଇ କହିଲି, ସେମାନେ ମୋତେ ଜଣାନ୍ତୁ ହଷ୍ଟେଲ୍‌ମାନଙ୍କରେ ସବୁ ହଷ୍ଟେଲ୍ ପିଲେ ଅଛନ୍ତି କି ନାହିଁ ।

ଜଣାପଡ଼ିଲା ଯେ, ହଷ୍ଟେଲ୍‌ରେ କେବଳ ଗୋଟାଏ ପିଲାର ପତ୍ତା ମିଳୁନି । ସେ ପିଲା ତା'ର ରୁମ୍‌ର ସାଥୀମାନଙ୍କୁ କିଛି ଜଣାଇନି, କି ଛୁଟି ଦରଖାସ୍ତ ଦେଇ ଯାଇନି, କି କେହି ଜାଣନ୍ତିନି, ସେ ପିଲା କୁଆଡ଼େ ଗଲା !

ବର୍ତ୍ତମାନ ମୁଁ ଆଉ ଏକ ବିପଦରେ ପଡ଼ିଲି ।

ଯାହାହେଉ, ଏହି ଛାତ୍ର ୨୨ ତାରିଖ ଦିନ ମଧ୍ୟାହ୍ନ ବେଳକୁ ଆସି ମତେ ଦେଖାଦେଲେ, ଅଫିସ୍‌ରେ । ତା'ର କଳାହାଣ୍ଡି ଜିଲ୍ଲାସ୍ଥ ପିତାଙ୍କ ନିକଟକୁ ତାହାର ଅନ୍ତର୍ଦ୍ଧାନ ବିଷୟରେ ଟେଲିଗ୍ରାମ୍ କରିବାକୁ ଯାଉଛି, ଏଇ ସମୟରେ ଛାତ୍ରଟିର ନାଟକୀୟ ରୀତିରେ ପୁନରାବିର୍ଭାବ । ଏସ.ପି.ଙ୍କ ଘର ସେହି କଳାହାଣ୍ଡିରେ । ଛାତ୍ରଟିର କଥାରୁହିଁ ବୁଝିଲି, ଏସ.ପି. ପରିବାର ସହିତ ତା'ର ଘନିଷ୍ଠ ସମ୍ବନ୍ଧ । ସେ କହିଲା ଯେ, ସେ ଏସ.ପି.ଙ୍କ ଘରକୁ ନୈଶଭୋଜ୍ୟ(ଡିନର) ଖାଇବାକୁ ଯାଇଥିଲା । କିନ୍ତୁ ନଗର ଓ ଦେଶବ୍ୟାପୀ ଏହି ସଂକଟବେଳେ ଏସ.ପି.ଙ୍କ ଘରେ ଭୋଜି ହେବାର କଥା କି ? ଭୋଜି ତ ଆଉ ୨୧ ତାରିଖ ସକାଳୁ ୨୨ ତାରିଖ ମଧ୍ୟାହ୍ନ ପର୍ଯ୍ୟନ୍ତ ଚାଲିନଥିଲା ? ପୁଣି ବନ୍ଧୁଘରକୁ ଭୋଜି ଖାଇବାକୁ ଗଲେ, ଛୁଟି ଦରଖାସ୍ତ ନଦେଇ, କାହାକୁ କିଛି ନ ଜଣେଇ, ଲୁଚିଛପି ପଳେଇବାର କି ଆବଶ୍ୟକତା ଥିଲା ? (ଦେଖନ୍ତୁ, ଏ ଅଧ୍ୟାୟର ପରିଶିଷ୍ଟ) ଅନେକ ମତେ କହିଛନ୍ତି ଯେ ପ୍ରକୃତରେ ଅଜ୍ଞାତ ହସ୍ତଦ୍ୱାରା ଟେକା ପଥର ଫୋପାଡ଼ି, ପିଲା ଓ ନାଗରିକମାନଙ୍କୁ ଗଣ୍ଡଗୋଳପାଇଁ ଉତ୍ତେଜିତ କରାଯାଇଥିଲା । ଏହାର କୌଣସି ପ୍ରମାଣ କେହି ଦେଇପାରିବେନାହିଁ; କିନ୍ତୁ ଜିଲ୍ଲା ପୋଲିସ୍ ଅଫିସରଙ୍କ ଆତ୍ମୀୟ-ଛାତ୍ରର କଲେଜ ହଷ୍ଟେଲ୍‌ରୁ ସଂକଟ ଦିନ ସେହି ପୋଲିସ୍ ଅଫିସରଙ୍କ ଘରକୁ ନୀରବ ଅନ୍ତର୍ଦ୍ଧାନ, କିଛି କି ସୂଚନା ଦେଉନି ?

ବିନାନୁମତିରେ ହଷ୍ଟେଲ୍ ଛାଡ଼ି ଯାଇଥିବାରୁ କଲ୍ୟାଣୀୟ ଶ୍ରୀମାନଙ୍କୁ ମୁଁ ଦୁଃଖର ସହିତ ପାଞ୍ଚମୁଦ୍ରା ଜୋରିମାନା କରିବାକୁ ବାଧ ହେଲି । କିନ୍ତୁ ବନ୍ଧୁ ଏସ.ପି. ଏହି କଲ୍ୟାଣଭାଜନ ଶ୍ରୀମାନଙ୍କପାଇଁ ଯେତିକି ଆଶଙ୍କିତ ବୋଧକରିଥିଲେ, ତା'ର ଦଶମାଂଶ ଯଦି ସେ ଅନ୍ୟ ପିଲାଙ୍କପାଇଁ ଅନୁଭବ କରି, ମତେ ଆଗରୁ ପଦେ ଶୁଣାଇ ଦେଇଥାନ୍ତେ, ତା'ହେଲେ ନିଶ୍ଚୟ କୌଣସି ପ୍ରକାର ଅପ୍ରୀତିକର କାଣ୍ଡ ଘଟିନଥାନ୍ତା ।

ଏକୋଇଶ ତାରିଖର ଗୁଳିକାଣ୍ଡ ପରେ ମଧ, ୨୨ ତାରିଖ, ଜାନୁଆରୀରେ ପିଲେ ଷ୍ଟ୍ରାଇକ୍‌ରେ ରହିଥିଲେ । କିନ୍ତୁ କୌଣସି ବିଶେଷ ଘଟଣା ଘଟିନଥିଲା ।

୨୩ ତାରିଖ ଦିନ ଯାଇ ଡେପୁଟି କମିଶନର ଶ୍ରୀ ରାମଚନ୍ଦ୍ରନ୍ ସମ୍ବଲପୁରରେ ଶାନ୍ତିସ୍ଥାପନ ଉଦ୍ଦେଶ୍ୟରେ ଏକ କମିଟି ମିଟିଂରେ ଯୋଗଦେବାପାଇଁ ମତେ ଆଫିସିକ ଭାବରେ ଡାକିଲେ । ମୁଁ ଯୋଗଦେଲି ଓ ସବୁପ୍ରକାର ସାହାଯ୍ୟର ପ୍ରତିଶ୍ରୁତି ଦେଲି । ରାମଚନ୍ଦ୍ରନ୍ ତିନିଦିନ ଆଗରୁ, ୧୯ ତାରିଖରେ, ପ୍ରିନ୍ସପାଲଙ୍କୁ ଟିକିଏ ଖାତିର ଓ ବିଶ୍ୱାସକୁ ଆଣିଥିଲେ, ଅବସ୍ଥା ଅନ୍ୟପ୍ରକାର ହୋଇଥାନ୍ତା ନିଶ୍ଚୟ ।

ଏଇ ୨୩ ତାରିଖ ଦିନହିଁ ମୁଁ, ମୋ ବିନାନୁମତିରେ ମୋ କଲେଜ କମ୍ପାଉଣ୍ଡରେ ପଶି, ମତେ ନଜଣାଇ, ମୋ ପିଲାଙ୍କୁ ବାଡ଼େଇବା ଓ ଫାୟାରିଂ କରିଥିବା ହେତୁ,ଏସ.ପି.ଙ୍କ ନିକଟକୁ ଏକ ପ୍ରତିବାଦ ମଧ୍ୟ ପଠାଇଲି । ( ଏ ସମ୍ପର୍କରେ ପରିଶିଷ୍ଟ ଦେଖନ୍ତୁ )

## ଷ୍ଟ୍ରାଇକ୍ ଭିତରେ ଗଣତନ୍ତ୍ର ଦିବସ ପାଳନ –

୨୪ ଓ ୨୫ ଜାନୁଆରୀରେ ମଧ୍ୟ ପିଲେ ଷ୍ଟ୍ରାଇକ୍ କଲେ । ୨୬ ତାରିଖ ରିପବ୍ଲିକ୍-ଡେ (ଗଣତନ୍ତ୍ର ଦିବସ) । ଶୁଣିବାକୁ ପାଇଲି,ପିଲେ ସେ ଦିନ ଗଣରାଜ୍ୟ ଦିବସ ତ ପାଳନ କରିବେନି, ବରଂ କଲେଜ ଉପରେ କଳାପତାକା ଉଡ଼େଇବେ ଓ ରାଷ୍ଟ୍ରୀୟ ପତାକାକୁ ଅବମାନନା କରିବେ ।

ମୁଁ ମନେ ମନେ ସ୍ଥିରକଲି, ମୁଁ ଥିଲା ପର୍ଯ୍ୟନ୍ତ ଯା ମୋ କଲେଜରେ କେବେ ହେଲେ କୌଣସିମତେ କରାଇ ଦେବିନାହିଁ । ଭାରତର ଜାତୀୟ ପତାକାର ଅବମାନନା ମୋ ଆଖିରେ ଦେଖି, ମୁଁ ସ୍ଥିର ରହିପାରିବିନାହିଁ ।

ଅନ୍ତତଃ ରେଭେନ୍ସା କଲେଜରେ ସେବର୍ଷ ରିପବ୍ଲିକ୍ ଡେ ଉତ୍ସବ ହୋଇପାରିନାହିଁ, କେବଳ ନୁହେଁ, ରେଭେନ୍ସା କଲେଜ ଉପରେ କଳାପତାକା ଉଡ଼ିଥିଲା ବୋଲି ଶୁଣିଛି । ଅନ୍ୟ କଲେଜମାନଙ୍କର କଥା ମୋର ସ୍ମରଣ ହେଉନି ।

୨୫ ତାରିଖ ସନ୍ଧ୍ୟାରେ ମୋ କଲେଜର ଛାତ୍ର ନେତାମାନଙ୍କୁ ଡକାଇ ମୁଁ ଭାରତର ଜାତୀୟତା ଉପରେ ସେମାନଙ୍କୁ ଏକ ବକ୍ତୃତା ଦେଲି । ଫଳରେ, ପିଲେ ଷ୍ଟ୍ରାଇକ୍ କରୁଥିବା ସତ୍ତ୍ୱେ ଓ ଛାତ୍ରମାନ୍ଙ୍କ ବିରୋଧରେ ସ୍ଥାନୀୟ ପୋଲିସ୍ କେଶ୍ ଆରମ୍ଭ କରିଥିବା ସତ୍ତ୍ୱେ, ସମ୍ବଲପୁର କଲେଜରେ ୧୯୫୬, ୨୬ ତାରିଖ ଜାନୁଆରୀ ସକାଳେ ମଧ୍ୟ, ରିପବ୍ଲିକ୍ ଡେ ପୂର୍ବ ବର୍ଷମାନଙ୍କ ପରି ଖୁବ୍ ସମାରୋହ ସହକାରେ ପାଳିତ ହୋଇଥିଲା । ଜାତୀୟ ସଙ୍ଗୀତ ସମବେତ କଣ୍ଠରେ ବୋଲାଯାଇଥିଲା । ପ୍ରତିବର୍ଷ ସେହିଦିନ ମୁଁ ଜାତୀୟ ପୋଷାକ ପିନ୍ଧି ସମବେତ ଛାତ୍ରଙ୍କ ସହକର୍ମୀମାନଙ୍କ ଆଗରେ ଜାତୀୟ ପତାକା ଉତ୍ତୋଳନ କରି ଯେପରି ଏକ ଉତ୍ସାହ-ପୂର୍ଣ୍ଣ ବକ୍ତୃତା ଦିଏ, ତା' ମଧ୍ୟ ଦେଇଥିଲି । ମେହେର କଲେଜ ବିଲ୍ଡିଂରେ ଅଶୋକଚକ୍ର-ଲାଞ୍ଛିତ ମୋର ଐତିହାସିକ ରାଷ୍ଟ୍ରର ଜାତୀୟ ପତାକା ସେଦିନ—ସମଗ୍ର ଦିନ ଉଡ୍ଡୀୟମାନ ଥିଲା ।

ତହିଁଆରଦିନ ୨୭ ତାରିଖରେ, ପିଲେ ପୁଣି ଷ୍ଟ୍ରାଇକ୍‌ରେ ମାତିଲେ ଓ ସେମାନେ କ୍ଲାସ୍‌କୁ ଫେରିଲେ ଯାଇ ୧୯୫୬ ଫେବୃଆରୀ ପହିଲାରେ ।

ଏଇ ହେଲା ସମ୍ବଲପୁର କଲେଜରେ ସୀମା-ଆନ୍ଦୋଳନ-ସଂକ୍ରାନ୍ତ ଘଟଣାବଳୀ ।

## ଘୋର ମିଥ୍ୟା ଅଭିଯୋଗ –

ପାଠକେ ବିଚାର କରନ୍ତୁ, ମେହେର କଲେଜର ତତ୍କାଳୀନ ପ୍ରିନ୍ସପାଲ୍, ସ୍ଥାନୀୟ ଶାସନ ସହିତ ଏ ଘଟଣାରେ କେଉଁଠି ଅସହଯୋଗ କଲେ; ସ୍ଥାନୀୟ ଡେପୁଟି କମିଶନର ଓ ଏସ.ପି. କେଉଁଦିନ କିପରି ସହଯୋଗ ପ୍ରିନ୍ସପାଲଠାରୁ ଚାହିଥିଲେ ଓ ତାହା ସେ ପ୍ରିନ୍ସପାଲଠାରୁ କିପରି ବା ପାଇନଥିଲେ ?

କିନ୍ତୁ ଏଇ ଘୋର ପ୍ରବଂଚନାପୂର୍ଣ୍ଣ ମିଥ୍ୟା ଅଭିଯୋଗରେହିଁ ଯେଉଁ କଲେଜକୁ ମୁଁ ଆନ୍ତରିକତାର ସହିତ ସ୍ନେହ ଦେଇ ସାତବର୍ଷ କାଳ ଗଢ଼ିଆସିଥିଲି, ନବଚୌଧୁରୀ–ରାଧାନାଥ ରଥଙ୍କ ଶାସନ ମତେ ସେଠୁ ଏକପ୍ରକାର ରାତାରାତି ବାହାରକରିଦେଲା । ଏଇ ତଥାକଥିତ ଗାନ୍ଧି-ଶିଷ୍ୟମାନେ, ସେଦିନ, ପୂର୍ବରୁ ବହୁନିନ୍ଦିତ ଓ ବହୁଘୃଣିତ ଭାରତୀୟ ପୋଲିସ୍‌କୁ ବିଶ୍ୱାସ କରିପାରିଲେ, କିନ୍ତୁ ଜଣେ ଶିକ୍ଷାବିତ୍ ପ୍ରିନ୍ସପାଲଙ୍କୁ ବିଶ୍ୱାସ କରିପାରିଲେନାହିଁ । ବାପୁଜୀଙ୍କ ସ୍ୱପ୍ନକୁ ମୂର୍ତ୍ତି ଦେଉଥିବା ଏହି ଧୁରନ୍ଧରବୃନ୍ଦ ପୋଲିସ୍‌ର ମିଥ୍ୟାକୁ ସମ୍ମାନ ଦେଇପାରିଲେ, କିନ୍ତୁ ଶିକ୍ଷା ବିଭାଗର ଜଣେ ପ୍ରଥମ ଶ୍ରେଣୀ କର୍ମଚାରୀର ସତ୍ୟ ପ୍ରତି ବଧିରତାର ଅଭିନୟ କଲେ, ବୋଧହୁଏ ଭାରତର କୋଟି ଜନର ସ୍ୱପ୍ନ, 'ରାମରାଜ୍ୟ'ର ନମୁନା ରୂପେ !

ମୁଁ ଏକାଧିକବାର ସରକାରଙ୍କ ନିକଟରେ ଦାବି କରିଛି ଯେ, ସମଗ୍ର ଘଟଣାର ଏକ ଅପକ୍ଷପାତ ତଦନ୍ତ ହେଉ – କିନ୍ତୁ କେହି କର୍ଣ୍ଣପାତ କରିନାହାନ୍ତି । ଥରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ରାଧାନାଥ ରଥଙ୍କୁ ଏହି ଚାଲେଞ୍ଜ ଦେବାରୁ ସେ କହିଥିଲେ–''ଆମେ ପୋଲିସ୍ ଓ ଆଡ଼ମିନିଷ୍ଟ୍ରେସନ୍‌ର କଥା ନ ଶୁଣିଲେ ଶାସନ ଚାଲିବ କିପରି ?'' ଆହା, ତଥାକଥିତ ଗାନ୍ଧିବାଦୀ ଓ ଗୋପବନ୍ଧୁ-ଶିଷ୍ୟ ରଥେ ଥରେ ହେଲେ ଭାବିବା ଉଚିତ ଥିଲା ସୁଶାସନ ଓ ନ୍ୟାୟପର ଶାସନ, ପୋଲିସ୍‌ର ମିଥ୍ୟା ଉପରେ ଠିଆଁହୋଇପାରେନା । ପୋଲିସ୍‌କୁ ସମ୍ମାନ ଯେଉଁ ଶାସନ ଦେବାପାଇଁ ଦେଶର ଶିକ୍ଷାବିତ୍‌କୁ ଅପମାନ ଦେବାକୁ ପଶ୍ଚାତ୍‌ପଦ ନୁହେଁ, ତାର ନାମ ଫାସିଜିମ୍ ବା ଅନ୍ୟ କିଛି ହୋଇପାରେ, କିନ୍ତୁ ଡିମୋକ୍ରାଶି କୁହାଯାଇପାରିବ ନାହିଁ । ସେଦିନର ରଥ-ଚୌଧୁରୀ ଶାସନ କିପରି କେବଳ ମିଥ୍ୟା ଉପରେ ଠିଆହୋଇ ମୋ ପ୍ରତି ଶାସ୍ତି ବିଧାନ କରିଥିଲେ, ତତ୍କାଳୀନ ଡି.ପି.ଆଇ. ମୋ ନିକଟକୁ ପଠାଇଥିବା ଏଇ ସଂକ୍ରାନ୍ତୀୟ ଅଦ୍ଭୁତ ଚାର୍ଜ(ଅଭିଯୋଗ) ସବୁରୁ ପାଠକେ ଜାଣିପାରିବେ । ଡି.ପି.ଆଇ. ତାହା ଗଭର୍ଣ୍ଣମେଣ୍ଟକୁ ହୁଏତ ପଠାଇଥିବେ । ନିମ୍ନରେ ପ୍ରତ୍ୟେକଟିର ଉତ୍ତର ସହିତ ତାହା ତଳେ ଦିଆଯାଉଛି ।

### ମେହେର କଲେଜ ଛାତ୍ରଙ୍କ ସୀମା-ଆନ୍ଦୋଳନ ସମ୍ପର୍କରେ ସରକାରୀ ଅଭିଯୋଗ ଓ ତାର ଉତ୍ତର

**D.O. No. 1177, Dated 16.4.1956,**

ପ୍ରିୟ ଡକ୍ଟର ପ୍ରସାଦ,

ଅନୁଗ୍ରହ କରି ଆପଣଙ୍କର କନ୍‌ଫିଡ଼େନ୍‌ସିଆଲ୍ D.O. No. 478, Dated 14th April, 1956କୁ ରେଫର୍ କରନ୍ତୁ । ମୁଁ ଆପଣଙ୍କର ପ୍ରଶ୍ନ ଓ ଅଭିଯୋଗଗୁଡ଼ିକର ଉତ୍ତର ଏକ

ପରେ ଏକ କରି ନିମ୍ନରେ ଦେଉଛି ।

ପ୍ର ୧। ତମେ ପୋଲିସ ଅଫିସରଙ୍କ ବିରୋଧରେ ମକଦ୍ଦମା ରୁଜୁ କରେଇବା ପାଇଁ ପିଲାଙ୍କୁ ମତେଇଛ ?

ଉତ୍ତର—କସ୍ମିନ୍ କାଳେ ନୁହେଁ । କେବଳ ଜଣେ ପିଲା, ଦିନେ ମତେ ଆସି କହିଲା ଯେ, ଥାନାରେ ସମବେତ ପିଲାଙ୍କ ଆଗରେ ଡି.ଆଇ.ଜି. ଶ୍ରୀକାନ୍ତ ଘୋଷ ବ୍ୟକ୍ତିଗତ ଭାବରେ ତା ପ୍ରତି ଦୈହିକ ଅତ୍ୟାଚାର କ'ଣ କଲେ । ଏଥିପାଇଁ ସେ ଶ୍ରୀ ଘୋଷଙ୍କ ବିରୋଧରେ ମକଦ୍ଦମା କରିବାକୁ ଚାହେ । ମୁଁ ତାକୁ କହିଲି, ଏହା ସମ୍ପୂର୍ଣ୍ଣ ବ୍ୟକ୍ତିଗତ ବ୍ୟାପାର । ସେ ଇଚ୍ଛା କଲେ କରିପାରେ, ନପାରେ ଓ ସେ ବିଷୟରେ ଓକିଲହିଁ ଭଲ ପରାମର୍ଶ ଦେବେ ।

ପ୍ର ୨ । ୨୧ ତାରିଖ ଜାନୁଆରୀ, ୧୯୫୬ରେ ପୋଲିସ୍ ଦ୍ୱିତୀୟ ଥର ଫାୟାରିଂ କଲା ପରେ, ତମେ ଏକ ଜନତାକୁ ପଛରେ ଘେନି ସ୍ଥାନୀୟ ଏସ.ଡି.ଓ.ଙ୍କୁ ସମରାହ୍ୱାନ ଦେଇ କଲେଜ କମ୍ପାଉଣ୍ଡ୍ ଆଡୁ ଯାଇଥିଲ ।

ଉତ୍ତର—ମୁଁ ଆପଣଙ୍କୁ ଆଗରୁ କହିଛି ଯେ, ୨୧ ତାରିଖ ସାଢ଼େ ଦଶଟାବେଳେ ପିଲେ ଦୌଡ଼ିଆସି ମତେ ଜଣେଇଲେ ଯେ, ପୋଲିସ୍ ଫାୟାର୍ କରୁଛି ଓ ମୁଁ ପିଲାଙ୍କୁ ରକ୍ଷା କରିବା ପାଇଁ ଶୀଘ୍ର ବାହାରିପଡ଼ି ଦୌଡ଼ିଲି ଓ କେତେ ମୁହୂର୍ତ୍ତ ଭିତରେ ଜନତାର ଗହଳି ଭିତରେ ପଶିଗଲି । ମୁଁ ପ୍ରଥମେ ସମସ୍ତଙ୍କୁ ଡାକି କହିଲି ଓ ପାଖରେ ଥିବା ପିଲାଙ୍କୁ ଆଦେଶଦେଲି ଚାରିଆଡ଼େ ଖେଳେଇ ହୋଇଯାଇ ଇଟାପଥର-ଫିଙ୍ଗା ବନ୍ଦକରିବାକୁ । ପୁଣି, ଦୌଡ଼ିଲି ପୋଲିସ୍ ଭ୍ୟାନ୍ ଆଡ଼କୁ, ଲୋକେ ଯେଉଁଥିରେ ନିଆଁ ଲଗାଇ ଦେଉଥିଲେ, ତାକୁ ବନ୍ଦ କରିବାକୁ ଓ ସେଠାରେ ଭ୍ୟାନ୍‌ର ନିରାପତ୍ତାପାଇଁ କେତେକ ପିଲାଙ୍କୁ ଜଗାଇ ରଖିଲି । ତା' ପରେ କଲେଜ ଆଡ଼କୁ ବନ୍ଧୁକ ଲକ୍ଷ୍ୟ କରି ଠିଆହୋଇଥିବା ପୋଲିସ୍‌ଙ୍କ ସହିତ କଥାବାର୍ତ୍ତା କରି, ତାଙ୍କୁ ଏହି ଘଟଣାସ୍ଥଳରୁ ଅପସରି ଯିବା ଲାଗି ପ୍ରବର୍ତ୍ତାଇବାପାଇଁ ମୁଁ ସେଇଆଡ଼କୁ ଯାତ୍ରା କଲି । କିନ୍ତୁ ଅଳ୍ପ କେତେ ପାଦ ଯାଇଛି କି ନାହିଁ, ପିଲେ ମୋ ଗୋଡ଼ ଓ ହାତକୁ ଜବତ୍ କରି ଚିତ୍କାର କଲେ—ସାର୍, ଆଉ ଏକ ପାଦ ଅଗ୍ରସର ହେଉନ୍ତୁ ନା, ନଚେତ୍ ଏଇ ସାଙ୍ଗେ ସାଙ୍ଗେ ଆପଣଙ୍କୁ ପୋଲିସ୍ ହତ୍ୟା କରିବେ । ମୁଁ ଦେଖିଲି ଯେ, ସେତେବେଳକୁ ମୋ ପଛରେ ବେଶ୍ ଗୋଟିଏ ଜନସଂଘ । ସେଥିରେ ମୋ ପିଲେ ତ ଥିଲେ, କିନ୍ତୁ ବାହାର ଲୋକେ ମଧ୍ୟ ଥିଲେ । ପୋଲିସ୍ ଯାଙ୍କୁଇ ଏକ 'ମବ୍' ବୋଲି ଧରି ନେଇ ଥାଇପାରେ, ମୁଁ ଜାଣେନା । ପୋଲିସ୍ ଆଡୁ ସ୍ପଷ୍ଟ ଶୁଣାଗଲା ''ବର୍ତ୍ତମାନ—ଏକ ପାଦ ଆଗକୁ ଆସିଛ ତ, ଆମେ ସୁଟ୍ କରିବୁ''—ଖୁବ୍ ସମ୍ଭବତଃ ମତେ ଲକ୍ଷ୍ୟ କରି । କିନ୍ତୁ ଉତ୍ତରରେ ମୁଁ ଦୁଇହାତ ଉପରକୁ ଟେକିଦେଲି ଓ ଖୁବ୍ ପାଟିରେ ଚିତ୍କାର କଲି—''ମୁଁ ପ୍ରିନ୍ସିପାଲ୍ କହୁଛି; ମୁଁ ତମର ଅଫିସର-ଇନ୍-ଚାର୍ଜ ସାଥିରେ କଥା ହେବାକୁ ଚାହେ ।'' କେତେକ ପିଲା ବି ଚିତ୍କାର କଲେ—''ପ୍ରିନ୍ସିପାଲ କହୁଛନ୍ତି ।'' ଏତେବେଳେ ପୋଲିସ୍ ଭିତରୁ କେହି ବୋଧହୁଏ ମତେ ଚିହ୍ନି ପାରିଲା । ବନ୍ଧୁକ ସବୁ ତଳକୁ ଖସିଲା ଓ ମୁଁ ପୁଣି ଯାତ୍ରା କଲି । ଷ୍ଟେସନରେ ପହଞ୍ଚି ଏସ.ପି.ଙ୍କ ଉପରେ ମୋର ଯାହା କିଛି ବ୍ୟକ୍ତିଗତ ପ୍ରଭାବ ପକାଇପାରିବା

ସମ୍ଭବ, ତା ଦେଇ ତାଙ୍କୁ ଘଟଣାସ୍ଥଳରୁ ଅନ୍ତରିତ ହୋଇଯିବାକୁ ପ୍ରବର୍ତ୍ତାଇଲି । ମୁଁ ତାଙ୍କୁ କହିଲି ଯେ, ସେ ଓ ତାଙ୍କ ପୋଲିସ୍ ଘଟଣାସ୍ଥଳରୁ ଅଦୃଶ୍ୟ ନ ହେଲେ ଜନତା କେବେହେଲେ ଶାନ୍ତ ହେବନାହିଁ ।

ଏଇ ହେଉଛି ଘଟଣା, ଯାହା କି କଳ୍ପନାର ଅନୁରଞ୍ଜନ ଫଳରେ, ପ୍ରିନ୍ସପାଲ ଜନତାର ନେତା ହୋଇ ଏସ.ଡି.ଓ.ଙ୍କୁ ଆକ୍ରମଣ କରିବାକୁ ଯାଉଥିଲା ବୋଲି କୁହାଯାଉଛି ।

ପ୍ର ୩ । ଏକୋଇଶ ଜାନୁଆରୀ ଦିନ, ତମର ଆଖି ତଳେ, ଅବାଧ ଛାତ୍ର ସବୁ ଧାରାବାହିକ ଭାବରେ ନିୟମ ଭଙ୍ଗ ଉଦ୍ଦେଶ୍ୟରେ କଲେଜ କମ୍ପାଉଣ୍ଡରେହିଁ ଅନେକ ଗୋପନସଭା କରିଥିଲେ, ଯାହାର ପ୍ରେରଣା ଆସିଥିଲା ବାହାର ଲୋକଙ୍କଠାରୁ ।

ଉତ୍ତର—ସମଗ୍ର ଜାନୁଆରୀ ୨୧ ତାରିଖ ମୁଁ, ଥାନା ଓ ହସ୍ପିଟାଲ ଭିତରେ ସଟଲ୍-କକ୍ ପରି କେବଳ ଏପଟ ସେପଟ ହୋଇଥିଲି । ଥାନାରେ ମୋ ପିଲେ ଦିନ ଦୁଇଟାବେଳେ ତାଙ୍କର ପ୍ରଥମ ଭୋଜନ ଖାଇବାର ଦେଖିଲି ଓ ଏସ.ପି. ସାଥିରେ ସେମାନଙ୍କର ଖଲାସପାଇଁ କଥାବାର୍ତ୍ତା କଲି । ସେଦିନ ହସ୍ପିଟାଲ୍‌ରେ ଆହତ ଓ କ୍ଷତବିକ୍ଷତ ପିଲାଙ୍କର ଚିକିତ୍ସା ଦେଖିବାପାଇଁ ବହୁଘଣ୍ଟା ମୁଁ କଟାଇଥିଲି । ସେ ଦିନ ମୁଁ ଘରକୁ ସନ୍ଧ୍ୟା ୭ଟାରେ ଫେରିଲି । ପିଲାଙ୍କ ନେତାଏ ତ ସେଦିନ ସନ୍ଧ୍ୟା ଯାଏଁ ଥାନାରେ ଥିଲେ, କଲେଜରେ ତେଣୁ ଥିଲା କିଏ, 'ଗୋପନ-ସଭା' ବସେଇବାକୁ, ମୁଁ ବୁଝିପାରୁନି ।

ପ୍ର ୪ । ସୀମା ଆନ୍ଦୋଳନ ସମ୍ପର୍କରେ ଆରେଷ୍ଟେଡ୍ ହୋଇଥିବା ତମର ୨୮ଜଣ ଛାତ୍ରଙ୍କ ପାଇଁ ତମେ ସୁପାରିସ କରି ତାଙ୍କୁ ବେଲ୍‌ରେ ନେଲ, କିନ୍ତୁ ବେଲ୍‌ର ସର୍ତ୍ତ ସେମାନେ ପାଳନ କରିବାଟା ତମେ ଦେଖିଲନାହିଁ, କାରଣ ଖଲାସ ପାଇଥିବା ଅଧିକାଂଶ ପିଲା ପରେ ଆନ୍ଦୋଳନରେ ଯୋଗଦେଇଥିଲେ ।

ଉତ୍ତର—ଆରେଷ୍ଟେଡ୍‌ପିଲାଙ୍କୁ ଖଲାସ କରାଇ ଆଣିବା ପର୍ଯ୍ୟନ୍ତହିଁ ଥିଲା ମୋର ତଥାକଥିତ 'ସୁପାରିସ୍' । ପିଲାଙ୍କୁ ବେଲ୍‌ରେ ଖଲାସ କରିବା ପୂର୍ବରୁ ତାହା କାନୁନ୍ ସଙ୍ଗତ କି ନୁହେଁ ତାହା ପୋଲିସ୍‌ଠାରୁ ବୁଝିଥିଲି । କେବଳ ତାହା ନୁହେଁ, ପିଲାଙ୍କୁ ଖଲାସ କରାଇ ନେବାପାଇଁ କର୍ତ୍ତୃପକ୍ଷ ବି ଚାହୁଥିବାର ମୁଁ ଜାଣିଲି । ଥାନାର କଣ୍ଟ୍ରୋଲ୍ ରୁମ୍‌ରେ ଡି.ଆଇ.ଜି.(ଶ୍ରୀକାନ୍ତ ଘୋଷ) ଓ ମେମ୍ବର, ବୋର୍ଡ୍ ଅବ୍ ରେଭେନ୍ୟୁ (ସେତେବେଳେ ଶ୍ରୀ କପିଳା) କଥା ହେବାର ମୁଁ ଶୁଣିଛି ଯେ, ଏ ପିଲାଙ୍କୁ ନେଇ ଜେଲ୍‌ରେ ରଖିବା ପୁଣି ଏକ ସମସ୍ୟା, କାରଣ ଖାଦ୍ୟ ଓ ଟଙ୍କାପଇସା ଇତ୍ୟାଦିର ଆୟୋଜନ କରିବାକୁ ହେବ । ଯେତେବେଳେ ଅନ୍ୟ କେହି ବେଲ୍ ନେବାକୁ ପ୍ରସ୍ତୁତ ନଥିଲେ, ମୁଁ ପିଲାଙ୍କର ସ୍ଥାନୀୟ ଅଭିଭାବକ ଭାବରେ ସେଥିପାଇଁ ଆଗେଇଯିବାଟାକୁ ମୋର ନୈତିକ କର୍ତ୍ତବ୍ୟ ବୋଲି ମନେକଲି । ମୋ ପିଲେ ଜେଲ୍‌ରେ ଖରାପ ଖାଦ୍ୟ ଖାଇବେ ଓ ପୋଲିସ୍‌ଠାରୁ ଦୁର୍ବ୍ୟବହାର ପାଉଥିବେ, ଅଥଚ ମୁଁ ବାହାରେ ସ୍ୱାଧୀନ ରହି ଜୀବନ ଉପଭୋଗ କରିବି, ଏ ଦୁଇ ଚିନ୍ତାର ମୁଁ ଆପୋସ ସମାଧାନ କରିପାରିଲିନାହିଁ । ତେଣୁ ମୁଁ ପିଲାଙ୍କପାଇଁ ବେଲ୍ ଠିଆହେଲି, ଯାହାକି କାନୁନ-ଅନୁମୋଦିତ ଓ ସେତେବେଳେ ସମ୍ପୃକ୍ତ ଶାସନିକ କର୍ତ୍ତୃପକ୍ଷଙ୍କ ସମର୍ଥନ ପାଇଥିଲା ।

୨୧ ତାରିଖ ପରେ ମୋ କଲେଜରେ କୌଣସି ହେଲେ ଗଣ୍ଡଗୋଳ ହୋଇନାହିଁ । ୨୬ ଜାନୁଆରୀ ଯଥେଷ୍ଟ ମର୍ଯ୍ୟାଦା ସହ ପାଳିତ ହୋଇଥିଲା । ତେଣୁ ଆପଣଙ୍କ ଅଭିଯୋଗର ଦ୍ୱିତୀୟ ଅଂଶ ସମ୍ପୂର୍ଣ୍ଣ ଅବାନ୍ତର । ନିମ୍ନଦତ୍ତ ଏଇ ତିନି ସର୍ତ୍ତରେ ପିଲେ ବେଲ୍‌ରେ ଖଲାସ ହୋଇଥିଲେ–(୧) ସେମାନେ ହିଂସାତ୍ମକ କୌଣସି କାମରେ ସମ୍ପୃକ୍ତ ରହିବେନାହିଁ, (୨) ସେମାନେ ସାଧାରଣ ଯାନବାହନର ଚଳାଚଳ ବନ୍ଦ କରିବେନାହିଁ, (୩) ଯଦି ଜନତା ହିଂସାତ୍ମକ କର୍ମ କରିବାକୁ ପ୍ରବୃତ୍ତ ହୁଅନ୍ତି, ତେବେ ଜନତାର ସେପ୍ରକାର କର୍ମ, ସେମାନଙ୍କର (ପିଲାଙ୍କର) ସମର୍ଥନ ଯେପରି ନ ପାଏ ।

ସେ ପିଲେ ଏଇ ତିନି ସର୍ତ୍ତ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ନଚେତ୍ ତାଙ୍କ ବିରୋଧରେ ମୁଁ ତ ପୋଲିସ୍‌ରୁ ରିପୋର୍ଟ ପାଇଥାନ୍ତି । ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ଗୋଟିଏ ହେଲେ ରିପୋର୍ଟ ପାଇନାହିଁ ।

ପ୍ର ୫ । ସମ୍ବଲପୁରର ଜିଲ୍ଲା କର୍ତ୍ତୃପକ୍ଷ ୩୧ ତାରିଖ ବା ତତ୍‌ପୂର୍ବରୁ ଏକ ଶାନ୍ତି-ସମିତି ସ୍ଥାପନ କରିବାକୁ ତମକୁ ଡାକିଥିଲେ, କିନ୍ତୁ ତମେ ତା' ପ୍ରତି ଆନ୍ତରିକତା ଦେଖାଇଲନାହିଁ ।

ଉତ୍ତର- ମୁଁ ତ ଡେପୁଟି କମିଶନର-ଆହୂତ ଏକ ତଥାକଥିତ ଶାନ୍ତି-ସମିତିରେ ଯୋଗ ଦେଇଛି । ତା ପୂର୍ବଦିନ ସନ୍ଧ୍ୟାରେ ଡେପୁଟି କମିଶନରଙ୍କ ମୋଟରକାର୍ ମୋ ବଙ୍ଗ୍ଲୋକୁ ଆସି ମତେ ଖୋଜିଥିଲା । କିନ୍ତୁ କୌଣସି ମିଟିଂପାଇଁ ମୁଁ ପୂର୍ବରୁ ନୋଟିସ୍ ପାଇ ନ ଥିଲି । ମୁଁ ମଧ୍ୟ ସେଦିନ ବହୁତ ରାତିକୁ ଘରକୁ ଫେରିଲି । ତହିଁ ଆରଦିନ ସକାଳେ ଡେପୁଟି କମିଶନରଙ୍କଠାରୁ ପ୍ରକୃତ ନୋଟିସ୍ ପାଇଲି ଓ ଅପରାହ୍ଣରେ ଯୋଗଦେଲି ଶାନ୍ତି-ସମିତିରେ ।

ମୁଁ ବୁଝିପାରୁନି ଏଇ 'ଇନ୍‌ଡିଫରେନ୍ସ' ବା ଉପେକ୍ଷାର ଅଭିଯୋଗ ମୋ ବିରୋଧରେ ବାରମ୍ବାର ଉଠୁଛି କିପରି ? ମୁଁ ଆପଣଙ୍କୁ ବାରମ୍ବାର କହିଛି ଯେ, ଆପଣ ଡେପୁଟି କମିଶନରଠାରୁ ଲେଖା ଆଣି ଦେଖାଇଦିଅନ୍ତୁ, ସେ ମୋ ସହଯୋଗ କେବେ ଚାହିଁଥିଲେ, ଯାହାକି ମୁଁ ପ୍ରତ୍ୟାଖ୍ୟାନ କରିଛି । ଏପ୍ରକାର ଏକ ଅଭିଯୋଗ କେବଳ ମିଥ୍ୟା ନୁହେଁ, ଦୁରଭିସନ୍ଧିମୂଳକ । ଏହା ଆଦୌ ସଭ୍ୟଜନୋଚିତ ବ୍ୟବହାର ନୁହେଁ ।

ପ୍ର ୬ । ଯେତେବେଳେ ଶ୍ରଦ୍ଧାକର ସୂପକାର ସମ୍ବଲପୁରକୁ ଫେରିଲେ, ସେତେବେଳେ ତମେ ଆଇନ-କାନୁନ ସଂକ୍ରାନ୍ତରେ ତାଙ୍କ ସହିତ ପରାମର୍ଶ କଲ ଓ ତମ ପିଲାଙ୍କୁ କଲେଜ ବିଲ୍ଡିଂରେ ଭାଷଣ ଦେବାକୁ ତମେ ଅନୁମତି ଦେଲ ।

ଉତ୍ତର–କେବେ ନୁହେଁ । ଘଟଣାର ବହୁ ପରେ, ଦିନେ ଶ୍ରଦ୍ଧାକର ସୂପକାର ମୋ ବଂଗ୍ଲୋକୁ ଆନ୍ଦୋଳନର 'ସତ୍ୟକଥା' ଜାଣିବାକୁ ଆସିଥିଲେ । ମୁଁ ଯାହା ଜାଣିଥିଲି କହିଲି । ବେଶ୍ ସେତିକି । ମୋ ଜ୍ଞାତସାରରେ ଶ୍ରଦ୍ଧାକର ସୂପକାର ସୀମା-ଆନ୍ଦୋଳନ ସମ୍ପର୍କରେ ମୋ ପିଲାଙ୍କୁ ଭାଷଣ ଦେଇଥିବାର ଗୋଟାଏ ହେଲେ ଘଟଣା ମୁଁ ଜାଣେନା । ଯଦି ସେ କେବେ, କେଉଁଦିନ, କଲେଜ କମ୍ପାଉଣ୍ଡର କେଉଁ କୋଣରେ, ପିଲାଙ୍କ ସହିତ ବ୍ୟକ୍ତିଗତଭାବରେ କଥୋପକଥନ କରିଥିବେ, ତାହା ତ ଆଉ ମୁଁ ବନ୍ଦ କରିପାରନ୍ତି ନାହିଁ ?

ପ୍ର ୭ । ତମର ଜ୍ଞାତସାରରେ ବାରିପଦା ଏମ.ପି.ସି. କଲେଜର ଦ୍ୱିତୀୟ ବାର୍ଷିକ ଶ୍ରେଣୀର ରମେଶଚନ୍ଦ୍ର ନାମକ ଏକ କଳା ଛାତ୍ର ତମ କଲେଜ ହଷ୍ଟେଲ୍‌ରେ ଦୁଇଦିନ ରହିଥିଲା । ସେ ଯାଇଥିଲା ବାରିପଦାରେ ଆନ୍ଦୋଳନ ବଞ୍ଚାଇ ରଖିବାପାଇଁ କେତେକ ସ୍ୱେଚ୍ଛାସେବକ ସଂଗ୍ରହ କରିବାକୁ ।

ଉତ୍ତର– ପିଲାଙ୍କ ଭିତରେ ଇନ୍‌କ୍ୱାରି କରି ମୁଁ ବର୍ତ୍ତମାନ ବୁଝୁଛି ଯେ, ଏପରି ଏକା ପିଲା ସତରେ ଆସିଥିଲା । କିନ୍ତୁ ଏଠାର ପିଲାଙ୍କଠାରୁ କୌଣସି ଆଶା ତ ସେ ପାଇପାରିଲାନି, ବରଂ ପିଲେ ପ୍ରକାଶ୍ୟରେ ତାକୁ ଏକ 'ସ୍ପାଇ' ବୋଲି ସନ୍ଦେହ କରିବାରୁ ସେ ଏଠି ଦିନେ ବି ରହିପାରିଲା ନାହିଁ । ଏ ଲୋକର ଏଠାକୁ ଆସିବା ମୁଁ ଆପଣଙ୍କ ପତ୍ରରୁହିଁ ପ୍ରଥମ ଜାଣୁଛି । ଏହା ମୋ 'ଜ୍ଞାତସାର'ରେ କେବେହେଲେ ଘଟିନଥିଲା ।

ପଠକେ, ଏଇ ହେଲା ମୋ ବିରୁଦ୍ଧରେ ସରକାରୀ ଅଭିଯୋଗ ସବୁ ଏବଂ ଏଇ ସବୁ ମୋ ଉତ୍ତର । ସମ୍ବଲପୁରରେ ଘଟିଥିବା ସୀମା-ଆନ୍ଦୋଳନ ସଂକ୍ରାନ୍ତରେ ମେହେର କଲେଜର ପ୍ରିନ୍ସପାଲ ଭାବରେ ମୁଁ କି ଘୋର ଅପରାଧ ସବୁ କଲି, ତା' ଏ ଦେଶର ଜନସାଧାରଣ ଏଇଥିରୁହିଁ ବିଚାର କରିବେ ।

ଯାହାହେଉ, ଗଲାଠୁ ଆଇଲା ପର୍ଯ୍ୟନ୍ତ, ସମ୍ବଲପୁର କଲେଜରେ ମୁଁ ଶିକ୍ଷକ ଓ ଅଧ୍ୟକ୍ଷ ଭାବରେ ଯେତିକି ସାମାନ୍ୟ ନିଷ୍ଠା ଓ ଆନ୍ତରିକତାର ସହିତ କାମ କରିଆସିଛି, ସେଥିରେ ମୋ ନିଜର ବିବେକ ପୂରା ସନ୍ତୁଷ୍ଟ ନ ହୋଇପାରେ, କିନ୍ତୁ ଲଜ୍ଜିତ ବା ଅନୁତପ୍ତ ହେବାର କାରଣ ତ କିଛି ଦେଖୁନି । କିନ୍ତୁ ରଥ-ଚୌଧୁରୀ ଶାସନ ଭଦ୍ର, ମାନବୋଚିତ ବ୍ୟବହାର ଦୂରେଥାଉ ସାତବର୍ଷ ନିଷ୍ଠାର ସହିତ କାମ କରିଆସିଥିବା ଜଣେ ଶିକ୍ଷାବିତ୍‌କୁ ବିନା ଦୋଷରେ କଲବଲିଆ ଭାବରେ ଦଣ୍ଡିତ କରି ଯେତେବେଳେ, ହୁଏତ, କିଛି କ୍ରୂର, ବୀଭତ୍ସ ଆତ୍ମପ୍ରସାଦ ଅନୁଭବ କରୁଥିବେ, ଠିକ୍ ସେତିକିବେଳେ, ଅଯାଚିତଭାବରେ, ନିଜ ହାତରେ ଲେଖି, ଏ ଦେଶର ବରେଣ୍ୟ ଶିକ୍ଷକ, ସାହିତ୍ୟିକ, ଜନନେତା, କବି ଓ ପଣ୍ଡିତ, ଶ୍ରୀ ନୀଳକଣ୍ଠ ଦାସ, ମତେ ଏଇପରି ମହନୀୟ ଭାବରେ ପୁରସ୍କୃତ କରିଥିଲେ–

ପୁରୀ

୨୯ । ୧ । ୧୯୫୭

ଜଗନ୍ନାଥେ ଭଲ କରନ୍ତୁ ।

ଆୟୁଷ୍ମାନ୍ ମାୟାଧରବାବୁ,

ନିଜ ଦାୟିତ୍ୱରେ ଛାତ୍ରଙ୍କୁ ଜେଲ୍‌ରୁ କାଢ଼ିନେଲି ବୋଲି କାଗଜରେ ବାହାରିଛି । ଆଶୀର୍ବାଦ କରୁଛି । ଏପରି ଛାତ୍ର-ଶିକ୍ଷକ ସମ୍ବନ୍ଧ ଏ ଯୁଗରେ ଅତି ଅସାମାନ୍ୟ । ତୁମର ଏଇ ଓ ଏଇଭଳି କାର୍ଯ୍ୟର ପ୍ରତିଷ୍ଠା ଓ ପ୍ରସାର ହେଉ ।

ଶୁଭାକାଂକ୍ଷୀ

ନୀଳକଣ୍ଠ ଦାସ

ସାମାନ୍ୟ ଏକ ଶିକ୍ଷକ ବା ଶିକ୍ଷାବିତ୍ ଭାବରେ ଯାଠୁ ବଡ଼ ସାର୍ଟିଫିକେଟ୍ ଥାଇପାରେ କି ଜଣେ ଓଡ଼ିଶାବାସୀର ?

# ଷୋଡ଼ଶ ଅଧ୍ୟାୟର ପରିଶିଷ୍ଟାବଳୀ

## ପରିଶିଷ୍ଟ - ୧

ସମ୍ବଲପୁର ଏସ.ପି.ଙ୍କ ଆତ୍ମୀୟ ଓ ମେହେର କଲେଜ ଛାତ୍ରଙ୍କର କ୍ଷମାପତ୍ର ।

To

The Superintendent,
New Hostel,
G.M. College, Sambalpur,

Respected Sir,

In obedience to your notice of dated the 22nd January, 1956, I beg to report the following few lines for your kind consideration.

That on 20th January, 1956 I was invited by my near relative. N.Chand, Superintendent of Police, to attend the dinner which was to take place on 21st January, 1956. I left the hostel at 8 A.M. of 21st January, 1956 to attend the dinner. While returning at 11 A.M. I heard on the way that a clash between Police and the crowd was going on with lathi and gun. So I feared for the struggle and did not come to the hostel. Again at about 3 P.M. the curfew order was declared in the town, as a result I could not come outside and was absent for that night. I therefore request you to be kind enough to exempt the fine as well as excuse me from absence, for which act of your kindness I shall ever remain grateful to you.

*Sambalpur* Yours most obedient student
*The 24th January, 1956* Sd/
First Year Arts.*

## ପରିଶିଷ୍ଟ-୨

ମେହେର କଲେଜରେ ସୀମା-ଆନ୍ଦୋଳନ ବେଳେ କଲେଜ ପ୍ରିନ୍ସିପାଲଙ୍କର ସମ୍ପୃକ୍ତ ନୋଟିସ୍ ଓ ପୋଲିସକୁ ପତ୍ର ।

NOTICE

As per Article 106(iv) of the Edn. Code, If the students do not join the college today, the 23rd January 1956, their names will be struck off the college rolls, with effect from 24th January, 1956 for concerted absence for three days, without leave.

Sd. M. MANSINHA
*Principal, 23-1-1956*

---

* ଜାଣିଜାଣି ମୋର ସକଳ-କଲ୍ୟାଣ-ଭାଜନ ଛାତ୍ରଟିର ନାମ ପ୍ରକାଶିତ କରୁନାହିଁ ।— ଲେଖକ

NOTICE

THE 27TH JANUARY 1956

Student leaders will be penalised severely if they hold meetings in the college campus or college premises without my knowledge or permission. And no outsider also should be asked into such a meeting to talk to boys without my knowledge or permission. These are serious breaches of college discipline.

Sd. M. MANSINHA
*Principal*

NOTICE

FEBRUARY 4, 1956

As the names of all the students of this college were struck off the rolls as per Rule 106(iv), they are directed to apply immediately to the Principal giving full reason for their absence, for readmission, before 7th February, 1956. Attendance will not be considered regular till students are officially readmitted.

Sd. M. MANSINHA
*Principal*

Copy of the letter No. 365 dated 23rd January, 1956 from Dr. M. Mansinha, Principal, G.M. College, Sambalpur to Mr. N. Chand, S.P. of Sambalpur.

"On Friday, the 20th instant I saw the local police enter into the campus of my college and drag and beat college boys. Later on, you personally admitted to me and that you yourself behaved also like that. I would like to know by what authority you and your men got into my compound and dragged and beat my boys without caring to even inform me of the necessity."

---

## ସପ୍ତଦଶ ଅଧ୍ୟାୟ

# ରଥାଙ୍ଗ ଦୁଃଖ

ସୀମା-ଆନ୍ଦୋଳନ-ସମ୍ପୃକ୍ତ ପୂର୍ବ-ଅଧ୍ୟାୟ-ବର୍ଣ୍ଣିତ ଘଟଣା ସବୁ ଯେତେବେଳେ ଘଟୁଥାଏ, ସେତେବେଳେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ସୁଦୂର ବମ୍ବେ ରାଜ୍ୟର ରାଜ୍ୟପାଳ ଥିଲେହେଁ ତାଙ୍କର ଦୀର୍ଘଛାୟା ସମଗ୍ର ଭାରତୀୟ ଉପମହାଦେଶ ଅତିକ୍ରମ କରି ଦୁଇହଜାର ମାଇଲ୍ ଦୂରରେ ସମଗ୍ର ଓଡ଼ିଶା ଦେଶକୁ ଏପରି ଆବୃତ କରି ରଖିଥାଏ ଯେ, ଓଡ଼ିଶାର ତତ୍କାଳୀନ ରଥ-ଚୌଧୁରୀ ଶାସନ ଯେତେ ରୋଷ ନେଇ ଠିଆକଲେ ମଧ୍ୟ, ସେ ଛାୟାକୁ ଅପସାରିତ କରିପାରୁନଥିଲେ । ସେ କାଳେ ଓଡ଼ିଶାର ଦୈନନ୍ଦିନ ଜୀବନରେ ପ୍ରତ୍ୟହର ପାଗ ପରି ତାହା ମଧ୍ୟ ଏକ ସ୍ୱାଭାବିକ କଥୋପକଥନର ବିଷୟ ହୋଇ ରହିଥିଲା ।

ସମ୍ବଲପୁର କଲେଜରେ ସୀମା-ଆନ୍ଦୋଳନ-ସଂକ୍ରାନ୍ତ ଗଣ୍ଡଗୋଳ ଓ ତଜ୍ଜନିତ ମୋର ସେ କଲେଜରୁ ବହିଷ୍କାର ନେଇ, ତତ୍କାଳୀନ କର୍ତ୍ତୃପକ୍ଷଙ୍କୁ ଥରେ ଦେଖାକରିବାରୁହିଁ ଓଡ଼ିଶାର ଏଇ ରାଜନୈତିକ ବୃଷ-ଯୁଦ୍ଧ ମୋ ପରି ଅନେକଙ୍କର ବ୍ୟକ୍ତିଗତ ଜୀବନକୁ କିପରି ସମ୍ପୂର୍ଣ୍ଣ ଅଜ୍ଞାତସାରରେ ପ୍ରଭାବିତ କରିଥିଲା, ତାର ପ୍ରଥମ ଓ ବିସ୍ମୟକର ଆସ୍ୱାଦ ପାଇଥିଲି ।

ସୀମା-ଆନ୍ଦୋଳନ ଏକ ସପ୍ତାହ ଭିତରେ ଉଭେଇଗଲା । ଫେର୍ ସବୁ ଚୁପ୍‌ଚାପ୍ । ଘଟଣା ଘଟିଲା ଜାନୁଆରୀରେ । ଶାସନିକ ମର୍ଯ୍ୟାଦାପାଇଁ ବା ମୋର ଅପରାଧଜନିତ ଶୃଙ୍ଖଳା-ବ୍ୟବସ୍ଥା ପାଇଁ ମତେ ସମ୍ବଲପୁରରୁ ତଡ଼ିବା ବା ଡିଗ୍ରେଡ୍ କରିବା, ସାଙ୍ଗେ ସାଙ୍ଗେ ଘଟିବା ତ ଉଚିତ ଥିଲା — କିନ୍ତୁ ତା ହେଲାନି । ମୁଁ ଟ୍ରାନ୍ସଫର ହେଲି ଯାଇ ସେପ୍ଟେମ୍ବର ମାସରେ—ଠିକ ମହତାବ ଓଡ଼ିଶାକୁ ଫେରିବାର ଅବ୍ୟବହିତ ପୂର୍ବରୁ ।

ଅନେକ ଚତୁର ଲୋକ ଘଟଣାମାନଙ୍କର କାଳ ଓ ଗତିରୁ ମୋର ଟ୍ରାନ୍ସଫର୍‌କୁ ଚୌଧୁରୀ-ମହତାବ ସଂଘର୍ଷ ସହିତ ଜଡ଼ିତ କରି ମୋ ଆଗରେ ତାତ୍ପର୍ଯ୍ୟ ବଖାଣିଛନ୍ତି । ମୁଁ ସେ ସବୁର ବିରୋଧ ବା ସମର୍ଥନ କିଛିହିଁ କରିପାରିବିନି । କାରଣ, ମୋର ଜ୍ଞାତସାରରେ ମୁଁ ସେ ସଂଘର୍ଷରେ ଆଦୌ ଜଡ଼ିତ ନଥିଲି, କି ଓଡ଼ିଶାର କୌଣସି ହେଲେ ରାଜନୈତିକ ନେତାଙ୍କ 'କାରିଅର' ବା ପଦାଧିଷ୍ଠାନ ସହିତ ମୋ ଜୀବନର ସ୍ରୋତ କେବେହେଲେ ଏପର୍ଯ୍ୟନ୍ତ ପ୍ରତ୍ୟକ୍ଷଭାବରେ ସମ୍ପୃକ୍ତ ହୋଇନାହିଁ । ମୁଁ କୌଣସି ଅର୍ଥରେ ହେଲେ ରାଜନୈତିକ ସଂସାରର ଲୋକ ନୁହେଁ । କିନ୍ତୁ ମୁଁ ତାହାହିଁ ବୋଲି ସେଦିନ ଏ ଦେଶର ଉଚ୍ଚତମ କର୍ତ୍ତୃପକ୍ଷ କିପରି ସନ୍ଦେହ କରିଥିଲେ, ତାର ପ୍ରତ୍ୟକ୍ଷ ଜ୍ଞାନ ମୋର ଏଇ ସମୟରେ ଘଟିଲା । ସେହି ସନ୍ଦେହ ଉପରେ ସେକାଳର କର୍ତ୍ତୃପକ୍ଷ କାମ କରିଛନ୍ତି କି ନାହିଁ, ମୁଁ କହିପାରିବିନାହିଁ । ମୁଁ କେବଳ ମୋର ପ୍ରତ୍ୟକ୍ଷ ଅଭିଜ୍ଞତାର କଥାହିଁ ଏଠାରେ କହିବି ।

ସୀମା-ଆନ୍ଦୋଳନ ତ ସରିଲା । ମୋର ତୁରନ୍ତ ଟ୍ରାନ୍ସଫର୍‌ର କିଛିକାଳ ବ୍ୟାପକ ଜନରବ ସତ୍ତ୍ୱେ, ସବୁ ଫେର୍ ଶୂନ୍‌ଶାନ୍ ହୋଇଗଲା । ଶ୍ରୀଯୁକ୍ତ ମହତାବଙ୍କର ଓଡ଼ିଶା ଆସିବା ସମ୍ବାଦ

ପ୍ରଥମେ ତୋଫାନ ପରି ଉଠି ଫେର୍ ବି ଧିମେଇଗଲା । ମୋର ଟ୍ରାନ୍ସଫର୍‌ର ଶିଥିଳତାକୁ ଚତୁର ରାଜନୀତିଜ୍ଞ ବନ୍ଧୁମାନେ ଯା ସହିତ ମିଶାଇ ବ୍ୟାଖ୍ୟା କରିବାକୁ ଲାଗିଲେ । ମୁଁ କେବଳ ସବୁ ଶୁଣୁଥାଏ ।

## ରଥଙ୍କ ଅଭିଯୋଗ –

ସେବର୍ଷ ଖରାଛୁଟିରେ କଟକ ଆସିଥାଏ । ଦିନେ ଗଲି ଶିକ୍ଷାମନ୍ତ୍ରୀ ଶ୍ରୀରାଧାନାଥ ରଥଙ୍କୁ ଦେଖାକରିବାକୁ । ସେତେବେଳକୁ ଟ୍ରାନ୍ସଫର୍‌ର ପ୍ରଶ୍ନ ତ ଉପର ମହଲରୁ ଆଉ ଶୁଣାଯାଉ ନ ଥାଏ, ତେଣୁ ତାଙ୍କୁ ପ୍ରକୃତରେ ମୁଁ ନିଜେ ଅନୁରୋଧ କରିବାକୁ ଯାଇଥିଲି, ମତେ କିପରି ସେ ସମ୍ବଲପୁରରୁ ଭଲରେ ଭଲରେ ଟ୍ରାନ୍ସଫର କରିଦିଅନ୍ତୁ । କାରଣ, ମୋର ଦ୍ୱିତୀୟ ପୁତ୍ର ଲଳିତେନ୍ଦୁ ସେତେବେଳକୁ ଆଇ.ଏ. ପାସ୍ କଲାଣି । ଆଗାମୀ ଜୁଲାଇରେ ସେ ବି.ଏ. ଅନର୍ସ ନେଇ ପଢ଼ିବ । ମେହେର କଲେଜରେ ସେତେବେଳେ ଅନର୍ସ ନଥାଏ । ମୋର ରଥମହାଶୟଙ୍କୁ ଅନୁରୋଧ କରିବାର କଥା, କଟକରେ କୌଣସି ସୁବିଧା ପୋଷ୍ଟକୁ ମତେ ବଦଳି କରିଦେଲେ ମୋର ପିଲାର କଲେଜ ପଢ଼ାଟା ସୁବିଧାରେ ହୁଅନ୍ତା । ଆଉ ଦ୍ୱିତୀୟ ଅନୁରୋଧ ମୋର ଥିଲା ଯେ, ଯଦି ସରକାର ମତେ ଟ୍ରାନ୍ସଫର୍ କରନ୍ତି, ତେବେ ସେହି ଖରାଛୁଟି ଭିତରେଇ କରନ୍ତୁ; କାରଣ ଖରାଦିନ-ରାସ୍ତାରେ (ସେତେବେଳେ ମହାନଦୀରେ ପୋଲ ହୋଇନଥାଏ ) ମତେ, ମୋର ଜିନିଷପତ୍ର ବୋହି ଆଣିବାକୁ ଅସୁବିଧା ହେବନି । ସେସନ୍ ଭିତରେ ବା ବର୍ଷାକାଳ ଭିତରେ କଲେ ମୁଁ ଅକାରଣ ହର୍କତ ହେବି । ତୃତୀୟ ଅନୁରୋଧ ଥିଲା ଯେ, ମୋର କଟକସ୍ଥ ବାସଗୃହ ସେତେବେଳେ ଭେଟନାରୀ କଲେଜର ହଷ୍ଟେଲ୍‌ରୂପେ ସରକାର ଭଡ଼ା ନେଇଥାନ୍ତି, ଟ୍ରାନ୍ସଫର୍ ବେଳକୁ ହୁଏତ ସରକାର ମୋ ଘରଟା ମତେ ଫେରାଇ ଦିଅନ୍ତୁ ବା ଗୋଟିଏ ସରକାରୀ ଘର ମତେ ଦିଅନ୍ତୁ । ଯେପର୍ଯ୍ୟନ୍ତ ଘରର ବ୍ୟବସ୍ଥା ନହୋଇଛି ଦୟାକରି ଟ୍ରାନ୍ସଫର୍ ଅନ୍ତତଃ ସେଇ ପର୍ଯ୍ୟନ୍ତ ସ୍ଥଗିତ ରଖାଯାଉ ।

ମୁଁ ମନ୍ତ୍ରୀ ରାଧାନାଥ ରଥଙ୍କୁ ଏଇ ସବୁ ଅନୁରୋଧ ଜଣାଇଲି । ମୁଁ ତାଙ୍କୁ ବିନୀତଭାବରେ କହିଲି–"ମୁଁ ସାତ-ଆଠ ବର୍ଷ କାଳ ଆପଣଙ୍କର ଗୋଟିଏ ପ୍ରଥମ ଶ୍ରେଣୀ କଲେଜକୁ, କିଛି ନ କଲେ ମଧ୍ୟ, ଭଲଭାବରେ ଜଗା-ରଖା କରିଛି । ସେଥିପାଇଁ ମୁଁ କୌଣସି ହେଲେ ପୁରସ୍କାର ତ ଆପଣଙ୍କଠାରୁ ଆଶା କରୁନି, କିନ୍ତୁ ମୋର ଅନୁରୋଧ, ଆପଣ ମତେ ଓ ମୋ ପିଲାପିଲିଙ୍କି ଯେପରି ଅବେଳାରେ ସେଠୁ ତଡ଼ି ଅକାରଣ ହର୍କତ କରିବେନି । କଟକରେ ମୋର ନିଜର ଘର ଥିବା ସତ୍ତ୍ୱେ ମୋ ପିଲାଙ୍କୁ ଆପଣ ଦାଣ୍ଡରେ ଆଣି ଠିଆକରାନ୍ତୁନି ।"

ଗୋପବନ୍ଧୁ ଶିଷ୍ୟ ଶ୍ରୀରଥେ, 'ଗୋପପ୍ରୟାଣ'-ଲେଖକର ଏହି ସାମାନ୍ୟ ଓ ମାନବିକ ଅନୁରୋଧଗୁଡ଼ିକରୁ କୌଣସି ଗୋଟାକ ଉପରେ ହେଲେ ସାମାନ୍ୟତମ ଆଶ୍ୱାସନା ଦେଇ ନ ଥିଲେ ଏବଂ ପରେ କାର୍ଯ୍ୟରେ, ମୁଁ ଠିକ୍ ଯେଉଁ ଆଶଙ୍କା ତାଙ୍କ ଆଗରେ ପ୍ରକାଶ କରିଥିଲି, ସେ ତାହାହିଁ ଘଟାଇଲେ । କିନ୍ତୁ କଥୋପକଥନ ମଧ୍ୟରେ ପୂର୍ବୋଲ୍ଲିଖିତ ରାଜନୈତିକ ସନ୍ଦେହ ଏପରି ସ୍ପଷ୍ଟ ଓ ସିଧା ଭାବରେ ତାଙ୍କଠାରୁ ପ୍ରକାଶ ପାଇଲା ଯେ, ମୁଁ ବିସ୍ମୟରେ ଅଭିଭୂତ ହୋଇଗଲି । କଥା ହେଉଁ ହେଉଁ ରଥ ମହାଶୟ କହିପକାଇଲେ–

– ''ଆପଣ ରାଜନୀତିରେ ଜଡ଼ିତ !''

ମୁଁ– ମୁଁ ! ମୁଁ ରାଜନୀତିରେ ଜଡ଼ିତ ? କ'ଣ ତା'ର ଅର୍ଥ ?

ମନ୍ତ୍ରୀ–ଆପଣ ଦଳୀୟ ରାଜନୀତିରେ ଅଂଶ ନେଉଛନ୍ତି ।

ମୁଁ–ଦଳୀୟ ରାଜନୀତି ? ମୁଁ ତ କୌଣସି ହେଲେ ରାଜନୈତିକ ଦଳ ସହିତ ଅପ୍ରତ୍ୟକ୍ଷ ଭାବରେ ମଧ୍ୟ ସମ୍ପୃକ୍ତ ନୁହେଁ । ଆପଣ କହନ୍ତୁ ତ ମୁଁ କଂଗ୍ରେସର, ନା କମ୍ୟୁନିଷ୍ଟ ନା ପ୍ରଜା-ସୋସାଲିଷ୍ଟପାର୍ଟିର ଲୋକ ?

ମନ୍ତ୍ରୀ–ଆପଣ ଏକ ରାଜନୈତିକ ଗୋଷ୍ଠୀ ସହିତ ଘନିଷ୍ଠଭାବରେ ଜଡ଼ିତ ।

ମୁଁ–ଓଃ, ବର୍ତ୍ତମାନ ବୁଝିଲି ଆପଣଙ୍କ ଉଦ୍ଦେଶ୍ୟ । ଆପଣ ମନେକରୁଛନ୍ତି, ମୁଁ ମହତାବ ଦଳର ଲୋକ ?

ମନ୍ତ୍ରୀ–ହଁ, ତାହାହିଁ ମୋର ଧାରଣା ।

ମୁଁ–ସେ ଧାରଣା ଆପଣଙ୍କର ସମ୍ପୂର୍ଣ୍ଣ ଭୁଲ୍ । 'ପ୍ରଜାତନ୍ତ୍ର' ଓ 'ଝଙ୍କାର' ପ୍ରଭୃତିରେ ମୁଁ ଓ ମୋ ପରିବାର ଲୋକେ ଲେଖାଲେଖି କରୁଥିବାରୁ ଆପଣଙ୍କର ଏ ଧାରଣା ହୋଇଥାଇପାରେ । କିନ୍ତୁ ମୁଁ ତ ଆପଣଙ୍କ 'ସମାଜ'ରେ ବି ଲେଖେ । ସରକାରୀ ଚାକିରି ସତ୍ତ୍ୱେ ସ୍ୱାଧୀନ ମତପ୍ରକାଶ କରିବାର ଜନ୍ମଗତ ଅଧିକାର ମୋର ଅଛି ବୋଲି ମୁଁ ମନେକରେ । ମହତାବ ବା ଯେ ହୁଅନ୍ତୁ, ଜଗତରେ କୌଣସି ଲୋକ ନାହିଁ, ଯେ କି ମୋ ଲୟାଲଟିଜ୍ (ଆନୁଗତ୍ୟ)କୁ କିଣିନେଇପାରିବେ । ଯେତେବେଳେ, ଯେଉଁଠି ଓ ଯାହାର ଭଲ ଦେଖାଗଲା ତା'ର ପ୍ରଶଂସା ଓ ଯେତେବେଳେ, ଯେଉଁଠି ଓ ଯାହାର ନିନ୍ଦନୀୟ କିଛି ଦେଖାଗଲା, ତା'ର ନିନ୍ଦା, ଜଣେ ଲେଖକର ଜନ୍ମଗତ ଅଧିକାର ।

ମନ୍ତ୍ରୀ ରଥେ ଏପରି ବାଣୀ ଜଣେ ତଳିଆ କର୍ମଚାରୀଙ୍କଠାରୁ ବୋଧହୁଏ ଆଶା କରି ନ ଥିଲେ । ସେ ଚୁପ୍ ହୋଇ ବସିରହିଲେ । ମୁଁ ନିରାଶ ହୋଇ, କିନ୍ତୁ ନୂତନ ଓ ଅଭୂତପୂର୍ବ ଅଭିଜ୍ଞତା ନେଇ ଫେରିଲି । ଫେରିଲାବେଳେ କିନ୍ତୁ ଶ୍ରୀ ରଥଙ୍କ ସହିତ ବହୁବର୍ଷ ତଳର ଆଉ ଏକ କଥୋପକଥନ ମନେପଡ଼ିଗଲା । ମନେ ମନେ ଭାବିଲାଗିଲି, କେଉଁ କାର୍ଯ୍ୟ-କାରଣ-ନୀତି ବଳରେ ଶ୍ରୀ ରଥ ଆଜି ମୋର ଭାଗ୍ୟ-ନିୟନ୍ତା ?

## ଫାଇଦା ? –

ଏଠାରେ ତେଣୁ ସେହି ପୁରୁଣା କଥା କହେ । ଓଡ଼ିଶା ସେତେବେଳେ ସ୍ୱତନ୍ତ୍ର ପ୍ରଦେଶ ହୋଇନଥାଏ । ସାଇମନ୍ କମିଶନ ଆଗରେ ଜାତିର ଦୁଃଖ ଜଣାଇ କେତେକ ବେକଂଗ୍ରେସୀ ଓଡ଼ିଆ ନେତାହିଁ ଓଡ଼ିଶାର ସ୍ୱାତନ୍ତ୍ର୍ୟକୁ ସମ୍ଭାବନା ସ୍ତରକୁ ଆଣିଥାନ୍ତି । ସେ ସମ୍ଭାବନାରେ ଆମେ ସେତେବେଳର ତରୁଣ ସମାଜ ଖୁସି ରହିବାର କଥା ଓ ହେଉଥିଲୁଁ ।

ଏଇପରି ଏକ କାଳରେ 'ସମାଜ'ର ପୂର୍ବତନ ପୁରୁଣା-କଲେଜ ଲେନ୍‌ର ଅଫିସ୍‌ରେ ଶ୍ରୀ ରାଧାନାଥ ରଥଙ୍କ ସହିତ ଏ ଲେଖକ କୌଣସି କାମରେ ଯାଇ କଥାହେଉଥିଲା । କଥା ଭିତରେ ଓଡ଼ିଶା ସ୍ୱତନ୍ତ୍ର ହେବାରେ ଲେଖକର ଯେ ଅନ୍ତର୍ନିହିତ ଉତ୍ସାହ, ତାହା ପ୍ରକାଶ ପାଇଗଲା । ବର୍ତ୍ତମାନ ଯାଏ କୁଆଡ଼େ ?

ଉତ୍କଳପ୍ରାଣ ଗୋପବନ୍ଧୁଙ୍କର ପଟ୍ଟପତାକାଧାରୀ ରଥେ ଚଟ୍‌କିନି କହିପକାଇଲେ–''ଆପଣମାନେ ସ୍ୱତନ୍ତ୍ର ପ୍ରଦେଶ ଚାହୁଁଛନ୍ତି, କାରଣ, ଆପଣମାନେ ସୁବିଧାରେ ଚାକିରି ପାଇବେ ।''

ମୁଁ ଏହା ଶୁଣି ସ୍ତମ୍ଭିତ । କାରଣ, ଉତ୍କଳପ୍ରାଣ ଗୋପବନ୍ଧୁଙ୍କର ଏହି ପତାକାଧାରୀ ଶିଷ୍ୟଙ୍କର ଉଦାର ମନସ୍ତତ୍ତ୍ୱଟା ଟିକିଏ ତଳେଇ ଦେଖନ୍ତୁ, ପାଠକେ । ଓଡ଼ିଆ ଭାଷାଭାଷୀ ଲୋକେ ଏକ - ଶାସନାଧୀନ ହେବେ କି ନାହିଁ, ତା'ର ଆଦ୍ୟ ବିଚାର ହେଉଛି ସେଥିରୁ କିଏ କି ଫାଇଦା ଉଠାଇବ । ପୁଣି ଅନ୍ୟ ବ୍ୟକ୍ତିବିଶେଷଙ୍କର ଫାଇଦା ହେଲେ, ତାହା ଯଥାର୍ଥ ହେବ ସିନା, ଆମ ପରି ବ୍ୟକ୍ତିର ଫାଇଦା ଉଠିବାର ସମ୍ଭାବନା ମାତ୍ର ଥିଲେ, ଛିନ୍ନବିଛିନ୍ନ ଉତ୍କଳର ଏକୀକରଣ ମଧ୍ୟ ବିଚାରଣୀୟ ନୁହେଁ । ''ପ୍ରୟୋଜନମନୁଦ୍ଦିଶ୍ୟ ନ ମନ୍ଦୋଽପି ପ୍ରବର୍ତ୍ତତେ ।'' ଫାଇଦା ନହେଲେ କେଉଁ ମୂର୍ଖ କାମ କରିବ, ଦେଶ ଓ ଜାତିପାଇଁ ମଧ୍ୟ ? ଯାହାହେଉ, ଓଡ଼ିଆ ଜାତି ଆଜି ସହଜରେ ବିଚାର କରିପାରିବ, ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାରେ ରଥ-ଚୌଧୁରୀ ଇତ୍ୟାଦିଙ୍କର ପ୍ରକୃତରେ ଫାଇଦା ଉଠିଛି ନା ଏହି ସାମାନ୍ୟ ଲେଖକର ? ଅଥବା ଏଇ ଲେଖକ ପକ୍ଷରେ ଏକ କଲେଜର ପ୍ରିନ୍ସପାଲ ହେବାଟାକୁ ଫାଇଦା କୁହାଯିବ ନା ଶ୍ରୀରଥଙ୍କ ଶିକ୍ଷାମନ୍ତ୍ରୀ ହେବାଟାକୁ ?

ଆମେ ଓଡ଼ିଆଏ ଏପରି ଏକ ସଭ୍ୟ ଓ ସଂସ୍କୃତି-ସମ୍ପନ୍ନ ଜାତି ଯେ, ଏ ପ୍ରଦେଶ ଯାହାଯୋଗୁଁ ପ୍ରକୃତରେ ସମ୍ଭବ ହେଲା, ତାର ନାମ ମଧ୍ୟ ଆମେ ଆଜି ଉଚ୍ଚାରଣ କରୁନୁ; ଅଥଚ ଯିଏ ଦେଶ-ମିଶ୍ରଣରୁ କାହାର କି ବ୍ୟକ୍ତିଗତ ଫାଇଦା ଉଠିଲା ନଉଠିଲା କଥା ଭାବୁଥିଲେ ବା ଯିଏ ସାଇମନ୍ କମିଶନ୍ ଆସିଲାବେଳେ ବେକଂଗ୍ରେସୀ ନେତାଏ ଉତ୍କଳର ଏକୀକରଣ ଲକ୍ଷ୍ୟରେ କଟକ ଟାଉନ୍‌ହଲ୍ ସାମ୍ନାରେ ଯେଉଁ ଉତ୍କଳ ସମ୍ମିଳନୀର ଅଧିବେଶନ ଠିଆକରେଇଥିଲେ, ତାକୁ ଦଳ-ବଳ ନେଇ ସେଦିନ ହୁରୁଡ଼େଇ ଭାଙ୍ଗୁଥିଲେ, ପ୍ରଦେଶ ହେଲାରୁ ସେଇମାନେ ଓଡ଼ିଆ ଜାତିର ଭାଗ୍ୟନିୟନ୍ତା ହୋଇ ବାହାରିପଡ଼ିଲେ । କି ଚମତ୍କାର କାର୍ଯ୍ୟ-କାରଣ ସମ୍ପର୍କ ଏ ଦେଶରେ ?

## ମେହେର କଲେଜର ପୀଠଭୂମି –

ଏହି ଗ୍ରନ୍ଥର ଏକାଦଶ ଅଧ୍ୟାୟରେ ମେହେର କଲେଜର ଭବିଷ୍ୟତ ସଂପ୍ରସାରଣ ଲକ୍ଷ୍ୟରେ ମୁଁ ତା' ଆଗରେ ଥିବା ସେତେବେଳର ଅଧିକାଂଶ ଖାଲିପଡ଼ିଥିବା ଜମିକୁ ସରକାର ଆକ୍ୱାର କରିବାପାଇଁ, ସମ୍ବଲପୁର ରେଳ ଷ୍ଟେସନଟିକୁ ଓ ରେଳ ଷ୍ଟେସନ ଆଡ଼କୁ ଯାଇଥିବା ରାସ୍ତାକୁ ମଧ୍ୟ ସେଠୁ ଉଠାଇଦେଇ ଭବିଷ୍ୟତର ସମ୍ପ୍ରସାରିତ ବିଦ୍ୟାୟତନର ଯୋଗ୍ୟ ଅଧିଷ୍ଠାନରୂପେ ଏକ ଏକଚକଡ଼ି ଜାଗା(Compact Area) ଯୋଗାଡ଼ି ରଖିବାର ଯେଉଁ ସାମାନ୍ୟ ଚେଷ୍ଟା କରିଥିଲି ତାହା ସୂଚିତ ଅଛି । ତତ୍କାଳୀନ ଉତ୍କଳ ବିଶ୍ୱବିଦ୍ୟାଳୟ-ଇନ୍‌ସପେକ୍ଟର-ମଣ୍ଡଳ ଡକ୍ଟର ପି.କେ. ପରିଜା, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀ ବଜ୍ରାନନ୍ଦ ମହାନ୍ତି – ଏମାନେ ମେହେର କଲେଜକୁ ଯାଇଥିଲେ (୧୮ ଜୁଲାଇ ୧୯୫୩ରେ) । ସେମାନେ ତାଙ୍କର ମିଳିତ ରିପୋର୍ଟ (ପୃ: ୬୪-୬୫)ରେ ବିଶୁଦ୍ଧ ଶୈକ୍ଷିକ ଦୃଷ୍ଟିକୋଣରୁହିଁ ମୋର ସେ କାଳର ଏ-ସମ୍ପୃକ୍ତ ଚେଷ୍ଟାକୁ ପୂରାପୂରି ଓ ଦୃଢ଼ତାର ସହିତ ସମର୍ଥନ କରିଥିଲେ । ସେମାନେ କହିଥିଲେ–

''କିନ୍ତୁ ଏହି ବସାଘରଗୁଡ଼ିକ(ମେହେର କଲେଜର ଅଧ୍ୟାପକମାନଙ୍କ ଉପନିବେଶ) କଲେଜଠାରୁ ଦୂରରେ, ରେଳ ଲାଇନ୍ ଆରପଟେ ଯେ ତିଆରି ହେବାକୁ ଯାଉଛି, ତାହା ଠିକ୍ ମନେହେଉନି । ତା'ଠୁ ଭଲହୁଅନ୍ତା କଲେଜ କମ୍ପାଉଣ୍ଡ ସମ୍ମୁଖରେ ଏଥିପାଇଁ ସ୍ଥାନ ସଂଗ୍ରହ କରିବା । ଆଗରେ ଯାଇଥିବା ରାସ୍ତାଟି ଘୁଞ୍ଚାଇନେଇ ସମ୍ପ୍ରସାରିତ କଲେଜ ଭୂମିର ଆରପଟେ ରଖିଲେ, ସ୍ୱାସ୍ଥ୍ୟ ଓ ଶାସନ ଉଭୟ ଦିଗରୁ ଭଲହୁଅନ୍ତା । ଶୁଣିଲୁ, ସରକାରଙ୍କୁ ଏଥିପାଇଁ ପ୍ରାର୍ଥନା କରାଯାଇଛି, କିନ୍ତୁ ସରକାର ଜମି ଅଧିକାର କରିବା ସମୟସାପେକ୍ଷ ହେବ ବୋଲି ଆଶଙ୍କା କରି ଏପର୍ଯ୍ୟନ୍ତ କୌଣସି ସିଦ୍ଧାନ୍ତରେ ପହଞ୍ଚିପାରିନାହାନ୍ତି । କିନ୍ତୁ ଯୁଦ୍ଧ ସମୟରେ ସରକାର ଯେପରି ଜମି ଅଧିକାର କରିପାରୁଥିଲେ, ସେପରି କଲେ ଅନତିବିଳମ୍ବରେ ଜମି ମିଳିଯାନ୍ତା । କଲେଜର ସଂଘବଦ୍ଧ ଜୀବନ ଓ ଶୃଙ୍ଖଳା ନିମନ୍ତେ ଏ ପନ୍ଥା ଅବଲମ୍ବନ କରିବା ସମୁଚିତ ହେବ ।''

ଉତ୍କଳ ବିଶ୍ୱବିଦ୍ୟାଳୟର ପରିଦର୍ଶକମଣ୍ଡଳ ଯେଉଁ ଅନିଚ୍ଛୁକ 'ସର୍କାର'ର ଉଲ୍ଲେଖ କରିଛନ୍ତି, ସେ କ'ଣ ସେକ୍ରେଟାରିୟାଟ୍‌ର କାଠ-ଚୌକି-ଟେବୁଲ୍ ନା ଜନୈକ ବ୍ୟକ୍ତି ? ଜଣେ ପ୍ରଥମ ଶ୍ରେଣୀ କଲେଜର ପ୍ରିନ୍ସପାଲ୍ ଓ ଉତ୍କଳର ତିନିଜଣ ଶ୍ରେଷ୍ଠ ଶିକ୍ଷାବିତ୍ ଉତ୍କଳର ଗୋଟିଏ ମହତ୍ ବିଦ୍ୟାୟତନର ସମ୍ପ୍ରସାରଣ ଉପରେ ଆଖି ରଖି ଯାହା ପ୍ରସ୍ତାବ ଦେଇଥିଲେ, ତାହା ମଧ୍ୟ ଗ୍ରହଣ କରିବାକୁ ଏ ଦେଶର ତଥାକଥିତ ଲୋକ-ପ୍ରତିନିଧି ସରକାର ଅନୁତ୍ସାହ ଦେଖାଇଲେ କାହିଁକି ? ଫଳରେ, ଯେଉଁ ଜମି ଏକ ଜାତୀୟ କାର୍ଯ୍ୟରେ ଲାଗିଥାନ୍ତା, ତାହା ସବୁ ବ୍ୟକ୍ତିଗତ ସ୍ୱାର୍ଥରେ ବ୍ୟବହୃତ ହେଲା । ତେବେ କ'ଣ ଏ ଦେଶ ଶାସିତ ହେବ କେବଳ ଯାର ତାର ବ୍ୟକ୍ତିଗତ 'ଫାଇଦା'ର ବିଚାର ଉପରେ ? ସ୍ୱାଧୀନତୋତ୍ତର ଭାରତରେ ଚାରିଆଡ଼େ ଦୁର୍ନୀତିର ଚିତ୍କାର ଯେ ଉଠୁଛି, ତାହାର ତାତ୍ପର୍ଯ୍ୟ କ'ଣ ? ସାଧୁଭାବରେ ନିଜର ସ୍ୱାର୍ଥରକ୍ଷା ତ ଦୁର୍ନୀତି ନୁହେଁ, ଦୁର୍ନୀତି ହେଉଛି ସେହି, ଯାହା ଦେଶ ଓ ଜାତିର ସମୂହ କଲ୍ୟାଣପାଇଁ ଉଦ୍ଦିଷ୍ଟ, ତାକୁ ଅନ୍ୟ କ୍ଷୁଦ୍ର ବିଚାର ଦୃଷ୍ଟିରୁ ନକରିବା ବା ତାକୁ ବ୍ୟବହାର କରିବା ନିଜର ସ୍ୱାର୍ଥପୋଷଣ ବା ଫାଇଦାପାଇଁ । ପଶ୍ଚିମ ଓଡ଼ିଶାର ବିଖ୍ୟାତତମ କଲେଜ 'ମେହେର କଲେଜ' ଯାହାକୁ କେନ୍ଦ୍ରକରି ଦିନେ ଗୋଟିଏ ବିଶ୍ୱବିଦ୍ୟାଳୟ ଠିଆହେବାର ଆଶା କରାଯାଏ, ତାହା, ହାତଗୋଡ଼ ଲମ୍ବେଇ ସୁସ୍ଥ-ସ୍ୱଚ୍ଛନ୍ଦ ଓ ମର୍ଯ୍ୟାଦାବନ୍ତ ଅବସ୍ଥିତି ଯେ ଚିରକାଳପାଇଁ ହରେଇଲା, କିଏ ଏଥିପାଇଁ ଦାୟୀ ଓ କେଉଁ ମହତ୍ ଆଦର୍ଶ ପୂରଣ ଯୋଗୁଁ ଏହା ଘଟିଲା ?

ଯେଉଁ ଦେଶରେ ବିଦ୍ୟା ଓ ସଂସ୍କୃତିର ସ୍ୱକୀୟ ମହିମା ଓ ଜାତିର ସାମୂହିକ କଲ୍ୟାଣ ପଦଦଳିତ ହୁଏ, କୌଣସି କ୍ଷୁଦ୍ରତର ଫାଇଦା ବା ସାମାନ୍ୟ ବାଧାର ବିଚାରରେ, ସେଠି ଜାତୀୟ ଜୀବନରେ କି ବିଶୃଙ୍ଖଳା ନ ଘଟିପାରେ ? ଆମେ ଆଖିଆଗରେ ଦେଖୁଛୁ ଯେ, ପୂର୍ବେ ମଫସଲର ଜମିଦାରମାନେ ଯେମିତି 'ଶାଢ଼ି' ବାଣ୍ଟୁଥିଲେ, ଆମର ବିଶ୍ୱବିଦ୍ୟାଳୟ ସବୁ ସେଇମିତି ଫାଷ୍ଟକ୍ଲାସ୍ ଓ ଡକ୍ଟରେଟ୍ ବୁଣିଚାଲିଲେ ମଧ୍ୟ, ବେଦଭୂମି ଏହି ଭାରତବର୍ଷରୁ ବିଚାରୀ ସରସ୍ୱତୀ ଆଜି ସକାତରେ ପଳାୟମାନା । ଚାରିଆଡ଼େ ଚିତ୍କାର ଯେ ଜ୍ଞାନର ପରିମାପ କ୍ରମେ ତଳକୁ ତଳକୁ ଯାଉଛି । କିନ୍ତୁ ଆର୍ଯ୍ୟଦେବୀ, ଜ୍ଞାନଦାତ୍ରୀ ସରସ୍ୱତୀ, ଆଜି ମହା-ମହିମରେ ବିରାଜିତା ମ୍ଳେଚ୍ଛ ଦେଶମାନଙ୍କରେ; କାରଣ ସେଠାରେ କୌଣସି ବ୍ୟକ୍ତିଗତ ବା ଗୋଷ୍ଠୀଗତ ଅଯୋଗ୍ୟ

ଓ ଅଭାଜନ ପ୍ରିୟଜନ ଅପେକ୍ଷା ବିଦ୍ୟା, ଜ୍ଞାନ,ନିପୁଣତାକୁହିଁ ଅଧିକ ସମ୍ମାନ ଓ ଆଦର ଦିଆଯାଏ । ଆଜି ସେହି ମ୍ଳେଚ୍ଛ ଦେଶମାନଙ୍କରେ ହିଁ ବିଦ୍ୟାୟତନଗୁଡ଼ିକ ପ୍ରକୃତ 'ବାଣୀ-ମନ୍ଦିର' । କାରଣ, ସେ ଦେଶସବୁ ଭଲରୂପେ ଉପଲବ୍ଧି କରିଛନ୍ତି ଯେ, ବିଦ୍ୟାୟତନ ସବୁ ସାର୍ଟିଫିକେଟ୍-ସଂଗ୍ରହ ବା ଫାଇଦା-କ୍ଷମତାର ଲୀଳାଭୂମି ନୁହେଁ, ସେଇସବୁହିଁ ଭବିଷ୍ୟତ ଜାତିର ଗଠନଶାଳା । ସେଥିପାଇଁ ସେଠି ଏକ ଏକ ହାଇସ୍କୁଲ୍‌ର ଆସ୍ଥାନ ଶତଶତ ଏକର ଜମି ଓ ଏକ ଏକ ପ୍ରାଇମେରୀ ସ୍କୁଲ୍ ବିଲ୍ଡିଂ ମଧ୍ୟ ଏକ ଏକ ପ୍ରାସାଦ । କିନ୍ତୁ ଗୋପବନ୍ଧୁଙ୍କ ପଟ୍ଟଶିଷ୍ୟ ଓ ତତ୍କାଳୀନ ଶିକ୍ଷାମନ୍ତ୍ରୀ, ବିହାର-ଓଡ଼ିଶାର ପୂର୍ବତନ ମ୍ଳେଚ୍ଛ ଡିରେକ୍ଟର ଫକସ ଯେଉଁ ହାଇସ୍କୁଲ୍‌କୁ ପ୍ରଶସ୍ତ ୧୩ ଏକର ଜମିରେ ଠିଆକରେଇଥିଲେ, ତାକୁ ସେଠୁ ଆଣି ସର୍କିଟ୍‌ହାଉସ୍‌ର ପାଦ ତଳେ ସୋରାଏ ଜମି ଉପରେ ଠିଆକରେଇ ନିଜର କି ବିଜ୍ଞତା ଓ ବିଚକ୍ଷଣ କର୍ମପାଟବ ନ ଦେଖାଇଲେ !

## ମୋର ପ୍ରିୟ ସ୍ୱପ୍ନ –

ସେଦିନ ଏ ଲେଖକର ସ୍ୱପ୍ନ ଥିଲା, ଏକତ୍ରାବସ୍ଥିତ ଏକ ଉଦାର ପ୍ରଶସ୍ତ କ୍ଷେତ୍ରରେ ମେହେର କଲେଜ, ସମ୍ବଲପୁର ଜିଲ୍ଲା ସ୍କୁଲ୍ ଓ ଏକ ଆଦର୍ଶ ପ୍ରାଇମେରୀ ସ୍କୁଲ୍‌କୁ ଓ ସେମାନଙ୍କ ଚାରିପଟେ ପ୍ରାଇମେରୀ, ସେକେଣ୍ଡାରୀ ଓ କଲେଜ ଶିକ୍ଷକମାନଙ୍କର ମିଳିତ ଉପନିବେଶ ଠିଆ କରେଇବାକୁ, ଯେପରି କି ଆମ ଦେଶରେ ପ୍ରଚଳିତ ଥିବା ସମଗ୍ର ଶିକ୍ଷା ବ୍ୟବସ୍ଥାକୁ ମୂଳରୁ ଚୂଳଯାଏ ଗୋଟିଏ ଅଖଣ୍ଡ୍ୟ ଏକକ ବୋଲି ଧରି, ଯଥୋଚିତ ସଂସ୍କାର ଓ ଉନ୍ନତି ଲକ୍ଷ୍ୟରେ ପରୀକ୍ଷା ଚଳାଯାଇଥାନ୍ତା ଓ ପ୍ରାଇମେରୀ, ସେକେଣ୍ଡାରୀ ସ୍କୁଲ୍ ଓ କଲେଜର ଶିକ୍ଷକମାନଙ୍କୁ ଭିତରୁ ଶ୍ରେଣୀ-ସଚେତନତା ଦୂରହୋଇ, ସେ ସମସ୍ତେ ଯେପରି ମନେକରିଥାନ୍ତେ ଯେ, ସେମାନେ ସମସ୍ତେ ଗୋଟିଏ ମାତ୍ର ଯୋଜନାର ସମଧର୍ମୀ କର୍ମୀ ଓ ସେ ଯୋଜନାଟି ହେଉଛି ଭାରତୀୟ ଜାତି ଗଠନ । ତା' ତ ହେଲାନି – ବରଂ ଶାସନିକ ଅଜ୍ଞତା ଓ ଅନୁତ୍ସାହ ଯୋଗୁଁ ଉଭୟ ମେହେର କଲେଜ ଓ ସମ୍ବଲପୁର ଜିଲ୍ଲା ସ୍କୁଲ୍ ଯେ, ଚିରକାଳ କ୍ଳୁପ୍ତ, ଖଣ୍ଡିତ ହୋଇ ରହିଲେ ଏ ଦୁଃଖ ବୁଝିବ କିଏ ଏ ଦେଶରେ ? ସେଦିନ ସମ୍ବଲପୁର ସର୍କିଟ୍ ହାଉସ୍‌ରେ ଗଭର୍ଣ୍ଣର ଫଜଲଅଲ୍ଲିଙ୍କ ସମ୍ମୁଖରେ ମୁଁ ଏପ୍ରକାର ଲଣ୍ଡଭଣ୍ଡ, ବିଚାରହୀନ ପ୍ରସ୍ତାବମାନଙ୍କର ଯଥେଷ୍ଟ ପ୍ରତିବାଦ କରିଥିଲି, କିନ୍ତୁ ସେତେବେଳର ମହାମହିମ ଶିକ୍ଷାମନ୍ତ୍ରୀଙ୍କ ଆଖିରେ ଆମେ ଚପରାସୀଠାରୁ ଅଧିକ ମର୍ଯ୍ୟାଦା ପାଇବାର ତ କଥା ନଥିଲା । ଆମ କଥା ଶୁଣାହେବ କେଉଁ ଯୁକ୍ତିରୁ ? ସେ ମନ୍ତ୍ରୀ । ଆମେ ତ ସେତେବେଳେ ମାତ୍ର କର୍ମଚାରୀ–ଏମ୍ପଲୟୀ । ଯା ପୂର୍ବେ ଏଡୁକେଶନାଲ ଆଡ଼ଭାଇଜର ଭାବରେ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସିର ଏକାଧିକ ଇଂରେଜ ରେସିଡେଣ୍ଟ ଏବଂ ଉଭୟ ଓଡ଼ିଶା ଓ ମଧ୍ୟପ୍ରଦେଶର ଗଡ଼ଜାତମାନଙ୍କର ପଲିଟିକାଲ୍ ଏଜେଣ୍ଟଙ୍କ ସମ୍ପର୍କରେ ଆସିଥିଲି । ମୋର ହିନ୍ଦୋଳ ରିପୋର୍ଟକୁ ତତ୍କାଳୀନ ରେସିଡେଣ୍ଟ୍ ଓଡ଼ିଶା ଓ ମଧ୍ୟପ୍ରଦେଶର ସକଳ ଗଡ଼ଜାତ ରାଜାମହାରାଜାମାନଙ୍କ ବିଚାରପାଇଁ କିପରି ସର୍କୁଲେଶନ୍ କରିଥିଲେ ଓ ଆଡ଼ଭାଇଜର୍ ପୋଷ୍ଟ, ରାଜାମାନେ ଉଠାଇଦିଅନ୍ତେ, ରେସିଡେଣ୍ଟ ମୋପାଇଁ

କିପରି ନୂତନ ପୋଷ୍ଟ ସୃଷ୍ଟି କରି, ରାୟପୁରରେ ମୋପାଇଁ ରହିବାର ବ୍ୟବସ୍ଥା ମଧ କରିଦେଇଥିଲେ, ସେକଥା ଏ ଗ୍ରନ୍ଥର ପୂର୍ବ ଅଧାୟରେ ବର୍ଣ୍ଣିତ ଅଛି । ଦେଶ ସ୍ୱାଧୀନ ହୋଇ ଆମ ଲୋକେ ମନ୍ତ୍ରୀ ହେଲେ ବୋଲି କ'ଣ ମନୁଷ୍ୟ ସେହି ତଥାକଥିତ ମ୍ଲେଛ, ବିଦେଶୀ, ବିଧର୍ମୀ ଓ ଶୋଷକମାନଙ୍କର ମାନବିକ ବ୍ୟବହାର ଭୁଲିଯିବ ? କି ତଫାତ୍ ଏ ଦୁଇ ବ୍ୟବହାରରେ ଏବଂ ସେ ତଫାତ୍ କି ଦୁଃଖଦାୟକ ଓ ଲଜ୍ଜାଜନକ, ଯେହେତୁ ତାହା ହେଲା ସ୍ୱାଧୀନତାର ସଦ୍ୟ ଫଳ !

## ସାମ୍ବାଦିକତାର ବିଭୀଷିକା ? –

ସାମ୍ରାଜ୍ୟନିର୍ମାତା ୱାରେନ୍ ହେଷ୍ଟିଂସ୍ ଭାରତରୁ ଫେରିଲା ପରେ, ଭାରତରେ କରି ଯାଇଥିବା ଅତ୍ୟାଚାରମାନଙ୍କପାଇଁ ଇଂଲଣ୍ଡର 'ହାଉସ୍ ଅଫ୍ କମନ୍ସ' ଆଗରେ ବିଚାରିତ ହେଲା ବେଳେ ନିଜ ପକ୍ଷ ସମର୍ଥନରେ କୁଆଡ଼େ କହିଥିଲେ ଯେ, ସେ ଭାରତୀୟମାନଙ୍କର ଏତେ ଉପକାର କରିଯାଇଛନ୍ତି ଯେ, ସେମାନେ ତାଙ୍କ ନାଁରେ ମନ୍ଦିର ତୋଳେଇ ତାଙ୍କୁ ପୂଜା କରୁଛନ୍ତି । ତାଙ୍କର ପ୍ରତିପକ୍ଷୀୟ ପ୍ରସିଦ୍ଧ ବାଗ୍ମୀ ଏଡ଼ମଣ୍ଡ ବର୍କ୍ ସାଙ୍ଗେ ସାଙ୍ଗେ ମଧ କୁଆଡ଼େ ଉତ୍ତର ଦେଇଥିଲେ–"ଠିକ୍ କଥା । କିନ୍ତୁ ମନେରଖିବାକୁ ହେବ ଯେ, ଭାରତୀୟମାନେ ହଇଜା ଓ ବସନ୍ତ ପ୍ରଭୃତି ସଂକ୍ରାମକ ବ୍ୟାଧିକୁ ମଧ ପୂଜା କରନ୍ତି ।"

ବ୍ରିଟିଶ୍ ଆସିଲେ ଓ ଗଲେ । ଦେଶ ସ୍ୱାଧୀନ ହେଲା । କିନ୍ତୁ ଭାରତୀୟମାନେ ହଇଜା, ବସନ୍ତକୁ ପୂଜା ଦେବାର ମାନସିକତାର ଉପରକୁ ଉଠିଛନ୍ତି ବୋଲି କହିହେଉନି । ଏପର୍ଯ୍ୟନ୍ତ ଭାରତୀୟମାନେ ତାଙ୍କୁଇ କେବଳ 'ବଡ଼ ଲୋକ' ବୋଲି ସାଲ୍ୟୁଟ୍ ମାରୁଛନ୍ତି, ଯାହାଠୁ କେବଳ 'ଭୟ'ର ଆଶଙ୍କା । ଏ ଦେଶରେ ଧନୀର ସମ୍ମାନ ଫୋର୍ଡ଼ ବା ରକଫେଲର ପରି ପାଶ୍ଚାତ୍ୟ ଧନୀମାନଙ୍କର ମହାନୁଭବ ଗୁଣାବଳୀ ଯୋଗୁଁ ନୁହେଁ, ଧନ ଯେ ଏ ଦେଶରେ( ସଭ୍ୟ ଦେଶରେ ନୁହେଁ) ଧନବନ୍ତକୁ ଅନୁଗ୍ରହ-ନିଗ୍ରହର କ୍ଷମତା ଦେଇପାରୁଛି, କେବଳ ତା'ରି ଯୋଗୁଁ । ପୂର୍ବେ ରାଜା ଜମିଦାରଙ୍କ ସାମାଜିକ ପ୍ରତିପତ୍ତିର ମୂଳରେ ଥିଲା ମଧ ଏହି ସଚେତନତା । ରାଜା ଜମିଦାର ତ ଗଲେ – ଅନ୍ତତଃ ଓଡ଼ିଶାରେ କାଣ୍ଡକାରଖାନା ଦେଖି ମନେହେଉଛି, ତାଙ୍କର ସ୍ଥାନ ପୂରଣ କଲେ କି ଆଉ ଖବରକାଗଜବାଲା ? ଦେଖାଯାଉଛି ଯେ, ସ୍ୱାଧୀନତା ପରେ ଏ ଦେଶରେ ଆଜି ଖବରକାଗଜ, ଲୋକକଲ୍ୟାଣର ମାଧମ ସେତେ ନୁହେଁ, ଯେତେ କ୍ଷମତା-ରାଜନୀତିର ଓ ସାମାଜିକ ପ୍ରଭାବ-ପ୍ରତିପତ୍ତିର ପ୍ରଶସ୍ତ ଆୟୁଧ ! ନଚେତ୍ ସମସାମୟିକ ଉତ୍କଳରେ କେତୋଟି ପତ୍ରପତ୍ରିକାର ସ୍ଥାପୟିତା ଓ ସମ୍ପାଦକମାନଙ୍କର ଯେଉଁ ପ୍ରଭାବ, ପତିଆରା ଓ ପ୍ରସ୍‌ପରିଟି (ଅଭ୍ୟୁଦୟ) ଦେଖିଲୁ, ତାହା ସେହି ସେହି ଲୋକମାନଙ୍କ ପକ୍ଷରେ ଅନ୍ୟଭାବରେ କିପରି ସମ୍ଭବ ହୋଇଥାନ୍ତା, ବୁଝିହେଉନି । ଦେଖାଯାଉଛି ଯେ, ଏ ଦେଶରେ କାହା ହାତରେ ଖଣ୍ଡେ କାଗଜ ଥିଲେ, କେବଳ ତା'ର ସ୍ୱୟଂ ସେହି ସମ୍ପାଦକ ନୁହେଁ, ତାଙ୍କ ପିତା ବା ମାମୁ ବା ଶ୍ୱଶୁର ବା କ୍ୱାଇଁ ମଧ ବିନା ଆୟାସରେ କବି, ସାହିତ୍ୟିକ, ଦାର୍ଶନିକ, ଅର୍ଥନୀତିକ, ଶିକ୍ଷକ, ଶିକ୍ଷାବିତ୍ ଓ ମନ୍ତ୍ରୀ ଯାହା ଯେଉଁଠି, ଯେତେବେଳେ ଫାଇଦା ଓ ଫୁଲମାଳ ଯୋଗାଡ଼ିବାର ଆଶା, ତାହା

ସେ ହୋଇପାରନ୍ତି ଓ ପାଇପାରନ୍ତି ଏବଂ ଦେଶର ଶ୍ରେଷ୍ଠ ପୀଠରେ ତାଙ୍କର ଫଟୋ ବି ଝୁଲିପାରେ । ପ୍ରତିବାଦ କରିବ କିଏ, କିପରି ଓ କେଉଁଠି ? କଲେ, ସ୍ତମ୍ଭସ୍ତମ୍ଭ କୁତ୍ସାବର୍ଷଣ ।

## ବିଶୁଦ୍ଧ ସାମ୍ବାଦିକତା –

ଉଚ୍ଚ ଓ ବିଶୁଦ୍ଧ ସାମ୍ବାଦିକତା ଗଣତାନ୍ତ୍ରିକ ଶାସନର ପରମତମ ଓ ଏକତମ ଭରସା । କିନ୍ତୁ ଉଚ୍ଚ ଓ ବିଶୁଦ୍ଧ ସାମ୍ବାଦିକତାର ପ୍ରଥମ ଧର୍ମ, ଗୁଣ ଓ କର୍ତ୍ତବ୍ୟ ହେଉଛି ନିରାସକ୍ତତା ଓ ନିରପେକ୍ଷତା । ଉଚ୍ଚକୋଟୀର ସମ୍ବାଦପତ୍ର ବା ସମ୍ପାଦକ କୌଣସି ଦଳ, ଗୋଷ୍ଠୀ ବା ମେଣ୍ଟର ମୁଖପାତ୍ର ମାତ୍ର ନୋହିପାରନ୍ତି । ହେଲେ, ତାହା ସମ୍ବାଦପତ୍ର ନହୋଇ ହେବ ପ୍ରଚାରପତ୍ର ବା ଫାଇଦାପତ୍ର ! ଉଚ୍ଚ ବା ବିଶୁଦ୍ଧ ସାମ୍ବାଦିକ କେବଳ ସାମ୍ବାଦିକତାର ସମ୍ମାନ ଛଡ଼ା ଅନ୍ୟ କିଛି ମାନ ସମ୍ମାନ ଚାହିଁବେ ନାହିଁ । ପ୍ରକୃତ ସମ୍ପାଦକ ବା ସାମ୍ବାଦିକ ସତ୍ୟର ଉପାସକ ଓ ନ୍ୟାୟର ସୈନିକ । ସେ ଦ୍ରଷ୍ଟା ଓ ବିଚାରକ । ସେ ମଧ ଯଦି ପ୍ରବହମାନ ଜୀବନ ରଙ୍ଗମଞ୍ଚରେ ନେତା ଓ ଅଭିନେତା ସାଜନ୍ତି ବା ଭୋଜ୍ୟସୁଖ ବା ଲାଭାଲାଭ ଉପରେ ତାଙ୍କର ଲାଳସା ରହେ, ତେବେ ନିରାସକ୍ତ ଓ ନିରପେକ୍ଷ ସତ୍ୟ ସେ ଦେଇପାରିବେ କିପରି ? ସାମ୍ବାଦିକତାର ଏହି ଉଚ୍ଚତମ ଆଦର୍ଶ ଅନୁଯାୟୀ, କ୍ଷୁଦ୍ର ଇଂଲାଣ୍ଡ, ଟାଇମ୍ସ ବା ଗାର୍ଡ଼ିଆନ୍ ପରି ବିଶ୍ୱପ୍ରଭାବଶାଳୀ ଓ ବିଶ୍ୱବିଖ୍ୟାତ ପତ୍ରିକା ଠିଆକରିପାରିଛି । ଏମାନଙ୍କର ସତ୍ୟ ଓ ବିଶୁଦ୍ଧ ସାମ୍ବାଦିକତାର ପ୍ରଥମ ଚିହ୍ନ ଏହି ଯେ, ଏହି ବିଶ୍ୱବିଖ୍ୟାତ ପତ୍ରିକାମାନଙ୍କର ସମ୍ପାଦକମାନଙ୍କ ନାମ ବା ଚେହେରା ସେମାନଙ୍କର କୋଟି-ସଂଖ୍ୟକ ଦୈନିକ ପାଠକମାନଙ୍କୁ ଜଣାହିଁ ନଥାଏ ଏବଂ ଠିକ୍ ଏହି କାରଣରୁହିଁ ସେଗୁଡ଼ିକ କେବଳ ଇଂଲାଣ୍ଡରେ ସର୍ବଦଳ ନିର୍ବିଶେଷରେ ଶ୍ରେଷ୍ଠ ଓ ଜନପ୍ରିୟ ପତ୍ରିକା ନୁହନ୍ତି ସେମାନେ ମଧ ବିଶ୍ୱପତ୍ରିକାର ସମ୍ମାନ ପାଇଥାନ୍ତି । ଭାରତରେ ମଧ କେତେଜଣ ଜାଣନ୍ତି 'ଷ୍ଟେଟ୍‌ସମାନ୍'ର ସମ୍ପାଦକ କିଏ ? ପାଠକ କ'ଣ ପଇସା ଦେଇ ଖବରକାଗଜ କିଣିବ ସମ୍ପାଦକ ବା ସ୍ଥାପୟିତାଙ୍କର ଛବି, ଭାଷଣ ଓ ସ୍ତୁତି ପଢ଼ିବାପାଇଁ ? ଯିଏ ପ୍ରକୃତରେ ମହତ୍, ତାକୁ ତ ଜାତି ପୂଜା କରିବ । ନିଜର ଗୋଟିଏ ପତ୍ରିକା ଠିଆକରି ନିଜର ସ୍ମୃତି ବାନ୍ତି କରିବା କି ଭଲ୍‌ଗାର ନୁହେଁ ? ଏହା ଯେ ସାମ୍ବାଦିକତାର ଏକ ଦୁଃଖାତ୍ମକ ଓ ଇତର ପ୍ରହସନ ମାତ୍ର । ଷ୍ଟେଟସ୍‌ମାନ୍‌ର ସ୍ଥାପୟିତାଙ୍କର କ'ଣ ଚେହେରା ନାହିଁ ନା ତାର ସମ୍ପାଦକ ଭାଷଣ ଦେଇଜାଣନ୍ତିନି ? ଅନ୍ତତଃ ଓଡ଼ିଶାରେ, ପତ୍ରପତ୍ରିକାମାନଙ୍କର ଏହି ଇତରତା ଫଳରେ ଏ ଦେଶ ଓ ଜାତି ଉଚ୍ଚକୋଟୀର ସାମ୍ବାଦିକତା କ'ଣ ଜାଣି ପାରିଲାନି ଏପର୍ଯ୍ୟନ୍ତ । ଏଠି ଦୈନିକ ପତ୍ରିକାର 'ସମ୍ପାଦକୀୟ' ହୋଇପାରେ ଛ'-କଲମ ବ୍ୟାପୀ ପ୍ରବନ୍ଧ, ଠିକ୍ ଯେପରି ଏ ଦେଶର ଓଡ଼ିଆ ଅଧ୍ୟାପକ ଛ' ଘଣ୍ଟା ବ୍ୟାପୀ ଚିନ୍ତାପୂର୍ଣ୍ଣ ଭାଷଣ ଦେଇଥାନ୍ତି । ପୁଣି ଛ'ସ୍ତମ୍ଭର ତାତ୍ପର୍ଯ୍ୟ କ'ଣ ପାଠକ ପକ୍ଷରେ ଖୋଜି ପାଇବା ମୁସ୍କିଲ୍, ଠିକ୍ ଯେପରି ଓଡ଼ିଆ ଅଧ୍ୟାପକଙ୍କ ଛ-ଘଣ୍ଟିଆ ବାବଦୂକତାର ତାତ୍ପର୍ଯ୍ୟ ! ସାମ୍ବାଦିକତା ଏକ ଦୁରାୟତ୍ତ ଓ ଉଚ୍ଚକୋଟୀର ବୈଜ୍ଞାନିକ କଳା ହୋଇଥିବାରୁ ଇଂରାଜୀରେ ମଧ କଥା ଅଛି ଯେ, ''Editors are born, not made'' । ସମସ୍ତେ ସିଦ୍ଧହସ୍ତ ସମ୍ପାଦକ ବା ସାମ୍ବାଦିକ ହୋଇପାରିବେ ନାହିଁ, ଯେପରି ସମସ୍ତେ ଉତ୍ତମ ଶିକ୍ଷକ ବା ଉତ୍ତମ ଡାକ୍ତର ବା ଉତ୍ତମ ଚଷା ବା ମାଳୀ ମଧ

ହୋଇପାରନ୍ତିନାହିଁ । ଓଡ଼ିଶାରେ ଆଜି ଧୂଆମୂଳା ଅଧୁଆ ମୂଳାର ପ୍ରଭେଦ ଯେ ଉଭେଇଯିବା ଉପରେ, ତା'ର ଏକ ମୁଖ୍ୟ କାରଣ ଆମର ନିମ୍ନ ଶ୍ରେଣୀର ସାମ୍ବାଦିକତା । ସମଗ୍ର ଦେଶ ଆଜି କର୍ମ ଅପେକ୍ଷା କର୍ମର ପ୍ରଚାର ଓ ତଜ୍ଜନିତ ଫାଇଦାରେ ଅଧିକ ବିଶ୍ୱାସୀ । ପ୍ରଚାରର ମହାଯାନୀ ପନ୍ଥା ହେଲା ଖବରକାଗଜ । ସେଥିପାଇଁ ସମ୍ପାଦକ ଓ ସାମ୍ବାଦିକଙ୍କୁ ବରଣମାଳାର ଏତେ ଆୟୋଜନ । କିନ୍ତୁ ଏହି ଶସ୍ତା ଆତ୍ମପ୍ରସାଦ ସମଗ୍ର ଜାତିକୁ କେଉଁ ଆଡ଼କୁ ଟାଣିନେଉଛି, ଭାବୁଛି କି କେହି ?

## ପୁଣି କ୍ଷୁଦ୍ର ଦୃଷ୍ଟି ? –

ପୁଣି, ଜାତୀୟବାଦୀତାର ଛଦ୍ମ ଆବରଣ ତଳେ ଏ ଦେଶର ବିଶେଷ ବିଶେଷ ପ୍ରଭାବଶାଳୀ ପତ୍ରିକା ପ୍ରକୃତରେ ଯେପରି ସ୍ୱକୀୟ ସଂକୀର୍ଣ୍ଣ ବ୍ୟକ୍ତିଗତ ଓ ନିଜ-ମେଣ୍ଟ-ଲାଭର ସଂରକ୍ଷକ ରୂପେହିଁ ଦଣ୍ଡାୟମାନ ତାହା ଏହି ହତଭାଗ୍ୟ ଜାତି ପକ୍ଷରେ ଆଉ ଏକ ଘୋରତର ଦୁର୍ବିପାକ ଓ ପରିତାପର କଥା ବୁଝିବାକୁ ହେବ । ଲୋକରେ କୁହାଯାଉଛି ଯେ,ବୋଧହୁଏ ଏହିପରି ଏକ ପ୍ରଭାବଶାଳୀ ପତ୍ରିକାର ପକ୍ଷପୁଟର ଭରସାରେ ଆଜି ଉତ୍କଳର ଶିକ୍ଷା-ସାହିତ୍ୟ-ସଂସ୍କୃତି କ୍ଷେତ୍ରରେ ମଧ୍ୟ ଦଳେ ଲୋକ ନିରଙ୍କୁଶଭାବରେ ସକଳ ବିଭ୍ରାଟ କରିଚାଲିଛନ୍ତି, ବିଦ୍ୟା ଓ ସଂସ୍କୃତିକୁ ପଦଦଳିତ କରି । ପବ୍ଲିସିଟି ଦେଇ ନିଜର ଅନୁଗତ କେତେକଙ୍କୁ ବଡ଼ କରିବାପାଇଁ କାହାର ଅଣ୍ଟା ଦରଜ ହେଲେ ବା କିଏ ମିଟିଂକୁ ଯାଇ ବକ୍ତୃତା ଦେବା ଦୂରେଥାଉ, ମିଟିଂକୁ ନ ଯାଇ ପାରିଲେ ମଧ୍ୟ ବା ଏପରିକି କାହାର ଆଈ ମରିଗଲେ ମଧ୍ୟ ସେ ଖବର ଯେଉଁ ପ୍ରଭାବଶାଳୀ ପତ୍ରିକାରେ ବାହାରେ, କୌଣସି ବିଶ୍ୱବିଖ୍ୟାତ ପଣ୍ଡିତ କଟକ ନଗରରେ ଏକାଧିକ ସ୍ଥାନରେ ଏକାଧିକ ବକ୍ତୃତାରେ କୌଣସି ଓଡ଼ିଆ ଲେଖକର କୌଣସି ପୁସ୍ତକର ବାରମ୍ବାର ଭୂୟସୀ ପ୍ରଶଂସା କଲେ ମଧ୍ୟ ତା'ର ନାମୋଚ୍ଚାରଣ ସେ ପତ୍ରିକା କରେନାହିଁ, କାରଣ ସେ ଲେଖକ ବିଚାରାଟି ଓଡ଼ିଆ ହେଲେହେଁ, ଭିନ୍ନଗୋଷ୍ଠୀର ଲୋକ । ଅଧିକନ୍ତୁ ସେହି ବହିଟିର ନିନ୍ଦା ପାଇଁ ସାମ୍ବାଦିକ ଉତ୍ସାହ ବେଶ୍ ଦେଖାଯାଏ । ଏଇ ହେଲା ଏ ଦେଶରେ ତୁଙ୍ଗ ଜାତୀୟତା ଓ ଉଚ୍ଚ ସାମ୍ବାଦିକତା ।

ଡକ୍ଟର ସୁନୀତି କୁମାର ଚାଟାର୍ଜୀ, ୧୯୬୪ ଡିସେମ୍ବର ଶେଷ ସପ୍ତାହରେ କଟକରେ ବସିଥିବା ନିଖିଳ ବଙ୍ଗ ସାହିତ୍ୟ-ସମ୍ମିଳନୀର ମୂଳ ସଭାପତିଭାବରେ ଆସି ଲେଖକର ଇଂରାଜୀ ''ଓଡ଼ିଆ ସାହିତ୍ୟର ଇତିହାସ''ର ବାରମ୍ବାର ଉଚ୍ଚପ୍ରଶଂସା କରିଥିଲେ ବୋଲି ବହୁ ବହୁ ବନ୍ଧୁଙ୍କଠାରୁ ଶୁଣିଲି । ଯେହେତୁ କଟକରେ ଥିଲେହେଁ ଲେଖକ, ଡକ୍ଟର ଚାଟାର୍ଜୀଙ୍କ ପ୍ରଦତ୍ତ କୌଣସି ଭାଷଣ ଶୁଣିବାକୁ ଯାଇନଥିଲା ବା ତାଙ୍କୁ ସାକ୍ଷାତ୍ କରିନଥିଲା, ତେଣୁ କୌଣସି ତରୁଣ ସାମ୍ବାଦିକ ବନ୍ଧୁଙ୍କର ନିମ୍ନଦତ୍ତ ପତ୍ରଟିହିଁ, ଡକ୍ଟର ଚାଟାର୍ଜୀଙ୍କର ଅନୁକୂଳ ମନ୍ତବ୍ୟର, ତା' ନିକଟରେ ଏକମାତ୍ର ପ୍ରମାଣ । ଅନ୍ୟ କୌଣସି ଦେଶର ପତ୍ରିକା, ନିଜ-ଦେଶବାସୀ-ଲିଖିତ କୌଣସି ପୁସ୍ତକର ଏପ୍ରକାର ପ୍ରଶଂସାରେ ତୂଷ୍ଣୀଭାବ ଅବଲମ୍ବନ କରିବାର ଇତରତା ଓ ଦୁର୍ନୀତି କଳ୍ପନାତୀତ ବୋଲି ମନେହୁଏ । ପୁଣି, ସୁନୀତିକୁମାର ଚାଟାର୍ଜୀଙ୍କର ମତକୁ ମଧ୍ୟ କ'ଣ 'ଓଡ଼ିଆ-ଅନଭିଜ୍ଞ' ଲୋକର ମତ ବୋଲି ଭୁରୁଡ଼ କରାଯାଇପାରେ ? ନାଁ, ସେପରି ପଣ୍ଡିତଜନଙ୍କୁ କୌଣସି ବହିର 'ତ୍ରୁଟି' ଅଛପା ରହିଯିବ ? ତାଙ୍କଠୁ ଏ ଦେଶର ଓଡ଼ିଆ ଅଧ୍ୟାପକେ ଓ ଦୈନିକ ପତ୍ରିକାର ସହସମ୍ପାଦକ ବୋଧହୁଏ ବେଶି ବହି ବା ଭଲ ବହି ପଢ଼ିଛନ୍ତି ଏବଂ କେବଳ ସେହି ହେତୁହିଁ

ଯେଉଁ ବହିକୁ ସୁନୀତିକୁମାର ଚାଟାର୍ଜୀ ପ୍ରଶଂସା କରନ୍ତି, ସେମାନଙ୍କୁ ତାହା କେବଳ 'ତ୍ରୁଟିପୂର୍ଣ୍ଣ' ଦେଖାଯାଏ । ବହିର ଅକ୍ଷମଣୀୟ ଅପରାଧ ଅବଶ୍ୟ ଏହି ଯେ ସେଥିରେ ଏମାନଙ୍କର ନାଁଟିମାନ ନାହିଁ । ଏହି ହେଲା କୌଣସି 'ଇତିହାସ'ର ମଧ୍ୟ ସବୁଠାରୁ ବଡ଼ ବିଚାର, ଏ ଦେଶରେ । ଏହି ଅଜ୍ଞତାର ଉତ୍ତରୋତ୍ତର ଜୟ ହେଉ, ବନ୍ଧୁଗଣ ।

14, January, 1965.

Dear Dr. Mansinha,

I wished very much that you should have been present the other day in that "Artaballava Memorial Lecture" which was delivered by Dr. Suniti Kumar Chatterjee at Sri Ramchandra Bhawan.

You will be glad to know that Dr. Chatterjee, during the course of his speech, made several references to your book "The History of Oriya Literature" and quoted freely to support his arguments. As far as I remember, he even described the book as the "wonderful and monumental" work of Dr. Mansinha.

To me it appeared, as if he had based his speech "Orissa's contribution to Indian Culture" entirely on your book. It is really surprising when the book is so much praised, appreciated and liked by people of the rank of Dr. Chatterjee why some of our own men are making thankless attempts to be little its importance.

I am sure Time alone will bear out the sincerity of your efforts.

With regards,

Your sincerely
Sd/- R.H. Mishra
SPECIAL CORRESPONDENT
THE LINK & THE PATRIOT
Tulshipur, Cuttack.

Dr. Mayadhar Mansinha
Thoria Sahi, Cuttack-1

## ଦୁର୍ନୀତିର ସଂଜ୍ଞା –

ପୁଣି ଗଭୀର ଭାବରେ ବିଚାର୍ଯ୍ୟ ଏହା ମଧ୍ୟ ନୁହେଁ କି ଯେ, ଟଙ୍କା ପଇସାର ଅନ୍ୟାୟ ସଂଗ୍ରହ ବଡ଼ ଦୁର୍ନୀତି, ନା ଅଧିକତର ଓ କୁତ୍ସିତତର ଦୁର୍ନୀତି ହେଲା, ଖଣ୍ଡେ-ହେଲେ-ଚଟିବହି-ମଧ୍ୟ-ଛାଡ଼ି-ନ-ଯାଇଥିବା ଜଣେ ପୁସ୍ତକ-ଦୋକାନୀକୁ ବିରାଟ ଏକ 'ସାହିତ୍ୟିକ' ବୋଲି ପ୍ରଚାର ଚଳେଇ, ଏ ରାଜ୍ୟର ଶ୍ରେଷ୍ଠ ସାହିତ୍ୟପୀଠ ଉତ୍କଳ ସାହିତ୍ୟ ସମାଜରେ ତାଙ୍କର ଫଟୋ ଝୁଲେଇବା ପରି ଘୋରତମ ଓ ବୀଭତ୍ସତମ ସାଂସ୍କୃତିକ ଅପକର୍ମ ? ପଇସାର ଦୁର୍ନୀତି କେତୋଟି ବ୍ୟକ୍ତିକୁ କଳୁଷିତ କରିବ, କିନ୍ତୁ ରାଧାନାଥ, ଫକୀରମୋହନଙ୍କ ପାଖେ ନିଜର ସାଂପ୍ରତିକ ରାଜନୈତିକ ଓ ସାମ୍ବାଦିକ ପ୍ରଭାବର ସଂପୂର୍ଣ୍ଣ ଅପବ୍ୟବହାର କରି ସାମାନ୍ୟ ଏକ ପୁସ୍ତକ ଦୋକାନୀକୁ ସମାସନ ଦେବା ବା ନିଜର ବୋଲି ଅଯୋଗ୍ୟ ଓ ଦୁର୍ନୀତିପରାୟଣ ଲୋକଙ୍କୁ ଘଣ୍ଟ ଘୋଡ଼େଇବାର ସାଂସ୍କୃତିକ ବ୍ୟଭିଚାରଦ୍ୱାରା ଯେ ସମଗ୍ର ଜାତିର ଐତିହ୍ୟ ନଷ୍ଟ ହେଲା,

ଏହା ଚିନ୍ତା କରାଯାଉଛି କି ? ଖଣ୍ଡେ ବୈଦ୍ୟପୋଥି 'ସାହିତ୍ୟ' ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଟଙ୍କା ମାରିନେଲା ବେଳେ, ଯେଉଁ ନୀତିବୋଧ କମ୍ବଳ ଘୋଡ଼ି ହୋଇ ଶୋଇପଡ଼େ, ବିରୋଧୀ ଗୋଷ୍ଠୀ ବା ବ୍ୟକ୍ତି ବେଳକୁ ତାହା ଚେଇଁଉଠି ଚିତ୍କାର କରିପାରେ ! ସମ୍ପାଦକ ମନ୍ତ୍ରୀ-ଗାଦି ପାଇଲେ କାଗଜର ଏକ ସ୍ୱର, ନ ପାଇଲେ ସ୍ୱର ଅନ୍ୟ ପ୍ରକାର । ସହସମ୍ପାଦକଙ୍କୁ ଉଖୁଡ଼ା ଭୋଗ ମିଳିଲେ ସବୁ ଠିକ୍, ନ ମିଳିଲେ ଦୁର୍ନୀତିର ଚିତ୍କାର । ଚମତ୍କାର ଏ ପ୍ରକାର ସାମ୍ୟାଦିକ ବା ସାମ୍ୟାଦିକ ଆଦର୍ଶ । ଦେଶ ଓ ସମାଜରେ ଅପରିବର୍ତ୍ତନୀୟ ଶାଶ୍ୱତ ମୂଲ୍ୟବୋଧର ପ୍ରଚାରହିଁ ଯାହାର ଆଦର୍ଶ ହେବା କଥା, ସେପରି ଅନୁଷ୍ଠାନର ଇଏ କି ଇତରତା ? ମାସ ମାସ ଧରି ଅନ୍ୟର ଦୁର୍ନୀତି ବୟାନଠାରୁ ଏକ ଐତିହାସିକ ଜାତିର ଅଧିକ ରୁଚିକର ବା ସ୍ୱାସ୍ଥ୍ୟକର ଜ୍ଞାତବ୍ୟ ବା ପଠିତବ୍ୟ ବିଷୟ କ'ଣ ଆଉ କିଛି ନାହିଁ ? ସମଗ୍ର ଜାତିର ରୁଚିକୁ ଏହା ପୋକଡ଼ା କରୁନି କି ? ଅନ୍ୟପକ୍ଷରେ, ଇଏ ପୁଣି କିପରି ସମ୍ପୂର୍ଣ୍ଣ ଅନନୁମୋଦନୀୟ ଅନଧିକାରଚର୍ଚ୍ଚା ! କଲେଜରେ ଓଡ଼ିଆ ଟ୍ୟୁଟୋରିଆଲ୍ ରହିବ କି ନାହିଁ ତାହାର ବହୁ ବିଚାର କରି, ପୂର୍ବେ-କଲେଜ-ପ୍ରିନ୍ସପାଲ୍ ଥିବା ଓ ତେଣୁ ଏ ବିଷୟରେ ଅଭିଜ୍ଞ ଜନୈକ ଡି.ପି.ଆଇ. କିଛି ସଂସ୍କାର ଆଣିବାକୁ ବସିଲେ । ଜଣେ ଡି.ପି.ଆଇ. ଓ ଶିକ୍ଷାବିତ୍‌ଙ୍କର ପ୍ରସ୍ତାବର ଶାସନିକ ଓ ବୌଦ୍ଧିକ ନିଷ୍ପତ୍ତି ହେଲା କେଉଁଠି ଓ କିପରି , ନା ଜଣେ ସମ୍ପାଦକଙ୍କୁ କେନ୍ଦ୍ରକରି ଟାଉନ୍‌ହଲ୍‌ରେ ଚିତ୍କାର ଉଠେଇବା—ଓଡ଼ିଆ ଭାସିଗଲା ! ବିଚରା ଡି.ପି.ଆଇ. ଏ କାଣ୍ଡ କାରଖାନା ଦେଖି ବିଚାରବନ୍ତ ଭାବରେ ପଛଘୁଞ୍ଚା ଯେ ଦେଲେ, ସେଥିରେ ଜୟ ହେଲା କାହାର—ଶିକ୍ଷା, ଜ୍ଞାନ, ଶୃଙ୍ଖଳା, ସଂସ୍କୃତିର, ନା ହେଲା ଏକ ହଲ୍ଲାର, ଯାହା ଏବେ ଦରକାର ମାତ୍ରେ ସ୍ୱାଭାବିକ ପ୍ରକାଶ ହୋଇଉଠିଛି, ଦଳବଦ୍ଧ ଅଯୋଗ୍ୟତାର ? ଯେଉଁ ସମ୍ପାଦକ କେବେ ପ୍ରାଇମେରୀ, ସେକେଣ୍ଡାରୀ ସ୍କୁଲ୍ ବା କଲେଜରେ ଶିକ୍ଷକ ନଥିଲେ, ଶିକ୍ଷା ଜଗତରେ ଯିଏ କେବେ କୌଣସି ମୌଳିକ ଚିନ୍ତା ବାଢ଼ିଥିବାର ଜଣାନାହିଁ, ଯାହାର ଦେଶରେ ଜଣେ ପଣ୍ଡିତ ଲୋକ ବୋଲି ମଧ୍ୟ ଖ୍ୟାତି ନାହିଁ, ପ୍ରାଇମେରୀ, ସେକେଣ୍ଡାରୀ ବା କଲେଜ ଶିକ୍ଷକମାନଙ୍କର 'ଦାବି'ର ନେତା ହେବାପାଇଁ ସେ ମହାଶୟ ହଠାତ୍ ବିରାଟ ଶିକ୍ଷାବିତ୍ ହୋଇ ବାହାରି ପଡୁଛନ୍ତି କିପରି, ବୁଝିବା ମୁସ୍କିଲ୍ ! ନିରକ୍ଷର ଗଉଡ଼ ଟୋକା ପୋତା ବତ୍ରିଶସିଂହାସନ ଉପରେ ବସିଲେ। ଯେପରି ବିଜ୍ଞ ହୋଇ ଉଠୁଥିଲା ବୋଲି ଗପରେ ପିଲାଦିନେ ପଢ଼ିଥିଲୁ, ଖବରକାଗଜ ହାତରେ ପଡ଼ିଲେ ଏବେ ସେହି ଦୃଶ୍ୟ ଯଦି ପୁନରଭିନୀତ ହୁଏ, ତେବେ ତାହା ଦେଶପକ୍ଷରେ କିପରି ମାରାତ୍ମକ ଓ ସାମ୍ୟାଦିକତା ପରି ଦାୟିତ୍ୱପୂର୍ଣ୍ଣ ସଂସ୍ଥା ପ୍ରତି କି ପ୍ରକାର ଉଭୟ ହାସ୍ୟକର ଓ ଦୁଃଖାତ୍ମକ, ତାହା ଦେଶବାସୀ କ୍ରମେ ବୁଝିବେ ବୋଲି ଆଶା ।

## ବ୍ୟର୍ଥ ଚେଷ୍ଟା –

ଇତର ସାମ୍ୟାଦିକତା, ସମ୍ପୃକ୍ତ ସମ୍ପାଦକ ବା ସହସମ୍ପାଦକଙ୍କୁ ବା ତାଙ୍କର କେତେକ ଅନୁଗତଙ୍କୁ କିଛି ତତ୍କାଳୀନ ଆତ୍ମସନ୍ତୋଷ ବା କିଛି ଅଭାଜନ ବିତ୍ତ ବା ସୁବିଧା ବା ଆସନ ଯୋଗାଡ଼ କରିଦେଇପାରେ, କିନ୍ତୁ ଏହା ମଧ୍ୟ ମନେରଖିବା ଉଚିତ ଯେ, ଇତିହାସରେ ବହୁ ବିରାଟ ସାମ୍ରାଜ୍ୟ ଓ ନିରଙ୍କୁଶ ଶାସକ, ବିପୁଳ ଆତ୍ମ-ପ୍ରଚାରର ଓ ବିରୋଧୀ-ଦଳନର ସକଳ ସୁବିଧା ଭୋଗକରି ମଧ୍ୟ ତିଷ୍ଠିପାରିନାହାନ୍ତି ଏବଂ ସତ୍ୟ ଓ ନ୍ୟାୟକୁ ହତ୍ୟା କରିବାକୁ ଯାଇ

ନିଜେହିଁ ନିଶ୍ଚିହ୍ନ ହୋଇଯାଇଛନ୍ତି । ତେଣୁ, କ୍ଷୁଦ୍ର ଓଡ଼ିଶା ରାଜ୍ୟର କୌଣସି ସମ୍ବାଦପତ୍ର ଇଦାନୀଂ ଯେତେ ପ୍ରଭାବଶାଳୀ ବୋଲି ନିଜକୁ ମନେକରନ୍ତୁ ପଛେ, ସତ୍ୟ ଓ ନ୍ୟାୟକୁ ଚିରକାଳପାଇଁ ନିଶ୍ଚିହ୍ନ କରିଦେବା ଓ ନିଜ ସ୍ତମ୍ଭାବଳୀର ଆପାତ-ଚୁଙ୍ଗିମା ଓ ଶକ୍ତିଶାଳୀତାରେ ଭରସା ରଖି, ନିଜର ଅନୁଗତ ଅଯୋଗ୍ୟମାନଙ୍କୁ ବରେଣ୍ୟ ଓ ପ୍ରତିଭାବାନ୍ କରି ଠିଆକରାଇପାରିବାର କ୍ଷମତା, ବିଧାତାଠାରୁ ବିଶେଷ ବର ରୂପେ ପାଇଛନ୍ତି ବୋଲି ଭାବିବା ମଜାର କଥା ନିଶ୍ଚୟ ।

ଓଡ଼ିଶାର କୌଣସି ଓଡ଼ିଆ-ଅଧ୍ୟାପକ ଇଂରାଜୀରେ ଓଡ଼ିଆ ସାହିତ୍ୟର ଏକ ଇତିହାସ ଲେଖିଛନ୍ତି ଓ ନିକଟରେହିଁ ଦେଖିଲୁଁ ଯେ ତାହାର ଭୂମିକା ଲେଖିଛନ୍ତି ଜଣେ ସମ୍ପାଦକ-ମନ୍ତ୍ରୀ । ସେହି ଭୂମିକାରେ ମନ୍ତ୍ରୀ-ସମ୍ପାଦକ ଦୃଢ଼ ଆଶା ପ୍ରକାଶ କରିଛନ୍ତି ଯେ—''ଏହି ଗ୍ରନ୍ଥ ଓଡ଼ିଶା ଓ ଭାରତର ଅନ୍ୟାନ୍ୟ ଅଞ୍ଚଳ ସହିତ କେବଳ ନୁହେଁ, ସମଗ୍ର ବିଶ୍ୱ ସହିତ ମଧ୍ୟ ଓଡ଼ିଶାର ସାଂସ୍କୃତିକ ସମ୍ବନ୍ଧ ସ୍ଥାପନ କରିବ ।'' ମନ୍ତ୍ରୀ-ସମ୍ପାଦକଙ୍କ ବାଣୀ ଅନୁଯାୟୀ, ସେ ପୁସ୍ତକ ଓଡ଼ିଶା ସହିତ ଭାରତୀୟ ଓ ବିଶ୍ୱମାନବିକ ସମ୍ବନ୍ଧ ସ୍ଥାପନ କରିସାରିଲାଣି ବୋଧହୁଏ । ପ୍ରଭାବଶାଳୀ ପତ୍ରିକାର ବରେଣ୍ୟ ସମ୍ପାଦକ ଯେତେବେଳେ କହିଛନ୍ତି ତାହା ନହେବ କିପରି ?

କିନ୍ତୁ ମୋର ବିଶ୍ୱାସ, ନିକଟ ଭବିଷ୍ୟତରେ ଅବସ୍ଥାର ବିପୁଳ ପରିବର୍ତ୍ତନ ହେବ । ଏକ ଐତିହାସିକ ଜାତିକି କେହି ଚିରଦିନ ଭୁଲେଇ ରଖିପାରିବନି । କଳୁଷିତ ବାଷ୍ପରେ ଶ୍ୱାସରୁଦ୍ଧ ହୋଇ ଅଚିରେ ଜାତିର ପ୍ରାଣ ଚିତ୍କାର କରିବ ପ୍ରକୃତ ସାହିତ୍ୟ ଓ ସତ୍ୟ-ସାମ୍ବାଦିକତାପାଇଁ । ସେଦିନ ବିଶୁଦ୍ଧ, ନିରପେକ୍ଷ, ନିରାସକ୍ତ ଓ ନିର୍ମମ ସାମ୍ବାଦିକତାର ଉଦ୍ଭବ ହେବ ଏ ମାଟିରେ ଓ ମୋର ବିଶ୍ୱାସ ତାହା ଜାତିକି ନୂତନଭାବରେ ଗଢ଼ିବ । ସେଦିନ ଏ ଦେଶରେ କୌଣସି ସମ୍ପାଦକ ମନ୍ତ୍ରୀ ମଧ୍ୟ ହେବାକୁ ଲାଳାୟିତ ହେବେନି ବା ଅନ୍ୟଦଳ, ଗୋଷ୍ଠୀ ବା ସଭାସମିତିରେ ପଶି ସେଠି ବିଭ୍ରାଟ ସୃଷ୍ଟି କରିବେନି, କି ନିଜର ବା ପିତା-ସମ୍ବନ୍ଧୀ-କ୍ୱାଇଁ-ଭାଇର ବା ନିଜ ମେଣ୍ଟର ସଂକୀର୍ଣ୍ଣ ଫାଇଦା ଉଠାଇବାପାଇଁ ସେମାନେ ସାମ୍ବାଦିକତାର ପବିତ୍ର ଦାୟିତ୍ୱକୁ ଦୁର୍ବଳ ଓ କଳୁଷିତ୍ କରିବେନାହିଁ ।

ଦେଶ ସ୍ୱାଧୀନ ହେବା ଓ ରାଜା-ମହାରାଜାମାନଙ୍କର ଅବସାନ ପରେ ଏ ଦେଶରେ ବୁଦ୍ଧିଜୀବୀ ଓ ଶିକ୍ଷାବିତ୍ ସବୁ ଯାଇ କାହାର ସିଂହାସନ ପାଖେ କେଉଁଠି ଠିଆହେବେ, ତାହା ଏକ ଗଭୀର ଚିନ୍ତାର ବିଷୟ; କିନ୍ତୁ ଯାହାର ଚର୍ଚ୍ଚା ଏ ଦେଶରେ ଏପର୍ଯ୍ୟନ୍ତ ହୋଇନାହିଁ । ସେହି ପ୍ରସଙ୍ଗ ବୌଦ୍ଧିକ ରୀତିରେ ଭାବୁଭାବୁ ହିଁ, ଏଇସବୁ କଥା କହିଚାଲିଲି । କେହି ସାହସ କରୁନାହାନ୍ତି ଏ ବିଷୟରେ ସ୍ପଷ୍ଟ କଥା କହିବାକୁ । କହିଲେ ବିପଦ ବା ଜଞ୍ଜାଳ । ଏକପକ୍ଷରେ ଶାସକ-ଦଳର ଓ ଅନ୍ୟ ପଟେ ପତ୍ରପତ୍ରିକାର ବିଭୀଷିକା । ଦଳୀୟ ଶାସକ ଓ ପତ୍ରପତ୍ରିକା ବୁଦ୍ଧିଜୀବୀର ସ୍ତରକୁ ଉଠିବାକୁ ଚାହେନା । ଦେଶର ବୁଦ୍ଧିଜୀବୀ ଆଜି ଏଇମାନଙ୍କ ସ୍ତରକୁ ଖସିବାକୁ ବାଧ୍ୟ, ନଚେତ୍ ସେ କଳବଳ ହୋଇ ମରିବ । ଓଡ଼ିଶାର ଦୁଇଜଣ ଶିକ୍ଷାମନ୍ତ୍ରୀ ଏଇ ଲେଖକର ଯେପରି ଭାଗ୍ୟ ନିୟନ୍ତ୍ରଣ କଲେ, ତାହା ଏ ଜୀବନରେ ଏକ ଏକ ଦୁଃସ୍ୱପ୍ନ ହୋଇ ରହିଗଲା । ହୁଏତ ଏ ଗ୍ରନ୍ଥର ପାଠକମାନଙ୍କ ଚିତ୍ତରେ ମଧ୍ୟ ତାହା ସେହିପ୍ରକାର ପ୍ରତିକ୍ରିୟା ସୃଷ୍ଟି କରିପାରେ । ତେଣୁ ମନରେ ବାରମ୍ବାର ଜିଜ୍ଞାସା ଉଠିଛି — ହାୟ, ଭଗବାନ, କି ଯଥାର୍ଥତା, କି ନୈତିକ ବା ବୌଦ୍ଧିକ ଅଧିକାର ଘେନି ଏ ଲୋକେ ଜଣେ ଲେଖକ, ଶିକ୍ଷକ, ଅଧ୍ୟକ୍ଷ ବା ଶିକ୍ଷାବିତ୍ ର ଯୋଗ୍ୟତା-ଅଯୋଗ୍ୟତାର ବିଚାରକ ଆସନରେ ବସି ତାର ହଲାଲ୍ ବ୍ୟବସ୍ଥା କଲେ ? ଏହି କି ସ୍ୱାଧୀନତାର ବା ଡିମୋକ୍ରାଶିର ସ୍ୱାଦୁ ଫଳ ?

## ସଙ୍କଟର ଶେଷକଥା –

ମାନବ ଜୀବନରେ ଏହା କିନ୍ତୁ ବୋଧହୁଏ ଏକ.ଶାଶ୍ୱତ ସମସ୍ୟା । ଏହା ହୁଏତ ଯୁଗେ ଯୁଗେ ଘଟିଆସୁଛି । ସମଗ୍ର ମାନବ ଇତିହାସରେ ଏହି ଅବୋଧ ଓ କୁତ୍ସିତ ଚିତ୍ର ଆମେ ଦେଖି ଆସୁଛୁ ଯେ, ମହାପ୍ରାଣ ଯିଶୁ ତସ୍କରଙ୍କ ସାଥିରେ ଫାଶୀ ପାଇଛନ୍ତି ଓ ଦେବ-ମାନବ ରାମକୃଷ୍ଣ ପରମହଂସଙ୍କୁ ଦେଉଳର ରୋଷେଇଆ ଗୋଇଠା ମାରିଛି । ଏ ଦୃଶ୍ୟର ପରିପ୍ରେକ୍ଷିତରେ ତମେ-ଆମେ ସବୁ କେଉଁ ଗାଈର ଗୋବର,ପାଠକ-ପାଠିକା ? ଅଙ୍ଗେନିଭେଇବା କଥା କହୁ କହୁ କହିଗଲି ସିନା ବହୁକଥା; କିନ୍ତୁ ପାଠକ-ପାଠିକାମାନଙ୍କ ପ୍ରତି ମୋର ତିକ୍ତ-ଅଭିଜ୍ଞତା-ପ୍ରସୂତ ଏକମାତ୍ର ଉପଦେଶ ଏହି ଯେ, ଦୁଃଖ-ନିର୍ଯାତନା ସବୁକୁ ନୀରବରେ, ଅତ୍ୟାଚାରକ ଶତ୍ରୁକୁ ଆଶୀର୍ବାଦ କରି କରି ଓ ଭଗବାନଙ୍କୁ ଅନ୍ତରରେ ଡାକି ଡାକି ସହିଯିବାହିଁ ସଂକଟ-ବିପଦର ସବୁଠୁ ବଡ଼ ଔଷଧ । ବାକି କଥା ସତ୍ୟ, ଧର୍ମ ଓ ନ୍ୟାୟର ମାଲିକ ଭଗବାନହିଁ ବୁଝିବେ । ବକ୍ଷ୍ୟମାଣ କାଳରେ ଏହି ଲେଖକ ସଂସ୍କୃତ ବାଲ୍ମୀକି ରାମାୟଣର ପୃଷ୍ଠା ଲେଉଟାଉଥାଏ, କେବଳ ମୂଳକାବ୍ୟର ରସାସ୍ୱାଦନପାଇଁ । ନିର୍ବାସିତ, ହୃତପତ୍ନୀକ ଓ ନିଃସହାୟ ଭାବରେ ଭ୍ରାମ୍ୟମାଣ ପୁରୁଷୋତ୍ତମ ରାମଚନ୍ଦ୍ର ମଧ୍ୟ କିପରି ମଝିରେ ମଝିରେ ଶୋକାଭିଭୂତ ହୋଇପଡୁଥିଲେ, ମହାକବି ବାଲ୍ମୀକି କିଷ୍କିନ୍ଧ୍ୟା କାଣ୍ଡରେ ତାହାର ଯେପରି ସ୍ୱାଭାବିକ ବର୍ଣ୍ଣନା ସବୁ ଦେଇଯାଇଛନ୍ତି ତାହା ପଢୁ ପଢୁ ଲେଖକ ଏକାଧାରରେ ଅଶ୍ରୁବର୍ଷଣ କରିବା ସଙ୍ଗେ ସଙ୍ଗେ ନିଜ ଦୁଃଖରେ ପ୍ରଚୁର ପ୍ରେରଣା ମଧ୍ୟ ପାଉଥିଲା । ପାଠକମାନଙ୍କ ସହିତ ସେହି ଅଭିଜ୍ଞତା ସମଭାବରେ ଉପଭୋଗ କରିବାପାଇଁ ଏଠାରେ ମୂଳ ରାମାୟଣର କେତେକ ଉତ୍ସାହଦାୟୀ ପଂକ୍ତି ଥୋଇ ରଖୁଛି—

୧ । ପ୍ରାଣିନଃ କସ୍ୟ ନାପଦଃ (କି: କା ୬୬/୫) ?

("ଏପରି କେଉଁ ପ୍ରାଣୀ ଅଛି ଯିଏ ଜୀବନରେ ବିପଦର ସମ୍ମୁଖୀନ ହୁଏନାହିଁ ?")

୨ । ନାସ୍ତ୍ୟଭାଗ୍ୟତରୋ ଲୋକେ ମତ୍ତୋଽସ୍ମିନ୍ ସଚରାଚରେ ।(କି:କା-୬୭/୨୬)

(ଶ୍ରୀରାମଚନ୍ଦ୍ର– "ଏହି ସଂସାରରେ ମୋଠାରୁ ଅଧିକ ଅଭାଗ୍ୟ ଲୋକ ଆଜି କିଏ ଅଛି ?")

୩ । ଯସ୍ୟ ପ୍ରସାଦେ ସତତଂ ପ୍ରସୀଦେୟୁରିମାଃ ପ୍ରଜାଃ
 ସ ରାମୋ ବାନରେନ୍ଦ୍ରସ୍ୟ ପ୍ରସାଦମଭିକାଂକ୍ଷତେ ।

(ଦିନେ ଯେଉଁ ରାମଙ୍କର ଅନୁଗ୍ରହରେ ବିଶ୍ୱର ପ୍ରଜା ଅନୁଗୃହୀତ ବୋଧକରୁଥିଲେ, ସେହି ରାମ ଆଜି ଏକ ମର୍କଟରାଜର ଅନୁଗ୍ରହପ୍ରାର୍ଥୀ ?)

କିନ୍ତୁ

୪ । ଯଦି ଦୁଃଖମିଦଂ ପ୍ରାପ୍ତଂ କା କୁସ୍ଥ ନ ସହିଷ୍ୟସେ
 ପ୍ରାକୃତଶ୍ଚାଳ୍ପସତ୍ତ୍ୱଶ୍ଚ ଇତରଃ କଃ ସହିଷ୍ୟତେ ?

(ଲକ୍ଷ୍ମଣ କହୁଛନ୍ତି– ଯଦି ସ୍ୱୟଂ ମହାମାନବ ରାମଚନ୍ଦ୍ର ବିପଦରେ ଧୈର୍ଯ୍ୟ ହରାନ୍ତି, କ୍ଷୀଣପ୍ରାଣ ସାଧାରଣଜନ କିପରି ବିପଦଆପଦକୁ ଧୈର୍ଯ୍ୟ ଧରି ସହିବେ ?)

ଏହାହିଁ ରାମାୟଣ କେବଳ ନୁହେଁ, ପ୍ରତ୍ୟେକ ଧର୍ମ ଓ ପ୍ରତ୍ୟେକ ମହତ୍ ଗ୍ରନ୍ଥର ଶେଷ ଆଶ୍ୱାସନା ।

## ଡି.ପି.ଆଇ.ଙ୍କ ପ୍ରତିଶ୍ରୁତି ଭଙ୍ଗ –

ବର୍ତ୍ତମାନ ମୂଳ କଥାକୁ ଫେରିଆସେ । । ଗ୍ରୀଷ୍ମାବକାଶ ସରିଲା । କିନ୍ତୁ ମୋର ଟ୍ରାନ୍ସଫର ବିଷୟରେ କୌଣସି ସିଦ୍ଧାନ୍ତ ମୁଁ ଜାଣିପାରିଲିନି । ଶିକ୍ଷାମନ୍ତ୍ରୀଙ୍କି ତ ଦେଖାକରିଥିଲି, ବର୍ତ୍ତମାନ ସମ୍ବଲପୁର ଫେରିବା ପୂର୍ବରୁ ଡି.ପି.ଆଇ. ଶ୍ରୀ ବଳଭଦ୍ର ପ୍ରସାଦଙ୍କୁ ମଧ ଦେଖାକଲି ଏ ସମ୍ପର୍କରେ । ମନ୍ତ୍ରୀଙ୍କି ଯାହା ଅନୁରୋଧ କରିଥିଲି, ତାଙ୍କୁ ମଧ ସେୟାହିଁ ଅନୁରୋଧ କଲି । ମୋ କଥା ଏଇ,–ମୁଁ ନିଜେ ମୋ ପିଲାଙ୍କ ପଢ଼ାର ସୁବିଧାପାଇଁ କଟକ ଟ୍ରାନ୍ସଫର୍ ଚାହୁଁଛି । ସମ୍ବଲପୁର କଲେଜରେ ମାଡ଼ିବସି ରହିବାର ମୋର କୌଣସି ଅଭିଳାଷ ନାହିଁ । କିନ୍ତୁ ମତେ ଭଲରେ ଭଲରେ ବିଦାୟ ଦିଅ । ବର୍ଷାକାଳେ, ଅପ୍ରତ୍ୟାଶିତଭାବରେ, ହଇରାଣ କରି, ଦଣ୍ଡିତ ଲୋକପରି ମତେ ସେଠୁ ବିଦାୟ ଦିଅନି । ବଳଭଦ୍ର ପ୍ରସାଦଙ୍କୁ ଅଧିକା ଏକ ଅନୁରୋଧ ମଧ କରିଥିଲି, ମୁଁ ଯଦି ଟ୍ରାନ୍ସଫର୍ ହୁଏ ସମ୍ବଲପୁରରୁ, ତେବେ ଦୟାକରି ସେ, ମୁଁ ସମ୍ବଲପୁର ଛାଡ଼ିବା ପୂର୍ବରୁ ଯେପରି ଅନ୍ୟ କାହାକୁ ନେଇ ମୋ ଉପରେ ଲଦି ନ ଦିଅନ୍ତି; ଅର୍ଥାତ୍ ମୁଁ ଛାଡ଼ିଆସିବି; ତା' ପରେ ମୋର ପରବର୍ତ୍ତୀ ଅଫିସର ଯାଇ ପୋଷ୍ଟରେ ଜଏନ୍ କରିବେ ।

ଏଇ ଶେଷୋକ୍ତ ଅନୁରୋଧଟି ସମ୍ପର୍କରେ ଡକ୍ଟର ପ୍ରସାଦ ମତେ ପୂରା 'ଭଦ୍ରଲୋକର ପ୍ରତିଶ୍ରୁତି' କେବଳ ନୁହେଁ, ଲେଖିକରି ମଧ ଦେଇଥିଲେ । ବଳଭଦ୍ର ପ୍ରସାଦ ପ୍ରତିଶ୍ରୁତି ଭାଙ୍ଗିବାର ଲୋକ ନୁହଁନ୍ତି । ତାଙ୍କ କଥାର ମର୍ଯ୍ୟାଦା ସେ ରକ୍ଷା କରୁଥିଲେ । ଉପରୁ ବା ଅନ୍ୟଆଡୁ କୌଣସି ଅନିର୍ବାର୍ଯ୍ୟ ଚାପ ପଡ଼ିନଥିଲେ, ସେ ମତେ ଦେଇଥିବା ପ୍ରତିଶ୍ରୁତି ଭାଙ୍ଗି ଡ଼ ଥାନ୍ତେ ବୋଲି ମୋର ବିଶ୍ୱାସ ।

ମୁଁ ଗ୍ରୀଷ୍ମାବକାଶ ପରେ ମୋ କଲେଜରେ ଯୋଗଦେଲି, ସହକର୍ମୀମାନେ ଟ୍ରାନ୍ସଫର କଥା ପଚାରିଲେ ମୁଁ କହିଲି–"କାଇଁ ନାହିଁ ତ ! ବୋଧହୁଏ ନିକଟରେ ହେଉନି ।"

କିନ୍ତୁ ତେଣେ ରାଜନୈତିକ ପାଗ ଓଡ଼ିଶାରେ ହଠାତ୍ ବଦଳିଗଲା । ପକ୍କା ସ୍ଥିର ହେଲା ଯେ, ମହତାବ ଓଡ଼ିଶା ଫେରୁଛନ୍ତି ଶାସନଭାର ନେବାପାଇଁ ଓ ଚୌଧୁରୀ ଶାସନ ଶେଷହେଉଛି ।

ଏବଂ ପ୍ରାୟ ସମକାଳରେ, ଘୋର ଅପ୍ରତ୍ୟାଶିତ ଭାବରେ, ମୁଁ କଟକରୁ ଫେରି କଲେଜ ଜଏନ୍ କରିବାର ବୋଧହୁଏ ଦେଢ଼ମାସ ଭିତରେ ହଠାତ୍ ମୋର ଟ୍ରାନ୍ସଫର୍ ଅର୍ଡ଼ର ମଧ ଆସିଗଲା । ଡି.ପି.ଆଇ. ବଳଭଦ୍ର ପ୍ରସାଦ ତାଙ୍କର ଭଦ୍ରଜନୋଚିତ ଦତ୍ତ-ବଚନ ଅକାତରେ ଭାଙ୍ଗି, ବଲାଙ୍ଗିର କଲେଜର ପ୍ରିନ୍ସପାଲଙ୍କୁ ମୋଠାରୁ ଚାର୍ଜ ନେଇ ଯିବାକୁ ସମ୍ବଲପୁରକୁ ପଠାଇଦେଲେ । ସେ ଯାଇ ସମ୍ବଲପୁରରେ ସାଙ୍ଗେ ସାଙ୍ଗେ ହାଜର, ଚାର୍ଜ୍ ନେବାପାଇଁ ।

ରାଜନୈତିକ ବା ବ୍ୟକ୍ତିଗତ କୌଣସି ଚକ୍ରାନ୍ତ ନଥିଲେ ସମସ୍ତ ଘଟଣା ଯେପରି ପରେ ପରେ ଘଟିଲା, ଯେପରିଭାବରେ ନ୍ୟାୟ, ସତ୍ୟ, ଭଦ୍ରତା ଓ ମାନବିକତାକୁ ପଦେ ପଦେ ପଦାଘାତ କରି ବ୍ୟୁରୋକ୍ରାଟିକ୍ ନିର୍ମମତାର ଷ୍ଟୀମରୋଲର୍ ମୋର ଭାଗ୍ୟକୁ ନିଷ୍ପେଷଣ କରି ଚାଲିଲା, ତାହା କେବେହେଲେ ଘଟିନଥାନ୍ତା ବୋଲି ମୋର ବିଶ୍ୱାସ । ସେ ଚକ୍ରାନ୍ତ କ'ଣ, ତାହା ମୁଁ କେବେହେଲେ ଅନୁସନ୍ଧାନ କରିବାକୁ ଚେଷ୍ଟା କରିନାହିଁ । ମନୁଷ୍ୟ, ଅଧମର ସ୍ତରକୁ ନଖସିଲେ ଜଣକୁ ଜାଣି ଜାଣି ହଇରାଣ କରିବାର ଚକ୍ରାନ୍ତରେ ପ୍ରବୃତ୍ତ ହେବ କାହିଁକି, ତାହା ମୋ କଳ୍ପନାକୁ ସ୍ପର୍ଶ କରିପାରେନା ।

ସମ୍ବଲପୁରରେ ବନ୍ଧୁଗଣ ଆସି ଛୁଟି ନେଇ ରହିଯିବାକୁ ଓ ଚାର୍ଜ ନଦେବାକୁ ଉପଦେଶ ଦେଲେ। ମୁଁ ସେସବୁକୁ କର୍ଣ୍ଣପାତ କଲିନାହିଁ। ବିନାଦ୍ୱିଧାରେ ସମ୍ବଲପୁର ଛାଡ଼ିବାର ଆୟୋଜନରେ ଲାଗିଗଲି। ସପ୍ତାହକ ପରେ, ଆଠ ବର୍ଷର କର୍ମସ୍ଥଳୀ ମୋ ପ୍ରିୟ ଅନୁଷ୍ଠାନଟିକୁ ସାଶ୍ରୁନେତ୍ରରେ ବିଦାୟଦେଇ ଚାଲିଆସିଲି। ମୋ ମର୍ମର ହାହାକାର ଓ ନୟନର ଅବାରିତ ଅଶ୍ରୁଧାରାର ସମବେଦନାରେ ଯେପରି ପ୍ରକୃତି ସେଦିନ ନିଜକୁ ମେଘଗମ୍ଭୀର କରି, ଅଜସ୍ର ଆସାରରେ ତା'ର ପ୍ରତିବାଦ ଜଣାଉଥାଏ। ଫେରନ୍ତି ଯାତ୍ରା ପଥରେ ବାଟଯାକ ବର୍ଷା ଓ ତୋଫାନ ଖାଇ ଖାଇ, ନିରବଚ୍ଛିନ୍ନ, ଘୋର ଆସାର ତଳେହିଁ ମହାନଦୀ ପାରହୋଇ, କଟକରେ ଆସି ଏକ ବନ୍ଧୁଙ୍କ ବାରଣ୍ଡାରେ ପିଲାପିଲିଙ୍କି ଧରି ବାସହରାପରି ଠିଆହେଲି, ଆଶ୍ରୟ ଭିକ୍ଷାକରି, ଏ ଦେଶର ସର୍କାରଙ୍କଠାରୁ ମେହେର କଲେଜରେ ଆନ୍ତରିକ ଶ୍ରମର ପରମ ପୁରସ୍କାର ସ୍ୱରୂପ।

ସମ୍ବଲପୁର କଲେଜରୁ ବିଦାୟ ତ ନେଲି, ବହୁ ଉପହାର ଓ ଆଡ୍ରେସ ପାଇଲି। କିନ୍ତୁ ସମସ୍ତଙ୍କ ଭିତରେ କଲେଜର ପିଅନମାନେ ସ୍ୱତଃପ୍ରବୃତ୍ତ ହୋଇ ସମସ୍ତଙ୍କ ଆଗେ ମତେ ଯେପରି ବିଦାୟ ସମ୍ବର୍ଦ୍ଧନା ଦେଇଥିଲେ, ସେଥିରେ ମୋ ଚକ୍ଷୁ ପ୍ରକୃତରେ ଅଶ୍ରୁସିକ୍ତ ହୋଇଉଠିଥିଲା। ସେମାନେ ମତେ ଖଣ୍ଡିଏ ସମ୍ବଲପୁରୀ ଗାମୁଛା ଉପହାର ଦେଇଥିଲେ। ଗାମୁଛା ବୋଲି ନୁହେଁ, ସେହି ଗାମୁଛା ପାଇଁ ବା ସେମାନେ କାହିଁକି ଖର୍ଚ୍ଚାନ୍ତ ହେବେ ବୋଲି ଭାବି, ତାହା ଫେରାଇ ଦେଲି। କିନ୍ତୁ ତାଙ୍କର ଆଡ୍ରେସ୍‌ଟି ସମ୍ମାନର ସହିତ ଗ୍ରହଣ କରିଥିଲି। ସେଟି ଖାଣ୍ଟି ସମ୍ବଲପୁରୀ ଆଞ୍ଚଳିକ ଭାଷାରେ ଓ ଖାଣ୍ଟି ପ୍ରାଣର ବାର୍ତ୍ତା ନେଇ ଲିଖିତ ଥିବାରୁ ମୋର ଅତ୍ୟନ୍ତ ପ୍ରିୟ ଦ୍ରବ୍ୟ ହୋଇଉଠିଛି। ପାଠକମାନଙ୍କ କୌତୂହଳପାଇଁ ତଳେ ତାର ଅବିକଳ ନକଲ ଦେଲି –

ମାନନୀୟ ମହାଶୟ,

ଆଜିକୁ ପ୍ରାୟ ସାତ ଆଠ ବରଷ ହେଲା ଆମେ ଶ୍ରୀହଜୁରଙ୍କ ତଳେ ରହି ଦାନାପାନି ଚଲାଇ ଆସୁଥିଲୁ। ଆମର ମନ୍ଦ କପାଳକୁ ଆପଣଙ୍କୁ ବଦଳି ହେଇ ଯାଉଛ। ଆମ୍ଭେମାନେ ସବୁଠାରୁ ସାନ ଚାକିରିଆ ହେଲେ ଭି ଆପଣ କେଭେ ଆମକୁ କଥାବାଟିଅ ବା କାମରେ ଟିକେ ଭି ଅପମାନ ଦେଇନାଇଁ। ତାର ବଦଲେ ବହୁତ ସନମାନ ପାଇଛୁଁ। ଯେନଟାକି ଆଜର ଯାଏ କେଭେଁ କେନସି ମହକମା ଚପରାସୀମାନେ ପାଇ ନାଇଁଥିବେ। ଆପଣ ଆମକୁ ପୁଅ ପରି ପାଳିଥିଲେ। ଆମେ ଭଲ ବାପାଙ୍କ ତଳେ ଅଛୁଁ ବୋଲି ଗର୍ବ କରୁଥିଲୁଁ। ଆପଣ ଆଉ ଜଣେ ବାପାଙ୍କୁ ଦେଖାଇଦେଲେ ଭି ଆପଣ ଯେତେ ଦୂରେ ଥିଲେ ହେଲେ ଆମମାନଙ୍କ ଉପରେ ନଜର ରଖିଥିବେ ଭୁଲିବେନାହିଁ। ଆପଣଙ୍କ ଏହି ଉଚ୍ଚଭାବ ଓ ସ୍ଥାନ ବହୁତ ଉପରକୁ ଉଠିଯିବାକୁ ଭଗବାନଙ୍କଠାରେ ଗୁହାରି କରୁଚୁଁ। ଆଉ ଆମର ଅତି ସାନ ଆଦରକୁ ବେଡ଼ା ପୁଅର ଆଦର ମନେକରି ଗ୍ରହଣ କରିବାପାଇଁ ପ୍ରାର୍ଥନା କରୁ।

ତା ୬। ୯।୫୬। ଆଜ୍ଞାଧୀନ ଚପରାସୀଗଣ,

କୃଷ୍ଣଚନ୍ଦ୍ର ବାରିକ, ଶାଳେଗ୍ରାମ ସାହୁ, ବୈଷ୍ଣବ ପାତ୍ର, ନରସିଂହ ପାଣିଗ୍ରାହୀ, ଅନନ୍ତରାମ ନାଥ, ଶ୍ରୀ ଧନେଶ୍ୱର ମିଶ୍ର, ରାଧାବଲ୍ଲଭ ସଢ଼ଙ୍ଗୀ, ଶ୍ରୀ ଜଗମୋହନ ଗଡ଼ିଆ, ଭଦେଖ ଭଡ଼, ସୋମନାଥ ମିଶ୍ର, ବାସୁଦେବ ବରାଇ, ରାସବିହାରୀ ବେହେରା, ଶ୍ରୀ ମୁକୁନ୍ଦ ପାଢ଼ୀ, ଶ୍ରୀ କୃଷ୍ଣଚନ୍ଦ୍ର ସାହୁ, ଶ୍ରୀ ଗଣେଶରାମ ସାହୁ, ଶ୍ରୀ ଚନ୍ଦ୍ରମଣି ତ୍ରିପାଠୀ, ଟବୁଆ ମୁଣ୍ଡା, ମଙ୍ଗୁଲୁ ମୁଣ୍ଡା।

---

## ଅଷ୍ଟାଦଶ ଅଧ୍ୟାୟ

# ସାମାଜିକ ଶିକ୍ଷାର ପଞ୍ଚଶୀଳ

ଏଇ ଲେଖକହିଁ ହୋଇଥିଲା ଓଡ଼ିଶାର ପ୍ରଥମ ସାମାଜିକ ଶିକ୍ଷା ଅଫିସର । ସେ ୧୯୪୬-୪୭ ସାଲର କଥା । ସେତିକିବେଳେ ଏ ପୋଷ୍ଟର ସୃଷ୍ଟି ହେଲା । ଏଡୁକେଶନାଲ୍ ଆଡ଼ଭାଇଜର ପୋଷ୍ଟ୍ ଉଠିଗଲା ପରେ ମୁଁ ସମ୍ବଲପୁରକୁ ଆସି କଟକରେ ବେକାର ବସି, ଏକପାଖେ ଗୋଟିଏ ପ୍ରେସ୍ କରିବା ଓ ଅନ୍ୟପାଖେ ଅନ୍ୟ କୌଣସି ଚାକିରିର ଅପେକ୍ଷାରେ ଥାଏ । ଏକସମୟରେ କିପରି ଇଷ୍ଟର୍ଣ୍ଣଷ୍ଟେଟ୍ସ୍ ଏଜେନ୍ସିର ତତ୍କାଳୀନ ରେସିଡେଣ୍ଟଙ୍କଠାରୁ ଗଡ଼ଜାତମାନଙ୍କର ନାଶନାଲ୍ ସେଭିଂସ୍ ଆଡ଼ଭାଇଜର ପୋଷ୍ଟ ଓ ଏଣେ ଓଡ଼ିଶା ସର୍କାରଙ୍କଠାରୁ ନୂତନ-ସୃଷ୍ଟ ଆଡ଼ଲ୍‌ଟ ଏଡୁକେଶନ ଅଫିସର ପୋଷ୍ଟପାଇଁ ନିଯୁକ୍ତି ପତ୍ରପାଇ ତନ୍ମଧ୍ୟରୁ ଶେଷୋକ୍ତ ପୋଷ୍ଟଟିକୁ ଆଖିବୁଜା ଗ୍ରହଣ କରିନେଲି, ସେ କଥାର ସୂଚନା ପୂର୍ବେ ଦେଇଛି । ରେସିଡେଣ୍ଟଙ୍କର ଅଯାଚିତ ଦାନ ଗ୍ରହଣ କରିଥିଲେ, ଚାକିରି ଦୃଷ୍ଟିରୁ ମୋର ଢେର୍ ଲାଭହୋଇଥାନ୍ତା । କାରଣ, ଅଳ୍ପକାଳ ଭିତରେ ଗଡ଼ଜାତ ବ୍ରିଟିଶ୍ ଇଲାକାରେ ମିଶିଗଲା । ଏଇ ମିଶ୍ରଣ ଫଳରେ ଅଧିକାଂଶ ଗଡ଼ଜାତ ଚାକିରିଆ ଯେଉଁମାନେ ମିଶ୍ରଣର ବିରୋଧରେ ମଧ୍ୟ କାମ କରୁଥିଲେ, ସେମାନେ ଅକସ୍ମିତଭାବରେ ବ୍ରିଟିଶ୍ ଇଲାକାର ପାହ୍ୟା ଓ ବାକି ଦରମା ବାବଦରେ ସହସ୍ର ସହସ୍ର ଟଙ୍କା ପାଇଗଲେ । ଏଇ ହତଭାଗ୍ୟ ଲେଖକ ରେସିଡେଣ୍ଟର ଦାନକୁ ପ୍ରତ୍ୟାଖ୍ୟାନ କରି ଓଡ଼ିଶା ସର୍କାରଙ୍କ ଦାନ ଗ୍ରହଣ କରିବାରୁ, ଆର୍ଥିକ ଦିଗରୁ ବହୁଭାବରେ କ୍ଷତିଗ୍ରସ୍ତ ହୋଇଛି । କହିରଖେ ଯେ ସେତେବେଳର ଇଷ୍ଟର୍ଣ୍ଣଷ୍ଟେଟ୍ସ ଏଜେନ୍ସିର ରେସିଡେଣ୍ଟ ଥିଲେ ମି. ଟଡ୍, 'ରାଜସ୍ଥାନ'ର ପ୍ରସିଦ୍ଧ ଲେଖକ କର୍ଣ୍ଣେଲ୍ ଟଡ୍‌ଙ୍କ ଜନୈକ ପୁତ୍ର । ଅତି ଭଦ୍ର ଓ ମଧୁର ବ୍ୟବହାର ତାଙ୍କର ଦେଖିଛି ।

ଆଡଲଟ୍ ଏଡୁକେଶନ ଅଫିସ୍‌ର ଆଦ୍ୟ ଅଭିଜ୍ଞତାହିଁ ଆଗ କହେ । ସେତେବେଳେ ଅଫିସ୍, ଅଫିସର୍, ଡିପାର୍ଟମେଣ୍ଟ ସବୁହିଁ ଥିଲି ମୁଇଁ ଜଣେ ଲୋକ । ତତ୍କାଳୀନ ଡି.ପି.ଆଇ. ଜଣେ ବଡ଼ା ସାହେବ ଥିଲେ । ସୁଦୂର କଳ୍ପନାରେ ବି ତାଙ୍କୁ ଏଡୁକେଶନିଷ୍ଟ ବା ଶିକ୍ଷାବିତ୍ କୁହାଯାଇନପାରେ । ତାଙ୍କ ଅଧୀନରେ ଗୋଟିଏ ପୂରା ନୂଆ ଡିପାର୍ଟମେଣ୍ଟ ହେଲା, ତେଣୁ ଏ ଦିଗରେ କ'ଣ କରାଯିବ, କାହିଁକି ଏହା ସୃଷ୍ଟି ହେଲା, ସେହି ଲକ୍ଷ୍ୟରେ କି କି ପନ୍ଥା ଅବଲମ୍ବନ କରାଯିବ, ଏସବୁ ସେ ଦିନେହେଲେ ମତେ ଡାକି କଥାଭାଷା ହୋଇନଥିଲେ । ବରଂ ତାଙ୍କ ହାବଭାବରୁ ଦେଖିଲି ମୁଁ ତାଙ୍କ ଡିପାର୍ଟମେଣ୍ଟରେ ଢୁକିବା ସେ ଆଦୌ ଚାହୁଁନଥିଲେ । କରେ କ'ଣ ? ତେଣୁ ନିଜେ ନିଜେ ସେ ସମ୍ପୃକ୍ତ ସାହିତ୍ୟ ଖୋଜାଖୋଜି କରି ପଢ଼ିବାରେ ଲାଗିଲି । ସେତେବେଳେ ଅଫିସ୍‌ରେ ବସି ମୁଁ କେବଳ ଏଇ ବହିହିଁ ପଢୁଥାଏ । ପଢୁ ପଢୁ ମାସକ ଭିତରେ ମୋର ଗୋଟିଏ ସ୍ପଷ୍ଟ ଧାରଣା ହେଲା, ଆଡଲ୍‌ଟ ଏଡୁକେଶନ୍ କ'ଣ, ଅନ୍ୟାନ୍ୟ ସଭ୍ୟଦେଶମାନଙ୍କରେ ଏହା କେବେ ଓ

କାହିଁକି ଜନ୍ମନେଲା ଓ କି କି ଆକାର ନେଇ ଏହା ସେ ଦେଶମାନଙ୍କରେ ବଞ୍ଚିରହିଛି । ଅଫିସର ଭାବରେ ମୋର ପ୍ରଥମ କର୍ତ୍ତବ୍ୟସ୍ୱରୂପ ମୁଁ ସେ ସମୟର ଦୈନିକ 'ସମାଜ'ରେ ପ୍ରୌଢ଼ଶିକ୍ଷା ଉପରେ, ଯେତେଦୂର ମନେପଡୁଛି ତିନୋଟି ପ୍ରବନ୍ଧ ଲେଖିଲି । ଏଇ ଲେଖାଗୁଡ଼ିକ ଦେଶରେ ପ୍ରୌଢ଼ଶିକ୍ଷା ସମ୍ପର୍କରେ ଏକ ନୂତନ ସଚେତନତା ଆଣିଥିଲା, ମୁଁ ଜାଣେ । ଏଇ ଓଡ଼ିଆ ଲେଖାଗୁଡ଼ିକ ସହିତ, ଇଂରାଜୀ ଲେଖା ମିଶାଇ, ପରେ ପ୍ରୌଢ଼ଶିକ୍ଷା ଉପରେ ଖଣ୍ଡେ ପୁସ୍ତିକା ମଧ୍ୟ ପ୍ରକାଶ କରାଇ ନେଇଥିଲି । ଦୁଃଖର ବିଷୟ, ସେ ପୁସ୍ତିକାର ଖଣ୍ଡିଏ ହେଲେ କପି ଆଉ ମୋ ନିକଟରେ ନାହିଁ ।

କିନ୍ତୁ ସେଥର, ମୁଁ ମାତ୍ର ୪ ମାସ ବୋଧହୁଏ ଆଡ଼ଲ୍‌ଟ ଏଡୁକେଶନ୍ ଅଫିସର୍ ଥିଲି । ଶୁଣିଛି, ଉପର ମହଲର ନିର୍ଦ୍ଦେଶରେହିଁ ଡି.ପି.ଆଇ. ଶ୍ରୀ ଶ୍ୟାମଚନ୍ଦ୍ର ତ୍ରିପାଠୀ, ଅନିଚ୍ଛାସତ୍ତ୍ୱେ, ବହୁଦିନ ଧରି ଖାଲିପଡ଼ିଥିବା ଦକ୍ଷିଣ ଓଡ଼ିଶାର ଇନ୍ସପେକ୍ଟର ପୋଷ୍ଟକୁ ମତେ ପଠାଇଦେଲେ । ସେତେବେଳେ ଆଡଲ୍‌ଟ ଏଡୁକେଶନ୍ ପୋଷ୍ଟ ଥିଲା ଏଡୁକେଶନ୍ ଡିପାର୍ଟମେଣ୍ଟର କ୍ଲାସ୍-ଟୁ ପୋଷ୍ଟ । ଇନ୍ସପେକ୍ଟର ପୋଷ୍ଟ, କ୍ଲାସ୍-ୱାନ୍ । ମୋ ପରି ଅପାଂକ୍ତେୟ କ୍ଲାସ୍-ୱାନ୍‌କୁ ଯାଏଁ, ଡିପାର୍ଟମେଣ୍ଟର ବିଶୁଦ୍ଧତା ଦୃଷ୍ଟିରୁ କିଏ କାହିଁକି ଚାହିଁବ ? ଦକ୍ଷିଣ ଓଡ଼ିଶାର ଇନ୍ସପେକ୍ଟର ହେବାର ୪ ମାସ ନହେଉଣୁ ପୁଣି ମତେ ତେଣୁ ରେଭେନ୍ସା କଲେଜକୁ ଏକ କ୍ଲାସ୍-ଟୁ ପୋଷ୍ଟକୁ ଓଟାରି ଅଣାହେଲା, କଲ୍ୟାଣକାମୀ କର୍ତ୍ତୃପକ୍ଷଙ୍କଦ୍ୱାରା । ସେଇ ପୋଷ୍ଟରେ ଥିଲାବେଳେହେଁ ପବ୍ଲିକ୍ ସର୍ଭିସ୍ କମିଶନ୍‌ଦ୍ୱାରା ବଛା ହୋଇ ରୀତିମତ କ୍ଲାସ୍-ୱାନ୍‌ରେ ଢୁକି, ଉତ୍ତର ଓଡ଼ିଶାର ଇନ୍ସପେକ୍ଟର ପୋଷ୍ଟରେ ଜଏନ୍ କଲି । ମୋ ଭାଗ୍ୟକୁ ସେତେବେଳେ ବିହାର-ଓଡ଼ିଶାର ସଂଯୁକ୍ତ କମିଶନ ଥିଲା ଓ କଲ୍ୟାଣକାମୀ କର୍ତ୍ତୃପକ୍ଷ ଯୋଗ ଦେଇପାରିନଥିଲେ, କାରଣ କୌଣସି ପୁତ୍ରର ବେମାର ଯୋଗୁଁ ତାଙ୍କୁ ହଠାତ୍ କଲିକତା ଯିବାକୁ ପଡ଼ିଲା । ସେ ଥିଲେ, ମୋର କ୍ଲାସ୍-ୱାନ୍‌ରେ ଢୁକିବା ବୋଧହୁଏ ସାରା ଜୀବନରେ ସମ୍ଭବ ହୋଇନଥାନ୍ତା ।

ସେ ଯାହାହେଉ, ହେଲି ଇନ୍ସପେକ୍ଟର, ତା'ପରେ ହେଲି ପ୍ରିନ୍ସପାଲ୍ ଏବଂ ଦଶ ବର୍ଷ ପରେ ଭାଗ୍ୟଚକ୍ରର ଘୂର୍ଣ୍ଣନରେ ଫେର୍ ଆସି ହେଲି ପ୍ରୌଢ଼-ସାମାଜିକ-ଶିକ୍ଷା-ଅଫିସର ।

ଏ ଦଶ ବର୍ଷ ଭିତରେ ସୋଶାଲ୍ ଏଡୁକେଶନ ଅଫିସରର ପାହ୍ୟା କ୍ଲାସ୍-ଟୁରୁ କ୍ଲାସ୍-ୱାନ୍‌କୁ ଉଠଗଲାଣି । କିନ୍ତୁ କାମ କ'ଣ ହୋଇଛି ? ଦେଖିଲି,ଓଡ଼ିଶା ଦେଶର ବିଶାଳ ନିରକ୍ଷର ଜନତାକୁ ଉଠାଇବାପାଇଁ ଖଣ୍ଡେ ବର୍ଣ୍ଣବୋଧ ଓ ପ୍ରଥମ ପାଠ, ଆଉ ଚାଷ ନେଇ ଖଣ୍ଡେ ନାଟିକା ମାତ୍ର ଡିପାର୍ଟମେଣ୍ଟ ପକ୍ଷରୁ ଛପାହୋଇଛି । ସାମାଜିକ ଶିକ୍ଷା ବିଭାଗର ପଞ୍ଚାଏ ଅଫିସର ବି ଜିଲ୍ଲାମାନଙ୍କରେ ନିଯୁକ୍ତି ପାଇ କେବଳ ବସିରହିଛନ୍ତି ଦେଖିଲି । କାରଣ, କାମ କ'ଣ ? ଯୋଜନା କ'ଣ ? ଲକ୍ଷ୍ୟ କ'ଣ ? ଆଦର୍ଶ କ'ଣ ? ପ୍ରୌଢ଼ ବା ସାମାଜିକ ଶିକ୍ଷା କହିଲେ କ'ଣ ବୁଝାଏ ?— ଏସବୁର ଟିକିନିଖି ଆଲୋଚନା କରିବାକୁ ସମୟ ବା ଆଗ୍ରହ କାହିଁ, ତତ୍କାଳୀନ ଡି.ପି.ଆଇ.ଙ୍କର ? ଅଫିସରମାନଙ୍କୁ ନିର୍ଦ୍ଦେଶନା ଦେବ କିଏ ? ଡିପାର୍ଟମେଣ୍ଟ ଦଶବର୍ଷ ହେଲା ଚାଲିଥିଲେ ମଧ୍ୟ, ଏସବୁର କୌଣସି ଉତ୍ତରହିଁ ଫାଇଲ୍‌ରେ ଦେଖିଲିନାହିଁ କି ପୂର୍ବରୁ କାମ କରୁଥିବା ସଂପୃକ୍ତ କର୍ମଚାରୀମାନଙ୍କୁ ପଚାରି ମଧ୍ୟ ସଦୁତ୍ତର ପାଇଲିନାହିଁ ।

ନୈଶ ବିଦ୍ୟାଳୟମାନଙ୍କରେ କେବଳ ସ୍ଲେଟ୍-ଲଣ୍ଠନ ବାଣ୍ଟିବାହିଁ ସେତେବେଳଯାଏଁ ପ୍ରୌଢ଼ ଶିକ୍ଷା ଆନ୍ଦୋଳନର ପ୍ରଧାନ କାମ ଥିଲା ।

## ସାମାଜିକ ଶିକ୍ଷାର ବିପୁଳ ସମ୍ଭାବନା –

ଦୁଃଖର ବିଷୟ ଏହି ଯେ, ଏବେ ବି ପ୍ରୌଢ଼ ବା ସାମାଜିକ ଶିକ୍ଷା ବିଷୟରେ ଏ ଦେଶରେ ଶିକ୍ଷିତ ଓ ଶିକ୍ଷାବିତ୍‌ମାନଙ୍କର ମଧ୍ୟ ସ୍ପଷ୍ଟ ଧାରଣା ଘଟିନାହିଁ । ସାମାଜିକ ଶିକ୍ଷାର ବ୍ୟାପକତା, ଆବଶ୍ୟକତା ଓ ବିପୁଳ ସମ୍ଭାବନା ସମ୍ପର୍କରେ ଆମ ଦେଶର ସର୍କାର ମଧ୍ୟ ଏପର୍ଯ୍ୟନ୍ତ ସଚେତନ ହୋଇପାରିନାହାନ୍ତି । ପ୍ରକୃତରେ ଏହା ଏକ ଅତୀବ କଲ୍ୟାଣକର, ଜାତିଗଠକ, ମହନୀୟ, ଆନ୍ଦୋଳନ, ଯାହା ସାହାଯ୍ୟରେ ହିଁ ଏ ଦେଶର ମୁଖ ପରିବର୍ତ୍ତନ ସମ୍ଭବ । ସର୍କାର, ଦେଶ ଲୋକଙ୍କର ଶତକରା ଦଶଜଣଙ୍କପାଇଁ ମାତ୍ର ସ୍କୁଲ୍-କଲେଜ୍ ବସେଇ କୋଟି କୋଟି ଟଙ୍କା ବ୍ୟୟ କରୁଛନ୍ତି । ଆଉ ସେସବୁରୁ ବାହାରୁଛନ୍ତି କେବଳ ଚାକିରି-ଅନ୍ୱେଷକ ଅଗଣିତ ସଗର-ସନ୍ତାନ । ଏକପକ୍ଷରେ ଏମାନଙ୍କପାଇଁ ସ୍କୁଲ୍-କଲେଜ ବସେଇ ସର୍କାର ବ୍ୟୟ କରି କରି ନୟାନ୍ତ, ତେଣେ ସ୍କୁଲ୍-କଲେଜରୁ ବାହାରିଲା ମାତ୍ରେ, ଅନ୍ୟ କୌଣସି କାମକୁ ସମ୍ପୂର୍ଣ୍ଣ ଅଯୋଗ୍ୟ ଏଇ ତଥାକଥିତ 'ଶିକ୍ଷିତ'ମାନଙ୍କୁ 'ଚାକିରି' ଯୋଗେଇବା ପାଇଁ ମଧ୍ୟ ସର୍କାରମାନେ ଘର୍ମାକ୍ତ । ଆମ ଜନତାର ଯେଉଁ ଶତକଡ଼ା ୮୦ ଲୋକ ସ୍କୁଲ୍-କଲେଜ ଦେଖିଲେନାହିଁ; ଅଥଚ ଦେଶର ସମ୍ପତ୍ତିର ପ୍ରକୃତ ଉତ୍ପାଦକ ଭାବରେ ଯେଉଁମାନେହିଁ ସ୍କୁଲ୍-କଲେଜ ସବୁ ବଞ୍ଚେଇ ରଖିଛନ୍ତି, ସର୍କାରର ସେମାନଙ୍କ ପାଇଁ କ'ଣ କିଛି କରିବାର ନାହିଁ ?

ତାରି ଉତ୍ତରହିଁ ସାମାଜିକ-ଶିକ୍ଷା-ଆନ୍ଦୋଳନ ।

ଆଜି ଆମର ଜନତା ନିରକ୍ଷର, ଦରିଦ୍ର, ଅକର୍ମା, କୁସଂସ୍କାରାଚ୍ଛନ୍ନ, ଆଶାହୀନ, ନିରନ୍ନ, ନିର୍ବସ୍ତ୍ର ହୋଇ ପଡ଼ିରହିଛନ୍ତି । ଏହି ଐତିହାସିକ ସ୍ୱର୍ଣ୍ଣପ୍ରସୂ ଭାରତ ଆମର ନିଜର ଖାଦ୍ୟପାଇଁ ଅନ୍ୟର ଦ୍ୱାରସ୍ଥ ହେଉଛି; ପ୍ରାଦେଶିକ ଭାବ, ଗୋଷ୍ଠୀ-ଭାବ ଓ ଜାତିଆଣ ଭାବର କ୍ଷୁଦ୍ର ସଂକୀର୍ଣ୍ଣତା ଯୋଗୁଁ ଦେଶର ରାଜନୀତି ମଧ୍ୟ ବୀଭତ୍ସ ହୋଇଉଠୁଛି । ଗଣତନ୍ତ୍ର ଏକ ଦୁରାଚାରରେ ପରିଣତ ହୋଇ ଜାତିର ନୈତିକ ଚେରଗୁଡ଼ିକୁ ହୁଗୁଳା କରି ସାରିଲାଣି; କଳାବଜାର ସର୍ବତ୍ର; ବ୍ୟକ୍ତିତ୍ୱର ସାଧୁତା ଓ ଦ୍ରବ୍ୟର ଶୁଦ୍ଧତା ବର୍ତ୍ତମାନ କେବଳ କବି-କଳ୍ପନାରେହିଁ ସୀମିତ ରହିବା ଉପରେ । ଏ ଜାତି କ'ଣ ଏଇମିତି ପଚି-ସଢ଼ି ଧ୍ୱଂସ ହୋଇଯିବ ? କ'ଣ ୟାର ପ୍ରତିକାର ?

ଲେଖକର ଦୃଢ଼ମତ ଏହି ଯେ, ସାମାଜିକ ଶିକ୍ଷାହିଁ ଏହାର ଏକମାତ୍ର ଉତ୍ତର । ଏଇ ଲେଖକ ବର୍ତ୍ତମାନ ଅବସରପ୍ରାପ୍ତ । ଶିକ୍ଷା ବିଭାଗର ସବୁ ସ୍ତରର ଓ ସବୁ ଅଂଶର ଅଭିଜ୍ଞତା ତାର ଘଟିଯାଇଛି । କିନ୍ତୁ ତାର ସାମାଜିକ ଶିକ୍ଷା-ବିଭାଗୀୟ ଅଭିଜ୍ଞତା ସବୁଠାରୁ ତିକ୍ତ । ତଥାପି ସେ ନିରପେକ୍ଷ ଶିକ୍ଷାବିତ୍ ଭାବରେ ସାମାଜିକ ଶିକ୍ଷାକୁ ସବୁଠାରୁ ଅଧିକ ସମ୍ମାନ ଦେଉଛି, କେବଳ ତାର ଅଧଃପତିତ ଜାତି ଓ ଦେଶର କଲ୍ୟାଣ ଦୃଷ୍ଟିରୁ । ତାର ଆନ୍ତରିକ ପ୍ରାର୍ଥନା ଯେ, ଦେଶର ସର୍କାର ସାମାଜିକ ଶିକ୍ଷା ପ୍ରତି ଅଧିକ ସଚେତନ ହୁଅନ୍ତୁ, ଜାତିର କଲ୍ୟାଣ ଓ ଉନ୍ନୟନ ଦୃଷ୍ଟିରୁ, ଏହାର କି ବିପୁଳ ସମ୍ଭାବନା, ତାହା ଅବବୋଧକୁ ଆଣନ୍ତୁ ଓ ଠିକ୍ ଲୋକ ଦେଇ ସେ ଯୋଜନାକୁ

ଆନ୍ତରିକତା, କଳ୍ପନା ଓ ଦୂରଦୃଷ୍ଟିର ସହିତ କର୍ମାନ୍ୱିତ କରାନ୍ତୁ । ଡି.ପି.ଆଇ. ଅଫିସ୍‌ର ଏକ ଛୋଟ ଲାଙ୍ଗୁଳ ଭାବରେ ହୀନ ଅବସ୍ଥାରେ ରଖି ଏପ୍ରକାର ଏକ ବ୍ୟାପକ ଜାତୀୟ ଆନ୍ଦୋଳନକୁ ଅପମାନ ଦେବା ଛଡ଼ା ଆଉ କିଛି କୁହାଯାଇନପାରେ । ଏଇ ଏକମାତ୍ର କାରଣରୁହିଁ ଏ ଆନ୍ଦୋଳନ ଯେପରି ଫଳପ୍ରସୂ ହେବା କଥା, ତାହା ହୋଇ ନାହିଁ କି କେବେ ହେଲେ ହେବ ନାହିଁ । ଏହା ସ୍ୱତନ୍ତ୍ର ଏକ ଡିପାର୍ଟମେଣ୍ଟ୍ ହେବା ଉଚିତ । ଜାତିର ଶତକଡ଼ା ଦଶପାଇଁ ବିରାଟ ଏଡୁକେଶନ୍ ଡିପାର୍ଟମେଣ୍ଟ୍ ଓ ସେଥିପାଇଁ ଏକ ବିରାଟ ଡି.ପି.ଆଇ.ତ ସର୍କାର ରଖିଛନ୍ତି । ଜାତିର ବାକି ଅଶୀ ପରସେଣ୍ଟ୍ ନିରକ୍ଷର ଜନତାପାଇଁ ସାମାଜିକ-ଶିକ୍ଷା-ବିଭାଗ ନାମରେ ଏକ ସ୍ୱତନ୍ତ୍ର ଡିପାର୍ଟମେଣ୍ଟ୍ ଓ ତାର ସ୍ୱତନ୍ତ୍ର ଡି.ପି.ଆଇ. ନରହିବ କାହିଁକି ?

ଲେଖକର ମତ ଏହି ଯେ, ବର୍ତ୍ତମାନ ବିଭିନ୍ନ ବିଭାଗରେ ଲୋକଲ୍ୟାଣ ନାମରେ ଦେଶର ତହବିଲର ଯେପରି ଅନେକ ଅପବ୍ୟୟ ହେଉଛି ବୋଲି ଶୁଣାଯାଉଛି, ସେସବୁ ବନ୍ଦ ହୋଇ ଅଧିକ କାମ କରାଯାଇପାରନ୍ତା ଯଦି ସାମାଜିକ ଶିକ୍ଷା ନାମକ ସ୍ୱତନ୍ତ୍ର ବିଭାଗ ଖୋଲି,ସେ ସମସ୍ତକୁ (ଜିଲ୍ଲାମଙ୍ଗଳ, ଆଦିବାସୀମଙ୍ଗଳ, ନାରୀମଙ୍ଗଳ ଇତ୍ୟାଦି) କେବଳ ନୁହେଁ, ପବ୍ଲିକ୍ ରିଲେଶନ୍ ଡିପାର୍ଟମେଣ୍ଟକୁ ମଧ୍ୟ ତା' ସାଥିରେ ସାମିଲ୍ କରି, ଗୋଟିଏ ବ୍ୟାପକ, ଏକ ଲକ୍ଷ୍ୟ, ଜନ-ଉନ୍ନୟନ ଯୋଜନାକୁ ବହୁତ କମ୍ ଖର୍ଚ୍ଚରେ କାମରେ ଲଗାଯାଇପାରନ୍ତା ।

ଏପରି ଏକ ବିଭାଗପାଇଁ ଅବଶ୍ୟ ଉପଯୁକ୍ତ ପରିଚାଳକ ଦରକାର । ସରକାରୀ ବା ବେସରକାରୀ ହେଉନ୍ତୁ, ଦେଶ-ଗତ-ପ୍ରାଣ ଉପଯୁକ୍ତ-ତାଲିମପ୍ରାପ୍ତ ଓ କଳ୍ପନାଯୁକ୍ତ ଲୋକହିଁ ଏ ବିଭାଗର ଚାର୍ଜରେ ରହିବା ଉଚିତ ।

## ସାମାଜିକ ଶିକ୍ଷାର ଇତିହାସ –

ଏ ଆନ୍ଦୋଳନ ଏ ଦେଶରେ ନୂଆ ହେଲେହେଁ ୟୁରୋପରେ ଏହାର ଇତିହାସ ଦେଢ଼ଶ ବର୍ଷର । ଇଂରେଜମାନେ ଯେବେ ଓଡ଼ିଶା ଅଧିକାର କଲେ(୧୮୦୩), ସେତିକିବେଳେ ସ୍କଟ୍‌ଲାଣ୍ଡ୍‌ର ଗ୍ଲାସଗୋ ସହରରେ ଏ ଆନ୍ଦୋଳନର ଜନ୍ମ । ସେତେବେଳେ ୟୁରୋପର ସବୁ ଦେଶରେ ସାଧାରଣ ଜନତା ସମ୍ପୂର୍ଣ୍ଣ ନିରକ୍ଷର ଥିଲେ । କିନ୍ତୁ ସେତେବେଳକୁ କଳ-କାରଖାନାର ଯୁଗ ଆରମ୍ଭ ହୋଇଗଲାଣି । ବଡ଼ ବଡ଼ ଫାକ୍ଟରି ସବୁ ବସିଗଲାଣି ଓ ସେଠାକୁ ଗାଁମାନଙ୍କରୁ ଆସିଲେଣି ନିରକ୍ଷର ନାରୀ ଓ ପୁରୁଷ, ମଜୁରି ଲୋଭରେ ଓଡ଼ିଶାର ଗାଁମାନଙ୍କରୁ ଲୋକେ ଯେପରି ଯାଆନ୍ତି ଜେମ୍‌ସେଦ୍‌ପୁର ଓ କଲିକତାର କାରଖାନାମାନଙ୍କରେ କାମ କରିବାପାଇଁ ।

ଗ୍ଲାସଗୋ ସହରରେ ଡକ୍ଟର ବର୍କବେକ୍ ନାମକ ଜଣେ ଦୂରଦ୍ରଷ୍ଟା ଚିକିତ୍ସକ ଗୋଟିଏ ଫାକ୍ଟରିର ଦଳେ ମଜୁରିଆଙ୍କ ଉପରେ ଏକ ପରୀକ୍ଷା ଆରମ୍ଭ କଲେ । ମଜୁରିଆମାନେ ଫାକ୍ଟରି ଚଳାନ୍ତି, କିନ୍ତୁ ସେମାନେ ଫାକ୍ଟରିର ପଛରେ ଥିବା ବୈଜ୍ଞାନିକ ତତ୍ତ୍ୱଗୁଡ଼ିକ ସମ୍ପର୍କରେ ଥିଲେ ସମ୍ପୂର୍ଣ୍ଣ ଅଜ୍ଞ । ଡକ୍ଟର ବର୍କବେକ୍ ସେମାନଙ୍କୁ କିଛିଦିନ ଧରି ଇଞ୍ଜିନ୍ କିପରି ଚାଲେ, କିଛି ଫିଜିକ୍ସ, କିଛି କେମିଷ୍ଟ୍ରି, ଏଇପରିଭାବରେ ସେମାନଙ୍କୁ ସାଧାରଣଭାବରେ

ବୁଝେଇଲେ । ଫଳରେ ଦେଖାଗଲା, ଫାକ୍ଟରିର ଉତ୍ପାଦନ ବଢ଼ିଲା । କାରଣ, ପୂର୍ବେ ମଜୁରିଆମାନେ ମୂର୍ଖ ଥିଲେ ଏବେ ସେମାନେ ଯାହା କଲେ, ତାହା ବୁଝିକରି କଲେ । ଏଇଥିରୁ ପ୍ରୌଢ଼ଶିକ୍ଷା ଓ ସାମାଜିକ ଶିକ୍ଷାର ଆରମ୍ଭ । ବର୍ତ୍ତମାନ ଏହା ଇଂଲାଣ୍ଡ ଓ ଆମେରିକାରେ ବହୁ ବ୍ୟାପକ । ଦୂରଦ୍ରଷ୍ଟା ଡାକ୍ତର ବର୍କବେକ୍‌ଙ୍କ ସ୍ମୃତିରେ, ଇଂଲାଣ୍ଡ, ସ୍କଟ୍‌ଲାଣ୍ଡ ଓ ଆମେରିକାର ବହୁ 'ବର୍କବେକ୍-କଲେଜ' ମଧ୍ୟ ସ୍ଥାପିତ ହୋଇଛି, କେବଳ ମଜୁରିଆମାନଙ୍କୁ ଅଧିକ ଶିକ୍ଷିତ କରେଇବାପାଇଁ । ପରେ, ପ୍ରସିଦ୍ଧ ଇଂରେଜ ଲେଖକ ଓ କଳା-ସମାଲୋଚକ ରସ୍କିନ୍ (ଯାହାଙ୍କ ପୁସ୍ତକ ''ଅଣ୍ଟୁ ଦିସ୍ ଲାଷ୍ଟ୍'' ପଢ଼ି ଦକ୍ଷିଣ ଆଫ୍ରିକାରେ ବାପୁଜୀ ବାରିଷ୍ଟରି ଛାଡ଼ିଦେଇ କୃଷକ ହେବାର ସ୍ଥିର କଲେ) ଏ ଆନ୍ଦୋଳନର ପୃଷ୍ଠପୋଷକତା କରି ଏଥିରେ ନିଜର ଅନେକ ଅର୍ଥ ବ୍ୟୟ କରିଥିଲେ । ତେଣୁ ରସ୍କିନ୍‌ଙ୍କ ନାଁରେ ମଧ୍ୟ ପ୍ରସିଦ୍ଧ ପ୍ରୌଢ଼ ଶିକ୍ଷାନୁଷ୍ଠାନ ସବୁ ଇଂଲାଣ୍ଡରେ ଅଛି । ତା' ଛଡ଼ା ସମଗ୍ର ଇଂଲାଣ୍ଡରେ 'ୱାର୍କର୍‌ସ ଏଡୁକେଶନ୍ ଆସୋସିଏସନ୍'(ଶ୍ରମିକ-ଶିକ୍ଷା-ସଂସ୍ଥା) ନାମରେ ଏକ ଦେଶବ୍ୟାପୀ ସଂସ୍ଥା ଏ ଦିଗରେ କାମ କରେ । ଇଂଲାଣ୍ଡରେ ଥିଲାବେଳେ ଲେଖକ ଏହି ସଂସ୍ଥାର ସମ୍ପର୍କରେ ଆସି, ଏମାନଙ୍କର ଆଲୋଚନାର ସ୍ତର ଦେଖି ବିସ୍ମିତ ହୋଇଥିଲା । ଆହୁରି ବିସ୍ମୟର କଥା ଯେ, ବର୍କବେକ୍ ଓ ରସ୍କିନ୍ କଲେଜ ଏବଂ ୱାର୍କର୍ସ ଏଡୁକେଶନ ଆ୍‌ସୋସିଏସନ୍ ପ୍ରଭୃତି ଉଚ୍ଚାଙ୍ଗ ଅନୁଷ୍ଠାନ ସବୁ ପୂରାପୂରି ବେସରକାରୀ ଓ ଅଧିକାଂଶଭାବରେ ମଜୁରିଆ ଶ୍ରେଣୀର ପ୍ରତିନିଧିମାନଙ୍କଦ୍ୱାରାହିଁ ପରିଚାଳିତ । ଅନେକ ମଜୁରିଆ ଏଇସବୁ ଅନୁଷ୍ଠାନମାନଙ୍କରେ ଅବସରବେଳେ ଆଂଶିକଭାବରେ ଯୋଗ ଦେଇ ଦେଇ ତା'ଫଳରେ ନିଜ ନିଜ କାମରେ ଉନ୍ନତି କଥା ଛାଡ଼ି, ପ୍ରତିବର୍ଷ ବଡ଼ ବଡ଼ ଇଞ୍ଜିନିୟର ମଧ୍ୟ ହୋଇଯାଉଛନ୍ତି ।

ବର୍କବେକ୍ ଯେତେବେଳେ ପ୍ରୌଢ଼ଶିକ୍ଷା ଆରମ୍ଭ କଲେ, ସେତେବେଳେ ଇଂଲାଣ୍ଡ ଓ ୟୁରୋପର ଅନ୍ୟାନ୍ୟ ଦେଶର ଜନତା ଅଧିକାଂଶ ନିରକ୍ଷର ଥିଲେ । ଏବେ ଦେଢ଼ଶ ବର୍ଷ ପରେ ଅବସ୍ଥା ଠିକ୍ ଓଲଟା । କିନ୍ତୁ ବର୍ତ୍ତମାନ ସମଗ୍ର ଜାତି ସାକ୍ଷର ଓ ଶିକ୍ଷିତ ହେଲେହେଁ, ସେ ଦେଶମାନଙ୍କରେ ପ୍ରୌଢ଼ ଓ ସାମାଜିକ ଶିକ୍ଷା ଆନ୍ଦୋଳନ ମଧ୍ୟ କ୍ରମବଳବତ୍ତର ହେବାରେ ଚାଲିଛି । ଅଥଚ ଆମ ଦେଶରେ ୮୦ ପରସେଣ୍ଟ୍ ଜନତା ସମ୍ପୂର୍ଣ୍ଣ ନିରକ୍ଷର ଓ ଅଜ୍ଞ ଥିଲେହେଁ ଏ ଦେଶର ସର୍କାର ସାମାଜିକ ଶିକ୍ଷା ପ୍ରତି ନିସ୍ପୃହ ହେବା ଅତ୍ୟନ୍ତ ପରିତାପର କଥା ନୁହେଁ କି ? ଯାହା ହୋଇଛି ତାହା କେବଳ ଧର୍ମକୁ ଆଖିମିଟିକା ମାରିବା କଥା । ସେଥିରେ ଚିନ୍ତା ନାହିଁ କି ପ୍ରାଣ ନାହିଁ । ତାହା ଜାତିର ଦଶ-ପରସେଣ୍ଟ୍-ପାଇଁ-ଉଦ୍ଦିଷ୍ଟ ସଂସ୍ଥାର ଛୋଟିଆ ଲାଙ୍ଗୁଳଟିଏ ହୋଇ ଦୀନହୀନ ଅବସ୍ଥାରେ କାହିଁକି ଥିବ ? ତା' ଅପେକ୍ଷା ଏ ଡିପାର୍ଟମେଣ୍ଟ୍ ନରଖିବା ବରଂ ଭଲ ।

ଇଂଲାଣ୍ଡ,ଆମେରିକା ହେଲା ଶିଳ୍ପ ପ୍ରଧାନ ଦେଶ । କିନ୍ତୁ ଡେନ୍‌ମାର୍କ ଆମରି ପରି ପ୍ରାୟ ପୂରାପୂରି ଏକ କୃଷିପ୍ରଧାନ ଦେଶ । କିନ୍ତୁ ଶିଳ୍ପପ୍ରଧାନ ଇଂଲାଣ୍ଡ ପରି କୃଷିପ୍ରଧାନ ଡେନ୍‌ମାର୍କରେ ମଧ୍ୟ ପ୍ରୌଢ଼ ଓ ସାମାଜିକ ଶିକ୍ଷା ଆନ୍ଦୋଳନ ସାମାଜିକ ବିପ୍ଳବ ଆଣି ଦେଇଛି । ନେପୋଲିୟନିକ୍ ଯୁଦ୍ଧରେ ଧ୍ୱସ୍ତ-ପରାଜିତ ଡେନ୍‌ମାର୍କ ଯେତେବେଳେ ହତାଶ ଓ ଅଧଃପତିତ ହୋଇ

ପଡ଼ିରହିଥିଲା, ସେତେବେଳେ ଗ୍ରୁଣ୍ଡବିଗ୍ ନାମକ ଜଣେ ଦୂରଦ୍ରଷ୍ଟା ପାଦ୍ରି, ସମଗ୍ର ଡାନିଶ ଜନତାକୁ ନବ ମାର୍ଗରେ ଚାଳିତ କରିବାଲାଗି ପ୍ରୌଢ଼ ଓ ସାମାଜିକ ଶିକ୍ଷା ଆନ୍ଦୋଳନ ସେ ଦେଶରେ ଆରମ୍ଭ କଲେ । ଫଳରେ ଏବେ ଡେନମାର୍କର ଗ୍ରାମାଞ୍ଚଳ ପୃଥିବୀରେ ସବୁଠାରୁ ପରିଷ୍କୃତ ଓ ଶିକ୍ଷିତ ବୋଲି ଧରାଯାଏ ଓ ଡେନ୍‌ମାର୍କର ସାଧାରଣ ବଞ୍ଚିବାର ମାନଦଣ୍ଡ ଅତି ଉଚ୍ଚ । ଡେନ୍‌ମାର୍କର ଅଣ୍ଡା, ଲହୁଣୀ ସହଯୋଗ ଆନ୍ଦୋଳନ ଓ ଜନତା-ବିଦ୍ୟାଳୟ (ଫୋକ୍ ହାଇସ୍କୁଲ୍)ର କଥା ଆଜି ବିଶ୍ୱବିଦିତ । ଏ ସମସ୍ତ ପ୍ରୌଢ଼ ଓ ସାମାଜିକ ଶିକ୍ଷାରହିଁ ପ୍ରତ୍ୟକ୍ଷ ଫଳ ।

## ଭାରତରେ ଅପଯୋଚିତ ଓ ଅବହେଳିତ –

ଭାରତବର୍ଷରେ ସାମାଜିକ ଶିକ୍ଷା ଏପ୍ରକାର ଫଳ କାହିଁକି ନଦିଅନ୍ତା, ତାର କୌଣସି ଯୁକ୍ତି ତ ଦେଖାପଡୁନି । କିନ୍ତୁ ନହେବାର ହେତୁ ଏହି ଯେ, ଯେପରି ଭାବରେ ଏ ଯୋଜନା ଓ ଆନ୍ଦୋଳନ ପ୍ରଚାରିତ ଓ କର୍ମଯୁକ୍ତ ହେବାର କଥା ଏ ଦେଶରେ ତାହା ହୋଇନାହିଁ, ଯେପରି ଦୃଷ୍ଟିକୋଣରୁ ଯାକୁ କର୍ତ୍ତାମାନେ ଦେଖିବାର କଥା ତାହା ହୋଇନାହିଁ, ଯେପରି ଲୋକଙ୍କ ହାତରେ ଯାକୁ ନିର୍ଭର ଭାବରେ ଛାଡ଼ିଦେବାର କଥା ତାହା ହୋଇନାହିଁ । ସମଗ୍ର ଜାତିର ଜୀବନକୁ ଅନୁପ୍ରାଣିତ ଓ ଉଜ୍ଜୀବିତ କରିବା ଭଳି ଏକ ଆନ୍ଦୋଳନକୁ ନାଲିଫିତା ଓ ହାକିମିର ଚଉକାଠ ଭିତରେ ମୋଡ଼ିମାଡ଼ି ଭର୍ତ୍ତିକରିଦେଇ, କର୍ତ୍ତାମାନେ ବସ୍ତାଭାବେ ସୂତ୍ର ଦେଇ ଆତ୍ମପ୍ରସାଦ ଅନୁଭବ କରିପାରନ୍ତି; କିନ୍ତୁ ଏଇ ମହାନ୍ ଓ କଲ୍ୟାଣକର ଯୋଜନା ଓ ଆନ୍ଦୋଳନକୁ ତାଚ୍ଛଲ୍ୟମୟ ଦୃଷ୍ଟି ଦେବାର କୌଣସି କାରଣ ନାହିଁ । ତା' ଦ୍ୱାରା କେବଳ ଏଇ ଜାତି ଓ ଦେଶର ଅନିଷ୍ଟ ହେଉଛି ।

ସାମାଜିକ ଶିକ୍ଷାଯୋଜନା ସମ୍ପର୍କରେ କେନ୍ଦ୍ର ଭାରତ ସର୍କାର ଯେଉଁ ଆଦ୍ୟ ସର୍କୁଲାର ସବୁ ରାଜ୍ୟ ସର୍କାରମାନଙ୍କୁ ପଠାଇଥିଲେ, ସେଥିରେ ଆଡଲଟ୍ ସୋସାଲ୍ ଏଡୁକେଶନ ଅଫିସରକୁ ରାଜ୍ୟର ଡି.ପି.ଆଇ.ର ସମାନ ପାହ୍ୟା ଦେବାର ସୂଚନା ଦିଆଯାଇଥିଲା, ଉଦ୍ଦେଶ୍ୟ ହୁଏତ ଥିଲା ଯେ, ଏଇ ନୂତନ ଯୋଜନାର ବଡ଼କର୍ତ୍ତା ଯେପରି ସ୍ୱାଧୀନଭାବରେ କାମ କରିପାରିବ । କିନ୍ତୁ ଏପର୍ଯ୍ୟନ୍ତ ଓଡ଼ିଶାର ଡି.ପି.ଆଇ. ଅଫିସରେ ଆଡଲ୍‌ଟ ସୋସାଲ୍ ଏଡୁକେଶନ୍ ଅଫିସରର ମର୍ଯ୍ୟାଦା ଗୋଟିଏ ବଡ଼ କିରାଣିଠାରୁ ଅଧିକ ନୁହେଁ । ଡି.ପି.ଆଇ.ଙ୍କ ତଳେ ତାଙ୍କ ଅଫିସ୍‌ରେ ଯେତେ ଅଫିସର ଅଛନ୍ତି(ତାଙ୍କ ପି.ଏ. ଛଡ଼ା) ସମସ୍ତେ ଡେପୁଟି ଡାଇରେକ୍ଟର ଗ୍ରେଡ଼ରେ, କେବଳ ଆଡଲ୍‌ଟ ଏଡୁକେଶନ୍ ଅଫିସର ତାହା ନୁହଁନ୍ତି । ଅଥଚ, ଡି.ପି.ଆଇ.ଙ୍କୁ ଛାଡ଼ିଦେଲେ, ତାଙ୍କ ଅଫିସ୍‌ରେ ଏଇ ହେଉଛନ୍ତି ଏକମାତ୍ର ଅଫିସର, ଯାହାଙ୍କ କାମ ପ୍ରତ୍ୟକ୍ଷଭାବରେ ସମଗ୍ର ଦେଶବ୍ୟାପୀ ଓ ଯାହାଙ୍କ ତଳେ ପ୍ରତ୍ୟେକ ଜିଲ୍ଲାରେ ଜଣେ ଜଣେ ଜିଲ୍ଲା ଅଫିସର କାର୍ଯ୍ୟ କରନ୍ତି । କାର୍ଯ୍ୟତଃ ସେ ଆଉ ଏକ ଡି.ପି.ଆଇ. ଏବଂ ପ୍ରକୃତରେ 'ପବ୍ଲିକ୍' (ଜନସାଧାରଣ) ଏଡୁକେଶନ (ଶିକ୍ଷା)ର ଡିରେକ୍ଟର, ଯାହାକି ଆଫିସିକ ଡି.ପି.ଆଇ. ଆଦୌ ନୁହନ୍ତି, କାରଣ ସେ ଜାତିର ଶତକଡ଼ା ଦଶଜଣଙ୍କ ଶିକ୍ଷାର ଚାଳକ ମାତ୍ର । ଅଥଚ ସ୍ଥାନ,ପାହ୍ୟା, କ୍ଷମତା, ଦରମା ସବୁ ଓଲଟା ।

ରୂପ କଥାର ପାଲଚୁଣ୍ଡାମନ୍ତ୍ରୀଙ୍କ ବୁଝାମଣା ଆଉ କାହାକୁ କହିବା ?

## ମୋର ସାମାନ୍ୟ ପ୍ରଯତ୍ନ –

ଦ୍ୱିତୀୟଥର ସାମାଜିକ ଅଫିସରଭାବରେ ଯୋଗଦେଲାବେଳେ ଏଇ ଲେଖକ ଏକେବାସହୀନ ହୋଇ ବୁଲୁଥାଏ, ତେଣେ ଡି.ପି.ଆଇ. ଅଫିସରେ ସେ ନିଜକୁ ତାର ଜୁନିୟରମାନଙ୍କର ନିମ୍ନସ୍ତରରେ ଥିବାର ଦେଖିଲା । ଡକ୍ଟର ପ୍ରସାଦ କେବଳ ମୋଲାଗି ସେ ପୋଷ୍ଟକୁ ଡି.ଡି.ପି.ଆଇ. ଗ୍ରେଡ଼କୁ ଉନ୍ନୀତ କରିବାକୁ, ମୁଁ ସମ୍ବଲପୁର ଛାଡ଼ିବା ପୂର୍ବରୁ ମତେ ଲେଖି ଜଣାଇଥିଲେ, କିନ୍ତୁ ତାହା କାର୍ଯ୍ୟରେ ଘଟିନଥାଏ । କିନ୍ତୁ ସବୁ ଦୁର୍ଦ୍ଦଶା, ଅବିଚାର, ଅତ୍ୟାଚାର ସତ୍ତ୍ୱେ ଏ ଲେଖକ ତାର ନୂତନ ପୋଷ୍ଟର କର୍ତ୍ତବ୍ୟ ଆନ୍ତରିକତାର ସହିତ ସମ୍ପନ୍ନ କରିବାରେ ଯେ କୌଣସି ଅବହେଳା କରିନାହିଁ, ସେଇତକ ମାତ୍ର ତାର ପରମ ସାନ୍ତ୍ୱନା । ଦ୍ୱିତୀୟ ଥର ଏଇ ପୋଷ୍ଟରେ ନ'ମାସ ବୋଧହୁଏ ଥିଲି । ପ୍ରଥମ ଦୁଇ ମାସ ଯୋଜନାର ପ୍ରାରମ୍ଭିକ ପ୍ରସ୍ତୁତି ପାଇଁ ଛାଡ଼ିଦିଆଯାଉ । ପୁଣି ଶେଷ ଦୁଇମାସ ପରେ-ବର୍ଣ୍ଣିତ ବ୍ୟକ୍ତିଗତ ଦୁର୍ଦ୍ଦିନର ପଙ୍କିଳ ଜଞ୍ଜାଳରେ ପଡ଼ି ଯେଉଁ ଚରମ ବ୍ୟସ୍ତତା, ତା' ପାଇଁ ଦୁଇମାସ ଛାଡ଼ି ଦିଆଯାଉ । ବାକି ୪-୫ ମାସ ଯାହା ରହିଲା, ସେଇତକରେ ଯାହା ନିଷ୍ଠାର ସହିତ କାମ କରିଥିଲି । ଲେଖକର ବିଶ୍ୱାସ, ଲେଖକ ସେହି ପାଞ୍ଚମାସରେ ଯାହା କରିପାରିଥିଲା, ତାହା ସେହି ଡିପାର୍ଟମେଣ୍ଟରେ ଦଶବର୍ଷ ଧରି ଯାହା ଘଟିଥିଲା, ତାହା ସହିତ ତୁଳିତ ହେବାରେ ଲଜ୍ଜାବୋଧ କରିବାର କୌଣସି କାରଣ ନାହିଁ । ପୁଣି ଯାହା ଯାହା ଏଇ ଲେଖକଦ୍ୱାରା କରାଯାଇଥିଲା, ତାହାର ଏକମାତ୍ର ଲକ୍ଷ୍ୟ ଥିଲା ଓଡ଼ିଆ ଜାତିର ସାଂସ୍କୃତିକ ଉନ୍ନୟନ ଓ ତାହା କେବଳ ତାତ୍କାଳିକ ନୁହେଁ, ସେ ସମସ୍ତର ସ୍ଥାୟୀ ମୂଲ୍ୟ ରହିଛି । ଯାହା ଯାହା କରାଯାଇଥିଲା, ସେ ସବୁ ଏଇ–

୧– ଜାତି ଗଠନସୂଚକ ସଙ୍ଗୀତ ରଚିତ ହୋଇ ରେକର୍ଡ଼ କରାଯାଇଥିଲା ।

୨– ପଣ୍ଡିଚେରୀ, ଅରବିନ୍ଦ-ଆଶ୍ରମ-ତିଆରି, ଅସାଧାରଣ ଶୈକ୍ଷିକ ମୂଲ୍ୟ ଥିବା ଫିଲ୍ମ ସବୁ ଅଣାଯାଇଥିଲା ଓ ପ୍ରଦର୍ଶିତ ହୋଇଥିଲା ।

୩ – ପ୍ରତ୍ୟକ୍ଷ ଭାବରେ ସମାଜ ଉନ୍ନୟନ ପାଇଁ କାବ୍ୟ, ନାଟକ, ଉପନ୍ୟାସର ଶ୍ରେଷ୍ଠ ଲେଖକମାନଙ୍କୁ ପ୍ରଥମ ଥର ପାଇଁ ପୁରସ୍କାର ଦିଆଯାଇଥିଲା ।

୪ – ଭାରତ ସରକାରଙ୍କ ନିର୍ଦ୍ଦେଶରେ ନବ-ସାକ୍ଷର ଜନତା ପାଇଁ ନୂତନ ସାହିତ୍ୟ କିପରି ସୃଷ୍ଟି ହେବ, ସେ ଉଦ୍ଦେଶ୍ୟରେ ଦୁଇ ମାସବ୍ୟାପୀ ଏକ ''ସାହିତ୍ୟିକ-କର୍ମ ମନ୍ଦିର''(ଲିଟରାରି ୱାର୍କସପ୍) ପ୍ରଥମ କରି ପରିଚାଳିତ କରାଯାଇଥିଲା ଓ ଯାର ଫଳସ୍ୱରୂପ ଛ'ଖଣ୍ଡି ନୂତନ ସାମାଜିକ-ଶିକ୍ଷା ପୁସ୍ତକ ପ୍ରକାଶ କରାଯାଇଥିଲା ।

୫ – ପ୍ରକୃଷ୍ଟ ସାମାଜିକ ସାହିତ୍ୟ ଭାବରେ ଆମ ଡିପାର୍ଟମେଣ୍ଟ ପକ୍ଷରୁ ୧୨ଟି ପୁସ୍ତକ ଏଇ ସ୍ୱଳ୍ପକାଳ ଭିତରେ ପ୍ରକାଶ କରାଯାଇଥିଲା ।

ସେହି ପୁସ୍ତକଗୁଡ଼ିକ ଏହି –

୧ । ସାମାଜିକ ଶିକ୍ଷାର ନକ୍ସା

୨ । ଜାପାନର କୃଷି ଓ ଶିଳ୍ପ (ଚମନ୍‌ଲାଲ)

୩ । ଗାନ୍ଧି ତର୍ପଣ

୪ । ପଲ୍ଲୀ କବିତା
୫ । ସରସ ଗୀତ
୬ । ସରସ ଛାନ୍ଦ
୭ । ଜ୍ଞାନକୋଷ
୮ । ଗଣତନ୍ତ୍ରର ଆଦର୍ଶ, ସୁଇଜରଲାଣ୍ଡ (ଚମନ୍‌ଲାଲ୍‌)
୯ । ବସିବାଠଉଁ କାଶିବା ଭଲ
୧୦ । ଚାଷ ଯା'ର, ଜମି ତାର
୧୧ । କନ୍ଧ ପରଜା ସ୍ତୋତ୍ର ଓ ସଙ୍ଗୀତ
୧୨ । ଓଡ଼ିଶାର ଶିଳ୍ପକଳା (ଗୋପାଳ କାନୁନ୍‌ଗୋ)
(ଆମବେଳେ ଏହାର ରଚନା ଓ ପରୀକ୍ଷା ସରିଥିଲା, ଆମ ପରେ ପ୍ରକାଶିତ ହେଲା )

## ଚମନ୍‌ଲାଲ୍‌ –

ଭାରତବର୍ଷ ପ୍ରତି ପ୍ରୟୋଗ କଲେ ସାମାଜିକ ଶିକ୍ଷାକୁ କି ଛାଞ୍ଚରେ ପକେଇବାକୁ ହେବ ତାର ସୂଚନା ମୁଁ ନିମ୍ନରେ ଦେବାକୁ ଯାଉଛି । ପାଠକେ ଦେଖିବେ ଏଇ ଯେ ପୁସ୍ତକଗୁଡ଼ିକ ଲେଖକ ପ୍ରକାଶିତ କରେଇ ନେଇଥିଲା, ସେଗୁଡ଼ିକର ଏଇ ଯୋଜନା ସହିତ କିପରି ଘନିଷ୍ଠ ସମ୍ପର୍କ ରହିଛି । କାରଣ ଯାହା କିଛି କରାଯାଇଥିଲା, ତାହା ଏକ ମହନୀୟ ଲକ୍ଷ୍ୟରେ ହିଁ କରାଯାଇଥିଲା । କୌଣସି କଥା ତାତ୍କାଳିକ ବାହାବା ନେବା ଲକ୍ଷ୍ୟରେ ବା ବ୍ୟକ୍ତିଗତ ସ୍ୱାର୍ଥ ଦୃଷ୍ଟିରେ କରାଯାଇନଥିଲା । ପୁଣି ସେଥିପାଇଁ କିପରି ସ୍ୱତନ୍ତ୍ର ଓ ବିଶେଷ ଚେଷ୍ଟା ହୋଇଥିଲା, ତାରି ଏକ ଦୃଷ୍ଟାନ୍ତ ଦିଏଁ ।

ଭାରତବର୍ଷ ତ ଗଣତନ୍ତ୍ର ଶାସନ ସ୍ୱୀକାର କଲା; କିନ୍ତୁ ଏ ଦେଶରେ ଗଣତନ୍ତ୍ରର ଟ୍ରାଡ଼ିଶନ୍ ବା ପରମ୍ପରା ନାହିଁ । ସ୍ୱାଧୀନତା ପରେ ଏ ଦେଶରେ ଯାହା ଘଟୁଛି, ତାହା ଗଣତନ୍ତ୍ରର ଏକ ଫାର୍ସ ମାତ୍ର । ଆମର ଜନତାକୁ ଗଣତନ୍ତ୍ର ସମ୍ପର୍କରେ, ଜାତୀୟ ଗର୍ବ, ଜାତୀୟ ଆତ୍ମବିଶ୍ୱାସ, କର୍ମଠତା, ଉତ୍ପାଦନଶୀଳତା, କ୍ଷୁଦ୍ର-ସଂକୀର୍ଣ୍ଣ ମନୋଭାବରୁ ନିଜକୁ ବୃହତ୍ତର ଜାତୀୟ ଭାବକୁ ଉଠେଇବା ଇତ୍ୟାଦି ଦିଗରେ ଶିକ୍ଷା ଦେବାହିଁ ତ ସାମାଜିକ ଶିକ୍ଷାର ପ୍ରଧାନ ଯୋଜନା ହେବା ଉଚିତ ? କିନ୍ତୁ କିପରି ଏହା ହେବ ? ଖାଲି ବକ୍ତୃତା ଦେଲେ ଶୁଣିବ କିଏ ? ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଚାହି ।

ଏଇ ଲେଖକର ମତରେ ଭାରତ ପ୍ରତି କେବଳ ଦୁଇଟି ବାହାର ଦେଶର ଆଦର୍ଶ ଏକାନ୍ତ ଭାବରେ ପ୍ରଯୋଜ୍ୟ – ୧ - ଜାପାନ ଓ ୨ - ସୁଇଜରଲାଣ୍ଡ । ଦୁଇଟିଯାକ ଦେଶ ଦରିଦ୍ର, ଅଥଚ ସେ ଦେଶର ଲୋକେ ଏପରି କର୍ମଠ ଯେ, ସେମାନେ କେବଳ ସ୍ୱ-ପରିଶ୍ରମ ଦ୍ୱାରା ନିଜ ନିଜ ଜାତିକୁ ସଭ୍ୟ ଦେଶମାନଙ୍କର ଅଗ୍ରଗଣ୍ୟ କରିପାରିଛନ୍ତି । ଦୁଇଟିଯାକ ଦେଶ ଅସାଧାରଣ ଭାବରେ ପରିଷ୍କାର-ପରିଚ୍ଛନ୍ନ । ପୁଣି ଜାପାନୀମାନେ ଅସାଧାରଣ ଭାବରେ ସୌନ୍ଦର୍ଯ୍ୟପ୍ରିୟ ଓ ସୁଇସ୍‌ମାନେ ଏପରି ଗଣତାନ୍ତ୍ରିକ ଯେ, ଯଦି ପୃଥିବୀରେ 'ଗାନ୍ଧିରାଜ' କେଉଁଠି ଥାଏ, ତେବେ ତାହା ସୁଇଜରଲାଣ୍ଡରେ କେବଳ ଅଛି ବୋଲି ପ୍ରତ୍ୟକ୍ଷଦର୍ଶୀ ଗାନ୍ଧିବାଦୀମାନେ ହିଁ ଆସି ପ୍ରଚାର କରିଛନ୍ତି ।

ମୁଁ ଭାବୁଥାଏ, ଏଇ ଦୁଇ ଦେଶର କଥା ଆମ ସମାଜ ଆଗରେ କିପରି ଉପସ୍ଥାପିତ କରାଯିବ। ଏଇ ସମୟରେ, କେଉଁଠି ଦୈନିକ 'ଷ୍ଟେଟ୍‌ସମାନ'ର ପୁସ୍ତକ ସମାଲୋଚନାରେ ଭାରତର ପ୍ରସିଦ୍ଧ ସାମ୍ବାଦିକ ଚମନ୍‌ଲାଲ୍ ଏଇ ଦୁଇ ଦେଶ ସମ୍ବନ୍ଧରେ ଦୁଇଟି ବହି ଠିକ୍ ଏଇ ଉଦ୍ଦେଶ୍ୟରେ ଲେଖିଥିବାର ପଢ଼ିଲି । ଲେଖିଲି ସାଙ୍ଗେ ସାଙ୍ଗେ ତାଙ୍କ ପାଖକୁ ଚିଠି । ବହି ପାଇଲି, ପଢ଼ିଲି ଓ ଚମନ୍‌ଲାଲଙ୍କ ବହିର ଓଡ଼ିଆ ଅନୁବାଦ ପାଇଁ ସବୁ ଠିକ୍‌ଠାକ୍ କରାଇନେଲି । ଏଇ ଦୁଇଟି ବହି ସାଥିରେ, 'ଭଦ୍ର ବ୍ୟବହାର' (ମାନାରସ୍) ଉପରେ ତାଙ୍କର ଆଉ ଖଣ୍ଡିଏ ଅପ୍ରକାଶିତ ପୁସ୍ତକ ମଧ୍ୟ ଅନୁବାଦ କରିବାକୁ ସେ ଅନୁମତି ଦେଲେ । କପିରାଇଟ୍ ବାବଦକୁ ସ୍ଥିର କଲି ଯେ, ତାଙ୍କୁ ପ୍ରତି ବହିକି ସାତଶ' ଟଙ୍କା କରି ୨୧ ଶତ ଟଙ୍କା ଦିଆଯିବ । ସେ ସେଥିରେ ରାଜି ହେଲେ ।

ପାଠକେ ଏହିଠାରେ ମନେରଖନ୍ତୁ ଯେ, ଏ ସମସ୍ତ କର୍ମ ମୁଁ ସ୍ୱାଧୀନ ଭାବରେ ହିଁ କରିଯାଉଥାଏ । ତତ୍କାଳୀନ ଡି.ପି.ଆଇ. ବଳଭଦ୍ର ପ୍ରସାଦଙ୍କୁ ମୁଁ ଏସବୁ କିଛି ହେଲେ ପଚାରି ଯାଇନି କି ସେ ମତେ ଏସବୁ ପାଇଁ କୌଣସି ନିର୍ଦ୍ଦେଶ ଦେଇନଥିଲେ । ଚମନ୍‌ଲାଲଙ୍କ ରୟାଲିଟୀ କେତେ ହେବ, ତା' ମୁଇଁ ଠିକ୍ କରିଥିଲି ଓ ମୁଇଁ ମୋ ନିଜ ଦାୟିତ୍ୱରେ ତାଙ୍କୁ ତାଙ୍କ ପ୍ରାପ୍ୟ ଟଙ୍କା ଦେଇଥିଲି । ଡି.ପି.ଆଇ.ଙ୍କର ଦୀର୍ଘହସ୍ତ ସେତେବେଳେ ଦେଖାନଥିଲା ।

କିନ୍ତୁ ପରେ (ସେତେବେଳକୁ ବାମାଚରଣ ଦାସ ଡି.ପି.ଆଇ. ହୋଇ ଆସିଯାଇଥିଲେ) ଗୋଟିଏ ବ୍ୟାପାର ସମ୍ପର୍କରେ ଡି.ପି.ଆଇ.ଙ୍କର ସାମାନ୍ୟ ଦସ୍ତଖତଟା ନେଇନଥିଲି ବୋଲି (ଯାହା ପାଇଁ ମୁଁ ଅଭ୍ୟସ୍ତ ନ ଥିଲି କି ଅଫିସ୍‌ରେ ସେଥିପାଇଁ କୌଣସି ନିର୍ଦ୍ଦେଶ ନ ଥିଲା, କି ଯାହାପାଇଁ କୌଣସି କାମ ପୂର୍ବରୁ ବନ୍ଦ ହୋଇଯାଇନଥିଲା) ମତେ କର୍ତ୍ତୃପକ୍ଷ କି ନିର୍ଯ୍ୟାତନାରେ ପକାଇଲେ, ତାହା ପରେ ବର୍ଣ୍ଣିତ ହେବ ।

ସାମ୍ବାଦିକ ଚମନ୍‌ଲାଲଙ୍କୁ ମୁଁ କେବେ ଦେଖି ନ ଥିଲି କି ତାଙ୍କ ଅନ୍ୟ ଲେଖା କିଛି ପଢ଼ି ନଥିଲି, ଆଗରୁ । ଦିନେ ଅଫିସ୍‌ରେ ବସିଛି, ହଠାତ୍ ଜଣେ ହାରିଦ୍ରବସନଧାରୀ ବୌଦ୍ଧ ସନ୍ନ୍ୟାସୀ ମୋ ଆଗରେ ଉଭାହୋଇଗଲେ ଓ ପରିଚୟ ଦେଲେ ଯେ, ସେହି ଚମନ୍‌ଲାଲ୍, ଯାହାଙ୍କ ସହିତ ମୋର ଚିଠିପତ୍ର ଦିଆନିଆ ଚାଲିଛି । ସେ ଓଡ଼ିଶାକୁ ଖାସ୍ ଆସିଛନ୍ତି କେବଳ ତାଙ୍କର କପିରାଇଟ୍ ବାବଦର ଏକୋଇଶି ଶ'ଟଙ୍କା ନେଇଯିବାପାଇଁ ।

ସେତେବେଳେ ଓଡ଼ିଶାର ଗଭର୍ଣ୍ଣର ଥିଲେ ଭୀମସେନ ସାଚାର, ପଞ୍ଜାବୀ; ଚମନ୍‌ଲାଲ୍ ମଧ୍ୟ ପଞ୍ଜାବୀ । ଉଭୟେ ପ୍ରାଚୀନ ବନ୍ଧୁ । ଚମନ୍‌ଲାଲ ବର୍ତ୍ତମାନ ଗଭର୍ଣ୍ଣର-ବନ୍ଧୁଙ୍କର ଅତିଥି । ଏଇ ବେଳରେ ଟଙ୍କାଟା ନେଇନେଲେ ଗଲା । ତାଙ୍କର ଏକମାତ୍ର ସନ୍ତାନ – ଏକ ଝିଅ । ସେ ବିବାହିତା । ଚମନ୍‌ଲାଲ୍ ନିଜେ ମୃତଦାର । ବହୁ ଧର୍ମ ବିଶ୍ଳେଷଣ କରି କରି ବୌଦ୍ଧ ଧର୍ମ ହିଁ ଏକମାତ୍ର ବିଚାର-ପ୍ରତିଷ୍ଠ ଧର୍ମ ବୋଲି ଗ୍ରହଣ କରି ସେ ଶେଷରେ ବୌଦ୍ଧଧର୍ମ ଗ୍ରହଣ କରିଛନ୍ତି । ସାମ୍ବାଦିକ ଭାବରେ ସେ ବହୁବାର ପୃଥିବୀ ଭ୍ରମଣ କରିଛନ୍ତି । ସେତେବେଳେ ତାଙ୍କର ଜୀବନର ସଞ୍ଚୟ ୪୦ ହଜାର ଟଙ୍କା ଜବାହରଲାଲ୍ ନେହରୁଙ୍କ ହାତରେ କୌଣସି ଭଲ କାମ ପାଇଁ ଦେଇ ସାରି ସେ ସଂସାର ତ୍ୟାଗକରି ଖାଣ୍ଟି ବୌଦ୍ଧଭିକ୍ଷୁ ହେବା ଉପରେ । ବର୍ତ୍ତମାନ ବୋଧହୁଏ ସେ କୌଣସି ବୌଦ୍ଧ ମଠରେ । ଏ ଲେଖକର ଦ୍ୱିତୀୟଥର ସାମାଜିକ ଶିକ୍ଷା ଅଫିସର କାଳ ଭିତରେ ଏଇ ସଂସ୍କୃତିବନ୍ତ

ଜନସେବକଙ୍କ ସାଥିରେ ପରିଚୟ, ତାର ସେହି ଝଞ୍ଜାଆନ୍ଦୋଳିତ ଦୁର୍ଦ୍ଦିନଗୁଡ଼ିକରେ ମାନବିକ ସ୍ପର୍ଶର ଏକ ଅବିକମ୍ପିତ ଦୀପଶିଖା ପରି ଏବେ ମଧ୍ୟ ତା' ଚିତ୍ତରେ ଦେଦୀପ୍ୟମାନ ।

**ପଞ୍ଚଶୀଳ –**

ଉପରେ ଯାହା ସବୁ ବର୍ଣ୍ଣିତ ହେଲା, ସେ ସବୁ ତ ବାହାରର କର୍ମ । ସାମାଜିକ ଶିକ୍ଷାର ନିଜସ୍ୱ ଆକାର, ସୌନ୍ଦର୍ଯ୍ୟ ଓ ବୈଶିଷ୍ଟ୍ୟର ଅନ୍ତରଙ୍ଗ ପରିଚୟ କାହିଁ ? ସେତେବେଳକୁ ପ୍ରତି ଜିଲ୍ଲାରେ ଜଣେ ଜଣେ କରି ଜିଲ୍ଲା-ସାମାଜିକ ଅଫିସର ନିଯୁକ୍ତି ପାଇ ଯୋଗ ଦେଇ ସାରିଲେଣି । ଏମାନଙ୍କୁ ସାମାଜିକ ଶିକ୍ଷା କ'ଣ ବୋଲି କି ଉପଦେଶ ଦିଏ ?

ଶେଷରେ ଭାବି ଭାବି, ନିମ୍ନଲିଖିତ ମର୍ମରେ ଏକ ସର୍କୁଲାର ସମସ୍ତଙ୍କୁ ଦେଲି । ଏହାହିଁ ସାମାଜିକ ଶିକ୍ଷାର ବିଶିଷ୍ଟ ଓ ନିର୍ଦ୍ଦିଷ୍ଟ ରୂପରେଖ ଦେବାରେ ଓଡ଼ିଶା ସର୍କାରଙ୍କର ସାମାଜିକ ଶିକ୍ଷା ବିଭାଗର ଏଯାବତ୍ ପ୍ରଥମ ଓ ଶେଷ ସର୍କୁଲାର ବୋଧହୁଏ । ଭବିଷ୍ୟତରେ କାହାରି ନା କାହାରି କାମରେ ଆସିପାରେ ବୋଲି, ସେହି ଇଂରେଜ ସର୍କୁଲାରଟିର ମର୍ମାନୁବାଦ ତଳେ ଦେଇ ଦେଉଛି ।

## ନଂ ୪୨୧(୮) ସମସ୍ତ ଜିଲ୍ଲା-ସାମାଜିକ ଶିକ୍ଷା ପରିଚାଳକମାନଙ୍କୁ –

ପ୍ରିୟ ବନ୍ଧୁଗଣ

ଏ କ୍ଷେତ୍ର ପ୍ରତ୍ୟେକ ଜିଲ୍ଲାରେ ସାମାଜିକ ଶିକ୍ଷା ପରିଚାଳନା କରିବାର ଭାର ଆପଣମାନେ ନେଇସାରିଛନ୍ତି । ମୁଁ ବର୍ତ୍ତମାନ, ଆପଣମାନେ ସବୁବେଳେ କେଉଁସବୁ ଲକ୍ଷ୍ୟକୁ ଆଖିଆଗରେ ରଖିବେ, କେଉଁ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହେବେ ଓ କେଉଁ ପନ୍ଥାରେ ଲକ୍ଷ୍ୟ ଦିଗରେ ଗତି କରିବେ, ସେ ସବୁ ବିଷୟରେ ଆପଣମାନଙ୍କୁ ପଦେଅଧେ କହିରଖୁଛି ।

ଆପଣମାନଙ୍କୁ ଯେ ଗୋଟିଏ ନୂତନ ଯୋଜନାର ନୂଆ ଅଫିସର ଭାବରେ ସର୍କାର ବାଛିଛନ୍ତି, ସର୍କାରଙ୍କର ସେହି ନିର୍ବାଚନର ଯଥାର୍ଥତା ଯେପରି ଆପଣମାନେ ନିଜ କାମ ଦେଇ ପ୍ରତିପାଦିତ କରିବେ । ଜନତାର ପ୍ରକୃତ ସେବକ ରୂପେ କାମ କରି ଆପଣମାନେ 'ପବ୍ଲିକ୍ ସର୍ଭାଣ୍ଟ' (ଲୋକ-ଭୃତ୍ୟ)ର ପ୍ରକୃତ ତାତ୍ପର୍ଯ୍ୟ ଦେଖାଇଦେବେ ବୋଲି ଆଶା କରେ ।

ଆମର ବିଷୟଟି ଅତି ବ୍ୟାପକ । ଏହା ପ୍ରକୃତରେ ଜାତୀୟ ଜୀବନର ସମସ୍ତ ବିଭାଗକୁ ହିଁ ସ୍ପର୍ଶ କରୁଛି । ତେଣୁ ଏହି ଗୁରୁଭାରକୁ, ମର୍ଯ୍ୟାଦାର ସହିତ ବହନ କରିବାପାଇଁ ଆପଣମାନଙ୍କୁ ଯଥୋଚିତ ଭାବରେ ପ୍ରସ୍ତୁତ ହେବାକୁ ପଡ଼ିବ । ଏହି ବିଷୟ ଗୁରୁ-ଭାର ହେଲେ ହେଁ, ଏହା ମଧ୍ୟ ଯେ ଉତ୍ସାହ ଓ କୌତୂହଳଜନକ ଏଥିରେ ସନ୍ଦେହ ନାହିଁ । ଏକ ବିରାଟ ଅଧଃପତିତ ଜାତିକୁ ଠିଆକରେଇବାର, ଏକ ଐତିହାସିକ ଦେଶର ମୁଖ ପରିବର୍ତ୍ତନ କରିବାର, ଏକ ରାଷ୍ଟ୍ରକୁ ନୂଆ କରି ଗଢ଼ିବାର ସୁଯୋଗ ଓ ସୁବିଧା ଆପଣମାନଙ୍କୁ ଯେ ଦିଆଯାଇଛି ଆଶା କରେ, ତାହାହିଁ ଆପଣମାନଙ୍କୁ ପ୍ରତି କର୍ମରେ ପ୍ରେରଣା ଦେବ । ଆମର ମହନୀୟ ମାତୃଭୂମିର ସେବା କରିବାପାଇଁ ଯେ, ଆପଣମାନଙ୍କୁ ସୁବିଧା ଯୋଗାଇ ଦିଆଯାଉଛି, ଏଥିପାଇଁ ଏଇ ଚାକିରିକୁ ଈଶ୍ୱରଙ୍କ

ଆଶୀର୍ବାଦ ବୋଲି ଆପଣମାନଙ୍କର ମନେ କରିବା ଉଚିତ। ତେଣୁ ଆପଣମାନଙ୍କର ଦାୟିତ୍ୱ ତୁଲାଇବାରେ କୌଣସି କର୍ମକୁ ଆପଣମାନେ କ୍ଳାନ୍ତିକର ମନେ କରିବେ ନାହିଁ ଏବଂ ଯାହା କିଛି ସାଧାରଣ ଜନତାର ଦୈନନ୍ଦିନ ଜୀବନର କଲ୍ୟାଣରେ ଆସିପାରେ, ସେପରି କୌଣସି କର୍ମକୁ ଆପଣମାନଙ୍କର ଅବହେଳା ଦେଖାଇବା ଉଚିତ ନୁହେଁ।

ଆମର ବାସ୍ତବ ଲକ୍ଷ୍ୟଗୁଡ଼ିକୁ ପାଞ୍ଚ ଶ୍ରେଣୀରେ ସଜାଡ଼ି ତଳେ ବର୍ଣ୍ଣନା କରୁଛି । ଏହାକୁ ସାମାଜିକ ଶିକ୍ଷାର ପଞ୍ଚଶୀଳ ବୋଲି ଧରିନେବ ଓ ବୌଦ୍ଧିକ, ଆର୍ଥିକ, ସ୍ୱାସ୍ଥ୍ୟରକ୍ଷକ, ସାଂସ୍କୃତିକ ଓ ରାଷ୍ଟ୍ରିକ, ଏହି ପଞ୍ଚାଙ୍ଗ ମାର୍ଗରେ ଜାତିକୁ ନୂତନ କରି ଗଢ଼ିବାର ଚେଷ୍ଟା କରିବ । ପ୍ରତିଟି ମାର୍ଗକୁ ବିଶଦ କରି ବୁଝାଏଁ ।

୧ – **ବୌଦ୍ଧିକ**- ନାରୀ ଓ ପୁରୁଷ, ସମସ୍ତଙ୍କ ଭିତରେ ସାକ୍ଷରତାର ପ୍ରସାର, ପୁଣି ସାକ୍ଷରତା ଲାଭ ପରେ ପରେ ସେମାନଙ୍କ ଭିତରେ ସୁପାଠ୍ୟ ଓ ସତ୍ ସାହିତ୍ୟର ପ୍ରଚାର ।

୨ – **ଆର୍ଥିକ** - ଆମ ଲୋକମାନଙ୍କ ଭିତରେ ନିଜର ଦୁଇଟି ହାତ ଓ ନିଜର ମସ୍ତିଷ୍କ ହିଁ ସେମାନଙ୍କର ସକଳ ଉନ୍ନତିର ଉତ୍ସ, ଏହି ନିର୍ଭର ବିଶ୍ୱାସର ସୃଷ୍ଟି ଓ ଅଭିବୃଦ୍ଧି । ମିତବ୍ୟୟ ଅପବ୍ୟୟର ନିରୋଧ ଓ ପାରିସ୍ପରିକ ସହଯୋଗ ପ୍ରତିଷ୍ଠା ଦେଇ, ପୁଣି ସର୍ବଦା ନିଜର ସାଂପ୍ରତିକ ଅବସ୍ଥାରୁ ଆହୁରି ଆହୁରି ଉପରକୁ ଉଠିବାର ଅଭିଳାଷ ସେମାନଙ୍କ ଭିତରେ ଜାଗ୍ରତ କରାଇ, ଆମ ଲୋକେ ଯେପରି ଉତ୍ତରୋତ୍ତର ଉତ୍ପାଦନଶୀଳ ହେବେ, ତାର ଚେଷ୍ଟା ।

୩ – **ସ୍ୱାସ୍ଥ୍ୟରକ୍ଷକ** - ସମଗ୍ର ଦେଶରେ ପରିଚ୍ଛନ୍ନ ଗ୍ରାମ, ପରିଚ୍ଛନ୍ନ ଗୃହ, ପରିଷ୍କୃତ, ନିରୋଗ ଦେହ, ପରିଷ୍କୃତ ବସ୍ତ୍ର ଓ ଖାଦ୍ୟ;– ଏହାହିଁ ଆପଣମାନଙ୍କର ହେବ ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ।

୪ – **ସାଂସ୍କୃତିକ** - ଆମ ଦେଶରେ ପ୍ରତି ନର, ନାରୀ ଓ ବାଳକବାଳିକାଙ୍କ ଭିତରେ ଓତପ୍ରୋତ ସୌନ୍ଦର୍ଯ୍ୟ-ପ୍ରୀତି ଓ ଶିଳ୍ପ-ସାହିତ୍ୟ-ବିଭୂଷିତ କର୍ମ ଓ ପରିବେଶ ଭିତରେ ଜୀବନକୁ ଉପଭୋଗ କରିବାର ତୀବ୍ର ସ୍ପୃହା ଜାଗ୍ରତ କରିବା ।

**୫ – ରାଷ୍ଟ୍ରିକ** - ଆମ ଲୋକଙ୍କ ଭିତରେ ଜାତି ଓ ଧର୍ମର ସକଳ କ୍ଷୁଦ୍ରତାର ଉପରକୁ ଉଠି ମାତୃଭୂମି ପ୍ରତି ଗଭୀର ଓ ସୁଦୃଢ଼ ଅନୁରକ୍ତି ଜାତ କରେଇବା ।

## ଜନବନ୍ଧୁ –

ଏଇସବୁ ଲକ୍ଷ୍ୟରେ ଆପଣମାନେ ଏପରି ଭାବରେ କାମ କରିବେ, ଯେପରିକି, ଭିନ୍ନ-ଭିନ୍ନ ଅଞ୍ଚଳର ଲୋକେ ସାମାଜିକ ଶିକ୍ଷା ଅଫିସରଙ୍କ ଆଗମନ-ପଥକୁ ଚାହିଁ ବସିବେ । ଆପଣମାନଙ୍କୁ ଲୋକେ ନିଜର ବନ୍ଧୁ ବୋଲି ମନେକରିବେ । ଯେକୌଣସି ଗ୍ରାମର ଯେ କୌଣସି କୃଷକ ଆପଣମାନଙ୍କୁ ଯେ କୌଣସି ବିଷୟରେ ପତ୍ର ଲେଖିପାରନ୍ତି । କେବେହେଲେ କହିବ ନାହିଁ ଯେ, ''ଏହା ମୋ ଦାୟିତ୍ୱ ନୁହେଁ, ବା ମତେ ଏକଥା ଜଣାନାହିଁ ।'' ପ୍ରତ୍ୟେକ ପତ୍ରର ଉତ୍ତର ଦେବ, ବାଟ ବତାଇଦେବ ଓ ସେହି ଲକ୍ଷ୍ୟରେ ଯେଉଁ ଲୋକ ବା ଯେଉଁ ଡିପାର୍ଟମେଣ୍ଟ୍ ସାହାଯ୍ୟ ଦେଇପାରିବ, ନିଜେ ତାଙ୍କ ସଙ୍ଗେ ସଂଯୋଗ ସ୍ଥାପନ କରିବ ।

## ଆଦର୍ଶ ଗ୍ରାମ –

ଗାଁ ଲୋକଙ୍କୁ ମୂର୍ଖ ବୋଲି ଧରି ନେବ ନାହିଁ । ସେମାନଙ୍କର ସାଧାରଣ ବୁଦ୍ଧି ବା କମନ୍‌ସେନ୍ସ (ସହଜାତ ଚାତୁର୍ଯ୍ୟ) ଅତ୍ୟନ୍ତ ପ୍ରଖର । ସାକ୍ଷ୍ୟ-ପ୍ରତ୍ୟକ୍ଷରେ କିଛି ନ ଦେଖେଇଦେଲେ, ସେମାନେ କେବଳ ବକ୍ତୃତାକୁ ବିଶ୍ୱାସ କରିବେନି । ତେଣୁ ମୋର ଉପଦେଶ ଏହି ଯେ, ବ୍ଲକ୍ ଡିଭଲପ୍‌ମେଣ୍ଟ୍ ଅଫିସରଙ୍କ ସହଯୋଗରେ, ନିଜ ନିଜ ଅଞ୍ଚଳରେ ଆପଣମାନେ ପ୍ରତିବର୍ଷ ଏକ ଗ୍ରାମକୁ 'ଆଡ଼ପଟ୍' ବା 'ପୋଷ୍ୟ' ରୂପେ ଗ୍ରହଣ କରିବେ । ନିଜ ନିଜ ଅଞ୍ଚଳଯାକରେ ସାଧାରଣ ଭାବରେ ସର୍ବତ୍ର କାମ କରୁଥିଲେ ମଧ, ଆପଣମାନେ ଗୋଟାଏ ବର୍ଷ ଏହି ଗୋଟିଏ ଗ୍ରାମ ଉପରେ ଅଧିକା ନଜର ଦେଇ ବର୍ଷ ଶେଷକୁ ତାକୁ ଏକ ଆଦର୍ଶ ଗ୍ରାମ ରୂପେ ଠିଆ କରେଇବାକୁ ଚେଷ୍ଟା କରିବେ । ବର୍ଷ ଶେଷରେ ଲୋକେ ସେଠିକି ଆସି ଦେଖିବେ ଯେ,ସେଠି କୌଣସି ପୁରୁଷ ବା ସ୍ତ୍ରୀ ନିରକ୍ଷର ନାହାନ୍ତି, ସେଠି ନର-ପୁରୀଷ କୌଣସିଠାରେ ମାଟି ଉପରେ ପଡ଼ିଥିବାର କେହି ଦେଖିବେନି, ସେଠି କୃଷକମାନେ ସହଯୋଗମୂଳକ ଓ ବୈଜ୍ଞାନିକ ରୀତିରେ ଚାଷ କରିବା ଆରମ୍ଭ କଲେଣି ଓ ସାଂସ୍କୃତିକ ବିନୋଦନ ଗ୍ରାମଟିକୁ ଏକ ସୁଖମୟ ସ୍ଥାନରେ ପରିଣତ କରିଛି । ଉପଦେଶଠାରୁ ଆଦର୍ଶ ହିଁ ଯେ ସର୍ବଦା ଅଧିକ କାର୍ଯ୍ୟକାରୀ, ଏହା ମନେ ରଖିବେ । ଏପ୍ରକାର ଗୋଟିଏ ଗ୍ରାମ, ସହସ୍ର ମେଳା, ପ୍ରଦର୍ଶନୀ ଓ ବକ୍ତୃତା ଅପେକ୍ଷା ଅଧିକ କାର୍ଯ୍ୟକାରୀ ହେବ ।

## ଅନୁପ୍ରେରିତ –

ମୋଟ ଉପରେ, ଆପଣମାନେ ନିଜେ ଯଦି ଅନୁପ୍ରେରିତ (ଇନ୍‌ସ୍ପାୟାର୍ଡ଼) ଭାବରେ କାମ ନକରନ୍ତି ତେବେ ଅଧସ୍ତନ କର୍ମୀମାନଙ୍କ ଭିତରେ କୌଣସି ଉତ୍ସାହ ସୃଷ୍ଟି କରିପାରିବେ ନାହିଁ କି ନିଜେ ନିଜ ଅଞ୍ଚଳରେ କୌଣସି ରେଖାପାତ କରିପାରିବେନାହିଁ ।

କିନ୍ତୁ ତରୁଣ ବନ୍ଧୁଗଣ, ଆପଣମାନଙ୍କଠାରେ ମୋର ଗଭୀର ଆଶା ଓ ବିଶ୍ୱାସ ଅଛି । ଆଶାକରେ ସେ ବିଶ୍ୱାସର ଯଥାର୍ଥତା ପ୍ରତିପାଦନ କରିଯିବେ । ଏଇ ସରକାରୀ ଦାୟିତ୍ୱ ତୁଲେଇବା ସଙ୍ଗେ ସଙ୍ଗେ ମାତୃଭୂମିର ଜଣେ ଅନୁରକ୍ତ ପୁତ୍ର ବୋଲି ନିଜନିଜକୁ ପ୍ରମାଣିତ କରିଯିବେ ବୋଲି ବିଶ୍ୱାସ ରଖିଛି ।

ଆପଣମାନଙ୍କର
ଆନ୍ତରିକ ବନ୍ଧୁ
ମାୟାଧର ମାନସିଂହ

## ଜାତୀୟ ପଞ୍ଜିକା –

କିନ୍ତୁ ଜିଲ୍ଲା-ଅଫିସର୍‌ମାନଙ୍କୁ ଏଇପରି ସର୍କୁଲାର ଦେଇଦେଲେ କ'ଣ ଜାତୀୟ ସଂଗଠନ ହୋଇଯିବ ?

ଉପରବର୍ଣ୍ଣିତ 'ଆଇଡିଆ'ଗୁଡ଼ିକ ଦେଶର ପ୍ରତ୍ୟେକ ଗୃହସ୍ଥ ଓ ଗ୍ରାମବାସୀଙ୍କ ନିକଟରେ ମଧ ପହଞ୍ଚିବା ଉଚିତ । ଚିରାଚରିତ ମନ୍ଦ ଅଭ୍ୟାସ ସବୁ ଛାଡ଼ି ସଙ୍ଗେ ସଙ୍ଗେ ସେମାନେ

ଏକାବେଳକେ ସଭ୍ୟ-ଭଦ୍ର ହୋଇଯିବାର ଆଶା କରିବା ବାତୁଳତା ମାତ୍ର । ତେବେ,ବାରମ୍ବାର ଗୋଟିଏ ଗୋଟିଏ ଭଲ କଥା ତାଙ୍କ କାନରେ ଶୁଣାଇଲେ ଓ ତାଙ୍କ ଆଗରେ ପ୍ରତ୍ୟକ୍ଷରେ ଗୋଟିଏ-ଗୋଟିଏ ଆଦର୍ଶ ଥୋଇଲେ ନିଶ୍ଚୟ ସେମାଙ୍କର ଦୃଷ୍ଟିକୋଣ ଓ ସ୍ୱଭାବରେ ପରିବର୍ତ୍ତନ ଦେଖାଯିବ ।

ଇଂଲାଣ୍ଡରେ ଜଣେ ଇଂରେଜ ବନ୍ଧୁଙ୍କଠାରୁ ଶୁଣିଛି ଯେ, ଆମେ ଯେଉଁ ସହରରେ ଥିଲୁ, ୩୦ବର୍ଷ ତଳେ (୧୯୩୯ରେ କଥାବାର୍ତ୍ତା) ସେହି ସହରର ଗଳିକନ୍ଦି ଓ ପ୍ରଧାନ ରାସ୍ତା ମଧ୍ୟ ଆବର୍ଜନାରେ ଭର୍ତ୍ତି ହୋଇଥାଏ । ଏହାର ପ୍ରତିକାରପାଇଁ ସେହି ନଗରର ଏକ ଶିକ୍ଷିତ ସ୍ୱେଚ୍ଛାସେବକଦଳ ବାହାରିପଡ଼ିଲେ । ସେମାନେ ବରାବର ସହରର ଭିନ୍ନ-ଭିନ୍ନ ସ୍ଥାନରେ ଲାଣ୍ଟର୍ନସ୍ଲାଇଡ୍ ଚିତ୍ର ଦେଖାଇ ନଗରବାସୀଙ୍କର ନାଗରିକତାବୋଧ ଓ ପରିଚ୍ଛନ୍ନତାବୋଧ ଜାଗ୍ରତ କରେଇବାକୁ ଚେଷ୍ଟା କଲେ । ଆସ୍ତେ ଆସ୍ତେ ପରିବର୍ତ୍ତନ ଦେଖାଗଲା । ମୁଁ ଦେଖିଲା ବେଳକୁ ସେ ସହର ଅତ୍ୟନ୍ତ ପରିଷ୍କାର ପରିଚ୍ଛନ୍ନ । ଇଂରେଜ ବନ୍ଧୁ ମତେ ସ୍ଲାଇଡ୍ ସବୁ ଦେଖାଇ, ସେ ସହରର ରାସ୍ତା ସବୁ ପୂର୍ବେ କିପରି ଆବର୍ଜନାମୟ ଥିଲା, ତାହା ଜଣାଇଥିଲେ ।

ଆମ ଦେଶରେ ବି ଏହା ସମ୍ଭବ । ଆମେ ଏ ଦିଗରେ କିନ୍ତୁ କିଛି କରିଛୁଁ କି ? ଏ ଦିଗରେ ଅନ୍ୟ କାହାରି ଦାୟିତ୍ୱ ଥାଉ ବା ନଥାଉ, ଏ ଦେଶର ଯିଏ ସାମାଜିକ-ଶିକ୍ଷା ଅଫିସର ହେବେ, ତାଙ୍କର ଏ ଦାୟିତ୍ୱ ନିଶ୍ଚୟ । ଫାଇଲ୍ ଦୋରସ୍ତ କାମ ଡି.ପି.ଆଇ.ର ହୋଇପାରେ, କିନ୍ତୁ ସାମାଜିକ-ଶିକ୍ଷା-ଅଫିସର ହେବେ ପୂରାପୂରି ଜାତି-ଗଠକ , ଜାତି-ସଂସ୍କାରକ, ଜାତି-ନିୟାମକ ଶିକ୍ଷାବିତ୍ ।

ଏ ଦିଗରେ ଏ ଲେଖକ ତେଣୁ ବହୁତ ଭାବି ଭାବି ଗୋଟାଏ କୌତୂହଳଜନକ ପନ୍ଥା ସ୍ଥିର କରିଥିଲା ।

ଆମ ଦେଶରେ କେଉଁ ବହି ପ୍ରତି ଗାଁ ଓ ପ୍ରତି ଘରେ ପ୍ରତିବର୍ଷ ପ୍ରବେଶ କରେ ?

ସେ ହେଉଛି ନୂତନ ପାଞ୍ଜି ।

ଏଇ ଲେଖକ ଭାବିଲା, ଏଇ 'ନୂତନ ପାଞ୍ଜି'କୁ ଏହି ନୂତନ ଯୋଜନାରେ କାହିଁକି ଲଗାଯାଇ ପାରନ୍ତାନାହିଁ ? ସୁନ୍ଦର ଲଗାଯାଇ ପାରିବ । ଏ ଦିଗରେ ପ୍ରାରମ୍ଭିକ ଆୟୋଜନ ମଧ୍ୟ ଏ ଲେଖକ କରିଥିଲା । ସେ ଅଧିକା ଆଉ ଗୋଟାଏ ବର୍ଷ ସାମାଜିକ ଅଫିସର୍ ରହିଥିଲେ; ଏହା ନିଶ୍ଚୟ କରିଆସିଥାନ୍ତା ।

ଯୋଜନାଟି ଏଇପରି ଥିଲା । ଆମ ପାଞ୍ଜିରେ ଅନେକ କଥା ଥାଏ ଯାହା ଆଜିକାଲିର ପ୍ରାତ୍ୟହିକ ଜୀବନରେ କିଛି ଦରକାରରେ ଆସେନା । ସାଧାରଣ ଗ୍ରାମ୍ୟ ଗୃହସ୍ଥର ଜ୍ୟୋତିଷବିଦ୍ୟା ଯେତିକି ଦର୍କାର,ସେତକ ବିଶୁଦ୍ଧଭାବରେ ରଖିଦେଇ, ଏଇ ଲେଖକର ଯୋଜନା ଥିଲା ଯେ, ବାକିତକ ଅଂଶରେ ଜାତି-ଉନ୍ନୟନ ଓ ବ୍ୟକ୍ତି-ଉନ୍ନୟନମୂଳକ ଖବର ଚିତ୍ତାକର୍ଷକଭାବରେ ରଖିଦିଆଯିବ । ଏଇ କ୍ରମରେ ଆମେ ମାଛଚାଷ, କୁକ୍କୁଟ-ପାଳନ, ମହୁ-ଚାଷ , ଫଳ-ଚାଷ, ଘର ଓ ଗାଁ ସଫାସୁତୁରା ରଖିବା, ଗୋ-ପାଳନ ଇତ୍ୟାଦି ଯାବତୀୟ ବିଷୟରେ ନୂତନ ଜ୍ଞାନ ଆମର ଜନତା ଆଗରେ ପରିବେଷଣ କରିପାରିବା । ଲୋକେ ପାଞ୍ଜିରୁ ଯାହା ପାଆନ୍ତେ ତାହା ପାଇଲେ, ଏଣେ ନୂତନ ଯୁଗର ନୂତନ ସନ୍ଦେଶ ପାଆନ୍ତେ ।

ଶ୍ରୀଯୁକ୍ତ ବିଶ୍ୱେଶ୍ୱର ପଟ୍ଟନାୟକ ପ୍ରଭୃତି ଜ୍ୟୋତିଷବିଶାରଦମାନଙ୍କ ସହିତ ଏ ଦିଗରେ କଥାବାର୍ତ୍ତା କରିଥିଲି । ପୁଣି ଚାଷବାସ ଇତ୍ୟାଦି ଉପରେ ଛୋଟ ଛୋଟ ଲେଖା ବି ଆରମ୍ଭ କରେଇଥିଲି । କିନ୍ତୁ କର୍ତ୍ତୃପକ୍ଷ କ'ଣ ଶାନ୍ତିରେ କାମ କରିବାକୁ ହେଲେ ଦେଲେ ?

## ଓଡ଼ିଶୀ ରାନ୍ଧଣା ଓ ଓଡ଼ିଆ ସଂସ୍କୃତି –

ଏହି ଜାତୀୟ ପଞ୍ଜିକା ସହିତ ଆଉ ଏକ ପୁସ୍ତିକା ଛପାଇ ତା'ରି ସାଥିରେ ବାଣ୍ଟିବାର ମଧ ଲେଖକର ଯୋଜନା ଥିଲା ।

ଓଡ଼ିଆମାନେ ଦିନେ ଗୋଟିଏ ସ୍ୱାଧୀନଚିନ୍ତା-ସମ୍ପନ୍ନ ଉନ୍ନତ ଜାତି ଥିଲେ, ଏଥିରେ ମୁଁ ନିଃସନ୍ଦେହ । ନଚେତ୍ ସେମାନେ ଲିଙ୍ଗରାଜ-ରାଜାରାଣୀ-କୋଣାର୍କ ଗଢ଼ିପାରିନଥାନ୍ତେ । ଏଇ ମନ୍ଦିରଗୁଡ଼ିକ ପ୍ରାଚୀନ ଓଡ଼ିଆମାନଙ୍କର ଶକ୍ତି ଓ ସଂହତିର କେବଳ ପରିଚୟ ଦେଉନାହିଁ, ଦେଉଛି ସେମାନଙ୍କର ସ୍ୱାଧୀନ, ଅନନ୍ୟପ୍ରଭାବିତ ସୁଦୃଢ଼ କଳ୍ପନାଶକ୍ତିର ବିସ୍ମୟକର ପରିଚୟ । କାରଣ, ଓଡ଼ିଶାର ଉତ୍ତର-ଦକ୍ଷିଣ, ପୂର୍ବ-ପଶ୍ଚିମ ଚତୁର୍ଦ୍ଦିଗରେ ଓଡ଼ିଶୀ ମନ୍ଦିରମାନଙ୍କର ଅପୂର୍ବ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ କାହିଁ ଦେଖିବାକୁ ମିଳେନା । ପ୍ରାଚୀନ ନିରକ୍ଷର ଓଡ଼ିଆ ମହାରଣାମାନେ ଯାହା କିଛି ସୃଷ୍ଟି କରିଯାଇଛନ୍ତି, ସେଥିରେ ସେମାନେ ରଖିଯାଇଛନ୍ତି ସେମାନଙ୍କର ଏକ ପ୍ରବଳ ବୈଶିଷ୍ଟ୍ୟ । ଅନନ୍ୟତାହିଁ କଳାସୃଷ୍ଟିରେ ମୁଖ୍ୟ ବିସ୍ମୟ । ଯେତେ ଚମତ୍କାର ହେଲେହେଁ ଅନ୍ୟର ଅନୁକରଣ, 'ସୃଷ୍ଟି' ବୋଲି କୁହାଯିବନି କି ତାହା କୌଣସିପ୍ରକାର ହେଲେ ଗୌରବାବହ ମଧ ନୁହେଁ । କେବଳ ଅନନ୍ୟ ସ୍ରଷ୍ଟାହିଁ ଗୌରବର ଅଧିକାରୀ । ଐତିହାସିକ ଓଡ଼ିଆ ଦିନେ ଏହି ପ୍ରକାର ଅନନ୍ୟତା ନିଜର ପ୍ରତି କାର୍ଯ୍ୟରେ ଫୁଟାଇପାରିଥିଲା । ଶିଳ୍ପରେ ଯେପରି, ସାହିତ୍ୟରେ ଯେପରି, ନୃତ୍ୟ ଓ ସଙ୍ଗୀତରେ ଯେପରି, ସେହିପରି ମଧ ଓଡ଼ିଆମାନଙ୍କର ଲୁଗାପିନ୍ଧା, ଘରଦ୍ୱାର, ପିଠାପଣା ଓ ଦୈନନ୍ଦିନ ଖାଦ୍ୟରେ ଦିନେ ସମ୍ପୂର୍ଣ୍ଣ ବୈଶିଷ୍ଟ୍ୟ ଓ ନିଜତ୍ୱ ସ୍ପଷ୍ଟ ବିରାଜମାନ ଥିଲା । ଶିଳ୍ପ-ସ୍ଥାପତ୍ୟ-ସାହିତ୍ୟ ପରି ସଙ୍ଗୀତ ଓ ନୃତ୍ୟରେ ମଧ ନିଜର ସ୍ୱତନ୍ତ୍ର ଶୈଳୀ ଓଡ଼ିଆଏ ଠିଆ କରେଇଥିଲେ । ବଙ୍ଗଦେଶରେ ପ୍ରକାଶିତ ଓ ଖୁବ୍ ସମ୍ଭବତଃ ବଙ୍ଗାଳୀ ସମାଲୋଚକର ଲେଖନୀ-ନିଃସୃତ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତର ଉଚ୍ଛ୍ୱସିତ ପ୍ରଶଂସା ପଢ଼ି ଶିକ୍ଷିତ ଓଡ଼ିଆ ପାଠକେ ଏ ଦିଗରେ କିଛି ଚିନ୍ତା କରିବେ ବୋଲି ଆଶାକରି ନିମ୍ନର କଟିଙ୍ଗ୍‌ଟି ଦେଇଦେଉଛି । ଏ ଗୌରବ ପ୍ରତିବେଶୀଙ୍କର ଅଛି କି ? ତେବେ ଆଜି ନିଜର ସକଳ ସ୍ୱତନ୍ତତାକୁ ଅନାୟାସରେ ଜଳାଞ୍ଜଳି ଦେଇ ତାଙ୍କରି ଅନୁକରଣ ଓ ତାଙ୍କଠୁ ଚୋରିରେ ନିଜର ସାର୍ଥକତା ଖୋଜୁଛି କାହିଁକି, ହେ ଉତ୍କଳବାସୀ ? ଇୟେ କି ମୂଢ଼ତା, ଏହା ବିଚାରି ଦେଖ, ଭାଇ । ୨୫ ବର୍ଷ ତଳେ ୧୯୩୯ ଡିସେମ୍ବର 'ରେଭେନ୍‌ସେଭିଆନ୍'ରେ ସେହି ବର୍ଷର ରେଭେନ୍ସା କଲେଜର ବିନୋଦନ ଇତ୍ୟାଦିର ସମାଲୋଚନା କରି ବ୍ରଜ ନାମକ ଏକ ଛାତ୍ର ଯେଉଁ ନାଚ ନାଚିଥିଲା ତାକୁ 'ଓଡ଼ିଶୀ' ନାଚ କହି ତା'ର ଉଚ୍ଛ୍ୱସିତ ପ୍ରଶଂସା ଏହି ଲେଖକ କରିଥିଲା । ସେଦିନ 'ଓଡ଼ିଶୀ'ର ନାମହିଁ କେହି ଉଚ୍ଚାରଣ କରୁନଥିଲେ, ଏ ଦେଶରେ । ଯାହାହେଉ ସେହି କଳା ଆଜି ଯେ, ଜାତିକୁ ଖ୍ୟାତି ଆଣୁଛି, ତାହାହିଁ ଏ ଲେଖକ ପକ୍ଷରେ ପରମ ସନ୍ତୋଷର କଥା ।

## A Captivating Dancer

*(By Our Dance-Critic)*

There was something in Ritha Devi's recital in aid of YWCA charities at the Hindi High School, Calcutta, on Saturday, that we miss even in the performances of some of the best exponents gave enough evidence of her technical resources in a programme of dances of Tamilnad, Malabar, Andhra and Orissa, preceded by lecture-demonstrations on the theory of each style, its emotional narrative and descriptive elements, distinct gestures, eye, neck and hand-movements and footwork.

What was most impressive was her serious effort to maintain the purity and character of each form without mixing up elements of one with the other. This was particularly noticeable in her presentation of *Orissi numbers.* Even a decade ago the world knew nothing of this system of dancing. Even in Orissa, few were aware of its existence. After its revival there was a tendency among some dancers to demonstrate it in a way that gave the impression that it had been directly influenced by Bharat Natyam. They seemed to forget that these dance poses are lavishly illustrated in the Rajarani Temple of Bhubaneswar and the Sun Temple of Konarka. *Its basic theory and musical and rhythmic patterns are completely different from those of other dance styles.* Her recital revealed her ability to bring out the seductive charm of Orissi through rounded, liquid movements and tribhanga (thrice broken) postures. These items were also distinguished musically. (Statesman, 12th October, 1964)

କିନ୍ତୁ ଆଜି କାହିଁ ? ଆଜି ଓଡ଼ିଆ ଭାଷା ଓ ସାହିତ୍ୟର ସ୍ୱକୀୟ ଧର୍ମ ଓ ଚରିତ୍ର ଭ୍ରଷ୍ଟ ହେବା ସଙ୍ଗେ ସଙ୍ଗେ ଐତିହାସିକ ଓଡ଼ିଆ ଜାତିର ସମଗ୍ର ଜାତୀୟ ଜୀବନର ସକଳ ନିଜସ୍ୱ ଚରିତ୍ର ମଧ ଭ୍ରଷ୍ଟ ହୋଇଯାଇଛି ।

ଆଜିକୁ ପ୍ରାୟ ଶହେ ବର୍ଷ ତଳେ ଐତିହାସିକ ଓ ଭାଷାତତ୍ତ୍ୱବିତ୍ ସୁପଣ୍ଡିତ ଜନ୍ ବୀମ୍ସ୍ ଓଡ଼ିଶାର ବଙ୍ଗଳାଠାରୁ ଉଭୟ ଭିନ୍ନତା ଓ ଅଗ୍ରଗାମିତ୍ୱକୁ ଏହିପରି ସ୍ପଷ୍ଟଭାବରେ କହିଯାଇଥିଲେ ।

"Numerous as are the allusions in early Oriya history to the Northwestern and Western parts of India and frequent as were their expeditions to the South, it is remarkable that there is nowhere, in all their annals, more than an obscure, occasional mention of Bengal, and then as a far-off, inaccessible place. The similarity between languages is not by any means so great as some Bengali writers have sought to make out." (The History of Orissa under Mahommedan, Maratha and English Rule.) (ପ୍ରଥମ ପୃଷ୍ଠା)

ପ୍ରତ୍ୟେକ ଓଡ଼ିଆ ଏହା ଉପରେ କିଛି ଚିନ୍ତା କରିବାର ଆଶା କରିବା କି ? ପୁଣି ସେହି ପୃଷ୍ଠାର ଅନ୍ୟତ୍ର ଅଛି –

"Their (Oriya's) language was already formed as we have it now, at a period when Bengali had not yet attained a separate existence and the deltaic portion of Bengal was still almost uninhabited. So that they could not have sprung from Begalees, simlpy because there were then no Bengalees to spring from."

ବିଦେଶୀ ପଣ୍ଡିତ ଜନ୍ ବୀମ୍‌ସ ଓଡ଼ିଶାର ଭାଷା, ଜାତୀୟଜୀବନ ଓ ସଂସ୍କୃତି ବଙ୍ଗଳାଠାରୁ ଏପରି ସ୍ୱତନ୍ତ୍ର ଓ ଅନନ୍ୟ ବୋଲି ଆଜିକୁ ଶହେ ବର୍ଷ ତଳେ ଦେଖିପାରିଥିଲେ ମଧ୍ୟ, 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ' ବୋଲି କୌଣସି କୌଣସି ବଙ୍ଗାଳୀ ପଣ୍ଡିତେ ଠିକ୍ ସେହି କାଳରେ ଅଭିସନ୍ଧିମୂଳକ ଭାବରେ ଯାହା କହିବସିଥିଲେ, ଏବେ ଦେଖାଯାଉଛି ଯେ, ଆମର ଆଧୁନିକ ଓଡ଼ିଆ କବିଗଣ ଠିକ୍ ସେହି ମାତୃଦ୍ରୋହୀ ବାକ୍ୟ ଅକୁଣ୍ଠ ନିର୍ଲଜ୍ଜତାରେ ନିଜର ଚୋରି ଘୋଡ଼େଇବାପାଇଁ କହିଥାନ୍ତି ? 'ଏକା ସଂସ୍କୃତ ଶବ୍ଦ ତ, ବଙ୍ଗଳାରୁ ଚୋରି ବୋଲି କାହିଁକି କୁହାଯିବ ?' ଏହା ଯେ କହନ୍ତି ସେ ଭଲ କରିନାହିଁ, ଜାଣିଛନ୍ତି ବୋଧହୁଏ ସଂସ୍କୃତ, ନାହିଁ ଓଡ଼ିଆ, ନାହିଁ ବା ବଙ୍ଗଳା । ବଙ୍ଗଳାଠୁ ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ କି ନା, ନୀଳକଣ୍ଠଙ୍କ 'କୋଣାର୍କେ' ବା ସେନାପତିଙ୍କ 'ଛମାଣ ଆଠଗୁଣ୍ଠ' ବଡ଼ପାଟିକରି ପଢ଼ାଯାଉ । ତା' ସାଥିରେ ଓଡ଼ିଶାର ଅଧିକାଂଶ ତଥାକଥିତ 'ପ୍ରଗତିଶୀଳ' ବା 'ଆଧୁନିକ' କବି ଓ ଗାଳ୍ପିକଙ୍କ ରଚନାକୁ ବଙ୍ଗଳା ସହିତ ମିଶାଇ ଦେଖ ଓ ହୃଦ୍‌ବୋଧକୁ ଆଣ ଯେ ତାହା କାହାର ଚୋରି ନା ଜୁଆଚୋରି, ନା ଛାୟା, ନା ଅନୁକରଣ ନା ଖାଣ୍ଟି ଓଡ଼ିଆ ଭାଷା । ବିଦେଶୀ ପଣ୍ଡିତେ ବଙ୍ଗଳା-ଓଡ଼ିଆର ଆପାତ ସାମ୍ୟ ଭିତରୁ ନିଃସନ୍ଦେହ ଅନନ୍ୟତା ଓ ଶ୍ରେଷ୍ଠତା ଆବିଷ୍କାର କଲାବେଳେ, ସ୍ୱୟଂ ଉତ୍କଳର ଯୋଗ୍ୟ ସୁପୁତ୍ରେ ନିଜ ମାତୃଭାଷା ଓ ପ୍ରତିବେଶୀର ଭାଷା କିପରି ଏକ ଓ ଅଭିନ୍ନ ତାହା ପ୍ରମାଣ କରିବାକୁ ଆଗଭର । ଆମେ ଓ ପ୍ରତିବେଶୀ ଯଦି ଏପରି ସମାନ ଓ ପ୍ରତିବେଶୀ ପ୍ରତି ଯଦି ଏପରି ଗଦ୍‌ଗଦ ପ୍ରୀତି, ତେବେ ଭାଷାର ଭିନ୍ନତା ଭିତ୍ତିରେ ଅଲଗା ପ୍ରଦେଶ କାହିଁକି ଚାହିଁଲ ?

ଟି.ଏସ୍. ଇଲିୟଟ୍ ଇଂରାଜୀ ସାହିତ୍ୟରେ ନୂତନ ଧରଣର କବିତା ଲେଖିଗଲେ । କିନ୍ତୁ ସେ କେବଳ ନିଜ ଭାଷା ଇଂରାଜୀ ନୁହେଁ, ସଂସ୍କୃତ ସହିତ ଅନ୍ୟ ବହୁ ଭାଷାରେ ସୁପଣ୍ଡିତ ଥିଲେ । ତାଙ୍କର 'ଓୟେଷ୍ଟ୍ ଲାଣ୍ଡ'ରେ ଉପନିଷଦର ଏପରି ଅଂଶ ସବୁ ଉଦ୍ଧୃତ ହୋଇଛି, ଯାହାର ଲୌକିକ ତାତ୍ପର୍ଯ୍ୟ ଅଧିକାଂଶ ଭାରତୀୟଙ୍କ ନିକଟରେ ମଧ୍ୟ ସମ୍ପୂର୍ଣ୍ଣ ଅଜ୍ଞାତ । ଓଡ଼ିଶାର କେତେଜଣ ଆଧୁନିକ କବିଙ୍କ ଲେଖାରେ କିନ୍ତୁ ନିଜ ଦେଶର ଇତିହାସ ଓ ସାହିତ୍ୟର ଅଜ୍ଞାତ-ଅବଜ୍ଞାତ କୋଣରୁ ଅଜ୍ଞାତ-ଅବଜ୍ଞାତ ରତ୍ନ ଉଦ୍ଧୃତ ହେବାର ଦେଖୁଁ ? ନିଜ ଭାଷା, ନିଜ ସାହିତ୍ୟ ନିଜ ଜାତିର ଇତିହାସ ମାଲୁମ୍ ନାହିଁ, କେବଳ ପ୍ରତିବେଶୀଙ୍କ ପୋଷା ଶୁକପକ୍ଷୀ ହୋଇ ଯାହା ଉଚ୍ଚାରଣ କରିଚାଲିଲ, ତାକୁଇ ନେଇ ଓଡ଼ିଆ ସାହିତ୍ୟରେ ଯୁଗାନ୍ତର ସୃଷ୍ଟି ? କୌଣସି ଦେଶ ଓ ଜାତିର ଯୁଗାନ୍ତର, ତା'ର ନିଜ ମାଟି ଓ ଇତିହାସ ଓ ପରମ୍ପରାକୁ ପୂରା ବିଚ୍ଛିନ୍ନ ହୋଇ ନ ପାରେ । ଇଂରେଜୀ ସାହିତ୍ୟର ପରମ୍ପରାରେ, ସେକ୍ସପିୟର ଓ ଇଲିୟଟ୍ ନିଜ ନିଜ ବହିଃପ୍ରକାଶର

ଏତେ ଭିନ୍ନତା ସତ୍ତ୍ୱେ, ପରସ୍ପରକୁ ସମୃଦ୍ଧ ମନେକରିପାରନ୍ତି, କିନ୍ତୁ ଆଧୁନିକ ଓଡ଼ିଆ କବି, ଭଞ୍ଜଙ୍କ ପରିବାରର ନ ହୋଇ ବୁଦ୍ଧଦେବ ବସୁ ବା ପ୍ରେମେନ୍ଦ୍ର ମିତ୍ରଙ୍କ ଗୋଷ୍ଠୀଭୁକ୍ତ ହେଲେ ପରମ କୃତକୃତ୍ୟ ! ଏହାହିଁ ଏ ଦେଶର ପ୍ରଗତି ! ଅଗତି ବା ଦୁର୍ଗତି ତେବେ କାହାକୁ କହିବା ? ଇଂଲାଣ୍ଡର ଇତିହାସର ପ୍ରସିଦ୍ଧ ଘଟଣା ଟମାସ୍ ବେକେଟ୍‌ଙ୍କର ହତ୍ୟାକାଣ୍ଡକୁ ନେଇ, ଇଲିୟଟ୍ ପ୍ରସିଦ୍ଧ ନାଟକ(ମଡ଼ର୍ ଇନ୍ ଦି' କାଥିଡ୍ରାଲ୍) ଲେଖିଛନ୍ତି ଓ ତାହା ମଧ୍ୟ ସୁବୋଧ ପଦ୍ୟରେ । କିନ୍ତୁ ଆମ ଦେଶରେ ପ୍ରଗତିଶୀଳତାର ଚିହ୍ନ ହେଲା ଏହି ଯେ, ନିଜ ମାଟି, ନିଜ ଇତିହାସ ଓ ପରମ୍ପରାକୁ ଚିମୁଟାରେ ମଧ୍ୟ ଛୁଇଁବାକୁ ନଯିବା ଓ କେବଳ ସେହି ଦୁଃସାହସିକ କର୍ମଯୋଗୁଁ ଆନ୍ତର୍ଜାତିକ ଖ୍ୟାତିପାଇଁ ସ୍ପର୍ଦ୍ଧା ରଖିବା !

ଇଂଲାଣ୍ଡର ଭାଷାପରି ଯୁକ୍ତରାଷ୍ଟ୍ର ଆମେରିକାର ଭାଷା ମଧ୍ୟ ଇଂରାଜୀ । କିନ୍ତୁ ସ୍ୱାଧୀନଚେତା ଆଙ୍ଗ୍ଲୋସାକ୍ସନ୍ ଏକ ମାତୃଭାଷା ସତ୍ତ୍ୱେ ନିଜର ମାତୃଭୂମି ଇଂଲାଣ୍ଡଠାରୁ ରାଜନୈତିକ ସ୍ୱାଧୀନତା ଚାହିଲା । ଆମେରିକାନ୍, ନିଜର ରକ୍ତ ଦେଇ ତାହା ଜିଣିବାର କାହାଣୀ ବିଶ୍ୱ ଇତିହାସର ବିଖ୍ୟାତ ଘଟଣା । ସେହି ସ୍ୱାଧୀନଚେତା ଜାତିର ଅଧିକ ବିସ୍ମୟକର ପ୍ରତୀକ ହେଉଛି, ଏକ ଭାଷା ଇଂରେଜୀ ଥିବା ସତ୍ତ୍ୱେ, ବିଶ୍ୱରେ ଏକ ସ୍ୱତନ୍ତ୍ର 'ଯୁକ୍ତରାଷ୍ଟ୍ରୀୟ ଇଂରେଜୀ' ଓ 'ଯୁକ୍ତରାଷ୍ଟ୍ରୀୟ ସାହିତ୍ୟ' ଠିଆକରେଇବା । ଜନୈକ ଆମେରିକାନ୍ ବନ୍ଧୁ, 'ଯୁକ୍ତରାଷ୍ଟ୍ରର ସାହିତ୍ୟିକ ଇତିହାସ' ବୋଲି ଖଣ୍ଡେ ଚମତ୍କାର-ଲିଖିତ ବିରାଟଗ୍ରନ୍ଥ ଉପହାର ଦେଇଯାଇଛନ୍ତି । ସେଥିରେ ଦେଖୁଁ ଯେ ଇଂଲାଣ୍ଡୀୟ ଇଂରେଜୀ-ସାହିତ୍ୟର ନାମଗନ୍ଧ ନାହିଁ । ଏକା ଭାଷା ଥିଲେ ହେଁ ଆମେରିକାନ୍, ଇଂଲାଣ୍ଡର ସାହିତ୍ୟକୁ ନିଜ ସାହିତ୍ୟ ମନେ ନ କରି, ନିଜ ମାଟିର ସାହିତ୍ୟକୁ ସ୍ୱତନ୍ତ୍ରତା ଦେଲାବେଳେ, ଅଧୁନା-ପ୍ରଭାବଶାଳୀ ପ୍ରତିବେଶୀକୁ ଖୁସିକରେଇବାପାଇଁ ଓଡ଼ିଆ ଭାଷାର ଲେଖକାଗ୍ରଣୀ ପ୍ରତିବେଶୀ-ସାହିତ୍ୟ-ସଭାରେ ଉଦ୍‌ବୋଧନ ଶୁଣାଇପାରନ୍ତି, ଏହା କହି ଯେ–'ବଡ଼ ଭାଇଏ (ତମେ ଆମ ଭାଷାକୁ ଚିମୁଟାରେ ସ୍ପର୍ଶ ନକର ପଛେ), ଆମ ଦେଶରେ ପ୍ରତ୍ୟେକ ଆମେ ତମ ଭାଷା ଓ ସାହିତ୍ୟ ପଢ଼ି ପଢ଼ି କୃତକୃତ୍ୟ ହେଉଛୁ !'

କି ଉତ୍ତର ଦେବ ୟାର, ମନୁଷ୍ୟ ? କାହାକୁ କହିବା, କପାଳରେ ସିନା କର ମାରିବା ?

ଆଜି ଓଡ଼ିଶୀ ଜାତୀୟତାର ପ୍ରତିନିଧି-ସ୍ଥାନୀୟ ପତ୍ରିକା ମଧ୍ୟ ଓଡ଼ିଆ ଶବ୍ଦ 'ମିଶା'କୁ ଭୁଲି ଅବାଧରେ 'ଭେଜାଲ୍' ଓ 'ମଗର' ପରିବର୍ତ୍ତରେ ଖାଣ୍ଟି ବଙ୍ଗଳା ଶବ୍ଦ 'ହାଙ୍ଗର' ବ୍ୟବହାର କରୁଛି ଓ ଅମ୍ଳାନ ବଦନରେ ବିଜ୍ଞାପନ ଦେଉଛି–''ଏ ସାବୁନ ବ୍ୟବହାର କଲେ ଆପଣଙ୍କ ପୋଷାକ ବହୁଦିନ 'ଟେକିବ' । ଓଡ଼ିଶାର ତଥାକଥିତ ଅଗ୍ରଗାମୀ ଜାତୀୟତାବାଦୀ ପତ୍ରିକାର ଏପ୍ରକାର 'ଅଫୁରନ୍ତ' ଉତ୍ସାହ ଦେଖି ଆମେ ଆଜି 'ସଜାଗ' ଥିଲେ ମଧ୍ୟ ଅତିଷ୍ଠ ବୋଧ ନକରି ରହିପାରୁନାହିଁ । କିନ୍ତୁ କାହା ଆଗରେ ଦୁଃଖ କହିବା ? ଅଧା-ବଙ୍ଗଳା କୀର୍ତ୍ତନ ଶୁଣାଇ କଟକ ରେଡ଼ିଓ ଆତ୍ମତୁଷ୍ଟ ଓ ପ୍ରାୟ-ବଙ୍ଗଳା ଆଧୁନିକ-କବିତା-ଓ-ଗୀତ ଶୁଣେଇ ଆମର ଲେଖକବର୍ଗ ଆତ୍ମପ୍ରସନ୍ନ । ଉତ୍କଳର ହୃତ୍‌ପିଣ୍ଡ କଟକ ନଗରର ମାଟିରେ ଠିଆହୋଇହିଁ ତଥାକଥିତ ଓଡ଼ିଆ ଜନନାୟକ ବଙ୍ଗଳାରେ ବକ୍ତୃତା ଦେଇ କୃତକୃତ୍ୟତା ଅନୁଭବ କରିପାରନ୍ତି ଓ ଯେକୌଣସି ଓଡ଼ିଆବକ୍ତା ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁଙ୍କ ଅପାଂକ୍ତେୟ ନାମ ଉଚ୍ଚାରଣ ନ କରି, ଦି'ଚାରିଟା

ବଙ୍ଗଳା କ୍ରେଟେସନ୍ ଝାଡ଼ି ନିଜର ପାଣ୍ଡିତ୍ୟ ସାବ୍ୟସ୍ତ କରିଥାନ୍ତି । କିନ୍ତୁ ବସ୍ତୁତଃ ଏସବୁ କେବଳ ଅଧଃପତନରହିଁ ସ୍ୱାଭାବିକ ପ୍ରବୃତ୍ତି ଓ ଲକ୍ଷଣ । ଅଧଃପତିତ ଲୋକ ତା'ର ଅକର୍ମକୁହିଁ ସୁକର୍ମ ବୋଲି ଭାବିଥାଏ । ତା' ନହେଲେ ଶିକ୍ଷିତ ଓଡ଼ିଆଏ ଅନଙ୍ଗ, ଉପେନ୍ଦ୍ର, ଚନ୍ଦ୍ରଭାନୁ, ବାଞ୍ଛାନିଧି, ଭାବଗ୍ରାହୀ ପ୍ରଭୃତି ସୁନ୍ଦର ଓଡ଼ିଆ ନାଁ ପରିବର୍ତ୍ତରେ ନିଜର ପିଲାଙ୍କୁ ରାଖାଲ୍, ସୁରେଶ୍, ରମେଶ୍, ହରିଶ୍, ମନୋଜ୍ ଇତ୍ୟାଦି ବଙ୍ଗାଳିଆ ନାଁ ଦେଇ ନିଜକୁ କୃତକୃତ୍ୟ ମନେକରନ୍ତେ କିପରି ? ଇତିମଧ୍ୟରେ ଏହି ସମ୍ପର୍କରେ ଏକ ଦୁଃଖାତ୍ମକ ଘଟଣା ମୋ ନିଜ ପରିବାରରେ ଘଟିଯାଇଛି । କୌଣସି ମୂର୍ଖ ଗ୍ରାମ୍ୟ ଶିକ୍ଷକର ଅଜ୍ଞ ଉପଦେଶ ଯୋଗୁଁ ମୋର ଏକ ପୁତୁରା ନାମ ଧାରଣ କରିଛି 'ରବୀନ୍ଦ୍ରନାଥ' ? କିନ୍ତୁ ସେ ପିଲା ପାଠ ପ୍ରତି ଉତ୍ସାହ ନଦେଖାଇ ଦେଖାଇଲା କୌଳିକ ବିଲବାଡ଼ି-କାମ ପ୍ରତି । ବର୍ତ୍ତମାନ ରବୀନ୍ଦ୍ରନାଥ ପଢ଼ା ଛାଡ଼ି ହଳର ବୁଲାଉଛନ୍ତି, କିନ୍ତୁ ଯାହାହେଉ ନିଜ ଜମିରେ । କିନ୍ତୁ ମୋର ବିଶ୍ୱାସ ଓଡ଼ିଆମାନେ ନିଜ ଭାଷା, ସାହିତ୍ୟ, ସଂସ୍କୃତି ଓ ଜାତୀୟତା ଭୁଲିଯାଇ ସବୁଥିରେ ପ୍ରତିବେଶୀର ଇତର ଅନୁକରଣ କରି ଚାଲିଲେ, ଲେଖକର ପୁତୁରା ରବୀନ୍ଦ୍ରନାଥ ନାମ ଧାରଣକରି ମଧ୍ୟ ଅ-ଅ-ଟି-ଟି କଲାପରି, ସେମାନେ ବି କେବଳ ହଳ ବୁଲାଉଥିବେ, କିନ୍ତୁ ପୁତୁରାପରି ନିଜ ଜମିରେ ନିଜପାଇଁ ନୁହେଁ, ନିଜ ଜମିରେ, ପରପାଇଁ ।

ଲେଖକ ଭାରତବର୍ଷର ପ୍ରାୟ ସର୍ବାଞ୍ଚଳ ଦେଖିଛି । ପ୍ରତ୍ୟେକ ଅଞ୍ଚଳରେ, ସେହି ସେହି ଅଞ୍ଚଳର ନିଜସ୍ୱ ଖାଦ୍ୟ ସହିତ ସେ ପରିଚିତ ହୋଇ ଆସିଛି । କିନ୍ତୁ ନିଜ ଦେଶ ଓଡ଼ିଶାରେ ସେ ଖାଣ୍ଟି ଓଡ଼ିଆ-ଖାଦ୍ୟ ଖାଇବାକୁ ପାଏ କି ? ଏ ରାଜ୍ୟରେ ମନ୍ତ୍ରୀଙ୍କ ଘରକୁ ଯାଅ, ଭାଇସ୍-ଚାନସଲ୍‌ରଙ୍କ ଘରକୁ ଯାଅ ବା ସାଧାରଣ କିରାଣିର ଘରକୁ ଯାଅ, ସର୍ବତ୍ର ଲଜ୍ଜାହୀନ ଓ ବିଚାରହୀନଭାବରେ ପ୍ରତିବେଶୀ ଜାତିର ଖାଦ୍ୟର ବିକୃତ ଅନୁକରଣ ହିଁ ତମକୁ ପରଷାଯିବ । ଓଡ଼ିଆ ଖାଦ୍ୟ ତିଆରିବା ଓଡ଼ିଆଣୀ ମଧ୍ୟ ଭୁଲିଗଲେଣି ଓ ଯେଉଁଠି ବା ଜଣାଅଛି, ସେଠି ପରଷିବାକୁ ଲାଜ, କାଳେ କିଏ ଅସଭ୍ୟ କହିଦେବ । ଲେଖକ, ଏଡୁକେଶନାଲ୍ ଆଡ଼ଭାଇଜର୍ ଭାବରେ ଥରେ ଢେଙ୍କାନାଳ ଯାଇଥିଲାବେଳେ ଉତ୍କଳର ପୂର୍ବତନମନ୍ତ୍ରୀ ଓ ନେତା ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ସେ ରାଜ୍ୟର ଦେୱାନ ଥିଲେ । ସେ ଦେୱାନ, ସେ ଆଡ଼ଭାଇଜର୍ ସାହେବ ପାଇଁ କି ମହାର୍ଘ ଭେଟି ପଠାଇଥିଲେ, ପାଠକେ ଅନୁମାନ କରିପାରିବେ ? ସନ୍ଦେଶ-ରସଗୋଲା ବା କୁର୍ମା-ପଲାଉ ନୁହେଁ,—ମାତ୍ର ତାଟିଆଏ ଗଞ୍ଜାମୀ କାଞ୍ଜି । କେତେ ତ ବାଙ୍କ୍ୱେଟ ଜୀବନରେ ଖିଆଗଲା, ସେ ସବୁ ମନେନାହିଁ । ମନରୁ ଯାଇନି କିନ୍ତୁ ଜଣେ ଦେୱାନ୍ ଦେଇଥିବା ସେହି ଗିନାକ କାଞ୍ଜି, ଯାହା ଓଡ଼ିଆର ନିଜସ୍ୱ ଓ ସ୍ୱାସ୍ଥ୍ୟପ୍ରଦ ଭୋଜ୍ୟ ଓ ପେୟ । ଦକ୍ଷିଣୀଏ ଆମ ଚକ୍ଳା, ସରୁ ଚକୁଳି(ଦୋସୀ) ଓ ଏଣ୍ଡୁରିପିଠା (ଇଡ଼ଲି)କୁ ଆନ୍ତର୍ଜାତିକ ଖ୍ୟାତି ଦେଇପାରିଲେ, ବଙ୍ଗାଳୀ ଦେଇପାରିଲେ ତାଙ୍କର ସନ୍ଦେଶ ଓ ରସଗୋଲାକୁ, କିନ୍ତୁ ନିଜ ଜାତୀୟତା-ଘେନି-କୁଣ୍ଠିତ-ଲଜ୍ଜିତ ଓଡ଼ିଆ ନିଜର ଆରିସାପିଠାକୁ ଭୁଲିଗଲା । ଅଥଚ ସାମାନ୍ୟ ପରିବର୍ତ୍ତନରେ ଏହି ଆରିସା ପିଠା ସମଗ୍ର ଭାରତରେ କେକ୍‌ର ସ୍ଥାନ ଅଧିକାର କରିଥାନ୍ତା ବୋଲି ମୋର ଦୃଢ଼ ବିଶ୍ୱାସ । ଆରିସା ପରି ଜଗନ୍ନାଥ ମନ୍ଦିର ଓ ସମଗ୍ର ଉତ୍କଳର ନିଜସ୍ୱ ବହୁ ମିଷ୍ଟାନ୍ନ

ପ୍ରତିବେଶୀମାନଙ୍କର ଖାଦ୍ୟ ବା ମିଷ୍ଟାନ୍ନ ପରି ବିଶ୍ୱଖ୍ୟାତି ପାଇବାର ଯୋଗ୍ୟ । କେବଳ ଓଡ଼ିଆମାନଙ୍କର ଜାତୀୟତା ଅଭାବରୁହିଁ ଏହା ସମ୍ଭବ ହେଉନାହିଁ । ପୂର୍ବେ ଆମ ଗାଁମାନଙ୍କରେ ଅତିଥି ପହଞ୍ଚିଗଲେ, ଚୂଡ଼ା, ଚୂଡ଼ାଭଜା, କୋରା-ନଡ଼ିଆ, ଘିଅ, କଦଳୀ ମିଶାଇ ଅତି ଉତ୍କୃଷ୍ଟ ଚକଟା ଦିଆଯାଉଥିଲା, ଥାଳି, ଖଲି ବା କଦଳୀପତ୍ରରେ । ଏ ଖାଦ୍ୟ କେବଳ ତୃପ୍ତିକର ନୁହେଁ, ଖାଦ୍ୟ ଭାବରେ ମଧ ଅସାଧାରଣ ସୁଷମ ଓ ବୈଜ୍ଞାନିକ । ଚୂଡ଼ାରେ ରହିଲା କାର୍ବୋହାଇଡ୍ରେଟ୍ସ, ଘିଅରେ ରହିଲା ଚର୍ବି, ନଡ଼ିଆରେ ରହିଲା ପ୍ରୋଟିନ୍ ଓ କଦଳୀରେ ମିଳିଲା ଭିଟାମିନ୍ । ଏଇ ପ୍ରକାର ପ୍ରାକୃତିକ ଓ ସ୍ୱାସ୍ଥ୍ୟପ୍ରଦ ଖାଦ୍ୟ ଖାଇ ନା ପ୍ରାଚୀନ ଓଡ଼ିଆମାନେ ବିରାଟ କୀର୍ତ୍ତି ସବୁ ତୋଳିଥିଲେ ? କିନ୍ତୁ ଆଜି ସେଇ ଗାଁମାନଙ୍କୁ ଯାଅ – ତମେ ସେଠାରେ ଅଭ୍ୟର୍ଥିତ ହେବ (ଥାଳିରେ ଦେବାକୁ ଲଜ୍ଜିତ ହୋଇ) ଭଙ୍ଗା ଚିନା ପ୍ଲେଟ୍‌ରେ ବଢ଼ାହୋଇଥିବା ଡାଲଦା-ଭଜା ଲୁଚି ଓ ବିଲାତି ଆଳୁର ଚଡ଼ଚଡ଼ି ଓ ବେଣ୍ଟ ନଥିବା ଏକ ଚିନାମାଟି କପ୍‌ରେ ଚା । କି ଅଧଃପତନ, କି ଜାତୀୟ ଚରିତ୍ର-ଭ୍ରଂଶ ଯେ ଘଟିଛି, ତାହା ଓଡ଼ିଆମାନେ, ବିଶେଷକରି ଶିକ୍ଷିତ ଓଡ଼ିଆମାନେ, ଦୟାକରି ଚିନ୍ତାକରନ୍ତୁ ।

ଜଗନ୍ନାଥଙ୍କ ଦେଉଳ ଓଡ଼ିଆ ଜାତୀୟତାର ଓ ସଭ୍ୟତାର କେନ୍ଦ୍ରବିନ୍ଦୁ । ସେଇଠି ସ୍ୱୟଂ ଲକ୍ଷ୍ମୀ ଠାକୁରାଣୀ ରୋଷେଇଘର ତଦାରଖ କରନ୍ତି ଓ ସୁଆରମାନେ ଅନ୍ୟ ଯାହା ଘିଅ-ଭାତ, ପିଠାପଣା, ଖିରି-ଖେଚଡ଼ି ରାନ୍ଧିଥାନ୍ତୁ ପଛେ, ବିଶ୍ୱର ଠାକୁରାଣୀ ନିଜ ହାତରେ ତିଆରି ଜଗତର ନାଥଙ୍କୁ ଶେଷରେ ଖୁଆଇଥାନ୍ତି ଦରିଦ୍ରତମ ଓଡ଼ିଆର ପ୍ରିୟ ଭୋଜ୍ୟ,କୁଣ୍ଡାପିଠା । ଇକ୍‌ମିକ୍‌ର ଉଦ୍ଭାବକ ଇନ୍ଦୁମାଧବ ମଲ୍ଲିକ ପୁରୀ ଦେଉଳର ମହାପ୍ରସାଦ ଖାଇ ଡିସ୍‌ପେପ୍‌ସିଆ ରୋଗରୁ ମୁକ୍ତହେଲା ପରେ, କାରଣ ଅନୁସନ୍ଧାନ କରି କରି ପୁରୀ ଦେଉଳର ଅନନ୍ୟସାଧାରଣ ରନ୍ଧନ ପ୍ରଣାଳୀ ଓ ଭୋଜ୍ୟ ବ୍ୟବସ୍ଥା ଦେଖି ଇକ୍‌ମିକ୍ ଉଦ୍ଭାବନରେ ଲାଗିଲେ ବୋଲି କୁହାଯାଏ । ଓଡ଼ିଆମାନେ ତାଙ୍କ ଜାତିର ଏହି ମହାନ୍ ଆଦର୍ଶ ଓ ବ୍ୟବସ୍ଥା ସବୁକୁ ସ୍ମରଣ ଓ ବିଚାରକୁ ହେଲେ ଆଣିବେନାହିଁ କି ? ଓଡ଼ିଶାର ସେହି ସ୍ୱର୍ଣ୍ଣ ଯୁଗରେ ଓଡ଼ିଆ ଜାତିର ବଳିଷ୍ଠ ଚିନ୍ତା-ନାୟକ ଓ ଜାତି-ସଂଗଠକଗଣ ଯେଉଁ ଦେଶ ଓ ଯେଉଁ କାଳରେ ଘିଅ-ଦୁଧ ଭାସୁଥିଲା, ସେଠି କୁଣ୍ଡାପିଠାକୁ ମଧ ଜଗତର ନାଥଙ୍କ ମେନ୍ୟୁ (ଖାଦ୍ୟ ତାଲିକା)ରେ କାହିଁକି ପୂରାଇଥିଲେ ? ଜାତି ପ୍ରତି କ'ଣ ଏହାର କୌଣସି ବ୍ୟଞ୍ଜନା ନାହିଁ ?

ମୋର ଐତିହାସିକ ଜାତିର ପ୍ରାଚୀନ, ସ୍ୱାସ୍ଥ୍ୟକର ଓ ସୁଦୃଢ଼ ଐତିହ୍ୟକୁ କୌଣସିମତେ ବଞ୍ଚାଇରଖିବା ଏ ଲେଖକର ଏକ ପରମ ସ୍ୱପ୍ନ ଓ ଚେଷ୍ଟା ହୋଇଆସିଛି । କେବଳ ସେହି କାରଣରୁହିଁ ସେ ଓଡ଼ିଆ ଭାଷା ଓ ସାହିତ୍ୟରେ ବଙ୍ଗାଳୀ ଅନୁକରଣ ବିରୋଧରେ ଛାତ୍ର ଥିଲାବେଳରୁ ହିଁ ଯେପରି ଲେଖନୀ ଚାଳନା କରିଆସିଛି ସେହିପରି ମଧ ପ୍ରଚାର କରିଆସିଛି ଓଡ଼ିଆମାନଙ୍କ ଦୈନନ୍ଦିନ ଆଚାର-ବିହାରରେ ଓଡ଼ିଆତ୍ୱ । ସ୍ୱକୀୟତାହିଁ ଜାତୀୟତା । ଆହରଣ ତ ଜୀବନର ଅପରିହାର୍ଯ୍ୟ ନିୟମ । କିନ୍ତୁ କେବଳ ଅନୁକରଣ, ଦୁର୍ବଳ ଚିନ୍ତା ଓ ବ୍ୟକ୍ତିତ୍ୱର ଚିହ୍ନ ଓ ଯେଉଁ ଅନୁକରଣ ଯୋଗୁଁ ବ୍ୟକ୍ତି ଓ ଜାତି ସମ୍ପୂର୍ଣ୍ଣଭାବରେ ନିଜସ୍ୱ ହରାଏ, ତାହା କେବଳ ଘୋର ମୂର୍ଖତା ନୁହେଁ, ଘୋର ପାଷଣ୍ଡତା ।

ସାମାଜିକ ଶିକ୍ଷା ଅଫିସରଭାବରେ ଏଇ ପ୍ରଚାରକୁ ଜୀବନ ଦେବାର ଏକ ସୁଯୋଗ ଏଇ ଲେଖକ ପାଇଥିଲା । ତେଣୁ ପୁରୀ ବଡ଼ଦେଉଳର ଲକ୍ଷ୍ମୀ ଠାକୁରାଣୀଙ୍କ ରୋଷେଇଶାଳର ଟିକିନିଖି ବର୍ଣ୍ଣନା ଦେଇ ଓଡ଼ିଆ ରାନ୍ଧଣାର ଏକ ଆଦର୍ଶ ଦେଶମୟ ପ୍ରଚାର କରିବା ଦିଗରେ ମଧ୍ୟ ଏଇ ଲେଖକ ସେହି ଅଳ୍ପ ସମୟ ଭିତରେ ଯତ୍ନବାନ୍ ହୋଇଥିଲା । ପଣ୍ଡିତ ସଦାଶିବ ରଥଶର୍ମାଙ୍କ ସହିତ ଏ ଦିଗରେ ଲେଖାଲେଖି ଚାଲିଥିଲା । କିନ୍ତୁ ଏହା ଠିକ୍ ରୂପ ନେଲାବେଳକୁ, ଏଇସବୁ ଘୋର ଅପକର୍ମପାଇଁ ଜାତିଗତପ୍ରାଣ କର୍ତ୍ତାମାନଙ୍କର ତଦ୍‌ବିରିରେ ସେ ପୋଷ୍ଟରୁ ଲେଖକ ତଡ଼ାଖାଇଲା ।

କିନ୍ତୁ ଏ ଲେଖକର ଆଜି ବି ପ୍ରବଳ ଇଚ୍ଛା, ସାମାଜିକ ଶିକ୍ଷାବିଭାଗରୁ ଉପରବର୍ଣ୍ଣିତ ଗୋଟିଏ ଜାତୀୟପଞ୍ଜିକା ଓ ଖାଣ୍ଟି ଓଡ଼ିଆ ଖାଦ୍ୟ ଉପରେ ଏକ ପୁସ୍ତକ ଛପାଯାଇ କେବଳ ଛାପାଖର୍ଚ୍ଚ ମୂଲ୍ୟରେ ବିତରିତ ହେଉ । ଆଶାକରେ, ଦିନେ କିଏ ହେଲେ ଏହା କରିବ । ସେହି ଆଶାରେ ହିଁ ଯାହା ଭାବିଥିଲି, କିନ୍ତୁ କରିପାରିନଥିଲି, ତାହାର ବର୍ଣ୍ଣନା ଏଠାରେ ଦେଇଗଲି ।

ଓଡ଼ିଶା ପ୍ରଦେଶ ଭିତରେ ସଂଖ୍ୟାଲଘିଷ୍ଠ ଗୋଷ୍ଠୀମାନଙ୍କର ଭାଷା ଓ ସଂସ୍କୃତିର ସଂରକ୍ଷଣ ପାଇଁ ଯାହା କରିବାର କଥା ତାହା କରାହୋଇ ଚାଲିଥିଲେ ମଧ୍ୟ ଆମେ ଓଡ଼ିଆଏ ଜ୍ଞାତ ବା ଅଜ୍ଞାତସାରରେ ନିଜର ଓଡ଼ିଆତ୍ୱକୁ ନଷ୍ଟ ତ କରିଚାଲିଛେଁ, ଓଡ଼ିଶା ବାହାରେ ବିସ୍ତୃତ ଯେଉଁ ଓଡ଼ିଆ-ଭାଷାଭାଷୀ ଅଞ୍ଚଳ ରହିଯାଇଛି, ସେଠି କେନ୍ଦ୍ର ସରକାର ଦେଇଥିବା ସୁଯୋଗ ଅନୁସାରେ ଓଡ଼ିଆ ଭାଷାଟିକୁ ଖାଲି ହେଲେ ବଞ୍ଚାଇ ରଖିବାକୁ ଆମେ କ'ଣ କରିଛେଁ ? ହିନ୍ଦୀବାଲାଙ୍କର ରାଷ୍ଟ୍ରଭାଷା-ପ୍ରଚାର ସମିତିପରି ବଙ୍ଗଦେଶର ବଙ୍ଗଭାଷା-ପ୍ରଚାର-ସମିତି ମଧ୍ୟ ଏକ ବଳିଷ୍ଠ ଅନୁଷ୍ଠାନ । ଏହି ବଙ୍ଗଭାଷା-ପ୍ରଚାର-ସମିତିର କର୍ମକର୍ତ୍ତାଙ୍କୁ ମୁଁ ଜାଣେ । ଏଇ ସମିତିର ଲକ୍ଷ୍ୟ ହେଲା, ବଙ୍ଗଳା ବାହାରେ ବଙ୍ଗଭାଷା ଓ ସାହିତ୍ୟକୁ ପ୍ରସାରିତ ଓ ଜୀବନ୍ତ ରଖିବା । ଅଥଚ, ଯେଉଁ ସିଂହଭୂମିରେ ଓଡ଼ିଆ ଭାଷାକୁ ପୁନର୍ଜ୍ଜୀବନ ଦେବପାଇଁ ଗୋପବନ୍ଧୁ ଓ ଗୋଦାବରୀଶଙ୍କର ରକ୍ତ ବର୍ଷ ବର୍ଷ ଧରି ସ୍ୱେଦ ଓ ଚିନ୍ତା ଆକାରରେ ନିଃଶେଷିତ ହୋଇଯାଇଥିଲା, ଆମେ ନିଜର ସେ ଭୂମି ତ ନିଜ ଅକର୍ମକତା ଯୋଗୁଁ ହରାଇଲେ; କିନ୍ତୁ ଗୋପବନ୍ଧୁ-ଗୋଦାବରୀଶଙ୍କର ସେହି ତ୍ୟାଗକୁ ସ୍ମରଣ କରି ଅନ୍ତତଃ ଓଡ଼ିଆ ଭାଷାଟିକୁ ହେଲେ କ'ଣ ସେ ଅଞ୍ଚଳରେ ଜୀବନ୍ତ ରଖିପାରନ୍ତେ ନାହିଁ ? ଶେଷରେ ଷଢ଼େଇକଳାର ଛଉନୃତ୍ୟ ବିହାରର ଲୋକନୃତ୍ୟ ବୋଲି ବର୍ଣ୍ଣିତ ହେବାର ଆଖିରେ ଦେଖିଲୁ । ଦିନେ ଏଡୁକେଶନ୍ ଆଡ଼ଭାଇଜର୍ ଭାବରେ ଏହି ଅଞ୍ଚଳର ବହୁ ଓଡ଼ିଆ ପ୍ରାଇମେରୀ ସ୍କୁଲ୍ ପରିଦର୍ଶନ କରି ପ୍ରତି ସ୍କୁଲ୍‌ରେ ଓଡ଼ିଆରେ ମନ୍ତବ୍ୟ ଲେଖିଆସିଥିଲି । ଆଜି ସେ ସବୁ ମନେପଡୁଛି । ଓଡ଼ିଆ ସାହିତ୍ୟ ଆକାଡ଼େମୀ ଓ ଉପରବର୍ଣ୍ଣିତ ସାମାଜିକ ଶିକ୍ଷା ସାହିତ୍ୟ ଯୋଜନାବେଳେ ମୋର ସ୍ୱପ୍ନ ଥିଲା, ଲକ୍ଷ ଲକ୍ଷ ସଂଖ୍ୟାରେ ଉତ୍କୃଷ୍ଟ ଓ ଜନପ୍ରିୟ ଓଡ଼ିଆ କବିତା, ପୁରାଣ, ଉପନ୍ୟାସ, ଓଡ଼ିଶୀ ରାନ୍ଧଣା ଓ ଓଡ଼ିଶୀ ପଞ୍ଜିକା ଛପାଇ, ବିନାମୂଲ୍ୟ ବା କେବଳ ଛପା ଖର୍ଚ୍ଚରେ ସମଗ୍ର ବିଚ୍ଛିନ୍ନାଞ୍ଚଳ ସହିତ, ସାରା ପ୍ରାକୃତିକ ଉତ୍କଳ ରାଜ୍ୟରେ ଓଡ଼ିଆ ଭାଷା ଓ ଜାତୀୟତାକୁ ବଞ୍ଚାଇ ରଖିବାକୁ ବିତରଣ କରିବା ।

ଆମର ସମ୍ବିଧାନରେ ୧୪ଟି ଭାଷା ସମର୍ଥିତ— ଅର୍ଥାତ୍, ପ୍ରତ୍ୟେକ ଭାଷାର ଅନ୍ତତଃ ନିଜ ନିଜ ଅଞ୍ଚଳରେ ସ୍ୱପ୍ରତିଷ୍ଠା ରକ୍ଷା କରିବାର ଅଧିକାର ଧରିନିଆଯିବାର କଥା । କିନ୍ତୁ ୧୪ଟି ଭାଷାର ଅନ୍ୟତମ ହିନ୍ଦୀ ଓ ବଙ୍ଗଳା, ଓଡ଼ିଆ ଭାଷା ଓ ଓଡ଼ିଆ ଜାତିର ହୃତ୍‌ପିଣ୍ଡ କଟକ ନଗରୀରେ ନିଜନିଜର ଯେଉଁ ପ୍ରତିଷ୍ଠା ଠିଆକରାଇ ପାରିଛନ୍ତି, ନିଜ ମାଟି, ନିଜ ବାସଭୂମିରେ ସ୍ୱୟଂ ଓଡ଼ିଆ ଭାଷାର ତାହା ନାହିଁ । ଷଢ଼େଇକଳା, ଖରସୁଆଁ ଆଦି ବିଚ୍ଛିନ୍ନାଞ୍ଚଳପାଇଁ କିଏ କାହିଁକି ବା ଭାବିଯିବ ? ହାୟରେ, ଭାରତର ସମସ୍ତେ ନିଜ ନିଜ ଭାଷା ବଢ଼େଇବାରେ ଲାଗିଥିଲାବେଳେ ଓଡ଼ିଆମାନେ ଏ ବିଷୟରେ କିଛି ହେଲେ କ'ଣ ଚିନ୍ତା କରିବେ ନାହିଁ ? ହିନ୍ଦୀ ରାଷ୍ଟ୍ରଭାଷା ହେଉ, ଏଥିରେ ଆମର ଅମତ ନାହିଁ, କିନ୍ତୁ ଯା ବୋଲି ବଡ଼ ଭଉଣୀ ହିନ୍ଦୀର ବିରାଟ ସାମ୍ରାଜ୍ୟର ଧାରକୁ ଲାଗି କୌଣସିମତେ କୁଡ଼ିଆମାରି ରହିଥିବା ଓଡ଼ିଆ ଭାଷାର ଗୋଷ୍ପଦ-ପରିମିତ ଷଢ଼େଇକଳା, ଖରସୁଆଁ ଓ ସିଂହଭୂମିକୁ ମଧ୍ୟ ଗ୍ରାସନକଲେ ତା'ର ଚଳୁନାହିଁ । ଏହା କ'ଣ ତଥାକଥିତ 'ରାଷ୍ଟ୍ରଭାଷା'ର କର୍ତ୍ତବ୍ୟ ? ସମଗ୍ର ଭାରତ ସହିତ, ସମଗ୍ର ଓଡ଼ିଶା, ହିନ୍ଦୀକୁ ସମ୍ମାନ ଦେଲାବେଳେ, ହିନ୍ଦୀ-ରାଜ୍ୟ ବିହାରରେ ଚେନାଏ ହେବ ଓଡ଼ିଆ ଅଞ୍ଚଳରେ କୁହାହେଉଥିବା ଓଡ଼ିଆ ଭାଷାକୁ, ଭାରତେଶ୍ୱରୀ ହିନ୍ଦୀ ସହ୍ୟ କରିବାକୁ ନାରାଜ ! ଆମ ରାଷ୍ଟ୍ରଭାଷାର କି ଉଦାରତା, କି ଜାତୀୟତା ! ହିନ୍ଦୀପରି ଅନ୍ୟ ତେରଟିଯାକ ଭାରତୀୟ ଭାଷାର ପ୍ରାଧାନ୍ୟ, ମଧ୍ୟ ସର୍ବ-ଭାରତୀୟ । କେବଳ ଓଡ଼ିଆର ନିଜର ସଂକୀର୍ଣ୍ଣ ବାସଭୂମି ଛଡ଼ା ଅନ୍ୟତ୍ର ସ୍ଥାନ ନାହିଁ । ଜାତୀୟ ସଂହତି ଉପରେ ତ ଏତେ ବକ୍ତୃତା ଦିଆଯାଉଛି; କିନ୍ତୁ, ଜାତୀୟ ସଂହତି କ'ଣ ଆସିବ— ଆଜି ନିଃସହାୟ ହୋଇ ପଡ଼ିଥିବା ଏକ ପ୍ରାଚୀନ ଗୌରବମୟ ଭାରତୀୟ ଭାଷା ଓ ସଂସ୍କୃତିକୁ ମିଳିମିଶି ଗ୍ରାସ କରିବାଦ୍ୱାରା ? ଏପ୍ରକାର ଏକତ୍ୱ ବା ସଂହତିର ସୂକ୍ଷ୍ମ ତାତ୍ପର୍ଯ୍ୟ ସେୟା ନୁହେଁ କି— ବଡ଼ ମାଛ ଛୋଟ ମାଛକୁ ଖାଇ ବା ବିରାଟ ଅଜଗର ଛୋଟ ସାପମାନଙ୍କୁ ଉଦରସ୍ଥ କରି ଯେଉଁ 'ଏକତ୍ୱ' ବା 'ସଂହତି' ଘଟାଇଥାନ୍ତି ? ସମଗ୍ର ଭାରତରେ କେବଳ ଓଡ଼ିଶା ଓ ଓଡ଼ିଆମାନେ ବୋଧହୁଏ, ଏପ୍ରକାର ମାତ୍ସ୍ୟନ୍ୟାୟ ଓ ଆଜଗରୀୟ ସଂହତିର ସବୁଠୁ ସହଜ, ଅନୁକୂଳ ଓ ସୁବିଧାଜନକ ପରୀକ୍ଷାଗାର ? ଓଡ଼ିଆରେ ସେହି ପ୍ରବାଦଟି, 'ମାରିନେବେ ମହାପାତ୍ରେ ଚାହିଁଥିବ ଢଳକା', ସ୍ୱୟଂ ଓଡ଼ିଆମାନଙ୍କ ପ୍ରତି ଯେପରି ପୂରାପୂରି ପ୍ରଯୁଜ୍ୟ, ସେପରି ଅନ୍ୟ କାହିଁ ଦେଖାଯାଏ ନାହିଁ । ତଥାପି ଓଡ଼ିଆଙ୍କର ଚେତନା ନାହିଁ !

---

## ଊନବିଂଶ ଅଧ୍ୟାୟ

# ବହି, ନା ବହିଦାର ?

ଦ୍ୱିତୀୟଥର ସାମାଜିକ-ଶିକ୍ଷା ଅଫିସର ହେବା ଭିତରେ ସାମାଜିକ-ଶିକ୍ଷା ଦୃଷ୍ଟିରୁ ଗ୍ରାମ୍ୟ ପୁସ୍ତକାଳୟମାନଙ୍କପାଇଁ ଓଡ଼ିଆରେ ପୁସ୍ତକ ନିର୍ବାଚନ କରିବା ଓ ସେଭଳି ନିର୍ବାଚିତ ପୁସ୍ତକମାନଙ୍କୁ କିଣି, ଭିନ୍ନ ଭିନ୍ନ ବ୍ଲକ୍‌ର ଗ୍ରାମ୍ୟ ପୁସ୍ତକାଳୟମାନଙ୍କରେ ବାଣ୍ଟିବା, ସାମାଜିକ ଶିକ୍ଷା ଅଫିସରର ଏକ ନୂଆ କାମ ହୋଇଥିବାର ଦେଖିଲି । ମୁଁ ପ୍ରଥମଥର ଆଡଲ୍‌ଟ ସୋସାଲ୍ ଏଡୁକେଶନ୍ ଅଫିସର୍ ହୋଇଥିଲାବେଳେ ଏ କାମ ନଥିଲା । ସେଥର ତ ଚାରି-ପାଞ୍ଚ ମାସ ମାତ୍ର ଥିଲି – କିଛି ତ ନଥିଲା – ଇଏ ବା ଥାଆନ୍ତା କୁଆଡୁ ?

କିନ୍ତୁ ଏଇ ଭିତରେ, ସାମାଜିକ-ଶିକ୍ଷା ଅଫିସରଙ୍କର ଏହା ଏକ ବିଧିବଦ୍ଧ କାମ ହୋଇଥିବାର ଦେଖିଲି । ମୋର ପୂର୍ବବର୍ତ୍ତୀ ଅଫିସର ଏହା କରିଆସିଥିଲେ, ମୁଁ କଲି, ମୋ ପରେ ଏବେ ବି ବୋଧହୁଏ ଚାଲିଛି । କିନ୍ତୁ ସାମାଜିକ-ଶିକ୍ଷା ବିଭାଗରେ ଅନ୍ୟ ଅନେକ କାମ ପରି, ଏ କ୍ଷେତ୍ରରେ, ଅର୍ଥାତ୍ ସାମାଜିକ-ଶିକ୍ଷା-ସାହିତ୍ୟ ନିର୍ବାଚନରେ ମଧ କୌଣସି ବିଚାରପ୍ରତିଷ୍ଠ, ସନ୍ତୋଷଜନକ ପନ୍ଥା ବା ପରମ୍ପରା ଅଫିସ୍‌ରେ ଆରମ୍ଭ ହୋଇଥିବାର ଦେଖିଲି ନାହିଁ, କି ଏ ଦିଗରେ ଉପରୁ ସରକାରଙ୍କର କୌଣସି ନିର୍ଦ୍ଦେଶ ମଧ ନଥିଲା । ଡି.ପି.ଆଇ.ମାନେ ପୂର୍ବବର୍ତ୍ତୀ ସାମାଜିକ-ଶିକ୍ଷା ଅଫିସରଙ୍କ ବ୍ୟକ୍ତିଗତ ବିବେଚନା ଓ ଦାୟିତ୍ୱ ଉପରେହିଁ ସବୁ ଛାଡ଼ି ଦେଇଥିଲେ ।

## ଅଫିସରର ସ୍ୱାଧୀନତା –

ଏପରି ଛାଡ଼ିଦେବାହିଁ ସର୍ବଥା ଉଚିତ ଓ ଯୁକ୍ତିଯୁକ୍ତ କାମ । କାରଣ ସମଗ୍ର ଓଡ଼ିଶା ରାଜ୍ୟପାଇଁ ଜଣକୁ ସାମାଜିକ-ଶିକ୍ଷା ଅଫିସର କରି ଥୋଇଲା ପରେ, ତାର ପ୍ରତିଟି କାମ ଉପରେ ହସ୍ତକ୍ଷେପ କରିବା ଓ କୌଣସି କାମକୁ ସ୍ୱାଧୀନଭାବରେ କରେଇ ନ ଦେବାରେ କି ଲାଭ ବା ପ୍ରଗତି ବା ନିପୁଣତା ଆଶା କରାଯାଇପାରେ ? ଏପରି ଅଧିକେନ୍ଦ୍ରିକ ବ୍ୟବସ୍ଥା କ'ଣ କେବେହେଲେ କେଉଁଠାରେ ସମର୍ଥନୀୟ ? ପ୍ରତି କଥାରେ ଜଣେ ଅଫିସରର କାମରେ ହସ୍ତକ୍ଷେପ କରିବା କୌଣସି ସଭ୍ୟ, ସୁଦକ୍ଷ ଶାସନର ଚିହ୍ନ ନୁହେଁ ।

ଗଙ୍ଗାଧର ମେହେର କଲେଜରୁ ସାମାଜିକ ଶିକ୍ଷା ଅଫିସରଭାବରେ ମୋର ବଦଳି ହେବାର-ପ୍ରସ୍ତାବ ଡି.ପି.ଆଇ.ଙ୍କ ଠାରୁ ଶୁଣିବାକୁ ପାଇ ମୁଁ ସମ୍ବଲପୁର ଛାଡ଼ିବା ପୂର୍ବରୁ ଡକ୍ଟର ପ୍ରସାଦଙ୍କୁ ସାମାଜିକ-ଶିକ୍ଷା ଅଫିସରଭାବରେ କର୍ମ-ସ୍ୱାଧୀନତା ନେଇ ନିମ୍ନଲିଖିତ ପତ୍ର ଦେଇଥିଲି ।

D.O. No. 730 Dated 20/2/56

My dear Dr. Prasad,

I shall be much obliged for clarification on the following points.

x x x

4. Does the Social Education Officer enjoy certain amount of freedom of action in the discharge of his duties or for every little detail he has to wait for orders from the higher office. You will appreciate, I hope that without freedom and with the necessity of for-ever looking up to sanction from above, nothing except routine matters can be accomplished.

5. How is this post interlinked with the original hierarchy of the Department ? Is there a parallel structure for Social Education in all districts ? Could raising the post to the status of the Deputy Director of Public Instruction as you have suggested, help in better control, co-operation and co-ordination in the department, in this sector ? Monetary gain or loss is less important to me than the opportunity for solid substantial work.

I hope you will not misunderstand me. I am just trying to adjust my thoughts to the new problems I shall be facing soon.

Yours sincerely,
Sd/- M. Mansinha

ଅବଶ୍ୟ ଉପରିସ୍ଥ ବ୍ୟକ୍ତି ବା କର୍ମଚାରୀଙ୍କର ନିମ୍ନସ୍ଥ ବ୍ୟକ୍ତି ବା କର୍ମଚାରୀଙ୍କର କର୍ମରେ ହସ୍ତକ୍ଷେପ କରିବାର ନୈତିକ ଯୌକ୍ତିକତା କେହି ଅସ୍ୱୀକାର କରିବ ନାହିଁ । ତା' ନହେଲେ ତଳ ଓ ଉପରର ଅର୍ଥ କଣ ? ତେବେ ତଳ ଓ ଉପରର ଅର୍ଥ ନୁହେଁ ଯେ, ଉପରବାଲା ତଳକୁ କେବଳ ଖୁମ୍ପିବାହିଁ ଜାଣେ, ଆଉ କିଛି ଜାଣେନା । ତଳ-ଉପରର ପ୍ରକୃତ ଅର୍ଥ ହେଉଛି ଯେ ଉପରବାଲା ତଳବାଲାକୁ ପଥ ଦେଖାଇବ, ବୁଦ୍ଧି ଦେବ, ପରାମର୍ଶ ଦେବ ଏବଂ ତାହା ପୁଣି ହେବ ସମୂହର ସାମୂହିକ କଲ୍ୟାଣ ଦୃଷ୍ଟିରୁ, କୌଣସି ବ୍ୟକ୍ତିଗତ ଲାଭ କ୍ଷତି ଦୃଷ୍ଟିରୁ ନୁହେଁ ।

## ନିପୁଣତାର ମାନଦଣ୍ଡ –

କେତେଜଣ ଉପରବାଲାଙ୍କର ଏ ବୁଦ୍ଧି ଓ ଆଦର୍ଶ ଥିବାର ଦେଖାଯାଏ ଏ ଦେଶରେ ? ହାକିମି ଦେଖେଇ ହେବାପାଇଁ ବା ତଳ ଲୋକକୁ ହଇରାଣ କରିବା ଲକ୍ଷ୍ୟରେ ଖୁମ୍ପିବା, ଏ ଦେଶର ସାଧାରଣ ଉପରବାଲାର ଅଭ୍ୟାସ ଓ ତାଙ୍କର ଏକପ୍ରକାର ସାମ୍ବିଧାନିକ ଅଧିକାର ବୋଲି ଧରିନିଆଯାଇଥାଏ । କିନ୍ତୁ ତଳବାଲାକୁ ବାଟ ବତେଇବା, ବୁଦ୍ଧିଦେବା ପାଇଁ ଅତ୍ୟଳ୍ପ ଗୋସେଇଁଙ୍କର ସମ୍ବଳହିଁ ଥାଏ । ଏ ଦୟନୀୟ ଜୀବଗୁଡ଼ିକ କେବଳ ହାକିମି ପ୍ରଦର୍ଶନର ଇତରତା ହିଁ ଜାଣନ୍ତି । ପରେ ବଡ଼ା ସାହେବଙ୍କ ପରି ଲୋକପ୍ରତିନିଧି ମନ୍ତ୍ରୀଙ୍କଠି ବି କେବଳ ମାତ୍ର ଏଇ ମହାନ୍ ଗୁଣଟିର ବିରାଟ ପ୍ରକଟନ ଦେଖି, ଏହାକୁ ଦୀର୍ଘ-ଯୁଗଧରି-ଦାସ ହୋଇଥିବା ଏକ ଜାତିର ରକ୍ତଗତ ହୀନାନୁଭବ ବା ଇନ୍‌ଫିରିଅରିଟି କମ୍ପ୍ଲେକ୍ସର ସ୍ୱାଭାବିକ ବହିଃପ୍ରକାଶ ବୋଲି ଧରିନେଇଛି ।

ସାମାଜିକ ଶିକ୍ଷା ଅଫିସରଭାବରେ ମାତ୍ର ନଅ ମାସ ଭିତରେ ମୁଁ କି କି କାମ କରିପାରିଥିଲି, ତାହା ପୂର୍ବ ଅଧାୟରେ ବର୍ଣ୍ଣନା କରାଯାଇଛି । ସାତ ଆଠ ବର୍ଷ ଏକ ଫାଷ୍ଟ୍‌ଗ୍ରେଡ୍ କଲେଜର

ଅଧକ୍ଷଭାବରେ କଟାଇ ଆସିଲା ପରେ ଏପରି ଏକ ନୂତନ ବିଭାଗକୁ ନିପୁଣଭାବରେ ଚଳାଇବା ପାଇଁ, ସେପରି ଏକ ନୂଆ ଅଫିସରକୁ, କିଏ ତ କିଛି ନିର୍ଦ୍ଦେଶ ଦେବା କଥା ? କିନ୍ତୁ କେଉଁ ଡି.ପି.ଆଇ. କି ନିର୍ଦ୍ଦେଶ ଛାଡ଼ିଯାଇଛନ୍ତି ବା ଯାଇଥିଲେ ଏ କ୍ଷେତ୍ରରେ ? ଅଥଚ ଯେଉଁ ଡି.ପି.ଆଇ.ଙ୍କ ନିପୁଣ ରାଜତ୍ୱରେ ମୁଁ ଦସ୍ତଖତ ନନେବାର ଅକ୍ଷମଣୀୟ ଅପରାଧ ଯୋଗୁଁ ଦଣ୍ଡଭାଗୀ ହେଲି ଓ ଯିଏ ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ପ୍ରିୟଜନ ଓ ପ୍ରିୟ କର୍ମଚାରୀଭାବରେ ଓଡ଼ିଶା ବିଧାନସଭାରେ ସେହି ମୁଖ୍ୟମନ୍ତ୍ରୀଙ୍କଠାରୁ ପ୍ରକାଶ୍ୟ ପ୍ରଶଂସାଦ୍ୱାରା ଗୌରବାନ୍ୱିତ, ତାଙ୍କର ନିପୁଣତା ଷ୍ଟେଟ୍‌ସମାନ୍ (୨୧ ଅକ୍ଟୋବର, ୧୯୬୧) କାଗଜରେ କିପରି ଗୌରବାବହ ସ୍ୱୀକୃତି ପାଇଥିଲା, ପାଠକେ ଜାଣିରଖନ୍ତୁ–

''ଭାରତର ଶାସନ ସ୍ରୋତ କିପରି ଧୀରେ ମନ୍ଥରେ ଗତି କରିପାରେ, ସେ ପ୍ରତିଯୋଗିତାରେ ଓଡ଼ିଶା ସରକାର ଏପର୍ଯ୍ୟନ୍ତ 'ରେକର୍ଡ଼' ସୃଷ୍ଟି କରିଚାଲିଛନ୍ତି ବୋଲି କୁହାଯାଇପାରେ । କାରଣ ଓଡ଼ିଶାର ଡି.ପି.ଆଇ. ଏହି ବର୍ଷ (୧୯୬୧) ଅପ୍ରେଲ୍ ଶେଷକୁ ଏ ଦେଶର ଖବରକାଗଜମାନଙ୍କୁ ଓଡ଼ିଶା-ଶିକ୍ଷା ବ୍ୟବସ୍ଥାର ୧୯୪୮-୪୯ର ତଥାକଥିତ ରିପୋର୍ଟ ପଠାଇପାରିଛନ୍ତି । କିନ୍ତୁ ତାହା ମଧ୍ୟ ରିପୋର୍ଟ ପଦବାଚ୍ୟ ନୋହିପାରେ । କାରଣ, ରିପୋର୍ଟ ବୋଲି ସେଥିରେ କିଛିହେଲେ ତ ନାହିଁ ପୁଣି ସେହି ତଥାକଥିତ ସରକାରୀ ରିପୋର୍ଟରେ କାହାରି ହେଲେ ଦସ୍ତଖତ ମଧ୍ୟ ନାହିଁ । ଏ ରିପୋର୍ଟ ଖାଲି ଗୁଡ଼ାଏ ସଂଖ୍ୟାର ସ୍ତମ୍ଭରାଜି । ଏହି ୧୯୬୧ରେ ଭାରତର କେନ୍ଦ୍ର ସରକାର ମଧ୍ୟ '୧୯୫୬-୫୭ ରେ ଭାରତର ଶିକ୍ଷା' ନାମକ ପୁସ୍ତିକା ପ୍ରକାଶ କରି ଯଥେଷ୍ଟ ତତ୍ପରତା ଦେଖାଇଛନ୍ତି । କିନ୍ତୁ ଓଡ଼ିଶା ସହିତ ପ୍ରତିଯୋଗୀ ହେବାର ସ୍ପର୍ଦ୍ଧା କେନ୍ଦ୍ରସରକାର ଆଶାକରନ୍ତି କି ?''

ଓଡ଼ିଶା ସରକାର ସ୍ୱାଧୀନୋତ୍ତର କାଳରେ ଏହି ଐତିହାସିକ ରାଜ୍ୟର ଶିକ୍ଷା ବ୍ୟବସ୍ଥାକୁ ବାହାର ଜଗତରେ ଦେଖେଇବାକୁ ଯାଇ ୧୯୪୮ର 'ବାର୍ଷିକ ରିପୋର୍ଟ' ୧୯୬୧ରେ ଯେ ବାହାର କଲେ, ତାହା ତ ନିଜେଇ ଏକ ନିରଙ୍କୁଶ ନିର୍ଲଜ୍ଜତା । ସେ ରିପୋର୍ଟ ପୁଣି ରିପୋର୍ଟ ପଦବାଚ୍ୟ ନୁହେଁ; କାରଣ ତଥାକଥିତ ରିପୋର୍ଟ କେବଳ କେତେଗୁଡ଼ିଏ ସାଂଖ୍ୟସ୍ତମ୍ଭମାନଙ୍କର ସମାବେଶ ମାତ୍ର, ଯାହା ନିମ୍ନସ୍ଥ କିରାଣିହିଁ କରିଥିବେ । ପୁଣି ସର୍ବାଧିକ ଲଜ୍ଜାର ବିଷୟ ଏହି ଯେ, ବାହାରକୁ ଯାଉଥିବା ରାଜ୍ୟର ଶିକ୍ଷା ବିଭାଗର ଏହି ବାର୍ଷିକ ରିପୋର୍ଟରେ କାହାରି ହେଲେ ଦସ୍ତଖତ ମଧ୍ୟ ନାହିଁ ।

ଏ ଦେଶରେ କର୍ମଚାରୀ ଏପରି କୀର୍ତ୍ତିମାନ ହେଲେ ଯାଇ ସିନା ଏ ଦେଶର ମୁଖ୍ୟମନ୍ତ୍ରୀଙ୍କଠାରୁ ରାଜ୍ୟର ବିଧାନ ସଭାରେ ନିପୁଣତାର ଆପ୍ରିସିଏସନ ମିଳିବାର ଆଶା କରାଯାଏ ? ପୁଣି ଗୁଣୀ ଓ ଗୁଣଗ୍ରାହୀ ସମସ୍ତର ହେଲେ ତ ଯାଇ ଆପ୍ରିସିଏସନ୍ ଆଶା କରାଯାଏ ?

## ପୂର୍ବବର୍ତ୍ତୀ ନିର୍ବାଚନ –

ସେ ଯାହାହେଉ, ମୋର ଠିକ୍ ପୂର୍ବବର୍ତ୍ତୀ ସାମାଜିକ-ଶିକ୍ଷା ଅଫିସର ସାମାଜିକ-ଶିକ୍ଷା-ସାହିତ୍ୟ ନାମରେ ଉତ୍କଳର ଗ୍ରାମ୍ୟ ପୁସ୍ତକାଳୟମାନଙ୍କୁ ଯେଉଁସବୁ ପୁସ୍ତକ ବାଣ୍ଟିଥିଲେ, ତାର କେତୋଟିର ନମୁନା ଏଇ–

ସିଂହଦ୍ୱାର, ମଦଭାଟି, ହିଡ଼ମାଟି, କାଞ୍ଚନକୁମାରୀ, ଅଳଙ୍କାରବୋଲି, ରାସକ୍ରୀଡ଼ା, ସାହାଡ଼ା ସୁନ୍ଦରୀ, ନିକ୍ଷେକ୍ଷିତା, ଭୂତକେଳି, ଶୁକବିଳାସ, ଖୁଲଣାସୁନ୍ଦରୀ, ଗୋପାଳଭାଣ୍ଡ କଥା, ଯଦୁମଣି ରହସ୍ୟ, ସୁନା କୁଲେଇ, ଭକ୍ତବୀର ହନୁମାନ, କନକାବତୀ ।

ପାଠକେ, ଏଇସବୁ କିତାବ ପଢ଼ି ଓଡ଼ିଆ ଜନତା ତା'ର ବୌଦ୍ଧିକ, କାୟିକ ଓ ଆତ୍ମିକ ଅଧଃପତନର ସ୍ତରରୁ ସର୍ବବିଧ ଉନ୍ନତିର ଶିଖର ଦେଶକୁ ଡିଆଁମାରି ଉଠିବ ନାହିଁ କି ? ଏସବୁ କ'ଣ ପ୍ରେରଣା ଓ ଉନ୍ନୟନର ଉତ୍ସ ? ସବୁ ସଭ୍ୟଦେଶର ଜନତା ଏଇପ୍ରକାର କିତାବ ପଢ଼ି ଉନ୍ନତ ଓ ଅଗ୍ରଗାମୀ ହୋଇଛନ୍ତି ନା ! ପୁଣି ଏହି ଜ୍ଞାନ, ଏହି ରୁଚି, ଏହି କର୍ମନିପୁଣତା ଯୋଗୁଁ ନା ଲୋକେ ଗୌରବାବହ ପ୍ରଥମ ଶ୍ରେଣୀ ପାଇଥାନ୍ତି ?

ପୁଣି, ସେକାଳର ଡି.ପି.ଆଇ. ଏ ପୁସ୍ତକ ତାଲିକା ଦେଖି ଦସ୍ତଖତ କରିଥିଲେ ତ ? କିନ୍ତୁ ଅବ୍ୟବହିତ ପରେ ପରେ ଆମ ବେଳକୁ ଏହାହିଁ ମୁଖ୍ୟ ଅପରାଧ ହୋଇଉଠିଲା । ଅତି ସୁଖର କଥା ଏହି ଯେ, କଟକ ନଗରର ଜଣେ ପୁସ୍ତକ ଦୋକାନୀ ଏସବୁ କି ପ୍ରକାର ''ସାମାଜିକ ସାହିତ୍ୟ'' ବୋଲି ସେତେବେଳର ସ୍ୱୟଂ ସାମାଜିକ-ଶିକ୍ଷାର ଅଫିସରଙ୍କୁ ପଚାରିଥିଲେ । ମୁଁ ଫାଇଲ୍‌ରେ ତାହା ପଢ଼ି ପରମ ପ୍ରୀତ ବୋଧକଲି । କାରଣ 'ସାହିତ୍ୟ'ର ପ୍ରକୃତ ମର୍ଯ୍ୟାଦା ଏ ଦେଶର ଡି.ପି.ଆଇ., ଶିକ୍ଷାମନ୍ତ୍ରୀ ଓ ଜାତିର ପ୍ରତିନିଧି ବୋଲାଉଥିବା ପତ୍ର-ପତ୍ରିକା ଭୁଲିଯାନ୍ତୁ ପଛେ, ଏ ଦେଶର ଜଣେ ପୁସ୍ତକ-ଦୋକାନୀ ଯେ ଭୁଲିଯାଇନଥିଲା, ତାହାହିଁ ମୋ ଜାତି ପକ୍ଷରେ ଆଶାର ଦିହୁଡ଼ି ।

## ପ୍ରଥମ ନିର୍ବାଚନର କମିଟି –

ମୋ ବର୍ଷ ଏଇ ବହି କିଣା ବାବଦରେ ଏକୋଇଶି ହଜାର ଟଙ୍କା ବଜେଟ୍‌ରେ ଥାଏ । ଗୁଡ଼ାଏ ଟଙ୍କା, ଗୁଡ଼ାଏ ବହି କିଣା ହେବ । ମୁଁ ଏକା ଏକା ବାଛିବାର ଦାୟିତ୍ୱ ନେବାକୁ ଇଚ୍ଛା ଓ ସାହସ କଲିନି । ଡି.ପି.ଆଇ. ଡକ୍ଟର ବଳଭଦ୍ର ପ୍ରସାଦଙ୍କୁ କହିଲି ଯେ, ବହି ବାଛିବାରେ ମତେ ସାହାଯ୍ୟ କରିବାପାଇଁ ଏକ କମିଟି ବସାଯାଉ । ଡକ୍ଟର ପ୍ରସାଦ ରାଜି ହେଲେ । ସମାଜ-ଶିକ୍ଷା-ସାହିତ୍ୟ ବାଛିବା ପାଇଁ ଡି.ପି.ଆଇ. ଅଫିସରେ ଏ ହେଲା ପ୍ରଥମ କମିଟି । ଏପରି କମିଟି ଆଗରୁ ନଥିଲା କି ସେଥିପାଇଁ ସର୍କାରୀ ନିର୍ଦ୍ଦେଶ ମଧ ନଥିଲା । ଡି.ପି.ଆଇ. ଡକ୍ଟର ବଳଭଦ୍ର ପ୍ରସାଦ ଯେଉଁ ନୋଟ୍‌ରେ ଏଇ କମିଟି ଗଢ଼ିବାର ଆଦେଶ ଦେଲେ ତାହା ଏହିପରି—

ମେମୋ ୨୯୩୮(୪) : ତା ୨ । ୨ । ୧୯୫୭

ନିମ୍ନଲିଖିତ ଅଫିସରମାନଙ୍କୁ ନେଇ ଏକ କମିଟି ହେବ, ଯିଏ ସାମାଜିକ-ଶିକ୍ଷା ଉପରେ ଉପଯୁକ୍ତ ଓଡ଼ିଆ ବହି ବାଛିବେ ।

୧—ମାୟାଧର ମାନସିଂହ

୨— ବିଧୁଭୂଷଣ ଦାସ

୩— ଡକ୍ଟର ରାଧାନାଥ ରଥ

୪— ଶ୍ରୀ ପ୍ରାଣବନ୍ଧୁ କର

ଡକ୍ଟର ଏମ.ମାନସିଂ ମିଟିଂର ତାରିଖ ଠିକ୍ କରିଦେବେ ।

ସ୍ୱା—ବି. ପ୍ରସାଦ

ପାଠକେ ବୁଝନ୍ତୁ ଯେ, ଏହା ଏକ ଆଡ୍‌-ହକ୍ କମିଟି, କେବଳ ତତ୍କାଳୀନ ସାମୟିକ କାମ ଚଳେଇନେବାପାଇଁ ହିଁ ଗଢ଼ାଯାଇଥିଲା । ଏ କମିଟିର ବୈଧାନିକ ଅସ୍ତିତ୍ୱ ଆଦୌ ନଥିଲା । ଏ କମିଟି ସାମାଜିକ-ଶିକ୍ଷା ଅଫିସରର ପ୍ରବର୍ତ୍ତନାରେହିଁ ତାକୁ ଏକ ବିଶେଷ କାମରେ ସାମୟିକ ସାହାଯ୍ୟ କରିବା ପାଇଁ ଗଢ଼ାହୋଇଥିଲା । ଡି.ପି.ଆଇ.ଙ୍କ ନୋଟ୍‌ରେ କୌଣସିଠି ନାହିଁ ଯେ, କମିଟି ନିର୍ବାଚିତ-ପୁସ୍ତକର ସଂଖ୍ୟା ନିର୍ଦ୍ଦେଶ କରିବେ ବା ମୂଲ୍ୟ ନିରୂପିତ କରିବେ । କମିଟିର ଏକମାତ୍ର ଦାୟିତ୍ୱ ଥିଲା 'ସୁଟେବ୍‌ଲ ବୁକ୍‌ସ' (ଉପଯୁକ୍ତ ପୁସ୍ତକ) ବାଛିବା । ଡି.ପି.ଆଇ. କୌଣସିଠାରେ ମଧ କହିନଥିଲେ ଯେ, କମିଟିଦ୍ୱାରା ବହି ବଛା ସରିବା ପରେ, ପୁସ୍ତକତାଲିକା ଯାଞ୍ଚ ଓ ଦସ୍ତଖତପାଇଁ ଡି.ପି.ଆଇ.ଙ୍କ ଆଗରେ ଥୁଆହେବ । ସେକଥା ତ ଆଗରୁ କେବେ ହେଉ ନ ଥିଲା, ସେ କହିବେ କାହିଁକି ? ପୂର୍ବପରି ସେ ସାମାଜିକ-ଶିକ୍ଷା ଅଫିସର ଉପରେ ସବୁ ଛାଡ଼ିଦେଇଥିଲେ ।

କିନ୍ତୁ ପାଠକେ, ଦେଖିବେ, ଡକ୍ଟର ପ୍ରସାଦଙ୍କ ମେମୋରେ ଯାହା ନଥିଲା କି ଯାହା ଡି.ପି.ଆଇ. ଅଫିସରେ ପୂର୍ବେ କେବେ ହେଉନଥିଲା, ତାକୁଇ ବାହାନା କରି କର୍ତ୍ତୃପକ୍ଷ ମତେ ଖଣ୍ଡ ଖଣ୍ଡ କରି ହାଣିବାକୁ ଲାଗିଲେ ।

## ସାମାଜିକ ସାହିତ୍ୟ କାହାକୁ କହିବା –

ଯାହାହେଉ କମିଟି ବସିଲା । ତିନିଜଣ ମେମ୍ବରଙ୍କ ଭିତରୁ ଦୁଇଜଣ ଆସିଲେ । ପ୍ରଥମେ ମୋ ଟେବୁଲ୍ ପାଖେ ସେମାନେ ବସିଲେ । କେଉଁ ପ୍ରିନ୍‌ସପଲ୍ (ନୀତି) ଉପରେ ବହି ବଛାଯିବ, ତାହାହିଁ ପ୍ରଥମେ ଆଲୋଚନା ହେଲା । ମୁଁ ସେମାନଙ୍କୁ ସ୍ପଷ୍ଟ କହିଦେଲି ଯେ, ସେମାନଙ୍କୁ ଅଣାଯାଇଛି, ଉପଯୁକ୍ତ ସାମାଜିକ ସାହିତ୍ୟ ବାଛିବାକୁ,–ଲେଖକ ବା ପ୍ରକାଶକ ବାଛିବାକୁ ନୁହେଁ । ବ୍ୟକ୍ତିନିର୍ବିଶେଷରେ ଉତ୍କୃଷ୍ଟ ସାମାଜିକ-ଶିକ୍ଷା-ସାହିତ୍ୟର ଏକ ତାଲିକା ମତେ ସେମାନେ ଦେଇଯାଆନ୍ତୁ, ଏହାହିଁ କହିରଖିଲି ସେମାନଙ୍କୁ ।

ପାଠକମାନଙ୍କୁ ଏଠାରେ ସାମାନ୍ୟ ବୁଝାଇ ରଖେ–ସାମାଜିକ ଶିକ୍ଷା-ସାହିତ୍ୟ ପ୍ରକୃତରେ କ'ଣ ? କମିଟି ବସିବାର ବହୁ ପୂର୍ବରୁ ମୁଁ ସେସବୁକୁ ଭାବି ରଖିଥାଏ । ତେଣୁ କମିଟିକୁ ସଙ୍ଗେ ସଙ୍ଗେ ସମାଜ-ଶିକ୍ଷା-ସାହିତ୍ୟର ଭିନ୍ନ ଭିନ୍ନ ଆତ୍ମିକ ଶ୍ରେଣୀ ବତାଇଦେଲି ।

୧ – ଆମ ସଂସ୍କୃତିରେ ଯାହା ଅଭାବ, ଯାହା ଆମକୁ ଉପରକୁ ଓ ଆଗକୁ ଯିବାରେ ବାଧା ଦେଉଛି ଓ ତାହାର ନିରାକରଣ ଯେଉଁ ଲେଖାଦ୍ୱାରା ସମ୍ଭବ ହେବ, ତାହାହିଁ ଆମର ସମାଜ-ଶିକ୍ଷା-ସାହିତ୍ୟ ।

୨ –ଯାହା ଆମ ସଂସ୍କୃତିରେ ମହାନ୍ ଥିଲା, କିନ୍ତୁ ଯାହା ଆଜି ବିକୃତ, ତା'ର ପୁନରୁଦ୍ଧାର କରିବାରେ ଯାହା ସହାୟତା କରିବ, ତାହାହିଁ ସମାଜ-ଶିକ୍ଷା-ସାହିତ୍ୟ ।

୩–ଯାହା ଆମ ଜାତିକୁ ଅଧିକତର ସ୍ୱାସ୍ଥ୍ୟବାନ୍, ଧନବାନ୍, ପରିଶ୍ରମୀ ଓ ପରିଚ୍ଛନ୍ନ କରିବ, ତାହାହିଁ ସମାଜ-ଶିକ୍ଷା-ସାହିତ୍ୟ ।

୪–ଯାହା ଦେଶରେ ଗଣତାନ୍ତ୍ରିକ ଭାବର ପ୍ରଚାର କରି, ଗଣତାନ୍ତ୍ରିକ ଭାରତକୁ ବଞ୍ଚାଇ ରଖିବ, ତାହାହିଁ ସମାଜ-ଶିକ୍ଷା-ସାହିତ୍ୟ ।

**୫—କିଛି ଉତ୍କୃଷ୍ଟ ସାଧାରଣ ସାହିତ୍ୟ ।**

କେବଳ ସାମାଜିକ-ଶିକ୍ଷା ନୁହେଁ, ଆମର ସମଗ୍ର ଶିକ୍ଷା ବ୍ୟବସ୍ଥାହିଁ ଏହି କେତୋଟି ନୀତି ଉପରେ ପ୍ରତିଷ୍ଠିତ ହେବା ଉଚିତ। କିନ୍ତୁ କିଏ ସେକଥା ଭାବିଯାଉଛି ବା କହିଲେ ମଧ୍ୟ ଶୁଣିଯାଉଛି !

ସେତେବେଳେ ମୋର ଅଫିସ୍ କହିଲେ, ଡି.ପି.ଆଇ. ଅଫିସର୍ ଗୋଟିଏ ରୁମ୍‌ରୁ ଅଧେ ମାତ୍ର। ଆର ଅଧକରେ ଆଉ ଏକ ଅଫିସରଙ୍କ ଅଫିସ । ମଝିରେ ମାଳେ ଆଲମିରାର ପାଚେରି । ଆମ ଅଧକରେ ପୁଣି ମୁଁ ଗୋଟାଏ କଣରେ ବସୁଥାଏ । ତା'ପରେ ଆଲମିରାର ଏକ ବାଡ଼ । ତା'ପରେ ଆଉ ଏକ ଟେବୁଲ୍, ଯେଉଁଠି ସେକାଳର ମୋର ସହକର୍ମୀ ଉତ୍କଳର ସୁପ୍ରତିଷ୍ଠିତ ଲେଖକ ଶ୍ରୀଯୁକ୍ତ ରାଧାମୋହନ ଗଡ଼ନାୟକ ଓ ଶ୍ରୀଯୁକ୍ତ ଭଞ୍ଜକିଶୋର ପଟ୍ଟନାୟକ କାମ କରନ୍ତି ।

କମିଟିକୁ ମୂଳନୀତି ସବୁ ବୁଝାଇଦେଲି । ତା'ପରେ ତାର ପ୍ରୟୋଗ ମଧ୍ୟ ବତାଇଦେଲି ଯେ, ନୀତିଗୁଡ଼ିକ ଆଖିରେ ରଖି, କମିଟି ବିଦେଶର ଭ୍ରମଣ କାହାଣୀ (ଯେଉଁଥିରୁ ଆମ ଲୋକେ କିଛି ନୂଆ କଥା ଶିଖିବେ), ଅର୍ଥକରୀ ଫସଲ, କୁଟୀରଶିଳ୍ପ, ଉତ୍କୃଷ୍ଟ ପ୍ରେରଣାଦାୟୀ ଜୀବନୀ, ଗାଉଁଲୀ ଜନତାକୁ ଲକ୍ଷ୍ୟ କରି ତାଙ୍କର ଉନ୍ନତିପାଇଁ ଲେଖାହୋଇଥିବା ପୁସ୍ତକ, କିଛି ଶିକ୍ଷା, କିଛି ଜ୍ଞାନ, କିଛି ପ୍ରେରଣାଦାୟୀ କବିତା ଇତ୍ୟାଦି ବାଛିବେ ।

ଏଇ ବିଚାର ବେଳେ ଓଡ଼ିଶା ଦେଶରେ ପ୍ରଭାବଶାଳୀ ଦୈନିକ-କାଗଜ-ସଂପୃକ୍ତ ବ୍ୟକ୍ତିମାନଙ୍କର ଓ ବିଶିଷ୍ଟ ପ୍ରକାଶକମାନଙ୍କର ପୁସ୍ତକ ପ୍ରତି ବିଶେଷଭାବରେ ଆଖିରଖି ନିର୍ବାଚନ କରିବାର ସ୍ପଷ୍ଟ ସଙ୍କେତ ମଧ୍ୟ ଆମର ଜଣେ ସହକର୍ମୀଙ୍କ ପାଖରୁହିଁ ଆସିଥିଲା । କଟକର ପୁସ୍ତକ ବଜାର ସହିତ ଘନିଷ୍ଠଭାବରେ ସେ ପରିଚିତ । ଏପରି ନ କଲେ ଅଯଥା ପାଟିତୁଣ୍ଡ ହୋଇପାରେ ବୋଲି ମଧ୍ୟ ସେ କ୍ଷୀଣ ସ୍ୱର ଉତ୍ତୋଳନ କରି ଭବିଷ୍ୟତ୍ ବାଣୀ ଶୁଣାଇଥିଲେ । ମୁଁ ତାଙ୍କ କଥା ହେଲେ ଶୁଣିଥାନ୍ତି ସେତେବେଳେ ! ମୁଁ ଘୋର ଅଜ୍ଞତାରେ ସେ ପ୍ରସ୍ତାବକୁ କଠୋର ଭାବରେ ବାଧା ଦେଲି । କାରଣ ସେ ପ୍ରକାର ମୁହଁଦେଖା ବିଚାରରେ ମୁଁ ଅନଭ୍ୟସ୍ତ । କମିଟିକୁ ଜୋର୍ ଦେଇ କହିଲି ଯେ, ସେମାନଙ୍କୁ ଅଣାଯାଇଛି ଲେଖା ବାଛିବାକୁ, ଲେଖକ ବା ପ୍ରକାଶକ ବା ଦୈନିକ କାଗଜର ସମ୍ପାଦକ-ସହସମ୍ପାଦକ ବାଛିବାକୁ ନୁହେଁ । ସେମାନେ ଯେଉଁ କାମପାଇଁ ଆସିଛନ୍ତି, ଖାରାଭାବରେ ସେଇ କାମ କରିଯାନ୍ତୁ । ଯଦି ସମାଲୋଚନା ହୁଏ, ମୁଁ ତାର ଉତ୍ତର ଦେବି । ପାଠକେ, ଓଡ଼ିଶା ଦେଶ ବୋଲି ମତେ ସେହି ଉତ୍ତର ରକ୍ତାଶ୍ରୁ ସହିତ ଦେବାକୁ ପଡ଼ିଲା । କାରଣ ମୁଁ ଭଲ ବହି ବାଛିବାକୁ ବସି, ଯୁକ୍ତିଯୁକ୍ତଭାବରେ କେତେକ ପ୍ରଭାବଶାଳୀ ବହିଦାରଙ୍କୁ ଭୁଲିଗଲି ।

ଖବରକାଗଜରେ ଆଗରୁ ସମାଜ-ଶିକ୍ଷା-ସାହିତ୍ୟ ସମ୍ପୃକ୍ତ ବହି ପାଇଁ ନୋଟିସ୍ ଦିଆ ହୋଇଥିଲା । ଫଳରେ ଗଦା-ଗଦା ବହି ଆସି ଅଫିସ୍‌ରେ ଜମାହୋଇଥାଏ । ବୟାନ କରାଯାଇଥିବା ନୀତି ଦୃଷ୍ଟିରୁ ସେହି ଗଦାମାନଙ୍କରୁ ଲେଖକ-ନିର୍ବିଶେଷରେ ଉତ୍କୃଷ୍ଟ ସମାଜ-ଶିକ୍ଷା-ସାହିତ୍ୟ ବାଛିଦେବାପାଇଁ କମିଟିକୁ କୁହାଗଲା । କମିଟି ମୋ ଅଫିସର ଆର ଟେବୁଲ୍‌କୁ ଗଲେ । ସହକର୍ମୀ ଶ୍ରୀ ରାଧାମୋହନ ଗଡ଼ନାୟକ ତାଙ୍କର ସାହାଯ୍ୟକାରୀ ରୂପେ ରହିଲେ ।

କମିଟି ଦୁଇଦିନ କାମ କରିବା ପରେ, ଶେଷ ତାଲିକା ଠିକ୍ କଲେ । କମିଟି ସହିତ ମୋର ପ୍ରଥମ ସାକ୍ଷାତ୍ ହୋଇଥିଲା ନୀତି-ବ୍ୟାଖ୍ୟାନ ବେଳେ । ଦ୍ୱିତୀୟ ସାକ୍ଷାତ୍ ଏଇ ଶେଷ ତାଲିକାରେ ଦସ୍ତଖତ ଦେଲାବେଳେ – ବେଶ୍ ସେତିକି ।

ଏ କମିଟି ଯେଉଁ ଯେଉଁ ପୁସ୍ତକ ନିର୍ବାଚିତ କରିଗଲେ, ପାଠକଙ୍କୁ ଅନୁରୋଧ, ଧୈର୍ଯ୍ୟଧରି ଓ ଦୟାକରି ସେଇ ତାଲିକା ଉପରେ ସେ ଆଖି ବୁଲାଇ ନିଅନ୍ତୁ । ମୋର ପୂର୍ବବର୍ତ୍ତୀ ଅଫିସରଙ୍କର ନିର୍ବାଚନ ତ ପାଠକ ଜାଣିଛନ୍ତି, ବର୍ତ୍ତମାନ ମୋ ବେଳର ନିର୍ବାଚନ ଓ ମୋ ପରବର୍ତ୍ତୀ ନିର୍ବାଚନ ଦେଖିଲେ, ବିଜ୍ଞ ପାଠକ ନିଜେଇ ସବୁ ଓଜନ କରିପାରିବେ ।

## ମୋ ବେଳର ନିର୍ବାଚିତ ସମାଜ-ଶିକ୍ଷା-ସାହିତ୍ୟ

### କ – ଶ୍ରେଣୀ

(ପ୍ରତ୍ୟକ୍ଷ ଭାବରେ ଗ୍ରାମୋନ୍ନତିପାଇଁ ଲେଖା)

ଗାଁ ମଜଲିସ୍– ହରେକୃଷ୍ଣ ମହତାବ
ଟଙ୍କା ସୁନାର ସଂସାର – ଗୋଲକ ବିହାରୀ ଧଳ
ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ – ମାୟାଧର ମାନସିଂହ
ଆମ ଖାଦ୍ୟ ଓ ସ୍ୱାସ୍ଥ୍ୟ - ଚକ୍ରଧର ମହାପାତ୍ର

### ଖ – ଶ୍ରେଣୀ

(ଦେଶ ବିଦେଶର କାହାଣୀ)

ବିଲାତ ଡାଏରୀ – ଡକ୍ଟର ରାଧାନାଥ ରଥ
ପ୍ରବାସ ପଥେ – ମନମୋହନ ମିଶ୍ର
ମୋର ୟୁରୋପର ଅନୁଭୂତି– ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ
ପଶ୍ଚିମ ପଥିକ – ମାୟାଧର ମାନସିଂହ

### ଗ – ଶ୍ରେଣୀ

(ମହାପୁରୁଷ ଚରିତ)

ଗୌତମ ବୁଦ୍ଧ – ଜାନକୀବଲ୍ଲଭ ପଟ୍ଟନାୟକ
ସାମନ୍ତ ଚନ୍ଦ୍ରଶେଖର – ଚନ୍ଦ୍ରଶେଖର ମିଶ୍ର
ଦେଶପ୍ରାଣ ଗୋପବନ୍ଧୁ – ଭାବଗ୍ରାହୀ ପତି
ଉତ୍କଳକେଶରୀ ମଧୁସୂଦନ – ଭାବଗ୍ରାହୀ ପତି

### ଘ – ଶ୍ରେଣୀ

(ବ୍ୟବସାୟିକ ଗ୍ରନ୍ଥ)

ଅର୍ଥକରୀ ଫସଲ (୧ , ୨ , ୩, ୪) – କମଲଲୋଚନ ମହାନ୍ତି
ଫଳଚାଷ (୧ , ୨ , ୩) – ଡକ୍ଟର ବିଶ୍ୱନାଥ ସାହୁ
ମାଛଚାଷ – ବିନୋଦ କାନୁନ୍‌ଗୋ

ଗୃହଶିଳ୍ପ (୧,୨,୩,୪,୫,୬,୭) –ରାୟାବାହାଦୁର ଭିକାରୀଚରଣ ପଟ୍ଟନାୟକ
ସରଳ ଶିଳ୍ପ ଶିକ୍ଷା - ଦୁର୍ଯ୍ୟୋଧନ ବର୍ମା

### ଙ – ଶ୍ରେଣୀ

(ଗ୍ରାମ୍ୟ ଜନତା ଉପଯୋଗୀ ଶିକ୍ଷା ଓ ସଂସ୍କୃତିମୂଳକ ସାହିତ୍ୟ)

ଫକୀରମୋହନ ଗ୍ରନ୍ଥାବଳୀ
ନନ୍ଦକିଶୋର ଗ୍ରନ୍ଥାବଳୀ
ଶିଷ୍ଟାଚାର - ଶ୍ରୀରାମ ପ୍ରେମୀ
ପଲ୍ଲୀ ଝରଣା ଓ ପଲ୍ଲୀ ପୁଷ୍ପ - କୁଞ୍ଜ ବିହାରୀ ଦାଶ
ଆମ ପୁରୁଣା କାହାଣୀ - ବଟକୃଷ୍ଣ ପ୍ରହରାଜ (ନୀତିମୂଳକ ଗଳ୍ପାବଳି)
ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ – ମାୟାଧର ମାନସିଂହ

### ଚ – ଶ୍ରେଣୀ

(ସମସାମୟିକ ସମସ୍ୟା ନେଇ ଲିଖିତ ପୁସ୍ତକ)

ଆମର ଭୁଲ୍ କେଉଁଠି – ଡକ୍ଟର ରାଧାନାଥ ରଥ
ଆଦିବାସୀ ସମାଜ – ଇନ୍ଦୁମତୀ ଦେବୀ
ନୂଆ ପଇସା – ବିନୋଦ କାନୁନ୍‌ଗୋ
ସମ୍ବାଦ ଓ ସାମ୍ବାଦିକତା – ଚନ୍ଦ୍ରଶେଖର ମହାପାତ୍ର

### ଛ – ଶ୍ରେଣୀ

(ଦେଶାତ୍ମବୋଧ-ଜାଗରଣକାରୀ ଆଧୁନିକ ଗଦ୍ୟ ଓ କବିତା)

କୀର୍ତ୍ତିମାଳା – ଗୋଦାବରୀଶ ମହାପାତ୍ର
ଉତ୍କଳିକା – ରାଧାମୋହନ ଗଡ଼ନାୟକ

## ଡିସ୍‌କାଉଣ୍ଟ୍ –

ସେବର୍ଷ ବଜେଟ୍‌ରେ ଥିବା ୨୧ ହଜାର ଟଙ୍କାପାଇଁ ଏଇ ହେଲା କମିଟି-ନିର୍ବାଚିତ ପୁସ୍ତକ ତାଲିକା ।

କିନ୍ତୁ ଏଇ ବହି ବିକାକିଣାରେ ଡିସ୍‌କାଉଣ୍ଟ୍ ଯେ ଗୋଟାଏ ବ୍ୟାପାର ହୋଇ ଠିଆହେବ, ଏକଥା ମୋ କଳ୍ପନାକୁ ସେତେବେଳେ ଆସିନଥିଲା । ଡି.ପି.ଆଇ. ବା ନିର୍ବାଚନ କମିଟି ବା ମୋର ଅଫିସ ମଧ୍ୟ ଏ ସମ୍ପର୍କରେ କୌଣସି ନିର୍ଦ୍ଦେଶ ଦେଇନଥିଲେ । ମୋର ଏ ବିଷୟରେ ଯାହା ଅଭିଜ୍ଞତା ଥିଲା, ତାହା ଥିଲା ଅତ୍ୟନ୍ତ ଅସ୍ପଷ୍ଟ । ଅବଶ୍ୟ ସମ୍ବଲପୁର କଲେଜରେ ପ୍ରତିବର୍ଷ ସହସ୍ର ସହସ୍ର ଟଙ୍କାର ପୁସ୍ତକ କିଣାହେଉଥିଲା, କିନ୍ତୁ ସେଥିପାଇଁ ଜଣେ ଅଧ୍ୟାପକ ଚାର୍ଜରେ ଥିଲେ । ଲାଇବ୍ରେରିଆନ୍ ଓ ଲାଇବ୍ରେରୀ-ଇନ୍‌ଚାର୍ଜ–ଅଧ୍ୟାପକ ଯେଉଁ ବହି ତାଲିକା ଓ ସେ ସମ୍ପର୍କରେ କାଗଜପତ୍ର ଥୁଅନ୍ତି, ମୁଁ ସେଥିରେ କେବଳ ଦସ୍ତଖତ ମାରୁଥିଲି । ତାଲିକାଟି ପଢ଼ି

ଭଲବହି, ଖରାପ ବହି କେବଳ ବେଳେ ବେଳେ ବାଛିଦେଉଥିଲି । ସେତିକି । ଡିସ୍‌କାଉଣ୍ଟ ଫିସ୍‌କାଉଣ୍ଟ କି ହୁଏ, ମୁଁ ସେକଥା କେବେହେଲେ କାହାକୁ ପଚାରିଯାଇନି ।

ବର୍ତ୍ତମାନ ମୋର ସହକର୍ମୀ କର୍ମଚାରୀହିଁ ମତେ ଦେଖାଇଦେଲେ ଯେ, ଏଠି ଡିସ୍‌କାଉଣ୍ଟ ପ୍ରାୟ ଅଢ଼େଇ ହଜାର ଟଙ୍କା । ସ୍ଥିର କଲି ଯେ, ଡିସ୍‌କାଉଣ୍ଟ୍ ଟଙ୍କାରେ ମଧ୍ୟ ଆଉ ବହି କିଣି ବାଣ୍ଟିବି ।

କମିଟି ପୁସ୍ତକ ନିର୍ବାଚନ କରିଗଲା ପରେ ମଧ୍ୟ ଅନେକ ଭଲ ବହି ମୋ ଦୃଷ୍ଟିକୁ ଅଣା ଯାଇଥିଲା । କମିଟିକୁ ଯେଉଁ ନୀତିରେ ବହିସବୁ ବାଛିବାକୁ କହିଥିଲି, ସେହି ନୀତିର ବାହାରକୁ ଆଦୌ ନଯାଇ, ମୁଁ ନିମ୍ନଲିଖିତ କେତେ ଖଣ୍ଡ ଅଧିକା ପୁସ୍ତକ ଡିସ୍‌କାଉଣ୍ଟ ଟଙ୍କାରେ କିଣିନେଲି, ଗ୍ରାମ୍ୟ ଲାଇବ୍ରେରୀମାନଙ୍କପାଇଁ ।

ଯମ ପରାଜୟ—ଇନ୍ଦୁଭୂଷଣ ମିଶ୍ର—(କ- ଶ୍ରେଣୀ)
(ଗ୍ରାମ୍ୟ ସ୍ୱାସ୍ଥ୍ୟରକ୍ଷା ଉପରେ ପାଲା)
ସିପାହୀ ବିଦ୍ରୋହର ଝଲକ – ସୂର୍ଯ୍ୟନାରାୟଣ ଦାଶ – (ଛ-ଶ୍ରେଣୀ)
ସ୍ୱାଧୀନତାର କାହାଣୀ – ଭଗବାନ ପତି ଓ କୃଷ୍ଣଚନ୍ଦ୍ର କର – (ଛ-ଶ୍ରେଣୀ)
ଜୟମାଲ୍ୟ—ଭଞ୍ଜ କିଶୋର ପଟ୍ଟନାୟକ (ଛ-ଶ୍ରେଣୀ)
ଜ୍ୟୋତ୍ସ୍ନା ଓ କସ୍ତୁରିକା – ପ୍ରାଣକୃଷ୍ଣ ସାମଲ
ଓଡ଼ିଆ ଜ୍ଞାନକୋଷ (ନମୁନା) – (ଙ-ଶ୍ରେଣୀ *)

ପାଠକେ, ମୋ ପୂର୍ବେ ରାସକ୍ରୀଡ଼ା ଓ ଭୂତକେଳି ସମାଜ-ଶିକ୍ଷା-ସାହିତ୍ୟ ନାମରେ ବଣ୍ଟାହୋଇଥିବାର ତ ଦେଖିଲେ । ତା'ପରେ ମୋ-ବେଳର 'ଦୁର୍ନୀତିଗ୍ରସ୍ତ' ନିର୍ବାଚନ ତାଲିକା ତ ଏଇ ଥୋଇଲି । ଏବେ ମୋର ପରବର୍ତ୍ତୀ ଅଫିସରଙ୍କର ସାମାଜିକ 'ସାହିତ୍ୟ'ର ନିର୍ବାଚନ ପାଠକମାନଙ୍କ ଆଗେ ଥୋଇଦେଉଛି । ସାମାଜିକ-ସାହିତ୍ୟ କାହାକୁ କୁହାଯିବ, ତାହା ତ ଆଗରୁ କହିଛି । ସେହି ଦୃଷ୍ଟିରୁ ପାଠକେ ତିନି ତାଲିକାର ତୁଳନା କରି ମୁଁ କି ଘୋର ଅପରାଧ କଲି ନିଜେ ହିଁ ବିଚାର କରିପାରିବେ ।

## ପରବର୍ତ୍ତୀ ଅଫିସରଙ୍କ ତାଲିକା –

| | |
|---|---|
| ପ୍ରତିବିମ୍ବ | ବଳରାମ ପଟ୍ଟନାୟକ, ଶାନ୍ତିନିବାସ, ବାଣୀମନ୍ଦିର |
| ଗାଁ ବାଲାଙ୍କ ଜାଣିବା କଥା | ନିମାଇଁଚରଣ ଦାସ, ରେଖା ପବ୍ଲିଶିଂ ହାଉସ୍ |
| ବୃକ୍ଷଲତା ... | ନିମାଇଁଚରଣ ଦାସ, ରେଖା ପବ୍ଲିଶିଂ ହାଉସ୍ |

* ଏହି ଓଡ଼ିଆ ଜ୍ଞାନକୋଷ (ନମୁନା) ଉପରେ ଡି.ପି.ଆଇ. ଡକ୍ଟର ବଳଭଦ୍ର ପ୍ରସାଦ ନିମ୍ନଲିଖିତ ସର୍କ୍ୟୁଲାର ନଂ. ୧୯୬୯୦(୨୨) ନଭେମ୍ବର ୨୬, ୧୯୫୫ରେ ସମସ୍ତ ଇନ୍‌ସପେକ୍ଟର ଓ ପ୍ରିନ୍‌ସିପାଲମାନଙ୍କୁ ଇସ୍ୟୁ କରି ଦେଇଥିଲେ – ''ଡକ୍ଟର ମାନସିଂହ ଗୋଟିଏ ଓଡ଼ିଆ ଏନ୍‌ସାଇକ୍ଲୋପିଡ଼ିଆ ସଂଗ୍ରହ କରିବାକୁ ଯାଉଛନ୍ତି । ସେ ପ୍ରଥମ ଖଣ୍ଡ ଛାପିଛନ୍ତି, ଯେଉଁଥିରେ 'ଅ'ର 'ଅକ୍ଷ' ପର୍ଯ୍ୟନ୍ତ ଶବ୍ଦ ଅଛି । ସେ ଯେ ଏଇ କାମରେ ହାତଦେଇଛନ୍ତି ତାହା ଅତ୍ୟନ୍ତ ପ୍ରଶଂସନୀୟ । ଯଦି ଭିନ୍ନ-ଭିନ୍ନ ଅନୁଷ୍ଠାନ ସବୁ ଏଇ ପ୍ରଥମ ଖଣ୍ଡକ କିଣିନେଇଯାନ୍ତି, ତେବେ ଅନ୍ୟାନ୍ୟ ଖଣ୍ଡ ସବୁ ସମ୍ପୂର୍ଣ୍ଣ କରିବା ତାଙ୍କ ପକ୍ଷରେ ସହଜ ହେବ । ଆଶାକରେ ତମେ ଏ ଦିଗରେ ଆବଶ୍ୟକ ସାହାଯ୍ୟ କରିବ ।'' - ବି. ପ୍ରସାଦ

| | |
|---|---|
| ସ୍ୱାସ୍ଥ୍ୟ, ସାହିତ୍ୟ, ସମାଜ | ନିମାଇଁଚରଣ ଦାସ, ରେଖା ପବ୍ଲିଶିଂ ହାଉସ୍ |
| ସମସ୍ତଙ୍କ ଜାଣିବା କଥା | ନିମାଇଁ ଚରଣ ଦାସ, ରେଖା ପବ୍ଲିଶିଂ ହାଉସ୍ |
| ଗାଭୀ | ବି.କେ. ଦାସ,ରେଖା ପବ୍ଲିଶିଂ ହାଉସ୍ |
| ସଞ୍ଚୟନ | ବିଦ୍ୟୁତ୍‌ପ୍ରଭା ଦେବୀ, ରେଖା ପବ୍ଲିଶିଂ ହାଉସ୍ |
| ବିବିଧ ସାର ସଂଗ୍ରହ | ଅକ୍ଷୟ କୁମାର ଚକ୍ରବର୍ତ୍ତୀ, କଟକ ଟ୍ରେଡ଼ିଂ କମ୍ପାନୀ |
| ଯୁଗେ ଯୁଗେ ଭାରତୀୟ ନୌ- ଜୀବନ | ନବୀନ କୁମାର ସାହୁ କଟକ ଟ୍ରେଡ଼ିଂ କମ୍ପାନୀ |
| ବରୁଣ ପୂଜା | ଇନ୍ଦୁଭୂଷଣ ମିଶ୍ର, କଟକ ଟ୍ରେଡ଼ିଂ କମ୍ପାନୀ |
| ରାମାୟଣ କଥା | ଜି.ସି. କର, କଟକ ଟ୍ରେଡ଼ିଂ କମ୍ପାନୀ |
| ମୌଳିକ ସ୍ୱାସ୍ଥ୍ୟ ସଫାଇ ଓ ସାମାଜିକ ଶିକ୍ଷା | ଜି.କର, କଟକ ଟ୍ରେଡ଼ିଂ କମ୍ପାନୀ |
| ଅଭିନୟ ଶିକ୍ଷା | ଜି. କର, ସାରସ୍ୱତ ଭଣ୍ଡାର |
| ଗ୍ରାମସେବା | ଏନ୍ ପ୍ରଭା, ସାରସ୍ୱତ ଭଣ୍ଡାର |
| ଆଦର୍ଶ ଗ୍ରାମ ଗଠନ | ଜେ. ମିଶ୍ର, ସାରସ୍ୱତ ଭଣ୍ଡାର |
| ଆଦର୍ଶ ପାଠଶାଳା | ଜେ.ମିଶ୍ର, ସାରସ୍ୱତ ଭଣ୍ଡାର |
| ସଫେଇ କାମ | ଜେ. ମିଶ୍ର, ସାରସ୍ୱତ ଭଣ୍ଡାର |
| ପ୍ରୌଢ଼ ଶିକ୍ଷା | ଡି.ଆର୍. ନନ୍ଦ, ସାରସ୍ୱତ ଭଣ୍ଡାର |
| ମୌଳିକ ସାମାଜିକ ଶିକ୍ଷା | ଡି.ଆର୍. ନନ୍ଦ, ସାରସ୍ୱତ ଭଣ୍ଡାର |
| ଦେଶୀ ଖେଳବହି | ମନମୋହନ ଦାସ, ସାରସ୍ୱତ ଭଣ୍ଡାର |
| ନୂଆ ଖେଳ ବହି | ମନମୋହନ ଦାସ, ସାରସ୍ୱତ ଭଣ୍ଡାର |
| ସବୁ ଦେଶର ପିଲା | ପି.ନନ୍ଦ, ସାରସ୍ୱତ ଭଣ୍ଡାର |
| ସବୁ ଦେଶର ଗପ | ପି.ନନ୍ଦ, ସାରସ୍ୱତ ଭଣ୍ଡାର |
| ଉତ୍କଳକେଶରୀ ମଧୁସୂଦନ | ବି.ପତି, ସାରସ୍ୱତ ଭଣ୍ଡାର |
| କଥାଟିଏ କହୁ | ସି. ମହାପାତ୍ର, ସାରସ୍ୱତ ଭଣ୍ଡାର |
| ଏକତାର ବଳ | ଏନ୍ . ପ୍ରଭା, ସାରସ୍ୱତ ଭଣ୍ଡାର |
| ଆଦର୍ଶ ଛାତ୍ର | ଏନ୍. ପ୍ରଭା, ସାରସ୍ୱତ ଭଣ୍ଡାର |
| ପରିଶ୍ରମର ଫଳ | ଜେ. ମିଶ୍ର, ସାରସ୍ୱତ ଭଣ୍ଡାର |
| ଦେଶପ୍ରାଣ ଗୋପବନ୍ଧୁ | ବି.ପତି, ସାରସ୍ୱତ ଭଣ୍ଡାର |
| ବିଂଶ ଶତାବ୍ଦୀର ଦୁନିଆ | ପି. ମିଶ୍ର, ସାରସ୍ୱତ ଭଣ୍ଡାର |
| ପଦ୍ମାବତୀ | ସୁନ୍ଦରମଣି ପଟ୍ଟନାୟକ, ସାରସ୍ୱତ ଭଣ୍ଡାର |

ସ୍ୱା ବୈକୁଣ୍ଠନାଥ ପଟ୍ଟନାୟକ

ତିନି ସାମାଜିକ ଅଫିସରଙ୍କର 'ଉତ୍କୃଷ୍ଟ ସାମାଜିକ ସାହିତ୍ୟ'ର ତିନି ବିଭିନ୍ନ ତାଲିକା ପାଠକମାନଙ୍କ ସମ୍ମୁଖରେ ଥୋଇଦେଇହିଁ ବିଦାୟ ନେଉଛି ।

---

# ବିଂଶ ଅଧ୍ୟାୟ
# ଶୋଣିତ ତୃଷ୍ଣା

ପୂର୍ବ ଅଧ୍ୟାୟରେ, ମୋର ପୂର୍ବବର୍ତ୍ତୀ କାଳର, ମୋ ବେଳର ଓ ମୋର ପରବର୍ତ୍ତୀ ଅଫିସରଙ୍କ ସମୟର ଗ୍ରାମ୍ୟ ପୁସ୍ତକାଳୟମାନଙ୍କ ନିମିତ୍ତ ସାମାଜିକ-ଶିକ୍ଷା-ସାହିତ୍ୟ କିପରି ବଛାଯାଇଛି, ତାହା ତ ଜଣାଇଦିଆଯାଇଛି । କିନ୍ତୁ ଆଗ ଓ ପଛ ନିର୍ବାଚନରେ ସମସ୍ତେ ନୀରବ, ଅର୍ଥାତ୍ ସେସବୁ ଉତ୍କୃଷ୍ଟ ସାମାଜିକ ସାହିତ୍ୟ ଓ ସେ ନିର୍ବାଚନ ସୁନୀତିବନ୍ତ । ଅଥଚ, ମାନସିଂହ-ନିର୍ବାଚିତ ତାଲିକା ଉପରେ 'ଦୁର୍ନୀତି'ର ଏପରି ଚିତ୍କାର ଉଠିଲା କିଆଁ ? କ'ଣ, ସେ ରାସକ୍ରୀଡ଼ା, ଭୂତକେଳି ବା ଦେଶୀ ଖେଳ ବା 'ପିଲାଙ୍କ ରାମାୟଣ'କୁ ସାମାଜିକ-ଶିକ୍ଷା-ସାହିତ୍ୟ ବୋଲି ବାଣ୍ଟିପାରିଲାନାହିଁ ବୋଲି ? ଅଥବା, ସେ ମୂର୍ଖ, ବହି ବାଛିବାର ଅର୍ଥ ଯେ, ଏ ଦେଶରେ ପ୍ରକୃତରେ ବହିଦାର ବାଛିବା, ଏହି ମୌଳିକ ସାହିତ୍ୟିକ ତତ୍ତ୍ୱଟି ଭୁଲିଗଲା ?

ପରେ ଖବରକାଗଜ (ପ୍ରଜାତନ୍ତ୍ର, ଜୁଲାଇ ୩, ୧୯୫୭ । ଦେଖନ୍ତୁ ପରିଶିଷ୍ଟ)ରେ ମୁଁ ଚାଲେଞ୍ଜ ଦେଇଥିଲି ଯେ, ଆମ ନିର୍ବାଚିତ ପୁସ୍ତକାବଳି ଉତ୍କୃଷ୍ଟ ସାମାଜିକ ସାହିତ୍ୟ ନୁହେଁ ବା ଆମ ତାଲିକାରୁ ଖଣ୍ଡିଏ ବହି କାଢ଼ିନେଇ କେହି କହୁ ଯେ ଏଇ ଶ୍ରେଣୀରେ ତା'ଠାରୁ ଉତ୍ତମତର ପୁସ୍ତକ ଥିଲା, କିନ୍ତୁ ଆମେ ଜାଣି ଜାଣି ତାହା ତାଲିକାକୁ ନ ଆଣି, ତା' ସ୍ଥାନରେ କେବଳ ବନ୍ଧୁ-ଗୋଷ୍ଠୀ-ପ୍ରୀତିରେ ଅଯୋଗ୍ୟ ବା ଖରାପ ବହି ପୂରେଇଦେଇଛୁ । ଏଇ ଚାଲେଞ୍ଜ ଏକାଧିକ ପତ୍ରରେ ଡି.ପି.ଆଇ.ଙ୍କୁ ବି ଦେଇଥିଲି । କିନ୍ତୁ ଏହି ମୁଖ୍ୟ ଓ ମୌଳିକ ପ୍ରସଙ୍ଗ ଉପରେ ସକଳେ ନୀରବ । ପରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ନିଜେ ଆମ ପୁସ୍ତକ ନିର୍ବାଚନ ନେଇ କିପରି ସନ୍ତୋଷ ପ୍ରକାଶ କଲେ, ତାହା ଏହି ଅଧ୍ୟାୟରେ ପରେ ବର୍ଣ୍ଣିତ ହେବ । ଆମେ ସାମାଜିକ-ଶିକ୍ଷା-ସାହିତ୍ୟ ନିର୍ବାଚନପାଇଁ ଯେଉଁ ଆଦର୍ଶ ଓ ଯେଉଁ ଶ୍ରେଣୀ ବିଭାଗ ସବୁ କରିଥିଲୁ ତାହା ଯେ ଭ୍ରମାତ୍ମକ, ତାହା ନାହିଁ ଡି.ପି.ଆଇ., ନାହିଁ ମନ୍ତ୍ରୀ ବା ପାଟିତୁଣ୍ଡରେ ସେତେବେଳେ ମୁଖ୍ୟ ଭାଗ ନେଇଥିବା କାଗଜ, କେହି ପଦେହେଲେ କହିବାର ଦେଖିଲୁନାହିଁ । ଅଥଚ, ଦୁର୍ନୀତିର ଚିତ୍କାର । ଅଦ୍ଭୁତ ଏ ଦେଶରେ ଦୁର୍ନୀତିର ଭାବ ଓ ସଂଜ୍ଞା !

ଯାହାହେଉ, ବହି କିଣାକିଣି ସରିଲା । ଭିନ୍ନ ଭିନ୍ନ ଜିଲ୍ଲା ଅଫିସରମାନଙ୍କ ନିକଟକୁ ବହି ସବୁ ପଠାଇ ଦିଆଗଲା । ତାହାର ଅଳ୍ପକାଳ ପରେ ୧୮ । ୪। ୧୯୫୭ର ଏକ ଓଡ଼ିଆ ଦୈନିକ ପତ୍ରରେ ଏକ 'ନାଗରିକ'ଙ୍କର ବେନାମୀ ଚିଠି ଆମ ପୁସ୍ତକ-ନିର୍ବାଚନ ବିରୋଧରେ ପ୍ରକାଶ ଲାଭକଲା ।

'ନାଗରିକ' କଟକର ଜଣେ ପୁସ୍ତକ ବ୍ୟବସାୟୀ । ତାଙ୍କର କୌଣସି ପୁସ୍ତକ ଆମ ତାଲିକାରେ ନଥିଲା, ଯଦିବା ମୋର ପୂର୍ବବର୍ତ୍ତୀ ଅଫିସରଙ୍କ ବେଳର କାଗଜପତ୍ରରେ ବହି-ସପ୍ଲାୟାର ଭାବରେ ତାଙ୍କ ନାମ ମୁଁ ଦେଖିଛି । ଆମବେଳେ ହଠାତ୍ ପରିବର୍ତ୍ତନ ନିଶ୍ଚୟ ତାଙ୍କୁ ବାଧିବା କଥା ।

କିନ୍ତୁ ଆର୍ଥିକ ଅପେକ୍ଷା, ଏହି 'ନାଗରିକ'ଙ୍କ ପକ୍ଷରେ ପାଟିତୁଣ୍ଡପାଇଁ ଏକ ବ୍ୟକ୍ତିଗତ କାରଣହିଁ ବେଶି ଜରୁରୀ ଥିଲା ବୋଲି ତାଙ୍କରିଠାରୁ ପରେ ଶୁଣିଲି । ପରେ ନାଗରିକ ଓ ଅନ୍ୟ ବହୁ ମୁଖରୁ ମୋ କାନକୁ ଏଇ ଖବର ଆସିଲା ଯେ, ସେତେବେଳେ ଆମ ଅଫିସରେ କାମକରୁଥିବା କୌଣସି କର୍ମଚାରୀଙ୍କ କର୍ମ, ବଚନ ଓ ବ୍ୟବହାରରେହିଁ କଟକର ଅନେକ ପୁସ୍ତକ ବ୍ୟବସାୟୀ ଏପରି ବିରକ୍ତ ହୋଇଥିଲେ ଯେ, ତାଙ୍କୁଇ ହଇରାଣରେ ପକାଇବା ପାଇଁ ହିଁ ଚକ୍ରାନ୍ତ ଆରମ୍ଭ ହୋଇଥିଲା – ଅବଶ୍ୟ ଆର୍ଥିକ କ୍ଷତି ସେଥିକି ଇନ୍ଧନ ଯୋଗାଇଲା ।

ଘଟଣାର ପ୍ରାୟ ଛ'ମାସ ପରେ ଜଣେ ପ୍ରକାଶକ-ବନ୍ଧୁଙ୍କଠାରୁହିଁ ସମଗ୍ର ଷଡ଼ଯନ୍ତ୍ରର ମୁଖ୍ୟ, ସେହି ତଥାକଥିତ 'ନାଗରିକ'ଙ୍କୁ ଜାଣିଲି । ତହିଁଆରଦିନହିଁ 'ନାଗରିକ'ଙ୍କୁ ଭେଟିଲି ଓ ତାଙ୍କୁ ସଫା ପଚାରିଲି,·''ତମେ ଏତେ କାଣ୍ଡ ଘଟେଇଲ ମୋ ବିରୁଦ୍ଧରେ । ସତ କହ ତ, କ'ଣ ମୋର ଅପରାଧ ? ମୁଁ କ'ଣ ସରକାରୀ ଟଙ୍କା ଖାଇଯାଇଛି ? ମୁଁ କ'ଣ ଜାଣି ଜାଣି ବନ୍ଧୁ-କୁଟୁମ୍ବଙ୍କ ଖରାପ ବହି ପୂରେଇ ଦେଇଛି ? ଏତେ କାଣ୍ଡ କଲ, ମତେ ଟିକିଏ ପଚାରିଲନି ହେଲେ ।''

ନାଗରିକ କହିଲେ–''ଆଜ୍ଞା, ଆପଣଙ୍କ ଦୁର୍ଦ୍ଦଶାରେ ଆମେ ସମସ୍ତେ ଦୁଃଖିତ । ଆପଣ ନିର୍ଦ୍ଦୋଷ । ଆପଣଙ୍କ ପ୍ରତି କାହାରି ଶ୍ରଦ୍ଧା ବା ସମ୍ମାନ ଊଣା ହୋଇଯାଇନି । କେବଳ ଅନ୍ୟକୁ (ଉର୍ଦ୍ଧ୍ୱ-ସୂଚିତ ସେହି କର୍ମଚାରୀଙ୍କୁ) ଖାପଚରେ ପକେଇବାପାଇଁ ଆମେ ଯୋଗାଡ଼ କରୁ କରୁ, ଆପଣ ସେଥିରେ ପଡ଼ିଗଲେ । ଆମେ ସମସ୍ତେ ସେଥିପାଇଁ ଦୁଃଖିତ ।''

## ନୀତିବୋଧ ଓ ରୁଚିବୋଧ –

'ନାଗରିକ' ପୁସ୍ତକ ବ୍ୟବସାୟୀ । ବ୍ୟବସାୟରେ ପ୍ରତିଦ୍ୱନ୍ଦ୍ୱିତା ସ୍ୱାଭାବିକ । ବ୍ୟବସାୟୀ 'ସାହିତ୍ୟ' ନ ବୁଝିଲେ ବିସ୍ମୟର କାରଣ କ'ଣ ଅଛି ? ସେ ବୁଝେ ତାର ପଣ୍ୟ ବିକ୍ରି ହେବ ଓ ତା' ହାତକୁ ପଇସା ଆସିବ । ଏ କ୍ଷେତ୍ରରେ ନାଗରିକ ଓ ତାଙ୍କ ପରି ଅନ୍ୟ କେତେକ ବ୍ୟବସାୟୀ, ଯେତେବେଳେ ତାଙ୍କ ବ୍ୟବସାୟ ଉପରେ ଆଞ୍ଚ ଆସିବାର ଆଶଙ୍କା କଲେ, ସେତେବେଳେ ସେମାନଙ୍କର ପାଟିତୁଣ୍ଡ କରିବା ଏକାନ୍ତ ଅସ୍ୱାଭାବିକ ବା ଅଶୋଭନୀୟ ବୋଲି ମୁଁ ମନେ କରିବିନାହିଁ । ତା'ଛଡ଼ା ଏ ଦେଶରେ ପୁସ୍ତକ ତ ସମ୍ମାନିତ ଆଉ ନୁହେଁ କେବଳ ସାହିତ୍ୟପାଇଁ ତାହାର ଏକାନ୍ତ ମୂଲ୍ୟ ହେଲାଣି ବ୍ୟବସାୟିକ । ବହି ଆଜି ଏକ ପଣ୍ୟମାତ୍ର । ସେଥିରୁ ଲେଖକ, ପ୍ରକାଶକ ଓ ନିର୍ବାଚକ ଆଦି କିଏ କେତେ ଉଖୁଡ଼ା ଖାଇବେ, ସେହି ହେଲା ଆଜି ଏ ଦେଶରେ ମୁଖ୍ୟ ବିଚାର । ଏଥିରେ ଏପଟ ସେପଟ ହେବାହିଁ ଦୁର୍ନୀତି । ମୋର ପୂର୍ବବର୍ତ୍ତୀ ଜଣେ କ୍ଲାସ୍ ୱାନ୍ ଅଫିସର ଯେଉଁ 'ସାହିତ୍ୟ' ବାଣ୍ଟିଥିଲେ, ସେଥିରେ ଏ ଦେଶର ସାଧାରଣ ପୁସ୍ତକ ବ୍ୟବସାୟୀର ଯେ 'ସାହିତ୍ୟ-ସଚେତନତା' ନାହିଁ ଏହା କହିବାର ଅର୍ଥ କ'ଣ ? ତେଣୁ ମୁଁ 'ନାଗରିକ' ବା ତାଙ୍କ ସାଥିରେ ଯୋଗଦେଇଥିବା ଅନ୍ୟାନ୍ୟ ପୁସ୍ତକ ବ୍ୟବସାୟୀମାନଙ୍କ ବ୍ୟବହାରରେ ଆଦୌ ଦୁଃଖିତ ହୋଇନଥିଲି । କିନ୍ତୁ ସେମାନେ କଟକର ଜଣେ ପ୍ରସିଦ୍ଧ ପାଠ୍ୟ-ପୁସ୍ତକ-ବିକ୍ରେତା, ଯେ କି ଜନୈକ ପୂର୍ବତନ ଡି.ପି.ଆଇ. ଓ ଉତ୍କଳର ସୁପରିଚିତ ଚୁଗୁଲି-ବିଭୀଷିକା-ସୃଜନକାରୀ

ପତ୍ରିକାର ସମ୍ପାଦକ ବିରୋଧରେ ମଧ୍ୟ ଅକୁତୋଭୟ ଓ ଜୟଯୁକ୍ତ ଭାବରେ ସମର ଦେଇ ପାରିଥିଲେ, ସେ ଏଇ ଘଟଣାରେ ଯେଉଁ ମନୋଭାବ ଦେଖାଇଥିଲେ, ସେପରି କରିଥିଲେ ହୁଏତ ସୁନ୍ଦର ଓ ରୁଚିସମ୍ପନ୍ନ ବ୍ୟବହାର ହୋଇଥାନ୍ତା । ନ୍ୟସ୍ତସ୍ୱାର୍ଥରେ ସାମାନ୍ୟ ବାଧାର ଆଶଙ୍କା ଦେଖିଲେହିଁ ଆମେ ରୁଚି, ନୀତି, ନ୍ୟାୟ ସବୁକୁ ଫୋପାଡ଼ିଦେଇ ପାଗଳା କୁକୁର ପରି ହେବା କ'ଣ ଉଚିତ ? ଉପରୋକ୍ତ ସିଦ୍ଧିବାନ୍ ପୁସ୍ତକ ବ୍ୟବସାୟୀବନ୍ଧୁଙ୍କ ନିଜ ମୁହଁରୁ ଯାହା ଶୁଣିଛି, ତାହାହିଁ କହୁଛି – ନଚେତ୍ ମୋର ଏହା ଜାଣିବାର ଉପାୟନ୍ତର ନ ଥିଲା । ଏହି ବ୍ୟବସାୟୀଙ୍କର ପୁସ୍ତକ ଆମ ତାଲିକାରେ ନଥିଲା । ତେଣୁ ମୁଁ ବହୁଦିନ ଧରି ଏହି ବ୍ୟବସାୟୀବନ୍ଧୁଙ୍କୁହିଁ 'ନାଗରିକ' ବୋଲି ଧରିନେଇ ସେହିହିଁ ଆମ ନିର୍ବାଚିତ ତାଲିକା ବିରୋଧରେ ଆନ୍ଦୋଳନର ନେତା ଥିବାର ସନ୍ଦେହ କରିଥିଲି । କାରଣ, ଶୁଣିଥିଲି ତ ସେ ଏକ ନଛୋଡ଼ବନ୍ଦା ଲୋକ । କିନ୍ତୁ ଶୁଣିଥିଲି ମଧ୍ୟ ଯେ ସେ ଏକ ଖାଣ୍ଟିଲୋକ ଏବଂ ତାର ଉତ୍କୃଷ୍ଟ ପରିଚୟ ମଧ୍ୟ ଏଇ ଘଟଣାରେ ପାଇଲି । ଦିନେ କୌଣସିଠାରେ ତାଙ୍କୁ ଭେଟିବାର ସୁଯୋଗ ପାଇ ମୁଁ ତାଙ୍କୁ ପରିଷ୍କାର ପଚାରିଦେଲି, ସେ ଏହି ଷଡ଼ଯନ୍ତ୍ରର ନେତା କି ନା । ସେ ତାର ଏପରି ଉତ୍ତର ଦେଲେ–

''ରାମ, ରାମ । ମୋର କୋକେଇ ସଜ ହେଲାଣି, ମୁଁ ଆପଣଙ୍କ ବିରୁଦ୍ଧରେ ଚକ୍ରାନ୍ତ କରିବାକୁ ଯିବି ? ମୋର ଯଦି ପ୍ରକୃତ ଅନୁଭବ ହୋଇଥାନ୍ତା ଯେ ଆପଣ ଅନ୍ୟାୟ କରିଛନ୍ତି, ତେବେ ମୁଁ ପ୍ରକାଶ୍ୟରେ ଆପଣଙ୍କ ବିରୋଧରେ ଲେଖିଥାନ୍ତି – ନାମ ଲୁଚେଇ କରିବି କିଆଁ ? ବ୍ୟବସାୟୀବନ୍ଧୁଙ୍କ ଦଳ ଆସିଲେ । ମୁଁ ତାଙ୍କୁ କୌଣସି ପ୍ରଶ୍ରୟ ଦେଲିନାହିଁ ଓ କହିଲି–''ଦେଖ, ମୋର ବି ସନ୍ଦେହ ହୋଇଥିଲା ମୁଁ ସିଧା ଡକ୍ଟର ମାନସିଂହଙ୍କ ଅଫିସିକୁ ଗଲି ଓ ଆପତ୍ତି କଲି–ଆମର କୌଣସି ବହି ତାଲିକାରେ ନାହିଁ କାହିଁକି ? ସେ ତାଙ୍କର ସମସ୍ତ ଖାତା-ପତ୍ର ମୋ ଆଗରେ ମେଲାଇଦେବାକୁ ଅଫିସକୁ ଆଦେଶ ଦେଲେ । ମୁଁ ତନ୍ନ ତନ୍ନ କରି ସବୁ ଦେଖିଲି । ଦେଖିଲି, କିଛି ଅନ୍ୟାୟ କରାହୋଇନି ଓ ସେୟା ମଧ୍ୟ ତାଙ୍କୁ କହି ଫେରିଲି । ତମେ ସେମିତି ଯାଉନା । ଏପରି ଲୁଚେଇ-ଚୋରେଇ ଆନ୍ଦୋଳନ କରିବାକୁ ଯାଉଛ କାହିଁକି ?''

ପାଠକମାନଙ୍କ କୌତୂହଳାର୍ଥେ ଏଠାରେ ଆଉ ଗୋଟିଏ କଥା ମଧ୍ୟ କହିରଖେ ଯେ, ଆମ ନିର୍ବାଚିତ ପୁସ୍ତକ ତାଲିକାରେ ଦୈନିକ-ପ୍ରଜାତନ୍ତ୍ର ଓ ଅଧୁନାଲୁପ୍ତ ଗଣତନ୍ତ୍ର ସମ୍ପୃକ୍ତ ବନ୍ଧୁମାନଙ୍କର ବହି ଥିଲା । ସେ ବନ୍ଧୁମାନେ ଆମ ବିରୋଧରେ ବିଷୋଦ୍‌ଗାର କରି ନ ଥିଲେ । କରିନଥିଲେ ମଧ୍ୟ ଚୁଗୁଲି-ଜୀବିକା-ପତ୍ରିକାର ସେହି ସମ୍ପାଦକ-ବନ୍ଧୁ ଯିଏ ମୋ କୁତ୍ସାର ସୁଯୋଗ ଖୋଜି ଆସିଛନ୍ତି ଜୀବନଯାକ – ମୋର ସୌଭାଗ୍ୟକୁ ତାଙ୍କ ବହି କମିଟି-ନିର୍ବାଚିତ ତାଲିକାରେ ଥିଲା, ଅବଶ୍ୟ ନିଜ ଗୁଣରେ । କିନ୍ତୁ ଦୁର୍ଭାଗ୍ୟକୁ 'ସମାଜ' ଓ 'ମାତୃଭୂମି' ସମ୍ପୃକ୍ତ ବନ୍ଧୁମାନଙ୍କର କାହାରି ବହି ସେଥିରେ ନାହିଁ । ସେଥିପାଇଁ ମୁଁ ଦୁଃଖିତ, କିନ୍ତୁ ଲଜ୍ଜିତ ବା ଅନୁତପ୍ତ ନୁହେଁ । ମୁଁ ନିର୍ବାଚନ କମିଟିକୁ ଦୃଢ଼ଭାବରେ କହିରଖିଥିବାରୁ, କମିଟି ସମ୍ପୂର୍ଣ୍ଣ ବ୍ୟକ୍ତି-ପ୍ରଭାବ-ନିରପେକ୍ଷ ହୋଇ ବହି ବାଛିଥିଲେ, ଯେପରି ସେ କାମ ହେବାର କଥା । ତାଲିକା ତ ଦେଇଛି, ପାଠକେ ଦେଖିନିଅନ୍ତୁ । ଦୈନିକ ପତ୍ରପତ୍ରିକା ଓ ଭିନ୍ନ ଭିନ୍ନ ପୁସ୍ତକ ବ୍ୟବସାୟୀଙ୍କ ପ୍ରତି ଆଖିରଖି ବହି ବାଛିବାକୁ ସେତେବେଳର କୌଣସି ସହକର୍ମୀ ମୂଳରୁ ଯଥେଷ୍ଟ ବ୍ୟଞ୍ଜନା କିପରି ଦେଇଥିଲେ, ସେକଥା ଓ

ସେ ପ୍ରସ୍ତାବକୁ କିପରି ଆଦୌ ପ୍ରଶ୍ରୟ ଦେଲିନାହିଁ, ତାହା ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ଅଛି । ଏ ଦେଶର ପରିସ୍ଥିତିରେ ତାହା ମୋର ମୂର୍ଖତା ହୋଇପାରେ, କିନ୍ତୁ ଭୁଲ୍ ହୋଇଛି ବୋଲି କହିବିନାହିଁ ।

ପୂର୍ବ ଏକ ଅଧ୍ୟାୟରେ ସୂଚିତ କରିଛି ଯେ, ଓଡ଼ିଶାର କୌଣସି ପ୍ରଭାବଶାଳୀ ପତ୍ରିକାର ପୂର୍ବତନ ସମ୍ପାଦକ ଓ ଏ ରାଜ୍ୟର ଏକଦା ଶିକ୍ଷାମନ୍ତ୍ରୀଙ୍କ କୌଣସି ଆତ୍ମୀୟ ଏକ ବୈଦ୍ୟପୋଥି ଲେଖିଯାଇଥିଲେ । ସେ ପୁସ୍ତକକୁ ମୁଦ୍ରିତ କରିଦେବାର ଆର୍ଥିକ କ୍ଷମତା ଶିକ୍ଷାମନ୍ତ୍ରୀ ଓ ସମ୍ପାଦକଙ୍କର ସେହି ଆତ୍ମୀୟଙ୍କ ପରିବାରର ବେଶ୍ ଥିଲା ବା ଅଛି । କିନ୍ତୁ କ୍ଷମତାଜନିତ ମାଗଣା ସୁବିଧା ଛାଡ଼େ କିଏ ? ତେଣୁ ବୈଦ୍ୟପୋଥିଟା ମଧ୍ୟ ବିନା ବାଧାରେ ଉତ୍କଳ ବିଶ୍ୱବିଦ୍ୟାଳୟର ''ଓଡ଼ିଆ ସାହିତ୍ୟ ଉନ୍ନୟନ ଫଣ୍ଡରୁ'' ବହୁ ସହସ୍ର ଟଙ୍କା ମୁଦ୍ରଣପାଇଁ ପାଇଗଲା । ଏ ବୈଦ୍ୟପୋଥି ଛାପିବା ଯୋଗୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ସାହିତ୍ୟକୁ କଣ କମ୍ ଆଗକୁ ଠେଲିନେଇଛି ବୋଲି କହିବାକୁ ହେବ ? ଏ ବୀଭତ୍ସତା ଉପରେ ଯେଉଁ ପତ୍ରିକା ନୀରବ, ସେ କିନ୍ତୁ ଆମ ପୁସ୍ତକ ନିର୍ବାଚନ 'ଦୁର୍ନୀତିଗ୍ରସ୍ତ' ବୋଲି ହୁଙ୍କାର କରି, ଏନ୍‌ଫୋର୍ସମେଣ୍ଟ୍ ଡିପାର୍ଟମେଣ୍ଟ୍‌କୁ ଆହ୍ୱାନ ଦେଇପାରିଲେ । କିନ୍ତୁ ପାଠକେ ଜାଣିରଖନ୍ତୁ ଯେ, କ୍ଷମତାଭୟଜନିତ-ପୂଜାହିଁ ଏକ ମାରାତ୍ମକ ସାମାଜିକ ଦୁର୍ନୀତି ଓ ପ୍ରଭାବ-କ୍ଷମତା-ବିଶିଷ୍ଟ ଥିବାରୁ, ବହିର ସଂସାରରେ ମଧ୍ୟ ଏପ୍ରକାର ପୂଜା ଯେବେ ଆଶା କରାଯାଏ, ତା'ଠାରୁ ଘୋରତର ଓ ଅଧିକତର ମାରାତ୍ମକ ଦୁରାଚାର କଳ୍ପନା କରାଯାଇନପାରେ । ତା' ପରେ, ବହି ସମ୍ପର୍କରେ ଏନ୍‌ଫୋର୍ସମେଣ୍ଟ୍ ଡିପାର୍ଟମେଣ୍ଟ୍‌କୁ ଆହ୍ୱାନର ତାତ୍ପର୍ଯ୍ୟ କ'ଣ ? ଏନ୍‌ଫୋର୍ସମେଣ୍ଟ୍ ଡିପାର୍ଟମେଣ୍ଟ୍ କହିବ କି କେଉଁ ବହି ଭଲ ନା ମନ୍ଦ ? ନିଜେ ତ ଏହା କହିପାରିଥାନ୍ତେ । ଚାଲେଞ୍ଜ୍ ବି ଦିଆହୋଇଥିଲା । ପୁଣି, ତମ ଆହ୍ୱାନରେ ଏନ୍‌ଫୋର୍ସମେଣ୍ଟ୍ ଡିପାର୍ଟମେଣ୍ଟ୍ ଆସି କ'ଣ ଦେଖିଗଲା ଯେ, ଆମେ ସରକାରୀ ଟଙ୍କାପଇସା ଖାଇଯାଇଥିଲୁ ? କିନ୍ତୁ କେବଳ ବୋଧହୁଏ ସେକାଳର ଡି.ପି.ଆଇ., ଶିକ୍ଷାବିଭାଗ ସେକ୍ରେଟାରୀ ଓ ଶିକ୍ଷାମନ୍ତ୍ରୀଙ୍କ ଗୋଷ୍ଠୀଜନ ଓ ପ୍ରିୟଜନ ହୋଇଥିବାରୁ ହିଁ ଅକ୍ଷତ ଶରୀରରେ ଖସିଗଲୁ ? ସାହିତ୍ୟିକ ନିର୍ବାଚନରେ, କାହାରି ବହି ରହିଲା ବା ନରହିଲା ଏପ୍ରକାର ପ୍ରଶ୍ନହିଁ ଏକାନ୍ତ ଅବାନ୍ତର ଓ ଅପ୍ରାସଙ୍ଗିକ । ଆହୁରି ଇତର ଓ ଅବାନ୍ତର ବିଚାର, ଏଥିରୁ କିଏ କେତେ ଟଙ୍କା ପାଇଗଲା । ସାମାଜିକ ସାହିତ୍ୟ ବାଛିବାକୁ ଜଣକୁ କୁହାଯାଇଥିଲା ଓ ତତ୍‌ସମ୍ପୃକ୍ତ ଉତ୍କୃଷ୍ଟ ପୁସ୍ତକାବଳୀର ଏକ ତାଲିକା ସେ ଥୋଇଦେଲା । ସେହି ତାଲିକାର ଉତ୍କର୍ଷ ଓ ଅପକର୍ଷ ଉପରେ ତମର କିଛି କହିବାର ନାହିଁ; ଅଥଚ କୌଣସି ରଥ-ଷଡ଼ଙ୍ଗୀ, କର-ମହାପାତ୍ରଙ୍କ ବହି ନାହିଁ ବୋଲି ଦୁର୍ନୀତିର ଚିତ୍କାର କରିପାର, କାରଣ ହାତରେ କାଗଜ ଅଛି । ପୁଣି, ନିଜ ଗୁଣବଳରେହିଁ ବହୁ ଓଡ଼ିଆ ଲେଖକଙ୍କ ବହି ତ ଆମ ତାଲିକାରେ ଅଛି । କିନ୍ତୁ ଯୁକ୍ତିପାଇଁ ଧର ଯେ, ସେ ତାଲିକାରେ କେବଳ ଜଣେ ମାତ୍ର ଲେଖକର ବହିହିଁ ଥାଆନ୍ତା ଓ ସେହି ଲେଖକ ମଧ୍ୟ ଆଉ କେହି ନ ହୋଇ, ହୋଇଥାନ୍ତେ ସ୍ୱୟଂ ସାମାଜିକ ଶିକ୍ଷା ଅଫିସର । ତଥାପି ତ 'ଦୁର୍ନୀତି' ଶବ୍ଦ ଉଚ୍ଚାରିତ ହେବାର ନୁହେଁ ଯଦି କୌଣସି ବିଚାରକ-କମିଟି କହିଥାନ୍ତେ ଯେ, କେବଳ ଏଇ ଲୋକର ଏହି ବହିକୁହିଁ ପ୍ରକୃତ 'ସାମାଜିକ ସାହିତ୍ୟ' କୁହାଯିବ । ଯାହାକୁ ପାଗଳ ମଧ୍ୟ ତା' ପ୍ରଳାପରେ କେବେହେଲେ ଲେଖକ,

କବି ବା ସାହିତ୍ୟିକ କହିବନି, ମନ୍ତ୍ରୀ ହେଲା ମାତ୍ରେ ତାଙ୍କର ୨୫ ବର୍ଷ ତଳର ଧୂଳିଧୂସର ପୁସ୍ତକର ହଠାତ୍ ସାହିତ୍ୟିକ ମୂଲ୍ୟ ଏ ଦେଶରେ ଆବିଷ୍କୃତ ହୋଇପଡ଼େ ଓ ସେ ବହି ପାଠ୍ୟପୁସ୍ତକ ହୋଇ ସଂସ୍କରଣ ପରେ ସଂସ୍କରଣ ହୋଇ ଚାଲେ ଓ ସେହି ବରେଣ୍ୟ କବି ଓ ଲେଖକ, ଗାଦିରୁ ଚାଲିଗଲାମାତ୍ରେ ସେହି ସାହିତ୍ୟରତ୍ନଟି ପୁଣି ବହିଦୋକାନର ପଛପଟକୁ ସ୍ୱସ୍ଥାନରୁ ଚାଲିଯାଏ । ଏ ଦେଶର ପତ୍ରିକା ବା ସାହିତ୍ୟ ରାଜ୍ୟରେ ଏସବୁ 'ଦୁର୍ନୀତି' ନୁହେଁ, କିନ୍ତୁ ଯେହେତୁ ମାନସିଂ ନାମକ ଏହି ବ୍ୟକ୍ତି ସାମାଜିକ ଶିକ୍ଷା ଅଫିସର, ତେଣୁ ଗ୍ରାମ୍ୟ ପୁସ୍ତକାଳୟପାଇଁ ଉଦ୍ଦିଷ୍ଟ ବହି-ତାଲିକାରେ ଫକୀରମୋହନ ଗ୍ରନ୍ଥାବଳୀ, ନନ୍ଦକିଶୋର ଗ୍ରନ୍ଥାବଳୀ ଓ ଗୋଲୋକବିହାରୀ ଧଳଙ୍କ କେନ୍ଦ୍ର ସରକାରଙ୍କ-ଦ୍ୱାରା-ପୁରସ୍କୃତ-ପୁସ୍ତକ ସ୍ଥାନ ପାଇଥିବାରୁ, ତାହା ଦୁର୍ନୀତିଗ୍ରସ୍ତ ନିର୍ବାଚନ ବୋଲି ଚିତ୍କାର ଓ ସେହି ଦୁର୍ନୀତି ନିବାରଣପାଇଁ ପୁଣି ଏନ୍‌ଫୋର୍ସମେଣ୍ଟ୍ ଡିପାର୍ଟମେଣ୍ଟ୍‌କୁ ଆହ୍ୱାନ ଦିଆଯାଇପାରେ । କାରଣ ଏହି ଦେଶରେ କେବଳ ଏନ୍‌ଫୋର୍ସମେଣ୍ଟ୍ ବିଭାଗହିଁ କହିପାରେ ସାମାଜିକ ସାହିତ୍ୟଭାବରେ ଷଡ଼ଙ୍ଗୀଙ୍କ ପୁସ୍ତକ ବା ସେନାପତିଙ୍କ ପୁସ୍ତକ, କାହାକୁ ଗ୍ରହଣ କରାଯିବ !

କି ସୂକ୍ଷ୍ମ ନୀତିବୋଧ ! କି ସୂକ୍ଷ୍ମ ଜାତୀୟତା !

କି ସୂକ୍ଷ୍ମାତିସୂକ୍ଷ୍ମ ମଧ୍ୟ ସୁକୁମାର ସାହିତ୍ୟିକ ମୂଲ୍ୟବୋଧ !

## ମନ୍ତ୍ରୀଙ୍କ ଅଭିଯୋଗ –

ଯାହାହେଉ ହୈ ଚୈ ସରିଲା । ଦଣ୍ଡ ଜାରିହୋଇଗଲା । ମୁଁ କିନ୍ତୁ କୌଣସି ଦିନ ସେବଳର ଶିକ୍ଷାମନ୍ତ୍ରୀଙ୍କ ଦେଖାକରିବାକୁ ମଧ୍ୟ ଚେଷ୍ଟା କରିନଥିଲି । ପରେ ବନ୍ଧୁମାନଙ୍କଠାରୁ ଶୁଣିଛି ଯେ, (ସତ୍ୟମିଥ୍ୟା ମୁଁ କହିପାରିବିନାହିଁ) ମନ୍ତ୍ରୀ ମୋ ଉପରେ ଉତ୍‌କ୍ଷିପ୍ତ ହେବାପାଇଁ ଏହା ଏକ ମନସ୍ତାତ୍ତ୍ୱିକ (ସାଇକୋଲଜିକାଲ୍) କାରଣ ଯୋଗାଇଥିଲା । ପାଖଲୋକ ସବୁ ତାଙ୍କୁ କୁଆଡ଼େ ଚିହାଇଲେ (ଯେପରି ଶୁଣିଛି) 'ସେ ଅମୁକର ଲୋକ । ସେ ଆପଣଙ୍କୁ ଖାତିର କରିଛି ? ଦେଖୁନାହାନ୍ତି, ଏତେ ଘଟଣା ଘଟିଗଲେ ମଧ୍ୟ, ସେ ଆପଣଙ୍କୁ ଥରେ ଦେଖାକରିବା ଉଚିତ ମନେକରୁନି ।' ପରେ ନିଜେ ବୁଝିପାରିଛି ଯେ, ମୋର ଅଦୌ ଦେଖା ନକରିବା ହୁଏତ ପ୍ରକୃତରେ ଏକ ଭୁଲ୍ କାମ ହୋଇଥିଲା । ଛୁଟିରେ ତ ଥାଏ । ଜଣେ ପ୍ରାକ୍ତନ ଡି.ପି.ଆଇ. ବନ୍ଧୁଙ୍କ ବାରମ୍ବାର ପ୍ରରୋଚନାରେ, ଶେଷରେ, ଅର୍ଥାତ୍ ଦଣ୍ଡ ସବୁ ଜାରି ହୋଇଗଲା ପରେ ଥରେ ମନ୍ତ୍ରୀଙ୍କି ଦେଖାକରିବାକୁ ସ୍ଥିର କଲି, ବୋଧହୁଏ ମୋର ବାରିପଦା-ବଦଳିଟା ବନ୍ଦ କରିବାର ଛଳନାରେ । କଟକରୁ ଶ୍ରୀ ପାଣିଗ୍ରାହୀଙ୍କୁ ପ୍ରତ୍ୟକ୍ଷ ଫୋନ୍ କରିବା ଓ ତାଙ୍କ ଘରେ ସାକ୍ଷାତ୍ ଭିତରେ ମନ୍ତ୍ରୀ ଶ୍ରୀ ପାଣିଗ୍ରାହୀ ଯେ ମୋ ପ୍ରତି ଭଦ୍ର ବ୍ୟବହାର କରିଥିଲେ, ତାହା ସ୍ୱୀକାର କରୁଛି । ସଙ୍ଗରେ ନେଇଯାଇଥିଲି ଆମ ଡିପାର୍ଟମେଣ୍ଟରୁ ପ୍ରକାଶିତ ହୋଇଥିବା ବହିମାନଙ୍କର ଏକ ସେଟ୍ ଓ ଗ୍ରାମ୍ୟ ପୁସ୍ତକାଳୟମାନଙ୍କପାଇଁ ନିର୍ବାଚିତ ପୁସ୍ତକମାନଙ୍କର ଏକ ଏକ କପି । ଷଡ଼ଯନ୍ତ୍ର କେତେଦୂର ହୋଇପାରେ ଏଇଥିରୁ ଅନୁମେୟ ଯେ, ଡି.ପି.ଆଇ. ବା ଅନ୍ୟ କେହି, ଯେଉଁ ବହିମାନଙ୍କ ଉପରେ ଏତେ ଅପପ୍ରଚାର ସେତେବେଳକୁ ଘଟିଗଲାଣି, ସେପର୍ଯ୍ୟନ୍ତ ପ୍ରଧାନକର୍ତ୍ତା ଶିକ୍ଷାମନ୍ତ୍ରୀଙ୍କି

ସେଗୁଡ଼ିକ ବେଳେ ଦେଖେଇନେବା ତାଙ୍କ କର୍ତ୍ତବ୍ୟ ବୋଲି ମନେକରିନଥିଲେ ବା ନ୍ୟାୟ-ବିଚାର-ପରାୟଣ ମନ୍ତ୍ରୀ ମଧ ସେଗୁଡ଼ିକୁ ମଗାଇ ଦେଖିନେବା ଆବଶ୍ୟକ ମନେକରିନଥିଲେ । ଯେକୌଣସି ମତେ ଦଣ୍ଡ ଦେବା ବୋଧହୁଏ ଥିଲା ପ୍ରଧାନ ଲକ୍ଷ୍ୟ– ଏସବୁ କରିବା ତେଣୁ କି ଦରକାର ଥିଲା ? କୁକୁରକୁ ଫାଶୀ ଦେବାକୁ ହେଲେ, ତାର ଗୋଟାଏ ବଦନାମ ତ ଯେକୌଣସିମତେ ଠିଆକରେଇବା କଥା – ନହେଲେ ଫାଶୀ ହେବ କିମିତି ? ଯାହା ହେଉ ଶ୍ରୀ ପାଣିଗ୍ରାହୀ ପ୍ରଥମଥରପାଇଁ ସେଗୁଡ଼ିକ ଦେଖିଲେ । ଗୋଟି ଗୋଟି କରି ମନୋଯୋଗ ଦେଇ ଫିଟାଇଲେ । ଖଣ୍ଡେ ଦିଖଣ୍ଡ ପଢ଼ିଲେ ମଧ ।

ଶେଷରେ ତାଙ୍କ ସହିତ ମୋର ଏହିପ୍ରକାର କଥାଭାଷା ହେଲା, (ଅବଶ୍ୟ ଇଂରେଜୀରେ)–

ମୁଁ – ମହାଶୟ, ମୋ ବିରୋଧରେ ଚାର୍ଜ୍‌ଟା ଠିକ୍ କଣ କହିବେ କି ? ସରକାରୀ ତହବିଲ ତୋସରଫ ? ନା, ଆଉ କଣ ?

ମନ୍ତ୍ରୀ–ନା ନା, ତାହା ଆଦୌ ନୁହେଁ । ଆପଣଙ୍କ ବିରୋଧରେ ଦୁର୍ନୀତିର କୌଣସି ଅଭିଯୋଗ ନାହିଁ ।

ମୁଁ – ଆପଣ ଏ ପୁସ୍ତକଗୁଡ଼ିକର ନିର୍ବାଚନରେ ସନ୍ତୁଷ୍ଟ ତ ? ଅର୍ଥାତ୍ ମୋର ବା ମୋ ପ୍ରିୟଜନମାନଙ୍କର ଅଯୋଗ୍ୟ ପୁସ୍ତକସବୁ ମୁଁ ଭର୍ତ୍ତିକରିଦେଇନି ଓ ଓଡ଼ିଶାର ଗ୍ରାମ୍ୟ ପୁସ୍ତକାଳୟମାନଙ୍କପାଇଁ ବର୍ତ୍ତମାନ ଓଡ଼ିଶାର ପୁସ୍ତକ-ବଜାରରେ ଯାହା ସର୍ବୋତ୍କୃଷ୍ଟ ସାମାଜିକ-ଶିକ୍ଷା-ସାହିତ୍ୟ ବୋଲି ଧରାଯାଇପାରେ ତାହାହିଁ ମୁଁ ଯୋଗାଇବାକୁ ଚେଷ୍ଟା କରିଛି, ଏ ବିଷୟରେ ଆପଣ ନିଃସନ୍ଦେହ ତ ?

ମନ୍ତ୍ରୀ– ମୁଁ ଏ ସୁନ୍ଦର ନିର୍ବାଚନରେ ପ୍ରକୃତରେ ସନ୍ତୁଷ୍ଟ । ମୁଁ ଏସବୁ ଆଗରୁ ଦେଖିନଥିଲି ।

ମୁଁ–ସାମାଜିକ-ଶିକ୍ଷା ବିଭାଗ ତରଫରୁ ଯେଉଁ ବହିଗୁଡ଼ିକ ପ୍ରକାଶ କରାଯାଇଛି ସେଗୁଡ଼ିକ ?

ମନ୍ତ୍ରୀ– ସେଗୁଡ଼ିକ ମଧ ଅତି ଉତ୍ତମ ହୋଇଛି ।

ମୁଁ– ମୋର ଅପରାଧ ତା' ହେଲେ କଣ ? ମୁଁ ତ ସରକାରଙ୍କର ଟଙ୍କା ଖାଇଯାଇନାହିଁ । ଆପଣ ନିଜେ କହୁଛନ୍ତି ବହି-ନିର୍ବାଚନ ଉତ୍ତମ । ଆପଣଙ୍କ ବଜେଟ୍ ଥିଲା ୨୧ ହଜାର ଟଙ୍କା । ମୁଁ ୨୩ ହଜାର ୫ ଶହ ଟଙ୍କାର ବହି କିଣି ବାଣ୍ଟିଛି । ତେଣୁ ମୋର ଗୁରୁ ଅପରାଧଟା କ'ଣ, ମତେ ବୁଝାନ୍ତୁ; କାହିଁକି ଏ ପାଟିତୁଣ୍ଡ ?

ମନ୍ତ୍ରୀ– ଆପଣ ଗଡ଼ନାୟକଙ୍କ ବହିର ଦାମ୍ ବଢ଼ାଇଦେଲେ ।

ମୁଁ– ସେଟା କ'ଣ ଭାରି ଗୋଟାଏ ଅପରାଧ ? ବଢ଼େଇବାର ଦାମ୍ ଅର୍ଥ ଏହା ନୁହେଁ ଯେ,ସେତେବେଳେ ଯଥାର୍ଥ ବୋଧକରିହିଁ ମୁଁ ବଢ଼େଇଛି । ସେ ବଢ଼େଇବାର ଅର୍ଥ ଏହା ନୁହେଁ ଯେ, ଗଡ଼ନାୟକ ଓ ମୁଁ ଚାରି-ଚାରି ଅଣା ଭାଗ କରି ନେବାକୁ ଚାହିଁଥିଲୁ ! (ସମ୍ପୃକ୍ତ ପରିଶିଷ୍ଟ ଦେଖନ୍ତୁ)

ମନ୍ତ୍ରୀ–ନା ନା, ତା' ଆଦୌ ନୁହେଁ । ଆମେ ଆପଣଙ୍କ ପ୍ରତି କୌଣସି ଅଭିସନ୍ଧି ଆରୋପ କରୁନାହୁଁ । ଆପଣ କେବଳ ଗୋଟିଏ ପଦ୍ଧତି-ସଂପୃକ୍ତ ଅନିୟମତା(Procedural irregularity) କରିପକେଇଛନ୍ତି । ଡି.ପି.ଆଇ.ର ଦସ୍ତଖତଟା ନେଇଯାଇଥିଲେ କିଛି ହୋଇ ନଥାନ୍ତା ।

ମୁଁ–ମୋର ପୂର୍ବବର୍ତ୍ତୀ ଅଫିସର ସମସ୍ତ କାମ ନିଜ ଦାୟିତ୍ୱରେ କରିବାର ମୁଁ କାଗଜପତ୍ରରେ ଦେଖୁଛି । ସେଠି ଡି.ପି.ଆଇ.ର ଅସ୍ତିତ୍ୱହିଁ ନାହିଁ ।

ମନ୍ତ୍ରୀ–ଆପଣଙ୍କ ବହି ରହିଗଲା କି ନା – ସେଇଠି ହେଲା ତଫାତ୍ ।

ମୁଁ–ଏକ ନିର୍ବାଚନ କମିଟିହିଁ ମୋ ବହି ବାଛିଲା – ମୁଁ ବାଛିନି । ବିଶ୍ୱବିଦ୍ୟାଳୟର ଭିନ୍ନ ଭିନ୍ନ ବୋର୍ଡ଼ ଅଫ୍ ଷ୍ଟଡ଼ିଜମାନଙ୍କରେ ଏହା ନିତ୍ୟ ଘଟଣା । କୌଣସି ବୋର୍ଡ଼ର ଯେକୌଣସି ମେମ୍ବର ବା ଏପରି କି ସ୍ୱୟଂ ଚେୟାରମାନଙ୍କର ମଧ ଯଦି ସମ୍ପୃକ୍ତ ବିଷୟରେ ଉତ୍କୃଷ୍ଟ ବହି ଥିବ, ତେବେ ସେ ବହି ନିଶ୍ଚୟ ନିର୍ବାଚିତ ହୋଇଥାଏ । ତାହାତ ଅପରାଧ ବୋଲି କେହି ଧରେନା । ମୁଁ ଓଡ଼ିଆ ବୋର୍ଡ଼ରେ ଥିଲାବେଳେ ମୋ ବହି ପାଠ୍ୟପୁସ୍ତକଭାବରେ ସେହିପରି ବଛାଯାଇଛି । କେବଳ ସମ୍ପୃକ୍ତ ପୁସ୍ତକ ଆଲୋଚିତ ହେଲାବେଳେ ସମ୍ପୃକ୍ତ ମେମ୍ବର-ଲେଖକ ବା ଚେୟାରମାନ୍ ସ୍ଥାନ ଛାଡ଼ି ଚାଲିଯାନ୍ତି । ଆମ ନିର୍ବାଚନ-କମିଟି ପୁସ୍ତକ ନିର୍ବାଚନ କଲାବେଳେ ମୁଁ ଦୁଇଦିନଯାକ ଆଦୌ ଉପସ୍ଥିତ ନଥିଲି । ତେଣୁ ମୋର ଅପରାଧ ଏପରି ଗୁରୁତର ହୋଇଉଠିଲା କିପରି ? ଏଇ ତ ବିଶ୍ୱବିଦ୍ୟାଳୟରେ ମୋର ବହୁବର୍ଷର ଅଭିଜ୍ଞତା ।

ମନ୍ତ୍ରୀ– ମତେ ଏକଥା ଜଣାନଥିଲା ।

ମୁଁ – ଆପଣ ରେଜିଷ୍ଟ୍ରାର ବା ଭାଇସ-ଚାନ୍ସେଲରଙ୍କୁ ପଚାରି ବୁଝନ୍ତୁ ।

ମନ୍ତ୍ରୀ – ଆଚ୍ଛା ବୁଝିବି । କିନ୍ତୁ କମିଟି ଯେଉଁ ତାଲିକା ଦେଇଥିଲେ, ସେଥିରେ ଆପଣ ବହୁତ ଅଦଳବଦଳ କରିଛନ୍ତି ।

ମୁଁ – 'ବହୁତ' ଆଦୌ ନୁହେଁ । ମାତ୍ର ଦୁଇଟି ଜାଗାରେ ଓ ତାହାର ଯଥାର୍ଥତା ଯୋଗୁଁ । ଆପଣ ଆଣନ୍ତୁ ଫାଇଲ୍ – ମୁଁ ଦେଖାଇଦେବି ।

(ନୋଟ୍–ବହି କିଣାହେଲା ବେଳକୁ, କମିଟି-ନିର୍ବାଚିତ କେତେଖଣ୍ଡ ବହି ବଜାରରେ ନମିଳିବାରୁ ସେହି ଶ୍ରେଣୀର ଅନ୍ୟ ବହି କିଣିବାକୁ ଅଫିସ୍‌କୁ ଆଦେଶ ଦେଇଥିଲି ଓ ବଛାଯାଇଥିବା ମୋର ଓ ମହତାବଙ୍କର ଏକ ଏକ ପୁସ୍ତକର କମିଟି-ନିର୍ଦ୍ଦିଷ୍ଟ-ସଂଖ୍ୟାକୁ ଏକାବେଳକେ ଅଧାକରିଦେଇ ସେହି ଟଙ୍କାରେ ଗୋପବନ୍ଧୁ ଓ ମି.ଦାସଙ୍କ ଜୀବନୀ ଅଧିକ ସଂଖ୍ୟାରେ କିଣିବାପାଇଁ ଆଦେଶ ଦେଇଥିଲି ।)

ମନ୍ତ୍ରୀ – ଫାଇଲ୍ ଏଠି ନାହିଁ ।

ମୁଁ – କିନ୍ତୁ ସବୁସତ୍ତ୍ୱେ, ମୁଁ ଆପଣଙ୍କର ଟଙ୍କା ସ୍ପର୍ଶ କରିନି, ଅଥଚ ଅଢ଼େଇ ହଜାର ଟଙ୍କାର ଅଧିକା ବହି ଯୋଗାଇଛି ଓ ସର୍ବୋତ୍କୃଷ୍ଟ ପୁସ୍ତକ ବାଛି ଯୋଗାଇଛି । ପୁଣି ନଅମାସ ଭିତରେ ଡିପାର୍ଟମେଣ୍ଟ ତରଫରୁ ବାରଖଣ୍ଡ ଉତ୍କୃଷ୍ଟ ପୁସ୍ତକ ପ୍ରକାଶ କରାଇଛି, ଯାହାକି ପୂର୍ବେ ଡିପାର୍ଟମେଣ୍ଟ୍‌ର ଦଶବର୍ଷ ଆୟୁଷ ଭିତରେ କେବେ ହୋଇନଥିଲା । କେବଳମାତ୍ର 'ପ୍ରସେଡ୍ୟୁରାଲ ଏରର' ପାଇଁ ଆପଣ ଚାରିପ୍ରକାର ଦଣ୍ଡ ମୋ ଉପରେ ଲଦିଦେଲେ, ଠିକ୍ ଯେଉଁ ପ୍ରସିଡ୍ୟୁରାଲ୍ ଭୁଲ୍ କରି ମଧ ମୋର ପୂର୍ବ ସବୁ ଅଫିସର କାମ କରିଯାଇଛନ୍ତି ଓ କେହି ସେଥିପାଇଁ ଦଣ୍ଡିତ ନ ହେଲା ସ୍ଥଳେ, ମତେ ଆପଣ ଚାରିଟି ଦଣ୍ଡର ସମ୍ମୁଖୀନ କରାଇଛନ୍ତି କିପରି ?

ମନ୍ତ୍ରୀ – ଡିପାର୍ଟମେଣ୍ଟାଲ ଡିସିପ୍ଲିନ୍‌ପାଇଁ ଆମକୁ ଆକ୍ସନ୍ ନେବାକୁ ହେବ, ବ୍ୟକ୍ତିନିର୍ବିଶେଷରେ ।

ମୁଁ – ଭଲକଥା । କିନ୍ତୁ ତାହା କ'ଣ ମୋରିଠୁ ଆରମ୍ଭ ହେବ ?

ମନ୍ତ୍ରୀ– ଯାହା ପୂର୍ବେ ଘଟିଥାଉନା କାହିଁକି, ବର୍ତ୍ତମାନର ସର୍କାର ଡିପାର୍ଟମେଣ୍ଟାଲ୍ ଡିସିପ୍ଲିନ୍ ପାଇଁ ଆପଣଙ୍କ ବିରୁଦ୍ଧରେ ଆକ୍ସନ୍ ନେବାପାଇଁ ବାଧ ହେଲେ ।

ମୁଁ – ଦେଖନ୍ତୁ, ପିନ୍ସପାଲ୍‌ଭାବରେ ମୁଁ ବେଶ୍ ସୁଖରେ ଥିଲି । ସାତ-ଆଠ ବର୍ଷ ଗୋଟିଏ କଲେଜକୁ ଯେପରି ଚଳାଇବାର କଥା ସେପରି ଚଳାଇଥିଲି । ସେଠୁ ଆପଣଙ୍କ ଶାସନ ମତେ ତଡ଼ିଲେ କାହିଁକି, କହିପାରିବେ କି ? କାହିଁକି ମତେ ଏ ଜଞ୍ଜାଳରେ ଆଣି ପକେଇଲେ ?

ମନ୍ତ୍ରୀ– ଆପଣଙ୍କୁ ସମ୍ବଲପୁର କଲେଜରୁ ଆଣିବା ଏକ ମସ୍ତ ଭୁଲ୍ ହୋଇଛି ।

ମୁଁ – ଆପଣମାନେ ଭୁଲ୍ କରି ଯାଉଥିବେ, ତାର କୌଣସି ପ୍ରତିକାର ନାହିଁ । କିନ୍ତୁ ଆମରି ଭୁଲ୍ ଉପରେ ଡିସିପ୍ଲିନାରୀ ଆକ୍ସନ୍ ।

ମନ୍ତ୍ରୀ – ମୁଁ ତ ସେତେବେଳେ ନଥିଲି । ତେଣୁ ଯାହା ଘଟିଥିଲା, ତାହାପାଇଁ ମୁଁ ଦାୟୀ ନୁହେଁ ।

ମୁଁ – ମତେ ଆପଣ କୌଣସି ଏକ କଲେଜର ପ୍ରିନ୍ସପାଲ୍ କରି ହେଲେ ଫେର୍ ପଠାଇ ଦିଅନ୍ତୁ । କଲେଜ ପ୍ରିନ୍ସପାଲ୍ ଭାବରେ ତ ମୋ ସମ୍ପର୍କରେ ଆପଣଙ୍କର କହିବାର କିଛି ନାହିଁ ।

ମନ୍ତ୍ରୀ – ଗଭର୍ଣ୍ଣମେଣ୍ଟ ସ୍ଥିରକରିଛି ଯେ, ଆପଣଙ୍କୁ କୌଣସି ଅନୁଷ୍ଠାନର ଶୀର୍ଷ ଦାୟିତ୍ୱ ଦିଆଯିବ ନାହିଁ ।

ମୁଁ – ଦିଶ୍ ଇଜ୍ ଆର୍ବିଟାରି (ଏହା ସ୍ୱୈର ବିଚାର) । ଆଡଲ୍‌ଟ ସୋସାଲ୍ ଏଡୁକେଶନ୍ ଅଫିସରଭାବରେ ମୋର ଦାୟିତ୍ୱ ମୁଁ ଉତ୍ତମଭାବରେ ତୁଲେଇଛି କି ନାହିଁ, ତାହାରି ବିଚାର ହେଉ । ବାକତ ସବୁକଥା ଅବାନ୍ତର । ଗୋଟିଏ ତଥାକଥିତ ପ୍ରସେଡ୍ୟୁରାଲ୍ ଏରଯୋଗଁ ଓ୍ୱାର୍ଣ୍ଣିଂ ଛଡ଼ା ଅନ୍ୟ କୌଣସି ଶାସ୍ତି ଦିଆଯିବାର ନୁହେଁ ।

ମନ୍ତ୍ରୀ – ଗଭର୍ଣ୍ଣମେଣ୍ଟ ଯାହା ଡିସାଇଡ୍ କରିଛି, ତାହା ଆପଣଙ୍କୁ ମାନିବାକୁ ହେବ ।

ଜଣେ ମହାମାନ୍ୟ ମନ୍ତ୍ରୀଙ୍କୁ ସାମାନ୍ୟ ଏକ କର୍ମଚାରୀର ୟା ଉପରେ ଆଉ କି ଉତ୍ତର ଥାଇପାରେ ? ପ୍ରସେଡ୍ୟୁରାଲ ଏରର୍ ବା ଡି.ପି.ଆଇ.ଙ୍କ ଦସ୍ତଖତ ନନେବାର ଅନିୟମିତତା ଦେଖାଇ ଚାରିଚାରିଟା ଦଣ୍ଡବିଧାନ କରିବା ଏକ ଘୋର ପ୍ରତାରଣାମୂଳକ ଅଭିଯୋଗ ଛଡ଼ା ଆଉ କିଛି ହୋଇପାରେ କି ? (ଏ ସମ୍ପର୍କରେ 'ଦସ୍ତଖତର କି ଅବସ୍ଥା' ଶୀର୍ଷକ ପରିଶିଷ୍ଟ ଦ୍ରଷ୍ଟବ୍ୟ) ।

ଆମର ପୁସ୍ତକ ନିର୍ବାଚନକୁ ଆଳ କରି ଗଡ଼ନାୟକ ଓ ମୋ ଉପରେ, ନିମ୍ନଲିଖିତ ଦଣ୍ଡବିଧାନ କରାଗଲା ।

୧ – ଯେଉଁ କେତେ ଅଣା ଗଡ଼ନାୟକଙ୍କ ପୁସ୍ତକର ଦାମ୍ ବାବଦକୁ ବଢ଼ାଇ ଦିଆଯାଇଥିଲା, ହିସାବ କରି, ଡିପାର୍ଟମେଣ୍ଟ୍ କିଣିନେଇଥିବା ତାଙ୍କ ପୁସ୍ତକମାନଙ୍କ ଦାମ୍‌ରୁ ତାହା ତାଙ୍କଠାରୁ ଫେରାଇ ନିଆଗଲା ।

୨ – ମୁଁ ଗଡ଼ନାୟକଙ୍କର ଉପରିସ୍ଥ କର୍ମଚାରୀ ଥିଲେହେଁ ଓ ପ୍ରୋଡ଼କ୍ସନ୍ ଅଫିସରଭାବରେ ତାଙ୍କ କାମରେ ମୁଁ ଯଥେଷ୍ଟ ସନ୍ତୁଷ୍ଟ ବୋଲି ଡି.ପି.ଆଇ.ଙ୍କୁ କନ୍‌ଫିଡେନ୍‌ସିଆଲି ଲେଖି ଜଣାଇଥିଲେ ମଧ୍ୟ ମୋର କୌଣସି ପରାମର୍ଶ ନନେଇ ଓ ବିନା ଏକ୍ସପ୍ଲାନେଶନ୍ ବା ଅନୁସନ୍ଧାନରେ ଗଡ଼ନାୟକଙ୍କୁ ଚାକିରିରୁ ବାହାର କରି ଦିଆଗଲା ।

୩ – ମତେ, ମୋଠାରୁ ଜୁନିୟର, ଏକ ପ୍ରିନ୍ସପାଲ୍ ତଳେ କାମ କରିବାର ଆଦେଶ ଦିଆଗଲା, ଯଦିଓ ମାତ୍ର ୮ ମାସ ପୂର୍ବେ ମୁଁ ସାତ-ଆଠବର୍ଷ ପର୍ଯ୍ୟନ୍ତ ଓଡ଼ିଶା ଦେଶର ଗୋଟିଏ ଫାଷ୍ଟ ଗ୍ରେଡ୍ କଲେଜ୍ ସୁଖ୍ୟାତିର ସହିତ ଚଳେଇ ଆସିଥିଲି ।

୪ – ଡକ୍ଟର ପ୍ରସାଦ ସମ୍ବଲପୁରରୁ ବଦଳି କଲାବେଳେ ମତେ ଡି.ପି.ଆଇ. ଗ୍ରେଡ୍ ସଙ୍ଗେ ସଙ୍ଗେ ଦେବାପାଇଁ ଯାହା ପ୍ରତିଶ୍ରୁତି ଦେଇଥିଲେ ଓ ଯାହାପାଇଁ ସେ ସୁପାରିସ୍ କରିଥିଲେ (ଦେଖ, ପରିଶିଷ୍ଟ) ଓ ଯାହାର ସାଙ୍କସନ୍ ମତେ ଜଣାଇ ଦିଆଯିବା ଅବସ୍ଥାରେ ଥିଲା, ତାକୁ ମନ୍ତ୍ରୀ ପାଣିଗ୍ରାହୀଜୀ, ତାଙ୍କ ପୂର୍ବବର୍ତ୍ତୀ ମନ୍ତ୍ରୀ ଶ୍ରୀ ରାଧାନାଥ ରଥଙ୍କ ଅର୍ଡ଼ରକୁ ମଧ୍ୟ ଖାରଜ କରି, କାଟିଦେଲେ ବୋଲି ଶୁଣିଲି ।

୫ – ସର୍କାର ନେଇଥିବା ମୋ ବହି ବାବଦରେ ଯାହା ମୋର ପବ୍ଲିଶରଠାରୁ ପ୍ରାପ୍ୟ (ରୟାଲଟି) ସର୍କାରଙ୍କୁ ତାହା ମଧ୍ୟ ଫେରାଇଦେବାର ମତେ ଆଦେଶ ହେଲା ।

ଯେପରି ପୂର୍ବେ କହିଛି ଓ ମୋର ଯେତେଦୂର ମନେହେଉଛି, ମନ୍ତ୍ରୀଙ୍କି ଦେଖାକରିବାର ମୋ ପକ୍ଷରୁ ମୁଖ୍ୟ କାରଣ ଥିଲା, ମୋର ବାରିପଦା କଲେଜକୁ ଜଣେ ବନ୍ଧୁ ପ୍ରିନ୍ସପାଲଙ୍କ ତଳେ ଅଧସ୍ତନ କର୍ମଚାରୀଭାବରେ ଟ୍ରାନ୍ସଫରଟା ବନ୍ଦ କରିବାକୁ ।

କିନ୍ତୁ କଥାବାର୍ତ୍ତା ଏପରି ହେଲା ଯେ, ସେ ବିଶିଷ୍ଟ ବିଷୟଟିହିଁ ମୁଁ ବିସ୍ମୃତ ହୋଇଗଲି । ମନ୍ତ୍ରୀଙ୍କି ଠିକ୍ ଏହି ବିଷୟରେ ପ୍ରତ୍ୟକ୍ଷଭାବରେ ପ୍ରାର୍ଥନା କରିଥିବାର ବା ଏ ଦିଗରେ ସେ ହଁ-ନାହିଁ କିଛି କହିଥିବାର ମୋର ଆଦୌ ମନେପଡୁନି ।

## ମନ୍ତ୍ରୀଙ୍କି ଚାଲେଞ୍ଜ୍ –

ଯାହାହେଉ, ସେଦିନର ସେହି ପ୍ରଥମ ସାକ୍ଷାତ୍ ଶେଷ ହେବାକୁ ଆସିଲା । ମନ୍ତ୍ରୀ କେଉଁଆଡ଼େ ଯିବାକୁ ଉଠିଲେ – ମୁଁ ବି ଠିଆହେଲି ।

ଶେଷ ବାକ୍ୟରେ ମୁଁ ମନ୍ତ୍ରୀ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀଙ୍କି ଏଇ କଥା କହି (ଇଂରାଜୀରେ) ବିଦାୟନେଲି –

''ଦେଖନ୍ତୁ ମହାଶୟ, ଆପଣ ଗୋଟିଏ ହାଇକୋର୍ଟର ଏକ୍ସ-ଚିଫ୍-ଜଷ୍ଟିସ୍ ଓ ବର୍ତ୍ତମାନ ଏକ ରାଜ୍ୟର ଶିକ୍ଷାମନ୍ତ୍ରୀ । ଆପଣ ମୋ ଦେଶର ଶିକ୍ଷା ଓ ସଂସ୍କୃତିର 'ଗାର୍ଡ଼ିୟାନ୍' (ଅଭିଭାବକ) ଓ 'କଷ୍ଟୋଡ଼ିଆନ୍' (ରକ୍ଷକ) ବର୍ତ୍ତମାନ୍ । ଆପଣଙ୍କଠାରୁ ମୁଁ ନ୍ୟାୟ ବିଚାରହିଁ ଆଶାକରେ । ମୋର ଅପରାଧ ସାମାନ୍ୟ ବୋଲି ଆପଣ ନିଜେ ସ୍ୱୀକାର କରୁଛନ୍ତି, ଅଥଚ ତାକୁଇ ନେଇ ଏପରି ହଲ୍ଲା କରାହୋଇଛି, ଯେପରିକି ମୁଁ କିଛି ଗୋଟାଏ ମାରାତ୍ମକ ଅପରାଧ କରିପକାଇଛି । ଗତ ଚାରିମାସ ହେଲା, ମହାଶୟ, ଏଇ କୁତ୍ସିତ ଅପପ୍ରଚାର ଯୋଗୁଁ ମୁଁ ଲୁହ ନକାନ୍ଦି ରକ୍ତହିଁ

କାନ୍ଦୁଛି । ଆପଣ ଅଧୁନା କ୍ଷମତାପନ୍ନ, ତେଣୁ ମତେ ଦଣ୍ଡ ଦେଇପାରନ୍ତି । କିନ୍ତୁ ଏ ଜଗତରେ ଯଦି ଈଶ୍ୱର ବୋଲି ଜଣେ କିଏ ଥାଏ ଏବଂ ଏ ସୃଷ୍ଟି ଯଦି ନୀତିତନ୍ତ୍ର ଉପରେ ପ୍ରତିଷ୍ଠିତ ଥାଏ, ତାହାହେଲେ, ମୋର ଦୃଢ଼ବିଶ୍ୱାସ, କେହି ଲୋକ, କେବେହେଲେ ଓ କେଉଁଠାରେ ହେଲେ ମୋର ନିରପରାଧ ଅଶ୍ରୁର ଉତ୍ତର ଦେବ ।''

ନିରପରାଧ ଅଶ୍ରୁର ଉତ୍ତର ଯୁଗେ ଯୁଗେ ମିଳିଆସୁନାହିଁ କି ? ତାହାହିଁ ବୋଧହୁଏ ଏହି ସଇତାନୀ ସଂସାରର ଘୋର ଅନ୍ଧକାର ଭିତରେ ଏକମାତ୍ର ଆଶାର ଦିହୁଡ଼ି । ସେ ବିଭୀଷିକାର ଏପରି ସହସା ଅବସାନ ଘଟିବ – ସେତେବେଳେ ଏହା କଳ୍ପନାତୀତ ଥିଲା । କିନ୍ତୁ ସେପରି ମଧ୍ୟ ଯୁଗେ ଯୁଗେ ଘଟେ ଓ ସେହି ହେତୁ ବୋଧହୁଏ ମନୁଷ୍ୟ ବଞ୍ଚିପାରୁଛି ଏ ଧରାରେ ।

ସବୁ ଯୁକ୍ତିତର୍କ ପରେ ମଧ୍ୟ ଶ୍ରୀ ପାଣିଗ୍ରାହୀ କୌଣସି କଥାର ପୁନର୍ବିଚାର କରିନଥିଲେ । ବରାବର ସେ ଧରିଥାନ୍ତି ଯେ, ଅର୍ଡ଼ରସ ମଷ୍ଟ ବି କ୍ୟାରିଡ୍ ଆଉଟ୍ (ଆଦେଶ ନିଶ୍ଚୟ ପାଳିତ ହେବ) । ମୋର ବୋଧହେଲା, ଯେପରି ତାଙ୍କର ଭାରି ଆଶଙ୍କା ଥିଲା ଯେ, ମୁଁ ସର୍କାରୀ ଆଦେଶକୁ ଫାଙ୍କିଦେଇ ବିଶ୍ୱବିଦ୍ୟାଳୟକୁ ଚାଲିଯିବି; କାରଣ ସେତେବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟ ଏନ୍‌ସାଇକ୍ଲୋପିଡ଼ିଆ ଯୋଜନାର ଚିଫ୍ ଅଫିସର ଭାବରେ ମତେ ଆପଏଣ୍ଟ୍ କରିସାରିଥିଲେ । ମୁଁ ଛୁଟିପରେ ଛୁଟିନେଇ ଘରେହିଁ ରହିଲି । କିନ୍ତୁ ଶିକ୍ଷାମନ୍ତ୍ରୀ, ପରେ ଏକ ଆକସ୍ମିତ ସାକ୍ଷାତ୍‌ରେ ମତେ କହିଲେ ଯେ, ମୁଁ ଯାଇ ବାରିପଦାରେ ଜଏନ୍ କରିବାର ଚିହ୍ନ ସ୍ୱରୂପ ଖାଲି ଦସ୍ତଖତ ଦେଇ ଯେପରି ଆସେ, ସର୍କାରୀ ଆଦେଶର ସମ୍ମାନ ରହୁ ।

## ମନ୍ତ୍ରୀଙ୍କ ବଚନର ମୂଲ୍ୟ –

କଥାଟା ମତେ ସ୍ପର୍ଶ କଲା । ମୁଁ ବାରିପଦା ଗଲି ଓ ଫେରିଲି । ଆସି, ମନ୍ତ୍ରୀଙ୍କି ଦେଖାକଲି । ମନ୍ତ୍ରୀ ସେଥିରେ ବେଶ୍ ଖୁସି ଦେଖିଲି । ମନ୍ତ୍ରୀଙ୍କ ସହିତ ଏଥର ସାକ୍ଷାତ୍ ବେଳେ, ତାଙ୍କ ଭୁବନେଶ୍ୱର ବାସଭବନରେ, ସେତେବେଳେ ପ୍ରଜା-ସୋସାଲିଷ୍ଟ ନେତା ଶ୍ରୀଯୁକ୍ତ ନିଶାମଣି ଖୁଣ୍ଟିଆ କିପରି ଉପସ୍ଥିତ ଥିଲେ ।

ଖୁଣ୍ଟିଆଙ୍କ ଉପସ୍ଥିତିରେହିଁ ମୁଁ ଅନ୍ୟାନ୍ୟ କଥା ଭିତରେ ମନ୍ତ୍ରୀଙ୍କି କହିଥିଲି –

''ମହାଶୟ, ଆପଣ ମୋ ପ୍ରତି ବହୁ ଅନ୍ୟାୟ କରିଛନ୍ତି । ଯାହାହେଉ, ଆପଣଙ୍କ କହିବାନୁସାରେ ଆପଣଙ୍କର ଆଦେଶ ମାନିଲି । ବର୍ତ୍ତମାନ ଆପଣ ଗୋଟାଏ ହେଲେ ଅନ୍ୟାୟର ପ୍ରତିକାର କରନ୍ତୁ । ମୋର ଡି.ପି.ଆଇ. ଗ୍ରେଡ୍ ମତେ ଜଣେ ଡି.ପି.ଆଇ. ପ୍ରତିଶ୍ରୁତି ଦେଇଥିଲେ (ପରିଶିଷ୍ଟ ଦେଖ) ଓ ସର୍କାର ତାହା ସାଙ୍କସନ୍ କରିଥିଲେ । ତାହା ମତେ ଜଣେଇ ଦିଆଯାଇଥିଲା । ଅଥଚ ଆପଣ ତାକୁ ରୋଧି ଦେଲେ । ଏହାହିଁ ଆପଣଙ୍କଠାରୁ ହେଉଛି ନିଷ୍ଠୁରତମ ଆଘାତ ମୋ ପ୍ରତି (unkindest out of all) ।''

ମନ୍ତ୍ରୀ ବାଆଁରେଇ କହିଲେ–''ମୁଁ ତ ଦସ୍ତଖତ ଦେଇନି, ଆପଣ ତ ଅର୍ଡ଼ର ପାଇନାହାନ୍ତି, ଆପଣ ପାଇଲେ ବୋଲିଧରି ନେଉଛନ୍ତି କିପରି ? ତା'ପରେ, ଆମେ ସ୍ଥିରକଲୁ ଯେ, ଆଡଲ୍ଟ ସୋସାଲ୍ ଏଡୁକେଶନ୍ ପୋଷ୍ଟକୁ ଡି.ଡି.ପି.ଆଇ. ଗ୍ରେଡ୍ ଦିଆଯିବନି, ଆପଣ ପାଇବେ କିପରି ?''

ମୁଁ–'ପୋଷ୍ଟ ନହୋଇପାରେ – କିନ୍ତୁ ବିଶେଷ କାରଣ ଯୋଗୁଁ ବ୍ୟକ୍ତି ତ ପାଇପାରେ ?''

ମନ୍ତ୍ରୀ–''ଆଚ୍ଛା ହେଉ, ସବୁ ତ ସରିଲା । ଆପଣ ବିଶ୍ୱବିଦ୍ୟାଳୟକୁ ଯାଆନ୍ତୁ । ସେଇଠୁ ଲେଖିଲେ ଆପଣଙ୍କୁ ଦିଇଟା ଇନ୍‌କ୍ରିମେଣ୍ଟ ଦେଇଦେବି ।''

ମୁଁ–''ସ୍ଥିର ଏକଥା ତା'ହେଲେ ?''

ମନ୍ତ୍ରୀ–''ମୁଁ ତ କହୁଛି । ''

ମୁଁ–''ଆପଣ ମନ୍ତ୍ରୀ – ଆପଣଙ୍କ କହିବାଇ ତ ଅର୍ଡ଼ର ।

ଆଜି ବି ନିଶାମଣିବାବୁଙ୍କୁ ଏକଥା କେହି ପଚାରି ବୁଝିପାରନ୍ତି । ବିଶ୍ୱବିଦ୍ୟାଳୟରେ ଜଏନ୍ କରିବାର କେତେ ମାସ ପରେ ନିଜ ପ୍ରତିଶ୍ରୁତିର ଉଲ୍ଲେଖ କରି ସେହି ମନ୍ତ୍ରୀଙ୍କ ନିକଟକୁ ଏକ ରିପ୍ରେଜେଣ୍ଟେସନ୍ ଦେଲି । ପିଟିସନ୍‌ର ତୁରନ୍ତ ଓ ଅକୁଣ୍ଠିତ ଉତ୍ତର ଚାଲିଆସିଲା–'ରିଜେକ୍‌ଟେଡ୍' ।

ମୁଁ ସ୍ତମ୍ଭିତ ହେଲି । ସ୍ତମ୍ଭିତ ହେଲି ଆର୍ଥିକ ଲାଭ ଯାହା ଆଶା କରୁଥିଲି, ତାହା ନପାଇବାରେ ସେତେ ନୁହେଁ– ଯେତେ ପ୍ରକୃତରେ, ଜଣେ ଏକ୍ସ-ଚିଫ୍ ଜଷ୍ଟିସ୍ ଓ ଶିକ୍ଷାମନ୍ତ୍ରୀ ପାହ୍ୟା ଲୋକର, ଜଣେ ଏମ୍.ଏଲ୍. ଏ. ଓ ପ୍ରସିଦ୍ଧ ରାଜନୈତିକ ନେତା ପାହ୍ୟା ଲୋକର ଉପସ୍ଥିତିରେହିଁ, ପ୍ରଦତ୍ତ ବଚନ, ଏପରି ଲଘୁଭାବରେ ମୂଲ୍ୟହୀନ ଓ ଅର୍ଥହୀନ ହୋଇଯିବାରେ ।

## ରୟାଲ୍‌ଟିର ଲଗାମ ଓ ଗୁଣ୍ଡାମି –

କିନ୍ତୁ ମୋର ଯେଉଁ ବହିସବୁ ସାମାଜିକ ଶିକ୍ଷାଭାବରେ ସର୍କାର କିଣିଥିଲେ, ସେସବୁର ରୟାଲ୍‌ଟି ସରକାରଙ୍କୁ ଦେଇଦେବାର ଦାବି ବିରୋଧରେ ମୁଁ ବରାବର ପ୍ରତିବାଦ କରି ଦେଉ ନ ଥିବାରୁ ମନ୍ତ୍ରୀ ବା ଡି.ପି.ଆଇ. ମୋର କେନ୍ଦ୍ର ସରକାରରୁ ପ୍ରାପ୍ୟ ଏକହଜାର ଟଙ୍କା ଅଟକାଇ ତ ରଖିଥିଲେ (ପରିଶିଷ୍ଟ ଦେଖ), ଏହା ସହିତ ସମ୍ପୂର୍ଣ୍ଣ ସମ୍ପର୍କହୀନ ପ୍ରସଙ୍ଗ ମୋର ପୂର୍ବ-ଗଡ଼ଜାତରେ ଚାକିରି ସମ୍ପର୍କୀୟ ଫାଇଲ୍‌ର ବିଚାର ମଧ ବନ୍ଦକରି ରଖିଲେ । ଭାଇସ୍‌ଚାନସେଲ୍‌ରଙ୍କୁ ଲେଖାଗଲା, ମୋ ଦରମାରୁ ରୟାଲ୍‌ଟି କାଟିନେବାକୁ । ମୁଁ ଦୃଢ଼ ପ୍ରତିବାଦ କରିବାରୁ ଭାଇସ୍‌ଚାନ୍‌ସେଲ୍‌ର ତାହା କଲେ ନାହିଁ । ଏହିପରି ମୁଁ ଲଢ଼ିଚାଲିଥାଏ ।

ଶେଷରେ ମୋର ସବୁ କଥା ବର୍ଣ୍ଣନା କରି ଚିଫ୍ ସେକ୍ରେଟାରୀ ମି.ଶିବରମଣଙ୍କ ନିକଟକୁ ମୁଁ ୀକ ପିଟିସନ୍ ଦେଲି ଯେ, ସର୍କାର ମୋର ରୟାଲ୍‌ଟି ଦାବି କରିବା ଅନ୍ୟାୟ କି ନାହିଁ ତାହା ସେ ବିଚାର କରନ୍ତୁ । ମୁଁ ଜାଣେନା ଅନ୍ତରାଳରେ କି ଘଟିଲା; କିନ୍ତୁ ମନ୍ତ୍ରୀ ମହାଶୟ ହଠାତ୍ ବିଶ୍ୱବିଦ୍ୟାଳୟରେ ମୋର କାମ 'ଅସନ୍ତୋଷଜନକ' ବୋଲି ଏକ ପ୍ରଚାର ଆରମ୍ଭ କରି ମତେ ବିଶ୍ୱବିଦ୍ୟାଳୟରୁ ପୁଣି ସର୍କାର ଚାକିରିକୁ 'ରି-କଲ୍' ବା ଫେରାଇ ନେବାର ଉଦ୍ୟୋଗ କଲେ, ଯେପରି କି ନିଜର କରାୟତ୍ତରେ ପୁଣି ପାଇ ଉଦାର ଏକ୍ସ-ଚିଫ୍ ଜଷ୍ଟିସ୍ ତାଙ୍କର ପେଟପୂରାଇ ମୋ ଉପରେ ଆଉରି ଅତ୍ୟାଚାର କରିପାରିବେ ।

ଏଇପରି ଅବସ୍ଥାରେ ୨୮, ମାର୍ଚ୍ଚ ୧୯୫୯ରେ (ଅର୍ଥାତ୍ ସରକାରୀ ଚାକିରିରୁ ବିଶ୍ୱବିଦ୍ୟାଳୟକୁ ଆସିବାର ଦେଢ଼ବର୍ଷ ପରେ) ମୁଁ ଏକ ଚିତ୍ରପ୍ରଦର୍ଶନୀ ଦେଖିବାକୁ ଯାଇଥିଲି,

କଟକର ନାରୀ-ସେବା-ସଂଘ-ସଦନକୁ । ମନ୍ତ୍ରୀ ପାଣିଗ୍ରାହୀ ସେ ପ୍ରଦର୍ଶନୀ ଖୋଲିଥିଲେ । ଆମେସବୁ ଘର ଭିତରେ ଚିତ୍ର ଦେଖୁଛୁ, ମନ୍ତ୍ରୀ ମତେ ଏକ ନିର୍ଜନ କୋଣକୁ ଡକାଇ ସେଇ ରୟାଲ୍‌ଟି ବାବଦରେ ମତେ ବ୍ୟକ୍ତିଗତ ଭାବରେ ଧମକାଇବାକୁ ଲାଗିଲେ ।

ମନ୍ତ୍ରୀ କହିଲେ — ମୁଁ ଶୁଣୁଛି, ଆପଣ ସେ ରୟାଲ୍‌ଟି ବାବଦରେ କୋର୍ଟକୁ ଯିବାକୁ ଭାବୁଛନ୍ତି ।

ମୁଁ —ହଁ, କେହି କେହି ପରାମର୍ଶ ଦେଉଛନ୍ତି । ମୁଁ କିଛି ଠିକ୍ କରିନି ଏଯାଏଁ ।

ମନ୍ତ୍ରୀ — ଦେଖନ୍ତୁ, ଆପଣ ତାହା ଶୀଘ୍ର ଦେଇଦିଅନ୍ତୁ, ନଚେତ୍ ମୁଁ ଆପଣଙ୍କ ବିରୋଧରେ ଏଥର ଏପରି ଆକ୍ସନ୍ ନେବି ଯେ, ପୃଥିବୀରେ ଆପଣଙ୍କୁ କେହି ରକ୍ଷା କରିବାକୁ ନଥିବ । ଆପଣଙ୍କୁ ଆମେ ରି-କଲ୍ କରି ଆଣିବୁ, ସସ୍‌ପେଣ୍ଡ୍ କରିବୁ, ଡିସ୍‌ଚାର୍ଜ କରିବୁ, ଡିସ୍‌ମିସ୍ କରିବୁ । କେହି ପିଠିରେ ପଡ଼ିବାକୁ ନଥିବ, ସେତେବେଳେ ।

ମୁଁ— ଏସବୁ ଆପଣ କରିପାରନ୍ତି — କାରଣ ପାଓ୍ୱାରରେ ଅଛନ୍ତି । କିନ୍ତୁ ମୁଁ ବରାବର ପ୍ରତିବାଦ କରିଆସିଛି ଯେ, ମୋର ରୟାଲଟି ଆପଣ ଜବରଦସ୍ତି ନେଇଯିବା ଘୋର ଅନ୍ୟାୟ ଓ ଆଜି ବି ସେଇ ପ୍ରତିବାଦ କରୁଛି · ଏହା ସରକାରର ଟଙ୍କା ନୁହେଁ । ସର୍କାରର ଏକ ପଇସା ମୁଁ ସ୍ପର୍ଶ କରିନି । ପବ୍ଲିଶର୍ ବହି ଦେଲା, କମିଟି ବାଛିଲେ, ସର୍କାର ବହି କିଣିନେଲେ ଓ ପବ୍ଲିଶର ଟଙ୍କା ନେଇଗଲା ସର୍କାରଠୁ । ଜଣେ ଲେଖକର ବହିଯାକ କିଣି ଓ ରଖି ଓ ବହିର ସପ୍ଲାୟର ପବ୍ଲିଶରକୁ ଟଙ୍କା ପେ'ମେଣ୍ଟ କରିସାରି ଲେଖକର ରୟାଲ୍‌ଟି ତାହାଠାରୁ ଜବରଦସ୍ତି ଛଡ଼ାଇନେବା ଘୋର ଅନ୍ୟାୟ ନୁହେଁ କି ? ଲେଖକ ତ ସର୍କାରଙ୍କଠାରୁ କୌଣସି ଟଙ୍କା ନେଇ ନାହିଁ, ଦେବ କିପରି ?

ମନ୍ତ୍ରୀ — ଏଠି ଆପଣଙ୍କ ସହିତ ଆଉ ଯୁକ୍ତି କରିବାକୁ ମୁଁ ପ୍ରସ୍ତୁତ ନୁହେଁ । ମୁଁ ଆପଣଙ୍କୁ ଅନୁରୋଧ କରୁଛି ଆପଣ କେନ୍ଦ୍ର ସରକାରରୁ ପାଉଥିବା ଏକହଜାର ଟଙ୍କା ଆଡ଼କୁ ଏ ଟଙ୍କାଟାକୁ ଆଡ଼ଜଷ୍ଟ୍ କରିଦିଅନ୍ତୁ — ନଚେତ୍ ମଙ୍ଗଳ ହେବନାହିଁ ।

ମୁଁ — ହଉ, ମୁଁ ପୁଣି ବିଚାର କରେ ।

ଏହା କହି ମନ୍ତ୍ରୀଙ୍କଠାରୁ ମୁଁ ବିଦାୟ ନେଲି । ଗୋଟାଏ ହାଇକୋର୍ଟର ଏକ୍ସ-ଚିଫ୍ ଜଷ୍ଟିସ୍, ପୁଣି ଏବେ ଗୋଟାଏ ରାଷ୍ଟ୍ରର ଶିକ୍ଷା-ମନ୍ତ୍ରୀ, ଗୋଟାଏ ସାଧାରଣ ସ୍ଥାନରେ, ତାଙ୍କର ବ୍ୟକ୍ତିଗତ ଟଙ୍କା ମୁଁ ଯେପରି ନେଇ ଖାଇଯାଇ ଦେଉନି ଓ ସେହି କାରଣରୁ ସେ ଟଙ୍କା ସେ ଫେରାଇବାପାଇଁ ମତେ ବ୍ୟକ୍ତିଗତ ଭାବରେ କିପରି ଧମକ ଦେଉଛନ୍ତି, ଦେଖ, ମୋର ଦେଶବାସୀ ! ମୋର ରୟାଲ୍‌ଟି ଥିଲା ମାତ୍ର ଛ'ଶ ଟଙ୍କା, ଯେକୌଣସି ଦିନ ମୁଁ ଦେଇପାରିଥାନ୍ତି । ପୁଣି ମୁଁ ସରକାରୀ କର୍ମଚାରୀ । ମୋର ପେନ୍‌ସନ୍, ଗ୍ରାଚୁୟିଟି, ପ୍ରୋଭିଡେଣ୍ଟ ଫଣ୍ଡ୍ ବାବଦରେ ସେତେବେଳେ ସର୍କାରଙ୍କ ନିକଟରେ ହଜାର ହଜାର ଟଙ୍କା ଗଚ୍ଛିତ ଥିଲା । ଗୋଟିଏ ସରକାରୀ କର୍ମଚାରୀ ତାର ଦେୟ ନଦେଇ ସର୍କାରଠାରୁ କିପରି ପଳାଇଯିବ, ମୁଁ ତ ଭାବିପାରୁନି । କିନ୍ତୁ ଦେଖ, ଏ ଜଣେ ଏକ୍ସ-ଚିଫ୍-ଜଷ୍ଟିସ୍ ଓ ମନ୍ତ୍ରୀ ହୋଇ ବିବଦମାନ ମାତ୍ର ଛ'ଶ ଟଙ୍କାପାଇଁ କାବୁଲି ମହାଜନ ପରି ବ୍ୟକ୍ତିଗତଭାବରେ ମୋ ପଛେ ପଛେ କିପରି ଗୋଡ଼ାଇଛନ୍ତି । କି ରହସ୍ୟ ଥାଇପାରେ ଯା ପଛରେ ?

ମନ୍ତ୍ରୀଙ୍କଠାରୁ ବିଦାୟ ନେଇ ଏଇପରି ଭାବୁଛି ଆକାଶ-ପାତାଳ, ଏଇ ସମୟରେ ସେଠାରେ ଥିବା ଉତ୍କଳପ୍ରସିଦ୍ଧ ଦୁଇ ବନ୍ଧୁ (ଜଣେ ଶିକ୍ଷା ବିଭାଗର ବଡ଼ କର୍ମଚାରୀ, ଆଉ ଜଣେ ପ୍ରଖ୍ୟାତ

ଜନସେବକ) ଆସି ମୋ ସାଥିରେ ମିଶିଲେ ଓ ଆଶଙ୍କିତ ହୋଇ ଜାଣିବାକୁ ଚାହିଁଲେ, ମନ୍ତ୍ରୀ ମତେ କି ଅନୁଗ୍ରହ ଦେଖାଉଥିଲେ । ମୁଁ ସବୁ କଥା କହିଲି । ସେ ଦୁହେଁ ଏକସ୍ୱରରେ ତୁରନ୍ତ ଉପଦେଶ ଦେଲେ–''କିଛି ନବିଚାରି ଟଙ୍କାଟା ଦେଇଦିଅନ୍ତୁ । ଅବସ୍ଥା ବର୍ତ୍ତମାନ ଯେପରି, ସତରେ ଆପଣଙ୍କୁ କେହି ପାଣିଗ୍ରାହୀ-ଦୌରାମ୍ୟରୁ ରକ୍ଷା କରିପାରିବେନି । ଏ ଲୋକର ପ୍ରତାପ ଏକ୍ଷଣି ଅଖଣ୍ଡ ।'' ପ୍ରସିଦ୍ଧ ଅର୍ଥନୀତିବିଦ୍ ଓ ବଡ଼ କର୍ମଚାରୀ ବନ୍ଧୁ ମଧ୍ୟ କହିଲେ–''ଆମେ ଲୋଅର ମିଡ଼ଲ୍ କ୍ଲାସ୍ (ନିମ୍ନ ମଧ୍ୟବିତ୍ତ ଶ୍ରେଣୀ)ର ଲୋକ । ଚାକିରି ଛଡ଼ା ଆମର ଗତି ନାହିଁ । ଚାକିରିରେ ରହିବ,ଆଉ ବସ୍ (ପ୍ରଭୁ) ସାଥିରେ ଲଢ଼ିବ, ଯା ତ ହୋଇନପାରେ । କେତେଦିନ ଆଉ ଆପଣ ଲଢ଼ିବେ ? ଥିଙ୍କ୍ ଅଫ୍ ଇୟୋର୍ ଫାମିଲି (ନିଜ ପରିବାର କଥା ଭାବନ୍ତୁ) । କିଛି ଆଉ ନବିଚାରି ଟଙ୍କାଟା ଦେଇଦିଅନ୍ତୁ । ନ୍ୟାୟ ଅନ୍ୟାୟର ପ୍ରଶ୍ନ ଏଠି ନାହିଁ । ଦରିଦ୍ର ଲୋକକୁ ବହୁ ଅନ୍ୟାୟ ସହ୍ୟ କରିବାକୁ ହୁଏ ।''

ପ୍ରଚୁର-କମନ୍‌ସେନ୍ସ-ବହନ-କରୁଥିବା ଅର୍ଥନୀତିବିଦ୍ ବନ୍ଧୁଙ୍କ କଥା ଗଭୀର ଭାବରେ ଘେନିଲା ମନକୁ । ଦୁଇ ଦିନ କାଳ ଅହରହ ତାହା ଭାବିଲି । ତୃତୀୟ ଦିନ ସ୍ଥିର କଲି ବନ୍ଧୁମାନଙ୍କ କଥା ଅନୁସାରେ କାମ କରିବାକୁ ।

୧୯୫୯, ପହିଲା ଏପ୍ରିଲ୍‌ରେ ତେଣୁ ସେଦିନ ନାରୀ ସେବାସଂଘ ସଦନରେ ଶିକ୍ଷା-ମନ୍ତ୍ରୀ ଲିଙ୍ଗରାଜ ପାଣିଗ୍ରାହୀଙ୍କ କଥା ଅନୁସାରେ ମୋର ଦେୟ ରୟାଲ୍‌ଟି ଓ କେନ୍ଦ୍ର ସରକାରରୁ ପ୍ରାପ୍ୟ ଏକହଜାର ଟଙ୍କା ଭିତରେ ଆଡ଼ଜଷ୍ଟମେଣ୍ଟ୍‌ପାଇଁ ରାଜିଅଛି କହି ଏକ ପତ୍ର ଲେଖିଦେଲି !

## ରି-କଲ୍-ରବ –

କିନ୍ତୁ ଇତିମଧ୍ୟରେ, ମନ୍ତ୍ରୀ ପାଣିଗ୍ରାହୀ ମତେ ବିଶ୍ୱବିଦ୍ୟାଳୟରୁ ସରକାରୀ ସଂସ୍ଥାକୁ ପୁଣି ନେଇଯିବାର କେବଳ ଧମକ ଦେଇନଥିଲେ, ରୀତିମତ କାମ ଆରମ୍ଭ କରିଦେଇଥିଲେ । ୧୯୫୯, ଏପ୍ରିଲ୍ ୧୧ ତାରିଖ ଓଡ଼ିଶା ଆସେମ୍ଲିରେ ମୋର ଏହି ରି-କଲ୍ ଉପରେ ନିମ୍ନଲିଖିତ ପ୍ରଶ୍ନୋତ୍ତର ହୋଇଥିଲା–

୧୦୮୨–ଶ୍ରୀ ନିତ୍ୟାନନ୍ଦ ମହାପାତ୍ର-ଶିକ୍ଷାମନ୍ତ୍ରୀ କହିବେ କି,

(ଅ) ଓଡ଼ିଆ ଏନସାଇକ୍ଲୋପିଡ଼ିଆର ମୁଖ୍ୟ ସମ୍ପାଦକଙ୍କୁ କେଉଁ ସରତରେ ଗୋଟିଏ କର୍ମ ସମ୍ପାଦନପାଇଁ ବିଶ୍ୱବିଦ୍ୟାଳୟକୁ ନିଆଯାଇଥିଲା ଓ କେଉଁ କାରଣରୁ ତାଙ୍କୁ ହଠାତ୍ ସେଠାରୁ ଅପସାରିତ କରାଯାଉଛି ଓ କେଉଁ କାମରେ ତାଙ୍କୁ ପୁଣି ନିଯୁକ୍ତ କରାଯିବ ?

ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ (ମନ୍ତ୍ରୀ)– ସରକାର ବିଚାରିଲେ ଯେ, ଡକ୍ଟର ମାନସିଂହଙ୍କଠାରୁ ଅନ୍ୟ ଭାବରେ ଉତ୍ତମତର କାମ ଆଦାୟ କରାଯାଇପାରିବ । ତେଣୁ ବିଶ୍ୱବିଦ୍ୟାଳୟକୁ ସର୍କାର ଅନୁରୋଧ କରିଥିଲେ ଯେ, ଡକ୍ଟର ମାନସିଂହଙ୍କୁ ସେ ସର୍କାରୀ ସଂସ୍ଥାକୁ ଫେରାଇ ଦିଅନ୍ତୁ । ୧୯୫୯ ଜୁନ୍‌ରୁ ଡକ୍ଟର ମାନସିଂହଙ୍କୁ ସର୍କାରୀ ସଂସ୍ଥାକୁ ଫେରାଇଦେବାପାଇଁ ବିଶ୍ୱବିଦ୍ୟାଳୟ ରାଜି ହୋଇଛନ୍ତି । ଡକ୍ଟର ମାନସିଂହଙ୍କୁ ଏକ କଲେଜର ପ୍ରିନ୍ସପାଲ୍, ଇଂରେଜୀର ରିଡ଼ର ବା ଜିଲ୍ଲା ଶିକ୍ଷା ଅଫିସର କରାଯିବ ।

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର—ସରକାର ତାଙ୍କ ଜାଗାରେ ଆଉ କାହାକୁ ସ୍ଥାପିତ କରିବାର ବିଚାରିଛନ୍ତି କି ?

ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ— ସେକଥା ବିଶ୍ୱବିଦ୍ୟାଳୟ ଠିକ୍ କରିବ । ସର୍କାରଙ୍କର ତାହା ଚିନ୍ତାର ବିଷୟ ନୁହେଁ ।

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର— ଡକ୍ଟର ମାନସିଂହଙ୍କୁ ପୁଣି ସରକାରୀ ସଂସ୍ଥାକୁ ଫେରାଇ ଆଣିବାର କାରଣ କଣ ?

ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ—ମୁଁ ଆଗରୁ କହିଛି ଯେ, ତାଙ୍କଠାରୁ ଆମେ ଏପରିଭାବରେ ଉତ୍ତମତର ଉପଯୋଗିତା ପାଇବା । ଆମକୁ ରିପୋଟ୍ ମିଳିଛି ଯେ, ବିଶ୍ୱବିଦ୍ୟାଳୟରେ ସେ ତାଙ୍କର କାମ ସନ୍ତୋଷଜନକ ଭାବ୍‌ରେ କରୁନାହାନ୍ତି ।

ମୋର ସମ୍ପୂର୍ଣ୍ଣ ଅଜ୍ଞାତସାରରେ, ମୋ ପଛରେ ଏପରି ଯେ ଏକ ଗୂଢ଼ ଷଡ଼ଯନ୍ତ୍ର ଚାଲିଥାଏ, ତାହାର ଏକ ବିନ୍ଦୁ ହେଲେ ମତେ ସେତେବେଳେ ଜଣାନଥାଏ । କାରଣ ୧୯୫୮, ଡିସେମ୍ବର ୧୩ ତାରିଖରେ, ଉତ୍କଳ ବିଶ୍ୱବିଦ୍ୟାଳୟ କନ୍‌ଭୋକେସନ୍ ଉତ୍ସବରେ ଉତ୍କଳ ବିଶ୍ୱବିଦ୍ୟାଳୟର ଭାଇସ୍‌ଚାନ୍‌ସେଲ୍‌ର ଡକ୍ଟର ପ୍ରାଣକୃଷ୍ଣ ପରିଜା ତାଙ୍କର ବାର୍ଷିକ ରିପୋଟ୍‌ରେ ମୋ କାମ ସମ୍ବନ୍ଧରେ ଏଇପରି କହିଥିଲେ—''ଆମେ ଓଡ଼ିଆରେ ଏକ ଜ୍ଞାନକୋଷ ପ୍ରଣୟନର ଭାର ନେଇଛୁ ଓ ସେ କାମ <u>ସନ୍ତୋଷଜନକ ଭାବରେ ଆଗେଇଛି</u> । ସେ କାମ ପାଞ୍ଚବର୍ଷ ଭିତରେ ସାରିବୁ ବୋଲି ଆମେ ଆଶା କରିଛୁ ।''

ତା' ପରବର୍ଷ, ୧୯୫୯ରେ ପାଠ କରିଥିବା ରିପୋଟ୍‌ରେ ସେହି ଭାଇସ୍‌ଚାନ୍‌ସେଲ୍‌ର ଡକ୍ଟର ପରିଜା ପୁଣି କହିଲେ – ''ଓଡ଼ିଆ ଜ୍ଞାନକୋଷ ସଙ୍କଳନ କାମ <u>ସନ୍ତୋଷଜନକ ଭାବରେ ଚାଲିଛି</u> ।''

୧୯୬୧ର ବାର୍ଷିକ ରିପୋଟ୍‌ରେ ସେହି ଭାଇସ୍‌ଚାନ୍‌ସେଲ୍‌ର ପୁଣି କହିଛନ୍ତି—

''ଏକ-ଖଣ୍ଡ(one volume) ଜ୍ଞାନକୋଷ, ବର୍ତ୍ତମାନ ଛାପାଖାନାକୁ ଗଲାଣି ଓ ଶୀଘ୍ର ପ୍ରକାଶ ପାଇବ ।''

ଏସବୁ ସ୍ୱୟଂ ଭାଇସ୍‌ଚାନ୍‌ସେଲ୍‌ରଙ୍କ ପ୍ରକାଶ୍ୟ ମୁଦ୍ରିତ ଘୋଷଣା । ତେବେ ବିଶ୍ୱବିଦ୍ୟାଳୟରେ ମୋ କାମ ଏପରି 'ଅସନ୍ତୋଷଜନକ' ହେଲା ଯେ, ମତେ ବିଶ୍ୱବିଦ୍ୟାଳୟରୁ ଅପସାରିତ କରାଯିବାର ପ୍ରଶ୍ନ ଆସିଲା କେଉଁଠୁ ଓ କିପରି ଏବଂ ତାହା ରାଜ୍ୟର ବିଧାନସଭାରେ ପ୍ରକାଶ୍ୟରେ ଆଲୋଚିତ ପୁଣି ହେଲା ବା କିପରି ? ହୁଏତ, ଭାଇସ୍‌ଚାନ୍‌ସେଲର୍‌ଙ୍କ କନ୍‌ଭୋକେସନ୍ ରିପୋର୍ଟ ବର୍ଷ ବର୍ଷ ଧରି ମୋ ସମ୍ପର୍କରେ ମିଥ୍ୟାକଥା କହିଛି ବା ଶିକ୍ଷାମନ୍ତ୍ରୀ ଆସେମ୍ବ୍ଲିରେ ସମ୍ପୂର୍ଣ୍ଣ ମିଥ୍ୟା କହିଛନ୍ତି ।

ପୁଣି ଧର ଯେ, ବିଶ୍ୱବିଦ୍ୟାଳୟରେ ମୋ କାମ ପ୍ରକୃତରେ 'ଅସନ୍ତୋଷଜନକ' ହୋଇଥିଲା ଓ ବିଶ୍ୱବିଦ୍ୟାଳୟ ମୋ ପରି ଅଯୋଗ୍ୟକୁ ନରଖି ମତେ ସରକାରୀ ବିଭାଗକୁ ଫେରସ୍ତ ଦେବାର ଯଥାର୍ଥ ସିଦ୍ଧାନ୍ତ କରିଥିଲା । ଶିକ୍ଷାମନ୍ତ୍ରୀ ଆସେମ୍ବ୍ଲିରେ ତାହା ତ ବଡ଼ ଜୋର୍‌ରେ କହିଥିଲେ ଓ ୧୯୫୯ ଜୁନ୍ ମାସରୁ ମୁଁ ବିଶ୍ୱବିଦ୍ୟାଳୟରୁ ତଡ଼ାଖାଇ ପୁଣି ସରକାରୀ ସଂସ୍ଥାକୁ ଫେରିଯିବାର

ସବୁ ନିଷ୍ପତ୍ତି ହୋଇଯାଇଛି ବୋଲି ମଧ ସେ ଓଡ଼ିଶା ବିଧାନ ସଭାକୁ ଜଣାଇ ଦେଇଥିଲେ । କିନ୍ତୁ ଓଡ଼ିଶା ଆସେମ୍ବ୍ଲିରେ ଏ ପ୍ରକାଶ୍ୟ ଘୋଷଣା ପରେ ମଧ ମୁଁ ୧୯୫୯ ଜୁନ୍‌ରେ ନଗଲି କିପରି ? ବ୍ୟକ୍ତିଗତଭାବରେ ଯିବାର କୌଣସି ହେଲେ ଅର୍ଡ଼ର ବା ଖବର ମତେ ପୂର୍ବେ ବା ପରେ କେବେ ଦିଆଯାଇନଥିଲା ଓ ଆସେମ୍ବ୍ଲିର ପ୍ରଶ୍ନୋତ୍ତର ଖବରକାଗଜରେ ପଢ଼ି ମଧ ମୁଁ ନାହିଁ ଭାଇସ୍‌ଚାନ୍‌ସେଲ୍‌ର, ନାହିଁ ଶିକ୍ଷାମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ବା କୌଣସି ସିଣ୍ଡିକେଟ୍ ମେମ୍ବରଙ୍କ ନିକଟକୁ ଯାଇ ବିଶ୍ୱବିଦ୍ୟାଳୟରେ ଆଶ୍ରା ନେବାର ସାମାନ୍ୟତମ ଅନୁଗ୍ରହ ଭିକ୍ଷା କରିନଥିଲି । ତଥାପି ଏପର୍ଯ୍ୟନ୍ତ (୧୯୬୫) ତ ଅଛି ଓ ଇ ଭିତରେ ଏକ ପୂରା ସେଟ୍ ଏନ୍ ସାଇକ୍ଲୋପିଡ଼ିଆ ପ୍ରକାଶିତ ବି ହୋଇସାରିଲାଣି, ବୋଧହୁଏ ମୋର ଅକର୍ମଣ୍ୟତା ଓ ଅଯୋଗ୍ୟତାକୁ ଦୃଢ଼ଭାବରେ ପ୍ରମାଣ କରି ।

ତେବେ ଏହି ଅବାଞ୍ଛନୀୟ କୁକୁରଟାକୁ ଫାଶୀ ଦେବାପାଇଁ ବର୍ତ୍ତମାନ ଅନ୍ୟ କୌଣସି ନୂତନ ଅଯୋଗ୍ୟତା ଆବିଷ୍କୃତ ନହେବାର କାରଣ ଦେଖୁନି, ଅଯୋଗ୍ୟକୁ ଉଠେଇଲା ବେଳେ ନ-ଥିବା-ପ୍ରତିଭା ଯେପରି ମଧ ଆବିଷ୍କୃତ ଓ ଘୋଷିତ ହେବାର ବାରମ୍ବାର ଦେଖିଆସିଲି ।

## ବିଂଶ ଅଧ୍ୟାୟର ପରିଶିଷ୍ଟ (୧)

## ମୋ କୈଫିୟତ୍

(ପ୍ରଜାତନ୍ତ୍ର, ତା ୩ । ୭ ।୧୯୫୯)

ଶ୍ରୀଯୁକ୍ତ ପ୍ରଜାତନ୍ତ୍ର ସମ୍ପାଦକ

ମହାଶୟ,

ଦୈନିକ 'ସମାଜ'ର ୧୮ ।୪ ।୧୯୫୭ ସଂସ୍କରଣରେ ସାମାଜିକ-ସାହିତ୍ୟର ନିର୍ବାଚନ ଓ କ୍ରୟ ନେଇ, ସାମାଜିକ-ଶିକ୍ଷା ଅଫିସର ଭାବରେ ମୋ ବିରୋଧରେ କେତେକ ଅଭିଯୋଗ ପ୍ରକାଶ ପାଇଥିଲା । କିନ୍ତୁ ନିକଟରେ ସେଇ ଅଭିଯୋଗ ସବୁର ଏକ ଉତ୍ତର ମୁଁ ସମାଜକୁ ପଠାଇଥିଲି, ପ୍ରଥମେ ଛାପିବାକୁ ପ୍ରତିଶ୍ରୁତି ଦେଇ ସମାଜ ତାହା ଛପାଇଲେ ନାହିଁ, ଲେଖାଟି ଫେରାଇ ଆଣିବାକୁ ଚାହିଲି, ପ୍ରଥମେ ହଁ କଲେ, କିନ୍ତୁ ଶେଷରେ ତାହା ବି ନାସ୍ତି କଲେ । ତେଣୁ ମୋର ଜବାବଟି ଆପଣ ଦୟାକରି ପ୍ରଜାତନ୍ତ୍ରର ସ୍ତମ୍ଭରେ ପ୍ରକାଶ କରିବେ କି ?

ଏଇ ସମ୍ପର୍କରେ 'ଦୁର୍ନୀତି' ଶବ୍ଦଟା ବାରମ୍ବାର ଉଚ୍ଚାରିତ ହେବାର ମୁଁ ଦେଖୁଛି ଓ ଏଥିପାଇଁ ଏନ୍‌ଫୋର୍ସମେଣ୍ଟ୍ ଡିପାର୍ଟମେଣ୍ଟକୁ ବାରମ୍ବାର ଆହ୍ୱାନ ମଧ ଶୁଣୁଛି । ସରକାରଙ୍କ ନିକଟରେ ପ୍ରତ୍ୟକ୍ଷ ଅଭିଯୋଗ ତ ଅଛି । କିନ୍ତୁ ମୁଁ ଏପର୍ଯ୍ୟନ୍ତ ବୁଝିପାରୁନାହିଁ, 'ଦୁର୍ନୀତି'ର ପ୍ରଶ୍ନ ଏଠି କିପରି ଉଠୁଛି । ସରକାର ସାମାଜିକ-ସାହିତ୍ୟ ଏକୋଇଶ ହଜାର ଟଙ୍କାର କିଣାହେବାପାଇଁ ବ୍ୟବସ୍ଥା କରିଥିବା ସ୍ଥଳେ କମିସନିର ଶେଷ କପର୍ଦ୍ଦକ ମିଶାଇ ସାଢ଼େ ତେଇଶ ହଜାର ଟଙ୍କାର ବହି ବାଣ୍ଟିଛୁ । ତେଣୁ 'ଦୁର୍ନୀତି'ର ସ୍ଥାନ କାହିଁ ରହିଲା ଏଠି ? ଯଦି କୁହାଯାଆନ୍ତା ଭଲ ବହି ବଛା ଯାଇ ନାହିଁ, ତେବେ ତାର ଆଲୋଚନା କରାଯାଉ ଓ ନୂତନ ନିର୍ଦ୍ଦେଶ ଦିଆଯାଉ ଏବଂ ଏ ବହି ପରିବର୍ତ୍ତରେ ସେ ବହି ନିଆଯାଇଥିଲେ ଭଲହୋଇଥାନ୍ତା ବୋଲି କୁହାଯାଉ । ତାହା ସିନା ହୁଅନ୍ତା

ସଭ୍ୟ ସମାଜର କାରବାର । ସେଥିପାଇଁ ଏନ୍‌ଫୋର୍ସମେଣ୍ଟ ଡିପାର୍ଟମେଣ୍ଟକୁ ଆହ୍ୱାନ ଶୁଣି ମୁଁ କିନ୍ତୁ ସ୍ତମ୍ଭୀଭୂତ । ମୁଁ ଓ ଯେଉଁ କମିଟି ମତେ ପୁସ୍ତକ ନିର୍ବାଚନରେ ସାହାଯ୍ୟ କରିବାପାଇଁ ମୁଁ ତତ୍କାଳୀନ ଡି.ପି.ଆଇ.ଙ୍କି କୁହାଇ କରାଇଥିଲି, ଆମେ ସବୁ ମିଶି ଯେଉଁ ସାମାଜିକ-ସାହିତ୍ୟର ତାଲିକା ତିଆରି କରିଛୁ, ତାହା ଯେ ଆଧୁନିକ ଓଡ଼ିଆ ଭାଷାରେ ସର୍ବୋତ୍କୃଷ୍ଟ ନିର୍ବାଚନ ଏହାର ଅନ୍ୟଥା କେହି ପ୍ରମାଣ କରୁ । ପୁସ୍ତକମାନଙ୍କର ଗୁଣାଗୁଣ ଆଲୋଚନା କରିବାର ସତ୍‌ସାହସ ଏପର୍ଯ୍ୟନ୍ତ କୌଣସିଠାରେ ଦେଖିଲି ନାହିଁ, ଅଥଚ ଚାଲିଛି 'ଦୁର୍ନୀତି'ର ଆଲୋଚନା ଓ ଅର୍ଥ ଆତ୍ମସାତ୍‌ର ବାହାନା ଦେଇ ବିଷୋଦ୍‌ଗିରଣ କେବଳ ।

ମୋର ଆଶଙ୍କା, ଯେଉଁ ବନ୍ଧୁମାନେ ଆମକୁ ଏପର୍ଯ୍ୟନ୍ତ ଗାଳି ଦେଇ ଆସୁଛନ୍ତି, ସେମାନେ ସାମାଜିକ-ସାହିତ୍ୟ ସମ୍ବନ୍ଧରେ କୌଣସି ସ୍ପଷ୍ଟ ଧାରଣାରେ ପହଞ୍ଚି ନାହାନ୍ତି ବା ଆମେ କେତେ ଚିନ୍ତା, କେତେ ସନ୍ତର୍ପଣରେ ବହି ବାଛିଛୁ, ତାହା ସେମାନେ ଜାଣନ୍ତି ନାହିଁ । ସାଧାରଣ ଅବଗତି ପାଇଁ କେଉଁ କେଉଁ ଶ୍ରେଣୀରେ କେଉଁ ବହି ଆମେ ବାଛିଛୁ, ସେଇ ତାଲିକାଟି ତେଣୁ ତଳେ ଦିଆଗଲା ।

## ନିର୍ବାଚିତ ପୁସ୍ତକମାନଙ୍କର ତାଲିକା –

(୧) ସମାଜକୁ ପ୍ରତ୍ୟକ୍ଷ ଦୃଷ୍ଟିରଖି ଲେଖା ବହି—ଶ୍ରୀଯୁକ୍ତ ମହତାବଙ୍କ 'ଗାଁ ମଜଲିସ୍', ଶ୍ରୀ ଗୋଲୋକବିହାରୀ ଧଳଙ୍କର 'ଟଙ୍କା ସୁନାର ସଂସାର', ମାୟାଧର ମାନସିଂଙ୍କର 'ଗ୍ରାମୋନ୍ନତି ରୋମାଞ୍ଚକର କାହାଣୀ', ଚକ୍ରଧର ମହାପାତ୍ରଙ୍କର 'ଆମ ଖାଦ୍ୟ ଓ ସ୍ୱାସ୍ଥ୍ୟ', ଶ୍ରୀ ଇନ୍ଦୁଭୂଷଣ ମିଶ୍ରଙ୍କର 'ଯମ ପରାଜୟ' ।

(୨) ଅଗ୍ରଗାମୀ ଦେଶ ଓ ଜାତିର କାହାଣୀ— ଡକ୍ଟର ରାଧାନାଥ ରଥଙ୍କର ବିଲାତ ଡାଏରୀ, ଗୋଲୋକ ଧଳଙ୍କର ଆମେରିକା ଅନୁଭୂତି, ମନମୋହନ ମିଶ୍ରଙ୍କର ପ୍ରବାସ ପଥେ (ରୁଷିଆ ଭ୍ରମଣ), ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କର ମୋର ଇଉରୋପ ଅନୁଭୂତି, ମାୟାଧର ମାନସିଂଙ୍କର ପଶ୍ଚିମ ପଥିକ ।

(୩) ପ୍ରେରଣାଦାୟକ ଜୀବନଚରିତ—ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବୁଦ୍ଧ, ଶ୍ରୀଚନ୍ଦ୍ରଶେଖର ମିଶ୍ରଙ୍କର ସାମନ୍ତ ଚନ୍ଦ୍ରଶେଖର, ଶ୍ରୀ ଭାବଗ୍ରାହୀ ପତିଙ୍କର ଦେଶପ୍ରାଣ ଗୋପବନ୍ଧୁ ଓ ଉତ୍କଳ କେଶରୀ ମଧୁସୂଦନ ।

(୪) ବ୍ୟାବସାୟିକ ପୁସ୍ତକ – କମଳଲୋଚନ ମହାନ୍ତିଙ୍କ 'ଅର୍ଥକରୀ ଫସଲ' (ଚାରିଭାଗ), ଡକ୍ଟର ବିଶ୍ୱନାଥ ସାହୁଙ୍କ ଫଳଚାଷ(ତିନିଭାଗ), ଶ୍ରୀ ବିନୋଦ କାନୁନ୍‌ଗୋଙ୍କ 'ମାଛଚାଷ', ରାୟସାହେବ ଭିକାରୀଚରଣ ପଟ୍ଟନାୟକଙ୍କର ଗୃହଶିଳ୍ପ (ସାତଭାଗ), ଦୁର୍ଯ୍ୟୋଧନ ନାୟକଙ୍କ 'ସରଳ ଶିଳ୍ପ ଶିକ୍ଷା' ।

(୫)ଶିକ୍ଷା ଓ ସଂସ୍କୃତି – ଫକୀରମୋହନ ଗ୍ରନ୍ଥାବଳୀ, ନନ୍ଦକିଶୋର ଗ୍ରନ୍ଥାବଳୀ । ଶିଷ୍ଟାଚାର— ଶ୍ରୀଯୁକ୍ତ ରାମପ୍ରେମୀ, ଆମ ପୁରୁଣାକାହାଣୀ—ବଟକୃଷ୍ଣ ପ୍ରହରାଜ, ପଲ୍ଲୀଝରଣା ଓ ପଲ୍ଲୀପୁଷ୍ପ— ଡକ୍ଟର କୁଞ୍ଜବିହାରୀ ଦାଶ ।

(୬) ସାମ୍ପ୍ରତିକ ସମସ୍ୟା ଉପରେ ବହି— ଆମର ଭୁଲ୍ କେଉଁଠି— ଡକ୍ଟର ରାଧାନାଥ ରଥ, ଆଦିବାସୀ ସମାଜ—ଶ୍ରୀମତୀ ଇନ୍ଦୁମତି ଦେବୀ, ନୂଆ ପଇସା କାହିଁକି- ବିନୋଦ କାନୁନଗୋ, ସମ୍ବାଦ ଓ ସାମ୍ବାଦିକତା- ଚନ୍ଦ୍ରଶେଖର ମହାପାତ୍ର ।

(୭) ଦେଶାତ୍ମବୋଧ ଜାଗରୂକ ଗଦ୍ୟ ଓ ପଦ୍ୟ—ସ୍ୱାଧୀନତାର କାହାଣୀ—ଶ୍ରୀ ଭଗବାନ ପତି ଓ କୃଷ୍ଣଚନ୍ଦ୍ର କର, ସିପାହୀ ବିଦ୍ରୋହର ଝଲକ ଓ ଗତ ଶତାବ୍ଦୀର ଓଡ଼ିଶା— ସୂର୍ଯ୍ୟନାରାୟଣ ଦାଶ, ଉତ୍କଳିକା- ରାଧାମୋହନ ଗଡ଼ନାୟକ, କୀର୍ତ୍ତିମାଳା— ଗୋଦାବରୀଶ ମହାପାତ୍ର ।

(୮)ଜ୍ଞାନପ୍ରଚାର ଓ ରେଫ୍‌ରେନ୍ସ— ଓଡ଼ିଆ ଜ୍ଞାନକୋଷ(ନମୁନା)

(୯) କିଛି ଆଧୁନିକ କାବ୍ୟ, ନାଟକ—ଜୟମାଲ୍ୟ—ଭଞ୍ଜକିଶୋର ପଟ୍ଟନାୟକ, କସ୍ତୁରିକା ଓ ଜୋଛନା—ପ୍ରାଣକୃଷ୍ଣ ସାମଲ ।

ପାଠକେ ବର୍ତ୍ତମାନ ନିଜେଇ ବିଚାର କରନ୍ତୁ, ଏ ତାଲିକାରେ କେବଳ ମୁଁ, ମୋର ବନ୍ଧୁ ଓ ମୋ ଅଫିସର କର୍ମଚାରୀମାନଙ୍କ ବହି ଆସନ ମାଡ଼ି ବସିଛନ୍ତି, ନା ଏହା ଯଥାସମ୍ଭବ ବହୁ ଲେଖା ଓ ଲେଖକଙ୍କୁ ସ୍ପର୍ଶ କରିବାକୁ ଚେଷ୍ଟା କରିଛି । ଆମେ ଜାଣି ଜାଣି ପୁରାଣ, ପ୍ରାଚୀନ କାବ୍ୟ-କବିତା ଓ ଆଧୁନିକ ଗଳ୍ପ-ଉପନ୍ୟାସକୁ ତାଲିକାରୁ ବାଦ୍ ଦେଇଛୁ । କାରଣ ସେସବୁ ତ ଲୋକେ ଆପେ ଆପେ କିଣି ପଢୁଛନ୍ତି । ରାମାୟଣ, ମହାଭାରତ ତ ହଜାର ହଜାର ବର୍ଷ ବର୍ଷ ଧରି ଏ ଦେଶରେ ଲୋକେ ପଢ଼ିଆସୁଛନ୍ତି । ତାକୁ ଇ ନେଇ ଆମେ ଫେର୍ ଲୋକଙ୍କ ଦ୍ୱାରସ୍ଥ ହେବାର କି ଯୁକ୍ତି ? ଆମେ ତେଣୁ ସାମାଜିକ-ସାହିତ୍ୟ ବୋଲି ସେହି ବହିଗୁଡ଼ିକୁ ବାଛିଲୁ, ଯାହା ଆମ ଜାତିକି ଦେବ ନୂତନ ସନ୍ଦେଶ, ଦେଶକୁ ଦେବ ନୂଆକରି ଗଢ଼ିବାର ସ୍ୱପ୍ନ ଓ ଆଣିବ ଦେଶାତ୍ମବୋଧ । ଏଇ ଦୃଷ୍ଟିକୋଣରୁ ଏଇ ତାଲିକା ସମ୍ପୂର୍ଣ୍ଣ ନିରପେକ୍ଷ ଓ ସର୍ବୋତ୍କୃଷ୍ଟ ହୋଇଛି କି ନାହିଁ, ତାହାର ବିଚାର ହେଉ । ତା ନକରି କାହାର ବହି ସ୍ଥାନ ନପାଇଲା ବୋଲି ନାନା ଅବାନ୍ତର ପ୍ରସଙ୍ଗ ଉଠେଇ ଚକ୍ରାନ୍ତ ଠିଆକରେଇବା ଓ ଆନ୍ଦୋଳନକରିବା ଦେଶପକ୍ଷରେ ଶୁଭ ଲକ୍ଷଣ କି ?

ଓଡ଼ିଶାରେ ଯେତେ ଲେଖକ ଅଛନ୍ତି, ସମସ୍ତେ ମୋର ବନ୍ଧୁ । ତେଣୁ କାହାକୁ ଛାଡ଼ି କାହାପ୍ରତି 'ବନ୍ଧୁତା' ଯୋଗୁ ପକ୍ଷପାତ କଲି, ମୁଁ ବୁଝିପାରୁନାହିଁ । ଗୋଲୋକ ଧଳ ଅବଶ୍ୟ ସାମାଜିକ ଭାବରେ ମୋର ବନ୍ଧୁ । କିନ୍ତୁ ତାଙ୍କ 'ଟଙ୍କା ସୁନାର ସଂସାର' ତ ସାମାଜିକ-ସାହିତ୍ୟ ଭାବରେ ଭାରତ ସରକାରଙ୍କ ପୁରସ୍କାରପ୍ରାପ୍ତ । ସେ ବହିକୁ ଆମ ତାଲିକାରେ ଦେଇ ଆମେ ତାଙ୍କ ପ୍ରତି ଅଧିକା ଅନୁଗ୍ରହ କ'ଣ ଦେଖାଇଲୁ ? ଆଉ ଆଧୁନିକ ଭ୍ରମଣ କାହାଣୀ ବଛାଗଲେ ଗୋଲୋକଙ୍କର 'ଆମେରିକା ଅନୁଭୂତି'କୁ ବାଦ୍ ଦେବ ସେହି ଯେ ହୁଏତ, କେବଳ ବ୍ୟକ୍ତିଗତ ଈର୍ଷାଜର୍ଜ୍ଜର । ଆଉ ଓଡ଼ିଶାର ତିରିଶଟି ଲେଖକଙ୍କ ଭିତରେ ରାଧାମୋହନ ଗଡ଼ନାୟକ ଓ ଭଞ୍ଜକିଶୋର ପଟ୍ଟନାୟକ କ'ଣ ଜାଗା ପାଆନ୍ତେ ନି ? ଆମ ଅଫିସ୍‌ରେ ଚାକିରି କରିବାର ଅପରାଧ ଯୋଗୁଁ କ'ଣ ତାଙ୍କ ବହି କଟିଯାଇଥାନ୍ତା ? କିନ୍ତୁ ବଛା ବହିମାନଙ୍କର ଅଧିକାଂଶ ଲେଖକଙ୍କର ଆମ ଅଫିସ୍ ସଙ୍ଗେ କୌଣସି ସମ୍ପର୍କ ନାହିଁ, କେବଳ ନୁହେଁ, କେତେକଙ୍କ ସଙ୍ଗେ ମୋର ପ୍ରକୃତ ପରିଚୟ ହେଲା ବହି ବଛାହେବା ପରେ । ପୁଣି ତାଲିକାରେ ଜଣେ ଲେଖକଙ୍କର ବହି ମଧ ନିଆଯାଇଛି, ଯେ କି ବର୍ଷ ବର୍ଷ ଧରି ଧାରାବାହିକ ଭାବରେ ତାଙ୍କ ପତ୍ରିକାରେ ମୋର ନିନ୍ଦା ପ୍ରଚାର କରିଆସୁଛନ୍ତି ।

ବର୍ତ୍ତମାନ ମୋର ବହି ଓ ସେ ବାବଦରେ ଟଙ୍କାପଇସା ନେଇ ଦି'ପଦ କହେଁ ।

ପ୍ରଥମ କଥା ବିଚାର କରାଯାଉ ଯେ, ମୋର ଯେଉଁ ବହି ବଛାଯାଇଛି ତାହା ସାମାଜିକ-ସାହିତ୍ୟ କି ନୁହେଁ । ତାହା ଉତ୍କୃଷ୍ଟ ସାମାଜିକ-ସାହିତ୍ୟ ନୁହେଁ ବୋଲି ପ୍ରମାଣିତ ହେଲେ ଯାଇ

ସିନା ମୋ ପ୍ରତି ଦୋଷ ଆରୋପ କରାଯିବ, କିନ୍ତୁ ତା ଯଦି ନୁହେଁ, ତେବେ ଏ ସମ୍ପର୍କରେ ସମସ୍ତ ଚିତ୍କାର ଅବାନ୍ତର ନୁହେଁ କି ? ପୁନଶ୍ଚ ସାମାଜିକ-ଶିକ୍ଷା ଅଫିସରଭାବରେ ମୋର ତ ଆଦର୍ଶ ସାମାଜିକ-ସାହିତ୍ୟ ସୃଷ୍ଟି କରିବାର କଥା । ତାହା ମୁଁ ଆଜି କରୁଛି ନୁହେଁ, ଗତ ଦଶବର୍ଷ ଧରି କରିଆସୁଛି । ମୋର ଯେଉଁ ତିନୋଟି ପୁସ୍ତକ ତାଲିକାରେ ଜାଗା ପାଇଛନ୍ତି, ସେଗୁଡ଼ିକ ଖୋଲା ବଜାରରେ ହଜାର ହଜାର ସଂଖ୍ୟାରେ ବିକ୍ରି ହୋଇଛନ୍ତି । 'ପଶ୍ଚିମ ପଥିକ'ର ବର୍ତ୍ତମାନ ବୋଧହୁଏ ପଞ୍ଚମ ସଂସ୍କରଣ, 'ଶିକ୍ଷା-ଶିକ୍ଷକ ଓ ଶିକ୍ଷାୟତନ', ତିନିବର୍ଷରେ ତିନିହଜାର କପି ବିକ୍ରି ହୋଇଛି, 'ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ'ର ବିକ୍ରି ମଧ୍ୟ ସେଇପରି । ମୋର ମନେ ହୁଏ, ଆଜି ଯାହାକୁ ଆମେ ସାମାଜିକ-ସାହିତ୍ୟ ବୋଲି ସଂଜ୍ଞାୟିତ କରିବାକୁ ଯାଉଛୁ, ସେଇ ଲକ୍ଷ୍ୟରେହିଁ ଏଗୁଡ଼ିକ ବହୁ ପୂର୍ବରୁ ଲେଖାହୋଇ ଥିବାରୁ ଏଗୁଡ଼ିକର ବିକ୍ରି ଏପରି ସନ୍ତୋଷଜନକ । ତେଣୁ ମୋ ବହିକି ତାଲିକାରେ ଜାଗା ଦେଇ କମିଟି ମତେ କିଛି ଅଯଥା ଅନୁଗ୍ରହ କରିନାହାନ୍ତି ବୋଲି ମୋର ବିଶ୍ୱାସ । ଆଉ ଏ ସମ୍ପର୍କରେ ମୋର ପ୍ରାପ୍ୟ ଯାହା ୩ । ୪ ହଜାର ଟଙ୍କା ବୋଲି ପ୍ରଚାର ହୋଇଛି, ତାହା ସମ୍ପୂର୍ଣ୍ଣ ମିଥ୍ୟା । ସେସବୁ ପ୍ରକାଶକର ପ୍ରାପ୍ୟ, ମୋର ନୁହେଁ । ମୋର ଏ ବାବଦରେ ସମସ୍ତ ପ୍ରାପ୍ୟ ମୋର ମାସିକ ଦରମାରୁ ଢେର୍ କମ୍ । ତାହା ମଧ୍ୟ ମୁଁ ମୋ ପକେଟ୍‌କୁ ଆସିବାକୁ ଦେଇନି । ଏକ ଅନୁନ୍ନତ ଅଞ୍ଚଳରେ ଏକ ଶିକ୍ଷାନୁଷ୍ଠାନ ଠିଆ କରେଇବା ଲକ୍ଷ୍ୟରେ ତାହା ମୁଁ ସରକାରଙ୍କ ହସ୍ତରେହିଁ ଅର୍ପଣ କରିସାରିଛି ଏବଂ ଏ ପୋଷ୍ଟରେ ଯେତେଦିନ ଥିବି, ମୋ ବହି ବାବଦର ଟଙ୍କା ସେଇ ଭାବରେ ହିଁ ବ୍ୟୟ କରିବାକୁ ସ୍ଥିର କରିଛି ।

ୟା ଛଡ଼ା ଆମ ଡିପାର୍ଟମେଣ୍ଟ୍ ନିଜେ ଇ ଭିତରେ ଅନେକ ବହି ପ୍ରକାଶ କରିସାରିଲେଣି । ଯାହାର ବହି ବା ପ୍ରବନ୍ଧଟିଏ ବା କବିତାଟିଏ ଆମେ ଗ୍ରହଣ କରୁଛୁ, ତାଙ୍କୁ ସନ୍ତୋଷଜନକ ଭାବରେ ପାରିତୋଷିକ ଦେଉଛୁ । ଏଇ ସମଗ୍ର ସାମାଜିକ-ସାହିତ୍ୟ-ପର୍ଯ୍ୟାୟଟି ମୁଁ ଓ ଗଡ଼ନାୟକ ସମ୍ପାଦନା କରିଛୁ ଏବଂ ଏଥିରେ ତାଙ୍କର ଓ ମୋର ଗୀତ, କବିତା ଇତ୍ୟାଦି ବି ବିଭିନ୍ନ ସଂଗ୍ରହରେ ଦିଆଯାଇଛି । କିନ୍ତୁ ଏ କୌଣସି ବାବଦରେ ଆମେ ଏକପଇସାର ଆଶା ରଖିନାହୁଁ, କି ଦାବି କରିନାହୁଁ । ମୋଟଉପରେ ମୋର ଦରମାଛଡ଼ା ସାମାଜିକ-ଶିକ୍ଷା ଅଫିସରଭାବରେ, ଏକ ଅଧିକା କପର୍ଦ୍ଦକ ମୁଁ ମୋ ପଟେକ୍‌କୁ ଆସିବାକୁ ଦେଇନାହିଁ – ଅଥଚ 'ଦୁର୍ନୀତି' ନେଇ ଚିତ୍କାର ଚାଲିଛି ।

ବାକୀ ରହିଲା ଗଡ଼ନାୟକଙ୍କ ବହିର ଦାମ୍ ନେଇ । ମୋ ବିଚାରରେ, ୟାର ଉତ୍ତର ସେଇ ହିଁ ଦେବେ ।

## ପରିଶିଷ୍ଟ-୨

## ଦସ୍ତଖତର ଦି' ଅବସ୍ଥା

ଏହି ଅଧ୍ୟାୟରେ ମନ୍ତ୍ରୀଙ୍କ କହିବା ଅନୁସାରେ ଦସ୍ତଖତ ନଥିବା ଅଭିଯୋଗ ଯେ, ଏକ ଆଳ ମାତ୍ର ଥିଲା ଓ ଦସ୍ତଖତ ନଥାଇ କିପରି ଅବାଧରେ ସହସ୍ର ସହସ୍ର ଟଙ୍କା ଅନ୍ୟ ହସ୍ତକୁ ଚାଲିଯାଏ, ଦସ୍ତଖତକାରୀ ଭେଦରେ ଦସ୍ତଖତର ମୂଲ୍ୟ କିପରି ଭିନ୍ନ ହୋଇଉଠେ ଓ ଏକା ଅପରାଧପାଇଁ କିପରି ଭିନ୍ନ ଭିନ୍ନ ବ୍ୟବହାର ମିଳେ, ତାହାର ସାମାନ୍ୟ ଏକ ଅଭିଜ୍ଞତା ଏଠାରେ କହି ରଖେ ।

ମୁଁ ସୋସାଲ୍ ଏଡୁକେଶନ୍ ଅଫିସର ହୋଇ ଜଏନ୍ କରିସାରିଲାର କିଛି କାଳ ପରେ ଶ୍ରୀ ଉ.ମି. ନାମକ ଜଣେ ସରକାରୀ ଅଫିସର, ତାଙ୍କର ଏକ ଉପନ୍ୟାସ ବାବଦରୁ ପାଉଣାପାଇଁ ମୋ ପାଖକୁ (ଡି.ପି.ଆଇ.ଙ୍କ ପାଖକୁ ନୁହେଁ) ଦଉଡ଼ିଲେ । କି ଉପନ୍ୟାସ ? କାହିଁ ସେ ? କିଏ ଆପଣଙ୍କୁ କହିଥିଲା ଲେଖିବାକୁ ? କି ଟର୍ମସ୍‌ରେ ? କିଛିର ପତ୍ତା ନାହିଁ । ସେ ବି କିଛି ଦେଖାଇ ପାରିଲେନାହିଁ । ତେବେ ଏକାଧିକବାର କହିବାରୁ ଲୋକ ଲଗେଇ ଖୋଜେଇଲି । ଖୋଜୁ ଖୋଜୁ ତାହା ଧୂଳିଭୂଷିତ ଅବସ୍ଥାରେ ଗୋଟିଏ ଆଲମିରାର ପଛଆଡୁ ବାହାରିଲା । ସେ ଏକ ବିରାଟ ଉପନ୍ୟାସ । ତାହା ଲେଖାଥିଲା, ନାରୀ ପ୍ରଗତି ନେଇ । ଜାଣିରଖିବାର କଥା ଯେ, ସମ୍ପୃକ୍ତ ଲେଖକ ଔପନ୍ୟାସିକ ଆଦୌ ନୁହନ୍ତି । ଯଦି ଡିପାର୍ଟମେଣ୍ଟ ପକ୍ଷରୁ ଏପରି ଏକ ପୁସ୍ତକ ବାହାର କରିବାର ଥିଲା, ତେବେ ତାହାର ଭାର ଗୋପୀନାଥ ବା କାହ୍ନୁଚରଣଙ୍କ ପରି ଜଣାଶୁଣା ଔପନ୍ୟାସିକଙ୍କୁ ଦେବାର ଥିଲା ବା ପରେ ଆମ ସମୟରେ ଆମେ ଯେପରି ପ୍ରତିଯୋଗିତା କରାଇ ପ୍ରତ୍ୟେକ ଶ୍ରେଣୀର ଶ୍ରେଷ୍ଠ ବହିପାଇଁ ପୁରସ୍କାର ଦେଲୁ, ସେପରି କରିବା ଉଚିତ ଥିଲା । ମୋର ପୂର୍ବବର୍ତ୍ତୀ ଅଫିସର କି ଗୂଢ଼ ଉଦ୍ଦେଶ୍ୟରେ ଏହି ଅଣୌପନ୍ୟାସିକଙ୍କୁ ଏଇ ଅସାଧାରଣ ଦାୟିତ୍ୱ ଦେଲେ ବୁଝିବା ମୁସ୍କିଲ – ତାହା ପୁଣି କୌଣସି ଲେଖାପଢ଼ି ବିନା । ଯାହାହେଉ ପାଣ୍ଡୁଲିପି ବାହାରିଲା । ଲେଖକ ପୃଷ୍ଠାନୁସାରେ ପ୍ରାୟ ୩ ହଜାର ଟଙ୍କା ଦାବି କଲେ । ବୋଧହୁଏ ସେହି କାରଣରୁହିଁ ପୁସ୍ତକର କଳେବର ଏପରି ସ୍ଫୀତ ହୋଇଉଠିଥିଲା । ଲେଖକ ଅନରାରିଏମ୍ ୩ ହଜାର ଟଙ୍କା ନେବେ ଓ ଡିପାର୍ଟମେଣ୍ଟ ପକ୍ଷରୁ ପୁସ୍ତକଟି ପ୍ରକାଶିତ ହେବ, ଯାହାର ଅର୍ଥ ପୁଣି ୫।୭ ହଜାର ଟଙ୍କା । ମୁଁ ଲେଖକଙ୍କୁ କହିଲି, ପୁସ୍ତକର ସାମାଜିକ-ସାହିତ୍ୟିକ ମୂଲ୍ୟ ନିରୂପଣ ହେଉ, ପରେ ଯାଇ ଅନ୍ୟ କଥା । କିନ୍ତୁ ଲେଖକ ଟଙ୍କାପାଇଁ ବଡ଼ ଜୋର୍ ଦେବାରୁ, ଶୀଘ୍ର ଏ କାମ ତୁଟେଇବାପାଇଁ ବହିଟିକୁ ପ୍ରଥମେ ପଢ଼ିବାକୁ ଦେଲି, ପ୍ରୋଡ଼କ୍ସନ୍ ଅଫିସର କବି ରାଧାମୋହନ ଗଡ଼ନାୟକଙ୍କୁ । ସେ ଦୃଢ଼ମତ ଦେଲେ ଯେ, ଏ ବହି ଆଦୌ ପ୍ରକାଶଯୋଗ୍ୟ ନୁହେଁ । ତା'ପରେ ତାକୁ ଦେଲି ଆମ ବିଭାଗର ସେତେବେଳର ଟ୍ରାନ୍ସଲେଟର ନାଟକଲେଖକ ଶ୍ରୀ ଭଞ୍ଜକିଶୋର ପଟ୍ଟନାୟକଙ୍କୁ । ସେ ମଧ୍ୟ ସେହିପରି ପ୍ରତିକୂଳ ମତ ଦେଲେ । ତେଣୁ ଆଉ ବେଶୀଦୂର ନ ଯାଇ, ସେହି ଲେଖକଙ୍କୁ କହିଦେଲି ଯେ, ବହି, ଡିପାର୍ଟମେଣ୍ଟ ପକ୍ଷରୁ ପ୍ରକାଶ ଯୋଗ୍ୟ ନୁହେଁ, ତେଣୁ ମୁଁ ଏହାପାଇଁ ଅନରେରିୟାମ୍ ରେକମେଣ୍ଡ କରିପାରିବିନାହିଁ । ମୁଁ କଲିନି ମଧ୍ୟ । ବର୍ତ୍ତମାନ ମୋଠାରୁ ନିରାଶ ହୋଇ ଲେଖକ ଡି.ପି.ଆଇ.ଙ୍କି ଯାଇ ଧରିଲେ । ଡି.ପି.ଆଇ. ମତେ ଡାକିଲେ ଓ ଅନୁରୋଧ କଲେ ଯେ, ପେମେଣ୍ଟଟା ସାଙ୍କସନ୍ କରି ଦେବାକୁ । ମୁଁ କିନ୍ତୁ ଅଯୋଗ୍ୟ ବହିକୁ କୌଣସିମତେ ଅନୁକୂଳତା ଦେଖାଇପାରିବିନାହିଁ ବୋଲି ନିଷ୍ଠା ନାହିଁ କଲି । କିନ୍ତୁ ଡି.ପି.ଆଇ, ମୋର, ଅର୍ଥାତ୍ ମୋ ବିଭାଗର ପ୍ରତିକୂଳମତ ସତ୍ତ୍ୱେ ଓ ମୋର ଅର୍ଥାତ୍ ଏକ ବିଭାଗୀୟ ହେଡ୍‌ର ବିନା ଦସ୍ତଖତରେ ସେହି ଲେଖକଙ୍କୁ ୧,୪୦୦ ଟଙ୍କାର ପାରିଶ୍ରମିକ ଦିଆଇଦେଲେ । ଏ ଦେଶର ଶାସନରେ, ଜଣେ ହେଡ୍ ଅବ୍ ଦି ଡିପାର୍ଟମେଣ୍ଟର ଦସ୍ତଖତର ମୂଲ୍ୟ କ'ଣ ଏହି ? ସମ୍ପୂର୍ଣ୍ଣ ଅର୍ଥହୀନ ? ଡି.ପି.ଆଇ.ର ଦସ୍ତଖତଟା ନରହିଲା ବୋଲି (ଯାହା ପୂର୍ବରୁ କେବେ ଦର୍କାର ହେଉନଥିଲା) ଶିକ୍ଷାମନ୍ତ୍ରୀ ମତେ କଠୋର ଦଣ୍ଡ ଦେଇପାରିଲେ, କିନ୍ତୁ

ଡିପାର୍ଟମେଣ୍ଟର ହେଡ୍‌ର ବିନା ଦସ୍ତଖତରେ ସେହି ଡିପାର୍ଟମେଣ୍ଟର ଟଙ୍କା ଡି.ପି.ଆଇ. ଯେପରି ଅକାତରେ ଖଇରାତି କରିପାରିଲେ, ତାହା ଏଦେଶର ଶାସନରେ କ'ଣ ସର୍ବଗ୍ରାହ୍ୟ ସୁନୀତି ?

କେହି କହିବେ କି ଏ ଚଉଦଶ' ଟଙ୍କା ଲେଖକ ଶ୍ରୀ ଉ.ମି. ମହାଶୟଙ୍କୁ ସର୍କାର କାହିଁକି ଦେଲେ ଓ ଦେଇ କ'ଣ ପାଇଲେ ତାଙ୍କଠୁଁ ? ଯେଉଁ ସର୍କାର ଜଣକର ବହି ନେଇ ସେ ବହିରୁ ସାମାନ୍ୟ ପ୍ରାପ୍ୟ ମଧ ତାଙ୍କଠୁ ଛଡ଼ାଇ ନେଇପାରନ୍ତି, ସେଠି ସେହି ସର୍କାର କିଛି ହେଲେ ନ ପାଇ, ଆଉ ଜଣକୁ ଚଉଦଶ' ଟଙ୍କା ଅକୁଣ୍ଠଭାବରେ ଦେଇଦେଲେ କିପରି ? ଆଦୌ ଉପନ୍ୟାସ ନଲେଖିବା ବ୍ୟକ୍ତିଙ୍କୁ ବିରାଟ ଉପନ୍ୟାସ ଲେଖିବାକୁ କୁହା ବା ଯାଇଥିଲା କିପରି ? ଏତେବେଳକୁ ସମସ୍ତେ କିପରି ସୁନାପୁଅ ?

ପୁଣି ଯଦି ଡି.ପି.ଆଇ.ର ଦସ୍ତଖତ ନଥିବା ଏକ ଘୋର ଅକ୍ଷମଣୀୟ ଅପରାଧ ହୁଏ, ତେବେ (ପରିପୂର୍ଣ୍ଣ ଉପଯୁକ୍ତତା ସତ୍ତ୍ୱେ), କମିଟି-ନିର୍ବାଚିତ ସମଗ୍ର ପୁସ୍ତକ ତାଲିକାହିଁ ରଦ୍ଦ ବୋଲି ଘୋଷିତ ହୋଇଥାନ୍ତା ଓ ପୁସ୍ତକମାନଙ୍କର ସାନି ବଛା ହୋଇଥାନ୍ତା । କିନ୍ତୁ ତା ମଧ କରାଗଲାନାହିଁ ବା କାହିଁକି ? କେବଳ ଜଣକୁ ଦଣ୍ଡ ଦେବାପାଇଁହିଁ ସେ ଠେଙ୍ଗାଟି ବ୍ୟବହାର କରାଗଲା କିପରି ?

ଏ ସମ୍ପର୍କରେ, ତେଣୁ, ମେ ୨୭, ୧୯୬୩ର ଷ୍ଟେଟ୍‌ସମ୍ୟାନ୍, 'ଅସନ୍ତୋଷ' (Resentment) ନାମରେ ଯେଉଁ ପ୍ରଥମ ଅଗ୍ରଲେଖା ଲେଖିଥିଲେ, ତାର ଦୁଇଟି ପଂକ୍ତି ପାଠକମାନଙ୍କୁ ଏଠାରେ ଉପହାର ଦେଉଛି—

''(ପ୍ରତ୍ୟେକ ନାଗରିକ ପ୍ରତି) ସମଅବସ୍ଥା ଓ ସମସୁବିଧା, ଭାରତୀୟ ସମ୍ବିଧାନରେ ପ୍ରତିଶ୍ରୁତ । କିନ୍ତୁ ତା'ର ଅର୍ଥ ନୁହେଁ ଯେ, ଭାରତୀୟ ଜୀବନର ସର୍ବତ୍ର ଓ ସବୁ ବିଭାଗରେ ବର୍ତ୍ତମାନ କେବଳ ସାମ୍ୟହିଁ ରାଜତ୍ୱ କରୁଛି । xxx ଯଦି କୌଳିକ ଉତ୍ତରାଧିକାର, ଜାତି(କାଷ୍ଟ), ବା ଧନ (ସମ୍ପୃକ୍ତ ବ୍ୟକ୍ତିମାନଙ୍କୁ), ଆପେ ଆପେ (୧୯୪୭ର ପୂର୍ବପରି) ବହୁ କ୍ଷମତା ବା ସୁବିଧା ଆଣି ନଦେଉଛି ବୋଲି କୁହାଯିବ, ତେବେ ଆଉ କଅଣ ଦେଉଛି ବୋଲି ପଚାରି ପାରୁଁ କି ?''

## ପରିଶିଷ୍ଟ-୩

## ଗଡ଼ନାୟକଙ୍କ ଉତ୍କଳିକା

ଉତ୍କଳର ଗ୍ରାମ୍ୟ ପୁସ୍ତକାଳୟମାନଙ୍କପାଇଁ ଆମେ ଯେଉଁ ପୁସ୍ତକ-ତାଲିକା କରିଥିଲୁ ସେଥିରେ ଉତ୍କଳର ପ୍ରତିଷ୍ଠିତ କବି ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ 'ଉତ୍କଳିକା' କାବ୍ୟ ସ୍ଥାନ ପାଇଥିଲା । ବହୁବର୍ଷ ଧରି ଏ ପୁସ୍ତକ ଓଡ଼ିଶାର ସ୍କୁଲମାନଙ୍କରେ ପାଠ୍ୟପୁସ୍ତକ ହୋଇ ରହିଥିଲା ଓ ସେହି ଭାବରେ ଏ ପୁସ୍ତକର ସେତେବେଳକୁ ନଅଟି ସଂସ୍କରଣ ହୋଇ ସାରିଥିଲା । କିନ୍ତୁ ସେ ପର୍ଯ୍ୟନ୍ତ 'ଉତ୍କଳିକା'ର ପ୍ରକାଶକ ଥିଲେ କୌଣସି ପୁସ୍ତକ ବ୍ୟବସାୟୀ । ଅଶୀପୃଷ୍ଠା ସମ୍ବଳିତ ପୂର୍ବର ସେହି ଉତ୍କଳିକାର ଦାମ୍ ଥିଲା ବୋଧହୁଏ ବାରଅଣା ମାତ୍ର । ଆମ ତାଲିକାରେ ଯେଉଁ ଉତ୍କଳିକା ସ୍ଥାନ ପାଇଲା, ତାହା ପୂର୍ବ ସଂସ୍କରଣଠାରୁ ଥିଲା ପୃଷ୍ଠା ସଂଖ୍ୟାରେ ବୃହତ୍ତର, ପୁଣି ଚିତ୍ରିତ । ଏ ସଂସ୍କରଣର ପ୍ରକାଶକ ଥିଲେ, ଦୀପକ ଗଡ଼ନାୟକ । କିନ୍ତୁ ବହି ବଛାହେଲା ବେଳକୁ ଏହି ନୂତନ ସଂସ୍କରଣ ପ୍ରକାଶିତ ହୋଇନଥିଲା କେବଳ ନୁହେଁ, ଏହାର ଆକାର ପ୍ରକାର ମଧ ସ୍ଥିର

ନଥିଲା । ନୂତନ ସଂସ୍କରଣ କେବଳ କଳ୍ପନାରେ ଥିଲା । ନିର୍ବାଚନକମିଟି ଉତ୍କଳିକାର ଅସାଧାରଣ କାବ୍ୟିକ ଗୁଣ ଓ ଗ୍ରାମ୍ୟ ଲାଇବ୍ରେରି ପାଇଁ ତାର ଉପଯୋଗିତା ଦୃଷ୍ଟିରୁ ତାକୁ ତାଲିକାରେ ରଖିଦେଇଥିଲେ ଓ ତାର ଲେଖକଙ୍କଠାରୁ ନୂତନ ସଂସ୍କରଣରେ ପରିବର୍ତ୍ତନର ଯୋଜନା ଶୁଣି ହିଁ ତାର କାଳ୍ପନିକ ମୂଲ୍ୟ ଦୁଇ ଟଙ୍କା କରିଦେଇଥିଲେ ।

ନୂତନ ସଂସ୍କରଣର 'ଉତ୍କଳିକା' ମୁଦ୍ରାଯନ୍ତ୍ରରୁ ସଦ୍ୟ ବାହାରିଲା ସେତେବେଳେ ଯାଇ, ଯେତେବେଳେ କି ତାଲିକା ନିହିତ ବହିସବୁ କିଣାହେବାକୁ ବସିଲା । 'ଉତ୍କଳିକା'ର ପ୍ରକାଶକ ବହି ପ୍ରକାଶିତ ହେଲା ପରେ ପ୍ରକାଶ କଲେ ଯେ, ଦୁଇ ଟଙ୍କାରେ ଉତ୍କଳିକା ବିକିଲେ ପ୍ରକୃତରେ ସେ କ୍ଷତିଗ୍ରସ୍ତ ହେବାକୁ ଯାଉଛନ୍ତି । ନୂତନ ସଂସ୍କରଣ ଉତ୍କଳିକାର ଦାମ୍ ଅଢ଼େଇ ଟଙ୍କା ହେବା ଉଚିତ ।

ସୋସାଲ୍ ଏଡୁକେଶନ ଅଫିସର୍, ଦୁଇଟି ବିଚାରଦ୍ୱାରା ପ୍ରଣୋଦିତ ହୋଇ ଉତ୍କଳିକାର ପ୍ରକାଶକଙ୍କ ଆପତ୍ତି ଗ୍ରହଣ କଲେ । ପ୍ରଥମ ହେଲା ଏହି ଯେ, କମିଟି ବହିଟିକୁ ବାଛି ନେଇ ଯାଇଛନ୍ତି । ତାହାହିଁ ଥିଲା କମିଟିର କାମ । ବହିର ମୂଲ୍ୟ ନିର୍ଦ୍ଧାରଣ କରିବା ତ କମିଟିର କାମ ନୁହେଁ । ତାହା ପବ୍ଲିଶରର କାମ । କମିଟି, ଡିପାର୍ଟମେଣ୍ଟର ବିକାକିଣା ହିସାବର ସୁବିଧାପାଇଁହିଁ ନିର୍ବାଚିତ ପୁସ୍ତକ ତାଲିକାର ଡାହାଣ ପଟେ ପୁସ୍ତକଗୁଡ଼ିକର ଦାମ୍ ବସେଇ ଯାଇଥିଲେ । କିନ୍ତୁ ତାଙ୍କ ତାଲିକା ତିଆରି ବେଳକୁ ଏହି ନୂତନ ସଂସ୍କରଣ ଉତ୍କଳିକାର ଅସ୍ତିତ୍ୱ ହିଁ ନଥିଲା । ଅଥଚ କେବଳ ହିସାବର ସୁବିଧାପାଇଁ କମିଟି ଆନୁମାନିକ ଦାମ୍ ଦୁଇଟଙ୍କା ବସାଇ ଦେଇଥିଲେ । କିନ୍ତୁ ବର୍ତ୍ତମାନ ବହିଟି ପ୍ରକାଶିତ ହେବା ପରେ ସ୍ୱୟଂ ପ୍ରକାଶକ ଦୁଇ ଟଙ୍କାରେ ସେ ବହି ଦେବାକୁ ନାରାଜ ହେବାର ଦେଖାଗଲା । ବହିଟି କିନ୍ତୁ ଓଡ଼ିଶାର ଗ୍ରାମ୍ୟ ପୁସ୍ତକାଳୟପାଇଁ ଉତ୍କୃଷ୍ଟ କବିତା ପୁସ୍ତକ । ଆମର ମୌଳିକ ତାଲିକାରେ ଏହାହିଁ ଥିଲା ଏକମାତ୍ର କବିତା ବହି । ସୋସାଲ୍ ଏଡୁକେଶନ ଅଫିସର ସେପରି ବହିକୁ କେବଳ ଆଠଅଣା ପଇସାର ଏପଟ ସେପଟ ବିଚାରରେ, କାଟିଦେବେ କାହିଁକି, ଯେତେବେଳେ ବଜେଟ୍ ବାହାରେ ତାଙ୍କ ହାତରେ ଜମା ହୋଇଗଲାଣି ପ୍ରାୟ ତିନିହଜାର ଟଙ୍କାର ଡିସ୍କାଉଣ୍ଟ, ଯେଉଁଥିରେ ସେ ତାଲିକା ବହିର୍ଭୂତ ଅନେକ ବହି କିଣିବାକୁ ଯାଉଥିଲେ । ପୁସ୍ତକ ନିର୍ବାଚନ କମିଟିର ପୁସ୍ତକମୂଲ୍ୟ ନିର୍ଦ୍ଧାରଣର କୌଣସି କ୍ଷମତା ନଥିଲା, କି ସେପରି କମିଟିର ସେପରି କ୍ଷମତା କେବେ କେଉଁଠାରେ ନଥାଏ । ପୁଣି ଏ କ୍ଷେତ୍ରରେ ସମ୍ପୃକ୍ତ କମିଟିର 'ଉତ୍କଳିକା'ର ଆନୁମାନିକ ମୂଲ୍ୟ ନିର୍ଦ୍ଧାରଣକୁ ଶେଷ ସିଦ୍ଧାନ୍ତ ବୋଲି ଗ୍ରହଣ କରାଯିବାର କୌଣସି ଯୁକ୍ତି ମଧ୍ୟ ନଥିଲା, କାରଣ ସେତେବେଳକୁ ସେ ବହି (ନୂତନ ସଂସ୍କରଣ)ର ଅସ୍ତିତ୍ୱହିଁ ନଥିଲା ।

ଦ୍ୱିତୀୟ ଯୁକ୍ତି ଥିଲା ମାନବିକ । ଇ ଭିତରେ ପ୍ରୌଢ଼ଶିକ୍ଷା ଅଫିସର, ତାଙ୍କର ଚିରନିନ୍ଦୁକ, ଚୁଗୁଲିଜୀବୀ ପତ୍ରିକାର ସମ୍ପାଦକ ବନ୍ଧୁ, ନିର୍ବାଚନ-ତାଲିକା-ନିହିତ ତାଙ୍କର ବହିର ପ୍ରାପ୍ୟତକ, ତାଙ୍କୁ ବର୍ଷ ବର୍ଷ ଧରି ଠକି ଆସିଥିବା ପବ୍ଲିଶରଠାରୁ ସେ କିପରି ସୁରୁଖୁରୁରେ ପାଇବେ, ସେ ତାର ବ୍ୟବସ୍ଥା କରିଦେଇଥିଲେ । ଭିଖାରୀଚରଣ ପଟ୍ଟନାୟକଙ୍କ ମୂଲ୍ୟବାନ୍ ପୁସ୍ତକ 'କୁଟୀର ଶିଳ୍ପ' ପଡ଼ି ରହିଥିଲା । ଏକତ୍ର ଏକ ଏକ ପୂରାସେଟ୍ ବହୁ ସଂଖ୍ୟାରେ ଏଇଥର କିଣାହୋଇ

ଯିବାରୁ, ସେହି ବୃଦ୍ଧ ସାହିତ୍ୟିକଙ୍କର କି କୃତଜ୍ଞତା ପ୍ରକାଶ, ସେ ଅଫିସର ଦେଖିଥିଲେ । ତେଣୁ, ପ୍ରୌଢ଼ଶିକ୍ଷା ଅଫିସର, ଉତ୍କଳିକାର ପ୍ରକାଶକଙ୍କ କ୍ଷତିରେ ନପଡ଼ିବା-ନିବେଦନ ଅନୁସାରେ, କମିଟି ବସାଇଥିବା 'ଆନୁମାନିକ' ଦାମ୍ ଦୁଇଟଙ୍କା ନରଖି ଅଢ଼େଇଟଙ୍କା ଦାମକୁ ଯୁକ୍ତିଯୁକ୍ତ ମନେ କରି ଗ୍ରହଣ କଲେ । ଉତ୍କଳିକାର ପ୍ରକାଶକ ଏହା ଫଳରେ ସଦ୍ୟ ବୋଧହୁଏ ପାଇଥିଲେ ମାତ୍ର ଶହେ-ଦେଢ଼ଶ ଟଙ୍କା ଅଧିକା । କିନ୍ତୁ ଏଥିରେ 'ଦୁର୍ନୀତି' ଆସିଗଲା କେଉଁ ବାଟେ ? କେଉଁ କାମ, କେଉଁ ଯୋଜନାରେ ସରକାରଙ୍କ ଏଷ୍ଟିମେଟ୍ ରିଭାଇଜଡ୍ ହେଉନାହିଁ ? ହୀରାକୁଦର ୪୫ କୋଟି ହୋଇଉଠିଲା ୧୨୦ ଏବଂ ସେ ରିଭିଜନ ବାବଦକୁ (ଯାହା ଯୋଜନାକାରୀମାନଙ୍କରହିଁ ଅପରାଧ ବୋଲି ଧରିବାକୁ ହେବ) ଦେଶବାସୀ ଜୋରିମାନା ଦେଉଛନ୍ତି ପ୍ରତିବର୍ଷ କୋଟି କୋଟି ଟଙ୍କା । ଅଥଚ, ଏଠି ଆଠଣା ପଇସାର କଥା ମାତ୍ର । ତାହା ପୁଣି ଓଡ଼ିଶା ଦେଶର ଜଣେ ଲବ୍ଧ-ପ୍ରତିଷ୍ଠ କବିର ବିଖ୍ୟାତ ବହିର ଏକ ନୂତନ ସଂସ୍କରଣ ଉପରେ । କିନ୍ତୁ ସେହି ଅପରାଧପାଇଁ ଏ ଦେଶର ଦୁଇଜଣ ପ୍ରତିଷ୍ଠିତ କବିଙ୍କି ଏ ଦେଶର ସର୍କାରଙ୍କ ଶିକ୍ଷା ବିଭାଗ ଫାଶୀ ଦେବାକୁ ବସିଥିଲେ । ଏ ଦେଶର ହାଇକୋର୍ଟ-ଚିଫ୍‌ଜଷ୍ଟିସ୍ ଶିକ୍ଷାମନ୍ତ୍ରୀ, ଶିକ୍ଷା ବିଭାଗର ସେତେବେଳର ବିଲାତ ମାଡ଼ିଥିବା ଓ ସାହିତ୍ୟିକଂମ୍ମନ୍ୟ ଆଇ.ଏ.ଏସ୍. ସେକ୍ରେଟାରୀ ଏବଂ ବିଲାତ ଫେରନ୍ତା ଡି.ପି.ଆଇ. ମଧ ଜାଣନ୍ତିନାହିଁକି ଯେ, ଖଣ୍ଡିଏ ବହିର ଭିନ୍ନ ଭିନ୍ନ ସଂସ୍କରଣରେ ଭିନ୍ନ ଭିନ୍ନ ଦାମ୍ ଉଠେ ? 'ମଥୁରାମଙ୍ଗଳ' ବଜାରରେ ଚାରଣା' ପଇସା ଦେଲେ ମିଳିବ । କିନ୍ତୁ ଆର୍ତ୍ତବାବୁଙ୍କ ସମ୍ପାଦିତ ସେହି ମଥୁରାମଙ୍ଗଳର ଦାମ୍ କେତେ ? ଆର୍ତ୍ତବାବୁଙ୍କ ହାତରେ ତାହା କରପଶନ୍ ନୁହେଁ, କିନ୍ତୁ ତାହା କରପଶନ୍ ହୋଇଉଠେ ରାଧାମୋହନ ଗଡ଼ନାୟକ ନିକଟରେ ? ଏ ଦେଶର ଡି.ପି.ଆଇ. ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ସେକ୍ରେଟାରୀ ଓ ମୁଖ୍ୟମନ୍ତ୍ରୀଙ୍କି ବି କ'ଣ ଜଣା ମଧ ନାହିଁ ଯେ, ଇଉରୋପ, ଆମେରିକାରେ ଖଣ୍ଡିଏ ବିଶେଷ ସଂସ୍କରଣର ବହି ବା ବିଶେଷ ଚିତ୍ରଟିଏ, ଲକ୍ଷ-ଲକ୍ଷ ଟଙ୍କାରେ ବିକ୍ରି ହୁଏ ? ଅଥଚ, ନିଜ ଭାଷାର ଏକ ପ୍ରସିଦ୍ଧ କାବ୍ୟର ଏକ ପରିବର୍ଦ୍ଧିତ ଓ ଚିତ୍ରିତ ନୂତନ-ସଂସ୍କରଣର ଦାମ୍ ଉପରେ ଆଠଣା ପଇସା ବଢ଼ାଇ ଦିଆଯିବାରୁ, ତାକୁଇ ଆଳକରି ସମ୍ପୃକ୍ତ ଦୁଇଜଣ କବିଙ୍କୁ ହତ୍ୟା କରିବାକୁ ଏ ଦେଶର ଶିକ୍ଷାମନ୍ତ୍ରୀ ଓ ଡି.ପି.ଆଇ. କୁଣ୍ଠା ପ୍ରକାଶ କଲେନାହିଁ ? ପୁଣି ତାହା ଘଟିଲା ଓଡ଼ିଶାର ତଥାକଥିତ ଦ୍ୱିତୀୟ ଖାରବେଳଙ୍କ ଶାସନରେ, ଯେତେବେଳେ ସେ ଓଡ଼ିଶା ସାହିତ୍ୟ ଆକାଡେମୀର ପ୍ରତିଷ୍ଠାପକ ଭାବରେ ବିଜୟୋଲ୍ଲାସରେ ପତାକା ଉଡ଼ାଉଥିଲେ ?

ଅଧିକନ୍ତୁ ସେଦିନ ଯାହାକୁ ଏକାନ୍ତ 'କରପ୍ଟ' ଓ ଅବାଞ୍ଛିତ ବୋଲି ସର୍କାରୀ ଚାକିରିରୁ ବିନା ଇନ୍‌କ୍ୱାରୀ, ବିନା ଏକ୍‌ସ୍‌ପ୍ଲାନେସନରେ ରାତି ପାହିଲା ବେଳକୁ ତଡ଼ିଦିଆଯାଇଥିଲା, ପରେ ଆଉ ଜଣେ ପରବର୍ତ୍ତୀ ମନ୍ତ୍ରୀ ଠିକ୍ ସେହି ଲୋକକୁ ପୁଣି ସରକାରୀ ଚାକିରିକୁ ସସମ୍ମାନ ବରିତ କଲେ କିପରି ?

ନ୍ୟାୟବିଚାରର କି ବିଚିତ୍ର ନାଟକ ନ ଦେଖିଲେ ଆମେ, ଏହି ଐତିହାସିକ ଦେଶରେ !

## ପରିଶିଷ୍ଟ-୪

## ଡି.ପି.ଆଇ.ଙ୍କର ପ୍ରତିଶ୍ରୁତି ଓ ସୁପାରିସ୍ ଏବଂ ହିଂସ୍ର ମନ୍ତ୍ରୀଙ୍କ ଅନୁଦାର ସିଦ୍ଧାନ୍ତ

1. Extract from letter No. 21113 of 21st November, 1956 from Dr. B. Prasad, D.P.I., Orissa, to Dr. Mansinha.

"Government did think that you are a proper man to be in charge of Social Education. Otherwise they would not have transferred you to this post, but would have thought of transfering you to some other post and it is because I would like you to be contented here that *I recommended to Government to upgrade the post to that of a Deputy Director."*

2. Extract from letter No. 5075, dated the 26th February, 1957 from the Director of Public Instruction, Orissa to the Registrar, Utkal University, Cuttack.

Subject:– Appointment of Dr. M. Mansinha, Adult (Social) Education Officer as Chief Compiler for compilation of the Oriya Encyclopaedia.

"Please refer to your Letter No. AC/2467/57 of the 13/14th February, 1957. I am enclosing an application from Dr. Mansinha in the matter.

Dr. Mansinha is a permanent Principal of Gangadhar Meher College at Sambalpur. He has come as Adult (Social) Education Officer and there is *every chance of his being appointed as Deputy Director in charge of Social Education with effect from the date on which he joined as Adult (Social) Education Officer."*

ଘଟଣାଚକ୍ରରେ ପଡ଼ି ଘାରିହେବା ଫଳରେହିଁ ଲୋକ ବିପରୀତ ଚିତ୍ର ପ୍ରତି ସଚେତନ ହୋଇଥାଏ – ଏହା ସ୍ୱାଭାବିକ । ଠିକ୍ ଏହି କାରଣରୁହିଁ, ଏହି କାଳରେ ମୁଁ ଭାବିବା ଆରମ୍ଭ କଲି, ରଥ-ପାଣିଗ୍ରାହୀଙ୍କ ରାଜତ୍ୱ କାଳରେ ଯେତେବେଳେ ଶିକ୍ଷାବିଭାଗର ଜଣେ ଏମ୍.ଏ. ପିଏଇଚ୍,ଡି.ଇଡି. ଡିଗ୍ରୀଧାରୀ କର୍ମଚାରୀ, ଯିଏ ଏ ଦେଶର ଜଣେ ଜଣାଶୁଣା କବି ଓ ଲେଖକ, ଯେ ପୁଣି ଓଡ଼ିଶା ଓ ମଧ୍ୟପ୍ରଦେଶ ବିସ୍ତୃତ ପୂର୍ବଗଡ଼ଜାତ ଏଜେନ୍ସିର ଶିକ୍ଷା ପରାମର୍ଶଦାତା ଥିଲେ, ଯେ ଥିଲେ ଉଭୟ ଉତ୍ତର ଓ ଦକ୍ଷିଣ ଓଡ଼ିଶାର ଇନ୍ସପେକ୍ଟର, ଥିଲେ ପୁଣି ଏକ ପ୍ରଥମ ଶ୍ରେଣୀ ସରକାରୀ କଲେଜର ପ୍ରିନ୍ସପାଲ୍, ଯେ ମଧ୍ୟ ସର୍ବୋପରି ସେକେଣ୍ଡାରୀ ସ୍କୁଲ୍‌ର ଶିକ୍ଷକ-ହେଡ଼ମାଷ୍ଟର-ଅଭିଜ୍ଞତାଧାରୀ ଓ ସେକେଣ୍ଡାରୀ-ଶିକ୍ଷା-ସମ୍ପର୍କରେ ଗ୍ରନ୍ଥ ଲେଖକ, ସେ ନବଗଠିତ ସେକେଣ୍ଡାରୀ ବୋର୍ଡ଼ର ସାମାନ୍ୟ ମେମ୍ବରଟାଏ ହେବାର ଯୋଗ୍ୟ ବିବେଚିତ ହୋଇ ନଥିଲେ କେବଳ ନୁହେଁ, ଅବାଞ୍ଛନୀୟ ଦାଗୀପରି ଏକ ପୋଷ୍ଟରୁ ଅନ୍ୟ ପୋଷ୍ଟକୁ ଦଣ୍ଡିତ ଓ

ବିତାଡ଼ିତ ହେଉଥିଲେ ଓ ଉପର ଲିଖିତମତେ ରାଷ୍ଟ୍ରର ଡି.ପି.ଆଇ. ଦୃଢ଼ଭାବରେ ରେକମେଣ୍ଡ କରିବା ସତ୍ତ୍ୱେ ତାଙ୍କୁ ସାମାନ୍ୟ ଡି.ଡି.ପି.ଆଇ. ଗ୍ରେଡ୍ ଓ ପ୍ରାପ୍ୟରୁ ମଧ୍ୟ ବିଚ୍ୟୁତ କରାଯାଇଥିଲା, ଠିକ୍ ସେତିକିବେଳେ ସେହି ଶିକ୍ଷା ବିଭାଗରେ, ଆଉ ଜଣେ ଅଫିସର (ନବମ ଅଧ୍ୟାୟରେ ସୂଚିତ) ଯାହାଙ୍କର ଏଡୁକେଶନ ଡିଗ୍ରୀ ନାହିଁ, ଯେ ଭାରତରେ ନିମ୍ନଶ୍ରେଣୀ ଏମ୍.ଏ. ଓ ବିଲାତରେ ସରକାରୀ ଟଙ୍କାର ପ୍ରଚୁର ଅପବ୍ୟୟ କରି ମଧ୍ୟ ଫେଲ୍ ଗୌରବ ନେଇ ପ୍ରତ୍ୟାବୃତ୍ତ, ସେ କେଉଁ ମହତ୍‌ଗୁଣ ଓ ସିଦ୍ଧି ଯୋଗୁଁ ବରିତ ହେଲେ ନବଗଠିତ ସେକେଣ୍ଡାରୀ ବୋର୍ଡ଼ର ବିଧାତାରୂପେ ଏବଂ ସେଠିବା କି କୀର୍ତ୍ତି ଠିଆକଲେ ଜାଣୁନା, ସେଠୁ ଆସି ବିନାବାଧାରେ ସେ ହୋଇଗଲେ ଶିକ୍ଷାବିଭାଗର ଉଚ୍ଚ-ପଦାଧିକାରୀ ? ଦେଶର ଭବିଷ୍ୟଦ୍ ପରମ୍ପରା ଦୃଷ୍ଟିରୁହିଁ ଏ ପ୍ରକାର ବ୍ୟବହାର ଏଠାରେ ଉଲ୍ଲେଖ କରିରଖୁଛି ।

---

# ଏକବିଂଶ ଅଧ୍ୟାୟ

# ତୃତୀୟ ଜନ୍ମ

ଓଡ଼ିଶାର ଜଣେ ସାମାନ୍ୟ ଶିକ୍ଷାବିତ୍‌ର ଏହି ଗାଥା ବର୍ତ୍ତମାନ ଶେଷ ହେବାକୁ ଆସିଲା । ଏହା ଏପର୍ଯ୍ୟନ୍ତ ଶିକ୍ଷାବିଭାଗୀୟ ବା ବିଶ୍ୱବିଦ୍ୟାଳୀୟ ଅଭିଜ୍ଞତାର ବର୍ଣ୍ଣନାହିଁ ହୋଇଆସିଛି । କିନ୍ତୁ ଏହି ପୃଥିବୀ, ସେଥିରେ ଥିବା ମନୁଷ୍ୟର ଜୀବନ ଓ ତାର ଜୀବିକା, ଏକପ୍ରକାର ଅଖଣ୍ଡ ଓ ଅଭିନ୍ନ ନୁହନ୍ତି କି ? ଆମେ, ଆମ କ୍ଷୁଦ୍ର ବ୍ୟକ୍ତିତ୍ୱର କ୍ଷୁଦ୍ର ପରିତୋଷପାଇଁ ସିନା, ଅନନ୍ତ-ପରିବ୍ୟାପ୍ତ ଏହି ସୃଷ୍ଟି ଓ ଜୀବନକୁ କ୍ଷୁଦ୍ର ଓ ସୀମିତ କରି ଦେଖୁ ? ଗୀତାର ପୁଷ୍କଳବାଣୀରେ, ଧରାପୃଷ୍ଠରେ ଆମର ଏ ଜୀବନ, ଏକାନ୍ତଭାବରେ, 'ବ୍ୟକ୍ତମଧ' ମାତ୍ର । ଅର୍ଥାତ୍ ଆମର ଏହି ଜୀବନ, ତାହାର ଦୁଇପଟେ-ପରିବ୍ୟାପ୍ତ, ସୀମାହୀନ, ଅଜ୍ଞେୟ ଓ ଅଦୃଶ୍ୟ ଭିତରୁ, କେତେ ମୁହୂର୍ତ୍ତପାଇଁ ଉପରକୁ-ଭାସି-ଉଠିଥିବା ଏକ ଅଚିରସ୍ଥାୟୀ 'ମଧ' ମାତ୍ର । ଏହି ଅଚିରସ୍ଥାୟୀ 'ମଧ'ର କ୍ଷିପ୍ର ପଳାୟମାନ ପ୍ରୟୋଜନରେହିଁ ଏହି ଜୀବନର ଉତ୍ସ 'ଇଟର୍ଣ୍ଣିଟି' ବା 'ଶାଶ୍ୱତକୁ' ଆମେ ଭୁଲିଯାଉଁ, କେବଳ ନୁହେଁ, ଆମେ ଆମର ସହଜାତ ଉଦାର ମନୁଷ୍ୟତ୍ୱର ପରମ ଗୌରବକୁ ପଦାଘାତ କରି ଅକୁଣ୍ଠିତଭାବରେ ତା' ଉପରେ କ୍ଷୁଦ୍ରତା ଓ ସଂକୀର୍ଣ୍ଣତାର ଅଯୌକ୍ତିକ ଓ ଅନାବଶ୍ୟକ ଗୁଡ଼ାଏ ଲେବୁଲ୍ ମଧ ମାରିବସୁ । ଆମେ ସନାତନର ଅଂଶ ବୋଲି ମନେକରିବା ଓ ସେହି ଅନୁଯାୟୀ କାର୍ଯ୍ୟ କରିବାକୁ ଯେପରି କୁଣ୍ଠିତ, ସେହିପରି ମଧ କେବଳ 'ମନୁଷ୍ୟ' ବୋଲି ପରିଚିତ ହେବାକୁ ଲଜ୍ଜିତ । ଆମେ ପରିଚିତ ହେବାକୁ ଭଲପାଉ ହିନ୍ଦୁ, ମୁସଲମାନ, ବ୍ରାହ୍ମଣ, କରଣ ବା ଚଷା ଭାବରେ । ଗୀତାର ସେହି ଅପୂର୍ବ ବାଣୀ, ଆମେ ସହଜରେହିଁ ଭୁଲିଯାଉଁ–'ଅବିଭକ୍ତଂ ଚ ଭୂତେଷୁ ବିଭକ୍ତମିବ ଚ ସ୍ଥିତମ୍'(ଅଗଣିତ ପ୍ରାଣୀ ଦେହରେ ବିଭକ୍ତ ଓ ବିଭିନ୍ନ ହୋଇ ରହିଥିବା ଦେଖାଗଲେ ମଧ, ସେହି ସନାତନ ସତ୍ତା ପ୍ରକୃତରେ ଅବିଭକ୍ତ ।) କିନ୍ତୁ ପ୍ରକୃତି, ଆମଗଢ଼ା-ସକଳ-ଘୃଣ୍ୟ-ସଂକୀର୍ଣ୍ଣ-ଲେବୁଲ୍‌ଗୁଡ଼ିକୁ ଫିଙ୍ଗିଦେଇ, ପୃଥିବୀର ସକଳ ଧର୍ମ, ସକଳ ଦେଶ, ସକଳ ଗୋଷ୍ଠୀ ଓ ବର୍ଣ୍ଣର ମନୁଷ୍ୟଙ୍କୁ, ଯେଉଁ ଚମଡ଼ାରେ ଜନ୍ମ ଦେଇଥାଏ, କେବଳ ସେହି ଚମଡ଼ାରେହିଁ ମୃତ୍ୟୁ ହାତରେ ଅହରହ ସମର୍ପିତ କରାଇ, ଆମର ସଂକୀର୍ଣ୍ଣ ଚେତନାକୁ ନିରବଧି ପରିହାସ କରିଆସୁଛି । ଅଥଚ, ତାହା ଆମେ ଦେଖି ମଧ ଦେଖୁନା, ଜାଣି ମଧ ଭୁଲିଯାଉଁ ।

ଜୀବନ ଅଖଣ୍ଡ ଓ ପରିବ୍ୟାପ୍ତ କେବଳ ନୁହେଁ, ତାହା ମଧ ଚିରପ୍ରବାହିତ । ଜୀବନର ଅଖଣ୍ଡ ବ୍ୟାପକତା ଯେପରି ତା'ର ପରମ ସତ୍ୟ, ଜୀବନର ଅନନ୍ତ-ପ୍ରବହମାନତା ସେହିପରି ତାର ବିଚିତ୍ର ଗବେଷଣାଗାର । ଏହି ପ୍ରବହମାନତାକୁ ଯେଉଁମାନେ ନିଜ ଭିତରେ ବଞ୍ଚାଇ ରଖନ୍ତି ଓ ଅନ୍ୟଠାରେ ସମ୍ମାନ କରନ୍ତି, ସେହିମାନେହିଁ ପ୍ରକୃତରେ ଜୀବନର ସତ୍ୟ ପରିଚୟ ଲାଭ କରନ୍ତି ।

ପଶ୍ଚିମ ଗୋଲାର୍ଦ୍ଧରେ ଲୋକେ ଜୀବନର ଏହି ପ୍ରବହମାନତାକୁ ସମ୍ମାନ ଦେଇ ଆସିଥିବାରୁହିଁ ଗ୍ରୀକ୍ ସଭ୍ୟତାବେଳୁ ଏଯାଏଁ ସେମାନେ ସ୍ତରେ ସ୍ତରେ ଆଗକୁ ଆଗକୁ ମାଡ଼ି ଚାଲିଛନ୍ତି । ଏହି ଗାଥାର ଚତୁର୍ଥ ଅଧ୍ୟାୟ (ସାମୁଦ୍ରିକ ବିଦ୍ୟା)ରେ ମୁଁ ମୋର ଏହି ଜୀବନରେ ତିନି ଜନ୍ମର କଥା କହି, କହିଛି ଯେ, ତୃତୀୟ ଜନ୍ମାନ୍ତର ଦେଇହିଁ ମୁଁ ବର୍ତ୍ତମାନ ଚାଲିଛି । 'ଗୀତା', ଠାଏ ଜୀବନର ପ୍ରବହମାନତାକୁ ଏହିପରି ମନୋରମ ଭାବରେ ବର୍ଣ୍ଣନା କରିଛନ୍ତି–''ଗୃହୀତ୍ୱା ଏତାନି ସଂଯାତି ବାୟୁର୍ଗନ୍ଧାନିବାଶୟାତ୍'' (ସେହି ଆତ୍ମସ୍ଥ ଈଶ୍ୱର ବାୟୁ, ପୁଷ୍ପମାନଙ୍କର ଗନ୍ଧ ଆହରଣ କରି ବହିଗଲାପରି, ଏକ ଜନ୍ମର ଗୁଣଦୋଷକୁ ଅନ୍ୟ ଜନ୍ମପାଇଁ ବହିନେଇଥାନ୍ତି ।) ଅର୍ଥାତ୍, ବର୍ତ୍ତମାନ ଦେଖାଯାଉଥିବା କେବଳ ଏହି 'ମଧ୍ୟ', ଆମର ସବୁ ଜୀବନ ନୁହେଁ । ଅଗଣିତ 'ବ୍ୟକ୍ତିମଧ୍ୟ' ଦେଇହିଁ, 'ଅବ୍ୟକ୍ତ' ବହିଚାଲିଛି । ଆମେ ଦେଖି-ନପାରୁଥିବା-ଜୀବନର ସେହି 'ପୂର୍ବ' ଓ 'ପର'କୁ (ବା ଅଦୃଷ୍ଟକୁ) ଦୃଶ୍ୟମାନ ଏହି 'ମଧ୍ୟ' ପରିହିଁ, ଆମକୁ ସମଭାବରେ ବିଶ୍ୱାସ କରିବାକୁ ହେବ । ନଚେତ୍, ଆମର ଜୀବନାଦର୍ଶ ରହିବ ଖଣ୍ଡିତ ଓ ବିକୃତ । ଜୀବନର ଏହି ପ୍ରବହମାନତାହିଁ ପୁଣି ଆମ ପକ୍ଷରେ ପରମ ଶିକ୍ଷା ଓ ଚରମ ଜ୍ଞାନ । ଅନ୍ୟ କଥାରେ, ଏହି ଚେତନାହିଁ ଆମପରି ସାଧାରଣ ପ୍ରତ୍ୟେକର ପ୍ରକୃତ, ସହଜ 'ଜ୍ଞାନଯୋଗ' । କ୍ଷଣସ୍ଥାୟୀ ଓ ପ୍ରାୟଶଃ ଦୁଃଖଦାୟକ, ପାର୍ଥିବ ପଦ-ପଦାର୍ଥ, ଈଶ୍ୱରଙ୍କର ଶ୍ରେଷ୍ଠ ବା ସୁନ୍ଦର ଅଭିବ୍ୟକ୍ତି ନୋହିପାରନ୍ତି; ଯଦିଓ ଆମେ ଆମର ସ୍ଥୂଳ, ଇତର ଦୃଷ୍ଟିରୁ, ତାକୁହିଁ କହୁ 'ଐଶ୍ୱର୍ଯ୍ୟ', ଅର୍ଥାତ୍ 'ଈଶ୍ୱର ଭାବ' । ଏହାହିଁ ତ ଆମର ଘୋର ଅଜ୍ଞତା ସୂଚନା କରେ । ଐଶ୍ୱର୍ଯ୍ୟ, ହେବ କେବଳ ସେହି, ଯାହା ଆମକୁ ଈଶ୍ୱରଙ୍କ ସମୀପସ୍ଥ କରାଏ ବା ଈଶ୍ୱରଭାବାପନ୍ନ କରାଏ । ହିନ୍ଦୁ, ମୁସଲମାନ, ବ୍ରାହ୍ମ, ଖ୍ରୀଷ୍ଟିଆନ ସମସ୍ତଙ୍କର 'ଈଶ୍ୱର'ର ପ୍ରଥମ ଲକ୍ଷଣ ଏହି ଯେ, ସେ ସର୍ବବ୍ୟାପ୍ତ, ଏକ ଓ ଅଖଣ୍ଡ । ଈଶ୍ୱରଭାବାନୁଗତାର ତେଣୁ ଏକମାତ୍ର ତାତ୍ପର୍ଯ୍ୟ,–ଐକ୍ୟବୋଧ, ସାମ୍ୟବୋଧ ଓ ବ୍ୟାପ୍ତିବୋଧ ଓ ଅଖଣ୍ଡତାର ବୋଧ । 'ଗୀତା'ରେ ବାରମ୍ବାର ତେଣୁ ଏହି 'ସାମ୍ୟ'ର କଥା ହିଁ କୁହାଯାଇଛି । 'ଗୀତା'ର ଆଦର୍ଶ ମନୁଷ୍ୟ ସେହି, ଯେ ସର୍ବତ୍ର ଓ ସମସ୍ତଙ୍କଠାରେ ଈଶ୍ୱରଙ୍କୁ ଦେଖେ ବା ଈଶ୍ୱରଙ୍କଠାରେ ସମସ୍ତ ଓ ସମଗ୍ରକୁ ଦେଖେ । ''ଯୋ ମାଂ ପଶ୍ୟତି ସର୍ବତ୍ର, ସର୍ବଂଚ ମୟି ପଶ୍ୟତି ।''(ଗୀ. ୬ ।୩୦)

## ଶିକ୍ଷା ଓ ଜୀବନ –

କୌଣସି ପ୍ରକୃତ ଶିକ୍ଷାବିତ୍ ନିକଟରେ, ତେଣୁ, କେବଳ ସ୍କୁଲ୍ କଲେଜ ବା ଏକ ସରକାରୀ ଡିପାର୍ଟମେଣ୍ଟରେ ଘଟଣାବଳୀ ମାତ୍ର, ତାର ଗାଥାର ଏକମାତ୍ର ସମ୍ବଳ ହୋଇନପାରେ । ପ୍ରକୃତ ଶିକ୍ଷାବିତ୍ ନିକଟରେ ଶିକ୍ଷା ଓ ଜୀବନ ଓତପ୍ରୋତଭାବରେ ମିଶ୍ରିତ । ଆମେ ପ୍ରତ୍ୟହ କେବଳ ନୁହେଁ, ଦିନର ପ୍ରତି ମୁହୂର୍ତ୍ତରେ ମଧ୍ୟ ଶିକ୍ଷାଲାଭ କରୁଛୁ ଓ ପରୀକ୍ଷାର ସମ୍ମୁଖୀନ ହେଉଛୁଁ । ପାସ୍-ଫେଲ୍, ଜନତାର ବାହାବା, ପଦ-ପଦାର୍ଥ-ସିଦ୍ଧି, ନିନ୍ଦା-କୁତ୍ସା ଇତ୍ୟାଦିର କ୍ଷିପ୍ର ପଳାୟମାନ ଘଟଣାରାଜି ଜୀବନର ବଡ଼ କଥା ନୁହନ୍ତି । ଜୀବନର ମୁଖ୍ୟତମ ଲାଭ ଓ ଲକ୍ଷ୍ୟ ବୋଧହୁଏ 'ଅଭିଜ୍ଞତା', ଅର୍ଥାତ୍ ଗୋଟିଏ ଦୀର୍ଘଜୀବନର ସୂକ୍ଷ୍ମ ନିର୍ଯ୍ୟାସ ବା ଘଟଣା ପ୍ରଭାବରୁ ଯାହା ଶେଷ-ତତ୍ତ୍ୱ ହୃଦୟଙ୍ଗମ ହେଲା, ସେହିହିଁ ଆମର ପ୍ରକୃତ 'ଜ୍ଞାନଯୋଗ' । ଯେଉଁ ଶିକ୍ଷା-ବ୍ୟବସ୍ଥା

ଏହିପ୍ରକାର ପରିବ୍ୟାପ୍ତ ଜୀବନ-ଦର୍ଶନ ଉପରେ ପ୍ରତିଷ୍ଠିତ ନୁହେଁ, ସେ ଶିକ୍ଷା କୌଣସି ବ୍ୟକ୍ତି ବା ଜାତିକୁ ସଭ୍ୟ, ଶକ୍ତିମାନ୍, ସଂସ୍କୃତି-ସମ୍ପନ୍ନ, ଉର୍ଦ୍ଧ୍ୱଗ ଓ ପ୍ରଜ୍ଞାବାନ୍ କରିପାରିବ ବୋଲି ଆଶା କରିବା ପାଗଳର ପ୍ରଳାପ ପରି ହେବ । ଏହି ଗ୍ରନ୍ଥରେ ସେଥିପାଇଁ ବାରମ୍ବାର ଆମ ଦେଶର ବର୍ତ୍ତମାନ ଶସ୍ତା-ସାର୍ଟିଫିକେଟ୍ ବଣ୍ଟନକାରୀ ଶିକ୍ଷା ବ୍ୟବସ୍ଥାକୁ ନିନ୍ଦାକରାଯାଇଛି । ଏ ସମ୍ପର୍କରେ ଏକ ସଭ୍ୟ ଉନ୍ନତ ଦେଶର ବିଦ୍ୟାଧ୍ୟୟନର ପ୍ରକାର, ପ୍ରଣାଳୀ ଓ ଜ୍ଞାନର ପରିମାପ ନେଇ ଏହି ଅଧ୍ୟାୟର ଶେଷ ପରିଶିଷ୍ଟଟି ଦୟାକରି ପଢ଼ିବେ । ଇଉରୋପ ଓ ଆମେରିକାରେ ପ୍ରକୃତ ବିଦ୍ୟାନୁଶୀଳନର ଆରମ୍ଭ ହୁଏ ସ୍କୁଲ୍-କଲେଜ ଛାଡ଼ିଲା ପରେ । କିନ୍ତୁ ଆମର ଏଠି ସାର୍ଟିଫିକେଟ୍ ଖଣ୍ଡିଏ ବା ଡିଗ୍ରୀଟିଏ ମିଳିଗଲେ କି କୃତକୃତ୍ୟ ଭାବ ! ଆମ ଦେଶର ଅଧିକାଂଶ ପଣ୍ଡିତ ଓ ଅଧ୍ୟାପକଙ୍କର ମଧ୍ୟ ସେଇଠି ତଥାକଥିତ ଜ୍ଞାନ-ଆହରଣ ଓ ଜ୍ଞାନ ଗବେଷଣା ପରିସମାପ୍ତ । ଆମେ ବରାବର ଏକ ଦୁର୍ବଳ, ଅନିପୁଣ, ବିଶୃଙ୍ଖଳ ଓ ଦୁର୍ନୀତିଗ୍ରସ୍ତ ଜାତି ହୋଇ ରହିଥିବା, ଯେ ପର୍ଯ୍ୟନ୍ତ ଏହି ଶସ୍ତା-ସାର୍ଟିଫିକେଟ୍- ସର୍ବସ୍ୱ ଶିକ୍ଷା ବ୍ୟବସ୍ଥାର ମୂଳୋତ୍ପାଟନ ନ ହୋଇଛି । ଆମର ସାଧନା, ବିବର୍ତ୍ତନ, ବା ମାନବିକ ବ୍ୟକ୍ତିତ୍ୱର କ୍ରମ-ପରିସ୍ଫୁଟନ ଦେଇ ଆତ୍ମାର ଉର୍ଦ୍ଧ୍ୱଗମନରେ ବା ଜୀବନର ପ୍ରବହମାନତାରେ ବିଶ୍ୱାସ ନାହିଁ । ଆମର କୃପଣ ବିଶ୍ୱାସ କେବଳ କେତୋଟି ସୁବିଧାଦାୟୀ ଲେବୁଲ୍ ଉପରେ, ଦୁର୍ନୀତି-କୌଶଳରେ, ଅନ୍ୟର କୁତ୍ସା ରଚନାରେ,ନଚେତ୍ ଅଳ୍ପଶ୍ରମ-ବା-ବିନାଶ୍ରମଲବ୍ଧ ସୌଭାଗ୍ୟରେ । ଅସମ୍ଭବ ଏପରି ଏକ ଜାତିର ଉପରକୁ ଉଠିବା ବା ଶକ୍ତିଶାଳୀ ହେବା । ଏହି ଜାତିର ଶ୍ରେଷ୍ଠ ଧର୍ମଗ୍ରନ୍ଥର ଶ୍ରେଷ୍ଠବାଣୀ ହେଉଛି—'ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱାଃ ।(ବିଧାତା, ମନୁଷ୍ୟର ଜୀବନକୁ ଯଜ୍ଞ ଅର୍ଥାତ୍ ତ୍ୟାଗ ଓ ତପସ୍ୟା ସହିତ ଜଡ଼ିତ କରିହିଁ ପଠାଇଛନ୍ତି) । ଆଜି ଏ ଜାତି ସେ ବାଣୀ ଭୁଲି, ବିନା କଷ୍ଟ ଓ ବିନା ସାଧନାରେ, ପରସ୍ପରକୁ ଓ ସେହି ସୂତ୍ରରେ ନିଜର ଦେଶ, ରାଷ୍ଟ୍ର ଓ ଜାତିକି ଠକିହିଁ ଜୀବନଭୋଗ କରିବାକୁ ଚାହେ । ନିଜର ଜାତିକି କିଛି ଦେଇ ଯିବାର କଳ୍ପନା, ଯାହାହିଁ 'ଯଜ୍ଞ', ତାହା ଲୋକ-କଳ୍ପନାରୁ ଉଭେଇଯାଇଛି । ଦେଶମୟ ଆଜି ଯେ ବିଶୃଙ୍ଖଳା ଓ ଦୁର୍ନୀତି ତାହାର ଏକ ଉତ୍ସ ଏହିଠାରେ । କିନ୍ତୁ ଗୀତାର ସାବଧାନୀ ବାଣୀ—'ନାୟଂ ଲୋକୋଽସ୍ତ୍ୟଯଜ୍ଞସ୍ୟ କୁତୋଽନ୍ୟଃକୁରୁସତ୍ତମ'', (ଅଯଜ୍ଞ, ଅର୍ଥାତ୍ ସାଧନାହୀନ ମନୁଷ୍ୟର ଏ ଲୋକ ତ ନାହିଁ, ପରଲୋକ-ଭୋଗର ପ୍ରଶ୍ନହିଁ କାହିଁ ?)

କର୍ମ ବା ସାଧନା ବା ଯଜ୍ଞର ପ୍ରଥମ ଆୟୋଜନ ହେଲା ଜ୍ଞାନ । ଜ୍ଞାନହୀନହିଁ ହୁଏ ଅକର୍ମା ବା କୁକର୍ମା । ଆମେ ଓଡ଼ିଆଏ ଯେ ଏକ ଉପହସିତ ଓ ଅଧଃପତିତ ଜାତି ହୋଇ ରହିଛେଁ, ତାର ପ୍ରଥମ ହେତୁ ହେଉଛି, ଆମେ ଅନ୍ୟ ଭାରତୀୟମାନଙ୍କ ତୁଳନାରେ ଅଜ୍ଞତମ କେବଳ ନୋହୁଁ, ଆମେ ଆମର ଅଜ୍ଞତା ନେଇ ଦୟନୀୟ ନିର୍ଲଜ୍ଜତା ସହିତ ନାଚି ମଧ୍ୟ ପାରୁ । ଅଜ୍ଞତାହିଁ ସୃଷ୍ଟିକରେ ଏପ୍ରକାର ନିର୍ଲଜ୍ଜ ଆତ୍ମସନ୍ତୋଷ, କାଢ଼ି ନିଏ ସମ୍ମାନ-ସଚେତନତା ଓ ଆଣିଦିଏ ମଧ୍ୟ ମାରାତ୍ମକ ଆତ୍ମବିସ୍ମୃତି । କିନ୍ତୁ ସଭ୍ୟ ଉନ୍ନତ ଜାତିମାନଙ୍କର ଚିତ୍ର ଠିକ୍ ଅଲଗା । ସେସବୁ ଜାତିର ଜ୍ଞାନ-କ୍ଷୁଧାର ଶାନ୍ତି ନାହିଁ । ଜ୍ଞାନାହରଣରେ ସେମାନଙ୍କର କୃତକାର୍ଯ୍ୟତାର ଉଚ୍ଚ ମାନଦଣ୍ଡ ଆମ ପରି ମୂର୍ଖଙ୍କ ପକ୍ଷରେ କଳ୍ପନା କରିବାହିଁ ଅସମ୍ଭବ । ନିଉଟନ୍‌ଙ୍କର ମହୋଦାର ବାଣୀ ''ମୁଁ ଜ୍ଞାନ-

ସମୁଦ୍ର-ବେଳାର କେତୋଟି ଉପଲଖଣ୍ଡ ମାତ୍ର ଗୋଟେଇଛି'', ଏ ଦେଶର ପଣ୍ଡିତଂମ୍ମନ୍ୟ ବ୍ୟକ୍ତିଏ ସର୍ବଦା ସ୍ମରଣ ରଖିବା ଉଚିତ ।

ହେୟ, ଇତର ରୀତିରେ ନିଜର ସଦ୍ୟ-ଲାଭ ସଂଗ୍ରହ, ଜୀବନର ବଡ଼ ଆଦର୍ଶ ହୋଇପାରେ କେବଳ ପଶୁଜୀବନପାଇଁ । କିନ୍ତୁ ଆମର ଦୈନନ୍ଦିନ ଜୀବନ ଦେଇ ଏକ ପରେ ଏକ ଘଟିଯାଉଥିବା ଅଭିଜ୍ଞତା ଦେଇ ଓ ଭୂୟୋପଠନ ଦେଇ ଏହି ଜଗତ ଓ ଜୀବନର ତତ୍ତ୍ୱାବଳୀକୁ ଉତ୍ତମ ଓ ନିପୁଣ ଭାବରେ ଜାଣିବାହିଁ (To Know) ପ୍ରକୃତିର, ଆମର ମନୁଷ୍ୟ ଜୀବନ ପ୍ରତି ସ୍ପଷ୍ଟ ସଂକେତ । 'ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହବିଦ୍ୟତେ'' (ଗୀ. ୪ । ୩୮) । ଏ ଜଗତରେ ଜ୍ଞାନ ବା 'ନଲେଜ୍'ଠାରୁ ଉଭୟ ପାବନ ଓ ପବିତ୍ର ଅନ୍ୟ କିଛି ନାହିଁ । ଇଉରୋପୀୟମାନେ ସର୍ବତ୍ର ଯେ ଅଗ୍ରଣୀ (ଆଡଭାନ୍ସଡ୍) ହୋଇ ଦଣ୍ଡାୟମାନ, ତାର ଏକମାତ୍ର ଓ ମୁଖ୍ୟ କାରଣ ଏହି ଯେ, ସେମାନେ 'ଜ୍ଞାନୀ' ଓ ଜ୍ଞାନର ମର୍ଯ୍ୟାଦା କରନ୍ତି । ସ୍ୱାଧୀନତୋତ୍ତର ତରୁଣ ବୈଜ୍ଞାନିକମାନେ ନିଜ ଦେଶ ଛାଡ଼ି କାହିଁକି ସେହି ମ୍ଳେଚ୍ଛ ଦେଶମାନଙ୍କୁ ପଳାଇଯାଉଛନ୍ତି ? ଆମ ନିଜ ଘର ଓ ଦେଶର ରୋଗବ୍ୟାଧିର ଚିକିତ୍ସା ସେହି ବିଦେଶୀଙ୍କ ଜ୍ଞାନଯୋଗୁହିଁ ସମ୍ଭବ ହେଉନାହିଁ କି ? ଆମର ଦୈନନ୍ଦିନ ଉଦରପୂର୍ତ୍ତିପାଇଁ ମଧ୍ୟ ଆମେ ତାଙ୍କ ଅନୁଗ୍ରହ ଉପରେ ନିର୍ଭର କରୁନାହୁଁ କି ? ଏହି ଲଜ୍ଜାକର ଦୀନତାର ହେତୁ କେଉଁଠି ? ଏ ଦେଶର ଶିକ୍ଷିତ ଲୋକେ, ଚିନ୍ତା କଲେ ସହଜରେ ଦେଖିବେନାହିଁ କି ଯେ, କଠୋର ଜ୍ଞାନତପସ୍ୟାର ଅଭାବହିଁ ଏସବୁର ଏକମାତ୍ର କାରଣ । ଆଖିମେଲି ଦେଖ, ପାଠକେ, ତଥାକଥିତ ନିରୀଶ୍ୱର ଓ ଧର୍ମହୀନ ସୋଭିଏଟ୍ ରୁଷିଆର ଅକଳ୍ପନୀୟ ଅଗ୍ରଗତିକୁ । ଜ୍ଞାନର ନିଷ୍ଠାପର ତପସ୍ୟାହିଁ ନାସ୍ତିକ କମ୍ୟୁନିଷ୍ଟ ରୁଷିଆର ଅଗ୍ରଗତିର ଏକମାତ୍ର କାରଣ ନୁହେଁ କି ? କମ୍ୟୁନିଷ୍ଟ ରୁଷିଆର ସ୍କୁଲ୍ କଲେଜରେ ଲାଉଡସ୍ପିକର୍‌ରେ ପୋଚା ସିନେମା ଗୀତ ଗାଇ ଓ ଭୋଜି-ଭାତ-ତାମସା ଓ ଗୋଳମାଳ କରି ଗଣେଶ ଓ ସରସ୍ୱତୀ ପୂଜାର ମୂର୍ଖତା ଓ ଭଣ୍ଡତା ଆଚରିତ ହୁଏନା । କିନ୍ତୁ ସରସ୍ୱତୀଙ୍କର ଅର୍ଥାତ୍ ବିଦ୍ୟା ବା ଜ୍ଞାନର ପ୍ରକୃତ ଆରାଧନା କରୁଛନ୍ତି ସେହି ନିରୀଶ୍ୱର କମରେଡ଼ବୃନ୍ଦ । ଅନ୍ୟପକ୍ଷରେ, ସ୍କୁଲ୍ କଥା ଛାଡ଼, ଆମର ଯାହା ଶ୍ରେଷ୍ଠ ବିଦ୍ୟାପୀଠ ହେବାର କଥା, ସେହି ବିଶ୍ୱବିଦ୍ୟାଳୟମାନଙ୍କରେ, ଜ୍ଞାନର ତପସ୍ୟା ଦୂରେ ଥାଉ, ଜ୍ଞାନର ସମ୍ମାନ ମଧ୍ୟ ଉଭେଇଯାଇ, ସେସବୁ ବର୍ତ୍ତମାନ ବୀଭତ୍ସତମ କ୍ଷୁଦ୍ର କ୍ଷୁଦ୍ର ଇତର ବ୍ୟକ୍ତିଲାଭ ଓ ଗୋଷ୍ଠୀଲାଭର ପୀଠ ହୋଇ ଉଠିବାର ଦେଖାଯାଉନି କି ? ଏ ଦୁଃଖ କାହାକୁ କହିବା ? ଏ ଦେଶର ଅଧ୍ୟାପକ ସବୁ ନିବିଷ୍ଟଚିତ୍ତ ସାଧନାଦେଇ ଜୀବନରେ ପ୍ରତିଷ୍ଠା ଅର୍ଜନ କରିବା ପରିବର୍ତ୍ତେ ସଦାସଚେଷ୍ଟଥିବାର ଯେପରି ଜଣାପଡୁଛନ୍ତି କେବଳ ଆତ୍ମକେନ୍ଦ୍ରିକ ସାମାଜିକ ବାହାଦୁରୀ ଦେଖେଇବାରେ । ଇତର ଶ୍ରେଣୀର ବାହାଦୁରୀ ତ ଏବେ ସମାଜରେ ଯୁଆଡ଼େ ଆଖି ପକେଇବ ସେଆଡ଼େ ଦେଖୁଛୁ । ଆଜି ସମାଜରେ ମଦ-ଅଫିମ୍ ସରବରାହକାରୀର ଯେଉଁ ପ୍ରତିଷ୍ଠା ସେ ପ୍ରତିଷ୍ଠା ସେ ପୂର୍ବେ କେବେ ଜାଣି ନଥିଲେ । ସାଧାରଣଜନ ଯାହା, କୌଣସି ଦେଶର ପ୍ରଫେସର-ଅଧ୍ୟାପକ-ଲେଖକ-ବୁଦ୍ଧିଜୀବୀ ମଧ୍ୟ କ'ଣ ହେବେ, ସେୟା ? ତେବେ, କିଏ କାହାର ହେବ ଆଦର୍ଶ ? କିଏ କାହାକୁ ଉଠାଇବ ବା ଆଗକୁ ନେବ ? ଧାଁ ଧପଡ଼ ନକରି, ହଜାର କମିଟିର ମେମ୍ବର ନହୋଇ,

ପତ୍ରପତ୍ରିକାର କ୍ଷଣସ୍ଥାୟୀ ପ୍ରଚାରରେ ଆସ୍ଥା ନରଖି, ନିଜ ନିଜ ଘରେ ବସି ପାଣ୍ଡିତ୍ୟପୂର୍ଣ୍ଣ ଓ ଗବେଷଣା-ଗୌରବାନ୍ୱିତ ପୁସ୍ତକ ସବୁ ନିଜ ଭାଷାରେ ଲେଖିଚାଲିଲେ ସିନା ନିଜେ ପାଆନ୍ତେ ଅମୃତତ୍ୱ ଓ ନିଜର ଭାଷା ହୁଅନ୍ତା ଉପକୃତ ? ସେହିପରି ଖଣ୍ଡେଅଧେ ହେଲେ ପ୍ରାମାଣିକ ବହି ଇଂରେଜୀରେ ଲେଖିପାରିଲେ, ଆସନ୍ତା ନିଜ ଜାତି ପ୍ରତି ଗୌରବ । ଯେକୌଣସି ଦେଶର ପ୍ରଫେସରମାନଙ୍କଠାରୁ ଜାତି ଏୟାହିଁ ଆଶାକରେ । ପ୍ରକୃତ ପଣ୍ଡିତଜନ ଖୋଜେ ନୀରବ ସାଧନା ଓ ନିର୍ମଳ ସାରସ୍ୱତ ଆରାଧନା । ପଚାଶବର୍ଷତଳେ ଓଡ଼ିଶାର ସୁଦୂର ବିଚ୍ଛିନ୍ନାଞ୍ଚଳରେ ରହି ମଧ୍ୟ ଏକ ହାଇସ୍କୁଲ୍ ପଣ୍ଡିତ ଗୋପୀନାଥ ନନ୍ଦ ଏହିପ୍ରକାର ଜ୍ଞାନ-ତପସ୍ୟା ଫଳରେ କ'ଣ ନ କରିଗଲେ ? ଏ ଦେଶର ଏବର ବିଶ୍ୱବିଦ୍ୟାଳୟ-ପ୍ରଫେସର କ'ଣ ସେହି ହାଇସ୍କୁଲ୍ ହେଡ୍ ପଣ୍ଡିତଟିର ମଧ୍ୟ ସମାନ ହେବେନି ? ତେବେ ମାଳ ମାଳ ବିଦେଶୀ ଡିଗ୍ରୀ ବା ମୋଟା ଦରମାର ତାତ୍ପର୍ଯ୍ୟଟା କ'ଣ, ଭାଇ ? ସଭ୍ୟ ଦେଶମାନଙ୍କରେ ୫ ।୬ ଖଣ୍ଡ ପ୍ରାମାଣିକ, ପଣ୍ଡିତଜନୋଚିତ ପୁସ୍ତକ ନଲେଖିଥିବା ଲୋକ,ପ୍ରଫେସର ଚୌକିରେ ବସିଥିବାର ଦେଖିବା ବୋଧହୁଏ ଅତି ବିରଳ ଦୃଶ୍ୟ । ସେ ଦେଶ ସବୁ ସେହି ଅନୁସାରେ ଲାଭାନ୍ୱିତ ।

ବ୍ୟକ୍ତି ଓ ଜାତି, ଉଭୟର ସ୍ଥାୟୀ କଲ୍ୟାଣ ଓ ଅସ୍ଥାୟୀ କଲ୍ୟାଣ ଥାଏ । ଅସ୍ଥାୟୀ କଲ୍ୟାଣ ପାଇଁ ଆମେ କୌଣସି ମନ୍ତ୍ରୀ ବା ଏମ.ଏଲ୍.ଏ.ଙ୍କ ନିକଟକୁ ବା କଲେକ୍ଟରେଟ୍ ବା ସେକ୍ରେଟାରିୟାଟ୍‌କୁ ଧାଇଁବା ସ୍ୱାଭାବିକ । କିନ୍ତୁ ଦେଶର ସ୍ଥାୟୀ କଲ୍ୟାଣ ଆମେ ମନ୍ତ୍ରୀ ବା ବ୍ୟବସାୟୀଠାରୁ ଆଶା କରିବାନି । ତାହା ଆମେ ଆଶାକରିବା କେବଳ ଦେଶର ପ୍ରଫେସର ଓ ବୁଦ୍ଧିଜୀବୀମାନଙ୍କଠାରୁ । ଦେଶର ସ୍ଥାୟୀ କଲ୍ୟାଣ ହେଲା ସେହି,ଯାହା ଜାତିର ମନ, ବୁଦ୍ଧି ଓ ଆତ୍ମାକୁ ଶକ୍ତିଶାଳୀ ଓ ଉଦ୍‌ବୁଦ୍ଧ କରି ରଖେ । କିନ୍ତୁ ଯେଉଁ ଦେଶରେ ବୁଦ୍ଧିଜୀବୀ ଓ ପ୍ରଫେସର ମଧ୍ୟ ନିମ୍ନଶ୍ରେଣୀର ରାଜନୈତିକ ବା ଉଚ୍ଚଶ୍ରେଣୀର ଟାଉଟ୍ ପରି ବ୍ୟବହାର କରିବେ ଓ ସେହିପରି ଜୀବନଯାପନ କରିବେ, ସେଠି ଜାତିର ବୁଦ୍ଧି ଓ ଆତ୍ମା ସମୁଚିତ ଖାଦ୍ୟପାନୀୟପାଇଁ ଆଉ କେଉଁ ଶ୍ରେଣୀ ବା କେଉଁ ସଂସ୍ଥାକୁ ଅନେଇବ ? ଯେଉଁ ଦେଶର ବୁଦ୍ଧିଜୀବୀ-ସମ୍ପ୍ରଦାୟ ମଧ୍ୟ ଜାତିର ସ୍ଥାୟୀ କଲ୍ୟାଣ ଭୁଲି ଦୈନନ୍ଦିନ ଜୀବନର ଚିରପଳାୟମାନ, କ୍ଷଣଜୀବୀ ଲାଭାଲାଭରେହିଁ ମାତିରହେ, ସେପ୍ରକାର ପ୍ରଫେସର-ଶ୍ରେଣୀ ଓ ତାଙ୍କୁ ପୋଷୁଥିବା ସେ ହତଭାଗ୍ୟ ଜାତି, ଉଭୟେ, କୌଣସିଠାରେ ବା କୌଣସି କାଳେ, ମାନବେତିହାସରେ କୌଣସି ହେଲେ ରେଖାପାତ କରିପାରିବେନାହିଁ ।

ବିଦେଶରେ, ଜ୍ଞାନ-ତପସ୍ୟାର ଓ ବିଦ୍ୟାର ମର୍ଯ୍ୟାଦାର ବର୍ଣ୍ଣନା କଲାବେଳେ, ଆମ ନିଜର ବରେଣ୍ୟ ଐତିହ୍ୟକୁ ମଧ୍ୟ ସ୍ମରଣ ରଖିଲେ ଭଲହେବ । ଏ ଦେଶର ନିଜର ଦୀର୍ଘ ଇତିହାସରେ, ଏହି ପୁରାଣପ୍ରସିଦ୍ଧ ଜାତି କେବଳ ସେହିମାନଙ୍କୁ ସର୍ବାଧିକ ସମ୍ମାନ ଦେଇଆସିଛି, ଯେଉଁମାନଙ୍କଠାରେ ଜଗତ ଓ ଜୀବନକୁ ସମଗ୍ରଭାବରେ ଜାଣିବାର (*To Know*) ଦୁର୍ବାର ଆଗ୍ରହ ଦେଖାଦେଇଥିଲା । ଅର୍ଥାତ୍, କେବଳ ଜ୍ଞାନ ପାଇଁହିଁ ଯେ ଜ୍ଞାନର ତପସ୍ୟା କରିଥିଲେ – ସେହିମାନେ ହେଉଛନ୍ତି ଉପନିଷଦର କେତେକ ଋଷି, ହେଉଛନ୍ତି ପୁଣି ବୁଦ୍ଧ, କାଳିଦାସ, ରାମମୋହନ ଓ ରବୀନ୍ଦ୍ରନାଥ । ଏଯାବତ୍ ଏ ଦିଗରେ, ଓଡ଼ିଶାରେ କେବଳ ଦୁଇଟି ବରେଣ୍ୟ

ଦୃଷ୍ଟାନ୍ତ ଆଖିରେ ପଡୁଛି – ପଠାଣିସାମନ୍ତ ଓ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା । ଜାତି, ସମ୍ମାନାସ୍ପଦ ହୁଏନା, ଶସ୍ତା ପୁରସ୍କାର ବାଣ୍ଟି ବା ପଦପଦବୀ ସୃଷ୍ଟିକରି ବା ଡ୍ୟାମ୍, ବନ୍ଦର ଗଢ଼ି । ଜାତି ଗୌରବମୟ ହୁଏ, କେବଳ ସେହି ଜାତିରେ ଥିବା ଜ୍ଞାନ-ସାଧକଙ୍କ ଅନୁପାତରେ । ଛିନ୍ନ-ଭିନ୍ନ ବଙ୍ଗ ବହୁ ଦୁର୍ଦ୍ଦଶା ଭୋଗ କଲା, କିନ୍ତୁ କୌଣସିଦିନ ଅଖଣ୍ଡ ବଙ୍ଗର ସମ୍ମାନ ତ ସେ ହରେଇନି ! କି ତାର ହେତୁ ? ଏକମାତ୍ର କାରଣ ଏହି ଯେ ସେ ଜାତି ତାର ଜ୍ଞାନ-ଯଜ୍ଞର ପୁଣ୍ୟ-ଶିଖାକୁ ଅନ୍ୟ କୌଣସି ଇତର ଭାବନାଦ୍ୱାରା ପ୍ରଭାବିତ ହେବାକୁ ଦେଉନି । ସର୍ ଜେ.ସି. ବୋଷ୍ ଓ ସର୍ ପି.ସି. ରାୟଙ୍କ ଆଦର୍ଶକୁ ବଙ୍ଗଦେଶୀଏ ବଞ୍ଚାଇ ରଖିଛନ୍ତି । ବଙ୍ଗାଳୀ ନେତା ବା ବୁଦ୍ଧିଜୀବୀ ଯେତେ ସର୍ବଭାରତୀୟ ବା ବିଶ୍ୱଜନୀନ ହେଉନ୍ତୁ, ତାଙ୍କର ପ୍ରଥମ ଚିନ୍ତା ରହିବ, 'ଆମାର ବାଂଲା' । ସେ ଆଗ ବଙ୍ଗଳାକୁ ବଡ଼କରିବେ ଓ ବଙ୍ଗାଳୀ ଜାତିକୁ ଗୌରବ ଆଣିବେ । ଓଡ଼ିଶାରେ କାହିଁ ଏ ନିର୍ଭୀକ ଚେତନା ? ଗୀତା କହେ, ଜ୍ଞାନଂ ଲବ୍ଧ୍ୱା ପରାଂ ଶାନ୍ତିମଚିରେଣାଧିଗଛତି (ଗୀତା. ୪ । ୩୧ ) । ଅର୍ଥାତ୍, ଜ୍ଞାନଲାଭ କଲାପରେ ବ୍ୟକ୍ତି ପରମ ଶାନ୍ତି ଅନୁଭବ କରେ । କିନ୍ତୁ 'ଜ୍ଞାନ' କେବଳ ବ୍ୟକ୍ତିକୁ ପରମ ଶାନ୍ତି ଆଣିଦେଇନଥାଏ, ତାହା ସମ୍ପୃକ୍ତ ଜାତିକି କରେ ଗରିଷ୍ଠ ଓ ବରେଣ୍ୟ ଏବଂ ଆଣିଦିଏ ତାକୁ ମହିମା ।

### ଦୁଃଖ ଦୁର୍ଦ୍ଦଶା –

ବ୍ୟକ୍ତି ଓ ଜାତି ଉଭୟ ପକ୍ଷରେ ଜୀବନ ଓ ଜଗତକୁ ଜାଣିବାର ଏଇ ଅପରିହାର୍ଯ୍ୟ ପ୍ରସେସ୍ ବା ଧାରା ହେଉଛି ଦୁଃଖ-ଦୁର୍ଦ୍ଦଶା । କେବଳ ବୁଦ୍ଧିଜୀବୀ ପକ୍ଷରେ ନୁହେଁ, ପ୍ରତ୍ୟେକ ନର ଓ ନାରୀର ମଧ୍ୟ ସ୍ୱାଭାବିକ ତପସ୍ୟା ହେଲା ଦୁଃଖ-ଦୁର୍ଦ୍ଦଶା । କୌଣସିଠାରେ ପଢ଼ିଛି ଯେ, ଆମେରିକାରେ ସମ୍ପୂର୍ଣ୍ଣ ବିନା କ୍ଲେଶରେ ସନ୍ତାନ-ପ୍ରସବର ବ୍ୟବସ୍ଥା କରିଦିଆଗଲା । କିନ୍ତୁ କଷଣହୀନ ପ୍ରସବର ଥରେ ପରିଚୟ ପାଇଲା ପରେ ଆଉ ଥରକୁ କେତେକ ମା' ସେ ବ୍ୟବସ୍ଥା ଗ୍ରହଣ କରିବାକୁ ମନାକଲେ । ସେମାନେ କୁଆଡ଼େ ଦାବି କଲେ –"ଆମେ ପ୍ରସବ-ବେଦନା ଚାହୁ । ତାହାରି ଦ୍ୱାରାହିଁ ସନ୍ତାନ ପ୍ରତି ଆମର ଆକର୍ଷଣ ତୀବ୍ରତର ହେବ ।" ବିନା ଅଶ୍ରୁ, ବିନା ବିରହରେ ପ୍ରେମ ଯେପରି ଉପଭୋଗ୍ୟ ନୁହେଁ, ସେହିପରି ଭୋଗ୍ୟ ନୁହେଁ ବିନାଶ୍ରମରେ ବଞ୍ଚିବା । ସ୍ୱାଧୀନତୋତ୍ତର ଭାରତରେ ଆମ୍ଭେମାନେ ସ୍ୱାଧୀନତାର ଯେପରି ଅପବ୍ୟବହାର ଓ ଅବମାନନା କରିଚାଲିଲେ, ତାହାର ଏକ ମୁଖ୍ୟ କାରଣ ବୋଧହୁଏ ଏହି ଯେ ଆମେ ବଡ଼ ଅଳ୍ପ ତ୍ୟାଗ ବା କଷ୍ଟରେ ଆମ ସ୍ୱାଧୀନତା ପାଇଗଲୁ । ବିନା ଅନ୍ତର୍ଦହନରେ, ବିନା କଷଣରେ କେହି ବିଜ୍ଞତା ଲାଭ କରିବାର ମାନବ-ଇତିହାସରେ ଗୋଟିଏ ହେଲେ ଦୃଷ୍ଟାନ୍ତ ଜଣାନାହିଁ । କାଳିଦାସ, ଦାନ୍ତେ, ସେକ୍ସପିଅର, ରବୀନ୍ଦ୍ରନାଥଙ୍କ ପରି ବିରାଟ ପ୍ରତିଭାମାନଙ୍କଠାରୁ ଆମ ସାହି ବା ଗାଁରେ ଯେକୌଣସି କୃତକାର୍ଯ୍ୟ ଚାଷୀ ବା ଦୋକାନୀ ବା ମେକାନିକ୍ର ସିଦ୍ଧି ପଛରେ ମଧ୍ୟ ଆମେ ନିଶ୍ଚୟ ବହୁ-ଦୁଃଖ-ବ୍ୟର୍ଥତାମୟ ଏକ ଏକ ନିରବଚ୍ଛିନ୍ନ ପ୍ରଯତ୍ନର କାହାଣୀ ରହିଥିବାର ଦେଖିପାରିବା ।

ପୁଣି, ଏହି ପାର୍ଥିବ ଜୀବନରେ ମନୁଷ୍ୟର ଘୋରତମ ଓ ବୀଭତ୍ସତମ ଦୁର୍ଦ୍ଦଶା ଆସିଥାଏ ଅନ୍ୟ ମନୁଷ୍ୟଠାରୁ । ଯେଉଁ ପରିବାରରେ ଆମେ ଜାତ, ଯେଉଁ ସମାଜରେ ଆମର ସ୍ଥାନ

ହୋଇଛି, ଯେଉଁ ଦେଶର ମାଟିରେ ଆମେ ଭୂମିଷ୍ଠ, ଆମ ଦୁଃଖ-ଦୁର୍ଦ୍ଦଶାର ଜନ୍ମ ଓ ଚରିତ୍ର ଠିକ୍ ସେହି ସେହିପରି । ସମ୍ବନ୍ଧ ଯେତେ ନିକଟ, ଆକର୍ଷଣ ଯେତେ ଗଭୀର, ବିଶ୍ୱାସ ଯେତେ ଦୃଢ଼, ନିର୍ଭର ଯେତେ ନିବିଡ଼, ପରେ ସେହି ସେହି ଦିଗରୁ ବ୍ୟର୍ଥତା, ଅସହାୟତା, ନୈରାଶ୍ୟ ଓ ଆତ୍ମିକ ଅନ୍ଧକାର ଦେଖାଦିଏ ସେହି ପରିମାଣ ଅଭେଦ୍ୟତାରେ ।

## ମୋହ ଭଙ୍ଗ –

ଏହି ସାମାନ୍ୟ ଏକ ଲେଖକ-ଓ-ଶିକ୍ଷକର ଜୀବନରେ ଏହିପ୍ରକାର ବ୍ୟର୍ଥତା, ଅସହାୟତା, ନୈରାଶ୍ୟ ଓ ଆତ୍ମିକ ଅନ୍ଧକାରର ଅଭିଜ୍ଞତା କିପରି ପ୍ରଚୁର ଘଟିଆସିଛି, ଏହି ଗାଥାହିଁ ତାହାର ପ୍ରମାଣ । କିନ୍ତୁ ତାହାର ଶେଷ ସିଦ୍ଧାନ୍ତ ଏହି ଯେ, ଅନ୍ଧକାର ଜୀବନର ସତ୍ୟ ନୁହେଁ, ସତ୍ୟ ହେଉଛି ଆଲୋକ । ଦିନଟାହିଁ ପ୍ରକୃତ ସତ୍ତା – ରାତ୍ରି ତାର ଛାୟା ମାତ୍ର, ତାହା ଏକ ସ୍ୱତନ୍ତ୍ର ବାସ୍ତବତା ନୁହେଁ । କର୍ମହିଁ ଜୀବନ, ଜୀବନ ନୁହେଁ ନିଦ୍ରା ବା ବିଶ୍ରାମ । ଦୁର୍ଦ୍ଦିନ, ସମ୍ବତ୍ସରର ପ୍ରକୃତ ରୂପ ନୁହେଁ । ସମ୍ବତ୍ସରର ବହୁରୂପୀ ବୈଚିତ୍ର୍ୟର ବିକଚ ପ୍ରକଟପାଇଁ ଦୁର୍ଦ୍ଦିନ ଏକ ସାମୟିକ ପଟ-ପରିବର୍ତ୍ତନ ମାତ୍ର । ବହୁକାଳ ବନ୍ଦୀ ରହିଲା ପରେ ଜଡ଼ ବୀଜର ଅନ୍ଧକାରମୟ ଅଭ୍ୟନ୍ତର ଓ କଠିନ ଆବରଣକୁ ଦିନେ ଅକ୍ଳେଶରେ ଫଟାଇ, ସୂକ୍ଷ୍ମ ଜୀବନକଣିକା ଅଙ୍କୁରରୂପେ ଫୁଟି ଉଠିବା, ଜୀବନର ନିତ୍ୟ ବିଜୟ ଘୋଷଣା । ମନୁଷ୍ୟ ଜୀବନରେ ମଧ୍ୟ ସେହିପରି ଘୋରତମ ଦୁର୍ଦ୍ଦିନ ଭେଦକରି ସତ୍ୟ ଓ ଜ୍ଞାନର ଲତା ଆତ୍ମାର ଭୂମିରୁ ପୁଷ୍ପ-ଫଳର ପୁରସ୍କାର ଘେନି ଦିନେ ଜୀବନକୁ ସୁରଭିତ ଓ ଆଲୋକିତ କରିଉଠେ । ସେହି ଅନ୍ଧକାର ଓ ଆଲୋକ, ଦୁର୍ଗନ୍ଧ ଓ ପୁଣ୍ୟଗନ୍ଧ, କାରା ଓ ମୁକ୍ତିର ଅଭିଜ୍ଞତାର ସମାହାରହିଁ ଧରାର ଏହି ଜୀବନ ।

ତରୁଣ ପାଠକପାଠିକାମାନଙ୍କୁ ଏହା କହିରଖେ ଯେ, ବିଚିତ୍ର ରହସ୍ୟମୟ ଏହି ପାର୍ଥିବ ଜୀବନର ସମ୍ୟକ୍ ଉପଭୋଗପାଇଁ ସେମାନେ ଜୀବନରେ ବହୁ *disillusionment* ପାଇଁ ଆଜିଠାରୁ ପ୍ରସ୍ତୁତ ରହିବେ । *Disillusionment* ବା ମୋହଭଙ୍ଗହିଁ ଜୀବନ-ନାଟକର ଦୃଶ୍ୟାନ୍ତର ବା ଜ୍ଞାନାନ୍ତର ବା ଜନ୍ମାନ୍ତର । ଆମର ଏହି ଚାକ୍ଷୁଷ ସୃଷ୍ଟି ଓ ପାର୍ଥିବ ଜୀବନ ଯେ ଏକ ପରିବ୍ୟାପ୍ତ *illusion* ବା 'ମାୟା' ଉପରେ ପ୍ରତିଷ୍ଠିତ, ସେହି ନିଷ୍ଠୁର ସତ୍ୟକୁ ଆଜି ବିଜ୍ଞାନ ମଧ୍ୟ ଅକୁଣ୍ଠ କଣ୍ଠରେ ଘୋଷଣା କଲାଣି । ଆମେ ଯାହା ଦେଖୁଛୁ ବା ସ୍ପର୍ଶ କରୁଛୁ, ତାହା କେବଳ ଆପେକ୍ଷିକଭାବରେ ସତ୍ୟ । ବିଶୁଦ୍ଧ ବାସ୍ତବତା କ'ଣ, ତାହା ଜାଣିବା ମନୁଷ୍ୟ ବୁଦ୍ଧିର ବାହାରେ । ପୁଣି ଆମେ ସେହି ଆପେକ୍ଷିକ ବାସ୍ତବତାର ମଧ୍ୟ ଯାହା କିଛି ସାମାନ୍ୟ ଦେଖୁଛୁ ବୋଲି ଭାବୁଛୁ, ତାହା ମଧ୍ୟ କେବଳ ଆପେକ୍ଷିକ ସତ୍ୟ ନୁହେଁ, ତାହା ଅଳ୍ପ-ସତ୍ୟ । ଭାସମାନ ତୁଷାର ଖଣ୍ଡ ପରି ସେହି ଆପେକ୍ଷିକ ସତ୍ୟର ଏକ-ନବମାଂଶ ମାତ୍ରହିଁ ଆମର ଦୃଷ୍ଟିସୀମା ଭିତରକୁ ଆସୁଛି, ବାକି ଆଠଅଂଶ ଆମକୁ ସମ୍ପୂର୍ଣ୍ଣ ଅଦୃଶ୍ୟ । ଆମ ପ୍ରତ୍ୟେକର ସଚେତନ ମନର କେତୋଟି ମାତ୍ର ପରିଚିତ ଢେଉ ତଳେ ଅଚେତନ ଓ ଅବଚେତନ ମନର ଅନନ୍ତ ଗଭୀର ସିନ୍ଧୁ ନିଜ ମହିମା ଓ କାର୍ଯ୍ୟକାରିତା ନେଇ ନିଶ୍ଚିତଭାବରେ ବିରାଜିତ । ପଣ୍ଡିତମାନେ ପୁଣି କହନ୍ତି ଯେ, ଆମକୁ ପ୍ରକୃତରେ ଅବଚେତନ ମନହିଁ ଚାଳିତ କରୁଛି, ସଚେତନ ମନ ନୁହେଁ ।

ତେଣୁ ଏ ସୃଷ୍ଟି ଓ ଜୀବନରେ ସତ୍ୟ ବା 'ଲୟାଲିଟିଟା କ'ଣ ତା ଜାଣିବାର ପ୍ରଥମ ସୋପାନ ନୁହେଁ କି ଏହି *illusion* ବା ମୋହ-ପର୍ଦ୍ଦାର ଅପସାରଣ ? ଅର୍ଥାତ୍, *disillusionment* ବା ମାୟା-ଭଙ୍ଗ ? ବହୁ ଦେଖି, ଶୁଣି, ଜାଣି, ଭୋଗି ବା ବିଶ୍ୱାସ କରି, ମନୁଷ୍ୟ ଯେଉଁଦିନ ଆତ୍ମ-ଜିଜ୍ଞାସା କରିବ—

ୟାରି ନାମ କଅଣ ପ୍ରେମ ?
ୟାରି ନାମ କଅଣ ପତ୍ନୀ ?
ୟାରି ନାମ ଗୃହ-ସୁଖ ?
ଏହି କି ସମାଜ, ଜାତି ଓ ଦେଶ ?
ଏହି କି ମନୁଷ୍ୟ ନାମକ ସଭ୍ୟ ଓ ବୁଦ୍ଧିମାନ ପ୍ରାଣୀ ? —

ସେତିକିବେଳେହିଁ ବୋଧହୁଏ ଆରମ୍ଭ ହୁଏ ମନୁଷ୍ୟର ସତ୍ୟ ପଥରେ ଯାତ୍ରା ।

ଏହି ମୋହଭଙ୍ଗ ସାଧାରଣତଃ ଆସେ ବ୍ୟକ୍ତିଗତ କର୍ମ, ପାରିବାରିକ ସମ୍ବନ୍ଧ ଏବଂ ସାମାଜିକ ଓ ରାଷ୍ଟ୍ରିକ ପରିବେଶରୁ । କୌଣସି ଦେଶର ସମ୍ବିଧାନରେ ସାମ୍ୟ ଓ ଐକ୍ୟର ପତାକା ଉଡ଼ାଇ ତେଣେ ସମାଜର ବିଶେଷ ବିଶେଷ ପ୍ରଭାବଶାଳୀ ଗୋଷ୍ଠୀ ଓ ବ୍ୟକ୍ତି, ଅଯଥାର୍ଥ ଓ ଅଯୌକ୍ତିକ ବିଶେଷ ବିଶେଷ ସୁବିଧା ମାରିନେଉଥିବାର ଦେଖିଲେ, ସେ ଦେଶର ଯେକୌଣସି ସଚେତନ ନାଗରିକର ମୋହଭଙ୍ଗ ଘଟିବନାହିଁ କି ? ପୁଣି ସେଥିକି ଆଖିବୁଜିଦେବା, ହେବ କି ସ୍ୱାଭାବିକ ବା ଉଚିତ ? ଅନ୍ୟାୟକୁ ସହିଯିବା ଫଳରେ ରାଷ୍ଟ୍ରରେ ଦୁଇଟା କୁଫଳ ଦେଖାଯାଏ । ଏକରେ, ସାଧାରଣଲୋକ ଶାସନର ନ୍ୟାୟ-ଧର୍ମରେ ବିଶ୍ୱାସ ହରାଏ । ଦ୍ୱିତୀୟରେ, ଶାସନକଳ, ବହୁଜାଗାରେ, ଏକପକ୍ଷରେ ଅଯୋଗ୍ୟର ଉନ୍ନତି ଓ ଯୋଗ୍ୟର ଅସମ୍ମାନ ବା ବିତାଡ଼ନ ଫଳରେ ଅରାଜକ ଓ ବିଶୃଙ୍ଖଳ ହୋଇଉଠେ । କୌଣସି ଜାତି ତାର ଚେତନାରୁ ନ୍ୟାୟ ନୈତିକତାର ପ୍ରେରଣା ଥରେ ହରାଇଲେ, ତାକୁ ଫେରିପାଇବା ଦୁଷ୍କର ବ୍ୟାପାର ହେବ । ନିଜର ଗଭୀର ଓ ଅବିଚଳ ନୈତିକ ପ୍ରେରଣା ନଥିଲେ, ବିଦେଶର ଅସ୍ତ୍ର ବା ଡଲାର କୌଣସି ଜାତିକୁ ବିଜୟୀ ବା ସମୃଦ୍ଧ କରିନପାରେ ।

## ନିଜେଇ ଉଲାଖ —

ଏହି ନୈତିକ ପ୍ରେରଣା କିପରି ସହଜ କିନ୍ତୁ ଅନୁତାପନୀୟ ଭାବରେ ଉଭେଇଯାଏ, ତାହାର ଗୋଟିଏ ବ୍ୟକ୍ତିଗତ ପ୍ରତ୍ୟକ୍ଷ ଅଭିଜ୍ଞତା ଏଠାରେ ବର୍ଣ୍ଣନା କରେ ।

ଓଡ଼ିଆ ଏନସାଇକ୍ଲୋପେଡ଼ିଆ ଡିପାର୍ଟମେଣ୍ଟରେ ଜଏନ୍ କରିବାର ପ୍ରାୟ ବର୍ଷକ ପରର ଏ ଘଟଣା । ସେହି ଏକା କ୍ୟାମ୍ପସ୍‌ରେ କାମକରୁଥିବା ଗୋଟିଏ ପୋଷ୍ଟଗ୍ରାଜୁଏଟ୍ ଡିପାର୍ଟମେଣ୍ଟ୍‌ର ପ୍ରଫେସରଙ୍କୁ ଏନ୍‌ସାଇକ୍ଲୋପେଡ଼ିଆ ଡିପାର୍ଟମେଣ୍ଟ୍‌ରୁ କୌଣସି ବିଷୟ ଲେଖିବାକୁ ଦିଆଯାଇଥିଲା; କିନ୍ତୁ ସ୍ମାରକ ସତ୍ତ୍ୱେ ଲେଖା ଆସିଲାନି । ଦିନେ ପ୍ରଫେସରଙ୍କୁ ମୋ ଡିପାର୍ଟମେଣ୍ଟ୍‌କୁ ଦୟାକରି ଆସିବାକୁ ଅନୁରୋଧ କଲି ଓ ସେ ଆସନ୍ତେ ଏହି ବିଷୟ ପଚାରିଲି । ସେ ସମୟାଭାବ ଓ ଅନ୍ୟାନ୍ୟ ଅସୁବିଧା କଥା କହିଲେ । ମୁଁ ତାଙ୍କୁ ତେଣୁ ପ୍ରତ୍ୟେକ ବୁଦ୍ଧିଜୀବୀ ଓଡ଼ିଆର, ଜାତୀୟତା

ଓ ଜାତିକି ଦାନ ଦେଇଯିବାର ବଦ୍ଧପରିକରତା ଇତ୍ୟାଦି ଉପରେ ଏକ ଛୋଟ ବକ୍ତୃତା ଝାଡ଼ିଲି । ବୁଦ୍ଧିମାନ୍, ତରୁଣ ପ୍ରଫେସର ସବୁ ଶୁଣି କେବଳ ଏତିକି ସୂକ୍ଷ୍ମ ଉତ୍ତର ଦେଲେ–''ସାର୍, ଆମକୁ ଏ ବକ୍ତୃତା ଓ ଉପଦେଶଗୁଡ଼ାକ କାହିଁକି ଶୁଣାଉଛନ୍ତି ? ସମ୍ବଲପୁର କଲେଜରେ ନିଷ୍ଠାର ସହିତ କାମକରି ଯେଉଁ ପୁରସ୍କାର ପାଇଲେ, ତାହାହିଁ ମନେକରନ୍ତୁ ।''

ଏହା ଶୁଣି, ପ୍ରଫେସର ଓ ମୁଁ ଏକତ୍ର ପେଟେ ହସିଲୁ । କିନ୍ତୁ ପ୍ରଫେସର ଚାଲିଗଲା ପରେ, ଦେଶର ତରୁଣ ବୁଦ୍ଧିଜୀବୀମାନଙ୍କ ଚିତ୍ତରେ ମୋର ଭାଗ୍ୟ-ବିପର୍ଯ୍ୟୟ,ମୋର ସମ୍ପୂର୍ଣ୍ଣ ଅଜ୍ଞାତସାରରେ, ଏପ୍ରକାର ଉଦାସୀନତା ଯେ ସୃଷ୍ଟି କରିସାରିଛି, ତାହା ଏହି ପ୍ରଫେସର ବନ୍ଧୁଙ୍କଠାରୁ ପ୍ରଥମ ଶୁଣି, ବଡ଼ ବ୍ୟଥିତ ହେଲି । କିନ୍ତୁ ପ୍ରଫେସରଙ୍କ ମନ୍ତବ୍ୟ ଓ ମାନସିକତା, ଯାହାଙ୍କ ପ୍ରତି ଉଦ୍ଦିଷ୍ଟ, ସେହି ଶାସକବର୍ଗ ଓ ସମାଜପତିବୃନ୍ଦ ଏହା ଅବଧାନକୁ ନେବେ ବୋଲି ଆଶାକରେ । ପ୍ରଫେସରଙ୍କ ମନ୍ତବ୍ୟ ଆଦୌ ବ୍ୟକ୍ତିଗତ ସମସ୍ୟା ନୁହେଁ । ଜଣେ ସାମାନ୍ୟ ବ୍ୟକ୍ତି ପ୍ରତି ଅନ୍ୟାୟ କିପରି ସମଗ୍ର ଜାତିର ଆତ୍ମାକୁ ବିକଳ କରେ ଏ ତାହାରିହିଁ ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

## ମାରଣା ବୁଦ୍ଧିଜୀବୀ –

କିନ୍ତୁ ଇଂରାଜୀରେ ଏକ କଥା ଅଛି ଯେ, ପ୍ରତ୍ୟେକ ଜାତି ସ୍ୱ-ଚରିତ୍ର ଅନୁଯାୟୀ ଶାସନ ହିଁ ପାଇଥାଏ । ଇଂରେଜ ଯେମିତି,ତାର ସାହିତ୍ୟ ସେମିତି, ତାର ଶିକ୍ଷା ସେମିତି, ତାର ଶାସନ ମଧ ସେମିତି । ଆମେ ଯେମିତି, ଆମର ପ୍ରତିନିଧି ସେମିତି, ଆମର ମନ୍ତ୍ରୀ ବା ଶାସକ ହେବେ ସେଇମିତି ଏବଂ ଶାସନ ଦେବେ ସେଇମିତି । ଏହାର ଅନ୍ୟଥାହିଁ ଅସ୍ୱାଭାବିକ । ଏହି ପାପଚକ୍ରକୁ ଭାଙ୍ଗିପାରେ କେବଳ ଉପରୁ ଜଣେ ଦୂରଦ୍ରଷ୍ଟା ଜନନାୟକ ବା ନିମ୍ନରୁ ଦଳେ ଶିକ୍ଷକ ଓ ବୁଦ୍ଧିଜୀବୀ । କିନ୍ତୁ ଏ ଦେଶର ବୁଦ୍ଧିଜୀବୀ ମଧ, ଅର୍ଥାତ୍ ଆମେଇ, କେଉଁ ଚାରିତ୍ରିକ ସ୍ତରରେ ଆସି ପହଞ୍ଚିଲୁଣି ତାର ଏହି କାଳରେ ଘଟିଥିବା ଗୋଟିଏ ଦୁଇଟି ଦୁଃଖଦାୟକ ଅଭିଜ୍ଞତା ଏଠାରେ କହିରଖିପାରେ କି ? ଯେଉଁଠି ବୁଦ୍ଧିଜୀବୀ ଶ୍ରେଣୀର ମଧ ଏହି ହେଲା ଚିତ୍ର ଓ ଚରିତ୍ର, ସେଠି ସମଗ୍ର ଜାତିର ଚିତ୍ତ, ଉଦାର ନୈତିକତାରେ କିପରି ଐଶ୍ୱର୍ଯ୍ୟବାନ୍ ହୋଇଉଠିବ, ତାହା ଭାବିବାର କଥା । ନିମ୍ନରେ ସାହିତ୍ୟିକ କମରେଡ୍‌ମାନଙ୍କର କେବଳ ଷଡ଼ଯନ୍ତ୍ର ବର୍ଣ୍ଣିତ । ପ୍ରାକ୍-ବ୍ରିଟିଶ୍ ଅମଳରେ, ଅଷ୍ଟାଦଶ ଶତାବ୍ଦୀରେ, ହୁଏତ ଏହା ରୂପ ନେଇଥାନ୍ତା ମର୍ଡ଼ରରେ । କିନ୍ତୁ ଏହିପରି କର୍ମ ଓ ବ୍ୟବହାର କି କୌଣସି ସଭ୍ୟ ଜାତିର ବୁଦ୍ଧିଜୀବୀ ଗୋଷ୍ଠୀରେ ଆଶା କରାଯିବ, ଭାଇ ? ତା ହେଲେ ତ ଜାତି ଅଧଃପତିତ ବୋଲି ଜାଣିବାକୁ ହେବ ଏବଂ ଯେଉଁଠି ବୁଦ୍ଧିଜୀବୀ ମଧ ଏପରି ଇତର, ସେ ଜାତିକି ଈଶ୍ୱର ମଧ ରକ୍ଷା କରିପାରିବେନାହିଁ ।

ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନର ମେମ୍ବର ଭାବରେ ପଶ୍ଚିମ ଓଡ଼ିଶାର ଜଣେ ବନ୍ଧୁ କଟକରେ ପାଞ୍ଚବର୍ଷ ଥିଲେ । ବସାଉଠା, କଥାଭାଷା ହେବାପାଇଁ ସେତେବେଳେ ଅନେକ ସମୟରେ ତାଙ୍କ ବଙ୍ଗ୍‌ଲୋକୁ ଯାଉଥିଲି ।

ଦିନେ ମୁଁ ବନ୍ଧୁଙ୍କ ସାଥିରେ ବହୁ ସମୟଧରି କଥା ହୋଇ ଫେରୁଛି,ବନ୍ଧୁ ମତେ ପଛରୁ ଡାକିଲେ । ମୁଁ ଫେରି, ପୁଣି ତାଙ୍କପାଖେ ବସିଲି । ବନ୍ଧୁ କହିଲେ–''ଡକ୍ଟର ମାନସିଂ, ଆପଣଙ୍କୁ

ଗୋଟାଏ କଥା କହିବି କହିବି ବୋଲି ହେଉଛି । ଆପଣ ଏତେଥର ଆସୁଛନ୍ତି କିନ୍ତୁ କହିବାକୁ ଭୁଲିଯାଉଛି । ଆଜି, ଯାହାହେଉ ମନେପଡୁଛି । ଶୁଣନ୍ତୁ ।''

ମୁଁ ଫେରିଲି ଓ କହିଲି, 'କହନ୍ତୁ' । ସେ କହିଲେ, ''ଆପଣଙ୍କ ନାଁରେ ଆମେ ମାନହାନି ମକଦ୍ଦମା କରିବାକୁ ଯାଉଛୁ ।''

ମୁଁ ଏପ୍ରକାର ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଖବରରେ ସ୍ତମ୍ଭୀଭୂତପରି ହେଲି । ବିସ୍ମିତ ହୋଇ କହିଲି–''ମାନହାନି ମକଦ୍ଦମା ! ଆପଣ ମୋ ବିରୋଧରେ କରିବେ ? ମୁଁ କ'ଣ କରିଛି ଆପଣଙ୍କ ବିରୁଦ୍ଧରେ ?''

ବନ୍ଧୁ ହସିଲେଣି ସେତେବେଳକୁ । ହସି ହସି କହିଲେ–''ଆପଣ ଆମ ବାପାଙ୍କୁ(ଜଣେ ପ୍ରସିଦ୍ଧ ଓଡ଼ିଆ ସାହିତ୍ୟିକ) ଅପମାନିତ କରିଛନ୍ତି ।''

ମୁଁ ପୁଣି ଉତ୍ତରଦେଲି–''ମୁଁ ! ଆପଣଙ୍କ ପିତାଙ୍କୁ ଅପମାନିତ କରିଛି, ମୁଁ ? କିପରି ?

ବନ୍ଧୁ ହସି ହସି କହିଲେ –''ଆଚ୍ଛା, ଆପଣଙ୍କର ସେ ଅମୁକ କାଗଜର ସମ୍ପାଦକ ଶ୍ରୀ........ଙ୍କ ସହିତ କିପରି ପଡ଼େ ?''

ଏହି ସମ୍ପାଦକ ମୋର ଅତି ପରିଚିତ ଓ ପ୍ରିୟ । ସେ କିନ୍ତୁ ଉତ୍କଳରେ ବିଶେଷଭାବରେ ଲବ୍ଧ-ପ୍ରତିଷ୍ଠିତ ହୋଇଉଠିଛନ୍ତି ଏକ ଚୁଗୁଲି-ବ୍ୟବସାୟୀ କାଗଜର ସମ୍ପାଦକଭାବରେ ।

ମୁଁ କହିଲି–''ଦେଖନ୍ତୁ, ତାଙ୍କ ବିରୋଧରେ ମୋର କୌଣସି ହେଲେ ବିଦ୍ୱେଷଭାବ ନାହିଁ । କିନ୍ତୁ 'ହି ନେଭର୍ ମିସେସ୍ ଆନ୍ ଅପର୍ଚ୍ୟୁନିଟି ଟୁ ଭିଲିଫାଇ ମି'' (ସେ ମୋ କୁତ୍ସା-ରଟନାର କୌଣସି ସୁଯୋଗ ହରାନ୍ତି ନାହିଁ ।)

ବନ୍ଧୁ କହିଲେ–''ଦେଖନ୍ତୁ, ଦିନେ ସେ ଓ ତାଙ୍କର ଏକ ଅଧ୍ୟାପକ- ଜ୍ୱାଇଁ, ଦୁହେଁ, ଆପଣ, ଆମ ବାପା ରାଧାନାଥ ରାୟଙ୍କ ସମ୍ପର୍କରେ କ'ଣ କହିଥିଲେ, ତାହା କୁଆଡ଼େ ଛାପିଦେଇଥିବା ଯୋଗୁଁ ଆପଣଙ୍କ ବିରୋଧରେ ମାନହାନି ମକଦ୍ଦମା ଲାଗି ଆମକୁ ପ୍ରବର୍ତ୍ତେଇବାପାଇଁ ଆସିଥିଲେ ।''

ମୁଁ କହିଲି–''ଆପଣଙ୍କ ବାପାଙ୍କ ସାଥିରେ ରାଧାନାଥଙ୍କ ସମ୍ପର୍କରେ କଥା ହୋଇଥିଲା । ସେହିକଥା କୌଣସି କୌଣସି ସାହିତ୍ୟିକ ବନ୍ଧୁଙ୍କୁ ମୁଁ କଥାପ୍ରସଙ୍ଗରେ ମାତ୍ର କହିଛି, କୌଣସିଠାରେ ଲେଖିପକାଇନି । କିନ୍ତୁ ଜଣେ ତରୁଣ ଓଡ଼ିଆ ଅଧ୍ୟାପକ ଏଇ ଶୁଣା-କଥାକୁ, ମତେ ନଜଣାଇ, ଗୋଟେ ବହିରେ ଛାପି ଦେଇଛନ୍ତି ବୋଲି ଶୁଣୁଛି । କିନ୍ତୁ ସେଥିରେ ଆପଣଙ୍କ ପିତାଙ୍କର ମାନହାନି ହେଲାଭଳି ତ କିଛି ନାହିଁ ।''

ବନ୍ଧୁ କହିଲେ–''ଦେଖନ୍ତୁ, ଆମେ ସେ ଶ୍ୱଶୁର-ଜ୍ୱାଇଁଙ୍କୁ କହିଲୁ ଯେ, ଡକ୍ଟର ମାନସିଂ ଆମର ଅନ୍ତରଙ୍ଗ ବନ୍ଧୁ । ତାଙ୍କ ବିରୋଧରେ ମାନହାନି ମକଦ୍ଦମା କରିବା ଆମ ପକ୍ଷରେ ଅସୁନ୍ଦର । ତାଛଡ଼ା ଏ ମକଦ୍ଦମା ଚଳିବ କିପରି ? ବାପା ତ ନାହାନ୍ତି, ରାଧାନାଥ ରାୟ ତ ନାହାନ୍ତି । ସାକ୍ଷ୍ୟ ଦେବ କିଏ ? ସେମାନେ କିନ୍ତୁ ଏକା ଜିଦ୍ ଧରିଥାନ୍ତି ଯେ, ମକଦ୍ଦମା ଆରମ୍ଭକରନ୍ତୁ, ଆମେ ସବୁ ଯୋଗାଡ଼ କରିଦେବୁ । ସବୁ କାଗଜପତ୍ର ଯୋଗାଇଦେବୁ । ଆମେ କେବଳ 'ଆଚ୍ଛା ଦେଖିବା' କହି ତାଙ୍କୁ କୌଣସିମତେ ବିଦାୟଦେଲୁ ।''

ମୁଁ ପଚାରିଲି–''ସେମାନେ କ'ଣ ଚାନ୍ଦା ଫାନ୍ଦା ପାଇଁ ଆସିଥିଲେ ବା ଅନ୍ୟ କଥା ପ୍ରସଙ୍ଗ ଭିତରେ ଏୟା କହିଲେ ?''

ବନ୍ଧୁ କହଲେ–''ସେମାନେ ଖାସ୍ ଏଇଥିପାଇଁ ଆସିଥିଲେ । ଅନ୍ୟ କିଛି କଥା ନପକାଇ, ଖାଲି ଆପଣଙ୍କ ବିରୋଧରେ ମାନହାନି ମକଦ୍ଦମା କିପରି ହେବ, ସେଇଲାଗି ଆମକୁ ବହୁବେଳ ଧରି ପ୍ରବର୍ତ୍ତାଇଲେ ।''

ବନ୍ଧୁଙ୍କ କୋଠିରୁ ଫେରିଲି । ଚାଲୁଥାଏ ଓ ଶ୍ରୁତ ଘଟଣାକୁ ରୋମନ୍ଥନ କରୁଥାଏ । ଶ୍ୱଶୁର-ଜ୍ୱାଇଁଙ୍କ ଭିତରୁ କାହାରି ହେଲେ ମୁଁ ସାମାନ୍ୟତମ ଅନିଷ୍ଟ କରିନାହିଁ, କି କାହାରି ପ୍ରତି କେବେ ଅନିଷ୍ଟର କଳ୍ପନା ମଧ୍ୟ କରିନାହିଁ । ବରଂ ଶ୍ୱଶୁର ଓ ଜ୍ୱାଇଁ, ଉଭୟେ ଚାରିଆଡ଼େ ମୋର କୁତ୍ସା କରୁଥିବା ଜାଣି ମଧ୍ୟ, ଯଦି କେବେ ସୁଯୋଗପାଇବି ତେବେ ପ୍ରତ୍ୟେକଙ୍କପାଇଁ ଅଯାଚିତ ଭାବରେ କିଛି କିଛି ସାମାନ୍ୟ ଉପକାର ବି କରିଥିବାର ମନେପଡୁଛି । କିନ୍ତୁ ଏମାନଙ୍କ ପରି ଏ ଦେଶର ତଥାକଥିତ ଶିକ୍ଷିତ ବୁଦ୍ଧିଜୀବୀ ଯେ ଅନ୍ୟ ଏକ ଜଣାଶୁଣା ଓ ଅତି ପରିଚିତ ଏବଂ ଉଭୟଙ୍କଦ୍ୱାରା ଆପାତତଃ ସମ୍ମାନିତ କବି-ସାହିତ୍ୟିକ-ବନ୍ଧୁ ବିରୋଧରେ ଉପର-ବର୍ଣ୍ଣିତ ଷଡ଼ଯନ୍ତ୍ରର ଇତରତାର ସ୍ତରକୁ ଯେ ଖସିପାରନ୍ତି, ସେତେବେଳେ ତାହା ମୋର କଳ୍ପନାର ଅତୀତ ଥିଲା । କିନ୍ତୁ ଏହାର କେତେକାଳ ପରେ ଓଡ଼ିଶାର ଜଣେ ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ଓଡ଼ିଶାର କୋଡ଼ିଏଜଣ ପ୍ରସିଦ୍ଧ କବି-ଲେଖକ-ସମ୍ପାଦକ-ସାହିତ୍ୟିକ-ବୁଦ୍ଧିଜୀବୀ, ସଂଘବଦ୍ଧ ଭାବରେ *Illustrated Weekly* ର ସମ୍ପାଦକ ନିକଟକୁ ମୋ ଲେଖା ସେ କାଗଜରେ ନ ଛପାଇବାପାଇଁ ଯେତେବେଳେ ପିଟିସନ୍ ପଠାଇବାର ଦେଖିଲି, ସେତେବେଳେ ମୋର ପ୍ରାଣର ବିଳାପମୟ ଅଭିଜ୍ଞତା କେବଳ ଅନୁମେୟ । ପୃଥିବୀର କୌଣସି ରାଜ୍ୟର ସାହିତ୍ୟ-ସଂସାରରେ ଏପ୍ରକାର ଅସହିଷ୍ଣୁ ଇତରତା ଦେଖା ଦେଇଥିବାର ଜଣାନାହିଁ । ପୂର୍ବେ ମୋର ଧାରଣା ଥିଲା ଯେ, ପ୍ରତ୍ୟେକ ଜାତିର ପ୍ରତିନିଧିସ୍ଥାନୀୟ ବୁଦ୍ଧିଜୀବୀ ଆକାଶଚାରୀ, ସୁଧାନ୍ୱେଷୀ ଗରୁଡ଼ ହୁଅନ୍ତି, ଆବର୍ଜନାସ୍ତୂପ-ଘାଣ୍ଟୁ-ଥିବା କୁକ୍‌କୁଟ ନୁହନ୍ତି । ଆମେ କୋଟି କୋଟି ଇତରତ ନିତ୍ୟ ଆବର୍ଜନା ସ୍ତୂପ ଘାଣ୍ଟୁଛୁ । କିନ୍ତୁ ଦେଶର କବି, ସାହିତ୍ୟିକ, ଅଧ୍ୟାପକ, ସମ୍ପାଦକ ମଧ୍ୟ ଯଦି ଏହି ପ୍ରକାର ଶୂକର-କୁକ୍‌କୁଟ-ସନ୍ତୋଷରେ ମାତି ରହିବାଟାକୁ ଶ୍ଳାଘ୍ୟ ମନେକରନ୍ତି, ତେବେ ସଂପୃକ୍ତ ଜାତିକି ଉଠେଇବ ଆଉ କିଏ ?

## ଚୁଗୁଲିର ବର୍ବରତା –

ଯେହେତୁ ଓଡ଼ିଶାର ଏହି ପ୍ରଖ୍ୟାତ ସମ୍ପାଦକ-ବନ୍ଧୁଙ୍କ ବିଖ୍ୟାତ ପତ୍ରିକା ଉତ୍କଳ ଦେଶରେ ଇ ଭିତରେ କୁତ୍ସା ଓ ଚୁଗୁଲିକୁ ଏକ ସାମାଜିକ ପ୍ରତିଷ୍ଠା ଦେଇପାରିଛି, ଅଥଚ ଯାହା ଜାତିପ୍ରତି ଘୋର ମାରାତ୍ମକ, ସେଥିପାଇଁ ଏ ସମ୍ପର୍କରେ ଏଠାରେ ସାମାନ୍ୟ କିଛି କହିରଖିବାକୁ ବାଧ୍ୟ ହେଉଛି । ବନ୍ଧୁଙ୍କ କୁତ୍ସା ଓ ଚୁଗୁଲିର ବ୍ୟାପକ ଜନପ୍ରିୟତା ଫଳରେ ଏବେ ଏ ଦେଶର ସାହିତ୍ୟ ରାଜ୍ୟରୁ ମଧ୍ୟ ଆକାଡେମିକ୍ ଡିସ୍‌କସନ୍ ଉଭେଇଯାଇ ତା' ଜାଗାରେ କୁତ୍ସା ଓ ଚୁଗୁଲିହିଁ ସମ୍ମାନିତ ଆସନ ଜମେଇ ପାରୁଛି । ପଞ୍ଚଦଶ ଅଧ୍ୟାୟରେ ତାର କିଞ୍ଚିତ୍ ସୂଚନା ଦେଇଛି । ମୁଁ ନିଜ ଭାଷା ଓ ସାହିତ୍ୟର କଲ୍ୟାଣ ଦୃଷ୍ଟିରୁହିଁ ଓଡ଼ିଆ ଏମ୍.ଏ. ବା ଆଧୁନିକ କବି ଓ କବିତା ବିରୁଦ୍ଧରେ ଲେଖିଛି

ଓ ଲେଖୁଛି । ତାର ଉତ୍ତର କ'ଣ, ମାସ ମାସ ଧରି କୁତ୍ସା ପ୍ରଚାର ? କାହିଁ ଦେଖିଲି ତାର ତାତ୍ତ୍ୱିକ ଆଲୋଚନା ? ଆଧୁନିକ ଉତ୍କଳରେ ଏ ପନ୍ଥା ଓ ଏପ୍ରକାର ବ୍ୟବହାରପାଇଁ ବନ୍ଧୁଙ୍କ ପତ୍ରିକା ବୋଧହୁଏ କମ୍ ଦାୟୀ ନୁହେଁ ।

ହୁଏତ ଜାମାତାଙ୍କ ନାମୋଲ୍ଲେଖ ନଥିବା ଓ ନିଜ ଚୁଗୁଲିଶୀଳତା ପ୍ରତି କଟାକ୍ଷ କରାଯାଇଥିବାର ଅକ୍ଷମଣୀୟ ଅପରାଧ ଯୋଗୁଁ ମୋର କୌଣସି ପୁସ୍ତକ ଉପରେ ମାସ ମାସ ଧରି ଧାରାବାହିକ କୁତ୍ସା, ଏହି ବନ୍ଧୁ ତାଙ୍କ ପତ୍ରିକାରେ କରିଚାଲିଥିବାର ଅନ୍ୟମାନଙ୍କଠାରୁ ଶୁଣି, ୧୯୬୩ ସାଲ୍ ଜାନୁଆରୀ ପହିଲାରେ ନବବର୍ଷର ଉପହାରସ୍ୱରୂପ ବନ୍ଧୁଙ୍କ ନିକଟକୁ ମୁଁ କିନ୍ତୁ ନିମ୍ନଲିଖିତ କବିତାଟି ପଠେଇଦେଇଥିଲି ।

ପ୍ରିୟ ବନ୍ଧୁ ଶ୍ରୀ..........ଙ୍କୁ

ମୋର କୁତ୍ସା,
ତମ ପ୍ରାଣେ
ଢାଳେ ଯେ ଆନନ୍ଦ,
ସେଥିପାଇଁ
ମୋର ସୁଖ
ନୁହେଁ କିଛି ମନ୍ଦ ।
ଏହିପରି
କର୍ମକରି
ଯାଏଁ ଆଗେ ଆଗେ,
ତମେ ଆସ,
ପଛେ, ଦୋଷ-
ଖୁଣ୍ଟି ଅନୁରାଗେ ।

ଶୁଭାନୁଧାୟୀ—
ମାୟାଧର ମାନସିଂହ

ପୁଣି ଏଠାରେ କହିରଖେ ଯେ, ଓଡ଼ିଶା ସାହିତ୍ୟ ଆକାଡେମୀର କୌଣସି ବିତାଡ଼ିତ ପ୍ରେସିଡେଣ୍ଟ ଘୋର ଆତ୍ମିକ ଦୁଃଖରେ କଟକଯାକ କହିବୁଲିଥିଲେ ଯେ, ସେ ସେହି ଅନୁଷ୍ଠାନର କୌଣସି ତରୁଣ ଓ ଦାମ୍ଭିକ ବେବର୍ତ୍ତାଙ୍କଠାରୁ ଏହିପରି ବିଦାୟୀ ଆଶୀର୍ବାଦ ପାଇଥିଲେ—

"ଆପଣ ବୟସରେ ବଡ଼, କିନ୍ତୁ ମୁଁ ଜାତିରେ ଶ୍ରେଷ୍ଠ । ମୋର ତେଣୁ ଆପଣଙ୍କୁ ଆଶୀର୍ବାଦ ଦେବାର ଅଧିକାର ଅଛି । ମୁଁ ଆପଣଙ୍କୁ ଏଇ ଆଶୀର୍ବାଦ ଦେଉଛି ଯେ ଆପଣ ଦୀର୍ଘକାଳ ବଞ୍ଚନ୍ତୁ, କିନ୍ତୁ କଷ୍ଟରେ ବଞ୍ଚନ୍ତୁ । ପୁଣି, କିଛି ପାଟିତୁଣ୍ଡ କରିବେ ତ ମନେରଖିବେ ମୋ ହାତରେ ଏକ କାଗଜ ଅଛି ।"

ଶୁଣାଯାଏ ଯେ ସେ ଆକାଡେମୀ ପ୍ରେସିଡେଣ୍ଟ, ସେହି ବରେଣ୍ୟ ବେବର୍ତ୍ତାଙ୍କ ବିରୋଧରେ ଗଭର୍ଣ୍ଣର, ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀ ଆଦିଙ୍କ ପାଖେ କୁଆଡ଼େ କି କି ଆପତ୍ତି ଅଭିଯୋଗ କରିଥିଲେ । ଏହି ହେଲା ତାଙ୍କର ଅକ୍ଷମଣୀୟ ଅପରାଧ ଓ ବାର୍ଦ୍ଧକ୍ୟ ସତ୍ତ୍ୱେ, ଏକ ତରୁଣଠାରୁ ଏପ୍ରକାର

ଦୁର୍ମଦ ଅଭିଶାପର ଓ ବିଭୀଷିକା ପ୍ରଦର୍ଶନର ହେତୁ । ଏହି ଗ୍ରନ୍ଥର ସପ୍ତଦଶ ଅଧ୍ୟାୟରେ ସାମ୍ବାଦିକତାର 'ବିଭୀଷିକା' କିଞ୍ଚିତ ବର୍ଣ୍ଣିତ ଅଛି । ଏହି ବିଭୀଷିକା, କି ବୀଭତ୍ସ ଆକାର ଧାରଣ କରିପାରେ ଓ ସମାଜର ସ୍ୱାସ୍ଥ୍ୟ ପ୍ରତି କି ମାରାତ୍ମକ ଏହି କୃଷ୍ଣ ପ୍ରଭାବ, ଦେଶବାସୀ ଓ ନିଜେ ବନ୍ଧୁ ବା ଏହିପଥାଭିଳାଷୀ ଅନ୍ୟେ ଏଇଥିରୁ ସଚେତନ ହୋଇପାରନ୍ତି ବୋଲି ଆଶାକରେ ।

କିନ୍ତୁ ହୁଏତ କାହାର କିଛି କାମରେ ଆସିପାରେ, ଏଥିପାଇଁ କହିପାରେ କି ଯେ ଉତ୍କଳର ଏହି ପତ୍ରିକା, ଯାହାକୁ ମୁଣ୍ଡତଳେ ନଦେଲେ ଓଡ଼ିଶାର ବହୁ ଗଣ୍ୟମାନ୍ୟ ବ୍ୟକ୍ତିଙ୍କର ମଧ୍ୟ ନିଦ ହୁଏନାହିଁ, ତାହା ଲେଖକର ଘରେ ଏଯାବତ୍ ଏକାନ୍ତ ନିଷିଦ୍ଧ ପଦାର୍ଥ ରହିଆସିଛି । ଏହି ନିଷେଧର ଫଳ ଯେ, ମୁଁ ଓ ମୋର ପରିବାର ପାଇଛୁ, ଏହାହିଁ ଶିକ୍ଷାବିତ୍‌ଭାବରେ ଜଣାଇରଖିବା କର୍ତ୍ତବ୍ୟ ମନେକରି ଏହା କହିରଖୁଛି । ପୁସ୍ତକ-ପତ୍ରିକା-ପ୍ରିୟ ପୁଅ-ଝିଅଙ୍କ ଆଗରେ ଏହି ପତ୍ରିକା ପଡ଼ିଥିଲେ ମଧ୍ୟ ସେମାନେ ଯେ ଏହାକୁ ଅନାଇଯାଆନ୍ତିନି, ମୁଁ ମନେକରେ, ତାହାହିଁ କେବଳ ମୋ ନିକଟରେ ନୁହେଁ ଯେକୌଣସି ପିତାମାତାଙ୍କ ନିକଟରେ ହେବ ପରମ ସାଂସ୍କୃତିକ ଓ ବୌଦ୍ଧିକ ଲାଭ । ଦେଶର ଅପାପବିଦ୍ଧ କିଶୋର-ତରୁଣଦଳ, କାହିଁକି ମାସ ମାସ, ବର୍ଷ ବର୍ଷ ଧରି ପରଚୁଗୁଲିଗୁଡ଼ାଏ ଶୁଣି ବା ପଢ଼ି ନିଜର ସହଜାତ ଅନାବିଳ ରୁଚିକୁ ଖରାପ କରିବେ ? ସେମାନଙ୍କପାଇଁ କ'ଣ ଆଉ ଉତ୍ତମତର ମାନସିକ ଖାଦ୍ୟ ଗୋଟାଏ ଐତିହାସିକ ଜାତି ଯୋଗାଇପାରୁନି ? ଏପରି ବିଷାକ୍ତ ଦ୍ରବ୍ୟକୁ ଦୂରେଇ ରଖି ଅନ୍ତତଃ ମୋର ବା ମୋ ପିଲାଙ୍କର ତ କିଛି ସାମାନ୍ୟତମ ମାନସିକ ଅଭାବ ବା ଦୁର୍ଗତି ଘଟିଯାଇନି ! ମଦ, ଗଞ୍ଜେଇ, ବିଡ଼ିର ଦୈହିକ ଅଭ୍ୟାସ ପରି ଚୁଗୁଲିକରିବା ଓ ଶୁଣିବା ଏକ ମାରାତ୍ମକ ମାନସିକ ବ୍ୟାଧି ଓ ବୌଦ୍ଧିକ ଅପରାଧ । କୌଣସି ହେଲେ ସଭ୍ୟ ସମାଜ ବା ଧର୍ମ ଏହାକୁ ସମ୍ମାନନୀୟ ମନେକରେନା । କାଳିଦାସ, କୁମାରସମ୍ଭବରେ ପାର୍ବତୀଙ୍କ ମୁଖରେ ଏହା ସ୍ପଷ୍ଟ ଘୋଷଣା କରିଯାଇଛନ୍ତି ।

ଚୁଗୁଲିକୁ 'ସାଟାୟରର' ସମ୍ମାନ ଦେବା ଆଉ ଏକ ମୂର୍ଖତା । ସାଟାୟାର ସାମାଜିକ ଦୁର୍ନୀତି, କୁସଂସ୍କାର, ଭଣ୍ଡତା ବା କୌଣସି ବ୍ୟାବହାରିକ ଅସଂଗତିକି ନେଇ ହୁଏ । ବଟ୍‌ଲରଙ୍କ ପ୍ରସିଦ୍ଧ ସାଟାୟାର 'ହୁଡ଼ିବ୍ରାସ', ଲେଖାହୋଇଥିଲା ପିଉରିଟାନମାନଙ୍କର ଧର୍ମୀୟ ଛଦ୍ମତାକୁ ଥଟ୍ଟାକରି । ସେହିପରି ବଙ୍ଗ ଔପନ୍ୟାସିକ ଶରତଚନ୍ଦ୍ରଙ୍କ ଉପନ୍ୟାସାବଳୀରେ ସେକାଳର ବ୍ରାହ୍ମଣମାନଙ୍କ ଧର୍ମୀୟ ଛଦ୍ମତା ବିରୋଧରେ ସାଟାୟାର ଖଞ୍ଜାଯାଇଛି ବୋଲି କୁହାଯାଏ । ଏପ୍ରକାର ସାଟାୟାର ଜାତିକି ସଂଶୋଧନ କରେ ଓ ଗଢ଼େ । କିନ୍ତୁ ରାମ ରଥ, ନିଧି ମହାନ୍ତି, ପଦିଆ ଜେନା ପରି ଏକ ଏକ ବ୍ୟକ୍ତିକୁ ମାସ ମାସ ଧରି ଚୁଗୁଲି କଲେ, ନିଜର କିଛି ଆତ୍ମ-ସନ୍ତୋଷ ମିଳିପାରେ, କିନ୍ତୁ ସେଥିରୁ ଜାତିର କି ଲାଭ, ଜାତୀୟ ସାହିତ୍ୟର ବା କି ଲାଭ ? କେବଳ ସମଗ୍ର ଜାତିର, ବିଶେଷତଃ ତରୁଣ ସମାଜର ଅକଳୁଷ ଚିତ୍ତର ବିକୃତୀକରଣହିଁ ମହାକାଳ ଫଳ ଲାଭ ।

## ଆଶା ଓ ନିରାଶା –

ମୋହଭଙ୍ଗ, ବ୍ୟକ୍ତି, ସମାଜ ବା ଜାତିଠାରୁ ଅକଳ୍ପିତ ବ୍ୟବହାର ଫଳରେ ଘଟିଲାବେଳେ, ଜୀବନ ଝଞ୍ଜାକୁଳ ହୋଇଉଠିବା ସ୍ୱାଭାବିକ । ମୋହଭଙ୍ଗରେହିଁ ସ୍ୱାମୀ ଘର ଛାଡ଼ି ପଳେଇବା

ବା ସ୍ତ୍ରୀ ଆତ୍ମହତ୍ୟା କରିବା ଘଟେ ବୋଧହୁଏ । କିନ୍ତୁ ପାଠକପାଠିକାମାନଙ୍କ ପ୍ରତି ମୋର ସାମାନ୍ୟ ଉପଦେଶ ଯେ, ଏପରି ସଂକଟବେଳେ ନିଜ ନିଜ ବ୍ୟକ୍ତିତ୍ୱର ଭାରସାମ୍ୟ ରଖିବାରା ଏକମାତ୍ର ଉପାୟ ହେଉଛି ନିଜ ଅନ୍ତରରେ ସେମାନେ ଦେବଦତ୍ତ ହୋମାଗ୍ନିକୁ ଯେପରି ଯେ କୌଣସିମତେ ପ୍ରଦୀପ୍ତ କରି ରଖିବେ । ଅତ୍ୟାଚାରୀ ହେଉପଛେ ଯେତେ ବଡ଼, ଅନ୍ୟାୟୀ-ଗୋଷ୍ଠୀ ହେଉ ପଛେ ଯେତେ ପ୍ରଭାବଶାଳୀ, ବନ୍ଧୁତା ପରିଣତ ହେଉ ପଛେ ଷଡ଼ଯନ୍ତ୍ର, ପ୍ରତାରଣା ଓ ଅବହେଳାରେ, ଥାଉ ପଛେ ଚାରିଆଡ଼ ଅଭେଦ୍ୟ-ଅନ୍ଧକାରମୟ, ନିଶ୍ଚିତ ଥାଅ ପାଠକପାଠିକା, ତମ ନିଜ ଅନ୍ତରରେ ପ୍ରଦୀପ୍ୟମାନ ସେହି କ୍ଷୀଣ ହୋମାଲୋକ ଦେଖି, ଦୂରରୁ-ଚାରିଆଡ଼ର-ବ୍ୟାପକ-ଅନ୍ଧକାର ଭେଦକରି ଆଲୋକ-ବର୍ତ୍ତିକାଧାରୀ ସାହାଯ୍ୟକାରୀ ତମକୁ ଖୋଜିଆସିବେ ଓ ସେହି ଦୁର୍ଦ୍ଦିନରେ ତମକୁ ଦେବେ ମହନୀୟ ମାନବିକ ସ୍ପର୍ଶ, ଯାହାହିଁ ତମ ଆତ୍ମା ଖୋଜୁଥିଲା । ସେଦିନର ସେହି ପ୍ରବଳପ୍ରତାପୀ ଶିକ୍ଷାମନ୍ତ୍ରୀ ମୋପରି ଶୂଦ୍ରାଧମ ଅପରାଧୀକୁ ତଳିତଳାନ୍ତ କରିବାକୁ ଯେତେବେଳେ ବଦ୍ଧକଟି, ସେତେବେଳେ ଏହି ଓଡ଼ିଶା ଦେଶରେ, ଧନହୀନ, ବଳହୀନ, ଖବରକାଗଜହୀନ ଓ ବନ୍ଧୁହୀନ ଏହି ଲେଖକକୁ କିଏ ସହାୟତାର ମୂର୍ଖତା ଦେଖାଇବାକୁ ଯିବ ? କାହାକୁ ବା ଦୁଃଖ ଜଣାଇବି ? ମନେଅଛି, ସେତେବେଳର ଘୋର ମାନସିକ ଯନ୍ତ୍ରଣାରୁ ଉଦ୍ଧାରର ଏକ ପଥ ରୂପେ, ଥରେ ରାଣା ପ୍ରତାପ ଶେଷରେ ଆକବରଙ୍କୁ ପତ୍ର ଲେଖିଲା ପରି, ମୁଁ ବହୁକାଳରୁ ସୁପରିଚିତ ସେତେବେଳର ମୁଖ୍ୟମନ୍ତ୍ରୀ-ଶିକ୍ଷାମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ନିକଟକୁ ଦୁଃଖ ଜଣାଇ ଏକ ଦୀର୍ଘପତ୍ର ଲେଖିବସିଥିଲି । ବହୁ ପରିଚିତ ଶ୍ରୀ ମହତାବ ସେତେବେଳେ ଦେଖାହେଲେ ମୁହଁ ଆଡ଼େଇ ଦେଉଥିଲେ । କି ମୋହଭଙ୍ଗ ସତେ ସେ ! ଦୁଃଖ ଜଣାଇବି କାହାକୁ ? କିନ୍ତୁ ଭାଗ୍ୟେ, ସେ ପତ୍ର ଶ୍ରୀମତୀ ହେମଲତା ଦେଖିଦେଲେ । ସେ, ସେ ପତ୍ରଟି ଛଡ଼ାଇନେଇ ଓ ପଡ଼ିସାରି ଭର୍ତ୍ସନା କରି ମତେ କହିଲେ—

"କ'ଣ – ଦୁର୍ଦ୍ଦଶା ଆସିଛି ବୋଲି ତମେ ମହତାବ ଆଗରେ ଆଣ୍ଠୁଭାଙ୍ଗି ଠିଆହେବ ? ଆମେ ଜାଣୁ ଯେ, ଆମେ କୌଣସି ଅନ୍ୟାୟ କରିନୁ – ଭୁଲ୍ ହୋଇଥିଲେ ହୋଇଥିବ । ଜୀବନରେ ସମସ୍ତଙ୍କର ଭୁଲ୍ ହୁଏ । ବିପଦ ଆସିବ ଓ ଯିବ – ସେଥିରେ ଭାଙ୍ଗିପଡ଼ିବାର କ'ଣ ଅଛି ?"

କି କୃତଜ୍ଞତା ଦେବି ଏ ସ୍ତ୍ରୀକୁ ସେ ଭର୍ତ୍ସନା ପାଇଁ ?

## ମୁଖ୍ୟତମ –

ଏ ଜୀବନର ସବୁ ଡିସ୍-ଇଲ୍ୟୁଜନ୍‌ମେଣ୍ଟ ବା ମୋହଭଙ୍ଗ ଭିତରେ ଏଯାବତ୍ ଯାହା ମୁଖ୍ୟତମ, ତାହା ବୋଧହୁଏ ମୋର ଉପରଲିଖିତ ପତ୍ରଟି ଯାହାଙ୍କ ନିକଟକୁ ହେମଲତାଙ୍କ ଯୋଗୁଁ ଯାଇପାରିଲାନି, ସେହି । ଓଡ଼ିଶାର ସବୁଲୋକେ ଦିନେ ଯେପରି କଂଗ୍ରେସ ଶାସନ ଓ କଂଗ୍ରେସୀ ନେତାଙ୍କ ଉପରେ ଆଶାୟୀ ଓ ଆସ୍ଥାବାନ୍ ଥିଲେ, ଏହି ଲେଖକ ବି ସେହିପରି ଥିଲା । ଓଡ଼ିଶାରେ କଂଗ୍ରେସୀ ନେତାଙ୍କ ଭିତରେ ଜଣେ ସାହିତ୍ୟ ଚର୍ଚ୍ଚା କରୁଥିବାରୁ ଆମେ ଓଡ଼ିଶାର ସାହିତ୍ୟିକମାନେ ତାଙ୍କଠି ବହୁ ଆଶା ରଖିଥିଲୁ । କିନ୍ତୁ ଗଭୀର ଦୁଃଖଦାୟକ ଭାବରେ, ଆଶାଭଙ୍ଗ ମଧ୍ୟ ସେହି ପରିମାଣକ ହୋଇଉଠିଲା । କ୍ରମେ ଆମେ ଓଡ଼ିଶାର ଅନେକ ଆଶାୟୀ ସାହିତ୍ୟିକ, ଏହା

ଦେଖି ବିସ୍ମିତହେଲୁ ଯେ, ମଫସଲର ଏକ ଛୋଟ ଜମିଦାର, ମହାତ୍ମା ଓ ନେହେରୁଙ୍କ ସାହଚର୍ଯ୍ୟ, ପୁଣି ଉଚ୍ଚ ଶାସନିକ ଆସନ ସତ୍ତ୍ୱେ, ଚିତ୍ତରେ ଛୋଟ ମଫସଲ ଜମିଦାରର ଉପର ସ୍ତରକୁ ହୁଏତ ଆଦୌ ଉଠିପାରିଲେ ନାହିଁ। ଅଧିକନ୍ତୁ, ସ୍ୱାଧୀନତୋତ୍ତର ଯୁଗରେ ମଧ ଓଡ଼ିଆ ସାହିତ୍ୟର ଉନ୍ନତିର ତାତ୍ପର୍ଯ୍ୟକ୍ରମେ ଆମେ ଏୟା ବୁଝିଲୁ ଯେ, ଜଣେ କେହି ବିକ୍ରମାଦିତ୍ୟ ହୋଇ ବସିବେ ଓ ଦେଶର ବୁଦ୍ଧିଜୀବୀଗଣ ତାଙ୍କର ସିଂହାସନ ଚାରିପଟେ ଠିଆରହିବେ। ସାହିତ୍ୟ-ସଂସ୍କୃତିର-ପତାକା-ବାହୀ ଉତ୍ସବ ସବୁ ମଧ ଏହି ମାନସିକତା ଓ ଆତ୍ମପ୍ରଚାରରହିଁ ଏକ ବହିଃପ୍ରକାଶ ବୋଲି ମନେହେଲା । ସର୍ଦ୍ଦାର ପଟେଲଙ୍କ କଲମ, ଗଡ଼ଜାତର ରେଖାସବୁ ମାନଚିତ୍ରରୁ ଉଠାଇଦେଲା ସିନା, କିନ୍ତୁ ଆମେ ଦେଖିଲୁ ଯେ, ସେହି ତଥାକଥିତ ବ୍ୟକ୍ତିକୈନ୍ଦ୍ରିକ ଅନ୍ଧାରୀ ରାଜତନ୍ତ୍ରର ଆତ୍ମା, ସାଙ୍ଗେ ସାଙ୍ଗେ ପୁନର୍ଜନ୍ମ ନେଲା କଟକ ଓ ଭୁବନେଶ୍ୱରରେ । ରାଜା ଗଲେ, କିନ୍ତୁ ବ୍ୟକ୍ତିକୈନ୍ଦ୍ରିକ ଦରବାର ରହିଲା । ଆମେ ଅବାକ୍ ହୋଇ ପ୍ରଶ୍ନ କଲୁ– ବାବୁ ଇଏ କି ଡିମୋକ୍ରାସୀ ? ପୃଥିବୀରେ ଡିମୋକ୍ରାସୀର ଅନ୍ତୁଡ଼ିଶାଳ, ଲଣ୍ଡନର ୧୦, ଡାଉନିଂ ଷ୍ଟ୍ରୀଟ୍‌ରେ ଏମିତି ଦରବାର ବସେ ନା କ'ଣ ? କବି-ପଣ୍ଡିତ-ଆଲଙ୍କାରିକ-ସମ୍ମାନିତ ଗୌରବମୟ ଗଜପତି ସିଂହାସନ ଚାରିପଟେ, ପୁଣି କି ଶ୍ରେଣୀର ଲୋକେ ଆଦର-ଆପ୍ୟାୟନ ପାଇବାର ଦେଖିଲୁଁ ? ଆଖି ଖୋଲିଗଲା, ବନ୍ଧୁଗଣ ! ଯାକୁ ଆଶାଭଙ୍ଗ କହିବା ଲଘୁବଚନ ହେବ । ଏହା ହେଲା ଏକ ମାନସିକ ଭୂମିକମ୍ପ । ଆଶାୟୀ ଓ ଆଶାଭଙ୍ଗ ଉଭୟ ବେଳର ପ୍ରତୀକରୂପେ ଲେଖିଥିବା ଦୁଇଟି ପତ୍ର ଏହି ଅଧାୟର 'ପରିଶିଷ୍ଟ' ରୂପେ ଦେଇରଖୁଛି, ପାଠକେ ଦୟାକରି ପଢ଼ିପାରନ୍ତି ।

ଇତିହାସ ପାଠକମାନେ ଜାଣନ୍ତି ଯେ, ଇତିହାସରେ ସୁଶାସକ ବୋଲି ଯାହାଙ୍କର ସୁନାମ ଅଛି–ନିରକ୍ଷର ଆକବର ଓ ଇଂଲାଣ୍ଡର ରାଣୀ ପ୍ରଥମ ଏଲିଜାବେଥ୍‌ଠାରୁ ଆରମ୍ଭକରି ଆମ ସୁଢ଼ଳଦେବ ଓ ଶ୍ରୀରାମଚନ୍ଦ୍ର ଭଞ୍ଜ ପର୍ଯ୍ୟନ୍ତ–ସେମାନଙ୍କର ଦେଶର ଗୁଣୀ ଓ ବିଚକ୍ଷଣ ଲୋକଙ୍କୁ ଏକତ୍ର କରିବା ଓ ସେମାନଙ୍କୁ ନେଇ ସମ୍ପୃକ୍ତ ଶାସନକୁ ନିର୍ମଳ, ନିପୁଣ ଓ ମର୍ଯ୍ୟାଦାବନ୍ତ କରିବାର ଅସାଧାରଣ କ୍ଷମତା ଥିଲା । କୌଣସି କାଳେ, କୌଣସି ଦେଶରେ ନିମ୍ନ, ଇତର ଶ୍ରେଣୀ ଲୋକଙ୍କର ପରାମର୍ଶ, ପ୍ରଶ୍ରୟ ବା ପ୍ରାଧାନ୍ୟରେ ସୁଶାସନ ସମ୍ଭବ ହୋଇନାହିଁ । ହେଲେ, ପ୍ରତ୍ୟେକ କ୍ଷେତ୍ରରେହିଁ ସମ୍ପୃକ୍ତ ଦେଶ ଓ ସମାଜ ଉଚ୍ଛନ୍ନ ହୋଇଛି । 'ଦରବାର' ଲେଖକ ରାଧାନାଥ, ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କୁ ଦି'ପଦ(ଯଥାର୍ଥଭାବରେ) ସ୍ତୁତି କରିଦେଲେ ବୋଲି ତାଙ୍କୁ 'ସାମନ୍ତବାଦୀ' କହିଦେବା ନିଜ ମୂର୍ଖତାରହିଁ ପରିଚୟ । ସେ କିମିତି ଲୋକଙ୍କୁ ଗାଳିଦେଇଛନ୍ତି ଓ କାହାକୁ ପ୍ରଶଂସା କରିଛନ୍ତି, ଆଖିଖୋଲି ଦେଖ । ''ପ୍ରତିଧ୍ୱନି ପରି ସଦାସ୍ତବକାରୀ, ତୁମ୍ଭ ପ୍ରିୟପାତ୍ର ଗଉଡ଼ ଭଣ୍ଡାରୀ''–ଜାତୀୟ କବିଙ୍କର ଏହି ଶାସନିକ ପ୍ରଜ୍ଞା, ସେଦିନର ମନ୍ଦ ସାମନ୍ତମାନଙ୍କ ପରି, ଆଜିର ତଥାକଥିତ ଗଣତନ୍ତ୍ରବାଦୀମାନଙ୍କ ପ୍ରତି ମଧ ପ୍ରଯୁଜ୍ୟ କି ନାହିଁ, ଚିନ୍ତା କର । ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନ ଆଜି ଉଚ୍ଛନ୍ନ ବୋଲି କୁହାଯାଉଛି । ଐତିହାସିକ ଉତ୍କଳ ଦେଶରେ ଏହି ସୁବର୍ଣ୍ଣ ଐତିହ୍ୟର ଗୌରବାନ୍ୱିତ ଭଗୀରଥ ବା କିଏ ? ଡିମୋକ୍ରାସୀ ବା ଲୋକପ୍ରତିନିଧି ଶାସନ, ସତରେ କ'ଣ କେବଳ ଅଯୋଗ୍ୟାଭ୍ୟୁଦୟ ?

ଆଶାଭରା କାଳରେ ମୋର 'ମାଟି-ବାଣୀ' ଗ୍ରନ୍ଥଟିକୁ ଉତ୍ସର୍ଗ କରି ମୁଁ ଯେଉଁ ଶ୍ଳୋକଟି ପ୍ରକାଶ କରିଥିଲି, ତାହା ଏହି—

''କରିବାକୁ ଯେଉଁ ମୃତ୍ତିକା ଉର୍ବର
ରାଜପୁତ୍ର ହୋଇ ଦିଅ ସ୍ୱେଦଜଳ,
କବି ଶୁଣାଇବ ସେହି 'ମାଟିବାଣୀ'
ତୁମ୍ଭେ ତାର ଶ୍ରେଷ୍ଠ ସେବାକାରୀ ଜାଣି ।
ସେହି ମାତ୍ର ହରିପାରେ ଦେଶ ବ୍ୟଥା
ଚିହ୍ନିଛି ଯେ ମାଟି..ବୁଝେ ମାଟି ବ୍ୟଥା ।''

କେହି କେହି ଏହାକୁ ମୋର ସେତେବେଳର ସିଂହାସନ-ପରିତୋଷକ ତୋଷାମଦ ବୋଲି ଚିତ୍ରିବାକୁ ଆଗ୍ରହୀ । କିନ୍ତୁ ଆହମଦନଗର-କାରାଗାର-ମୁକ୍ତ, ମୁକ୍ତି-ସଂଗ୍ରାମୀ, କୌଣସି ସର୍ବଭାରତୀୟ ଓଡ଼ିଶୀ ନେତାଙ୍କୁ ଜଣେ ସମସାମୟିକ ଓଡ଼ିଆ କବି ସମ୍ବର୍ଦ୍ଧନା ନଜଣାଇବ କାହିଁକି ? ବ୍ରିଟିଶ୍ ରାଜା ଏ ଦେଶର ମାଟି ନଛାଡ଼ିଲାଯାଏ ଯେଉଁମାନେ 'ପ୍ରଗତି'ର ବାନା ଉଡ଼ାଇ ଗାନ୍ଧି-ଗୋପବନ୍ଧୁ ଉପରେ ମଧ୍ୟ ଚତୁର ସତର୍କତାସହ ପାଟି ଫିଟାଇ ନଥିଲେ ସେମାନଙ୍କ କଥା ସ୍ୱତନ୍ତ୍ର । ସାବଧାନୀ ବନ୍ଧୁଗଣ ମହତାବ-ଅଭ୍ୟୁଦୟ ବେଳେ ମଧ୍ୟ ଭାବିଥିବେ କାଳେ ବିପଦ ଥିବ ! କିନ୍ତୁ ଉପର ଶ୍ଳୋକର ପ୍ରଥମ କେତେକ ପଂକ୍ତିରେ ଯାହାଙ୍କୁ ସମ୍ବର୍ଦ୍ଧନା ଦିଆଯାଇଛି, ସେ ଅନୁଗ୍ରହବିତରକ ଶାସକ ବୋଲି ନୁହେଁ, ସେ କେବଳ ଦେଶର ଏକ 'ଶ୍ରେଷ୍ଠ ସେବାକାରୀ' ବୋଲି । ଯାକୁ ବି କ'ଣ ତୋଷାମଦ କୁହାଯାଏ ? ପୁଣି ଶ୍ଳୋକର ଶେଷ କେତେକ ପଂକ୍ତିରେ ସେହି ଦେଶ-ସେବକଙ୍କୁ ଉପଦେଶ ଖଞ୍ଜାଯାଇଛି । ଉପଦେଶ ଦେବାର କିଛି ଅଧିକାର ଅଛି ବୋଲି ମୁଁ ମନେକରିଆସିଛି, ଦେଶର ବୁଦ୍ଧିଜୀବୀର । ବିକ୍ରମଦେବ ବର୍ମା ଯେତେବେଳେ ଜୟପୁର ଜମିଦାରୀ ପାଇଲେ, ସେତେବେଳେ ଏଇ ଲେଖକ ଥିଲା ରେଭେନ୍ସା କଲେଜର ଏକ ଅଣ୍ଡର ଗ୍ରାଜୁଏଟ୍ ଛାତ୍ର ମାତ୍ର । କିନ୍ତୁ ସେ ବୋଧହୁଏ ଏକମାତ୍ର ଓଡ଼ିଆ ଲେଖକ ଯେ କି ତାଙ୍କଠୁ ଓଡ଼ିଶାର ପ୍ରଚୁର କଲ୍ୟାଣ ଆଶାକରି ତାଙ୍କୁ କବିତାରେ ସମ୍ବର୍ଦ୍ଧନା ଜଣାଇଥିଲା । ବିକ୍ରମଦେବଙ୍କ ଛବି ସହିତ ସେ କବିତା ସେତେବେଳର 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ଅଥଚ ବିକ୍ରମଦେବଙ୍କ ସହିତ ଲେଖକର ପ୍ରଥମ ସାକ୍ଷାତ୍ ହେଲା ଯାଇ ଦକ୍ଷିଣ ଓଡ଼ିଶାର ଇନ୍ସପେକ୍ଟର ଭାବରେ କୋରାପୁଟ ଗସ୍ତବେଳେ । ଜାତିପ୍ରତି କଲ୍ୟାଣର ସମ୍ଭାବନା ଯାହାଠି ଓ ଯେଉଁଠି ଦେଖିଛି, ସେଠି ଅକୁଣ୍ଠ ସମ୍ବର୍ଦ୍ଧନା ଝାଡ଼ିବା ଏଇ ସାମାନ୍ୟ ଜୀବନର ଏକ ପ୍ରକୃଷ୍ଟ ସହଜାତ ଆନନ୍ଦ ହୋଇଆସିଛି । ମୁଁ ମନେକରୁଛି ମଧ୍ୟ ଯେ, ଏହା ଜାତିର କବି-ଲେଖକ-ବୁଦ୍ଧିଜୀବୀର କର୍ତ୍ତବ୍ୟ । ଉପର ଶ୍ଳୋକରେ ଉଭୟ ସମ୍ବର୍ଦ୍ଧନା ଓ ଉପଦେଶ ଯାହାପ୍ରତି ଅଭିପ୍ରେତ ଥିଲା ସିଏ, ସେହି ଉଭୟର ଅଯୋଗ୍ୟ ବୋଲି ପ୍ରମାଣିତ ହେବାରେ, କବିର ଗ୍ଲାନି ବା ଅନୁତାପ ବୋଧ କରିବାର କି କାରଣ ଅଛି ? ଯେଉଁ ଶାସକ, 'ମାଟିର ବ୍ୟଥା' ବୁଝିପାରିଲେନି, ସେ ମାଟିରୁ ନିଶ୍ଚିହ୍ନ ହେବା ସ୍ୱତଃସିଦ୍ଧ କଥା । ନିଜ-ପ୍ରତିଷ୍ଠିତ ପ୍ରୋପାଗଣ୍ଡା ବ୍ୟବସ୍ଥାର ରାୟ କାଳର ରାୟ ନହୋଇପାରେ, ଏହା ଅନ୍ତତଃ ଏ ଦେଶର ଐତିହାସିକେ ବୁଝିବାରେ କଷ୍ଟ ହେବନି । ନିଜ

ପତ୍ରପତ୍ରିକାର ମିଥ୍ୟା ପ୍ରଚାର ବା ଆତ୍ମପ୍ରଚାରରେ ଇତିହାସ ଭୁଲେନା । ଏ ସମ୍ପର୍କରେ ପ୍ରୋପାଗଣ୍ଡାର ପଟ୍ଟପୁରୋଧା ହିଟଲ୍‌ରଙ୍କ ସମ୍ପର୍କରେ ଏକ ଗପ ଅଛି । ତାହାହିଁ ଦୈନିକ-ପତ୍ର-ସ୍ତମ୍ଭ-ବିଶ୍ୱାସୀ ପ୍ରୋପାଗଣ୍ଡାପୂଜାରୀ ବନ୍ଧୁମାନେ ଜାଣିବାପାଇଁ ଏଠାରେ ଦେଉଛି—

ହିଟ୍‌ଲର ସ୍ୱର୍ଗକୁ ଗଲେ । କିନ୍ତୁ ପହରାବାଲା ଛାଡ଼ିଲାନି । ସେ ଗର୍ଜନ କଲେ ଓ କହିଲେ, ଅଫିସର-ଇନଚାର୍ଜକୁ ଡାକ । ଅଫିସର୍-ଇନ୍-ଚାର୍ଜ ଆସନ୍ତେ ହିଟ୍‌ଲର ପଚାରିଲେ ତାଙ୍କୁ ଗେଟ୍ ବନ୍ଦ କରି ଦିଆହୋଇଛି କାହିଁକି ? ଅଫିସର ବିଚାରା ନାମଧାମ ବୁଝି ଫାଇଲ୍‌ରୁ ରେକର୍ଡ଼ ସବୁ କାଢ଼ିଲେ ଓ ଆସି କହିଲେ ଯେ, ''ତାଙ୍କର (ହିଟ୍‌ଲରଙ୍କର) ରେକର୍ଡ଼ ଭଲ ନୁହେଁ ।''

ଏଥିରେ ହିଟ୍‌ଲର ଅଧିକ ଗର୍ଜନ କରି କହିଉଠିଲେ—''କୁ'ଠୁ ସବୁ ଆପଣମାନେ ରେକର୍ଡ଼ ସଂଗ୍ରହ କରିଛନ୍ତି ? ଆପଣମାନେ ନାଜୀ ଶାସନବେଳେ ଜର୍ମାନୀରେ ପ୍ରକାଶିତ ଖବରକାଗଜ ସବୁ ପଢ଼ିଛନ୍ତି କି ?''

ଅଫିସର ତାହା ଶୁଣି କହିଲେ—''ଆମର ନିଜର ସମ୍ବାଦ-ସରବରାହ-ସଂସ୍ଥା ବହୁ ପୁରାତନ ଓ ନିପୁଣ ।''

ହେମଲତାଙ୍କ କଥାନୁସାରେ ଦୁର୍ଦ୍ଦିନ ଆସିଲା ଓ ଗଲା । ବରଂ ନାନା ମୋହଭଙ୍ଗ ଦେଇ ସେହି ଦୁର୍ଦ୍ଦିନ ଭିତରେ ଜୀବନ ଓ ଜଗତକୁ ଯେ ସତ୍ୟ ରୂପରେ ଜାଣିଲି, ତାହାହିଁ ହେଲା ଏକ ମହତ୍ ଲାଭ ଏବଂ ଘୋରତମ ଦୁର୍ଦ୍ଦିନରେ ମଧ୍ୟ ମାନବିକତାର ସ୍ୱର୍ଣ୍ଣାଲୋକ ବିପନ୍ନର ପ୍ରାଣରେ କିପରି ଆଶା ଭରସାର ପ୍ରଦୀପ ଜାଳିରଖେ, ତାହାରିହିଁ ଏକ ସାମାନ୍ୟ କିନ୍ତୁ ଗୁରୁତ୍ୱପୂର୍ଣ୍ଣ ଦୃଷ୍ଟାନ୍ତ ଏଠାରେ ଦେଉଛି । (ଇଂରାଜୀରୁ ଅନୂଦିତ)

ଆର୍ମଷ୍ଟ୍ରଙ୍ଗ ରୋଡ଼, ପୁରୀ<br>ଜୁନ୍ ୧୮ । ୧୯୫୭

ଅତିପ୍ରିୟ ମାନସିଂ,

ସେଦିନ ସନ୍ଧ୍ୟାରେ ତମର ମାନସିକ ବ୍ୟଥା ଦେଖି ମୁଁ ପ୍ରକୃତରେ ଗଭୀରଭାବରେ ଦୁଃଖିତ ହେଲି । ସକଳ ଦେଶ ଓ ସ୍ଥାନରେ ପ୍ରତିଭା ଏଇପ୍ରକାର ଉତ୍‌ଥାନ ପତନଶୀଳ ଘଟଣାପ୍ରବାହ ଦେଇ ଯାଇଥାଏ । ସମାଜ କେବଳ 'ସାଧାରଣ'କୁ ପୋଷେ । 'ସାଧାରଣ'ର ଉପରେ ଓ ତଳେ ଯେଉଁମାନେ ରହିଯାନ୍ତି, ତାକୁ ନିଷ୍ପେଷଣ କରିଥାଏ । ତମେ ଯାହା ଚାହିଥିଲ, ସେ ଟିକକ କରିଛି । ଆଶାକରେ ତାହା ସାହାଯ୍ୟକାରୀ ହେବ ।

ଶ୍ରେଷ୍ଠ ଶୁଭେଚ୍ଛା ସହ—
ହରିହର ମହାପାତ୍ର

ହରିହରବାବୁ ବର୍ତ୍ତମାନ ପାଟନା ହାଇକୋର୍ଟର ଜଜ୍ । ମୋ'ପରି ଲୋକ ତାଙ୍କର କି ଉପକାର କରିପାରେ ? କେବଳ ଏକ ଅପୂରଣୀୟ କୃତଜ୍ଞତାର ସଙ୍କେତରୂପେହିଁ ଜଣେ ମନୁଷ୍ୟର ଘୋର ଦୁର୍ଦ୍ଦିନରେ ତାଙ୍କର ଉଦାର-ମାନବିକତା ପ୍ରକାଶକୁ ଏଠାରେ ଥୋଇରଖିଲି, ସମାବସ୍ଥା ପଥିକମାନଙ୍କ ଆଗରେ ଚିରକାଳ ପ୍ରେରଣା ଓ ଆଦର୍ଶରୂପେ କାମ କରିବ ବୋଲି । ଏହି ଗାଥାର ଏହି ମୁଦ୍ରଣ ଶେଷହୋଇ ଆସିଲାବେଳକୁ ପୁରୁଣା କାଗଜପତ୍ର ଘାଣ୍ଟୁ ଘାଣ୍ଟୁ ହରିହରବାବୁଙ୍କର ଆଉ ଏକ ପ୍ରାଚୀନ ଓ ପୂର୍ଣ୍ଣବିସ୍ତୃତ ପତ୍ର ପାଇଲି । ଦେଖିଲି ହରିହରବାବୁଙ୍କଠାରୁ ସେ ପତ୍ର ମଧ

ଆସିଛି ଏଇ ଲେଖକର କବି-ଜୀବନର ଏକ ସଂକଟ କାଳରେ, 'ଧୂପ' ନାମକ କବିତା ପୁସ୍ତକକୁ ନେଇ ଜୀବନ ଯେତେବେଳେ ଝଞ୍ଜାକୁଳ । ଅଜ୍ଞାତସାରରେ ଜଷ୍ଟିସ୍ ମହାପାତ୍ର ଏ ଲେଖକର ଏକପ୍ରକାର 'ଗାର୍ଡ଼ିୟାନ୍ ଏଞ୍ଜେଲ୍' ହୋଇଆସିଛନ୍ତି, ଦେଖି ମୁଁ ବାସ୍ତବିକ ବିସ୍ମିତ । ପାଠକମାନଙ୍କ କୌତୂହଳାର୍ଥେ ସେହି ପୂର୍ବପତ୍ରଟି ମଧ 'ପରିଶିଷ୍ଟ'ରେ ଦେଉଛି, ଲୋଭ ସମ୍ଭାଳି ନପାରି ।

## ବ୍ୟକ୍ତି ଓ ଈଶ୍ୱର –

ଲେଖକର ଦୃଢ଼ବିଶ୍ୱାସ ଏହି ଯେ, ପ୍ରତ୍ୟେକ ମନୁଷ୍ୟର ଶେଷ ବିଚାର ହେବ ତାର ବ୍ୟାଙ୍କ-ଆକାଉଣ୍ଟ୍, ଯାନ-ପ୍ରାସାଦର ଗୌରବ, ଉପକରଣ ପ୍ରାଚୁର୍ଯ୍ୟ ବା ନିଜର ବା ନିଜ ଦଳର ପ୍ରଭାବପ୍ରତିପତ୍ତିରୁ ନୁହେଁ; ହେବ, କେବଳହିଁ ତାର ପ୍ରତିବେଶୀ ବା ଅନ୍ୟ ମନୁଷ୍ୟ ପ୍ରତି ବ୍ୟବହାରରୁ, ଯାହା ଫୁଟିଉଠିଛି ଉପରେ ଦିଆଯାଇଥିବା ଜଷ୍ଟିସ୍ ମହପାତ୍ରଙ୍କ ପତ୍ରର ପ୍ରତି ଅକ୍ଷରରେ । ବାପୁଜୀ ଓ ଯୀଶୁଖ୍ରୀଷ୍ଟ, ବୁଦ୍ଧ ଓ ରାମକୃଷ୍ଣ, ମୂଳତଃ ଓ ମୁଖ୍ୟତଃ ଏହି ବିଚାରରେ ହିଁ ମହାମାନବ । ଅଗଣିତ ମାନବର ଦୁଃଖ ସେହି ମହାପ୍ରାଣଗୁଡ଼ିକୁ ଅସ୍ଥିର କରି ରଖିଥିଲା ଓ ତାହାହିଁ ନେଇଗଲା ସେମାନଙ୍କୁ, ବ୍ୟକ୍ତିଗତ କ୍ଷୁଦ୍ରତାରୁ ବିଶ୍ୱବ୍ୟାପ୍ତ ମହାପ୍ରାଣତାକୁ ।

ଅଗଣିତ ଜୀବାଶ୍ରୟ ଆମର ଏହି ଜନନୀ ବସୁନ୍ଧରା, ମନୁଷ୍ୟ-କଳ୍ପନାତୀତ ଏକ ସୀମାହୀନ, ବିରାଟ-ବିସ୍ତୃତ ସୃଷ୍ଟିର ଏକ ଉପେକ୍ଷଣୀୟ ସାମାନ୍ୟ ଅଂଶମାତ୍ର । ଯେଉଁ ଅଦୃଶ୍ୟ ଶକ୍ତି, ମହାବ୍ୟୋମରେ-କ୍ଷିପ୍ରବେଗରେ-ଅହରହ-ଘୂର୍ଣ୍ଣିତ, କୋଟି କୋଟି ବ୍ରହ୍ମାଣ୍ଡର ନିୟାମକ, ରକ୍ଷକ ଓ ଚାଳକ, ସେହି ମଧ ଏହି କ୍ଷୁଦ୍ର, ସାମାନ୍ୟ ପୃଥିବୀ ଗ୍ରହର ଚାଳକ ଏବଂ ସେହି ମଧ ତମ ଓ ମୋ ସହିତ, ମନ୍ତ୍ରୀ ଓ ବଡ଼ାସାହେବମାନଙ୍କର ଏକମାତ୍ର ଚାଳକ । ସମଗ୍ର ସୃଷ୍ଟିରେ ଗୋଟିଏ ଶକ୍ତିହିଁ କାର୍ଯ୍ୟକାରୀ । ଷ୍ଟାଲିନ୍-ହିଟ୍‌ଲର୍-କ୍ରୁଶ୍ଚେଭ-ଚାଉ-ମାଉ-ରଥ-ପାଣିଗ୍ରାହୀ-ପଟ୍ଟନାୟକର-ଦଳ ନିଜକୁ ସେହି ଶକ୍ତିର ପ୍ରତିଦ୍ୱନ୍ଦ୍ୱୀ ବା ସମାନ୍ତରାଳ ଭାବିବା ଓ ଆମର ସେହି ଧାରଣାରେ ସେମାନଙ୍କର ବନ୍ଦନା କରିବା, କେବଳ ଚୈନ୍ତିକ ଶିଶୁତ୍ୱ ଛଡ଼ା ଆଉ କିଛି ହୋଇନପାରେ ।

ଏହି ଜଗତର ସେହି ଅଜ୍ଞେୟ, କିନ୍ତୁ ଅତି-ବାସ୍ତବ ନିୟାମକ ନିକଟରେ ଆମ ପ୍ରତ୍ୟେକର ବିଚାର, ଆମର ସମ୍ପୃକ୍ତ ଗୋଷ୍ଠୀ, ଦେଶ ବା ସଂଘ ଜରିଆରେ ହେବାର କୌଣସି ଯୁକ୍ତି ନାହିଁ । ସେହି ପରମସ୍ରଷ୍ଟା ଓ ପାଳକ, ଏହି ସୀମାହୀନ-ସୃଷ୍ଟି-ବୃତ୍ତର ଏକମାତ୍ର କେନ୍ଦ୍ର । ଆମର ପରିଚିତ ସୂର୍ଯ୍ୟର କ୍ଷୁଦ୍ର ସୌରଜଗତ ପରି, ଆମେ ପ୍ରତ୍ୟେକଟି ଜୀବ ମଧ ସ୍ରଷ୍ଟାର ଚାରିପାଖେ ଘୂରିବୁଲୁଥିବା ଏକ ଏକ ଅତି କ୍ଷୁଦ୍ର ଅଥଚ ସ୍ୱାତନ୍ତ୍ର୍ୟ-ସଚେତନ ଜ୍ୟୋତିଷ୍କ । ଆମେ ପ୍ରତ୍ୟେକେ ପୁଣି ଆମ ନିଜ ନିଜ କ୍ଷୁଦ୍ର ପରିଧି ଭିତରେ, ଆମର ବିରାଟ ସୌରଜଗତ ପରି, ଛୋଟ ହେଲେହେଁ, ଏକ ଏକ ସ୍ୱତନ୍ତ୍ର ସଂସାର । ମହାବ୍ୟୋମରେ—ଚିର-ଘୂର୍ଣ୍ଣିତ, ଅଗଣିତ, ପ୍ରତ୍ୟେକଟି ସୌରସଂସାର ପରି, ପ୍ରତ୍ୟେକ ମନୁଷ୍ୟ ମଧ, ସେହି କେନ୍ଦ୍ରସ୍ଥ ପରମପୁରୁଷଙ୍କ ନିକଟରେ ନିଜର ସ୍ୱତନ୍ତ୍ରତା ଦେଇହିଁ ସମ୍ପୃକ୍ତ । ସେହି ସ୍ୱତନ୍ତ୍ରତାହିଁ ହେଉଛି ଆମ ପ୍ରତ୍ୟେକଙ୍କର 'ବ୍ୟକ୍ତିତ୍ୱ' । ପ୍ରତି 'ବ୍ୟକ୍ତି'ର, ସ୍ୱତନ୍ତ୍ର ବିଶିଷ୍ଟତା ଆସେ ତାର 'ବ୍ୟକ୍ତି' ବା ପ୍ରକାଶର ସୌନ୍ଦର୍ଯ୍ୟ ଓ ଭିନ୍ନତାରୁ । ଏ ଧରାର ଅଗଣନୀୟ 'ବ୍ୟକ୍ତି'ର ଭିତରେ ସେହି ପରମସ୍ରଷ୍ଟାହିଁ ଅଗଣିତଭାବରେ ବ୍ୟକ୍ତ ।

ସେଥିପାଇଁ ପ୍ରତ୍ୟେକଟି ବ୍ୟକ୍ତି, ବରଣୀୟ; ପ୍ରତ୍ୟେକ ମନୁଷ୍ୟ ପୂଜ୍ୟ; ପ୍ରତ୍ୟେକ ଜୀବ ମଧ୍ୟ ଆମର ପ୍ରେମ ଓ ସମ୍ମାନ ଦାବି କରେ ।

ଏଇ ବ୍ୟକ୍ତିତ୍ୱକୁ ଓ ତାହା ନେଇ ସ୍ରଷ୍ଟାଙ୍କ ସହିତ ଆମ ପ୍ରତ୍ୟେକର ସମ୍ପର୍କକୁ ଅକଳୁଷ, ରସମୟ, ସ୍ୱାଭାବିକ ଓ ଐଶ୍ୱର୍ଯ୍ୟବନ୍ତ କରି ରଖିବାରେ ହିଁ ବିଶ୍ୱସ୍ରଷ୍ଟା ସମ୍ମୁଖରେ ମନୁଷ୍ୟର ପ୍ରକୃତ ପରୀକ୍ଷା ।

## ସମ୍ରାଟ୍ ଗାନ୍ଧି –

ତେଣୁ, କୌଣସି ବ୍ୟକ୍ତି, ମନୁଷ୍ୟଗଢ଼ା, ସଂକୀର୍ଣ୍ଣ-ଗୋଷ୍ଠୀ-ସଙ୍ଘ-ଧର୍ମ-ସମାଜ ବା କୁଟୁମ୍ବ ଅନୁରୋଧରେ ନ୍ୟୂନତମ ମନୁଷ୍ୟ ପ୍ରତି ମଧ୍ୟ ଅନ୍ୟାୟ କରି ପରମପୁରୁଷଙ୍କ ଦୃଷ୍ଟିରେ ବ୍ୟକ୍ତିଗତଭାବରେ କ୍ଷମା ପାଇବାର ଆଶା କରିନପାରେ । ଜୀବ ଓ ମାନବ ପ୍ରତି ଅନ୍ୟାୟହିଁ ସେହି ଈଶ୍ୱରଙ୍କ ଦୃଷ୍ଟିରେ ଏକମାତ୍ର ପାପ ବୋଲି ମୁଁ ମନେକରିଆସିଛି । କାରଣ, ପ୍ରତ୍ୟେକ ଜୀବହିଁ ଏକ ଏକ ସୀମିତ, କ୍ଷୁଦ୍ରୀଭୂତ ଈଶ୍ୱର ମାତ୍ର । ଜୀବ ଓ ପରମର ସମ୍ପର୍କ, ଏକାନ୍ତ ଭାବରେ ବ୍ୟକ୍ତିଗତ ସମ୍ପର୍କ । ସେ ସମ୍ପର୍କ ଦେଶଗତ, ଗୋଷ୍ଠୀଗତ, କୁଟୁମ୍ବଗତ ବା ସଂଘଗତ ହେବାର କୌଣସି ଯୁକ୍ତି ନାହିଁ । ଏକାନ୍ତ ବ୍ୟକ୍ତିଗତ ଥିବାରୁ ହିଁ ସେହି ପରମପୁରୁଷର ଅନୁଭବରେ ଦେଶେ ଦେଶେ ଧର୍ମ-ଗୋଷ୍ଠୀ-ନିର୍ବିଶେଷରେ ବ୍ୟକ୍ତିର ପ୍ରାଣ ହୋଇଉଠେ ଉଦାର, ମଧୁର ଓ ଐଶ୍ୱର୍ଯ୍ୟମୟ ।

ପ୍ରସିଦ୍ଧ ବିଦେଶୀ ସାମ୍ବାଦିକମାନେ କହିଯାଇଛନ୍ତି ଯେ ଦରିଦ୍ର, କୌପୀନଧାରୀ ଗାନ୍ଧୀ ପାଖରେ ଠିଆହେଲେ, ସେମାନେ ଅନୁଭବ କରୁଥିଲେ, ଏକ ସମ୍ରାଟ୍‌ର ଉପସ୍ଥିତି ।

ପ୍ରାଣର ଏ ମହାନ୍ ଐଶ୍ୱର୍ଯ୍ୟ କାହୁଁ ଆସେ ? ଜାତି-(କାଷ୍ଟ)-ଭାଇପାଇଁ ଅନ୍ୟାୟ ଭାବରେ ଚାକିରିଟାଏ ଯୋଗାଡ଼ କରିଦେଲେ ବା ଅନ୍ୟ ଗୋଷ୍ଠୀର ଲୋକକୁ ଆସନର ପ୍ରଭାବରେ ତାର ପ୍ରାପ୍ୟରୁ ବିଚ୍ୟୁତ କରିଦେଲେ ବା ଅନ୍ୟ ଧର୍ମର ଲୋକ ମାତ୍ରେ ମ୍ଳେଚ୍ଛ କାଫେର୍‌ହିଁ ଭାବି ସେମାନଙ୍କୁ ଘୃଣାକଲେ, ସଂକୀର୍ଣ୍ଣ ନୈଷ୍ଠିକତାର ସନ୍ତୋଷ ମିଳିପାରେ, କିନ୍ତୁ ପ୍ରାଣ, ତାର ଉଦାର ଐଶ୍ୱର୍ଯ୍ୟ ନିଶ୍ଚୟ ହରାଇବ ବରଂ ଏହା ନିଶ୍ଚିତ ଯେ, ଅନ୍ୟାୟ ଅତ୍ୟାଚାର ସବୁରେ ଯିଏ ଯେତେଦୂର କୃତକାର୍ଯ୍ୟ ହେଉଥିବ, ସେଇ ପରିମାଣରେ, ସେହି ଆପାତ-ସିଦ୍ଧିମନ୍ତ ମୂର୍ଖ, ଦୂରକୁ ଦୂରକୁ ଯାଉଥିବ, ଈଶ୍ୱରଙ୍କର ସେହି ସ୍ନେହମୟ ସାନ୍ନିଧ୍ୟରୁ, ଯେଉଁ ସାନ୍ନିଧ୍ୟ କି ଦରିଦ୍ର ଗାନ୍ଧୀକି ଦେଉଥିଲା ସମ୍ରାଟ୍‌ର ବ୍ୟକ୍ତିତ୍ୱ ।

ପରମପୁରୁଷଙ୍କର ସର୍ବବ୍ୟାପ୍ତ ଦୃଷ୍ଟି ତଳେ ନିଜକୁ କେହି ଏତେ ଚତୁର ଓ ଶକ୍ତିଶାଳୀ ମନେକରିବା ଉଚିତ ନୁହେଁ ଯେ, ସାମାନ୍ୟତମ ଜୀବ ବା ମନୁଷ୍ୟପ୍ରତି ମଧ୍ୟ ଅନ୍ୟାୟ କରି, କେହି ଅଦଣ୍ଡିତ ରହିଯିବ ।

## ଆତ୍ମାର ପୁଷ୍ଟୀକରଣ –

ପଦ୍ମଫୁଲ ଆମର କୌଣସି ଜୈବିକ ଉପଯୋଗିତାରେ ଆସେନା । ତାହା ଶକ୍ତିର ପରିଚାୟକ ନୁହେଁ । ସେଥିରେ ବିଭୀଷିକା ନାହିଁ – ଅଥଚ ତାହା ପୂଜାର ଉପକରଣ । କାରଣ ସେ ନମ୍ର, ମଧୁର, ସୁନ୍ଦର ଓ ପବିତ୍ର ।

ମନୁଷ୍ୟ-ସମାଜରେ ବିଭବବନ୍ତ, ପ୍ରଭାବବନ୍ତ, ଅତ୍ୟାଚାରକ ଓ ଦାମ୍ଭିକ ଲୋକମାନଙ୍କର ସ୍ଥାନ, କେବଳ ଜାନ୍ତବ ବିଭୀଷିକାର ସ୍ଥାନ । ଭଦ୍ର, ବିନୀତ, ମଧୁର, ନୀରବର ସ୍ଥାନ, ଆଦରର, ପୂଜାର, ଆରଧନାର । ଦାମ୍ଭିକର ଆସନ ପରି, ସେଠି ଜାନ୍ତବ ବିଭୀଷିକା ନ ଥାଇପାରେ, କିନ୍ତୁ ଥାଏ ସ୍ନେହର, ସମ-ବୋଧର, ସମ୍ମାନର ମାଧୁର୍ଯ୍ୟ । କୋମଳ, ରମଣୀୟ ରାଜୀବ, ପ୍ରକୃତିର କଠୋରତା ସହିନପାରି ବେଳେ ମରିଯାଏ । କିନ୍ତୁ ପଙ୍କ ଭେଦକରି ପୁଣି ଫୁଟିଉଠେ ତାର ସେହି ଅନୁପମ ସୁଷମା । ପରିବାର, କୁଟୁମ୍ବ, ସମାଜ, ଦେଶ, ରାଜନୀତି ବା ଶାସନ-ଚୌକି ଇତ୍ୟାଦିର ଘେରିରହିଥିବା, ପରିବ୍ୟାପ୍ତ ଜଞ୍ଜାଳ ଭିତରେ, ବାହାର ଜଗତର ସକଳ ନିର୍ମମତା, ନିଷ୍ଠୁରତା ଓ ହିଂସ୍ର, କୁଟିଳ ବ୍ୟବହାର ଭିତରେ, ଆତ୍ମାର ରାଜୀବ-କଳିକାକୁ ଆମକୁ ସେହିପରି ବାରମ୍ବାର ଫୁଟାଇ ରଖିବାକୁ ହେବ । ଯଦି ଧନ-କ୍ଷମତା-ପ୍ରତିପତ୍ତିର ଆପାତ ଦାମ୍ଭିକତାକୁ ତ୍ୟାଗ କରି, ଆତ୍ମାର ପ୍ରସନ୍ନ ସୌନ୍ଦର୍ଯ୍ୟକୁ, ମନୁଷ୍ୟ ନିଜ ବ୍ୟକ୍ତିତ୍ୱର ସ୍ୱାଭାବିକ ଓ ଐଶ୍ୱରିକ ଅଳଙ୍କାର ବୋଲି ମନେକରେ, ତେବେ ଆତ୍ମା, ବାହାରେ ବାହାରେ ଘଟୁଥିବା ସାମୟିକ ଦୁର୍ଗତି ସତ୍ତ୍ୱେ, କେବେହେଁ ହରାଇବନାହିଁ ତାର ସ୍ୱାଭାବିକ ସୁଷମା ଓ ତାହା ବରାବର ଦେଖାଦେବ ଦାକ୍ଷିଣ୍ୟମୟ ପ୍ରସନ୍ନ ହାସ୍ୟରେ; ଯେପରି କୌପାନବନ୍ତ ଗାନ୍ଧିଠି ଫୁଟିଉଠୁଥିଲା ସମ୍ରାଟ୍‌ର ଗୌରବ ।

ଆତ୍ମାର ସେହି ପୁଷ୍ପୀଭବନ, ସେହି ପ୍ରସନ୍ନତା, ସେହି ସୌନ୍ଦର୍ଯ୍ୟ, ସେହି ଐଶ୍ୱର୍ଯ୍ୟହିଁ ଏକାଧାରରେ ଈଶ୍ୱରଙ୍କ ନିକଟରେ ଆମର ପରମତମ ନୈବେଦ୍ୟ ଓ ସୁଦୀର୍ଘ ଜୀବନଲୀଳାର ଶେଷ ମହିମମୟ ପରିଣତି—ଜୀବର ଶିବତମ ଶିକ୍ଷା, ଶୁଭତମ ପନ୍ଥା ଓ ଶ୍ରେୟତମ ଲକ୍ଷ୍ୟ ।

ଯେକୌଣସି ଶିକ୍ଷାବିତ୍‌ର ଗାଥାର ଏହାହିଁ ହେବ ଶେଷବାଣୀ, ଶେଷ ବକ୍ତବ୍ୟ, ଶେଷ ଇଚ୍ଛା ଓ ଶେଷ ପ୍ରାର୍ଥନା ।

## ଏକବିଂଶ ଅଧ୍ୟାୟର ପରିଶିଷ୍ଟ(୧)

## ପଞ୍ଚଭିକ୍ଷା

ବମ୍ବେର ରାଜ୍ୟପାଳ ଶ୍ରୀ ମହତାବ ଓଡ଼ିଶାକୁ ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ହେବାପାଇଁ ଆସିବାର ଅବ୍ୟବହିତ ପୂର୍ବେ ମେହେର କଲେଜ ପ୍ରିନ୍ସିପାଲ୍ ଶ୍ରୀ ମାନସିଂହଙ୍କର ଓଡ଼ିଆ ଜାତିର ଅଭ୍ୟୁଦୟପାଇଁ ତାଙ୍କ ନିକଟରେ ପାଞ୍ଚୋଟି ଭିକ୍ଷା—

**Dr. M. Mansinha, M.A., Ph.D.** (Durham)
*Principal, G.M. College, Sambalpur*
*August, 24, 1956.*

Dear Sir,

Like every other citizen of Orissa who cherishes in his heart that Orissa and the Oriyas should, not only be masters of their own soil, but march ahead as equals of other races in India and the ¨orld, I am sincerely glad that you are coming back very soon to head the administration of that State.

2. I know, you must have your own particular dreams of Orissa's Progress to the fulfilment of which you will gear your whole energy as well as the machinery of the State administration. But knowing you to be a student and a lover of culture and keen on Orissa's uplift more in the cultural spheres, though not less in the economic, I have thought it fit to present to you a programme of cultural objectives in Orissa for the next five years, which I hope your administration might easily achieve if you just raise the finger of command and which, when accomplished, is likely to usher in a new culture-era in Orissa.

3. The programme is as follows :

**(I) Rebuilding of Konarak and preservation of our artistic monuments –**

(NOTE– We have heard from Sardar Pannikar at a tea-party in the Ravenshaw College that a French Engineer built an exact replica of the Raja Rani temple near Cairo. I remember you enquired about the cost of such a temple in the present times and there were some talks about Konarak also. Since then, I have a burning desire in my heart to see Konarak in her original shape. Dr. Krushna Chandra Panigrahi once told me that it would not be difficult to rebuild Konarak. This task can only be undertaken by a giant like you. Pigmies will not even dare to talk of it, and I am sure if you take it up, it will be accomplished.

The wonderful temple-wall sculptures of Orissa are already in desolation and almost completely worn-out through weather-action. Many marvellous figures that I saw in my younger days are no longer there. The famous war-horses of Konarak are about to break and topple down.

Shouldn't you do something to stop further deterioration and preserve properly these glorious monuments of our forbears– our only pride today ?

Dr. Charles Fabri told me that with the application of some chemicals, the sculptures could be preserved intact for fifty years to come.

If you could bring to Orissa Dr. Fabri and Dr. Panigrahi, I hope, a lot could be done in the artistic and archeological fields of Orissa.)

**(II) Establishment of the State Shahitya Akademi –**

(NOTE– The Utkal University prepared a constitution for the starting of the State Shahitya Akademi under her auspices and it was on the agenda of the Senate in its last annual meeting. But Sree Radhanath Rath, the Minister of Education, demanded that

the Government of Orissa must have its opinion before the Senate passed the constitution and it was withdrawn, after discussion, from the Senate's agenda. Since then the constitution is lying with the Government, to our great frustration. There has been no response to repeated reminders from the University. It is good, any way, that, you may have the glory of ushering in the State Shahitya Akademi.)

**(III) Establishment of a Public School in Orissa –**

(NOTE– I need not try to justify the scheme to you, as I know, you think in the same line. Without such an institution there is no hope of Oriyas standing shoulder to shoulder in All-India Competitions. And unless you take it up it may never materilalise.)

**(IV) Giving a proper shape to the Utkal University –**

Please see to it also that the Promised gift of a full-fledged Techincal Institute from the West German Government to India, comes to Orissa in your time.

**(V)** Reorganising the Utkal Shahitya Samaj or intergrating the old ónstitution with the proposed State Shahitya Akademi. You alone can do either.

I shall be very happy if this programme gets your approval and your assurance to work it out during your regime.

To
Dr. H.K. Mahatab,
Govemor of Bombay,
Bombay.

Yours Sincerely
M. MANSINHA.

[ନୋଟ୍– ଏହି ପତ୍ରର ଉତ୍ତରରେ, ବମ୍ବେ ରାଜ୍ୟପାଳ ଶ୍ରୀ ମହତାବ, ଆଗରୁ ନିଜ ଦସ୍ତଖତରେ ଏକାଧିକ ପତ୍ର ଦେଇଥିଲେହେଁ, ବର୍ତ୍ତମାନ ତାଙ୍କର ପ୍ରାଇଭେଟ୍ ସେକ୍ରେଟାରୀହିଁ ମତେ ଉତ୍ତର ଦେଇଥିଲେ ଯେ, ରାଜ୍ୟପାଳ ଓଡ଼ିଶା ଗଲେ ଏସବୁ ପ୍ରସଙ୍ଗ ଉପରେ ମୋ ସାଥିରେ କଥାଭାଷା ହେବେ। * ଶ୍ରୀ ମହତାବ ଓଡ଼ିଶା ଆସିଲା ବେଳକୁ, ମୁଁ ମେହେର କଲେଜରୁ ଦଣ୍ଡିତ

* Dr. M. Mansinha, M.A., Ph.D.(Durham)
Pricipal, G.M. College,
SAMBALPUR.

RAJ BHAVAN
BOMBAY
August, 29, 1965.

Dear Sir,

The Governor desires me to ackowledge, with thanks, the receipt of your letter, dated the 24th instant and to say that he will be glad to meet you and discuss all the points with you when he comes to Orissa.

With my personal regards,

Yours faithfully,
Sd/- N. Khuntia
Personal Assistant to the
Governor of Bombay.

ଓ ବିତାଡ଼ିତ ହୋଇ କଟକରେ ଅବସ୍ଥିତ ହେଲିଣି । କିନ୍ତୁ ଓଡ଼ିଶା ଦେଶର ମୁଖ୍ୟମନ୍ତ୍ରୀ, ଆମ ପରି କ୍ରିମିନାଲ୍ ସହିତ କଥା ହୁଅନ୍ତେ କିପରି ? ତେଣୁ ଅତ୍ୟନ୍ତ ଯଥାର୍ଥଭାବେହିଁ ଶ୍ରୀ ମହତାବ ଉପର ପତ୍ରରେ ଥିବା ମୋର ପଞ୍ଚ-ଭିକ୍ଷା ଉପରେ ମୋପରି ଏକ ଅପରାଧୀ ସହିତ କୌଣସି ଆଲୋଚନା କରିବା ଉଚିତ ମନେକଲେନାହିଁ । କିନ୍ତୁ ପଞ୍ଚ-ଭିକ୍ଷା ମଧ୍ୟରୁ କେବଳ ଗୋଟିକୁ ଅର୍ଥାତ୍, ବିଶ୍ୱବିଦ୍ୟାଳୟ-ପଠାଇଥିବା ସାହିତ୍ୟ-ଆକାଡ଼େମୀ-ଯୋଜନାଟିକୁହିଁ କାର୍ଯ୍ୟକାରୀ କରିବାକୁ ଯାଇ ତାଙ୍କ ଶାସନ କିପରି ଏକ ଗୌରବାବହ ଅନୁଷ୍ଠାନ ଠିଆକରେଇଲେ, ତାହା ତ ପରିଚିତ କଥା, କି ଅଧିକା କହିବା ? ତେବେ, ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ତଡ଼ି, ଲକ୍ଷ୍ମୀନାରାୟଣ ସାହୁଙ୍କୁ, ସାହୁ ବିତାଡ଼ିତ ହେବା ପରେ ନିଜେ, ପୁଣି ନିଜେ ବି ରହିନପାରି ଶେଷରେ ଜଣେ ଅଲେଖକରହିଁ ଐତିହାସିକ ଓଡ଼ିଆ ଜାତିର ତଥାକଥିତ ଏକ ସାହିତ୍ୟ-ଆକାଡ଼େମୀର ସଭାପତି ହେବା, ଏକ କୌତୁକାବହ ଓ ମର୍ଯ୍ୟାଦାବନ୍ତ ଚଳଚ୍ଚିତ୍ର ନୁହେଁ କି ହେ ଉତ୍କଳଦେଶବାସୀ ? ଏ ପ୍ରକାର କୀର୍ତ୍ତିର ଜୟ-ମାଲ୍ୟ କାହାର ଦାବି ?

## ଏକବିଂଶ ଅଧ୍ୟାୟର ପରିଶିଷ୍ଟ(୨)
## 'ଝଙ୍କାର' ମାସିକ ପତ୍ରର ପାରିଷଦୀୟ ସମ୍ପାଦକମଣ୍ଡଳୀ ବିରୁଦ୍ଧରେ ଶ୍ରୀ ମହତାବଙ୍କୁ ପତ୍ର

ପରମମାନନୀୟେଷୁ,

ଯେପରି ଭାବରେ 'ଝଙ୍କାର' ପରିଚାଳିତ ହେଉଛି, ତାହା ଏ ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବରେ ଓ ସେ ପତ୍ରିକାର ମୁଖ୍ୟ ସମ୍ପାଦକ ଭାବରେ ଆପଣଙ୍କ ସମ୍ମାନ ତ ବଢ଼ାଉନାହିଁ, ବରଂ ଆମ ପରି ସାମାନ୍ୟ ଲୋକ ମଧ୍ୟ ତାହା ସହିତ ସମ୍ପୃକ୍ତ ହେବା ଶ୍ଳାଘ୍ୟ ବିଷୟ ବୋଲି ମନେହେଉ ନାହିଁ । ପୁଣି ସମ୍ପାଦକଭାବରେ ଆମ କେତେ ଜଣଙ୍କର ନାମ * ବ୍ୟବହାର କରି, ଆମ୍ଭମାନଙ୍କୁ ସେ ପତ୍ରିକା ସ୍ପର୍ଶ କରିବାକୁ ନଦେବା ଏକପକ୍ଷରେ ଯେପରି ଏକ ଅନ୍ୟାୟ, ଅପରପକ୍ଷରେ, କିଛି ଅଧିକାର ନଥାଇ କେବଳ ଆଳଙ୍କାରିକ ସମ୍ମାନପାଇଁ ଦାୟିତ୍ୱ ମାନିନେବାର କପଟତା ମଧ୍ୟ ସେପରି ଏକ ଦୂଷଣୀୟ ଦୁର୍ବଳତା । ଅନେକେ 'ଝଙ୍କାର' ପାଇଁ ଲେଖା, ଏବେ ବି ମୋ ପାଖକୁ ପଠାନ୍ତି । ଏଇ ନିକଟରେ କବି ବୈକୁଣ୍ଠନାଥ ପଟ୍ଟନାୟକ 'ଝଙ୍କାର' ପାଇଁ ପଠାଯାଇଥିବା କୌଣସି କବିତାପାଇଁ ମତେ ଆପିଲ୍ କରିଛନ୍ତି । କିନ୍ତୁ, ମୋ ନିଜ ଲେଖା ଛାପିବା ପାଇଁ ମତେ ଯେତେବେଳେ ଆପଣଙ୍କର ପରିଚାଳନା ସମ୍ପାଦକଙ୍କ ମର୍ଜି ଉପରେ ନିର୍ଭର କରିବାକୁ ପଡୁଛି, ମୁଁ କାହାକୁ କି ଉତ୍ତର ଦେବି ?

ଆମ୍ଭେମାନେ ଯେତେବେଳେ ଏପରି ପରିହାର୍ଯ୍ୟ ଓ ଅନାବଶ୍ୟକ, ଆମ ପରି ସାମାନ୍ୟମାନଙ୍କର ନାମ ବ୍ୟବହାର କରି ଆମ୍ଭମାନଙ୍କୁ ବରାବର ଅପମାନିତ କରିବା ଉଚିତ

---

* ସେତେବେଳେ 'ଝଙ୍କାର'ର ସମ୍ପାଦକମଣ୍ଡଳୀରେ ଥିଲେ—ଡକ୍ଟର ସଦାଶିବ ମିଶ୍ର, ଡକ୍ଟର କରୁଣାକର କର ଓ ଏହି ଲେଖକ ଇତ୍ୟାଦି ଚାରି ପାଞ୍ଚଜଣ ଲୋକ । ଶ୍ରୀ ମହତାବ ମୁଖ୍ୟ-ସମ୍ପାଦକ ।

ଦେଖାଯାଉଛି କି ? ଅନ୍ତତଃ ମତେ ଏ ଅପମାନରୁ ମୁକ୍ତି ମିଳିବାକୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି ।

'ଝଙ୍କାର' ଆପଣଙ୍କର ବ୍ୟକ୍ତିଗତ ବିଷୟ । ତାହାର ଆଦର୍ଶ, ତାର ପରିକଳ୍ପନା, ଆପଣ ତାହାପାଇଁ କାହାକୁ ନିଯୁକ୍ତ କଲେ, ସେଥିରେ ଆମର କିଛି କହିବା ଏକାନ୍ତ ଅନଧିକାରଚର୍ଚ୍ଚା । ଏ ବିଷୟରେ ଆପଣ ସମ୍ପାଦକମଣ୍ଡଳୀକୁ କେବେ ପଚାରିନାହାନ୍ତି, ଏଥିପାଇଁ ଏଯାବତ୍ ନୀରବ ରହିଥିଲି; ଯଦିଓ ବହୁକାଳଧରି 'ଝଙ୍କାର' ବିଷୟରେ ଆପଣଙ୍କୁ ମୋର ଅନୁଭୂତି ପରିଷ୍କାର ଭାବରେ ଜଣାଇଦେବାପାଇଁ ଭାବିଆସିଛି । ପ୍ରଜାତନ୍ତ୍ର-ସମ୍ପୃକ୍ତ ଓ ଆପଣଙ୍କର ବିଶେଷ ଅନୁଗତ ଓ ଶୁଭାକାଂକ୍ଷୀଜନଙ୍କର ବହୁ ଅନୁରୋଧରେହିଁ ଏ ପତ୍ର ଲେଖୁଛି । କାରଣ ଯୁକ୍ତି ହେଲା ଯେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରାଷ୍ଟ୍ରିକ କର୍ମରେ ଅହରହ ବ୍ୟସ୍ତ । 'ଝଙ୍କାର'ର ଟିକିନିଖି ଜଞ୍ଜାଳ ବୁଝିବାକୁ ତାଙ୍କର ଉପାୟ ଓ ସୁଯୋଗ କାହିଁ ? ଆମର ଉଚିତ, ଯାହା ଅନୁଚିତ ବୋଲି ଆମର ଅଭିମତ ହେଉଛି, ତାହା ତାଙ୍କ ଦୃଷ୍ଟିକି ଆଣିବା । ଏ ଯୁକ୍ତି ମନକୁ ମାନିବାରୁ, ଏହା ଲେଖିଲି ।

ମୋର ମନେହେଉଛି, ସମ୍ବଲପୁରରେ ଥିଲାବେଳେ ଆପଣଙ୍କୁ ଥରେ ଏ ବିଷୟରେ ଲେଖି ଜଣାଇଥିଲି । ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ମଧ ଏକାଧିକବାର ମୌଖିକ ଭାବରେ ଜଣାଇଥିବାର ମନେପଡୁଛି । ଆପଣଙ୍କ ସମ୍ମାନ ଓ ଝଙ୍କାରର ପ୍ରକୃତ କଲ୍ୟାଣ ଦୃଷ୍ଟିରୁ ମନଖୋଲି କଥା କହିଲି । ଆଶାକରେ ସେହି ଦୃଷ୍ଟିରେ କ୍ଷମା ଦେବେ । ଇତି ।

ଆପଣଙ୍କର ବିଶ୍ୱାସଭାଜନ
ମାୟାଧର ମାନସିଂହ
ତା ୧୪ । ୧୦ । ୧୯୬୦

ଶ୍ରୀଯୁକ୍ତ ଡକ୍ଟର ହରେକୃଷ୍ଣ ମହତାବ
ମୁଖ୍ୟ ସମ୍ପାଦକ 'ଝଙ୍କାର'

## ପରିଶିଷ୍ଟ-୩

## ମହାନୁଭବତାର ଆଉ ଏକ ଦୃଷ୍ଟାନ୍ତ

ବାଲେଶ୍ୱର
୧୨, ଅଗଷ୍ଟ

ବନ୍ଧୁ,

କବି ହୋଇଥିଲେ କବିତାରେ ଲେଖି ଆପଣଙ୍କୁ ସମ୍ବର୍ଦ୍ଧନା କରିଥାନ୍ତି । କବିତା ଲେଖି ଜାଣେନି, କିନ୍ତୁ କବିତାରେ ଆନନ୍ଦ ପାଏ ଢେର୍: ସେଥିପାଇଁ ଆପଣଙ୍କୁ ଏହି ଚିଠି ଲେଖୁଛି— ଆପଣଙ୍କ ନିକଟରେ ଅପରିଚିତ ବା ଅର୍ଦ୍ଧପରିଚିତ ହେବା ସତ୍ତ୍ୱେ ଏହି ଚିଠି ନଲେଖି ରହିପାରୁନି ।

'ଧୂପ' ଖଣ୍ଡିଏ ପ୍ରାୟ ମାସେ ହେଲା କିଣିଥିଲି । ଅନ୍ୟ କଥାରେ ବିବ୍ରତ ଥାଇ ଦୁଇ ତିନୋଟି କବିତା ଛଡ଼ା ଆଉ ପଢ଼ିପାରିନଥିଲି । ଆଜି ଅବସର ବେଳେ 'ଧୂପ'ଟିରୁ ପ୍ରାୟ ସମସ୍ତ ଗନ୍ଧ ନେଇ ଅନ୍ତର ଭରିଦେଲି । କି ସୁନ୍ଦର ସେ ଗନ୍ଧ ! ''ସହକାର-ତଳ-ବାୟୁ ଉଚ୍ଛଳ'' ହେଲାପରି,

ପ୍ରାଣ ମୋର ବିହ୍ୱଳ ହୋଇଯାଇଅଛି, 'ପ୍ରିୟାର ଗନ୍ଧେ' ନୁହେଁ, ପ୍ରିୟର ଛନ୍ଦରେ । 'ଧୂପ' କିଣିଲା ଦିନ, ଦୁଇ ତିନୋଟି କବିତା ପଢ଼ି ଅତି ଖୁସୀ ହୋଇଥିଲି । ଆଜି ତାହାର ପରିଣତି ହେଲା, ଆନନ୍ଦ ବିଭୋରରେ । ଯୌବନର ଆଦି କ୍ଷୁଧାର ଚିତ୍ରଣ ଓ କ୍ଷୀଣ ବିଷାଦର ଉଚ୍ଛ୍ୱାସ, ବହିଟିକୁ ଜୀବନ୍ତ ଓ ରସମୟ କରିରଖିଛି । ସବୁଠାରୁ ଚମତ୍କାର ହୋଇଛି ଲେଖାର flow । ମୋର ମନେହୁଏ ଏତେ ସହଜ ସୁନ୍ଦର flow ଥାଇ କବିତା ଖୁବ୍ କମ୍ ବାହାରିଛି ଆମ ଓଡ଼ିଆରେ,– ଅନ୍ତତଃ ମୁଁ କମ୍ ଦେଖିଛି । X X ''ପ୍ରେମର ପରିମାପ'' କବିତାଟି ମୁଁ ପ୍ରାୟ ଦଶଥର ପଢ଼ିଛି, ଯେପରି ପଢ଼ିଛି ଅନ୍ୟ କେତୋଟି 'ସହକାର ତଳେ', 'ବସନ୍ତ ବିରହୀ', 'ଆଷାଢ଼ ଅଭିସାର', 'ଗୋପନ କଥା', 'ତରୁଣ କବିର ଆଶା', 'ବନ୍ଦିନୀ ପ୍ରିୟା', 'ପାପ ଓ ପ୍ରେମ' ଇତ୍ୟାଦି କବିତାରେ ଛନ୍ଦ ଓ ଲୀଳା ବେଶ୍ catching...

ମୋର ସ୍ନେହ ଜାଣିବେ । ଈଶ୍ୱର ଆପଣଙ୍କ ଶକ୍ତିକୁ ବର୍ଦ୍ଧିତ କରନ୍ତୁ । 'ଧୂପ'ର କ୍ଷୀଣ ତେଜ, କବିତାର ବିରାଟ ଯଜ୍ଞରେ ଜଳିଉଠୁ, ସେ ଆଲୋକରେ ଉତ୍କଳର ପୁରପଲ୍ଲୀ ଉଦ୍‌ଭାସିତ ହୋଇଉଠୁ ।

ଆପଣଙ୍କର

ହରିହର ମହାପାତ୍ର

ମୁଁ ଆଜି ୮ / ୧୦ ଦିନ ପାଇଁ

ପୋ– ଦୋଲସାହି, ଜି- ବାଲେଶ୍ୱର

ମୁକାମକୁ ଯାଉଅଛି ।

ପୁ– ଆପଣଙ୍କ 'ପ୍ରଗତି ସଂଘ' ସମ୍ବନ୍ଧରେ ମୋର ସ୍ପଷ୍ଟ ଧାରଣା ନାହିଁ । କିନ୍ତୁ ଯାହା ଅଳ୍ପ ଶୁଣୁଛି ସେଥିରେ ମୋର ପୂର୍ଣ୍ଣ ସହାନୁଭୂତି ରହିଛି । — ହରିହର ମହାପାତ୍ର

[ନୋଟ୍–ଅନୁମାନ, ଏ ଚିଠି ୧୯୩୩/୩୪ ସାଲର । ଜଷ୍ଟିସ୍ ଶ୍ରୀ ମହାପାତ୍ର ସେତେବେଳେ ମତେ 'ଆପଣ' ସମ୍ବୋଧନ କରିଥିଲେ । ଏବେ ପ୍ରିୟତର 'ତମେ' କହି ଲେଖକର ଆତ୍ମାକୁ ସନ୍ତୋଷ ଦେଇଥାନ୍ତି । ରେଭେନ୍ସା କଲେଜରେ ପଢ଼ିଲାବେଳେ ଆମେ କେତେକ (ସର୍ବଶ୍ରୀ ରତ୍ନାକର ଷଡ଼ଙ୍ଗୀ, ଚଣ୍ଡେଶ୍ୱର ମିଶ୍ର, ସଂଗ୍ରାମ କେଶରୀ ରାୟ, ଉଦୟନାଥ ରଥ, ଦାଶରଥି ପାଠୀ, ଶରତଚନ୍ଦ୍ର ମହାରଣା, ସାଧୁଚରଣ ମହାନ୍ତି ଓ ଲେଖକ ଇତ୍ୟାଦି) ଏକ 'ପ୍ରଗତି ସଂଘ' ଗଢ଼ିଥିଲୁ । ମୋର ପ୍ରଥମ ଦୁଇ ପୁସ୍ତକ, 'ରାଜକବି' ଓ 'ଧୂପ' ଏହି ପ୍ରଗତି ସଂଘ ପକ୍ଷରୁହିଁ ପ୍ରକାଶିତ ହୋଇଥିଲା । କଲେଜ୍ ଛାଡ଼ିବା ପରେ 'ପ୍ରଗତି'ର ଅବସାନହିଁ ହେଲା ସ୍ୱାଭାବିକ ଗତି । ଜଷ୍ଟିସ୍ ଶ୍ରୀ ମହାପାତ୍ର ସେହି ବହୁକାଳୁ-ମୃତ ପ୍ରଗତି-ସଂଘର କଥାହିଁ ପତ୍ରରେ ଉତ୍‌ଥାପନ କରିଛନ୍ତି ।]

# ଏକବିଂଶ ଅଧ୍ୟାୟ ପରିଶିଷ୍ଟ-୪

# ଜ୍ଞାନପୀଠର ଆଦର୍ଶ

ଶିକ୍ଷାନୁଷ୍ଠାନ କିପରି ହେବା ଉଚିତ, ଛାତ୍ର-ଶିକ୍ଷକର ଆଦର୍ଶ ସମ୍ପର୍କ, ବିଦ୍ୟାପୀଠରେ ରାଜନୀତିର ସ୍ଥାନ ଓ ଶିକ୍ଷାର ମାନଦଣ୍ଡ କିପରି ହେବା ଉଚିତ, ଏସବୁ ଉପରେ ସ୍ପଷ୍ଟତର ଧାରଣା ପାଇଁ ପାଠକମାନଙ୍କୁ ନିମ୍ନଲିଖିତ କତିଂଟି ଉପହାର ଦେଇହିଁ, ବିଦାୟ ନେଉଛି –

## ଆମେରିକାର କଲେଜ ଜୀବନ –

ସେଠାରେ ଲୋକେ ଡିଗ୍ରୀକୁ ମୂଲ୍ୟ ନ ଦେଇ କାର୍ଯ୍ୟଦକ୍ଷତାକୁ ମୂଲ୍ୟ ଦିଅନ୍ତି ।
ସମ୍ବଲପୁର କଲେଜରେ ଅଧ୍ୟାପକ ବାସ୍କେଟିଙ୍କ* ଭାଷଣ ।

ସମ୍ବଲପୁର, ତା ୧୧ । ୧–ଶିକ୍ଷା ସପ୍ତାହର ଦ୍ୱିତୀୟ ଦିବସରେ ଆମେରିକାର ଅଧ୍ୟାପକ ଫ୍ଲଏଡ୍ ବାସ୍କେଟି 'ଆମେରିକାର କଲେଜ ଜୀବନ' ସମ୍ପର୍କରେ ଏକ ଭାଷଣ ଦେଇଥିଲେ ।

ପ୍ରଥମେ ବିଶ୍ୱବିଦ୍ୟାଳୟର ଡିଗ୍ରୀ ବିଷୟରେ ସେ କହିଲେ ଯେ, ଆମେରିକାର ଲୋକେ ଡିଗ୍ରୀକୁ ମୂଲ୍ୟ ନଦେଇ କାର୍ଯ୍ୟଦକ୍ଷତାକୁ ମୂଲ୍ୟ ଦିଅନ୍ତି । ଏପରିକି ଯେଉଁମାନେ ଡିଗ୍ରୀ ପାଇଥାନ୍ତି, ସେମାନେ ନିଜ ନାମ ପଛରେ ଡିଗ୍ରୀ ଲେଖନ୍ତିନାହିଁ, ଯେପରିକି ଭାରତର ଲୋକେ କରିଥାନ୍ତି । କଲେଜ-ଜୀବନ, ମନୁଷ୍ୟ ଜୀବନର ଏକ ସନ୍ଧି ସମୟ । ସେତେବେଳେ ବାଳକ ମନୁଷ୍ୟ ହୁଏ ଓ ବାଳିକା ନାରୀ ହୁଏ । ଚାକିରି ଏବଂ ବ୍ୟବସାୟପାଇଁ ବିଶ୍ୱବିଦ୍ୟାଳୟର ମୂଲ୍ୟ ଥାଉ ବା ନଥାଉ, ପରେ ସୁଖମୟ ଜୀବନ ସୃଷ୍ଟି କରିବା ପାଇଁ କଲେଜ-ଶିକ୍ଷା ସେମାନେ ଗ୍ରହଣ କରନ୍ତି । କଳା, ବିଜ୍ଞାନ, ଇତିହାସ ଓ ଭୂଗୋଳ ପଢ଼ି ମନୁଷ୍ୟ ଜୀବନକୁ ଯେତିକି ବୁଝେ ଓ ଉପଲବ୍ଧି କରେ, ସେତିକି ସୁଖୀ ହୁଏ । କଲେଜରେ ପଢ଼ିବା ବିଶେଷ ସମ୍ମାନଜନକ ବୋଲି ଆମେରିକାନ୍‌ମାନେ ମନେକରନ୍ତି । ବକ୍ତାଙ୍କ ପିତା କଲେଜରେ ପଢ଼ିନଥିଲେ, ମାତ୍ର ପୁତ୍ରମାନଙ୍କୁ ପଢ଼ାଇ ସମ୍ମାନ ପାଇବେ ବୋଲି ଆଶାକରିଥିଲେ । ଆମେରିକାରେ ବିଶ୍ୱବିଦ୍ୟାଳୟ ଶିକ୍ଷା ବହୁ ଅର୍ଥସାପେକ୍ଷ । ଘରେ ରହି ଖାଇପିଇ ପଢ଼ିଲେ ମଧ ମାସକୁ ଅନ୍ୟୂନ ପାଞ୍ଚଶତ ଟଙ୍କା ପଡ଼େ ବୋଲି ସେ କହିଲେ ।

କଲେଜ ଛୁଟି ସମ୍ପର୍କରେ ସେ କହିଲେ ଯେ, ଖ୍ରୀଷ୍ଟମାସ ଛୁଟିରେ ମଧ କଲେଜ ଚାଲୁଥାଏ । ପିଲା ଚାହିଁଲେ ଛୁଟିରେ ପଢ଼ିପାରେ । ଆମ ଦେଶରେ ଯେପରି ଭଉଣୀ-

---

* ଅଧ୍ୟାପକ ବାସ୍କେଟି, ଆମେରିକାନ୍ । ସେତେବେଳେ ସେ ନାଗପୁର ବିଶ୍ୱବିଦ୍ୟାଳୟରେ ସାମ୍ବାଦିକତାର ପ୍ରଫେସର ଥିଲେ । ମେହେର କଲେଜରେ ଭାଷଣ ଦେବାପାଇଁ ମୁଁ ତାଙ୍କୁ ଆମନ୍ତ୍ରଣ କରି ଆଣିଥିଲି । ଲେଖକ ।

ବାହାଘର, ଗୋସେଇଁମାର ଶୁଦ୍ଧିପାଇଁ ପିଲାଏ ଛୁଟି ନେଇଯାନ୍ତି, ସେ ପ୍ରକାର ଛୁଟି ତାଙ୍କ ଦେଶରେ ମିଳେ ନାହିଁ । ପିଲାକୁ ବହୁତ କାମ କରିବାକୁ ଦିଆଯାଏ । ଜଣେ ପିଲା, କଲେଜ କ୍ଲାସ୍‌ରେ ତିନିଥର ଅନୁପସ୍ଥିତ ରହିଲେ କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଆଯାଏ ।

ଭାରତରେ କଲେଜ ପିଲାମାନେ କେବଳ ପରୀକ୍ଷା ପୂର୍ବରୁ ପଢ଼ନ୍ତି । ପ୍ରକୃତ ଶିକ୍ଷା ପାଇଁ ଏ ପ୍ରକାର ଶିକ୍ଷାପଦ୍ଧତି ନିତାନ୍ତ ଅନନୁକୂଳ । ଆମେରିକାରେ ପ୍ରତିଦିନ ପିଲାଙ୍କର କାମ ପରୀକ୍ଷା କରାଯାଏ । ସାପ୍ତାହିକ, ମାସିକ, ତ୍ରୈମାସିକ ଏବଂ ବାର୍ଷିକ –ଏହିପରି ବହୁ ପରୀକ୍ଷାରେ ସେମାନଙ୍କର ଜ୍ଞାନ ପରୀକ୍ଷା କରାଯାଇ, ଶେଷରେ ଚାରିବର୍ଷର ପାଠ ଏକାବେଳକେ ଆଦାୟ କରାଯାଏ । ପରୀକ୍ଷାକୁ ଆମେରିକାରେ ବେଶି ଖାତିର ନଥାଏ । ଦୈନନ୍ଦିନ ପାଠପଢ଼ାକୁ ବେଶି ଖାତିରି କରାଯାଏ । ଜଣେ ଛାତ୍ର ଯଦି ପ୍ରତିଦିନ ଭଲ ପଢୁଛି, ନିୟମିତ କ୍ଲାସ୍‌କୁ ଆସୁଛି, ସେ ପରୀକ୍ଷା ନ ଦେଲେ କିଛି ଯାଏଆସେ ନାହିଁ । ସେ ଦୈନନ୍ଦିନ କାର୍ଯ୍ୟ-କୁଶଳତା ଉପରେ ହିଁ ଡିଗ୍ରୀ ପାଇଥାଏ । ଡିଗ୍ରୀ ପାଇଁ, ପରୀକ୍ଷା କେବଳ ଏକମାତ୍ର ପନ୍ଥା ନୁହେଁ । ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ ପାସ୍ ନମ୍ବର ୩୦, ମାତ୍ର ଆମେରିକାରେ ପାସ୍ ନମ୍ବର ୭୫(ପଞ୍ଚସ୍ତରି) । ସେଠାରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ନାହିଁ, ଅଛି ଏ, ବି,ସି, ଡି । 'ଏ' ଅର୍ଥ ଅସାଧାରଣ, 'ବି' ଅର୍ଥ ସାଧାରଣଙ୍କଠାରୁ ଭଲ, 'ସି' ଅର୍ଥ ସାଧାରଣ ଏବଂ 'ଡି' ଅର୍ଥ ଫେଲ୍ । ଗୋଟିଏ ଗୋଟିଏ ପିଲାର ବର୍ଷଯାକ କାମ ଦେଖି ପ୍ରଫେସର ଯଦି କହିଦିଅନ୍ତି ଯେ, ତାର କାମ ସନ୍ତୋଷଜନକ ହୋଇଛି, ତେବେ ସେ ପାସ୍ କରିଯାଏ ।

କଲେଜରେ ବହୁତ ବୃତ୍ତି ଓ ସାହାଯ୍ୟ ଦିଆଯାଏ । ଦଶହଜାର ପିଲାଙ୍କ ମଧ୍ୟରୁ ଦୁଇହଜାର ପର୍ଯ୍ୟନ୍ତ ପିଲା ବୃତ୍ତି ପାଆନ୍ତି । ଆମେରିକାରେ ଶ୍ରମର ମୂଲ୍ୟ ବହୁତ ଉଚ୍ଚରେ। ତେଣୁ ଛାତ୍ରମାନେ ପଇସା ପାଇଁ ଯେକୌଣସି କାମ କରିବାକୁ ଅସମ୍ମାନ ବୋଧ କରନ୍ତି ନାହିଁ । ଘାସ କାଟିବା, ବିଲରେ କାମ କରିବା, ରାସ୍ତା ତିଆରି କରିବା, ଦୋକାନରେ ବା କଳକାରଖାନାରେ କାମ କରିବା ପ୍ରଭୃତି ଯେକୌଣସି କାମ କରି ସେମାନେ ରୋଜଗାର କରନ୍ତି ।

ଅନେକ ଛାତ୍ରଛାତ୍ରୀ ଖାଲି ଡିଗ୍ରୀ ପାଇଁ ବିଶ୍ୱବିଦ୍ୟାଳୟକୁ ନ ଆସି ଜୀବନସାଥୀ ଖୋଜିବା ପାଇଁ ବା ସାମାଜିକ ମିଳାମିଶାର ସୁଖ ପାଇଁ ଆସିଥାନ୍ତି । ନେତାମାନେ କେବେ କଲେଜରେ ଭାଷଣ ଦେଇ ଛାତ୍ରମାନଙ୍କୁ ରାଜନୀତିକ ଦଳାଦଳି ଶିଖାନ୍ତି ନାହିଁ । ଆମେରିକାନ୍ କଲେଜ ଛାତ୍ରମାନେ ଷ୍ଟ୍ରାଇକ୍ କ'ଣ ଜାଣନ୍ତି ନାହିଁ । ବାସ୍କେଟି କହିଲେ ଯେ, ସେ ଘରକୁ ଫେରିଗଲେ, ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ଛାତ୍ରଙ୍କ ଷ୍ଟ୍ରାଇକ୍ ବିଷୟରେ ସୁନ୍ଦର ଗପ ଲେଖି ଆମେରିକାର ପିଲାମାନଙ୍କୁ ଶୁଣାଇବେ । ଆମେରିକା ବିଶ୍ୱବିଦ୍ୟାଳୟ ସମ୍ପୂର୍ଣ୍ଣ ଗଣତାନ୍ତ୍ରିକ–

ତହିଁରେ ରାଜନୀତିର ସ୍ପର୍ଶ ପର୍ଯ୍ୟନ୍ତ ନାହିଁ, ଗଭର୍ଣ୍ଣର କିମ୍ବା ମନ୍ତ୍ରୀମାନଙ୍କର ସେଠି ସ୍ଥାନ ନାହିଁ। ଯୁବକମାନଙ୍କୁ ଦଳଗତ-ରାଜନୀତି-ପ୍ରଭାବିତ କରିବା ପାଇଁ ସେଠି କିଛି ନଥାଏ ।

ସେ କହିଲେ ଯେ, ଆମେରିକାରେ ଛାତ୍ର ଶିକ୍ଷକ ସମ୍ପର୍କ ଅତି ମଧୁର ଓ ଅତି ଆପଣାର। ଶିକ୍ଷକ, ପିଲାଙ୍କ ଡାକ ନାଁ ଧରି ଡାକନ୍ତି ଓ ପିଲାମାନେ ବି ଶିକ୍ଷକଙ୍କୁ ସେମିତି ଡାକିଥାନ୍ତି। ଛାତ୍ର ଓ ଶିକ୍ଷକ ସବୁବେଳେ ଅନୁଭବ କରନ୍ତି ଯେ, ଦେଶକୁ ଗଢ଼ିବା ପାଇଁ ଉଭୟଙ୍କର ମଧୁର ପାରସ୍ପରିକ ସହାୟତା ଏକାନ୍ତ ଲୋଡ଼ା । କଲେଜରୁ ଚାଲିଯିବା ପରେ ମଧ୍ୟ ଭିନ୍ନ ଭିନ୍ନ ବ୍ୟବସାୟରେ ଉତ୍ତରୋତ୍ତର ଉନ୍ନତି କରିବା ପାଇଁ ଅଧ୍ୟାପକମାନେ ଛାତ୍ରଙ୍କୁ ସାହାଯ୍ୟ କରନ୍ତି ।

ଗଙ୍ଗାଧର ମେହେର କଲେଜରେ ରଖାଯାଇଥିବା ସାମାଜିକ ନିୟମାବଳୀ ଦେଖି ଭାରି ଖୁସି ହୋଇ ଅଧ୍ୟାପକ ବାସ୍କେଟି କହିଲେ ଯେ, ଏହି ପ୍ରକାର ନିୟମ ସୁସ୍ଥ ସାମାଜିକ ଜୀବନ ଗଠନ କରିବା ପାଇଁ ବିଶେଷ ସାହାଯ୍ୟ କରିବ । ଏ ନିୟମାବଳୀରେ ଯେ ପ୍ରକାର ଜୀବନ କଳ୍ପନା କରାଯାଇଛି, ଆମେରିକାରେ ତାହା ଦୈନନ୍ଦିନ ଘଟଣାରେ ପରିଣତ ହୋଇଛି ।

(ସମାଜ, ୧୩ / ୧ / ୧୯୫୪)

---

# ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ

ଯତଃ ପ୍ରବୃତ୍ତିର୍ଭୂତାନାଂ    ଯେନ ସର୍ବମିଦଂ ତତମ୍
ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ    ସିଦ୍ଧିଂ ବିନ୍ଦତି ମାନବଃ ।

—ଗୀତା, ୧୮ । ୪୬ ।

''ଯାହାଙ୍କଠାରୁ ପ୍ରାଣୀମାନେ ଜାତ, ଯାହାଙ୍କଦ୍ୱାରା ସମସ୍ତ ପରିବ୍ୟାପ୍ତ, ମନୁଷ୍ୟ ତାଙ୍କୁ ନିଜର କର୍ତ୍ତବ୍ୟକର୍ମ ପାଳନଦ୍ୱାରା ହିଁ ଅର୍ଚ୍ଚନା କରି ସିଦ୍ଧି ଲାଭକରିଥାଏ ।

# ପୁସ୍ତକ ପ୍ରବେଶ

ଗଡ଼ଜାତମାନଙ୍କର ଏଡୁକେସନାଲ୍ ଆଡ୍‌ଭାଇଜର୍ ଏବଂ ଦକ୍ଷିଣ ଓ ଉତ୍ତର ଓଡ଼ିଶାର ସ୍କୁଲ୍ ଇନ୍‌ସ୍ପେକ୍‌ଟର ଭାବରେ ମତେ ଓଡ଼ିଶାର ଅଧିକାଂଶ ଅଞ୍ଚଳର ପ୍ରାଇମେରୀ, ମିଡ଼୍‌ଲ ଓ ହାଇସ୍କୁଲ୍ ସବୁ ଅନେକ ଦିନ ଧରି ଦେଖିବାର ସୁଯୋଗ ମିଳିଥିଲା । ସ୍କୁଲ୍ ସବୁ ଦେଖି ସାରିଲା ପରେ ଲମ୍ବା ଇନ୍‌ସ୍ପେକ୍‌ସନ୍ ନୋଟ୍ ଲେଖିବାକୁ ପଡ଼େ । କ୍ରମେ ଦେଖିଲି ଯେ, ଅଧିକାଂଶ ସ୍କୁଲ୍‌ରେ ଅନେକାଂଶରେ ସେଇ ଏକା ଦୋଷ, ସେଇ ଏକା ଅଭାବ; ତେଣୁ ଇନ୍‌ସ୍ପେକ୍‌ସନ୍ ନୋଟ୍‌ରେ ମଧ୍ୟ ମତେ ଦୋଷ ପ୍ରଦର୍ଶନ ଓ ଉପଦେଶଦାନ ଛଳରେ ଏକା କଥା ବାରମ୍ବାର କହିବାକୁ ପଡୁଛି । ନିଜର ଶ୍ରମ ଲାଘବ ଓ ସ୍କୁଲ୍‌ମାନଙ୍କର ଉନ୍ନତିବିଧାନ ପାଇଁ ମୁଁ ପରେ ପରେ କେତେଗୁଡ଼ିଏ ସର୍କ୍ୟୁଲାର ଦେଲି । ଇନ୍‌ସ୍ପେକ୍‌ସନ୍ ଲାଇନ୍‌ରୁ ଚାଲିଗଲେ ମଧ୍ୟ କେତେକ ସୁଦକ୍ଷ ହେଡ୍‌ମାଷ୍ଟର ଓ ଶିକ୍ଷକଙ୍କଠାରୁ ସେହି ସର୍କ୍ୟୁଲାରଗୁଡ଼ିକର ଉପଯୋଗିତା ସଂପର୍କରେ ପ୍ରଶଂସା ଶୁଣି, ଇଚ୍ଛା ହେଲା, ସ୍କୁଲ୍ ପରିଚାଳନା ନେଇ ଓଡ଼ିଆରେ ଖଣ୍ଡିଏ ବହି ଲେଖିପକେଇବାକୁ । ଏହି ପୁସ୍ତକଟି ସେହି ଇଚ୍ଛାର ଫଳ ।

ଭାରତବର୍ଷ ଆଜି ସ୍ୱାଧୀନ । ଏ ସ୍ୱାଧୀନତା କେବଳ ଜଣେ ଲୋକର ତ୍ୟାଗ, ଚାରିତ୍ରିକ ମହତ୍ତ୍ୱ ଓ ପ୍ରତିଭା ଯୋଗୁଁ ହିଁ ସମ୍ଭବ ହୋଇଛି କହିଲେ ଅତିଶୟୋକ୍ତି ହେବ ନାହିଁ ବା ସତ୍ୟର ଅପଳାପ ହେବ ନାହିଁ । ସେହି ଲୋକର ଚରିତ୍ରରେ ଆମେ କ'ଣ ଦେଖୁଁ, ଯାହା ଭାରତୀୟ ଜନତାଠାରେ ଦେଖିବାକୁ ମିଳେ ନାହିଁ ? ତାଙ୍କ ଚରିତ୍ରର ବିଶେଷତ୍ୱ କ'ଣ ? ଖାଣ୍ଟି ସତ୍ୟ ପାଇଁ ଶ୍ରଦ୍ଧା ଥିଲେ ମାନିବାକୁ ହେବ ଯେ ବାପୁଜୀଙ୍କ ଚରିତ୍ରର ଯାହା ଅସାଧାରଣ ତାହାର ଛାଞ୍ଚ ଅନେକ ଭାବରେ ୟୁରୋପୀୟ ବା ଖ୍ରୀଷ୍ଟାନ୍ । ଘଣ୍ଟାକଣ୍ଟା ପରି ନିଜକୁ ଦିବା ରାତ୍ର କାମରେ ଲଗେଇବା, କଠୋର ସମୟାନୁବର୍ତ୍ତିତା, ଯେତେ ଛୋଟ କାମଟିଏ ହେଉ ପଛେ ସେଥିରେ ନିପୁଣତା ପାଇଁ ଜାଗ୍ରତ ଦୃଷ୍ଟି, ମାନବ ସେବାକୁ ଶ୍ରେଷ୍ଠ ଧର୍ମ ମନେକରିବା, କଠୋର ଡିସିପ୍ଲିନ୍‌ରେ ବିଶ୍ୱାସ, ହସ୍ତକର୍ମ ପ୍ରତି ଗଭୀର ଶ୍ରଦ୍ଧା ପ୍ରଭୃତି ଯାହା କିଛି ଏକାନ୍ତ ଗାନ୍ଧୀୟ ଗୁଣ, ତାହା ସାଧାରଣ ଭାରତୀୟ ଚରିତ୍ରରେ ଦେଖାଯାଏ ନାହିଁ । ୟୁରୋପୀୟ ଶିକ୍ଷା ଓ ଦୀର୍ଘକାଳ ଉଚ୍ଚସ୍ତରର ୟୁରୋପୀୟମାନଙ୍କ ସଙ୍ଗେ ସହବାସ ଫଳରେ ଗାନ୍ଧି ଚରିତ୍ରରେ ଏଇ ସବୁ ୟୁରୋପୀୟ ଗୁଣ ସ୍ୱାଭାବିକ ହୋଇପଡ଼ିଥିଲା । ବାପୁଜୀଙ୍କ ଉତ୍ତରାଧିକାରୀ ଜବାହରଲାଲଙ୍କଠାରେ ମଧ୍ୟ ଆମେ ତାହାହିଁ ଦେଖୁ । ବାପୁଜୀ ଓ ନେହେରୁଙ୍କ ଭିତରେ ଏକମାତ୍ର ବିରାଟ ଫାଙ୍କ ହେଉଛି ବାପୁଜୀଙ୍କର ଗଭୀର ଆଧ୍ୟାତ୍ମିକତା, ଯାହାକି ଏକାନ୍ତ ଭାବରେ ଭାରତୀୟ, ଯଦିଓ ଏଇ ଗୁଣ ୟୁରୋପୀୟ ଚରିତ୍ରରେ ଯେତେ ଅଭାବ ବୋଲି ଆମେ ମନେକରୁଁ, ତାହା ନୁହେଁ । ସେ ଯାହାହେଉ, ବାପୁଜୀ ଭାରତୀୟ ଜନତା ଉପରେ ଯାଦୁକର ପରି ଯେ କାମ କରିଗଲେ ତାହା ଏହି ଯୋଗୁଁ ଯେ, ସେ ଥିଲେ ଜଣେ ଧାର୍ମିକ ସନ୍ନ୍ୟାସୀ, ଜଣେ ମହାନ୍ ଭକ୍ତ ।

ସେଇତକ ଛାଡ଼ିଦେଲେ ଗାନ୍ଧି ଓ ନେହେରୁ ଉଭୟେ ସେମାନଙ୍କ ଚାରିତ୍ରିକ ବିଶେଷତ୍ୱରେ କମ୍ ଭାରତୀୟ ଓ ଅଧିକ ୟୁରୋପୀୟ ।

ଏସବୁ ମୁଁ କହୁଛି ଏଇ କାରଣରୁ ଯେ 'ଶିକ୍ଷିତ' ଲୋକ କାହାକୁ କହିବା ତାହାର ଏକ ଜୀବନ୍ତ ଦୃଷ୍ଟାନ୍ତ ଦେଶର ସହସ୍ର ସହସ୍ର ଶିକ୍ଷକଙ୍କ ଆଗରେ ଜାଗ୍ରତ ଭାବରେ ଧରେଇରଖିବା ଏବେ ଦରକାର ପଡୁଛି ।'ଉଚ୍ଚଶିକ୍ଷା' ପ୍ରସାର ନାମରେ ଆମେ ଦୁଇଶ ବର୍ଷ ଧରି ଦରପାଠୁଆ ରୁଗ୍ଣ ଦେହ ମନ, ବେକାର ମାଟ୍ରିକ୍ ଓ ଗ୍ରାଜୁଏଟ୍ ଦଳହିଁ ଗଢ଼ି ଚାଲିଛୁଁ । ଦରଖାସ୍ତ ହସ୍ତରେ ଚତୁର୍ଦ୍ଦିଗ ଧାବମାନ ଏହି ମାଟ୍ରିକ୍ୟୁଲେଟ୍ ଓ ଗ୍ରାଜୁଏଟ୍ କି ଶିକ୍ଷିତର ଆଦର୍ଶ ? ଲୋକେ ଓ ସରକାର କୋଟି କୋଟି ଟଙ୍କା ସହସ୍ର ସହସ୍ର ବିଦ୍ୟାଳୟ ଉପରେ ଖର୍ଚ୍ଚ କରୁଛନ୍ତି କ'ଣ ଏହି ଜାତୀୟ ଦୁର୍ଭାଗ୍ୟକୁ ଜାଣି ଜାଣି ସୃଷ୍ଟି କରିବା ପାଇଁ ?

ଯଦି ସ୍ୱାଧୀନ ଭାରତ ପ୍ରକୃତରେ ତାର ବିଦ୍ୟାଳୟମାନଙ୍କରୁ ପ୍ରକୃତ 'ଶିକ୍ଷିତ' ଲୋକଙ୍କୁ ହିଁ ସୃଷ୍ଟି କରିବାକୁ ଚାହେଁ, ତେବେ ଶିକ୍ଷକ ଆଖି ରଖୁ ଗାନ୍ଧି ଓ ଜବାହରଲାଲ ନେହେରୁଙ୍କ ବ୍ୟକ୍ତିତ୍ୱ ଉପରେ ଏବଂ ଶିକ୍ଷାବିଭାଗର କର୍ତ୍ତୃପକ୍ଷ ସେହି ଅନୁଯାୟୀ ସ୍କୁଲ୍ ସବୁ ପୁନର୍ବ୍ୟବସ୍ଥିତ କରନ୍ତୁ । ଗାନ୍ଧି ଓ ନେହେରୁଙ୍କ ପ୍ରତିଭା ସୃଷ୍ଟି କରିବାକୁ ଚେଷ୍ଟା କରିବା ବିଡ଼ମ୍ବନା ମାତ୍ର । କିନ୍ତୁ ଚେଷ୍ଟା କଲେ ଆମର ଛାତ୍ରମାନଙ୍କ ଭିତରେ ଗାନ୍ଧି-ନେହେରୁଙ୍କର ଚାରିତ୍ରିକ ବିଶେଷତ୍ୱ ସବୁ ଫୁଟେଇ ପାରିବା ଖୁବ୍ ସମ୍ଭବ । ସମଗ୍ର ଇଂରେଜ, ଜର୍ମାନ ଓ ଜାପାନୀ ଜାତି ଏଇପରି ଭାବରେ ନିଜ ନିଜ ଦେଶର ବିଦ୍ୟାଳୟମାନଙ୍କରେ ସେମାନଙ୍କ ଜାତୀୟ ଚରିତ୍ର ବଦଳେଇ ପାରିଛନ୍ତି – ଭାରତରେ ତାହା ନ ହେବ କାହିଁକି ?

ଏଇ ଚାରିତ୍ରିକ ବିପ୍ଳବ ନ ଆଣିଲେ ଆମେ ଯେଉଁ ସ୍ୱାଧୀନତା ପାଇଛେଁ ତାହା ହୁଏତ ହରେଇବା । ଏହି ବିପ୍ଳବ ଆଣିବାକୁ ହେଲେ ଆମକୁ ଅନେକ ଭାରତୀୟ ଦୁର୍ବଳତା ଓ କୁସଂସ୍କାର ପରିତ୍ୟାଗ କରି, ଅନେକ ୟୁରୋପୀୟ ଗୁଣ ଆମ ଚରିତ୍ରର ଅଙ୍ଗୀଭୂତ କରେଇବାକୁ ପଡ଼ିବ । ଗାନ୍ଧି ଓ ନେହେରୁଙ୍କ ଚରିତ୍ରରେ ତାହାହିଁ ଘଟିଥିବାରୁ ସେମାନେ ପ୍ରକୃତରେ 'ଶିକ୍ଷିତ' ଓ ଉଚ୍ଚତମ କୋଟିର ସଂସ୍କୃତିସଂପନ୍ନ ବୋଲି ଧରାଯିବେ ।

ମୋ ମତରେ ଶିକ୍ଷିତ ଲୋକର ତିନୋଟି ପ୍ରଧାନ ଲକ୍ଷଣ ସୁସ୍ପଷ୍ଟ ରହିବା ଉଚିତ । ଏକରେ ସେ ଯେ ପ୍ରତିଭାଶାଳୀ ହେବେ ତାହା ନୁହେଁ , କିନ୍ତୁ ଯେତିକି ଜାଣିଥିବେ ତାହା ଉତ୍ତମ ରୂପେ ଅବଗତ ଥିବେ । ଦ୍ୱିତୀୟରେ ସେ ସଂପୂର୍ଣ୍ଣ ଭାବରେ ନୈତିକ ଥିବେ, ଅର୍ଥାତ୍ କୌଣସି ପ୍ରକାର ଅସାଧୁ କର୍ମ କରିବା ବା ଅସତ୍ୟ କଥା କହିବା ତାଙ୍କ ପକ୍ଷରେ ସମ୍ଭବ ହେବନାହିଁ । ତୃତୀୟରେ ସେ ଯେକୌଣସି ଶ୍ରମକୁ ଆନନ୍ଦରେ ସ୍ୱୀକାର କରିବେ ଏବଂ ସେଥିପାଇଁ ସେ ତାଙ୍କର ଶରୀର ଓ ମନକୁ ପ୍ରସ୍ତୁତ କରି ରଖିଥିବେ ।

ଏଇ ସାମାନ୍ୟ ତିନୋଟି ପରୀକ୍ଷାରେ ସମଗ୍ର ଭାରତବର୍ଷରେ ହୁଏତ କେବଳ ଗାନ୍ଧି ଓ ନେହେରୁ ହିଁ ଅକ୍ଳେଶରେ ପାସ୍ କରିଯିବେ । ସେଥିପାଇଁ ହିଁ ସେ ଦୁହିଁଙ୍କୁ ଜାତି ହୃଦୟରେ ବସେଇଛି । ମୋର ବିଶ୍ୱାସ, ଆମ ସରକାର, ଲୋକେ ଓ ଶିକ୍ଷାବିଭାଗର କର୍ତ୍ତୃପକ୍ଷ ଶିକ୍ଷା ନାମରେ ଅକାରଣ ଗୁଡ଼ାଏ ବଡ଼ ବଡ଼ କଥା ନ କହି ଯଦି ଏଇ ତିନୋଟି ସାମାନ୍ୟ ଆଦର୍ଶ

ଉପରେ ଆଖି ଦିଅନ୍ତେ ଏବଂ ସେଇ ଅନୁକ୍ରମେ ଅଧ୍ୟାପନା ଓ ପରୀକ୍ଷାର ଗତି ଫେରାନ୍ତେ, ତେବେ ଅନେକ ବ୍ୟୟସଂକୋଚ ସଙ୍ଗେ ସଙ୍ଗେ ତିରିଶ ବର୍ଷ ଭିତରେ ଜାତିର ଚରିତ୍ର ପରିବର୍ତ୍ତିତ ହୋଇଯାନ୍ତା ।

ମୁଁ ଏଇ ଆଦର୍ଶକୁ ଆଖିରେ ରଖି ହିଁ ମୋର ସର୍କ୍ୟୁଲାର୍‌ଗୁଡ଼ିକ ଜାରିକରିଥିଲି ଏବଂ ଏ ବହି ମଧ୍ୟ ସେହି ତାତ୍ପର୍ଯ୍ୟକୁ ପୁନଃ ପୁନଃ ପ୍ରଖ୍ୟାପିତ କରିଛି । ମୋର ବିଶ୍ୱାସ, ଶିକ୍ଷକ ଓ ପ୍ରଧାନ ଶିକ୍ଷକମାନେ ନିଜ ଦାୟିତ୍ୱ ସଂପର୍କରେ ଜାଗ୍ରତ ରହିଲେ, ଡିପାର୍ଟମେଣ୍ଟ୍ ବା ବିଶ୍ୱବିଦ୍ୟାଳୟ ବା ସରକାର ଚାହୁଁ ବା ନ ଚାହୁଁ, ଅନେକ କିଛି ଉନ୍ନତି କରିପାରିବେ । ପ୍ରଧାନ ଆଭିମୁଖ୍ୟ ପରୀକ୍ଷା-ପାସ୍ ପ୍ରତି ଦୃଷ୍ଟି ଦେଉ ଦେଉ ଶିକ୍ଷକଙ୍କ ପକ୍ଷରେ ପ୍ରକୃତରେ ଶିକ୍ଷାର ଏକ ପୂର୍ଣ୍ଣାଙ୍ଗ ଚିତ୍ର ଧାରଣା କରିବା ସମ୍ଭବ ହୁଏନାହିଁ । ମୁଁ ଏ ପୁସ୍ତକଟିରେ ମୋର ଶିକ୍ଷକ-ଭାଇମାନଙ୍କୁ ସେ ଦିଗରେ ସାହାଯ୍ୟ କରିବାର ଚେଷ୍ଟା କରିଛି ମାତ୍ର । ଶିକ୍ଷାର ଚିତ୍ରଟି ଆଖି ଆଗରେ ସ୍ପଷ୍ଟ ଥିଲେ ଅବହେଳାଟା କେଉଁଠି ଓ କିପରି ଘଟିଯାଉଛି, ତାହା ସହଜରେ ଜାଣିହେବ ।

ମୁଁ ଆଶା କରେଁ ଯେ, ମୁଁ ଏ ପୁସ୍ତକଟି ଯେଉଁ ଭାବରେ ଅନୁପ୍ରାଣିତ ହୋଇ ଲେଖିଛି, ଓଡ଼ିଶାର ଶିକ୍ଷକମାନେ ତାକୁ ସେଇ ଦୃଷ୍ଟିରେ ପଢ଼ିବେ ଓ ଗ୍ରହଣ କରିବେ । ଯାହା ଅଛି ସେଥିରେ ଅଭାବ କ'ଣ ଅଛି ଓ ଆଉ କ'ଣ ଥିଲେ ବହିଟି ଆଉରି ଉପଯୋଗୀ ହୁଅନ୍ତା, ତାହା ଜଣାଇଦେଲେ ଲେଖକ ଓ ପ୍ରକାଶକ ଉଭୟେ କୃତଜ୍ଞ ରହିବେ । ମୋର ବିଶ୍ୱାସ ମଧ୍ୟ ଯେ, ପୁସ୍ତକଟି ହାଇ, ମିଡ୍‌ଲ୍, ପ୍ରାଇମେରୀ, ବେସିକ୍ ଓ ଅବେସିକ୍ ସବୁ ଶ୍ରେଣୀର ସ୍କୁଲ୍‌ର ଶିକ୍ଷକମାନଙ୍କର, ଏପରିକି କଲେଜ କର୍ତ୍ତୃବର୍ଗଙ୍କର ମଧ୍ୟ କିଂଚିତ୍ ସେବା କରିପାରିବ । ଲେଖକ ସବୁ ଶ୍ରେଣୀରୁ ଉପଦେଶ ଅପେକ୍ଷାରେ ରହିବ ।

ଏପରି ଏକ ପୁସ୍ତକ ମୋଠାରୁ ଯୋଗ୍ୟତର ବ୍ୟକ୍ତି ଲେଖିଥିଲେ ଭଲହୋଇଥାନ୍ତା – ହୁଏତ ପରେ ଲେଖିବେ । ତାହାହିଁ ହେବ ଏ ବହିର ଏକ ପ୍ରଧାନ ସାର୍ଥକତା । ଏ ବିଷୟରେ ଓଡ଼ିଆରେ ଆଦୌ ବହି ନ ଥିବାଟା, ଏ ବହି ଲେଖା ଓ ପ୍ରକାଶିତ ହେବାର ମଧ୍ୟ ଅନ୍ୟତମ କାରଣ ।

ଥୋରିଆ ସାହି, କଟକ
ତା.୧୫.୫.୧୯୫୩

**ମାୟାଧର ମାନସିଂହ**

# ରାଷ୍ଟ୍ରୀୟ ଶିକ୍ଷା ଯୋଜନା

ନାନା ଭ୍ରମପ୍ରମାଦ ଦେଇ ମନୁଷ୍ୟ ଜୀବନ-ପଥରେ ଗତି କରେ । ଶେଷରେ ତାର ବାଳ ପାଚେ, ବାର୍ଦ୍ଧକ୍ୟ ଆସେ । କିନ୍ତୁ ସେହି ପାଚିଲାବାଳ ହୁଏ ଅଭିଜ୍ଞତାର, କାଳର ପ୍ରତୀକ—ଆଗାମୀ ପୁରୁଷର ଅନଭିଜ୍ଞ ତରୁଣତରୁଣୀଙ୍କ ଜୀବନ-ଜାହଜର ହୁଏ ଦିଗ୍‌ଦର୍ଶନ ଯନ୍ତ୍ର । ବୁଢ଼ାବୁଢ଼ୀମାନେ କହନ୍ତି, ''ଦେଖି ଦେଖି, ଭୋଗି ଭୋଗି ବୁଢ଼ା ହେଲୁ ।'' ନ ମାଗିଲେ ମଧ୍ୟ ବୁଢ଼ାବୁଢ଼ୀଏ ସେହି 'ଭୋଗାଭୋଗି', ସେହି 'ଦେଖାଦେଖି'ର ଅଭିଜ୍ଞତା ଟୋକାଙ୍କୁ ଦେଇବସନ୍ତି । ବୁଢ଼ାବୁଢ଼ୀଙ୍କର ଟୋକାଟୋକୀଙ୍କୁ ସେହି ବତେଇଦେବା, ବୁଦ୍ଧି ଦେବାରେହିଁ ମନୁଷ୍ୟଜାତିର ସ୍କୁଲ୍-କଲେଜ ବିଶ୍ୱବିଦ୍ୟାଳୟର ସୂତ୍ରପାତ । ପୂର୍ବପୁରୁଷର ସଂସ୍କୃତି ଓ ଅଭିଜ୍ଞତାକୁ ଆଗାମୀ ପୁରୁଷକୁ ଦେଇଯିବା ହିଁ ଶିକ୍ଷା ।

ପୂର୍ବପୁରୁଷ ଉତ୍ତରପୁରୁଷକୁ ତାର ଅଭିଜ୍ଞତା ଶିଖେଇଦେବା ଏକ ପ୍ରାକୃତିକ ପ୍ରବୃତ୍ତି । ମନୁଷ୍ୟେତର ପ୍ରାଣୀମାନଙ୍କଠାରେ ମଧ୍ୟ ଏହା ସ୍ପଷ୍ଟ ଦେଖାଯାଏ । ବାଘବାଘୁଣୀ ଶିକାର କଲାବେଳେ ଛୁଆଙ୍କୁ ସାଥିରେ ନେଇ ଯାଆନ୍ତି । ବାଘଛୁଆଏ ବାପମାଙ୍କ କର୍ମକଳାପରୁ ନିଜେ ନିଜେ ଶିକାର କରିବା ଶିଖନ୍ତି । ପକ୍ଷୀ ଏଇପରି ନିଜ ଶାବକକୁ ଉଡ଼ିବାକୁ ଶିଖାଏ । ଏହିପରି କନ୍ଧ ପିଲା ତା ବାପ ସାଥିରେ ଟାଙ୍ଗିଆ ଧରି ବଣକୁ ଯାଏ, ଚଷାର ପୁଅ ଧାନଟୋକେଇ ମୁଣ୍ଡରେ ଧରି ଯାଏ ବିଲକୁ । ଏଇ ତ ଶିକ୍ଷା । ଏ ଶିକ୍ଷାରେ ବାଘଛୁଆ ଓ କନ୍ଧପିଲାର ସ୍କୁଲ୍ ହେଉଛି ଜଙ୍ଗଲ, ଚଷାପୁଅର ସ୍କୁଲ୍ ହେଉଛି ଧାନବିଲ । ଶିକ୍ଷାର ଏକ ସଂଜ୍ଞା ହେଉଛି ଜୀବିକାପାଇଁ ପ୍ରସ୍ତୁତ ହେବା । ବାଘଛୁଆ ଓ ଚଷାପିଲା ଏଇପରି ପ୍ରାକୃତିକଭାବରେ ଜୀବିକା ପାଇଁ ପ୍ରସ୍ତୁତ ହୁଅନ୍ତି । ତେଣୁ ଏସବୁ ଯେ ଏକପ୍ରକାର ଶିକ୍ଷା ବା ତାଲିମ୍ ଏଥିରେ ଦ୍ୱିମତ ଥାଇନପାରେ ।

ଗତାନୁଗତିକଭାବରେ କୁଆର ଛୁଆ କୁଆ ହୁଏ, କିନ୍ତୁ ଶୁଆ ଶୁଆ ରହି ମଧ୍ୟ ମନୁଷ୍ୟପରି କଥା କହିପାରେ, ପାତିମାଙ୍କଡ଼ ସାଇକେଲ୍ ଚଳେଇପାରେ, ମୂଷା ମଣିଷର କଥାମାନି କାମ କରେ । ତେଣୁ ଶିକ୍ଷା ଦୁଇପ୍ରକାର । ଗୋଟିଏ ଗତାନୁଗତିକ ଅର୍ଥାତ୍ ପୂର୍ବପୁରୁଷ ଯାହା ଯେପରି କରୁଥିଲେ କେବଳ ସେୟାହିଁ କରି ଶିଖିବା, ଦ୍ୱିତୀୟଟି ବିବର୍ତ୍ତନାତ୍ମକ । ଅର୍ଥାତ୍ ପ୍ରକୃତିର କଞ୍ଚାମାଲକୁ ବୁଦ୍ଧି, ଅଭ୍ୟାସ, କୌଶଳ ପ୍ରୟୋଗ କରି, ତାର ସର୍ବବିଧ ଓ ସର୍ବୋତ୍କୃଷ୍ଟ ସମ୍ଭାବନାର ବିକାଶ କରେଇବା; ଯେଉଁଠି କିଛି ନଥିଲା ସେଠି ପ୍ରୟୋଜନୀୟ କିଛି ସୃଷ୍ଟିକରେଇବା; ଯାହା ଥିଲା କୁତ୍ସିତ, ଯାହା ଥିଲା ରୁଗ୍ଣ, ଯାହା ଥିଲା ଅକର୍ମଣ୍ୟ, ଅପ୍ରୟୋଜନୀୟ, ତାକୁ ସୁନ୍ଦର, ସୁସ୍ଥ, କର୍ମଣ୍ୟ ଓ ଅତି ପ୍ରୟୋଜନୀୟରେ ପରିଣତ କରିବା ।

ପରିତାପ ଓ ଲଜ୍ଜାର କଥା ଏହି ଯେ, ଆମ ଭାରତବର୍ଷରେ ପ୍ରଥମ ପର୍ଯ୍ୟାୟର ଶିକ୍ଷାହିଁ ପ୍ରଚଳିତ ଓ ସମ୍ମାନିତ । ଦ୍ୱିତୀୟ ପ୍ରଣାଳୀପାଇଁ କାହାରି ଆଗ୍ରହ ନାହିଁ, ଅଛି ବରଂ ଆତଙ୍କ ଓ ଆଶଙ୍କା ।

ତେବେ ଗତାନୁଗତିକ ହେଉ ବା ବିବର୍ତ୍ତନାତ୍ମକ ହେଉ, ଶିକ୍ଷାର ପ୍ରକୃଷ୍ଟ କାଳ ହେଉଛି ବାଲ୍ୟ ବୟସ, ଯେତେବେଳେ ମନୁଷ୍ୟ ଓ ଅନ୍ୟାନ୍ୟ ଜୀବର ମଧ୍ୟ ଶରୀର ଓ ମନ ଥାଏ ଅତ୍ୟନ୍ତ କମନୀୟ ଓ ଗ୍ରହଣକ୍ଷମ । ପରେ ପରେ ଆସେ ଯୌବନ, ବିବାହ ଓ ସନ୍ତାନଜନନ–କୁଟୁମ୍ବର ଭାର । ଏସବୁପାଇଁ ଯୌବନାଗମ ପୂର୍ବରୁ ଅଛି କି ନା କିଛି ଜୀବିକାପାଇଁ ଆଗରୁ ତାଲିମ୍ ହୋଇ ଯାଇଥିବା ଉଚିତ । ତେଣୁ ଅନୁକୂଳତା ଓ ପ୍ରୟୋଜନ, ଉଭୟ ଦୃଷ୍ଟିରୁ ବାଲ୍ୟକାଳହିଁ ଯେକୌଣସି ପ୍ରକାର ଶିକ୍ଷାର ପ୍ରକୃଷ୍ଟ ସମୟ ବୋଲି ଧରିନିଆଯାଇଛି ।

କିନ୍ତୁ ଏବେ ଆମେରିକାନ୍ ଶିକ୍ଷା- ଦାର୍ଶନିକ ଜନ୍ ଡିଉଇଙ୍କ ପ୍ରଚାର ଫଳରେ ଶିକ୍ଷାର କାଳ ଆଗକୁ ଓ ପଛକୁ ବହୁଦୂର ବଢ଼ିଯାଇଛି । ଡିଉଇଙ୍କ ମତରେ ଶିକ୍ଷା ଜୀବନବ୍ୟାପୀ, ଅର୍ଥାତ୍ ଶିଶୁ ଜନ୍ମ ହେଲାଠାରୁ ତାର ଶିକ୍ଷାର ଆରମ୍ଭ ଓ ତାର ଶେଷ ସେ ପୃଥିବୀରୁ ବିଦାୟ ନେଲାଯାଏ । ସେଥିପାଇଁ ଏବେ ପ୍ରାୟ ସବୁ ସଭ୍ୟ ଓ ପ୍ରଗତିଶୀଳ ଦେଶରେ ଏକଦିଗରେ ନର୍ସରୀ ସ୍କୁଲ୍ (ଦୁଇରୁ ପାଞ୍ଚବର୍ଷ ପିଲାଙ୍କପାଇଁ) ଓ ଅନ୍ୟ ଦିଗରେ ବୟସ୍କ ଓ ପ୍ରୌଢ଼ଶିକ୍ଷାର ପ୍ରସାର ଦ୍ରୁତଗତିରେ ଚାଲିଛି ।

କିନ୍ତୁ ପ୍ରଶ୍ନ ହୋଇପାରେ ଯେ, ଆମେ ଭାରତବର୍ଷରେ ମୂର୍ଖ, ନିରକ୍ଷର ରହି ମଧ୍ୟ ଆମର ତ ବେଶ୍ ଚଳୁଛି, ଅନ୍ୟ ଦେଶମାନଙ୍କରେ 'ଶିକ୍ଷା ଶିକ୍ଷା' କହି ଅର୍ଥର ବିପୁଳ ଓ ଅଜସ୍ର ଅପବ୍ୟୟ କାହିଁକି ହେଉଛି ? ମକଦ୍ଦମାରେ, ଜନ୍ମ, ବିବାହ ଓ ମୃତ୍ୟୁରେ ବିରାଟ ଭୋଜି ଓ ରୋଶଣି କରିବାରେ ସେ ଲୋକଗୁଡ଼ାକ ଅର୍ଥ ବ୍ୟୟ ନକରି ସାମାନ୍ୟ ଅଦରକାରୀ ଓ ଅପରିହାର୍ଯ୍ୟ ଶିକ୍ଷାରେ ଯେ ଏତେଗୁଡ଼ାଏ ଟଙ୍କା ଖର୍ଚ୍ଚ କରୁଛନ୍ତି, ସେଇଟା ସେମାନଙ୍କର ନିଶ୍ଚୟ ଘୋର ବୋକାମି ! ଆମେ ଯେ ମା ସରସ୍ୱତୀ ଓ ବାବା ଗଣେଶଙ୍କ ଭକ୍ତ – ତାଙ୍କରି ବନ୍ଦନାହିଁ ଆମର ଯଥେଷ୍ଟ ।

କିନ୍ତୁ ଶିକ୍ଷା ଆଜି ଆଉ ବ୍ୟକ୍ତିର ଇଚ୍ଛା-ଅନିଚ୍ଛା ଉପରେ ନିର୍ଭର କରୁନାହିଁ । ତାହା ଆଜି ପ୍ରତ୍ୟେକ ରାଷ୍ଟ୍ରର ପ୍ରଥମ ଓ ପ୍ରଧାନ ଦାୟିତ୍ୱ ଭିତରୁ ଗୋଟିଏ । ଆଜି ରାଷ୍ଟ୍ର ଦେଖୁଛି ଯେ ତାର ପ୍ରତ୍ୟେକ ପ୍ରଜା–ପୁରୁଷ ଓ ସ୍ତ୍ରୀ–ଯଦି କେବଳ ସାକ୍ଷର ନୁହେଁ, ଖୁବ୍ ଉଚ୍ଚଧରଣରେ ଶିକ୍ଷିତ ନ ହୁଅନ୍ତି, ତେବେ ରାଷ୍ଟ୍ରର ଗତି ଓ ପ୍ରଗତି ଅସମ୍ଭବ । ପ୍ରଜା ମୂର୍ଖ ରହିଲେ କୌଣସିପ୍ରକାର ଉନ୍ନୟନ ଅସମ୍ଭବ । ତେଣୁ ପ୍ରତ୍ୟେକ ସଭ୍ୟ ଦେଶରେ ଶିକ୍ଷା ଆଜି ବାଧ୍ୟତାମୂଳକ । ପ୍ରତ୍ୟେକଙ୍କୁ ଶିକ୍ଷିତ ହେବାକୁ ହେବ ଓ ଏପରି ହେବାକୁ ହେବ ଯେପରି ଚାହୁଛି ରାଷ୍ଟ୍ର ।

ପ୍ରତ୍ୟେକ ପିତାମାତା ଚାହାନ୍ତି ତାଙ୍କର ପୁଅଝିଅଙ୍କୁ ନିଜ ରୁଚି ଅନୁସାରେ ଗଢ଼ିଯିବାକୁ, ସ୍ଥାପିତ କରିଯିବାକୁ । ସେଇ ଅନୁସାରେ ପିଲେ ତାଲିମ୍ ହୁଅନ୍ତି ଓ ଶିକ୍ଷା ପାଆନ୍ତି । ଏବେ ସେଇପରି ପ୍ରତ୍ୟେକ ରାଷ୍ଟ୍ର ଚାହୁଛି ତାର ପ୍ରତ୍ୟେକ ପ୍ରଜାକୁ–ପୁରୁଷ ଓ ସ୍ତ୍ରୀ–ନିଜ ଆଦର୍ଶ ଓ ପ୍ରୟୋଜନ ଅନୁସାରେ ଗଢ଼ିବାକୁ । ସେହି ଅନୁକ୍ରମରେ ପ୍ରତ୍ୟେକ ରାଷ୍ଟ୍ରର ଶିକ୍ଷାଯୋଜନା ଗଢ଼ାହୋଇଛି ଓ ପ୍ରୟୋଜନାନୁଯାୟୀ କ୍ରମାଗତ ପରିବର୍ତ୍ତିତ ହୋଇ ଗଢ଼ାଚାଲିଛି । କେବଳ ଭାରତବର୍ଷରେହିଁ ଶିକ୍ଷାର କୌଣସି ନିର୍ଦ୍ଦିଷ୍ଟ ଆଦର୍ଶ ଥିବାର ବୁଝାଯାଉନାହିଁ । ତେଣୁହିଁ ଏଠି ସ୍କୁଲ୍ କଲେଜକୁ ଯାଇ ଦେଶର ତରୁଣ ତରୁଣୀ ନୂତନ ଜୀବନ, ନୂତନ ଜ୍ଞାନ, ନୂତନ ଅଭ୍ୟାସ,

ନୂତନ ରୁଚି, ନୂତନ ସ୍ୱପ୍ନ, ନୂତନ ଶକ୍ତି ନେଇ ଜୀବନପଥରେ ହସହସ ମୁହଁରେ ଦେଖାଦେବା ପରିବର୍ତ୍ତରେ ବାହାରୁଛନ୍ତି ଦେହ ମନରେ କ୍ଳାନ୍ତି, ବିକଳାଙ୍ଗ, ଲକ୍ଷ୍ୟହୀନ, ଚିନ୍ତାହୀନ, ନିଶ୍ଚେଷ୍ଟ, ବେକାର ହୋଇ ।

ବୈଦିକ ଯୁଗ ପରେ ପରେ ଭାରତୀୟ ଜୀବନାଦର୍ଶ ଏକାନ୍ତଭାବରେ ବ୍ୟକ୍ତିକୈନ୍ଦ୍ରିକ ହୋଇପଡ଼ିଛି । ଆମ୍ଭେମାନେ ପ୍ରତ୍ୟେକେ ଚାହୁ ଜନନଚକ୍ରରୁ ମୁକ୍ତି । ଜୀବନକୁ ଭୋଗ୍ୟ, ସୁଖମୟ କରିବାର ପ୍ରଚେଷ୍ଟା ଆମର ନାହିଁ ବା ଥିଲେ ତାହା ଦୁର୍ବଳ, କୁଣ୍ଠିତ । ଆମର ଶାସ୍ତ୍ରକାରମାନେ ମୁମୁକ୍ଷାର ରାସ୍ତା ଗଢ଼ିଯାଇଥିଲେ ବ୍ୟକ୍ତି-ଜୀବନକୁ ଚତୁରାଶ୍ରମ ଓ ସମାଜ-ଜୀବନକୁ ଚାତୁର୍ବର୍ଣ୍ଣ୍ୟର ଛଞ୍ଚରେ ପକାଇ । ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ଶାସ୍ତ୍ରଚର୍ଚ୍ଚାର, କାବ୍ୟ-ନ୍ୟାୟ ଆଲୋଚନା କରିବାର ଯାହା ଅଧିକାର ଥିଲା । ତାଙ୍କଛଡ଼ା ବିରାଟ ଜନସାଧାରଣ ଥିଲେ ମୂର୍ଖ, ନିରକ୍ଷର । ସେମାନଙ୍କୁ କହି ରଖାଯାଉଥିଲା ଯେ ତାଙ୍କ କୌଳିକ ବୃତ୍ତିଟିହିଁ ତାଙ୍କ ମୁକ୍ତିର ସୋପାନ, ଜ୍ଞାନଚର୍ଚ୍ଚା ତାଙ୍କ ପକ୍ଷରେ ଅନାବଶ୍ୟକ । ଏଇପରି ଶାସ୍ତ୍ର-ଶାସିତ ଭାରତର ସମାଜ ଗତାନୁଗତିକତାକୁହିଁ ଜୀବନର ସିଧା ସଡ଼କ ମନେକରି ହଜାରହଜାରବର୍ଷ ହେଲା ଚଳିଆସିଛି ।

ଗ୍ରୀକ୍-ଆର୍ଯ୍ୟ ଭାରତୀୟ-ଆର୍ଯ୍ୟର ଭାଇ । କିନ୍ତୁ ତାର ଜୀବନାଦର୍ଶ ଥିଲା ସମ୍ପୂର୍ଣ୍ଣ ବିପରୀତ । ଗ୍ରୀକ୍ ଜୀବନକୁ ଉପଭୋଗ କରିବାପାଇଁ ଆଶାୟୀ ଥିଲା । ସେଥିପାଇଁ ସେ ଶରୀର ଓ ମନକୁ ଦୃଢ଼ ଓ ସୁନ୍ଦର କରୁଥିଲା, ପୁଣି ବାହାର ଜୀବନକୁ ଶିଳ୍ପ, ସାହିତ୍ୟ, କଳା, କ୍ରୀଡ଼ା, ରାଜନୀତି ଦେଇ କର୍ମମୟ, ସୁନ୍ଦର, ଉପଭୋଗ୍ୟ କରିରଖିଥିଲା । ତାର ଦେବପୂଜା, ତାର ଦର୍ଶନ, ତାର ସାହିତ୍ୟ, ସମସ୍ତରହିଁ କେନ୍ଦ୍ର ଥିଲା ମନୁଷ୍ୟ ଓ ମନୁଷ୍ୟର ପ୍ରୟୋଜନ । ପ୍ରତ୍ୟେକ ଗ୍ରୀକ୍ ତରୁଣକୁ ଏଣେ ଜିମ୍ନେଜିୟମ୍ ବା ଆଖଡ଼ା ଘରେ ବୈଜ୍ଞାନିକଭାବରେ ବ୍ୟାୟାମ ଅଭ୍ୟାସ କରି ଶରୀରକୁ ସୁନ୍ଦର, ସୁଗଠିତ ଓ ବଳଶାଳୀ କରିବାକୁ ଏବଂ ତେଣେ ମନର ପରିପୋଷଣପାଇଁ ନିଜ ଦେଶର ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚା କରିବାକୁ ପଡୁଥିଲା । ତାହାହିଁ ଥିଲା ଗ୍ରୀକ୍ ଶିକ୍ଷା ବ୍ୟବସ୍ଥା ।

ପ୍ରାଚୀନ ଗ୍ରୀସ୍ ନାନା କ୍ଷୁଦ୍ର-ରାଷ୍ଟ୍ରରେ ବିଭକ୍ତ ଥିଲା । ସ୍ପାର୍ଟା ଥିଲା ଏକ ବିଖ୍ୟାତ ଗ୍ରୀକ୍ ନଗର-ରାଷ୍ଟ୍ର । ଏହି ନଗରୀର ଶିକ୍ଷା ବ୍ୟବସ୍ଥା ଅନେକଭାବରେ ୟୁରୋପୀୟ ଶିକ୍ଷା ବ୍ୟବସ୍ଥାକୁ ପ୍ରଭାବିତ କରିଆସିଛି—ବର୍ତ୍ତମାନ ପର୍ଯ୍ୟନ୍ତ । ସ୍ପାର୍ଟାରେ ପ୍ରଜାର ବ୍ୟକ୍ତିଗତ ଜୀବନର ସ୍ୱାତନ୍ତ୍ର୍ୟ ବୋଲି କିଛି ନଥିଲା । ରାଷ୍ଟ୍ରର ଜୀବନରେ ବ୍ୟକ୍ତିଗତ ଜୀବନ ମିଶିଯାଇଥିଲା କହିଲେ ଚଳେ । ସ୍ପାର୍ଟାରେ ପ୍ରତି ପରିବାରର ଶିଶୁପୁତ୍ର ଓ କନ୍ୟାମାନଙ୍କୁ ପିତାମାତାଙ୍କ କୋମଳ ସମ୍ପର୍କରୁ କାଢ଼ିନିଆଯାଇ ତାଙ୍କୁ ସବୁ ରଖାଯାଉଥିଲା ବାରାକ୍‌ମାନଙ୍କରେ ଅଲଗା ଅଲଗା କରି । କଠୋର ସଂଯମ, ବ୍ୟାୟାମ, ଶୃଙ୍ଖଳା ଭିତର ଦେଇ ସ୍ପାର୍ଟାର ପ୍ରତ୍ୟେକ ତରୁଣକୁ ଗଢ଼ାଯାଉଥିଲା ବୀର ରୂପେ ଓ ପ୍ରତ୍ୟେକ ତରୁଣୀକୁ ବୀର-ଜନନୀରୂପେ । ସ୍ପାର୍ଟାନ୍ ଶିକ୍ଷା ବ୍ୟବସ୍ଥାର କଠୋର ଓ ସରଳ ଜୀବନଯାପନ ୟୁରୋପୀୟ ଭାଷାମାନଙ୍କରେ ପ୍ରବାଦରେ ପରିଣତ ହୋଇଯାଇଛି । ନାଜି ଜର୍ମାନୀ ଓ ସୋଭିଏଟ୍ ରୁଷିଆରେ ବ୍ୟକ୍ତି-ଜୀବନକୁ ଚିପି ଓ ପୋଛି ରାଷ୍ଟ୍ରକୁ ସର୍ବମୟ କରିବାର ଯେଉଁ ପ୍ରଚେଷ୍ଟା ତାହା ସେହି ସ୍ପାର୍ଟାନ୍ ଆଦର୍ଶର ପୁନରାବୃତ୍ତି ମାତ୍ର ।

ପ୍ରାଚୀନ ଗ୍ରୀସ୍‌ର ଆଦର୍ଶ ଓ ଚିନ୍ତା ୟୁରୋପୀୟ ସଂସ୍କୃତିର ମୂଳପିଣ୍ଡ କହିଲେ ଚଳେ । କିନ୍ତୁ ଦେଖିବାର କଥା ଏହି ଯେ, ଇହଜୀବନସର୍ବସ୍ୱ ଗ୍ରୀସ୍ ବହୁକାଳରୁ ଧ୍ୱଂସପ୍ରାପ୍ତ ହୋଇଯାଇଛି । ସେହି ଆଦର୍ଶାନୁପ୍ରାଣିତ ୟୁରୋପ ନିଜେ ବାର ବାର ଧ୍ୱଂସ ହୋଇ ସମଗ୍ର ବିଶ୍ୱକୁ ଧ୍ୱଂସ କରିବା ଉପରେ । କିନ୍ତୁ ଶାନ୍ତ, ନିରୁପଦ୍ରବ, ଅତି ପ୍ରାଚୀନ ଭାରତୀୟ ଆଦର୍ଶ ଆଜି ମଧ୍ୟ ଜୀବନ୍ତ । ଏବେ ବି ଭାରତର ବାୟୁମଣ୍ଡଳ ବେଦଧ୍ୱନିରେ ମନ୍ଦ୍ରିତ । ଅନିତ୍ୟ ଭିତରେ ନିତ୍ୟର ସନ୍ଧାନ ହୁଏତ ଭାରତୀୟ ସଂସ୍କୃତିକୁ ଏହି ବିସ୍ମୟକର ଚିରନ୍ତନତ୍ୱ ଦେଇପାରିଛି ।

କିନ୍ତୁ ସତ୍ୟ କହିଲେ ଆମର ବଞ୍ଚିବା ଠିକ୍ ବଞ୍ଚିବା ପରି ହୋଇନାହିଁ । ଜୀବନ ଅପେକ୍ଷା ସେ ବଞ୍ଚିବାକୁ ଜୀବନ୍‌ମୃତ ଅବସ୍ଥା କହିଲେ ଅଧିକ ସତ୍ୟ ହେବ । ଆମ ସଂସ୍କୃତିରେ ଗର୍ବବୋଧ କରିବାର କିଛି ଥାଇପାରେ, କିନ୍ତୁ ମାନିବାକୁ ହେବ ଯେ, ସେଥିରେ ଅନେକ କିଛି ହାନିକର ଓ ଗ୍ଲାନିକର ଉପାଦାନ ରହିଯାଇଛି ଯାହା ଆମର ବ୍ୟକ୍ତିଗତ ଓ ସାମାଜିକ ଜୀବନକୁ ପଙ୍ଗୁ, ନିରାନନ୍ଦ, ଛିନ୍ନଭିନ୍ନ କରିପକାଇଛି । ସବୁ ଠିକ୍ ଥିଲେ ଆମେ ନ୍ୟୂନ ସଂସ୍କୃତିସମ୍ପନ୍ନ ଜାତିମାନଙ୍କ ଦ୍ୱାରା ଶତ ଶତ ବର୍ଷଧରି ଶାସିତ ଓ ଲାଞ୍ଛିତ ହୋଇନଥାନ୍ତେ; ସମସ୍ତେ ଏକୀଭୂତ ହୋଇ ବିଧର୍ମୀ ଓ ବିଦେଶୀକୁ ତଡ଼ିବା ପରିବର୍ତ୍ତରେ ଆମେ ନିଜ ନିଜ ଭିତରେ ନାନା କ୍ଷୁଦ୍ରତାରେ ମଜ୍ଜିତ ରହି ସହସ୍ରଧା ବିଭକ୍ତ ହୋଇନଥାନ୍ତୁ; ଆଉ ହଜାର ହଜାରବର୍ଷ ଧରି ଦୁର୍ଭିକ୍ଷ, ମହାମାରୀ, ଶାସ୍ତ୍ର, ଶାସକ, ପୁରୋହିତମାନଙ୍କର ଘୋର ଅନାଚାର ନୀରବରେ ସହି ଆସୁନଥାନ୍ତୁ ।

ଜଣେ ବ୍ୟକ୍ତିର ଅନ୍ୟ ବ୍ୟକ୍ତିଠାରୁ ଯେପରି ଶିଖିବାର ଅଛି, ସେହିପରି ଅଛି ଏକ ଜାତିର ଅନ୍ୟଠାରୁ । କେବଳ ଶୁକ୍ଳକେଶ ଯୋଗୁ ଜଣେ ଜୁଆଙ୍ଗ ଓ ଶ୍ରୀ ଜବାହରଲାଲଙ୍କ ଅଭିଜ୍ଞତା ସମାନ ହୋଇନପାରେ । ବୃଦ୍ଧ ଜୁଆଙ୍ଗ ଯଦି କେବଳ ନିଜର ଅଭିଜ୍ଞତା ଉପରେ ନିର୍ଭର କରି ତା ପୁଅ ଓ ନାତିକି ମଣିଷ କରିବାକୁ ଯାଏ, ତେବେ ସେମାନେ କେବଳ ଜୁଆଙ୍ଗଇ ରହିବେ ।

ଶିକ୍ଷା ଏପରି ହେବା ଉଚିତ ଯେ ଜୁଆଙ୍ଗର ନିଜସ୍ୱ ସଂସ୍କୃତି ଯଦି କିଛି ଥାଏ ତାକୁ ବଞ୍ଚାଇ ରଖିବା ସଙ୍ଗେ ସଙ୍ଗେ, ତାର ମନୁଷ୍ୟତ୍ୱ ଦିଗରୁ ଯାହା ଯାହା ଅଭାବ ତାକୁ ପରିପୂର୍ଣ୍ଣ କରିବାର ଚେଷ୍ଟା କରିବା ।

ଜାତୀୟ ଶିକ୍ଷା ବା ରାଷ୍ଟ୍ରୀୟ ଶିକ୍ଷାଯୋଜନା ଯେବେ ଓ ଯେଉଁଠି ଆରମ୍ଭ ବା ଚାଲୁ କରାଯାଇଛି ତାହା ଏଇ ନୀତି ଉପରେହିଁ କରାଯାଇଛି । ପ୍ରତ୍ୟେକ କୁଟୁମ୍ବ-ପତି ଯେପରି ଚାହାନ୍ତି ଯେ ତାଙ୍କ ପିଲେ ତାଙ୍କ ଘରର ମର୍ଯ୍ୟାଦା, ଘରର ଚାଲିଚଳଣିଟାକୁ ଯେପରି ବଜାୟ ରଖିବେ, ପ୍ରତ୍ୟେକ ଜାତି ମଧ୍ୟ ସେହିପରି ଚାହିବା ସ୍ୱାଭାବିକ ଓ ଉଚିତ ଯେ ସେଇ ଜାତିର ଯାହା ନିଜସ୍ୱ ସଂସ୍କୃତି ତାହା ବଞ୍ଚିରହୁ । ୟୁରୋପର ପ୍ରତ୍ୟେକ ଜାତି ତାଙ୍କ ସ୍କୁଲ୍ କଲେଜ ଭିତର ଦେଇ ଏଇ ଆଦର୍ଶଟିକି ଯତ୍ନର ସହିତ ବଞ୍ଚାଇରଖନ୍ତି । କିନ୍ତୁ ଆମେ ଆମ ସଂସ୍କୃତି ବିଷୟରେ ପାଟିକରି ଆକାଶ ଫଟାଉ ସତ, ଆମେ ଏତେ ହତଭାଗ୍ୟ ଯେ, ଆମର ବିଦ୍ୟାଳୟମାନଙ୍କରେ ଆମ ସଂସ୍କୃତିର ଛନ୍ଦୁ ପ୍ରକାଶ ମଧ୍ୟ ନାହିଁ ।

ରାଷ୍ଟ୍ରୀୟ ଯୋଜନାର ଦ୍ୱିତୀୟ ଦୃଷ୍ଟିକୋଣ ହେଲା ନିଜ ଜାତୀୟ ଚରିତ୍ରରେ ଯାହା ଦୋଷ, ଯାହା ଅଭାବ, ତାକୁ କାଢ଼ିନେଇ ସେଇ ସ୍ଥାନରେ ଅନ୍ୟ ଗୁଣୀ, ଉନ୍ନତ ଜାତିର ସଂଶୋଧକ ଓ

ପରିପୂରକ ଗୁଣାବଳୀର ଅଭ୍ୟାସ କରେଇବା । ଏ ହତଭାଗ୍ୟ ଦେଶରେ ତା ବି ହେଉନି । ଆମେ କେବଳ ପାଞ୍ଚଟଙ୍କିଆ ପ୍ୟାଣ୍ଟ୍ ପିନ୍ଧି ଇଂରେଜ ହେବାର ବିଡ଼ମ୍ବିତ ପ୍ରୟାସ କରିଆସିଲୁଁ; କିନ୍ତୁ କାହିଁ ସେହି ଦୃଢ଼ଚିତ୍ତ, ଶ୍ରମ-ସମୟ-ସମ୍ମାନକ, ଆଫଳୋଦୟକର୍ମା ଶକ୍ତିଶାଳୀ ବ୍ରିଟେନର ଚାରିତ୍ରିକ ଅନୁକରଣ ? ଯେଉଁ ଚାରିତ୍ରିକ ଦୃଢ଼ତା ବଳରେ ଛୋଟ ଦ୍ୱୀପର ଅଧିବାସୀ ଇଂରେଜ ଅର୍ଦ୍ଧଧରଣୀର ଅଧୀଶ୍ୱର ହୋଇପାରିଲା ଓ ସୁସଭ୍ୟ ଭାରତବର୍ଷକୁ ସୁଶାସନ କଣ ଶିଖେଇ ଦେଇ ଯାଇଛି ସେ ଦୃଢ଼ତା ଏ ଜାତି କେଉଁଠି ଶିଖୁଛି ? କେଉଁ ସ୍କୁଲ୍ କଲେଜରେ ?

ଏଇ ଦୁଇ ପ୍ରଧାନ ଓ ମୌଳିକ ଦୃଷ୍ଟିକୋଣର ଅଭାବରୁ ଆମର ଶିକ୍ଷା ଦେଶର ମଙ୍ଗଳ ନ କରି ଅକଲ୍ୟାଣ ପ୍ରସବ କରୁଛି । ଯେକୌଣସି ଇଂରେଜକୁ ପଚାର ଯାଇ, ସେ କହିବ, ଗତ ସତୁରି ବର୍ଷ ଭିତରେ ପ୍ରାଇମେରୀ ଶିକ୍ଷା ସାର୍ବଜନୀନ କରିଦିଆଯିବା ଫଳରେ ଜାତିର ନୈତିକତା, ସାମାଜିକ ସାଧୁତା, ଭଦ୍ରତା, ଆର୍ଥିକ ସ୍ୱଚ୍ଛଳତା, ସାଧାରଣ ସ୍ୱାସ୍ଥ୍ୟ କିପରି ଅସମ୍ଭବ ଭାବରେ ଇଂଲଣ୍ଡରେ ବୃଦ୍ଧିପାଇଛି । ସବୁଠି ସେଇ କଲ୍ୟାଣମୟ ଇତିହାସ – କେବଳ ଏହି ହତଭାଗ୍ୟ ଦେଶରେ ସରସ୍ୱତୀର ଅପମାନ । କାରଣ ଏଠି ସ୍କୁଲ୍ କଲେଜରେ ତଥାକଥିତ ପାଠପଢ଼ି ବାହାରିଲେ ଲୋକେ କର୍ମଠ ହେବା ପରିବର୍ତ୍ତେରେ ହୁଅନ୍ତି ଆଳସ୍ୟପରାୟଣ, ସାଧୁ ନହୋଇ ହୁଅନ୍ତି ପାଜୀ, ନାହିଁ ଜ୍ଞାନ, ନାହିଁ ବିବେକ, ନାହିଁ ମଧ୍ୟ ଅପରିହାର୍ଯ୍ୟ ଭଦ୍ର ବ୍ୟବହାର ।

ଏ ଦୁର୍ବିପାକର ଏକମାତ୍ର କାରଣ ହେଉଛି ଯେ ଆମର ସ୍କୁଲ୍ କଲେଜ କୌଣସି ଉନ୍ନତ ଆଦର୍ଶରେ ଅନୁପ୍ରାଣିତ ନୁହେଁ, କୌଣସି ସ୍ଥିର ଲକ୍ଷ୍ୟ ଆମର ନାହିଁ । ଇଣ୍ଡିଆ ହେଉଛି ଏକମାତ୍ର ଦେଶ, ଯେଉଁଠି ଶିକ୍ଷାର କୌଣସି ନିଜସ୍ୱ ଦର୍ଶନ ନାହିଁ ।

ସତୁରିବର୍ଷ ତଳେ ଜାପାନ୍ ଯେତେବେଳେ ୟୁରୋପୀୟ ସଭ୍ୟତା ଗ୍ରହଣ କଲା, ସେ ଉପରିଲିଖିତ ରୀତିରେହିଁ କଲା । ଜାପାନ ଏସିୟାରେ ଏକମାତ୍ର ଜାତି ଯେ କି ସବୁଠୁ ଅଧିକ ୟୁରୋପୀୟାୟିତ । କିନ୍ତୁ ଜାପାନୀ ଯେ ଇଂରେଜ ଓ ଜର୍ମାନର ସମକକ୍ଷ ହୋଇଛି ସେ କେବଳ ଆମ ପରି ପାଞ୍ଚଟଙ୍କିଆ ପ୍ୟାଣ୍ଟ୍ ଗଳେଇ ନୁହେଁ । ସେ ଶ୍ୱେତାଙ୍ଗର ସମକକ୍ଷ ହୋଇଛି, ତାରି ପରି ଶ୍ରମ ଓ ସମୟକୁ ସମ୍ମାନ କରି, ସୁଦୃଢ଼ ଆତ୍ମ-ବିଶ୍ୱାସରେ ଏବଂ ରାଷ୍ଟ୍ର ଓ ଜାତିପାଇଁ ନିଜ ସ୍ୱାର୍ଥକୁ ବଳି ଦେବାରେ । କିନ୍ତୁ ଏଣେ ଜାପାନୀ ଜାପାନୀଇ ରହିଛି । ୟୁରୋପୀୟ ପର୍ଯ୍ୟଟକମାନେ ପ୍ରାଚ୍ୟ ଦେଶମାନଙ୍କ ଭିତରେ କେବଳ ଜାପାନରେହିଁ ପାଆନ୍ତି ସକଳପ୍ରକାର ୟୁରୋପୀୟ ସ୍ୱାଚ୍ଛନ୍ଦ୍ୟ; କିନ୍ତୁ ପ୍ରତ୍ୟେକଟି ଜାପାନୀ ରୀତିରେ ।

କାହିଁ ଭାରତବର୍ଷରେ ଏକ ଦୃଢ଼-ସୁନ୍ଦର ମିଳନର ଚେଷ୍ଟା ?

ଆଜି ଭାରତବର୍ଷ ସ୍ୱାଧୀନ ଓ ଗଣତନ୍ତ୍ର । ଯଦି ସମସ୍ତ ଗତାନୁଗତିକତା ଛାଡ଼ି ଆମେ ବିବର୍ତ୍ତନ ପ୍ରଣାଳୀରେ ନୂତନ ରକମର ସ୍କୁଲ୍ କଲେଜରେ ଏକ ନୂତନ ଜାତି ନଗଢ଼ୁଁ, ମୋର ଘୋର ସନ୍ଦେହ ଯେ ଏ ସ୍ୱାଧୀନତା ଓ ଏ ଗଣତନ୍ତ୍ର କାହାକୁ ହେଲେ ଆମେ ରଖିପାରିବାନି । ଆମର ବ୍ୟକ୍ତିକୈନ୍ଦ୍ରିକ ଜୀବନକୁ ତୁରନ୍ତ ରାଷ୍ଟ୍ରକୈନ୍ଦ୍ରିକ କରିବାକୁ ପଡ଼ିବ । ଇହଜୀବନ ପ୍ରତି ଆମର ଯେ ବୀତସ୍ପୃହତା ତାକୁ ଆମ ଆଗାମୀ ବଂଶଧରମାନଙ୍କ ଚିତ୍ତରୁ ଅପସାରିତ କରି ସେମାନଙ୍କ ମନରେ ଏଇ ଧାରଣା ପୂରେଇବାକୁ ହେବ ଯେ ସେମାନେ ଚେଷ୍ଟାକଲେ ଏ ଦେଶ ଆଖିଆଗରେ ସୁନ୍ଦର,

ସୁସ୍ଥ, ଶସ୍ୟଶ୍ୟାମଳ ହୋଇଉଠିବ । ବହି ଘୋଷି ପରୀକ୍ଷାଦେବା ଯେ ବିଦ୍ୟାଚର୍ଚ୍ଚା, ଏହି ଘୋର ଅସତ୍ୟ ଓ ହାନିକର ଧାରଣାକୁ ଯଥାଶୀଘ୍ର ଦେଶରୁ ବିଦାୟ ଦେବାକୁ ହେବ । ଏଣେ ଏକପକ୍ଷରେ ଆମର ନିଜର ସଂସ୍କୃତିକୁ ବଞ୍ଚେଇରଖିବା ସଙ୍ଗେ ସଙ୍ଗେ, ଆମ ଜାତୀୟ ଚରିତ୍ରର ଜଣାଶୁଣା ଦୋଷ, ଅଭାବ ସବୁ ଦୂରୀକରଣ କରିବା ଓ ସେସବୁର ସଂଶୋଧକ ଓ ପରିପୂରକ ଗୁଣାବଳୀର ଜାତୀୟ ଚରିତ୍ରରେ ଆରୋପ କରିବାର ଅଭ୍ୟାସ ପ୍ରାଇମେରୀଠାରୁ କଲେଜପର୍ଯ୍ୟନ୍ତ ସର୍ବତ୍ର ନିଷ୍ଠାର ସହିତ ଅଭ୍ୟାସ କରେଇବାକୁ ହେବ । ଏଇସବୁର ମୂଳଦୁଆ ଉପରେ ଯଦି ପୁସ୍ତକ ଜ୍ଞାନ— ନିଦା, ଗଭୀର ଏବର ପରି ତ୍ୱକ୍-ସମସ୍ତ ନୁହେଁ—ଠିଆ କରାଯାଏ ତେବେଇ ଶିକ୍ଷାକୁ ଶିକ୍ଷା କୁହାଯିବ ।

ମୁଁ ଯାହା କହୁଛି ତାହା ମୋର ଶିକ୍ଷକ ଭାଇମାନଙ୍କ ପ୍ରତି, ଦେଶର ଲକ୍ଷ ଲକ୍ଷ ପିତାମାତାମାନଙ୍କୁ ଲକ୍ଷ୍ୟ କରି ଏବଂ ବିଶେଷଭାବରେ ଲକ୍ଷ୍ୟ କରି ଦେଶର ଭବିଷ୍ୟତ୍ ଆଶା ଛାତ୍ରଛାତ୍ରୀମାନଙ୍କୁ । ମୁଁ ସରକାରଙ୍କୁ କହୁନି । ସରକାରଙ୍କର ମୋଟା ଦରମାବାଲା ବଡ଼ ବଡ଼ ଉପଦେଷ୍ଟା ଅଛନ୍ତି, ମୁଁ ସାମାନ୍ୟ ଶିକ୍ଷକ । ତାଙ୍କୁ ଉପଦେଶ ଦେବାର ସ୍ପର୍ଦ୍ଧା ମୋର ଆସିବ କାହୁଁ ? ମୁଁ କେବଳ ଏତିକି ଚାହେଁ ଯେ ଦେଶର ଶିକ୍ଷକମାନେ ଯେପରି ସରକାର ଯୋଜନା କରିନାହାନ୍ତି ବା ଡି.ପି.ଆଇ.ଙ୍କ ସର୍କୁଲାର ଆସିନି ବୋଲି ହାତଗୋଡ଼ବାନ୍ଧି ନିଶ୍ଚେଷ୍ଟ ଓ ନୈରାଶ୍ୟବାଦୀ ହୋଇ ବସିନଯାଆନ୍ତୁ । ଆମ ଶିକ୍ଷାରେ ଯାହା କାମ୍ୟ, ଯାହା ଶ୍ରେୟ, ଯାହା ସେମାନେ ଶିକ୍ଷକଭାବରେ କର୍ତ୍ତବ୍ୟ ବୋଲି ବୁଝୁଛନ୍ତି, ମୋର ଅନୁରୋଧ ଜାତିର ସମୂହକଲ୍ୟାଣ ଦୃଷ୍ଟିରୁ ଡିପାର୍ଟମେଣ୍ଟ୍ ବା ସରକାର ନକହିଲେ ମଧ୍ୟ ସେମାନେ ନିଜ ନିଜ କର୍ମକ୍ଷେତ୍ରରେ ଯଥାସମ୍ଭବ ସେସବୁ ପ୍ରବର୍ତ୍ତିତ ଓ ନିଷ୍ଠାର ସହିତ ପରିଚାଳିତ କରନ୍ତୁ । ଅନ୍ୟ ଦେଶରେ ଜାତି କିପରି ଗଢ଼ାଯାଉଛି ତାହା ସେମାନେ ଚର୍ଚ୍ଚା କରନ୍ତୁ ଓ ପିଲାଙ୍କୁ ବୁଝେଇଦିଅନ୍ତୁ । ଦେଶର ତରୁଣତରୁଣୀଙ୍କୁ ଅନୁରୋଧ, ସେମାନେ 'ଦ୍ୱିଜ' ହେବାପାଇଁ ଯେଉଁ ଶ୍ରମ, ସଂଯମ ଓ ଅଭ୍ୟାସଟିକ ଦରକାର ସେଥିପାଇଁ ପ୍ରସ୍ତୁତ ହୁଅନ୍ତୁ । ଶିକ୍ଷକଙ୍କ ନିର୍ଦ୍ଦେଶ ମାନନ୍ତୁ । ନଚେତ୍ ନୂତନ ଜାତି, ନୂତନ ଭାରତ ଗଢ଼ାହୋଇପାରିବନାହିଁ । ଏ ଯୋଜନା ଆଜି ଆମ ସମସ୍ତଙ୍କର—ସରକାରଙ୍କର କେବଳ ନୁହେଁ ।

---

# ବିଦ୍ୟାଳୟ

ଛୋଟ ମଣିଷମାନଙ୍କର ସବୁଠୁ ପରମ ପ୍ରୟୋଜନୀୟ ବସ୍ତୁ ହେଉଛି ବଡ଼ମାନଙ୍କଠାରୁ ସ୍ନେହାଦର । ତା ପଛକୁ ଉତ୍ତମ, ରୁଚିକର, ପୁଷ୍ଟିକର ଖାଦ୍ୟ । ଏ ଦୁଇଟିଯାକ ଜିନିଷ ଘରେ ଅଧିକ ସୁପ୍ରାପ୍ୟ ହେବାରୁ ପିଲାଙ୍କର ଘର ଓ ବାପମା ଏତେ ପ୍ରିୟ ।

ପାଞ୍ଚ ଛ'ବର୍ଷର ଲାଳନପାଳନ ପରେ ପ୍ରତ୍ୟେକ ଘରେ ବାପମା କ୍ରମେ ବାଳକବାଳିକାମାନଙ୍କର ଗୁରୁ ହୋଇଉଠନ୍ତି ଏବଂ ଘର ହୋଇଉଠେ ବିଦ୍ୟାଳୟ । ବାଳିକା ମା-ମାଉସୀ-ଅପାମାନଙ୍କର ଅନୁକରଣରେ ନାରୀଜୀବନୋଚିତ କ୍ରିୟାକଳାପ ଶିଖିବାକୁ ଆରମ୍ଭ କରେ, ବାଳକ ଶିଖିବାକୁ ଆରମ୍ଭ କରେ ପୁରୁଷମାନଙ୍କଠାରୁ ପାଠ ଓ ଶାଠ । ପୂର୍ବେ କୁହାଯାଇଛି ଯେ ଚଷାର ପୁଅ ବାପ ପଛରେ ବିଲକୁ ଧାଇଁ କୃଷିବିଦ୍ୟାର ଆରମ୍ଭ କରେ । ବାଘଛୁଆ ସେହିପରି ବାଘ-ବାଘୁଣୀ ସାଥିରେ ଯାଇ ଶିକାର ଶିଖେ । ଏହିପରିଭାବରେ ଜୀବଜନ୍ତୁ ଓ ମନୁଷ୍ୟଶିଶୁର ବାପମା ହୁଅନ୍ତି ପ୍ରଥମ ଗୁରୁ ଓ ଘର ହୁଏ ପ୍ରଥମ ବିଦ୍ୟାଳୟ ।

କିନ୍ତୁ ଜୀବନର ଜଟିଳ ସଂଗ୍ରାମରେ ପିତାମାତା ବ୍ୟସ୍ତ । ପିତା ପରିବାରପାଇଁ ଖାଦ୍ୟବସ୍ତୁ ସଂଗ୍ରହ କରିବାରେ ଏବଂ ମାତା ତାକୁ ପରିପାକ ଓ ପରିବେଷଣ କରିବା ଓ ଘରଟିକୁ ବାସୋପଯୋଗୀ କରିବାରେ ଅହରହ ନିଯୁକ୍ତ । ସନ୍ତାନସନ୍ତତିମାନଙ୍କୁ ଶିକ୍ଷାଦେବାର ଅବସର ତାଙ୍କର କାହିଁ ? ତେଣୁ ସେମାନେ ଖୋଜିଲେ ଧୀରସ୍ଥିର, ବିଜ୍ଞ, ପିଲାଙ୍କୁ ଆଦର କରୁଥିବା, ତାଙ୍କୁ ଖେଳେଇ ବୁଝେଇ ଶିଖେଇପାରିବା, ବାପମା କର୍ମବ୍ୟସ୍ତ ଥିଲାବେଳେ ତାଙ୍କୁ ଆଗୁଳି ରଖିବାପାଇଁ ଜଣେ ଲୋକ । ବାପମା ପିଲାଙ୍କୁ ଆଗୁଳି ରଖିବା ଓ ଶିଖେଇବାର ପ୍ରତିଦାନ ସ୍ୱରୂପ, ସେଇ ଲୋକଟିର ସାଂସାରିକ ଜଞ୍ଜାଳର ସମଗ୍ର ବା କିୟଦଂଶ ମେଣ୍ଟେଇବାକୁ ରାଜି ହେଲେ । ଏଇପରିଭାବରେ ସମାଜରେ ସୃଷ୍ଟି ହେଲେ ଗୁରୁ ଓ ଶିକ୍ଷକ ଏବଂ ଆରମ୍ଭ ହେଲା ବିଦ୍ୟାଳୟ ବା ସ୍କୁଲ୍ ।

ଶିକ୍ଷକ ଓ ଶିକ୍ଷାୟତନର ଇତିହାସ ମନୁଷ୍ୟ-ଇତିହାସର ସମପ୍ରାଚୀନ । ମନୁଷ୍ୟ-ସଭ୍ୟତାର ଇତିହାସ ଆରମ୍ଭରୁହିଁ ଆମେ ଗୁରୁ ଓ ପାଠଶାଳା ଦେଖିବାକୁ ପାଉଁ । ପ୍ରଥମେ ଗୁରୁ ଓ ପୁରୋହିତ ଥିଲେ ଏକ ବ୍ୟକ୍ତି, ସମାଜର ଧର୍ମ-ମନ୍ଦିରହିଁ ଥିଲା ବିଦ୍ୟାମନ୍ଦିର । ଏବେ ମଧ୍ୟ ବର୍ମା, ଶ୍ୟାମ, ସିଂହଳ ପ୍ରଭୃତି ବୌଦ୍ଧଦେଶମାନଙ୍କରେ ବୌଦ୍ଧ ବାଳକବାଳିକାମାନଙ୍କର ପ୍ରାଥମିକ ଶିକ୍ଷା ବୌଦ୍ଧବିହାରମାନଙ୍କରେ ବୌଦ୍ଧ ସନ୍ନ୍ୟାସୀମାନଙ୍କଦ୍ୱାରା ହୋଇଥାଏ । ମାନବ ଶିଶୁକୁ ଶିକ୍ଷାଦେବା ବିଷୟରେ ଗିର୍ଜା ଓ ମସ୍‌ଜିଦ୍‌ର ଇତିହାସ ମଧ୍ୟ ଗୌରବୋଜ୍ଜ୍ୱଳ ।

ପୂର୍ବେ କୁହାଯାଇଛି ଯେ ପୂର୍ବଜମାନଙ୍କର ସଂସ୍କୃତି ଓ ଅଭିଜ୍ଞତାକୁ ଉତ୍ତରଜମାନଙ୍କ ନିକଟରେ ପହଞ୍ଚେଇଦେବାହିଁ ଶିକ୍ଷା । ସବୁ ଯୁଗରେ ପୁରୋହିତମାନଙ୍କର ଏହାହିଁ ପ୍ରଧାନ କର୍ମ । ପ୍ରାଚୀନ ସଂସ୍କୃତିର ମୂଳପିଣ୍ଡ ମଧ୍ୟ ହେଲା କୌଣସି ନା କୌଣସି ଏକ ଧର୍ମ । ତେଣୁ ଶିକ୍ଷା କହିଲେ

ପ୍ରାଚୀନ କାଳରେ ଅଧିକାଂଶତଃ ଧର୍ମ-ଶିକ୍ଷାହିଁ ବୁଝାଉଥିଲା । ବୈଦିକ ଯୁଗରେ ବେଦ ସବୁକୁ ମୁଖସ୍ଥ ଓ ବ୍ୟାଖ୍ୟାନ କରିବାହିଁ ଥିଲା ପ୍ରଧାନଶିକ୍ଷା । ସେକାଳରେ ପାଣ୍ଡିତ୍ୟର ଗୌରବମୟ ଉପାଧି ଥିଲା 'ବେଦବିତ୍' ଅର୍ଥାତ୍ ଯେ ବେଦ ଜାଣିଥିଲେ । ଏବେ ବି ଖାଣ୍ଟି ମୁସ୍‌ଲେମ୍ ଶିକ୍ଷା କେବଳ କୋରାନ୍ ମୁଖସ୍ଥୀକରଣ ।

କିନ୍ତୁ କେବଳ କୋରାନ୍ ବା ବେଦ ମୁଖସ୍ଥ କଲେ ଜୀବନ ସଂଗ୍ରାମକୁ ଲୋକ ନିର୍ଭୟରେ ଭେଟିପାରିବ ନାହିଁ । ସେଥିପାଇଁ ଆହୁରି ଅନେକପ୍ରକାର 'ବିଦ୍ୟା' ବା 'ଜାଣିବାର କଥା' ଆୟତ୍ତ କରିବା ଦରକାର । ଅନ୍ୟର ଆକ୍ରମଣରୁ ନିଜକୁ ରକ୍ଷାକରିବାପାଇଁ, ନିଜକୁ ସ୍ୱାସ୍ଥ୍ୟସମ୍ପନ୍ନ କରି ରଖିବା ପାଇଁ ଦରକାର ଦୃଢ଼ ସବଳ ଶରୀର, ଜୀବିକାର୍ଜନପାଇଁ ଦରକାର କୌଣସି ଏକ ବୈଷୟିକ ଶିକ୍ଷା, ଜୀବନକୁ ଉପଭୋଗ କରିବାପାଇଁ, ଆତ୍ମାର ଉତ୍କର୍ଷଣ ଓ ଉନ୍ନୟନପାଇଁ ଦରକାର ସାହିତ୍ୟ, ସଙ୍ଗୀତ ଓ କଳାର ଚର୍ଚ୍ଚା । ସମାଜପତିମାନେ ଯେତେବେଳେ ଦେଖିଲେ ଯେ ମନୁଷ୍ୟତ୍ୱର ପରିପୂର୍ଣ୍ଣ ବିକାଶପାଇଁ ଛୋଟ ମଣିଷର ଏଇପରି ନାନାବିଧ ଶିକ୍ଷା ଦରକାର, ସେତେବେଳେ ସେମାନେ ଶିକ୍ଷକ ଓ ଶିକ୍ଷାୟତନକୁ ଧର୍ମ, ପୁରୋହିତ ଓ ଧର୍ମମନ୍ଦିରରୁ ଅଲଗା କରିନେଇ ସେସବୁକୁ ଯଥାଯୋଗ୍ୟ ସ୍ୱାତନ୍ତ୍ର୍ୟ ଦାନ କଲେ ।

ଭାରତର ପ୍ରାଚୀନ ଗୁରୁକୁଳ ବା ଗ୍ରୀକ୍ ଜିମ୍ନେଜିୟମ୍‌ରେ ମନୁଷ୍ୟର ଶରୀର, ବୁଦ୍ଧି ଓ ଆତ୍ମା, ଏହି ତିନି ବିଭାଗରେ ପ୍ରୟୋଜନ ଅନୁଯାୟୀ ଶିକ୍ଷାର ଧାରା ଚାଲିଆସିଥିଲେହେଁ ଗତ ଶତାବ୍ଦୀରେ ୟୁରୋପରେ ମନୁଷ୍ୟର ଶିକ୍ଷା କେଉଁ ଆଭିମୁଖ୍ୟ ଉପରେ ପ୍ରତିଷ୍ଠିତ ହେବ, କେଉଁ କେଉଁ ବିଷୟକୁ କେନ୍ଦ୍ରକରି ଶିକ୍ଷା ଦିଆଯିବ, କେଉଁ ବିଷୟ ମୁଖ୍ୟ କେଉଁ ବିଷୟ ଗୌଣ ହେବ, ଶିକ୍ଷାୟତନ କେଉଁ ଆଦର୍ଶରେ ପରିଚାଳିତ ହେବ, ସେସବୁର ଗଭୀର ଓ ବିସ୍ତୃତ ଆଲୋଚନା ହୋଇଯାଇଛି । ଇଂରେଜ ଚିନ୍ତାନାୟକ ହର୍ବର୍ଟ୍ ସ୍ପେନ୍‌ସର୍ ଏ ସମ୍ବନ୍ଧରେ ଯେଉଁ ବିଶ୍ଳେଷଣାତ୍ମକ ନିବନ୍ଧ ଲେଖିଯାଇଛନ୍ତି, ଏବର ବିଦ୍ୟାଳୟମାନଙ୍କର କାର୍ଯ୍ୟସୂଚୀ ଓ ଶିକ୍ଷାବ୍ୟବସ୍ଥାର ଆଦର୍ଶ ଏକପ୍ରକାର ତାହାରିହିଁ ଅନୁସରଣ କରେ ।

ହର୍ବର୍ଟ୍ ସ୍ପେନ୍‌ସର୍‌ଙ୍କ ମତରେ, ତରୁଣ ମନୁଷ୍ୟର ଶିକ୍ଷା ଯେଉଁ ଛଅଟି ଆଭିମୁଖ୍ୟ ଉପରେ ଦୃଷ୍ଟି ଦେବ, ମୁଖ୍ୟ ଗୌଣାନୁକ୍ରମରେ ତାହାର ବର୍ଣ୍ଣନା ଏଇପରି –

୧ । ତରୁଣ ମନୁଷ୍ୟର ଶରୀର ଓ ମନ ଏପରି ନିଷ୍କଳଙ୍କ, ନିଷ୍ପାପ, ସୁସ୍ଥ, ଦୃଢ଼, ସୁନ୍ଦରଭାବରେ ଗଢ଼ାହେବା ଉଚିତ ଯେପରିକି ସେ ଜାତିକି ସୁସ୍ଥ, ବୁଦ୍ଧିମାନ୍ ବଂଶଧର ଦେଇଯାଇପାରିବ । ଏହା ହେଲା ବ୍ୟକ୍ତିର ପ୍ରଥମ ପ୍ରୟୋଜନ ଓ ବିଦ୍ୟାଳୟର ପ୍ରଥମ ଦାୟିତ୍ୱ ।

୨ । ଭବିଷ୍ୟତ୍ ବଂଶଧରର ଉପଯୁକ୍ତ ପରିପାଳନପାଇଁ ତରୁଣକୁ କୌଣସି ବୈଷୟିକ ଶିକ୍ଷା ଗ୍ରହଣ କରିବାକୁ ହେବ, ଯେପରିକି ସେ ସାଧୁ ସୁସ୍ଥଭାବରେ ଯଥେଷ୍ଟ ଜ୍ଞାନ ଅର୍ଜନ କରିପାରିବ । ଏହା ହେଲା ବ୍ୟକ୍ତିର ଦ୍ୱିତୀୟ ପ୍ରୟୋଜନ ଓ ବିଦ୍ୟାଳୟର ଦ୍ୱିତୀୟ ଦାୟିତ୍ୱ ।

୩ । କେବଳ ସନ୍ତାନଜନନ ବା ଅର୍ଥାର୍ଜନ ଯଥେଷ୍ଟ ନୁହେଁ,ଗୋଟିଏ ସନ୍ତାନସନ୍ତତିବହୁଳ ପରିବାରର ଜଞ୍ଜାଳ କିପରି ସମ୍ଭାଳିବାକୁ ହେବ, ଅର୍ଥାତ୍ ପିତୃତ୍ୱର ଓ ପରିବାରପତିର ଦାୟିତ୍ୱ

ପାଇଁ ତାକୁ ୧ ଏରୁ ଶିକ୍ଷାପାଇଁ ପ୍ରସ୍ତୁତ ହେବାକୁ ହେବ । ବ୍ୟକ୍ତିର ଏ ହେଲା ତୃତୀୟ ପ୍ରୟୋଜନ ଓ ବିଦ୍ୟାଳ ତୃତୀୟ ଦାୟିତ୍ୱ ।

୪ । ୧ ।ଜ ଓ ରାଷ୍ଟ୍ରର ଅଂଶଭାବରେ ତାଙ୍କ ଭାଗରେ ଯାହା କର୍ତ୍ତବ୍ୟ ପଡ଼ିବ ତାହା ତୁଲେଇବା ଇଁ ସେ ଯେପରି ଆଗରୁ ପ୍ରସ୍ତୁତ ହୁଅନ୍ତି । ଏହାହିଁ ନାଗରିକ ଦାୟିତ୍ୱ । ବ୍ୟକ୍ତି କେବେହେ ଲ ନିଜକୁ ଅଲଗା ମନେକରିବେନାହିଁ । ସବୁବେଳେ ରାଷ୍ଟ୍ର ଓ ସମାଜର ସାମୂହିକ କଲ୍ୟାଣ ଚିନ୍ତା କରିବେ ଓ ଆନ୍ତରିକତାର ସହିତ ସେଥିପାଇଁ କାମ କରିବେ । ଏହା ବ୍ୟକ୍ତିର ଚତୁର୍ଥ ପ୍ରୟୋଜନ ଓ ବିଦ୍ୟାଳୟର ଚତୁର୍ଥ ଦାୟିତ୍ୱ ।

୫ । ବିଦ୍ୟାଳୟ ମଧ ତରୁଣକୁ ଶିକ୍ଷା ଦେବ, ସେ ତାର ଅବସର ସମୟକୁ କିପରି କଟେଇବ ! ଏହାରି ଉପରେ ହିଁ ଦେଶର କଳା ଓ ସଂସ୍କୃତିର ପ୍ରସାର ଓ ଅଭିବୃଦ୍ଧି ନିର୍ଭର କରେ । ଦେଶର ଲୋକେ ଯଦି ତାଙ୍କର ଅବସରକାଳ ଆଳସ୍ୟରେ ବା ବ୍ୟସନରେ କଟାଇଦିଅନ୍ତି, ତେବେ ଦେଶର ସାହିତ୍ୟ ଓ କଳାର କଥା ଛାଡ଼ିଦିଅ, କୌଣସି ଉନ୍ନତିହିଁ ହୋଇପାରିବନାହିଁ । ତେଣୁ ଅବସରକାଳକୁ ଅପବ୍ୟୟ ନକରି ସୁସ୍ଥ, ସୁନ୍ଦର, ସୃଜନଶୀଳଭାବରେ କଟେଇବାର ଅଭ୍ୟାସ ଏକ ମହତ୍ ଶିକ୍ଷା । ଆମ୍ଭେମାନେ ସମସ୍ତେ ଜାଣୁଁ ଯେ ୟୁରୋପୀୟମାନେ ଏକ ମୁହୂର୍ତ୍ତ ସମୟ ସୁଦ୍ଧା ନଷ୍ଟ କରାଇଦିଅନ୍ତି ନାହିଁ । ଏ ସଦଭ୍ୟାସ ସେମାନେ ପିଲାଦିନେ ଘରେ ଓ ବିଦ୍ୟାଳୟରୁ ପାଇଥାନ୍ତି । ଏହାହିଁ ବ୍ୟକ୍ତିର ପଞ୍ଚମ ପ୍ରୟୋଜନ ଓ ବିଦ୍ୟାଳୟର ପଞ୍ଚମ ଦାୟିତ୍ୱ ।

ହର୍ବଟ୍ ସ୍ପେନ୍ସର୍‌ଙ୍କ ଉପରଲିଖିତ ମନୋଜ୍ଞ ବିଶ୍ଳେଷଣକୁ ଆମର ଶିକ୍ଷକମାନେ ମନରେ ରଖିଲେ ଜାତି ସେମାନଙ୍କଠାରୁ ଓ ସେମାନଙ୍କ ପରିଚାଳିତ ଶିକ୍ଷାୟତନମାନଙ୍କରୁ କଣ ଆଶାକରେ ତାହା ସେମାନେ ସହଜରେ ହୃଦ୍‌ବୋଧ କରିପାରିବେ – ମାଟ୍ରିକ୍ ବା ଗ୍ରାଜୁଯେଟ୍ ହେବା ଗୌଣ କଥା । ମୁଖ୍ୟ କଥା ହେଉଛି ଯେ ଦେଶ ଦରକାର କରୁଛି ସୁସ୍ଥ, ଶିକ୍ଷିତ, ସଂସ୍କୃତି-ସମ୍ପନ୍ନ, ଉତ୍ପାଦନ ଓ ଉନ୍ନୟନଶୀଳ ତରୁଣ ନାଗରିକର ଦଳ, ଯେଉଁମାନେ ନିଜର ଅଭିବୃଦ୍ଧି ଭିତରଦେଇ ଜାତି ଓ ରାଷ୍ଟ୍ରର ସାମୂହିକ କଲ୍ୟାଣ ଆନୟନ କରିବା ସଙ୍ଗେ ସଙ୍ଗେ ନିଜ ନିଜ ଅବସରକାଳର ଯଥାଯୋଗ୍ୟ ବିନୋଦନ କରି ଜାତିର କଳା ଓ ସଂସ୍କୃତିକୁ ମଧ ବଞ୍ଚେଇରଖିବେ ।

ବାଳକବାଳିକାମାନଙ୍କର ପ୍ରଥମ ସ୍କୁଲ୍‌ଗୃହ, ଏକଥା କୁହାଯାଇଛି । ଯେଉଁଠି ଆଦର୍ଶ ପିତାମାତା ଓ ସଂସ୍କୃତିସମ୍ପନ୍ନ ଗୃହ, ତାହାଠାରୁ କୌଣସି ଶିକ୍ଷାୟତନ ବଡ଼ ହୋଇନପାରେ । କିନ୍ତୁ ସବୁ ଘର ଓ ସବୁ ପିତାମାତା ଆଦର୍ଶ ନୁହନ୍ତି । ଅନେକ ଘର ଯେକୌଣସିପ୍ରକାର ମାନସିକ ଓ ଆଧ୍ୟାତ୍ମିକ ବିକାଶପାଇଁ ଅନୁପଯୁକ୍ତ । ତେଣୁ ମୋଟ୍ ଉପରେ ଜାତିର ନୂତନ ବଂଶଧରମାନଙ୍କ ପାଇଁ ସ୍କୁଲ୍ ବା ଶିକ୍ଷାୟତନ ହେବ ଦ୍ୱିତୀୟ ଗୃହ । ଯାହା ଘରେ ଅପ୍ରାପ୍ୟ, ସେହି ସ୍ନେହ, ଶିକ୍ଷା, ସଂଯମ ଓ ସଂସ୍କୃତିକୁ ଦେଶର ତରୁଣବର୍ଗ ସ୍କୁଲ୍‌ରେ ଯେପରି ପାଆନ୍ତି, ତାହା ଶିକ୍ଷାୟତନର ଶିକ୍ଷକ ଓ ପ୍ରଧାନଶିକ୍ଷକଙ୍କର ଦେଖିବାର କଥା ।

ଦ୍ୱିତୀୟ କଥା ଦେଖିବାର ଏହି ଯେ, ଶିକ୍ଷା ତରୁଣକୁ ଜୀବନପାଇଁ ପ୍ରସ୍ତୁତ କରେ । ତେଣୁ ଯେଉଁ ଜୀବନ ସଙ୍ଗେ ତରୁଣର ସମ୍ପର୍କ ଶୀଘ୍ର ଘଟିବ, ସ୍କୁଲ୍ ବା ଶିକ୍ଷାୟତନ ସେହି ବାହାର

ଜୀବନର ଏକ ପ୍ରତିବିମ୍ବ ହେବା ଉଚିତ । ଗ୍ରେଟ୍‌ବ୍ରିଟେନ୍‌ର ପ୍ରସିଦ୍ଧ ପବ୍ଲିକ୍ ସ୍କୁଲ୍‌ଗୁଡ଼ିକ ଏଇ ଆଦର୍ଶରେ ପରିଚାଳିତ । ଏହି ପ୍ରସିଦ୍ଧ ଶିକ୍ଷାନୁଷ୍ଠାନମାନଙ୍କରେ ବହିପାଠ ଅପେକ୍ଷା ଅଧିକ ନଜର ଦିଆଯାଏ ଛାତ୍ରର ସାମାଜିକ ବ୍ୟବହାର ପ୍ରତି, ଅର୍ଥାତ୍ ସେ ଦଶଜଣଙ୍କ ସାଥିରେ କିମିତି ମିଳିମିଶି ଚଳୁଛି, ନିୟମ ମାନୁଛି ନା ଠକିଦେବାର ଚେଷ୍ଟା କରୁଛି, ଯେଉଁ ଛୋଟ ବା ବଡ଼ ଦାୟିତ୍ୱଟି ତାକୁ ଦିଆଗଲା, ତାହା ସେ କିପରି ନୈପୁଣ୍ୟ ଓ ଆନ୍ତରିକତାର ସହିତ ସମ୍ପନ୍ନ କରୁଛି, କର୍ତ୍ତୃପକ୍ଷଙ୍କୁ ମାନୁଛି କି ନାହିଁ, ଯାହା ପ୍ରତି ଯେପରି ସମ୍ମାନ ଦେଖାଇବାର କଥା ତାହା କରୁଛି କି ନାହିଁ, ଦେହକୁ ସୁସ୍ଥ ରଖୁଛି କି ନାହିଁ, ଅବସରକାଳ କୌଣସି ନା କୌଣସି ଭଲ କାମରେ ନିୟୋଜିତ କରୁଛି କି ନାହିଁ ଇତ୍ୟାଦି । ସମାଜରେ ଚଳିବାକୁ ହେଲେ ଟେକ୍ସ୍‌ବୁକ୍‌ର ଘୋଷା-ଜ୍ଞାନ ଅପେକ୍ଷା ଏଇଗୁଡ଼ିକ ବିଶେଷ ଦରକାର । ତେଣୁ ଇଂଲଣ୍ଡବେ ଏହି ପ୍ରସିଦ୍ଧ ଶିକ୍ଷାୟତନଗୁଡ଼ିକୁ ସମାଜର ଏକ ଆଦର୍ଶ ପ୍ରତିବିମ୍ବ କରି, ତରୁଣ ଶିକ୍ଷାର୍ଥୀମାନଙ୍କୁ ଆଦର୍ଶ ନାଗରିକଭାବରେ ଗଢ଼ିବାର ଚେଷ୍ଟା କରାଯାଏ । ଇଂଲଣ୍ଡର ବିରାଟ ସାମ୍ରାଜ୍ୟକୁ ଗଢ଼ିବା ଓ ନିପୁଣଭାବରେ ଶାସନ କରିବାରେ ଏଇ ପବ୍ଲିକ୍ ସ୍କୁଲ୍‌ର ଛାତ୍ରମାନେ ହିଁ ବିଶେଷ ଭାବରେ ଦାୟୀ । ଇଂଲଣ୍ଡର ଅନ୍ୟାନ୍ୟ ସ୍କୁଲ୍‌ସବୁ ଏଇ ପବ୍ଲିକ୍ ସ୍କୁଲ୍‌ଗୁଡ଼ିକର ଡିସିପ୍ଲିନ୍, ନିୟମାନୁବର୍ତ୍ତିତା, ନିପୁଣତାକୁ ଆଦର୍ଶ ରୂପେ ରଖି ଚଳିଥାନ୍ତି । ଏଇ ପବ୍ଲିକ୍ ସ୍କୁଲ୍‌ଗୁଡ଼ିକର ଖେଳପଡ଼ିଆ ଏକ ଏକ ଶିକ୍ଷଣୀୟ ଆଦର୍ଶ ଅନୁଷ୍ଠାନ । ଡିଉକ ଅଫ୍ ଓଏଲିଂଟନ୍ ୱାଟର୍ଲୁ ଯୁଦ୍ଧକ୍ଷେତ୍ରରେ ଦୁର୍ଦ୍ଧର୍ଷ ନେପୋଲିଅନ୍‌ଙ୍କୁ ପରାସ୍ତ କରିଥିଲେ । ଇଂଲଣ୍ଡରେ ଏକ କଥା ପ୍ରଚଳିତ ଯେ ୱାଟର୍ଲୁ ଯୁଦ୍ଧକ୍ଷେତ୍ରର ପୂର୍ବାଭ୍ୟାସ ଇଟନ୍-ସ୍କୁଲ୍‌ର ଖେଳପଡ଼ିଆରେହିଁ କରାହୋଇଥିଲା । ଇଂଲଣ୍ଡର ପବ୍ଲିକ୍ ସ୍କୁଲ୍‌ମାନଙ୍କରେ କ୍ଲାସ ରୁମ୍, ଖେଳପଡ଼ିଆ, ଭୋଜନାଗାର, ହଷ୍ଟେଲ୍—ସର୍ବତ୍ର, ତରୁଣଜୀବନକୁ ଏପରି କଠୋର ଡିସିପ୍ଲିନ୍ ଭିତର ଦେଇ ଗଢ଼ିଆଣିବାକୁ ଚେଷ୍ଟା କରାଯାଇଥାଏ ଯେ, ଭବିଷ୍ୟତ୍ ଜୀବନରେ ସର୍ବକ୍ଷେତ୍ରରେ ତାହା ସୁଫଳ ପ୍ରସବ କରିଥାଏ । ଉପରେ ଉଦ୍ଧୃତ କରାଯାଇଥିବା ବାକ୍ୟର ତାହାହିଁ ତାତ୍ପର୍ଯ୍ୟ ।

ତେଣୁ ପ୍ରଧାନଶିକ୍ଷକ ଓ ତାଙ୍କ ସହକାରୀମାନଙ୍କର ଦେଖିବା ଉଚିତ ଯେ ଆମ ଦେଶର ସାମାଜିକ ଓ ଆଚାରବ୍ୟବହାର, ଆମର ସାହିତ୍ୟ, କଳା, ସଂସ୍କୃତିରେ ଯାହା କିଛି ଉତ୍କୃଷ୍ଟ, ଆମର ଶିକ୍ଷାୟତନମାନଙ୍କରେ ଦେଶର ତରୁଣମାନଙ୍କ ଜୀବନରେ ସେସବୁକୁ ଅଙ୍ଗୀଭୂତ କରିବାକୁ ହେବ । ତାହାଦ୍ୱାରା ଦେଶର ଓ ଜାତିର ଯାହା ନିଜସ୍ୱ ସଭ୍ୟତା ଓ ସଂସ୍କୃତି ତାହା ବଞ୍ଚି ରହିବ । ଦୈନନ୍ଦିନ ଜୀବନରେ ପିଲେ ଘରେ ଯେଉଁ ସ୍ନେହାଦର, ଯେଉଁ ଯତ୍ନ ପାଆନ୍ତେ, ଶିକ୍ଷାୟତନମାନଙ୍କରେ ମଧ୍ୟ ସେମାନଙ୍କ ନିକଟରେ ସେ ସବୁ ଯେତେଦୂର ସମ୍ଭବ ସୁପ୍ରାପ୍ୟ ହୁଏ ତାହା ଦେଖିବା ଉଚିତ । ଅନ୍ୟପକ୍ଷରେ ଘରେ ଯେଉଁ ଡିସିପ୍ଲିନ୍‌ର ଅଭାବ ବା ଆମ ସଭ୍ୟତା ବା ସମାଜରେ ଯେଉଁ ଯେଉଁ କଲ୍ୟାଣକର ଅଭ୍ୟାସ ଓ ବ୍ୟବହାର ନାହିଁ, ଦେଶର ତରୁଣମାନଙ୍କୁ ଶିକ୍ଷାୟତନମାନଙ୍କରେ ସେସବୁରେ ଅଭ୍ୟସ୍ତ କରାଇ ଦେଶରେ ଏକ ନୂତନ ବଳିଷ୍ଠ, ପରିପୂର୍ଣ୍ଣ ଜାତିର ଅଭ୍ୟୁଦୟରେ ଶିକ୍ଷକମାନେ ସକ୍ରିୟ ଓ ସଚେତନ ଅଂଶଗ୍ରହଣ କରିବେ । ଜାତି ଓ ଦେଶ ସେମାନଙ୍କଠାରୁ ଏହାହିଁ ଆଶା କରେ ।

ପ୍ରତ୍ୟେକ ଶିକ୍ଷାୟତନର ଚାରିଟି ପ୍ରଧାନ ଅଙ୍ଗ ଥାଏ । ପ୍ରଧାନଶିକ୍ଷକ ଓ ତାଙ୍କ ସହକାରୀମାନଙ୍କର ପ୍ରଯତ୍ନ ହେବା ଉଚିତ, ଯେପରି ଏଇ ଚାରିଟିଯାକ ଅଙ୍ଗ ସମଭାବରେ ଯତ୍ନ ପାଆନ୍ତି । ତା ହେଲେ ଶିକ୍ଷାୟତନର ଯେଉଁ ଆଦର୍ଶ ଉପରେ ବର୍ଣ୍ଣିତ ହେଲା, ତାହା ଅନେକ ପରିମାଣରେ ଆୟତ୍ତ ହୋଇପାରେ ।

ଭାରତବର୍ଷରେ ବର୍ତ୍ତମାନ ସ୍କୁଲ୍ କହିଲେ କେବଳ କ୍ଳାସ୍-ପଢ଼ାକୁହିଁ ବୁଝାଏ । ସେହି ଯୋଗୁହିଁ ଆମର ଶିକ୍ଷା ବ୍ୟବସ୍ଥା ଚାରିଆଡ୍ଡୁ ନିନ୍ଦିତ ଏବଂ ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ସ୍କୁଲ୍ ଓ ସ୍କୁଲ୍ ଶିକ୍ଷକସବୁ ଯେଉଁ ଗଭୀର ଛାପ ପକାଇବାର ଆଶା କରାଯାଏ, ତାହା ଘଟୁନାହିଁ । ବରଂ ସ୍କୁଲ୍‌ସବୁ ବିଫଳତାର, ନୈରାଶ୍ୟର ଏକ ଏକ ଜନ୍ମସ୍ଥଳ ହୋଇଉଠୁଛନ୍ତି ।

ଶିକ୍ଷାୟତନର ପ୍ରଧାନ ଚାରିଟି ଅଙ୍ଗ ଏଇ–

(୧) କ୍ଳାସ୍-କକ୍ଷ, (୨) ଲାଇବ୍ରେରି, (୩) ହଷ୍ଟେଲ୍ ଓ (୪) ଖେଳପଡ଼ିଆ ।

ଏଇ ପ୍ରତ୍ୟେକଟି ଅଙ୍ଗର ସୁନିପୁଣ ପରିଚାଳନା ଓ ସମୃଦ୍ଧିପାଇଁ କି କି ପ୍ରଯତ୍ନ ଦରକାର ତାହା ପରବର୍ତ୍ତୀ ପ୍ରବନ୍ଧମାନଙ୍କରେ ବର୍ଣ୍ଣିତ ହେବ ।

---

# କ୍ଲାସ୍-କକ୍ଷର ସାଧନା

ଇଂଲଣ୍ଡର ପ୍ରସିଦ୍ଧ ପବ୍ଲିକ୍ ସ୍କୁଲ୍‌ଗୁଡ଼ିକ ପୂରାପୂରି ଆବାସିକ – ଠିକ୍ ଆମର ପୂର୍ବର ଋଷି ଆଶ୍ରମସବୁ ପରି । ସେଠାରେ ପ୍ରତ୍ୟେକ ଛାତ୍ରର ଜୀବନ ଅହୋରାତ୍ର କୌଣସି ନା କୌଣସି ଶିକ୍ଷକର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କଟେ ।

ଭାରତବର୍ଷର ସ୍କୁଲ୍‌ମାନଙ୍କରେ ଅଳ୍ପ ଛାତ୍ର ସ୍କୁଲ୍ ହଷ୍ଟେଲ୍‌ରେ ରହନ୍ତି, ଅଧିକାଂଶ ବାହାରୁ ଆସି ଦଶଟାରୁ ଚାରିଟା କ୍ଲାସ୍‌ରେ ବସି ଫେରିଯାନ୍ତି । ଅଧିକାଂଶ ଛାତ୍ରଙ୍କର ଶିକ୍ଷକମାନଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କ ସମ୍ଭବ ହୁଏନାହିଁ । ସେମାନଙ୍କର ପାରସ୍ପରିକ ଜଣାଶୁଣା ସେହି ଦଶଟାରୁ ଚାରିଟା, ପାଞ୍ଚ ଛ ଘଣ୍ଟା କାଳ । ଶିକ୍ଷକମାନେ କହିପାରନ୍ତି ଓ କହିବାର ଶୁଣାଯାଏ ଯେ, ଦିନର ଚବିଶ ଘଣ୍ଟା ଭିତରୁ ତ୍ରି-ଚତୁର୍ଥାଂଶ ସମୟ ତ ବାହାରେ କଟିଲା, ଆମ ସାଥିରେ ତାଙ୍କର ଦେଖା ତ ମୋଟେ ଦିନରେ ପାଞ୍ଚଘଣ୍ଟା ସମୟ, ତା ପୁଣି ପାଠ୍ୟ ପୁସ୍ତକ ସରେଇବାରେ କଟେ, ଆମେ ତାଙ୍କର ଉନ୍ନତି ଅବନତିପାଇଁ କିପରି ଦାୟୀ ହେବୁଁ ?

କିନ୍ତୁ ତଳେଇ ଦେଖିଲେ, ଯେକୌଣସି ବୁଦ୍ଧିମାନ୍ ଶିକ୍ଷକ ଦେଖିପାରିବେ ଯେ, ଶିକ୍ଷକ ଯଦି ଦିନର ଏଇ ପାଞ୍ଚ ଛ ଘଣ୍ଟା ମାତ୍ର ସମୟ ଶୃଙ୍ଖଳାର ସହିତ, ଯୋଜନାନୁକ୍ରମେ, ଆନ୍ତରିକତା ଓ ବିବେଚନାର ସହିତ ବ୍ୟୟ କରନ୍ତେ, ତେବେ ତାହାହିଁ ଛାତ୍ରର ସମଗ୍ର ଜୀବନକୁ ପ୍ରଭାବିତ ଓ ସଙ୍ଗଠିତ କରିପାରନ୍ତା । ଧରିନିଆଯାଉଛି ଯେ ସ୍କୁଲ୍‌ରେ ପିଲେ ପରୀକ୍ଷାପାଇଁ ପ୍ରସ୍ତୁତ ହୁଅନ୍ତି । କେତେଜଣ ଶିକ୍ଷକ କିନ୍ତୁ ପ୍ରକୃତରେ ପିଲାଙ୍କୁ ଏଇ ପରୀକ୍ଷାରୂପକ ପରୀକ୍ଷାପାଇଁ ଠିକ୍ ବାଟରେ ତାଲିମ୍ କରାନ୍ତି ? ପ୍ରତ୍ୟେକ ପରୀକ୍ଷାର୍ଥୀଙ୍କୁ ପରୀକ୍ଷାରେ ପ୍ରବନ୍ଧ ଲେଖିବାକୁ ପଡ଼େ । ସମଗ୍ର ପତ୍ରଟି ପ୍ରତି ନଜର ଦେଲେ ପ୍ରବନ୍ଧଟି ଲେଖିବାପାଇଁ ତିରିଶମିନିଟ୍‌ରୁ ବେଶି ସମୟ ମିଳିବ ନାହିଁ । ଏଇ ତିରିଶମିନିଟ୍ ଭିତରେ ପରୀକ୍ଷାର୍ଥୀକୁ ବିଷୟଟିର ବିଶ୍ଳେଷଣ କରି, ପଏଣ୍ଟଗୁଡ଼ିକ ଭାବି, ନୋଟ୍ କରି, ସଜେଇ, ପ୍ରବନ୍ଧଟିରେ କୌଣସି ଅବାନ୍ତର କଥା ନପୂରାଇ, ସୁଷ୍ଠୁ-ସଙ୍ଗତଭାବରେ ଲେଖି ପୁଣି ରିଭାଇଜ୍ କରିବାକୁ ହେବ । ଏପରି ନକଲେ ପ୍ରବନ୍ଧଟି ଭଲ ଲେଖା ହେବ ନାହିଁ । ପୁଣି ପୂର୍ବରୁ ଏପରି 'ଏସେ' ଲେଖିବାରେ ଅଭ୍ୟସ୍ତ ହୋଇନଥିଲେ ପରୀକ୍ଷା ହଲ୍‌ରେ ହଠାତ୍ କୌଣସି ଛାତ୍ର ଆଶାନୁରୂପ ଭଲ 'ଏସେ' ଲେଖିପାରିବେନାହିଁ । ଏଇ କାଳ-ସୀମାକୁ ମନରେ ରଖି କେତେଜଣ ଶିକ୍ଷକ ଛାତ୍ରମାନଙ୍କୁ 'ଏସେ' ଲେଖେଇବାରେ ଅଭ୍ୟସ୍ତ କରେଇଥାନ୍ତି ? ବିଶ୍ୱବିଦ୍ୟାଳୟ ଯେ ଚାହୁଛି ୧୪-୧୫ ବର୍ଷର ଗୋଟିଏ ବାଳକ ତିରିଶମିନିଟ୍ ଭିତରେ ଗୋଟିଏ ପରିଚିତ ବିଷୟ ଉପରେ ଗୋଟିଏ ସୁପାଠ୍ୟ ପ୍ରବନ୍ଧ ଲେଖିବ, ତାର ଗଭୀର ଅର୍ଥ ଅଛି । ଏହା ଚିନ୍ତାର କ୍ଷିପ୍ରତା, ପ୍ରଖରତା ଓ ଏକାଗ୍ରତା ସୂଚିତ କରେ । ଏହା ସୂଚିତ କରେ ଲିଖନ ଶୈଳୀର ବହୁବର୍ଷଧରି ସାଧନା । ପନ୍ଦରବର୍ଷ ବୟସରେ ଯିଏ ତିରିଶମିନିଟ୍‌ରେ ଗୋଟିଏ

ସୁଲିଖିତ ପ୍ରବନ୍ଧ ଦେଇପାରେ, ଧରିନିଆଯିବ ଯେ ସେ ପିଲା ପରେ ଯେକୌଣସି ଜଟିଳ ସମସ୍ୟାକୁ କ୍ଷିପ୍ରଭାବରେ ବିଶ୍ଳେଷିତ କରି ସମାଧ ଅବସ୍ଥାକୁ ନେଇଆସିବ । ସେ ହେବାର ଆଶା କରାଯାଏ ଜଣେ ସୁଯୋଗ୍ୟ ମାଜିଷ୍ଟ୍ରେଟ୍ ବା ଜଜ୍ ।

ପ୍ରବନ୍ଧ ରଚନା ପରି, ସବ୍‌ଷ୍ଟାନ୍‌ସ୍ ବା ସାରାଂଶ ଲେଖିବାରେ, ପ୍ରକୃତି ପର୍ଯ୍ୟବେକ୍ଷଣରେ, ମାଥମାଟିକ୍‌ସ, ବିଜ୍ଞାନ ଓ ସାହିତ୍ୟ ଚର୍ଚ୍ଚାରେ ମଧ ଗଭୀର ଅର୍ଥ ଅଛି । ଆମେ ଭୂଗୋଳବିଦ୍ୟା ପଢ଼ାଉଁ କେବଳ ପିଲାଙ୍କୁ ନଦୀ, ପର୍ବତ, ନଗର ଓ ଦେଶ ମହାଦେଶର ବର୍ଣ୍ଣନା ମୁଖସ୍ଥ କରାଇ । କିନ୍ତୁ ସୋଭିଏଟ୍ ଦେଶରେ ଭୂଗୋଳ ଶ୍ରେଣୀରେ ଶିକ୍ଷକ ଛାତ୍ରଛାତ୍ରୀଙ୍କ ଚିତ୍ତରେ ଏହି ପ୍ରେରଣା ପ୍ରବେଶ କରାଇବାକୁ ଚେଷ୍ଟା କରିଥାନ୍ତି ଯେ, ପ୍ରକୃତି ମନୁଷ୍ୟର ଭୃତ୍ୟ, ମନୁଷ୍ୟ ଏ ପୃଥିବୀର ଅଧୀଶ୍ୱର, ମନୁଷ୍ୟ ଏ ପୃଥିବୀର ମୁଖ ପରିବର୍ତ୍ତନ କରିପାରିଛି ଅନେକାଂଶରେ, ପ୍ରକୃତିର ବିଷଦାନ୍ତ ଉପାଡ଼ିପାରିଛି ଅନେକାଂଶରେ ଏବଂ ପ୍ରତ୍ୟେକ ସୋଭିଏଟ୍ ନାଗରିକ ଏଇ ମନୋବୃତ୍ତି ନେଇ ବଢ଼ିବା ଉଚିତ ଯେ ସେ ମଧ ପ୍ରକୃତିକୁ ଜବତ୍ କରିବାରେ ପ୍ରୟାସ କରି ଏ ପୃଥିବୀକୁ ମନୁଷ୍ୟବାସର ଅଧିକ ଉପଯୋଗୀ କରିବାରେ ଗୌରବାବହ ଅଂଶଗ୍ରହଣ କରିବ । ଆମର କେଉଁ ସ୍କୁଲ୍‌ରେ ଭୂଗୋଳ ବା ବିଜ୍ଞାନ ଶ୍ରେଣୀରେ ପିଲାଏ ଏ ପ୍ରେରଣା ପାଆନ୍ତି ? ପ୍ରତ୍ୟେକ ଶାସ୍ତ୍ରର ଗୋଟିଏ ଅନ୍ତର୍ନିହିତ ଅର୍ଥ ଅଛି — ତାହା କେବଳ କେତେଗୁଡ଼ିଏ ପରସ୍ପର ସମ୍ବନ୍ଧ ଖବରର ମାଳା ନୁହେଁ । ତାହାର ଜୀବନପ୍ରତି ଗୋଟିଏ ବାଣୀ ଅଛି । ସେହି ବାଣୀ ବିନା ସେହି ବିଷୟଗୁଡ଼ିକ ଜୀବନହୀନ ଶରୀର ମାତ୍ର । ସେହି ବାଣୀର ଆଦର୍ଶକୁ ଆଗରେ ରଖି ସିଲାବସ୍‌ର ବିଷୟଗୁଡ଼ିକ ଅଧ୍ୟାପିତ ହେଲେ, ଆମର ଶ୍ରେଣୀକକ୍ଷଗୁଡ଼ିକ ଜୀବନ୍ତ ହୋଇଉଠନ୍ତା ଏବଂ ସପ୍ତାହରେ ଘଣ୍ଟାଏ ସେପରି ପଢ଼ା ହେଲେ ମଧ ତାହାର ପ୍ରଭାବ ହୁଅନ୍ତା ଜୀବନବ୍ୟାପୀ ।

ଶିକ୍ଷକ ଯଦି ଅଧ୍ୟାପନାର, ପିଲାଙ୍କ ଲିଖନ ଓ କଥନାଭ୍ୟାସର ଏବଂ ବ୍ୟବହାରର ମାନଦଣ୍ଡ ସତର୍କଭାବରେ ଉଚ୍ଚ ରଖିବେ, ଦିନର ସେହି ପାଞ୍ଚଘଣ୍ଟାହିଁ ଛାତ୍ରଜୀବନକୁ ସୁଗଠିତ କରିବା ପାଇଁ ଯଥେଷ୍ଟ । ଶିକ୍ଷକ କୌଣସିମତେ ଛାତ୍ରର ଭ୍ରମ-ପ୍ରମାଦପୂର୍ଣ୍ଣ ବିଲିବିଲିଆ, ଅଯତ୍ନଲିଖିତ ଲେଖା ଗ୍ରହଣ କରିବେନାହିଁ । ଛାତ୍ର ଗୋଟିଏ ନିର୍ଦ୍ଦିଷ୍ଟ ମାନଦଣ୍ଡର ସମ୍ମୁଖୀନ ହେଲା ପର୍ଯ୍ୟନ୍ତ ତାର ଲେଖାକୁ ବାରମ୍ବାର ସଂଶୋଧିତ ଓ ପୁନର୍ଲିଖିତ କରିବାକୁ ତାକୁ ବାଧକରିବେ । ଏହି ସାଧନା ପରଜୀବନରେ ଛାତ୍ରକୁ ଅଜସ୍ରକଲ୍ୟାଣ ଦେବ ଓ ସେଇ ଛାତ୍ର ଗୁରୁକୁ ଗୁରୁ ବୋଲି ନମସ୍କାର କରିବ ସେଥିପାଇଁ । କିନ୍ତୁ ଭ୍ରମବହୁଳ ନିମ୍ନ ଶ୍ରେଣୀର ଲେଖାକୁ ଗ୍ରହଣ କରିନିଆଗଲେ, ଛାତ୍ରର ଉନ୍ନତି ହେବ କିପରି ? କେତେଜଣ ଶିକ୍ଷକ ଏ ବିଷୟରେ ସମ୍ପୂର୍ଣ୍ଣ କର୍ତ୍ତବ୍ୟପରାୟଣ ଓ ସଚେତନ ?

କିଶୋର ଛାତ୍ରଛାତ୍ରୀମାନଙ୍କ ଆଖିରେ ତାଙ୍କର ଶିକ୍ଷକମାନେହିଁ ଆଦର୍ଶ । ତାଙ୍କ 'ମାଷ୍ଟ୍ର'ଙ୍କ ଅପେକ୍ଷା ଆଉ କିଏ ବେଶି ଜାଣିଥିବ, ଏକଥା ଅନେକ ଛାତ୍ର ସହଜରେ ବିଶ୍ୱାସ କରିପାରନ୍ତି ନାହିଁ । ପ୍ରତ୍ୟେକ ଶିକ୍ଷକ କିଶୋର ପ୍ରାଣର ଏଇ ବିଶ୍ୱାସ, ଏଇ ଶ୍ରଦ୍ଧା ଯେପରି ନହରାନ୍ତି, ତାହା ଦେଖିବା ଉଚିତ । ନିୟମାନୁବର୍ତ୍ତିତା, କର୍ତ୍ତବ୍ୟନିଷ୍ଠା, ଅଧ୍ୟବସାୟ, ଚରିତ୍ର, ନ୍ୟାୟପରତା ପ୍ରଭୃତି ଗୁଣର ଶିକ୍ଷକ ଛାତ୍ରମାନଙ୍କ ଆଖିରେ ଯେପରି ଏକ ଜୀବନ୍ତ ଆଦର୍ଶ ହୋଇ ରହନ୍ତି । ପାନ ବିଡ଼ି

ଖାଇ ପିଲାଙ୍କୁ ସେଇସବୁ କୁଅଭ୍ୟାସ ଛାଡ଼ିବାର ବକ୍ତୃତାଦେବା ନିରର୍ଥକ । ପିଲାଏ ସାଙ୍ଗେ ସାଙ୍ଗେ ଧରିନେବେ ଯେ, ମାଷ୍ଟ୍ରେ ନିଜେ ଯାହା କରିପାରୁନାହାନ୍ତି ପିଲାଙ୍କୁ ତାହା କରିବାକୁ ଉପଦେଶ ଦେଉଛନ୍ତି । ଏ ମିଥ୍ୟାଚାରର ଏକମାତ୍ର ଫଳ ଏଇ ଯେ, ମାଷ୍ଟ୍ରେ ପିଲାଙ୍କର ଭକ୍ତି ଓ ବିଶ୍ୱାସ ହରାନ୍ତି ।

ଶିକ୍ଷକ ପ୍ରତ୍ୟହ ଶ୍ରେଣୀକୁ ପ୍ରତ୍ୟେକଟି ଲେସନ୍‌ପାଇଁ ପରିପୂର୍ଣ୍ଣଭାବରେ ପ୍ରସ୍ତୁତ ହୋଇ ଆସିବେ । ତାଙ୍କର ଚାରି ବା ପାଞ୍ଚ ପିରିଅଡ଼୍‌ର ଚାରିପାଞ୍ଚଟି ବିଷୟ ପାଇଁ ସେ ତାଙ୍କର ପୂର୍ବର ଯୋଜନାନୁକ୍ରମରେ ଅଲଗା ଅଲଗା କରି ଚାରିପାଞ୍ଚଟି ନୋଟ୍ ଟିପି ଆଣିଥିବେ । ଲେସନ୍ ଆରମ୍ଭ ପୂର୍ବରୁ ଓ ଶେଷରେ ଯେଉଁ ଯେଉଁ ପ୍ରଶ୍ନ ପିଲାଙ୍କୁ ପଚାରିବେ ତାହା ବିସ୍ତୃତଭାବରେ ଲେଖିଆଣିଥିବେ । ଲେସନ୍ ଶେଷହେବା ମାତ୍ରେ ଆଗାମୀ ଲେସନ୍‌ପାଇଁ ପିଲାଙ୍କୁ ପାଠ୍ୟପୁସ୍ତକର କେତୋଟି ନିର୍ଦ୍ଦିଷ୍ଟ ପୃଷ୍ଠା ଆଗରୁ ପଢ଼ି ଆସିବାକୁ କହି ଓ ହୋମ୍-ଟାସ୍କ ଦେଇଯାଇ ସେ ପିଲାଙ୍କୁ ବିଦାୟ ଦେବେ । ପର ଲେସନ୍ ବେଳେ ଦେଇଥିବା ଟାସ୍କଟି କଠୋରତାର ସହିତ ସେ ପିଲାଙ୍କଠାରୁ ଆଦାୟ କରିବେ । ପିଲେ ଯାହା ଲେଖିଥିବେ ତାହା ସେ ଯତ୍ନର ସହିତ ଦେଖିବେ, ସେଥିରେ ନମ୍ବର ଦେବେ, ଦସ୍ତଖତ୍ କରିବେ ଓ ପିଲାଦ୍ୱାରା ସଂଶୋଧିତ ବା ଦରକାର ହେଲେ ପୁନର୍ଲିଖିତ କରାଇନେବେ । ପୁରୁଣା ଟାସ୍କ ଗୋଟିଏ ଚଳନୀୟ ଷ୍ଟାଣ୍ଡାର୍ଡ଼କୁ ନଆସିଲାଯାଏ ନୂଆ ଟାସ୍କ ଆରମ୍ଭ କରିବାକୁ ଦେବେନାହିଁ । ଏଇପରି ଛଅମାସ ନିଷ୍ଠାର ସହିତ କାମ କରାଯାଉ, ଶିକ୍ଷକ ଦେଖିବେ ଶ୍ରେଣୀରେ କି ପରିବର୍ତ୍ତନ ଦେଖାଦେଉଛି ।

ବିନା ଯୋଜନାରେ ଅଧ୍ୟାପନା କରିବା, କ୍ଲାସ୍‌ରେ ବିଷୟଗୁଡ଼ିକର ପୁଙ୍ଖାନୁପୁଙ୍ଖ ଆଲୋଚନା ନ କରି, ନୋଟ୍ ଓ ପ୍ରଶ୍ନ ସବୁ ଟିପି ନ ଆଣି, କୌଣସିମତେ ସଟାବଟା କରି ପିରିୟଡ଼୍‌ଟି ଚଳେଇଦେବାର ପ୍ରୟାସ ଓ ଅଭ୍ୟାସ ଶିକ୍ଷକ ପକ୍ଷରେ ଯେପରି ଏକ ଗର୍ହିତ ଅପରାଧ, ଜାତି ପକ୍ଷରେ ମଧ୍ୟ ସେହିପରି ଅକଲ୍ୟାଣକର । ଶିକ୍ଷକ ମନେକରିବେ ଯେ, ପ୍ରତ୍ୟେକ ପିରିୟଡ଼୍‌ରେ ସେ ପିଲାଙ୍କୁ ଜ୍ଞାନପଥରେ କିଛି ଆଗେଇ ନେଇଗଲେ, କିଛି ନୂଆ କଥା ବତେଇଲେ ଏବଂ ପିଲାଙ୍କ ଲେଖିବାରେ ଓ କହିବାରେ କିଛି ଭ୍ରମପ୍ରମାଦ ଦୂର କରିଦେଲେ । ତା ନହେଲେ ଛାତ୍ରର ମୂଲ୍ୟବାନ୍ ସମୟ ସେ ନଷ୍ଟ କଲେ ଏବଂ ଦେଶର ତରୁଣ କର୍ତ୍ତବ୍ୟ ସ୍ଥଳରେ କିପରି ଠକିବାକୁ ହୁଏ ତାହା ଶିକ୍ଷକଙ୍କ ଆଦର୍ଶରୁ ଶିଖିଲେ । ଏଇ ଜଘନ୍ୟ ଅଭ୍ୟାସ ଦେଶର ଶାସନଚକ୍ରରେ ବର୍ତ୍ତମାନ ଆତଙ୍କର କାରଣ ହୋଇଛି ।

ଯେହେତୁ ଆମର ବିଦ୍ୟାଳୟଗୁଡ଼ିକ ପୂର୍ଣ୍ଣଭାବରେ ଆବାସିକ ନୁହେଁ, ଅଧିକାଂଶ ଛାତ୍ର ଦିନର ଅଧିକାଂଶ ଶିକ୍ଷକମାନଙ୍କଠାରୁ ଦୂରରେ ରହନ୍ତି, ତେଣୁ କହିବାର ଶୁଣାଯାଏ ଯେ ଛାତ୍ର ଓ ଶିକ୍ଷକଙ୍କ ଭିତରେ ଯେଉଁ ଘନିଷ୍ଠ ବ୍ୟକ୍ତିଗତ ସମ୍ବନ୍ଧ ରହିବା ସର୍ବଥା କାମ୍ୟ, ତାହା ରଖିବା ଆଦୌ ସମ୍ଭବ ହେଉନାହିଁ । କିନ୍ତୁ ମୋର ମନେ ହୁଏ, ଶିକ୍ଷକ ଯଦି ନିଜର ଶିକ୍ଷକତାକୁ ଦାୟିତ୍ୱପୂର୍ଣ୍ଣ ଭାବରେ, ପବିତ୍ର କର୍ତ୍ତବ୍ୟଭାବରେ ପୂରଣ କରିବାକୁ ଦୃଢ଼ପ୍ରସ୍ତାବ ହୁଅନ୍ତି, ତେବେ ଦିନର ସେଇ ୪/୫ ଘଣ୍ଟା ଭିତରେହିଁ, ସ୍କୁଲ୍‌ର ଓ ଶ୍ରେଣୀର ଦୈନନ୍ଦିନ କର୍ମ ଭିତରେହିଁ ଶିକ୍ଷକ ତାଙ୍କ ଦାୟିତ୍ୱରେ ଥିବା ପ୍ରତ୍ୟେକ ଛାତ୍ରକୁ ଉତ୍ତମରୂପେ ଜାଣିପାରିବେ ଓ ତାର ଭଲମନ୍ଦର ନିୟାମକ ହୋଇପାରିବେ । ପ୍ରତ୍ୟେକ ପ୍ରଧାନଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ ହେଉଛି, ସେ ଦେଖିବେ ଯେ

ସ୍କୁଲ୍‌ର ଓ ଶିକ୍ଷକମାନଙ୍କର କାମ ଯୋଜନାନୁଯାୟୀ ଓ ଶୃଙ୍ଖଳାକ୍ରମେ ହୋଇଚାଲିଛି । ଅଧସ୍ତନ ଶିକ୍ଷକ ବା ପିଲେ ଯେତେଦିନ ସ୍କୁଲ୍ ବସିବ ସେ ଭିତରେ ହେଳାହେଳାରେ, ସଟାବଟା କରି କାମ କରିବାର ସୁଯୋଗ ଯେପରି ନପାନ୍ତି ବା ସେପ୍ରକାର ମନୋବୃତ୍ତି ମଧ୍ୟ ଯେପରି କୌଣସି କ୍ରମେ ପ୍ରଶ୍ରୟ ନପାଏ । ପ୍ରଧାନଶିକ୍ଷକ ନିଜେ, ତାଙ୍କ ଅଧସ୍ତନ ଶିକ୍ଷକବୃନ୍ଦ ଓ ପିଲେ ସ୍କୁଲ୍-କାଳର ଯେଉଁ ଦୈନନ୍ଦିନ ୫-୬ ଘଣ୍ଟା ତାହା କଠୋର, ଶୃଙ୍ଖଳିତ, ମାନସିକ ଓ ଶାରୀରିକ କର୍ମରେ ଯେପରି ବ୍ୟୟ କରନ୍ତି । ଦିନରେ ଏହିପରି ୫-୬ ଘଣ୍ଟାର ଯେଉଁ କଠିନ, ଗଭୀର, ଏକାଗ୍ର ମାନସିକ ବା କାୟିକ ଶ୍ରମର ଅଭ୍ୟାସ ତାହା ପ୍ରତ୍ୟେକ ଛାତ୍ରଜୀବନର ଶ୍ରେଷ୍ଠ ସଂପଦ ହୋଇ ରହିବ ଏବଂ ଶିକ୍ଷକମାନେ ବିଶୃଙ୍ଖଳ କାମ ନକରି ଯୋଜନାନୁଯାୟୀ ଓ ଅନୁପ୍ରାଣିତ ଭାବରେ କାମ କଲେ ଢେର୍ ଅଧିକ କାମ କରିପାରିବେ ଓ ଅନ୍ତତଃ ନିଜ ନିଜ ଶ୍ରେଣୀର ପ୍ରତ୍ୟେକ ପିଲା ସହ ଘନିଷ୍ଠ ବ୍ୟକ୍ତିଗତ ସମ୍ପର୍କ ରଖି ତାର ଜୀବନକୁ ପରିଚାଳିତ କରିବାରେ ଅଂଶ ନେଇପାରିବେ । ଏହା କିପରି ସୁବିଧାରେ ହୋଇପାରିବ ନିମ୍ନରେ ତାର ଏକ ଯୋଜନା ଦିଆଯାଉଛି । ଉତ୍ତର-ଓଡ଼ିଶା ଇନ୍ସପେକ୍ଟର ଥିଲାବେଳେ ମୁଁ ଏଇ ଶିକ୍ଷକଦର୍ପଣ ଯୋଜନାଟି ସ୍କୁଲ୍‌ମାନଙ୍କରେ ପ୍ରବର୍ତ୍ତିତ କରାଇଥିଲି । ଏହା ଯେ ଉତ୍ତମ ଫଳଦାନ କରିବ, ତାହା ପ୍ରତ୍ୟେକ ବୁଦ୍ଧିମାନ୍ ଶିକ୍ଷକ ଚେଷ୍ଟା କଲେହିଁ ବୁଝିପାରିବେ ।

ପ୍ରଧାନଶିକ୍ଷକ ନିଜେ ଓ ତାଙ୍କର ଅଧସ୍ତନ ଶିକ୍ଷକମାନେ ପ୍ରତ୍ୟେକେ ଖଣ୍ଡିଏ ଖଣ୍ଡିଏ ବଡ଼ ସାଇଜ୍(ଫୁଲ୍‌ସକାପ୍) ମୋଟା ବନ୍ଧାଇ ଖାତା ନିଜର କରି ତିଆରି କରିନେବେ । ପୃଷ୍ଠାଗୁଡ଼ିକ ରୁଲ୍ଡ୍ ହେବା ଉଚିତ । ଖାତା ଉପରେ ଶିକ୍ଷକ ନିଜ ନାମଟି ଓ କେଉଁ କେଉଁ ଶ୍ରେଣୀର କେଉଁ କେଉଁ ବିଷୟପାଇଁ ସେ ଦାୟୀ, ତାହା ଉପରେ ଲେଖି ରଖିବେ । ଖାତା ଭିତରେ ପ୍ରଥମ କରି ଗୋଟିଏ ସୂଚୀ-ପତ୍ର ରହିବ । ସୂଚୀର ଭିନ୍ନ ଭିନ୍ନ ବିଷୟମାନ ଖାତାର କେଉଁ କେଉଁ ପୃଷ୍ଠାରେ ଆରମ୍ଭ, ତାହା ନିର୍ଦ୍ଦେଶ କରାଯାଇଥିବ । ଖାତାରେ ଶିକ୍ଷକ କେଉଁ କେଉଁ ବିଷୟ ଲିପିବଦ୍ଧ କରି ରଖିବେ, ତାହା ସୂଚୀରୁହିଁ ଜଣାପଡ଼ିବ । ସୂଚୀର କ୍ରମ ନିମ୍ନାନୁଯାୟୀ ହେବ ।

୧ । ଯେଉଁ ଭିନ୍ନ ଭିନ୍ନ ଶ୍ରେଣୀର ଭିନ୍ନ ଭିନ୍ନ ବିଷୟମାନ ଶିକ୍ଷକ ପଢ଼ାଉଥିବେ ସେ ସବୁର ବିସ୍ତୃତ ସିଲାବସ୍ ।(ନିମ୍ନର ନୋଟ୍ ଦେଖ)

---

ନୋଟ୍ ( ୧ ) ସିଲାବସ୍– ଶିକ୍ଷକ ଏଇ ସେକ୍ସନ୍‌ରେ ଏଡୁକେଶନ୍ ଡିପାର୍ଟମେଣ୍ଟ୍ ବା ବିଶ୍ୱବିଦ୍ୟାଳୟ ନିର୍ଦ୍ଦେଶିତ ସିଲାବସ୍‌କୁ ଉତାରି ରଖିବେ । ସାଧାରଣତଃ ଡିପାର୍ଟମେଣ୍ଟ ବା ବିଶ୍ୱବିଦ୍ୟାଳୟ ବିଷୟଗୁଡ଼ିକ କିପରି ପାଠିତ ହେବ ତାର ସୂଚନା ମାତ୍ର ଦେଇଥାନ୍ତି । ଶିକ୍ଷକଙ୍କ କର୍ତ୍ତବ୍ୟ ହେଉଛି, ସେ ପ୍ରତ୍ୟେକ ବିଷୟକୁ ଭିନ୍ନ ଭିନ୍ନ ଶ୍ରେଣୀର ଉପଯୋଗୀ କରି କିପରି ପଢ଼ାଇବେ, ତାର ବିସ୍ତୃତ ଯୋଜନା ଲିପିବଦ୍ଧ କରି ରଖିବେ । ଉଦାହରଣସ୍ୱରୂପ କେବଳ 'ଅନୁବାଦ' ବୋଲି ଲେଖିଦେଲେ ଚଳିବ ନାହିଁ । ଶିକ୍ଷକ ଲେଖିରଖିବେ, କେଉଁ ପଦ୍ଧତି ଉପରେ ସେ ଅନୁବାଦ ଶିଖେଇବାକୁ ଯାଉଛନ୍ତି ଏବଂ ସେ ସେହି ପଦ୍ଧତି ଅନୁଯାୟୀ ବର୍ଷଯାକପାଇଁ କ୍ରମକଠିନ କେତେଗୁଡ଼ିଏ ଗଦ୍ୟାଂଶ ଆଗରୁ ବାଛି ଓ ଲେଖିରଖିବେ । ପ୍ରତ୍ୟେକ ପଠିତବ୍ୟ ଭାଷା ସମ୍ପର୍କରେ ମଧ୍ୟ ବ୍ୟାକରଣ, ରଚନା ଓ ପଠନ ଉପରେ ବିସ୍ତୃତ ଯୋଜନା ଆଗରୁ ଶିକ୍ଷକ କରିରଖିବେ । କେଉଁ କେଉଁ ପୁସ୍ତକର ସେ ଆଶ୍ରୟ ନେଇଛନ୍ତି, ତାହା ଏଇ ସେକ୍ସନ୍‌ରେ ଲେଖି ରଖିବେ ।

୨ । ସେହି ସେହି ଶ୍ରେଣୀର ପିଲେ ସେହି ସେହି ବିଷୟମାନଙ୍କରେ ପୂର୍ବ ବାର୍ଷିକ ପରୀକ୍ଷାରେ କିପରି ମାର୍କ ଆଣିଥିଲେ ତାର ତାଲିକା ।(ଫେଲ୍ ଜାଗାଗୁଡ଼ିକ ନାଲି ପେନ୍‌ସିଲ୍‌ରେ ବୃତ୍ତୀକୃତ କରି ରଖିବେ ।)

୩ । ଜୁନ୍‌ରୁ ସେପ୍ଟେମ୍ବର, ବର୍ଷର ଏଇ ପ୍ରଥମ ଟର୍ମର କାଲେଣ୍ଡର । (ସ୍କୁଲ୍‌ର ଛୁଟିଦିନଗୁଡ଼ିକ ନାଲି ପେନ୍‌ସିଲ୍‌ରେ ଦାଗ ଦେଇଦିଅ ।)

୪ । ଯେଉଁ ଯେଉଁ ଶ୍ରେଣୀରେ ଶିକ୍ଷକ ଯେଉଁ ଯେଉଁ ବିଷୟ ପଢ଼ାନ୍ତି ସେସବୁର ସାପ୍ତାହିକ ଟାଇମ୍-ଟେବ୍‌ଲ ।

୫ । ପ୍ରଥମ ଟର୍ମର୍ ପ୍ରତ୍ୟେକ ମାସପାଇଁ ଶିକ୍ଷକ ପ୍ରତି ବିଷୟ ସମ୍ପର୍କରେ କଣ କରିବାର ଯୋଜନା କରିଥିଲେ ଓ କଣ କରିଛନ୍ତି, ତାର ସପ୍ତାହବାରି ବିବରଣ ।

୬ । ଅକ୍ଟୋବରରୁ ଡିସେମ୍ବର, ବର୍ଷର ଏଇ ଦ୍ୱିତୀୟ ଟର୍ମର କ୍ୟାଲେଣ୍ଡର୍ । (ଛୁଟିଦିନଗୁଡ଼ିକ ନାଲି ପେନ୍‌ସିଲ୍‌ରେ ଦାଗ ଦେଇଦିଅ ।)

୭ । ସାପ୍ତାହିକ ଟାଇମ୍-ଟେବଲ୍‌ରେ ଯଦି କିଛି ପରିବର୍ତ୍ତନ ହୋଇଥାଏ (ଶିକ୍ଷକ ଯଦି ଏଥି ଭିତରେ ଅନ୍ୟ ଶ୍ରେଣୀରେ ଅନ୍ୟ ବିଷୟର ଭାର ନେଇଥାନ୍ତି), ତେବେ ତାହାର ପୁନର୍ଲିଖନ୍ ।

୮ । ଦ୍ୱିତୀୟ ଟର୍ମର ପ୍ରତ୍ୟେକ ମାସପାଇଁ ପ୍ରତି ବିଷୟ ସମ୍ପର୍କରେ ପ୍ରସ୍ତାବିତ ଯୋଜନା ଓ ସପ୍ତାହ ପରେ ସପ୍ତାହ ତାହା କିପରି ପୂରଣ କରାଯାଇଛି ।

୯ । ଜାନୁଆରୀରୁ ମେ, ବର୍ଷର ଏଇ ତୃତୀୟ ଟର୍ମର କାଲେଣ୍ଡର । (ଛୁଟିଦିନମାନ ଦାଗ ଦିଆଯାଇଥିବ । )

୧୦ । ସାପ୍ତାହିକ ଟାଇମ୍-ଟେବ୍‌ଲ୍ ।

୧୧ । ତୃତୀୟ ଟର୍ମର ପ୍ରତି ମାସପାଇଁ ବିଷୟଗୁଡ଼ିକର ଯୋଜନା ଓ ସପ୍ତାହବାରି ଯୋଜନା କି ପରିମାଣରେ ପୂରଣ ହୋଇଛି । [୫,୮, ୧୧ ସମ୍ପର୍କରେ 'ନୋଟ୍' (୨) ଦେଖ ।]

୧୨ । ଶ୍ରେଣୀମାନଙ୍କର ଭିନ୍ନ ଭିନ୍ନ ବିଷୟରେ ମାସିକ ବା ସାପ୍ତାହିକ ପରୀକ୍ଷାମାନଙ୍କ ପାଇଁ ପ୍ରଶ୍ନାବଳି ।

---

ନୋଟ୍ (୨)— ପଏଣ୍ଟ୍ ୫, ୮ ଓ ୧୧ ପାଠନ ଯୋଜନା— କାଲେଣ୍ଡରର ଛୁଟିଦିନଗୁଡ଼ିକ ଏବଂ ପରୀକ୍ଷା ଓ ପରୀକ୍ଷାପାଇଁ ନିତାନ୍ତ ଆବଶ୍ୟକ ରିଭିଜନ୍ ପ୍ରତି ଦୃଷ୍ଟି ରଖି ଏଇ ଯୋଜନାଗୁଡ଼ିକ ଶିକ୍ଷକ ତିଆରି କରିବେ । ପ୍ରଧାନଶିକ୍ଷକ ଶ୍ରେଣୀ-ପ୍ରଦର୍ଶନ କରି ଗଲାବେଳେ ଅଧସ୍ତନ ଶିକ୍ଷକମାନଙ୍କର ଏଇ 'ଶିକ୍ଷକ-ଦର୍ପଣ' ଖାତା ନିଶ୍ଚୟ ମାଗି, ବିଶେଷତଃ ଏଇ ସେକ୍‌ସନ୍‌ଟିକୁ ତୀକ୍ଷ୍ଣ ଦୃଷ୍ଟିଦେଇ ଚେକ୍ କରିନେବେ ଓ ନିଜର ମତାମତ ଲିପିବଦ୍ଧ କରିରଖିବେ । ଯୋଜନାନୁଯାୟୀ ଯେଉଁ ଯେଉଁ ବିଷୟରେ କାମ ହୋଇପାରିନାହିଁ ବା କାମ ପଛରେ ପଡ଼ିଯାଇଛି, ଶିକ୍ଷକ ତାହାର କାରଣ ଲେଖିରଖିବେ ଓ ବାକି କାମ କିପରି ପୂରଣ କରିବାର ପ୍ରସ୍ତାବ କରନ୍ତି ତାର ନିର୍ଦ୍ଦେଶ ଦେବେ ।

ନୋଟ୍ (୩)—ଏକ୍‌ସ୍ଟ୍ରା କାମ— ପ୍ରତ୍ୟେକ ଶିକ୍ଷକଙ୍କୁ ସିଲାବସ୍ ବାହାରେ କିଛି କାମ କରିବାକୁ ପଡ଼େ । ପ୍ରଧାନଶିକ୍ଷକ ଦେଖିବେ ଯେ ପ୍ରତ୍ୟେକ ଶିକ୍ଷକ ସିଲାବସ୍ ପରି ଏ କାମ ମଧ୍ୟ ଗୋଟିଏ ସୁଚିନ୍ତିତ ଯୋଜନାନୁଯାୟୀ କରୁଛନ୍ତି । ଶିକ୍ଷକଙ୍କର ମଧ୍ୟ ଏଇ ଏକ୍‌ସ୍ଟ୍ରା କାମକୁ ଶ୍ରେଣୀର କାମ ପରି ମନେକରିବା ଉଚିତ । ଯାହା କରାଯିବାର କଥା ତାହା ଉତ୍ତମରୂପେ କରିବା ଉଚିତ; ନହେଲେ ବରଂ ନକରିବ ।

୧୩ । ,ସେହି ସେହି ବିଷୟମାନଙ୍କ ଉପରେ ଗତ ଦୁଇ ତିନି ବର୍ଷର ବିଶ୍ୱବିଦ୍ୟାଳୟର ପ୍ରଶ୍ନାବଳି ।

୧୪ । ଟର୍ମିନାଲ୍ ପରୀକ୍ଷାର ପ୍ରଶ୍ନାବଳି ।

୧୫ । ଭିନ୍ନ ଭିନ୍ନ ଶ୍ରେଣୀର ଛାତ୍ରମାନେ ସେହି ସେହି ବିଷୟରେ ସାପ୍ତାହିକ, ମାସିକ ଓ ଟର୍ମିନାଲ୍ ପରୀକ୍ଷାରେ ଯାହା ମାର୍କ ପାଇଲେ ତାର ଷ୍ଟେଟ୍‌ମେଣ୍ଟ୍ ସବୁ ।

} ଯେଉଁ ଯେଉଁ ବାଳକ ସମ୍ପର୍କରେ ଶିକ୍ଷକଙ୍କର ମନ୍ତବ୍ୟ ଦେବାର କଥା ତାହା ଦିଆ ଯାଇଥିବ ।

୧୬ । ଶିକ୍ଷକଙ୍କର ସ୍କୁଲ୍‌ରେ ଏକ୍‌ଷ୍ଟ୍ରା ଦାୟିତ୍ୱ ।

କ୍ଲାସ୍-କକ୍ଷ ଯେ ଏକ ସାଧନାର କ୍ଷେତ୍ର ଏବଂ ସେଇ ସାଧନା ଯଦି ଠିକ୍ ମାର୍ଗରେ ଚାଲେ, ଏଇ ପ୍ରକାର 'ଶିକ୍ଷକ-ଦର୍ପଣ' ଧାରାରେ ଯଦି ପ୍ରତି ଅଧସ୍ତନ ଶିକ୍ଷକଙ୍କଠାରୁ କାମ ଆଦାୟ କରାଯାଏ, ତେବେ ତାହା ଯେ ଆବାସିକ ବିଦ୍ୟାଳୟର ଅଧିକାଂଶ ସୁଫଳ ଦେଇପାରିବ, ଆଶାକରେ ଏଇ ପ୍ରବନ୍ଧ ପଢ଼ିଲା ପରେ ପ୍ରତ୍ୟେକ ଶିକ୍ଷକ ଏକମତ ହେବେ ।

ଏଥି ସହିତ ଯଦି ପ୍ରଧାନଶିକ୍ଷକ ପ୍ରତ୍ୟେକ ଛାତ୍ର ସମ୍ବନ୍ଧରେ ପାକ୍ଷିକ ବା ମାସିକ ରିପୋର୍ଟର ବ୍ୟବସ୍ଥା କରନ୍ତି, ତେବେ ସେ ଓ ତାଙ୍କର ସହକର୍ମୀମାନେ ସ୍କୁଲ୍ ସହିତ ଘରେ ମଧ୍ୟ ବାଳକମାନଙ୍କର ଦୈନନ୍ଦିନ ଜୀବନ ନିୟନ୍ତ୍ରଣ କରିପାରିବେ । ପ୍ରତ୍ୟେକ ଛାତ୍ର ଏଥିପାଇଁ ଗୋଟିଏ ଖାତା ରଖିବେ । ସେହି ଖାତାରେହିଁ ସେହି ଛାତ୍ରର ପାକ୍ଷିକ ବା ମାସିକ ରିପୋଟ୍ ଲେଖାରହିବ । ସେଥିରେ ପରୀକ୍ଷାର ଫଳ, ପିଲାର ଶ୍ରେଣୀରେ ପୋଜିସନ୍, ଶ୍ରେଣୀ ଅନୁଯାୟୀ ଓ ବିଷୟ ଅନୁଯାୟୀ ପିଲାଟିର ଉନ୍ନତି ଓ ଅବନତି, ତାର ଶ୍ରେଣୀରେ ବ୍ୟବହାର, ଟାସ୍କ ନିୟମିତଭାବରେ, ଯତ୍ନର ସହିତ୍ କରୁଛି କି ନାହିଁ, ଇ ଭିତରେ ପିଲା ସମ୍ପର୍କରେ ବିଶିଷ୍ଟ ଘଟଣା—ଏ ସମସ୍ତ ଲିପିବଦ୍ଧ ରହିବ ଓ ପିଲାକୁ ବାଧକରାଯିବ ଯେ ସେ ତାର ପିତା, ମାତା ବା ଗାର୍ଡ଼ିୟାନଦ୍ୱାରା ତାହା ଦସ୍ତଖତ୍ କରାଇଆଣିବ । ଏହାଦ୍ୱାରା ଘର ଓ ସ୍କୁଲ୍‌ର ଘନିଷ୍ଠ ସମ୍ପର୍କ ସ୍ଥାପିତ ହେବ । ବାପମା ଜାଣିବେ ତାଙ୍କ ପିଲା ମାସ ପରେ ମାସ ସ୍କୁଲ୍‌ରେ କଣ କରୁଛି ଓ ଘରେ ତାର କଣ ଯତ୍ନ ନିଆଯାଇପାରେ; ପିଲା ମଧ୍ୟ ଜାଣିବ ଯେ ମାସ ପରେ ମାସ ଶ୍ରେଣୀରେ ଓ ସ୍କୁଲ୍‌ରେ କେଉଁଠି ତାର ସ୍ଥାନ ଏବଂ ସେହି ଅନୁସାରେ ସେ ନିଜକୁ ଗଢ଼ିବାକୁ ଚେଷ୍ଟା କରିବ ।

---

# ଲାଇବ୍ରେରି

ଶିକ୍ଷକ ତରୁଣମାନଙ୍କର ବୁଦ୍ଧି ବା ଇଣ୍ଟେଲିଜେନ୍‌ସ୍‌କୁ ନାନାପ୍ରକାର ଖେଳ ଭିତର ଦେଇ କ୍ଲାସ୍-ରୁମ୍‌ରେ ନିୟନ୍ତ୍ରିତ, ତୀକ୍ଷ୍ଣ ଓ କର୍ମନିପୁଣ କରିବେ । କିନ୍ତୁ ଶିକ୍ଷକ ମନେରଖିବେ ଯେ, କେବଳ ଇଣ୍ଟେଲିଜେନ୍‌ସ୍‌କୁ ତୀକ୍ଷ୍ଣ ଓ ନିପୁଣ କରିବା ଏଡୁକେଶନ୍ ବା ଶିକ୍ଷା ନୁହେଁ । ତରୁଣ ବ୍ୟକ୍ତିତ୍ୱରେ ମନୁଷ୍ୟତ୍ୱର ପୂର୍ଣ୍ଣ ବିକାଶହିଁ ଶିକ୍ଷାୟତନର ପ୍ରଧାନ ଆଭିମୁଖ୍ୟ ହେବା ଉଚିତ । ମନୁଷ୍ୟତ୍ୱର ପୂର୍ଣ୍ଣ ବିକାଶପାଇଁ ତରୁଣର ଆତ୍ମା ଓ ଚିତ୍ତ ଉଦ୍‌ବୁଦ୍ଧ, ଅନୁପ୍ରାଣିତ ଓ ସମ୍ପ୍ରସାରିତ ହେବା ଉଚିତ, ଯେପରି ତାହା ଉଦାର ଉନ୍ନତ ଭାବରାଜି ଗ୍ରହଣ କରିବ ଓ ବିତରଣ କରିବ । ଶିକ୍ଷାୟତନରେ ଏହା ଦୁଇପ୍ରକାରେ ଘଟିବାର ଆଶା କରାଯାଏ । ପ୍ରଥମ ହେଉଛି ପ୍ରଧାନଶିକ୍ଷକ ଓ ଅନ୍ୟ ଶିକ୍ଷକମାନଙ୍କ ବ୍ୟକ୍ତିତ୍ୱରୁ ପ୍ରତ୍ୟକ୍ଷ ଦୃଷ୍ଟାନ୍ତର ଅନୁକରଣ ଓ ଅନୁସରଣ କରି, ଦ୍ୱିତୀୟରେ ସ୍କୁଲ୍‌ର ଲାଇବ୍ରେରିରେ ଥିବା ପୁସ୍ତକମାନଙ୍କ ଦେଇ । ପ୍ରଥମ ଉପାୟର କଥା ପରେ କୁହାଯିବ । ବର୍ତ୍ତମାନ କେବଳ ଲାଇବ୍ରେରିର କଥା କୁହାଯାଉ ।

କ୍ଲାସ୍ ରୁମ୍‌ରେ ସିଲାବସ୍‌ର କେତୋଟି ନିର୍ଦ୍ଦିଷ୍ଟ ବିଷୟ ପଢ଼ାଯାଏ । ସେଥିରେ ବାଧବାଧକତାର ଭାବ ଥିବାରୁ ତରୁଣ-ମନ ସ୍ୱାଭାବିକଭାବରେ ସେସବୁ ପ୍ରତି ଆକୃଷ୍ଟ ହୁଏ ନାହିଁ । ସେସବୁ ବିଷୟ ପୁଣି ଶିଖାଯାଏ ପରୀକ୍ଷାରେ ପାସ୍ ପ୍ରତି ଆଖି ରଖି । ତେଣୁ କ୍ଲାସ୍-ରୁମ୍‌ର ପାଠ୍ୟ-ପୁସ୍ତକ ତରୁଣ-ମନକୁ ଉଦ୍‌ବୁଦ୍ଧ, ଅନୁପ୍ରାଣିତ ଓ କଳ୍ପନାକୁ ଉଜ୍ଜୀବିତ କରିବା ପାଇଁ ଯଥେଷ୍ଟ ନୁହେଁ । ସେଥିପାଇଁ ଆମେ ତାଙ୍କୁ ଲାଇବ୍ରେରିର ଉଦାର ମାନସିକ ଜଗତରେ ପହଞ୍ଚେଇବାକୁ ହେବ । ପିଲାଙ୍କୁ ଘୋଷାଘୋଷି, ଠେଲାଠେଲି କରି ପାସ୍ କରେଇନେବା ଅପେକ୍ଷା ତାଙ୍କୁ ଉଚ୍ଚଦରର ପୁସ୍ତକ ପ୍ରତି ଆକର୍ଷିତ ହେବାରେ ଅଭ୍ୟସ୍ତ କରେଇବା ଶିକ୍ଷକଙ୍କର ଅଧିକତର କର୍ତ୍ତବ୍ୟ । ଆମେ ବାଲ୍ୟବୟସରେ ଯେ ଅକ୍ଷର ଶିକ୍ଷାକରି ବିଦ୍ୟାରମ୍ଭ କରିଥିଲୁଁ, ତାହା କେବଳ ପାସ୍ ଖଣ୍ଡିଏ ପାଇ ଚାକିରି କରିବାପାଇଁ ନୁହେଁ । ତାହା ଏଇ ଉଦ୍ଦେଶ୍ୟରେ କରାହୋଇଥିଲା ଯେ ଅକ୍ଷରନିବଦ୍ଧ ସକଳ ଜ୍ଞାନ, ମନୁଷ୍ୟର ଯାବତୀୟ ଉଦ୍ଭାବନ ଓ ସଂସ୍କୃତି ଆମ ନିକଟରେ ସୁପ୍ରାପ୍ୟ ହେବ । ବିଦ୍ୟାଳୟ ଖୋଲିବାର ମୁଖ୍ୟ ଉଦ୍ଦେଶ୍ୟ ପାସ୍ କରିବା ବା ଚାକିରି ଦିଆଇବା ନୁହେଁ । କାରଣ କୋଟି କୋଟି ନିରକ୍ଷର ଲୋକ ସ୍ୱଚ୍ଛନ୍ଦରେ ସେମାନଙ୍କ ଜୀବିକାର୍ଜନ କରନ୍ତି ଏବଂ ଅନେକ ସ୍ଥଳରେ ତଥାକଥିତ ଶିକ୍ଷିତ ଲୋକଙ୍କଠାରୁ ଭଲ ଅର୍ଜନ କରି, ଭଲରେ ଥାନ୍ତି । ତେଣୁ ପିଲାଙ୍କ ମନରେ ଯଦି ଶିକ୍ଷକ ଜ୍ଞାନପ୍ରତି ଏକ ତୀବ୍ର ସ୍ପୃହା, ପୁସ୍ତକ ପ୍ରତି ଏକ ଗଭୀର ଶ୍ରଦ୍ଧା ଓ ଆଦର ଜାଗ୍ରତ କରାଇ ନ ପାରିଲେ, ତେବେ ତାଙ୍କର ଶିକ୍ଷକତା ବୃଥା ।

ଲାଇବ୍ରେରିର ଏହି ଆଦର୍ଶ ମନରେ ରଖିଲେ ପ୍ରଧାନଶିକ୍ଷକ ଓ ଶ୍ରେଣୀଶିକ୍ଷକ ସ୍କୁଲ୍ ଲାଇବ୍ରେରିରେ କୌଣସିମତେ ପଚାସଢ଼ା ବାଜେ କବିତା, ଉପନ୍ୟାସ ଓ ନାଟକାବଳିକୁ ସ୍ଥାନ ଦେବେ ନାହିଁ । ଅନ୍ୟପକ୍ଷରେ କିଶୋର ଓ ତରୁଣ ମନର ବହୁ ଉର୍ଦ୍ଧ୍ୱରେ ଥିବା କ୍ଲିଷ୍ଟଲିଖିତ, ଦୁର୍ବୋଧ ଗ୍ରନ୍ଥମାନ

ଯେତେ ପ୍ରସିଦ୍ଧ ହେଲେହେଁ ସ୍କୁଲ୍ ଲାଇବ୍ରେରିରେ ସ୍ଥାନ ପାଇବନାହିଁ । ଉତ୍କୃଷ୍ଟ ଧରଣର ନୈତିକ ଗଳ୍ପ, ଉପନ୍ୟାସ, ନାନାବିଧ ଜୀବନୀ, ଭ୍ରମଣକାହାଣୀ, ଦେଶ ବିଦେଶର, ଜାତି ଜାତିର ବର୍ଣ୍ଣନା, ପ୍ରେରଣାଦାୟକ କାବ୍ୟ-କବିତା, ନାଟକ, ପୁରାଣଗୁଡ଼ିକର ଛାତ୍ରୋପଯୋଗୀ ସଂସ୍କରଣ—ଏଇ ସବୁ ସ୍କୁଲ୍ ଲାଇବ୍ରେରିରେ ରହିବା ଉଚିତ । ନିମ୍ନ ଶ୍ରେଣୀମାନଙ୍କରେ ଅଧିକ ସଚିତ୍ର ପୁସ୍ତକହିଁ ରଖାଯିବ । ଉପର ଶ୍ରେଣୀମାନଙ୍କରେ ଚିତ୍ରର ପ୍ରାଧାନ୍ୟ ପ୍ରତି ସେତେ ନଜର ଦିଆନଗଲେ ମଧ, ଏହା ମନେରଖିବାକୁ ହେବ ଯେ, ଯେଉଁ ପୁସ୍ତକର ଛାପା ଓ ବାହାର ସୁନ୍ଦର ତାହା ପ୍ରତିହିଁ ସାଧାରଣ ପାଠକର, ବିଶେଷତଃ ତରୁଣର ମନ ସ୍ୱଭାବତଃ ଆକୃଷ୍ଟ ହୁଏ ।

ସ୍କୁଲ୍‌ର ଲାଇବ୍ରେରି ଦୁଇଭାଗରେ ବିଭକ୍ତ ରହିବାର କଥା । ଗୋଟିଏ ପୂରାପୂରି ଶିକ୍ଷକମାନଙ୍କର, ଅନ୍ୟାଂଶ ପୂରାପୂରି ଛାତ୍ରମାନଙ୍କର । ଯାହା କେବଳ ବୟସ୍କମାନଙ୍କପାଇଁ ଉପଯୁକ୍ତ ଏବଂ ଯାହା କେବଳ ଶିକ୍ଷକମାନେହିଁ ପଢ଼ିବେ, ଏପରି ପୁସ୍ତକସବୁ ଛାତ୍ରମାନଙ୍କ ଲାଇବ୍ରେରି ଫଣ୍ଡରୁ ମଗାଯିବା ଆଦୌ ଉଚିତ ନୁହେଁ । ପ୍ରଧାନଶିକ୍ଷକ ଦେଖିବେ, ଯେପରି ଶିକ୍ଷକମାନଙ୍କ ଚାହିଦା ମେଣ୍ଟାଇବାପାଇଁ ଛାତ୍ରମାନଙ୍କର ନ୍ୟାୟସଙ୍ଗତ ଅଧିକାର ନଷ୍ଟନହୁଏ । ଶିକ୍ଷକମାନଙ୍କୁ କ୍ଲାସ୍‌ରେ ପଢ଼ାଯାଉଥିବା ଟେକ୍ସଟ୍ ବହି ଯୋଗେଇବାରେ ମଧ ଲାଇବ୍ରେରି ଫଣ୍ଡ୍‌ର ଅନେକ ପଇସା ନଷ୍ଟ ହୁଏ । ଟେକ୍ସଟ ବହି ଲାଇବ୍ରେରି ବହି ନୁହେଁ । ପ୍ରଧାନଶିକ୍ଷକ ଏସବୁର ଅନ୍ୟ ବନ୍ଦୋବସ୍ତ କରି ପିଲାଙ୍କ ଲାଇବ୍ରେରି ଫଣ୍ଡ୍ ଯେପରି ପୂରାପୂରି ପିଲାଙ୍କ ବହିରେହିଁ ବ୍ୟୟିତ ହୁଏ, ତାହା ଦେଖିବେ ।

ଶିକ୍ଷକମାନଙ୍କ ଲାଇବ୍ରେରି ଯେପରି ପ୍ରକୃତରେ ଶିକ୍ଷକମାନଙ୍କଦ୍ୱାରା ନିୟମିତଭାବରେ ବ୍ୟବହୃତ ହୁଏ, ତାହା ପ୍ରଧାନଶିକ୍ଷକ ଦେଖିବେ । ପ୍ରତ୍ୟେକ ଶ୍ରେଣୀ-ଶିକ୍ଷକ ଓ ବିଷୟ-ଶିକ୍ଷକ ଶ୍ରେଣୀ-ବ୍ୟବସ୍ଥା ଓ ବିଷୟ-ପାଠନର ଆଧୁନିକତମ ପଦ୍ଧତି ସମ୍ପର୍କରେ ଜାଗ୍ରତ ରହିବା ଉଚିତ । ସେଥିପାଇଁ ପ୍ରଧାନଶିକ୍ଷକ ଶିକ୍ଷା-ବିଷୟକ ପ୍ରସିଦ୍ଧ ମାସିକପତ୍ରସବୁ ଯେତେଟା ପାରନ୍ତି ଏବଂ ଶିକ୍ଷା ବିଜ୍ଞାନ ବିଷୟକ ପୁସ୍ତକାଦି ପ୍ରତିବର୍ଷ ମଗାଇ ରଖିବେ ଏବଂ ଦେଖିବେ ଯେ ଶିକ୍ଷକମାନେ ସେସବୁ ପଢ଼ି ନିଜ ନିଜ ବିଭାଗରେ କାମରେ ଲଗାଉଛନ୍ତି । ଏସବୁ ବିଷୟ ଉପରେ ସାପ୍ତାହିକ ଆଲୋଚନା ସ୍କୁଲ୍‌ର ମାନସିକ ବାତାବରଣର ଆନୁକୂଲ୍ୟପାଇଁ ଅପରିହାର୍ଯ୍ୟ କହିଲେ ଚଳେ ।

ଛାତ୍ରମାନଙ୍କ ଲାଇବ୍ରେରି ସାଧାରଣତଃ ଶ୍ରେଣୀ ଅନୁସାରେ ବିଭକ୍ତ ହୋଇଥାଏ ଏବଂ ପ୍ରତି କ୍ଲାସ୍-ରୁମ୍‌ରେ ଗୋଟିଏ ଗୋଟିଏ ଛୋଟ ଆଲମିରାରେ ସେହି ସେହି ଶ୍ରେଣୀର ପୁସ୍ତକଗୁଡ଼ିକ ରଖାଯାଇଥାଏ । ଏ ପଦ୍ଧତିରେ କେତେକ ଅସୁବିଧା ଅଛି । ପ୍ରଥମ କଥା ଏଇ ଯେ, ଗୋଟିଏ ନିମ୍ନ ଶ୍ରେଣୀ ଓ ତଦୂର୍ଦ୍ଧ୍ୱ ଶ୍ରେଣୀ ଭିତରେ ମାନସିକତାର ତଫାତ୍ ଏତେ ବେଶି ହୋଇନଥାଏ ଯେ ଏ ଦୁଇ ଶ୍ରେଣୀପାଇଁ ଦୁଇଟି ସମ୍ପୂର୍ଣ୍ଣ ପୃଥକ୍ ପ୍ରକାରର ପୁସ୍ତକମାଳା ଲେଖାଯାଇଥାଏ ବା ବଛାଯାଇପାରିବ । ବହିସବୁ ମିଶାମିଶି ହୋଇ ରହିବ ନିଶ୍ଚୟ । ଦ୍ୱିତୀୟ ଅସୁବିଧା ଏଇ ଯେ, ଗୋଟିଏ ଶ୍ରେଣୀ ପୁସ୍ତକାଳୟର ସବୁପୁସ୍ତକ ସେଇ ଶ୍ରେଣୀର ସବୁପିଲାଙ୍କପାଇଁ ଉପଯୁକ୍ତ ନ ହୋଇପାରେ । କେତେକ ପିଲା ନିମ୍ନଶ୍ରେଣୀର ଲାଇବ୍ରେରିର ଅଧିକ ସଦୁପଯୋଗ କରିପାରନ୍ତି, କେତେକ ମଧ ଉପର ଶ୍ରେଣୀର । ଏ ଦୁଇ ଅସୁବିଧାର ଦୂରୀକରଣପାଇଁ ଓ ଲାଇବ୍ରେରିର ସମୂହ ସାର୍ଥକତା ଦୃଷ୍ଟିରୁ, ଶ୍ରେଣୀ-ପୁସ୍ତକମାଳା ଭିନ୍ନ ଭିନ୍ନ ଶ୍ରେଣୀ-କକ୍ଷରେ ନ ରଖି, ଗୋଟିଏ

ରିଡ଼ିଂ-ରୁମ୍‌ରେ କ୍ଲାସ୍ ଲାଇବ୍ରେରି ଓ ଜେନେରାଲ୍ ଲାଇବ୍ରେରି ସମସ୍ତ ହିଁ ଏକତ୍ର ରଖାଯିବା ଉଚିତ । ପ୍ରତ୍ୟେକ ବିଦ୍ୟାଳୟରେ ଗୋଟିଏ ପ୍ରଶସ୍ତ ଆସବାବ ସମନ୍ୱିତ କକ୍ଷ ପୃଥକ୍ ଭାବରେ ଲାଇବ୍ରେରି ଓ ରିଡ଼ିଂ-ରୁମ୍ ଭାବରେ ବ୍ୟବହୃତ ହେବାପାଇଁ ନିର୍ଦ୍ଦିଷ୍ଟ ରହିବା ଉଚିତ । ଏଇ ରୁମ୍‌ରେ କ୍ଲାସ୍ ଓ ଜେନେରାଲ୍ ସମସ୍ତ ଲାଇବ୍ରେରି ରହିବ । ଛାତ୍ରମାନେ ଯେକୌଣସି ଲାଇବ୍ରେରିରୁ ନିଜ ରୁଚି ଓ ଶକ୍ତି ଅନୁଯାୟୀ ବହି ନେଇଯାଇପାରିବେ । ଶନିବାର ଓ ରବିବାର ସେ ଘର ଖୋଲା ରହିଲେ ଯେଉଁ ଛାତ୍ରମାନେ ଇଚ୍ଛା କରିବେ ସେମାନେ ସେଠାରେ ଆସି ପଢ଼ିପାରିବେ । କିନ୍ତୁ ପ୍ରଧାନଶିକ୍ଷକ ତୀକ୍ଷ୍ଣ ଦୃଷ୍ଟିରଖିବେ ଯେ, ଲାଇବ୍ରେରି ଓ ରିଡ଼ିଂ-ରୁମ୍ ଓ ତା' ଆଖପାଖରେ କେହି ଯେପରି କୌଣସି ପ୍ରକାର ଗୋଳମାଳ ନ କରନ୍ତି—ଅବଶ୍ୟ ଯେଉଁ ନିର୍ଦ୍ଧାରିତ ସମୟରେ ଲାଇବ୍ରେରି ଓ ରିଡ଼ିଂ-ରୁମ୍ ବ୍ୟବହୃତ ହେଉଥିବ । ସେଠାରେ ସମସ୍ତେ ନୀରବରେ କାମ କରି ଯାଉଥିବେ, କେହି ଉଚ୍ଚସ୍ୱର କରିବେ ନାହିଁ । ଏହାହିଁ ଲାଇବ୍ରେରି ରୁମ୍‌ର ଏକ ପ୍ରଧାନ ସାଧନା ଓ ଅଭ୍ୟାସ ।

ବଡ଼ ସ୍କୁଲ୍‌ମାନଙ୍କରେ ସମସ୍ତ ଲାଇବ୍ରେରିର ବ୍ୟବସ୍ଥାପାଇଁ ଜଣେ ପୃଥକ୍ ଲାଇବ୍ରେରିୟାନ ରହିବା ଉଚିତ । ଛୋଟ ସ୍କୁଲ୍‌ମାନଙ୍କରେ ସାଧାରଣତଃ କିରାଣିହିଁ ଲାଇବ୍ରେରି ଚାର୍ଜରେ ଥାନ୍ତି, ଯଦିଓ କୋଡ୍ ଅନୁଯାୟୀ ସ୍କୁଲ୍‌ର ସମ୍ପତ୍ତିଭାବରେ ଲାଇବ୍ରେରି ପାଇଁ ହେଡ୍‌ମାଷ୍ଟର ହିଁ ଦାୟୀ । କିନ୍ତୁ ଆଇନଗତ ଦାୟିତ୍ୱ ଓ ଆଫିସିକ ଦାୟିତ୍ୱ ଯାହା ଥାଉନା କାହିଁକି, ଛାତ୍ର ଓ ଲାଇବ୍ରେରି ମଧ୍ୟରେ ଘନିଷ୍ଠ ସମ୍ପର୍କ ବସେଇବାର ପ୍ରଧାନତମ ଦାୟିତ୍ୱ ହେଉଛି ଶ୍ରେଣୀ-ଶିକ୍ଷକଙ୍କର । ତାଙ୍କ ଦାୟିତ୍ୱରେ ଥିବା ପିଲେ କିପ୍ରକାର ବହି ପଢୁଛନ୍ତି, କିପରି ପଢୁଛନ୍ତି, ପଢୁଛନ୍ତି କି ନାହିଁ, ଏସବୁର ତତ୍ତ୍ୱ କେବଳ ସେ ନେବେ । ତାଙ୍କର ଏହା ଏକ ପ୍ରଧାନ କର୍ତ୍ତବ୍ୟ । ବହି ପ୍ରତି ପିଲାର ଅନୁରକ୍ତି ଜାତ କରେଇବା ପାଇଁ ସେ ଯଥାସାଧ୍ୟ ଚେଷ୍ଟା କରିବେ । ପୁଣି ପିଲା ଲାଇବ୍ରେରିରୁ ବହି ବାଛିବାରେ ଓ ସମୁଚିତ ରୀତିରେ ତାହା ପଠନ କରିବାରେ ସେ ସାହାଯ୍ୟ କରିବେ । ସେ ପ୍ରତ୍ୟେକ ପିଲାଦ୍ୱାରା ଗୋଟିଏ ମୋଟା ବନ୍ଧେଇଖାତା କରେଇନେବେ । ପିଲା ପଢ଼ିଥିବା ବାହାର ବହିର ଏହା ଏକ ପର୍ମାନେଣ୍ଟ ରେକର୍ଡ଼ ହୋଇ ରହିବ । ସେ ବହିରେ ପିଲା ଟିପି ରଖିବ ନୂତନ ଶବ୍ଦ ଓ ତାର ଅର୍ଥ, ନୂତନ ନୂତନ ଭାବ ଓ ଚିନ୍ତା ଏବଂ ବହିଟିର ସାର କଥା । ଦଶ ଖଣ୍ଡ ବହି ସଟାବଟା କରି ପଢ଼ିବା ଅପେକ୍ଷା, ବା କୋଡ଼ିଏ ଖଣ୍ଡ ବହି ପଢ଼ିଲି ବୋଲି ମନେକରି କୌଣସିଟି ବହିରୁ କିଛି ହେଲେ ସୁଶୃଙ୍ଖଳ ଭାବରେ ମନେନରଖିବା ଅପେକ୍ଷା ଖଣ୍ଡେ ବହି ପୁଙ୍ଖାନୁପୁଙ୍ଖ ରୂପେ ଗଭୀରଭାବରେ ପଢ଼ିବା ଉଚିତ । ଉପରଠାଉରିଆରେ ପଢ଼ିବାର ବଦଭ୍ୟାସ ମୂଳରୁ ମାରିବା ଉଚିତ । ଏହା ଶ୍ରେଣୀ-ଶିକ୍ଷକଙ୍କ ଦାୟିତ୍ୱ । ବହିଟିଏ ଗଭୀର ଭାବରେ, ପୁଙ୍ଖାନୁପୁଙ୍ଖ ଭାବରେ ପଢ଼ିଶିଖିଲେ, ପିଲାଏ ସେହିପରି କରିବା ଅଭ୍ୟାସ ପାଇବେ । ପୁଣି ଖଣ୍ଡିଏ ବହି ଗଭୀରଭାବରେ ପଢ଼ିବାର ଯେଉଁ ଉପକାର ତାହା କୋଡ଼ିଏଖଣ୍ଡ ବହି ଅବହେଳାକ୍ରମେ ପଢ଼ିବାରେ ଆଦୌ ସେ ଲାଭ ନାହିଁ, ବରଂ ଗୋଟିଏ ଶୈଥିଲ୍ୟର ବଦଭ୍ୟାସ ଚରିତ୍ରଗତ ହୋଇ ଉଠିବ । ଏହା ପିଲେ ପିଲାଦିନରୁ ଜାଣିରଖିବା ଉଚିତ ।

ପିଲା ଯେଉଁଦିନ ଲାଇବ୍ରେରି ବହି ଫେରାଇବ ସେଦିନ ତାର ଲାଇବ୍ରେରି ଖାତାଟି ମାଗି ସେ ବହିରୁ ବର୍ଣ୍ଣିତ କ୍ରମେ ନୂତନ ଶବ୍ଦ, ନୂତନ ଭାବ ଓ ପଠିତ ବିଷୟର ସାରାଂଶ ସେଥିରେ

ଲିପିବଦ୍ଧ କରିଚି କି ନାହିଁ ଦେଖିବେ । ସେ ପୁସ୍ତକ ସମ୍ବନ୍ଧରେ ମୌଖିକ ପ୍ରଶ୍ନ ମଧ୍ୟ ପଚାରିବେ । ଯଦି ସେ ସନ୍ତୁଷ୍ଟ ହୁଅନ୍ତି ଯେ ପିଲା ବହିଟି ମନୋଯୋଗ ସହିତ ପଢ଼ିଛି, ତେବେ ତାକୁ ଅନ୍ୟ ବହି ନେବାକୁ ଅନୁମତି ଦେବେ, ନଚେତ୍ ନୁହେଁ ।

କିନ୍ତୁ ଯାର ଅର୍ଥ ନୁହେଁ ଯେ ଭଲ ନଲାଗିଲେ ମଧ୍ୟ ପିଲା ଗୋଟିଏ ବହି ପଢ଼ିବାକୁ ବାଧ୍ୟ ହେବ । ବହି ଯଦି ପିଲାର ବୁଦ୍ଧି ଓ ଅଭିଜ୍ଞତାର ଉପରେ, ତା ପ୍ରତି ଅତି କଠିଣ, ତେବେ ସେ ସେ-ବହି କୌଣସିମତେ ପଢ଼ିପାରିବ ନାହିଁ । ଏପରି ସ୍ଥଳେ ତାକୁ ସେ ବହି କୌଣସିମତେ ଶେଷ କରିବାକୁ କହିବା ଅନୁଚିତ ହେବ। ବହି ପଢ଼ିବାଟା ଆନନ୍ଦର ବିଷୟ ହେବା ଉଚିତ । ସେହି ଆନନ୍ଦ କିପରି ମିଳିବ, ଶିକ୍ଷକ ମହାଶୟ ତାହାହିଁ ଦେଖାଇଦେବେ ପିଲାଙ୍କୁ । ପରୀକ୍ଷାସ୍ୱରୂପ ଏକ ପରେ ଅନ୍ୟ ବହି ନେବାର ଅଧିକାର ଛାତ୍ରର ରହିବ । ଶିକ୍ଷକ କିନ୍ତୁ ଦେଖିବେ ଯେ ପିଲା ଗୋଟିଏ ବହିର ଗୋଟାଏ ପୃଷ୍ଠା ପଛେ ପଢ଼ିଥାଉ, ସେଥିରୁ ସେ ଯେପରି ପ୍ରତ୍ୟେକ ଶବ୍ଦର ଅର୍ଥ ବୁଝିବାକୁ ଚେଷ୍ଟା କରି ପଢ଼ିଛି । ବୁଝିବାର କୌଣସି ଚେଷ୍ଟା ନକରି 'ଭଲ ନଲାଗିଲା' ବୋଲି କହି ବହି ଫେରାଇଦେବା ଅତ୍ୟନ୍ତ ଦୋଷାବହ ଓ ଏକ ପ୍ରଧାନ ଚାରିତ୍ରିକ ଦୋଷ । ଶବ୍ଦର ଅର୍ଥ ସାଙ୍ଗେ ସାଙ୍ଗେ ଖୋଜି ବାହାର କରିବାପାଇଁ ପିଲାମାନେ ସବୁବେଳେ ସାଥିରେ ଗୋଟିଏ ଗୋଟିଏ ପକେଟ୍ ଅଭିଧାନ ଓ ପେନ୍‌ସିଲ୍ ରଖିଥିବେ । ପିଲାଦିନରୁ ଡିକ୍ସନାରୀ ଦେଖିବାର ଅଭ୍ୟାସ ଶିକ୍ଷକ ପିଲାଙ୍କଠାରେ ସୃଷ୍ଟି କରାଇନେବେ । ଅଭିଧାନରେ ଅର୍ଥଟି ଦେଖିବା ମାତ୍ରେ ପିଲାଏ ତାଙ୍କର ଲାଇବ୍ରେରି ଖାତାରେ ଟିପିରଖିବେ । ଏଇପରିଭାବରେ ପୁସ୍ତକ ପଠନ ଅଭ୍ୟାସ କଲେ କ୍ରମେ କ୍ରମେ ପିଲାର ଶବ୍ଦସମ୍ଭାର ବଢ଼ିବ ଏବଂ ଡିକ୍ସନାରୀ ଦେଖିବାର ଆବଶ୍ୟକତା କ୍ରମେ କମିଆସିବ । ଶବ୍ଦସମ୍ଭାର ବଢ଼ିଲେ ପିଲାର ରଚନାରେ ଓ ଭାଷଣରେ ତାହା ପରିସ୍ଫୁଟ ହୋଇ ସେସବୁର ମୂଲ୍ୟ ବୃଦ୍ଧି କରିବ ।

ପ୍ରଧାନଶିକ୍ଷକ ଆଉ ଏକ କାମ କରିପାରନ୍ତି । ସେ ବିଦ୍ୟାଳୟର ମାନସିକ ସ୍ତରକୁ ନଜର ରଖି ଭିନ୍ନ ଭିନ୍ନ ଭାଷାର ଶହେ ବା ପଚାଶଟି ଭଲ ବହିର ଏକ ଏକ ତାଲିକା ଟଙ୍ଗାଇ ଦେଇ ପାରନ୍ତି । ତାଲିକାଟି କ୍ରମାରୋହଣ ପଦ୍ଧତିରେ ତିଆରି ହୋଇଥିବ । ଉଦ୍ଦେଶ୍ୟ ଏଇ ରହିବ ଯେ ସେହି ସ୍କୁଲ୍‌ରୁ ପାସ୍ କରି ଗଲାବେଳକୁ ଗୋଟିଏ ପିଲା ତକୁ ଉର୍ଦ୍ଧ୍ୱତମ ଶ୍ରେଣୀଯାଏଁ ଏ ତାଲିକାଟି ଯେପରି ଶେଷ କରିଥାଏ । ଏହାଦ୍ୱାରା ପ୍ରଧାନଶିକ୍ଷକ ଜାଣିବେ ଯେ ସେ ପିଲାର ବୁଦ୍ଧି ଓ ଚରିତ୍ରରେ ଭିନ୍ନ ଭିନ୍ନ ଉତ୍କୃଷ୍ଟ ପୁସ୍ତକ ଦେଇ ଏକ ନୈତିକ ଓ ଆଧ୍ୟାତ୍ମିକ ମୂଳପତ୍ତନ ପକାଇବାର ଚେଷ୍ଟା କରିଛନ୍ତି ।

ଲାଇବ୍ରେରିରେ କେବଳ ଯେ ସାହିତ୍ୟ ପୁସ୍ତକ ରହିବ ଏହା ଏକ ଭ୍ରାନ୍ତ ଧାରଣା । ସ୍କୁଲ୍‌ର ନାନା ରୁଚି, ନାନା ବୁଦ୍ଧି ଏବଂ ନାନା ସ୍ତରର ପିଲାଙ୍କର ବିବିଧ ମାନସିକ ବିକାଶପାଇଁ ଯେଉଁ ଯେଉଁ ପ୍ରକାର ପୁସ୍ତକ ଦରକାର ତାହା ସ୍କୁଲ୍ ଲାଇବ୍ରେରିରେ ରହିବା ଉଚିତ । କୌଣସି ପିଲାର ଅଙ୍କନରେ, କାହାର ବଢ଼େଇ କାମରେ, କାହାର ବୃକ୍ଷଲତାରେ ବିଶେଷ ପ୍ରୀତି ଓ ବିଶେଷ ମାନସିକ ଔଜ୍ଜ୍ୱଲ୍ୟ ଦେଖାଗଲା, ଶିକ୍ଷକମାନେ ଦେଖିବେ ସେହି ଦିଗରେ ସେହି ପିଲା ଅଧିକରୁ ଅଧିକ ଜାଣିବାପାଇଁ ସ୍କୁଲ୍ ଲାଇବ୍ରେରିରେ ଉପଯୁକ୍ତ ମାଲମସଲା ଗଚ୍ଛିତ ରହୁଅଛି । ନଚେତ୍

ବିଦ୍ୟାଳୟ ନାମ ସାର୍ଥକ ହେଲାନାହିଁ । କାରଣ ପିଲାର ସ୍ୱାଭାବିକ ପ୍ରବୃତ୍ତି ଯେଉଁ ବିଦ୍ୟା ଆୟତ୍ତ କରିବାକୁ ଚାହୁଁଛି, ବିଦ୍ୟାଳୟ ନାମ ଧାରଣକରି ମଧ, ସ୍କୁଲ୍‌ଟି ତାର ସୁବିଧା କରିପାରିଲାନାହିଁ ।

ଓଡ଼ିଆରେ ସବୁ ବିଭାଗରେ ଉପଯୁକ୍ତ ବହିର ଅଭାବ ଅଛି । ଯେଉଁ ଯେଉଁ ଉନ୍ନତତର ଭାଷା ଜାଣିଲେ ପିଲେ ଉନ୍ନତ ସାହିତ୍ୟ ଓ ଉଚ୍ଚଦରର ପୁସ୍ତକ ସହଜରେ ପଢ଼ିପାରିବେ, ଶିକ୍ଷକମାନେ ପିଲାଙ୍କୁ ସେହି ସେହି ଭାଷା ନିଜେ ନିଜେ ଆୟତ୍ତ କରିବାପାଇଁ ଉତ୍ସାହିତ କରିବେ । ଜ୍ଞାନଚର୍ଚ୍ଚାରେ ପ୍ରାଦେଶିକତା ବା କ୍ଷୁଦ୍ରତା ବା ରାଜନୀତିର ସ୍ଥାନ ନାହିଁ । ପୁଣି ଶିକ୍ଷିତ ହେବାକୁ ହେଲେ ଅନ୍ତତଃ ତିନୋଟି ପ୍ରସିଦ୍ଧ ଭାଷାରେ ପାରଙ୍ଗମ ହେବା ଉଚିତ । ତେଣୁ ଛାତ୍ରମାନଙ୍କୁ ବହୁ ଭାଷା ଅଧ୍ୟୟନ କରିବାକୁ ଶିକ୍ଷକମାନେ ବରାବର ଉତ୍ସାହିତ କରିବେ ଏବଂ ପିଲେ ନିଜେ ନିଜେ ଯେପରି ଅନ୍ୟ ଭାଷା ସବୁ ଶିଖିପାରିବେ ସେଥିପାଇଁ ଲାଇବ୍ରେରିରେ ପ୍ରଚୁର ଆୟୋଜନ କରି ରଖିବେ ।

---

ଶିକ୍ଷକମାନେ ଏହି ପାଞ୍ଚଟି ଆଦର୍ଶ ପ୍ରତି ଦୃଷ୍ଟି ଦିଅନ୍ତୁ, ଦେଖିବେ ଖେଳପଡ଼ିଆ କିପରି ଏକ ଉତ୍କୃଷ୍ଟ କ୍ଲାସ୍-ରୁମ୍‌ରେ ପରିଣତ ହୋଇଉଠୁଛି କି ନାହିଁ ଏବଂ କ୍ରମେ କ୍ରମେ ଏହି ଅଭ୍ୟାସର ସୁଫଳ ପିଲାଙ୍କ ଚରିତ୍ରରେ ଦେଖାଦେଇ ସ୍କୁଲ୍‌କୁ ଏକ ସଂଯତ, ସୁନ୍ଦର, ଶାନ୍ତ ଅନୁଷ୍ଠାନରେ ପରିଣତ କରୁଛି କି ନାହିଁ । ଏହା ସଙ୍ଗେ ସଙ୍ଗେ ଖେଳପଡ଼ିଆ ସମ୍ପର୍କରେ ଆଉ କେତୋଟି କଥା ମଧ୍ୟ ମନେରଖିବାକୁ ହେବ ଓ ତାହା ଅପରିହାର୍ଯ୍ୟରୂପେ ନିୟମିତଭାବରେ କାର୍ଯ୍ୟରେ ପରିଣତ କରିବାକୁ ଶିକ୍ଷକମାନେ ଚେଷ୍ଟାକରିବେ ।

ପ୍ରଧାନଶିକ୍ଷକ ଦେଖିବେ ଯେପରି ସ୍କୁଲ୍‌ର ପ୍ରତ୍ୟେକ ଛାତ୍ର ପ୍ରତ୍ୟହ କୌଣସି ନା କୌଣସି ଖେଳରେ ନିଯୁକ୍ତ ରହୁଛି । ପ୍ରତ୍ୟହ ହାଜିରା ନିଆଯିବ । ଶିକ୍ଷକ (ରୁଟିନ୍ ଅନୁଯାୟୀ) ବରାବର ଉପସ୍ଥିତ ରହିବେ, ଅନୁପସ୍ଥିତମାନଙ୍କୁ ଯଥାବିଧି ଦଣ୍ଡ ଦିଆଯିବ । ଶିକ୍ଷକମାନେ ଖେଳପଡ଼ିଆର ଯେପରି ତତ୍ତ୍ୱ ଓ ଯତ୍ନ ନେବାର କଥା ତାହା ନେଉଛନ୍ତି କି ନାହିଁ, ତାହା ପ୍ରଧାନଶିକ୍ଷକ ବରାବର ଚେକ୍ କରି ନେଉଥିବେ । ଖେଳପଡ଼ିଆର କର୍ମ ପିଲାଙ୍କର ଶିକ୍ଷଣୀୟଭାବରେ କରାଯାଉଛି ନା ପିଲାଙ୍କୁ କେବଳ ଏକପ୍ରକାର ଯଥେଚ୍ଛା ଗଣ୍ଡଗୋଳ ଓ ଦୌଡ଼ାଦୌଡ଼ି ଡିଆଁଡେଇଁ କରିବାକୁ ଛାଡ଼ି ଦିଆଯାଇଛି, ତାହା ପ୍ରଧାନଶିକ୍ଷକ ବରାବର ଦେଖି ଏକନିଷ୍ଠଭାବରେ ଖେଳପଡ଼ିଆକୁ ଅଭ୍ୟାସର କ୍ଷେତ୍ରରୂପେ ପରିଣତ କରିବାକୁ ଚେଷ୍ଟା କରିବେ ।

ଖେଳର ଦାୟିତ୍ୱ ଅଧିକାଂଶଭାବରେ ପିଲେ ନେବା ଉଚିତ । ଅବଶ୍ୟ ପ୍ରତ୍ୟେକ ଟିମ୍ ଉପରେ କୌଣସି ନା କୌଣସି ଶିକ୍ଷକଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ରହିବ । ଖେଳସାମଗ୍ରୀର ହିସାବକିତାବ ରଖିବା, ସେଗୁଡ଼ିକୁ ଯତ୍ନରେ ରଖିବା, ମରାମତି କରେଇବା, ନିଜ ଟିମ୍‌ର କାପ୍‌ଟେନ୍ ପ୍ରଭୃତିଙ୍କୁ ବାଛିବା ଇତ୍ୟାଦି ପିଲେ ହିଁ କରିବେ । ଶିକ୍ଷକ କିନ୍ତୁ ଦେଖିବେ ଯେ କାପ୍‌ଟେନ୍ ବାଛିବା ଯେପରି ପିଲାଖେଳ ହୋଇନଉଠେ । କାପ୍‌ଟେନ୍‌ର ଆଦେଶ ପିଲେ, ସେନାପତିର ଆଦେଶ ସୈନିକ ମାନିଲାପରି ପାଳିବେ—ଅବଶ୍ୟ ଖେଳପଡ଼ିଆରେ ମୋ ମତରେ ପ୍ରତିମାସରେ ଜଣେ ଜଣେ କରି କାପ୍‌ଟେନ୍ ବଛାହେବା ଉଚିତ । ଏହାଦ୍ୱାରା କୌଣସି ଜଣେ ପିଲାର ପ୍ରାଧାନ୍ୟ ବଢ଼ିଯିବନି ଏବଂ ଅନେକ ପିଲା ଦାୟିତ୍ୱ ଓ ନେତୃତ୍ୱର ଦାୟିତ୍ୱ ସମ୍ଭାଳିବାର ଅଭ୍ୟାସ କରିବେ । ଖେଳପଡ଼ିଆରେ ଶାନ୍ତି-ଶୃଙ୍ଖଳା ରକ୍ଷା କରିବାର ଦାୟିତ୍ୱ କାପ୍‌ଟେନ୍ ବା କାପ୍‌ଟେନ୍‌ମାନଙ୍କର । କାପ୍‌ଟେନ୍‌ମାନଙ୍କୁ ଶାସନରେ ରଖିବେ ଶିକ୍ଷକ ଓ ପ୍ରଧାନଶିକ୍ଷକ ।

ଏବେ ଶ୍ରେଣୀ-ଶ୍ରେଣୀ ଭିତରେ, ସ୍କୁଲ୍-ସ୍କୁଲ୍ ଭିତରେ ମ୍ୟାଚ୍ ଖେଳର ଭାରି ପ୍ରସାର ଦେଖାଯାଉଛି । କପ୍ ପାଇବା ଟିମ୍ ବ୍ୟାଣ୍ଡ୍ ବଜାଇ ହିପ୍ ହିପ୍ ହୁର୍‌ରେ କରି ସହର ପରିକ୍ରମା କରିବାର ଦେଖାଯାଏ— ଯେପରିକି ସାମ୍ରାଜ୍ୟ ଜୟକରାଯାଇଛି । ଏସବୁ ପ୍ରତିଯୋଗିତାର ଅପପ୍ରୟୋଗ ଓ ଅପବ୍ୟବହାର । ଏଥିରେ ସ୍ପୋର୍ଟସ୍‌ମ୍ୟାନ୍ ସ୍ପିରିଟ୍ ରହୁନାହିଁ । ହାରିବା ଟିମ୍‌ର ମନୋଭାବ ପ୍ରତି ଯେ ନିଷ୍ଠୁରତା ତା ପ୍ରତି କେହି ଦୃଷ୍ଟି ଦେଉନାହାନ୍ତି । ଗୋଟିଏ ଟିମ୍ ଯଦି ଜିଣିଲା ତାହାହିଁ ଯଥେଷ୍ଟ ପୁରସ୍କାର । ବିଜୟୀ ଟିମ୍ ପରାସ୍ତ ଟିମ୍‌କୁ ସେକ୍‌ହାଣ୍ଡ୍ ବା ଆଲିଙ୍ଗନ କରି ଖେଳରେ କେଉଁଠି କାହାର କି ଦୋଷ ରହିଲ ମୁକ୍ତପ୍ରାଣରେ ତାହାର ଆଲୋଚନା କରି ଭାଇ ଭାଇ ପରି ବିଦାୟ ନେବାଠାରୁ, ଏଇ ସାମାନ୍ୟ ଘଟଣାରେ ବିଜୟଗର୍ବରେ ଉଦ୍ଧତ ହୋଇ ହିପ୍ ହିପ୍ ହୁର୍‌ରେ କରି ବ୍ୟାଣ୍ଡ୍ ବଜାଇ ସହର ପରିକ୍ରମା କରିବା କଣ ଅଧିକତର ପୌରୁଷର ପ୍ରକାଶ ?

ଶିକ୍ଷକମାନଙ୍କୁ ଅନୁରୋଧ ସେମାନେ ଖେଳର ଆତ୍ମା ପ୍ରତି ଦୃଷ୍ଟି ଦିଅନ୍ତୁ । ପ୍ରତିଯୋଗିତା ଓ ଜୟ-ପରାଜୟ ଉପରେ ଦୃଷ୍ଟି ଦିଅନ୍ତୁନାହିଁ । ତାହା ହେଲେହିଁ ଖେଳପଡ଼ିଆ ସୁଅଭ୍ୟାସର, ଚରିତ୍ରଗଠନର ଭୂମି ହେବ । ରଣକ୍ଷେତ୍ର ନହୋଇ ହେବ ତାହା ଧର୍ମକ୍ଷେତ୍ର ।

ଖେଳର ମୁଖ୍ୟ ଉଦ୍ଦେଶ୍ୟ ଅବଶ୍ୟ କ୍ଷିପ୍ର, ଜୀବନ୍ତ ତରୁଣ ଶରୀରକୁ ସତେଜ ଓ କର୍ମନିପୁଣ ରଖିବା । ଦିନରେ ଅନ୍ତତଃ ଘଣ୍ଟାଏ କଠୋର କାୟିକଶ୍ରମ ଦରକାର ଆମର ଏଇ ମାନବ-ଶରୀରକୁ କର୍ମନିପୁଣ କରି ରଖିବାପାଇଁ । ସେଥିପାଇଁ ପ୍ରକୃତି ଶିଶୁ ଓ କିଶୋରମାନଙ୍କର ଚିତ୍ତରେ ଖେଳିବା, ଦୌଡ଼ାଦୌଡ଼ି କରିବାର ସ୍ୱାଭାବିକ ପ୍ରବୃତ୍ତି ଦେଇଥାଏ, ଯେପରିକି ସେମାନଙ୍କର ଶରୀର ଆପେ ଆପେ ସୁସ୍ଥ ରହିବ । ଆମ ଦେଶର ଜଳବାୟୁ, ଆମର ଖାଦ୍ୟ ଓ ଆମର ସ୍କୁଲ୍‌ର ଅଧ୍ୟାପନା ପଦ୍ଧତିର ଦୋଷରୁ ଆମେ ଯେତିକି ବଡ଼ ହେଉ, ବିଶେଷତଃ ଯେଉଁମାନେ ସ୍କୁଲ୍-ଚକ୍ର ଭିତରେ ପଶନ୍ତି, ତାଙ୍କର ଏହି କାୟିକଶ୍ରମ ପ୍ରତି କ୍ରମେ ସେତିକି ବୀତସ୍ପୃହତା ଦେଖାଯାଏ । ଫଳରେ ଆମ ଦେଶର ଲୋକେ ବିଶେଷତଃ ଶିକ୍ଷିତ ଲୋକେ- ସ୍ତ୍ରୀ ଓ ପୁରୁଷ ଅକାଳରେ ବୃଦ୍ଧ ଓ ରୋଗାକ୍ରାନ୍ତ ହୋଇପଡ଼ନ୍ତି ।

ଏହାର ପ୍ରତିକାରସ୍ୱରୂପ ସ୍କୁଲ୍‌ରେ ପ୍ରତ୍ୟେକ ପିଲାଙ୍କୁ କୌଣସି ନା କୌଣସି ଖେଳରେ ବା ବ୍ୟାୟାମରେ ଅଭ୍ୟସ୍ତ କରେଇନେବା ଉଚିତ । ବ୍ୟକ୍ତିଗତଭାବରେ ଶରୀର-ଗଠନ ଓ ଶରୀର-ନିୟନ୍ତ୍ରଣପାଇଁ ଦଣ୍ଡ-ବୈଠକ, ସୂର୍ଯ୍ୟ ନମସ୍କାର ବା ଯୋଗାସନ ପ୍ରଭୃତି ବ୍ୟାୟାମର ଅଭ୍ୟାସ ଅତି ଉତ୍କୃଷ୍ଟ । ପ୍ରତ୍ୟେକ ସ୍କୁଲ୍‌ରେ ଏ ସବୁର ଓ ଲାଠିଖେଳ ଇତ୍ୟାଦିର ବ୍ୟବସ୍ଥା ରହିବା ଉଚିତ ଏବଂ ପ୍ରଧାନଶିକ୍ଷକ ଦେଖିବେ ଯେ ପ୍ରତ୍ୟେକ ପିଲା ଏଥିରୁ କୌଣସି ନା କୌଣସିଟି ଶିଖୁଛି ଓ ଅଭ୍ୟାସ କରୁଛି ।

ଆମ ଦେଶରେ କ୍ରମେ ପୌରୁଷ ତଳକୁ ଖସୁଛି । ତରୁଣମାନେ ନାରୀ ପରି ଚିକଣଚାକଣ ହେବାକୁ ପସନ୍ଦ କରୁଛନ୍ତି । ପ୍ରଧାନଶିକ୍ଷକ ଏସବୁ ଅପ୍ରାକୃତିକ ପ୍ରବୃତ୍ତି ନିରୋଧ କରି ତରୁଣମାନଙ୍କ ବଳଶାଳୀ ଶରୀର ଗଠନ କରି ଆକ୍ରମଣକାରୀର ବିଭୀଷିକା ଯେପରି ହେବେ ସେଥିପାଇଁ ଉତ୍ସାହିତ କରିବେ । ଜଣେ ବାଁ ଗାଲରେ ଚାପୁଡ଼େ ମାଇଲେ ତାକୁ ଡାହାଣ ଗାଲ ଦେଖାଇବା ନୀତିର ତାତ୍ପର୍ଯ୍ୟ କ'ଣ ଏପର୍ଯ୍ୟନ୍ତ ବୁଝିହେଉନାହିଁ । ମୁଁ ଚାହେ ଯେ ଜଣେ ଚାପୁଡ଼େ ମାଇଲେ ତତ୍‌କ୍ଷଣାତ୍ ଆମ ଟୋକାଏ ଦି ଚାପୁଡ଼ା ଯିମିତି ଦେଇପାରିବେ ସେହିପରିଭାବରେ ଗଢ଼ାହେବା ଉଚିତ । ବୀର ଶିଖମାନଙ୍କୁ ଦେଖ । ସାମାନ୍ୟ କେତେ ଲକ୍ଷ ତାଙ୍କର ସଂଖ୍ୟା । କିନ୍ତୁ ସାହସ ଓ କର୍ମଦକ୍ଷତା ଯୋଗୁଁ ପୃଥିବୀବିଖ୍ୟାତ ସେମାନେ । ପ୍ରତ୍ୟେକ ହିନ୍ଦୁ ତରୁଣର ଶିଖହିଁ ଆଦର୍ଶ ହେବା ଉଚିତ । ପ୍ରଧାନଶିକ୍ଷକ ତାଙ୍କ ଅଧୀନରେ ଥିବା ତରୁଣମାନଙ୍କୁ ସେହିପରି ବଳିଷ୍ଠ କରି ଗଢ଼ିବାକୁ ଚେଷ୍ଟାକରିବେ ।

ଅନ୍ୟପକ୍ଷରେ ଖେଳ ହେଲା ଗୋଷ୍ଠୀ-ମୂଳକ ଓ ଶୃଙ୍ଖଳା, ସଂଯମ, ନିୟମାନୁବର୍ତ୍ତିତା ଏବଂ ସାମାଜିକ ବ୍ୟବହାର ଆଦି ଶିକ୍ଷା କରିବାର ବାହନ । ତା ଛଡ଼ା ଏଥିରେ କିଶୋର ମନର ସ୍ୱତଃ ସ୍ଫୂର୍ତ୍ତି ଥାଏ । ସେହି ପ୍ରାକୃତିକ ଇଚ୍ଛାର ସୁଯୋଗ ନେଇ ପ୍ରଧାନଶିକ୍ଷକ ଖେଳକୁ ଶିକ୍ଷା ଓ ସୁଅଭ୍ୟାସ ବାହନ କରିବାକୁ ସର୍ବଦା ସଚେଷ୍ଟ ରହିବେ ।

———

# ଡିସିପ୍ଲିନ୍ ଓ ଭଦ୍ର ବ୍ୟବହାର

ପ୍ରାକୃତିକ ବନ୍ୟ ଅବସ୍ଥାରୁ ବାଳକବାଳିକାଙ୍କୁ ଭଦ୍ର, ସଂଯତ, ସଭ୍ୟ ଶିକ୍ଷିତ ଓ ସାମାଜିକ ମନୁଷ୍ୟରେ ପରିଣତ କରିବା ହେଉଛି ବିଦ୍ୟାଳୟର ପ୍ରଧାନ ଆଭିମୁଖ୍ୟ । ମନୁଷ୍ୟ ଭିତରୁ ବନ୍ୟ ଅସାମାଜିକ ଦୋଷସବୁକୁ ନିୟନ୍ତ୍ରିତ ଓ ନିରାକୃତ କରିବାର ଅଭ୍ୟାସ ହେଉଛି ଡିସିପ୍ଲିନ୍ । ଡିସିପ୍ଲିନ୍ ଓ ଭଦ୍ରତା ଅବିଚ୍ଛେଦ୍ୟଭାବରେ ସଂପୃକ୍ତ । ଡିସିପ୍ଲିନ୍‌ର ଅଭ୍ୟାନ ନଥିଲେ ଭଦ୍ରତା ଅସମ୍ଭବ ।

ଭଦ୍ର, ସାମାଜିକ ଓ ସଭ୍ୟ ହେବାକୁ ହେଲେ ଏକଦିଗରେ ଅସାମାଜିକ ଦୋଷସବୁକୁ ନିୟନ୍ତ୍ରିତ ଓ ନିରାକୃତ ଯେପରି କରିବାକୁ ହେବ, ଅନ୍ୟ ଦିଗରେ କେତେଗୁଡ଼ିଏ ସାମାଜିକ ସଭ୍ୟତାତ୍ମକ ଗୁଣ ସେହିପରି ବିକଶିତ କରିବାର ଚେଷ୍ଟା କରାହେବ । ଏହି ନିରୋଧାତ୍ମକ ଓ ବିକାଶାତ୍ମକ ଦ୍ୱିବିଧ ଅଭ୍ୟାସର ଫଳରେହିଁ ମନୁଷ୍ୟ-ଶିଶୁ ଜନ୍ତୁତ୍ୱରୁ ସଭ୍ୟ ସାମାଜିକ ମନୁଷ୍ୟତ୍ୱକୁ ଉଠିବା ସମ୍ଭବ । ଦୀର୍ଘକାଳବ୍ୟାପୀ ଅଭ୍ୟାସ ବ୍ୟତୀତ ଏହି ଗଠନକ୍ରିୟା ସମ୍ଭବ ନୁହେଁ ।

ଅନେକେ ମନେକରନ୍ତି ଡିସିପ୍ଲିନ୍ କହିଲେ ବୁଝାଏ ଏକ ଭୀତତ୍ରସ୍ତ ଅବସ୍ଥା, ଶିକ୍ଷକ ଓ ପ୍ରଧାନଶିକ୍ଷକଙ୍କର ଅଙ୍ଗୁଳି ନିର୍ଦ୍ଦେଶମାତ୍ରେ ପିଲେ ଚୁପ୍‌ହୋଇ ଆଜ୍ଞା ପାଳନ କରିବେ ଯେଉଁଠି ସ୍ୱାଧୀନ ମତପ୍ରକାଶର ସ୍ଥାନ ନାହିଁ, ଭୁଲ କରିବାର ଅଧିକାର ନାହିଁ, ପ୍ରଶ୍ନ କରିବାର ଅବକାଶ ନାହିଁ, ଅଧିକାର କେବଳ ଆଜ୍ଞାପାଳନର । କର୍ତ୍ତୃପକ୍ଷଙ୍କର, ଶିକ୍ଷକଙ୍କର ଆଦେଶ ପ୍ରତି ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ ଅବଶ୍ୟ ଡିସିପ୍ଲିନ୍‌ର ପ୍ରଧାନ ଲକ୍ଷଣ; କିନ୍ତୁ ତାହାହିଁ ଡିସିପ୍ଲିନ୍ ନୁହେଁ । ଶିକ୍ଷକ ମନେରଖିବା ଉଚିତ ଯେ କେବଳ ଭୟ ଦେଇ, ବିଚାରର ସୁଯୋଗ ନଦେଇ, ଚରିତ୍ର ଗଠନ ହୋଇନପାରେ ବା ମନୁଷ୍ୟତ୍ୱର ବିକାଶ ହୋଇନପାରେ । ଶିକ୍ଷକ ଛାତ୍ର ଭିତରେ, ବିଦ୍ୟାଳୟର ବାତାବରଣ ଭିତରେ ଭୟର ସ୍ଥାନ ରହିବା ଏକାନ୍ତ ଆବଶ୍ୟକ, କିନ୍ତୁ ଏହି ସମ୍ବନ୍ଧ ଓ ବାତାବରଣର ଅଧିକାଂଶ ହେବା ଉଚିତ ଛାତ୍ର-ଶିକ୍ଷକ ମଧ୍ୟରେ ପାରସ୍ପରିକ ଭକ୍ତି,ଶ୍ରଦ୍ଧା ଓ ବୁଝାବୁଝି । ଏସବୁ ଯେଉଁଠି ନାହିଁ, କେବଳ ବେତ୍ର, ଦଣ୍ଡ, ଜୋରିମାନା ଦେଇ ବିଦ୍ୟାଳୟରେ ଡିସିପ୍ଲିନ୍ ରଖାଯାଇନପାରେ ।

ପ୍ରଧାନଶିକ୍ଷକ ଓ ଶିକ୍ଷକମାନେ ମଧ୍ୟ ମନେରଖିବେ ଯେ ଡିସିପ୍ଲିନ୍ କେବଳ ସ୍କୁଲ୍‌ର ଚତୁଃସୀମାରେ ଆବଦ୍ଧ ନୁହେଁ । ସ୍କୁଲ୍‌ର ଡିସିପ୍ଲିନ୍‌ର ଚିତ୍ର ଦେଖିବାକୁ ଯେପରି ମିଳିବ,ସ୍କୁଲ୍ ବାହାରେ, ରାସ୍ତାରେ, ଘରେ, ଯେଉଁଠି ବହୁଲୋକର ସମାଗମ ହୁଏ ଏବଂ ଛାତ୍ରମାନଙ୍କର ପରଜୀବନରେ । ଛାତ୍ର ଚରିତ୍ରରେ ଡିସିପ୍ଲିନ୍‌ହିଁ ସ୍କୁଲ୍‌ର ସବୁଠାରୁ ଗୌରବାବହ ଛାପ ।

ଯେହେତୁ ବାଳକବାଳିକାମାନଙ୍କୁ ସାମାଜିକ ଜୀବରେ ପରିଣତ କରିବା ହେଲା ଡିସିପ୍ଲିନ୍‌ର ଲକ୍ଷ୍ୟ, ବିଦ୍ୟାଳୟ ଓ ହଷ୍ଟେଲ୍, କ୍ଲାସ୍-ରୁମ୍ ଓ ଖେଳପଡ଼ିଆ ଏଥିପାଇଁ ପ୍ରକୃଷ୍ଟ ଅଭ୍ୟାସ କ୍ଷେତ୍ର । କାରଣ ଏସବୁ ସ୍ଥାନରେ ସମ-ବୟସ୍କ ବହୁ ବ୍ୟକ୍ତିତ୍ୱର ମେଳଣ ହୁଏ, ଯେଉଁଠି ବହୁ ସ୍ୱାର୍ଥର, ବହୁ ବ୍ୟକ୍ତିତ୍ୱର ସଂଘର୍ଷ ଆଶା କରାଯାଏ । ଏପରିଭାବରେ ଏଗୁଡ଼ିକ ସମାଜର ପ୍ରତିବିମ୍ବ, ଏକ

ଏକ କ୍ଷୁଦ୍ର ସମାଜ । ଏଇ କ୍ଷୁଦ୍ର ସମାଜର ସ୍ୱାର୍ଥ-ସଂଗ୍ରାମ, ଘାତ-ପ୍ରତିଘାତ, ପତନ-ଅଭ୍ୟୁଦୟ, ଧନୀ-ଦାରିଦ୍ର୍ୟ, ଈର୍ଷା-ସହାନୁଭୂତି ଭିତରଦେଇ ଯେଉଁମାନେ ନିଜକୁ ସଭ୍ୟ, ସଂଯତ, ଭଦ୍ର କରି ଗଢ଼ିନେଇପାରିବେ, ସେମାନେ ଯେ ପରଜୀବନପାଇଁ ଯୋଗ୍ୟତା ଲାଭ କଲେ, ଏଥିରେ ସନ୍ଦେହ କଣ ? ଏଇ କ୍ଷୁଦ୍ର ସମାଜର କ୍ଷୁଦ୍ର ବେଷ୍ଟନୀ ଭିତରେ ଘଟିଥିବା ବନ୍ଧୁତା ଓ ଶତ୍ରୁତା ଏଇ ସମୟରେ ଚରିତ୍ରଗତ ହୋଇଥିବା ସଦଭ୍ୟାସ ବା ବଦଭ୍ୟାସ ଏଇ କେତେ ବର୍ଷର ସାଧନା ବା ଆଳସ୍ୟ ଅନେକ ଲୋକଙ୍କ ଜୀବନରେ ଦେଇଛି ସଫଳତା ବା ବିଫଳତା । ତେଣୁ ପ୍ରଧାନଶିକ୍ଷକ ଓ ଶିକ୍ଷକମାନେ ବିଦ୍ୟାଳୟରୂପକ ଛୋଟ ସମାଜରେ ଛୋଟ ଅଧିବାସୀମାନଙ୍କର ଦୈନନ୍ଦିନ ବନ୍ଧୁତା, ଆଳାପ, ବ୍ୟବହାର, କର୍ମ, ବିଶ୍ରାମ ପ୍ରଭୃତି ଉପରେ ତୀକ୍ଷ୍ଣ ଜାଗ୍ରତ ଦୃଷ୍ଟି ନରଖିଲେ, କର୍ତ୍ତବ୍ୟରେ ଘୋର ଅବହେଳା କଲେ ବୋଲି ଧରାଯିବ ।

ଡିସିପ୍ଲିନ୍ ବା ସଂଯମ ଅଭ୍ୟାସର କେତେକ ପରିସ୍ଫୁଟ ଲକ୍ଷଣ ଅଛି । ଏଇ କେତେଗୁଡ଼ିକ ସର୍ବଦା ମନେ ରଖିଥିଲେ ଶିକ୍ଷକମାନଙ୍କ ପକ୍ଷରେ ବାଳକବାଳିକାମାନଙ୍କ ଜୀବନରେ ଡିସିପ୍ଲିନ୍‌ର ପ୍ରୟୋଗ ସମ୍ପର୍କରେ ବିଶେଷ କଷ୍ଟ ହେବନାହିଁ । ନିମ୍ନରେ ସେଗୁଡ଼ିକ ବର୍ଣ୍ଣିତ ହେଉଛି ।

**ସମ୍ପୂର୍ଣ୍ଣ ନିର୍ଭରଯୋଗ୍ୟତା**– ଏହା ହେଉଛି ପ୍ରଧାନତମ ଲକ୍ଷଣ । ଗୋଟିଏ ବାଳକ ବା ଏକ ଦଳ ବାଳକ ଯଦି ଶିକ୍ଷକଙ୍କୁ କଥାଦେବେ ଯେ ରାତି ଘ ୧ । ୩୫ ମିନିଟ୍‌ରେ ତାଙ୍କ ବସା ପାଖରେ ଆସି ହାଜରହେବେ, ତେବେ ସେ ବା ସେମାନେ ନିଶ୍ଚୟ ଠିକ୍ ସେଇ ସମୟ ବା କିଛି ପୂର୍ବରୁ ସେ ସ୍ଥାନରେ ଉପସ୍ଥିତ ରହିବେ । ଝଡ଼, ବର୍ଷାର ପ୍ରଶ୍ନ ଉଠିବନାହିଁ, ଡେରିରେ ଶୋଇଲି ଉଠିପାରିଲିନାହିଁ ବା ଅମୁକକୁ କହିଥିଲି ମତେ ଡାକିଦେବାକୁ ସେ ଡାକିଦେଲାନି, ଏସବୁ ବାଜେ କୈଫିୟତ୍‌ର କୌଣସି ବିଚାରହିଁ ହେବନାହିଁ । ଯେଉଁ କାମଟି କରିବାପାଇଁ ବା ଗୋଟିଏ ସ୍ଥାନରେ ଗୋଟିଏ ସମୟରେ ଉପସ୍ଥିତ ହେବାପାଇଁ ଯେଉଁ କଥା ଦେଇଥିବ ତାହା ଯେକୌଣସିମତେ ରକ୍ଷା କରିବାକୁ ହେବ । ଶିକ୍ଷକ ଗୋଟିଏ ପିଲାକୁ ଅମୁକ କାମଟି କରିବାକୁ କହିବେ, ପିଲାଟି 'ହଁ' କରିବ ଏବଂ ଶିକ୍ଷକ ଯେପରି ନିଶ୍ଚିନ୍ତ ରହିବେ ଯେ ନିର୍ଦ୍ଦିଷ୍ଟ ସମୟରେ ପିଲାଟି ସେଇ କାମଟି ନିଶ୍ଚୟ କରି ରଖିଥିବ । ଏହି ନିର୍ଭରତା ହେଉଛି ଡିସିପ୍ଲିନ୍‌ର ପରିସ୍ଫୁଟ ଲକ୍ଷଣ । ଯେଉଁଠି ପିଲାଙ୍କ ଚରିତ୍ରରେ ଏଇ ନିର୍ଭରତା ଅଭ୍ୟାସଗତ ହୋଇନାହିଁ, ନିଃସନ୍ଦେହରେ ଧରିନିଆଯିବ ଯେ ସେ ବିଦ୍ୟାଳୟରେ ଡିସିପ୍ଲିନର ସ୍ଥାନ ନାହିଁ ।

**ନିଃସ୍ୱାର୍ଥପରତା ଓ ଅନ୍ୟପ୍ରତି ସହାନୁଭୂତି**—ଟିକଟ କିଣିବାକୁ ଗଲାବେଳେ, ଯାତ୍ରା, ଥିଏଟର, ସିନେମା ଦେଖିଲାବେଳେ, ମେସ୍‌ରେ ଖାଇବାକୁ ଗଲାବେଳେ, ହାଟରେ, ବଜାରରେ ଯେଉଁଠି ବେଶି ଲୋକ ଏକାଠି ହୁଅନ୍ତି, ସେଠି ପ୍ରତ୍ୟେକେ ଚାହାନ୍ତି ଅନ୍ୟକୁ ଠେଲି ନିଜେ କିମିତି ଭଲ ଜାଗାଟି ପାଇଯିବେ, ନିଜ କାମଟି ଆଗ କରିନେବେ । ଏହା ଭୀଷଣ ସ୍ୱାର୍ଥପରତାର ଲକ୍ଷଣ ଓ ଅସାମାଜିକ ଅଭଦ୍ର ବ୍ୟବହାର । ତମର ଯେପରି ଇଚ୍ଛା ଅନ୍ୟର ସେଇପରି ଇଚ୍ଛା ଅଛି । ଅନ୍ୟର ଇଚ୍ଛାକୁ ଦଳି ତମ ଇଚ୍ଛାକୁ ଚରିତାର୍ଥ କରିବାର କ'ଣ ଯୁକ୍ତି ଅଛି ? ସମସ୍ତେ ସମାନ ସୁଯୋଗ ପାଇବା ଉଚିତ । ଏପରି କ୍ଷେତ୍ରରେ ସମସ୍ତେ ଧୀର ସଂଯତଭାବରେ ଧାଡ଼ିବାନ୍ଧି ଏକ ପରେ ଏକ ଠିଆହେବା ଏବଂ ଆପଣାର ପାଳିକୁ ଅପେକ୍ଷା କରିବା ଉଚିତ – ଇଂରାଜୀରେ ଯାକୁ 'କ୍ୟୁ' କହନ୍ତି ।

ଇଂଲଣ୍ଡରେ ଛୋଟ ପିଲାଏ ବି କ୍ୟୁ କରି ଠିଆହୋଇଯାନ୍ତି। ଦୁଇଜଣ ଇଂରେଜୀ ପିଲା ଗୋଟିଏ କାମପାଇଁ ଏକାଠି ହେଲେ, କେହି ଆଗ କରିନେଇ ଯିବାପାଇଁ ଚେଷ୍ଟା କରିବ ନାହିଁ, ଯିଏ ଆଗ ଆସିବ ସିଏ ଆଗରେ ଠିଆହେବ, ତା ପଛରେ ଆସିବା ପିଲାଟି ତା ପଛରେ ଠିଆ ରହିବ। ସେ ଦେଶ ଜାତି ଓ ପରର ଅଧିକାରକୁ ଏପରି ସମ୍ମାନ କରନ୍ତି ଏବଂ ଏପରି ଡିସିପ୍ଲିନ୍‌ରେ ଅଭ୍ୟସ୍ତ ଯେ ଯଦି କୌଣସିଠାରେ ଆଗରେ ଆସିଥିବା ଲୋକ ଭୁଲକ୍ରମେ ପଛରେ ରହିଯାଇଥିବେ, ତେବେ ପଛରେ ଆସିବା ଲୋକ ସେ ସୁବିଧା ନେବନାହିଁ, ବରଂ ଆଗରେ ଆସିଥିବା ଲୋକକୁ କହିଦେବ ଯେ ''ଆପଣ ମୋ ଆଗରୁ ଆସିଥିଲେ, ଆପଣ ଯାନ୍ତୁ''। ଆଗରେ ଆସିବା ଲୋକ ଯଦି କହିବ ଯେ ''କ୍ଷତି ନାହିଁ, ଆପଣ ଯାନ୍ତୁ'' ତେବେ ଯାଇ ସେ ଯିବ।

ଭାରତୀୟ ଚରିତ୍ରରେ ଡିସିପ୍ଲିନ୍‌ର ପରପାଇଁ ବିଚାରର ବଡ଼ ଅଭାବ। ପ୍ରତ୍ୟେକେ ନିଜ ସୁବିଧାଟା କରେଇନେବାରେ ବ୍ୟସ୍ତ ଓ ଯତ୍ନଶୀଳ। ଏହି ଅସାମାଜିକ ବଦଭ୍ୟାସ ଆମ ଜାତିର ଚରିତ୍ରରୁ ପୋଛିଦେବାକୁ ହେଲେ ଆମ ସ୍କୁଲ୍ ଓ କଲେଜମାନଙ୍କରେ ଡିସିପ୍ଲିନ୍‌ର କଠୋର ଅଭ୍ୟାସ କରେଇବାକୁ ହେବ। ଶିକ୍ଷକ ଦେଖିବେ କୌଣସି ପିଲା ସ୍ୱାର୍ଥପରଭାବରେ ବ୍ୟବହାର କରୁନି ? ଯଦି କରେ ତେବେ ତାର କଠୋର ଶାସ୍ତିବିଧାନ ହେବା ଉଚିତ। କାରଣ ଏହି ଚାରିତ୍ରିକ ଦୋଷ ଫଳରେ ସେଇ ପିଲା ଦିନେ ଦେଶଦ୍ରୋହୀ ହୋଇଉଠିବ, ନିଜ ସୁବିଧାପାଇଁ ସମାଜ ଓ ରାଷ୍ଟ୍ରର କଲ୍ୟାଣକୁ ବିକିଦେଇପାରିବ।

ପ୍ରଧାନଶିକ୍ଷକ ଓ ଶ୍ରେଣୀଶିକ୍ଷକମାନେ ଏ ବିଷୟରେ ସର୍ବଦା ସତର୍କ ରହିବେ। କ୍ଲାସ୍‌ରୁମ୍, ଖେଳପଡ଼ିଆ, ହଷ୍ଟେଲ୍, ମେସ୍—ଯେଉଁ ଯେଉଁ ସ୍ଥାନରେ ପିଲାଏ ଏକତ୍ରିତ ହୁଅନ୍ତି, ସେଠି ସେମାନେ ଶ୍ରେଣୀବଦ୍ଧଭାବରେ, ଶୃଙ୍ଖଳାର ସହିତ, ଗଣ୍ଡଗୋଳ ନକରି ନୀରବରେ ଯେପରି କାମ କରିଯାଆନ୍ତି, ସେଇ ଅଭ୍ୟାସ ଗଢ଼େଇ ନେବାର ବରାବର ଚେଷ୍ଟା କରିବେ। ଆମେ ଭାରତୀୟମାନେ ଭୟଙ୍କର ପାଟିତୁଣ୍ଡ କରିବାରେ ଅଭ୍ୟସ୍ତ। ଗୋଟିଏ ଗୋଟିଏ ହୋଟେଲ୍‌ରେ ହଜାରେ ଇଂରେଜ ଖାଉଥିବେ, କିନ୍ତୁ ସୋରିଷ ପଡ଼ିଲେ ଶବ୍ଦ ହେବ। ଏତେ ନୀରବରେ ସେମାନେ ଖାଆନ୍ତି ଓ ଅନ୍ୟ କାମ କରିବାରେ ଅଭ୍ୟସ୍ତ। କିନ୍ତୁ ଆମେ ଭାରତୀୟ ୫ଟି ଯଦି କେଉଁଠି ଏକାଠି ହେବା, ଏପରି ପାଟିକରିବା ଯେ ମନେହେବ ହାଟ ବସିଛି। ଏହା ମଧ୍ୟ ଏକ ଘୋର ଅସାମାଜିକ ବଦଭ୍ୟାସ। ଶିକ୍ଷକମାନେ ପିଲାଙ୍କୁ ବରାବର ନୀରବରେ କାମ କରିଯିବାର ଅଭ୍ୟାସ କରାଇବାରେ ଲାଗିଥିବେ। ନିଜେ ନିଜେ ମଧ୍ୟ ନୀରବ କର୍ମର ଏକ ଏକ ଆଦର୍ଶ ହେବେ।

**ଆତ୍ମ-ନିର୍ଭରତା**—ଯେଉଁ ପିଲାମାନେ ଡିସିପ୍ଲିନ୍ ଭିତରଦେଇ ବଢ଼ିଆସିଥିବେ, ସେମାନେ ଆପଣାଛାଏଁ ଆତ୍ମ-ନିର୍ଭର ହୋଇଉଠିବେ। ନିଜର ରୁମ୍‌ଟି ସଫା କରିବା, ନିଜ ଲୁଗାପଟା ନିଜେ ସାବୁନ୍‌ରେ ଧୋଇ ସଫା ରଖିବା, ନିଜର ଯେତେ କିଛି ଛୋଟ ଛୋଟ ଦୈନନ୍ଦିନ ଆବଶ୍ୟକତା ତାହା ସବୁ ଚାକରବାକର ବା ଅନ୍ୟ ଉପରେ ନିର୍ଭର ନକରି ନିଜେ ନିଜେଇ କରିନେବେ। ପ୍ରଧାନଶିକ୍ଷକ ପିଲାଙ୍କ ଭିତରେ ସଫାସୁତୁରାର ଅଭ୍ୟାସ ତୀକ୍ଷ୍ଣଭାବରେ ଜାଗ୍ରତ କରେଇବେ। ଆମେ ଭାରତୀୟମାନେ ଭାବୁ ଯେ ଏସବୁ କାମ ନୀଚକର୍ମ, ଏଥିପାଇଁ ଏକ

ନୀଚଶ୍ରେଣୀର ମନୁଷ୍ୟ ବିଧାତା ସୃଷ୍ଟି କରିଛନ୍ତି, ସେଇମାନେଇ ଏହା କରିବେ । ଏ ଧାରଣା ପିଲାଙ୍କ ମନରୁ ଓ ଭାରତୀୟ ଚରିତ୍ରରୁ ମୂଳପୋଛ କରିବାକୁ ହେଲେ, ପ୍ରଧାନଶିକ୍ଷକ ସ୍କୁଲ୍‌ର ରୁମ୍ ସବୁ, ସ୍କୁଲ୍‌ର ହତା, ହଷ୍ଟେଲ୍, କିଚନ୍, ପାଇଖାନା ପ୍ରଭୃତି ପିଲାଙ୍କଦ୍ୱାରାହିଁ ଯଥାସାଧ ସଫା ରଖେଇବାର ଚେଷ୍ଟା କରିବେ । ମେହେନ୍ତର-ପାଇଖାନାପାଇଁ ଦରଖାସ୍ତ ଉପରେ ଦରଖାସ୍ତ ନକରି ଗାନ୍ଧି-ପାଇଖାନାର ବ୍ୟବସ୍ଥା କରିବେ ଯାହାକି ପିଲେ ନିଜେ କରିବେ, ନିଜେ ପୋତିବେ, ନିଜେ ସଫା ରଖିବେ । ଆମ ଜାତିର ସମୁଜ୍ଜ୍ୱଳ ଭବିଷ୍ୟତପାଇଁ ଆମର ପ୍ରତ୍ୟେକ ବିଦ୍ୟାନୁଷ୍ଠାନରେ ଆମେ ଏଇ କଠୋର ଡିସିପ୍ଲିନ୍ ଭିତରେ ଜାତିର ଭବିଷ୍ୟତମାନଙ୍କୁ ଗଢ଼ି ନେବାର ଜରୋରୀ ଆବଶ୍ୟକତା ଆଜି ଉପସ୍ଥିତ ।

**ପାରସ୍ପରିକ ସହଯୋଗ**—ଆତ୍ମ-ନିର୍ଭରତାର ହୁଏତ କଦର୍ଥ ବାହାରିପାରେ ଆତ୍ମ-ସମ୍ପୂର୍ଣ୍ଣତା । ଏ ମଧ ଏକ ଅସାମାଜିକ ଭାବ, ଯାହା ଭାରତବର୍ଷର ଗୋଷ୍ଠୀ-ଜୀବନକୁ ରୋଗାକ୍ରାନ୍ତ କରି ରଖୁଛି । ଆମେ ନିଜ ଘରଟି ଯାହାହେଉ ସଫାସୁତୁରା ରଖିଲୁ, କିନ୍ତୁ ଅଳିଆଯାକ ନେଇ ସର୍ବସାଧାରଣ ରାସ୍ତା ଉପରେ ପକାଇ ଦେବାରେ ଆଉ ସଂକୋଚ ନାହିଁ । ଆମର ଘରର ମଇଳାପାଣି ଆମର ସୁଶିକ୍ଷିତ ନାଗରିକମାନେ ମଧ ରାସ୍ତା ଉପରକୁ ଛାଡ଼ିଦିଅନ୍ତି । ସମଗ୍ର ଗ୍ରାମଟିକି ବା ନଗରଟିକି ବା ନିଜର ପଡ଼ାଟିକି ନିଜ ଘରର ଏକ ଅପରହାର୍ଯ୍ୟ ଅଙ୍ଗବୋଲି ଧରିନେଇ ସମସ୍ତଙ୍କ ସାଙ୍ଗେ ସହଯୋଗ କରି, ନିଜ ଘରଟି ପରି ଗ୍ରାମ, ନଗର ବା ପଡ଼ାଟିକି ମଧ ସଫାସୁତୁରା ରଖିବାର ଅଭ୍ୟାସ ଆମର ନାହିଁ । ଶିକ୍ଷକମାନେ ପିଲାଙ୍କ ଭିତରେ ଏଇ ପାରସ୍ପରିକ ସହଯୋଗ ଭାବ, ସମସ୍ତ ସ୍କୁଲ୍‌କୁ ନିଜର ବୋଲି ଭାବିବାର ଭାବ ବରାବର ଜାଗ୍ରତ କରାଇବେ ଏବଂ ସେହି ଦିଗରେ ପିଲାଙ୍କୁ ଅଭ୍ୟସ୍ତ କରାଇବେ । ବ୍ୟକ୍ତିଗତଭାବରେ ପୁରସ୍କାର ନଦେଇ, ଗୋଟିଏ ହଷ୍ଟେଲ୍ ଗୋଟିଏ କ୍ଲାସ୍‌କୁ ଗୋଟିଏ ଗୋଟିଏ ବିଷୟରେ ପୁରସ୍କାର ଦେଲେ ଏହି ପାରସ୍ପରିକ ସହଯୋଗ ଓ ଗୋଷ୍ଠୀଗତ ଭାବ ବଢ଼ିବାର ଆଶା କରାଯାଏ । ଗୋଷ୍ଠୀର ମଙ୍ଗଳ ସମସ୍ତଙ୍କ ଚେଷ୍ଟାରହିଁ ଫଳ, ଏଇ ଭାବ ପିଲାଙ୍କ ମନରେ ମୂଳରୁ ବଦ୍ଧମୂଳ ହେବା ଦରକାର ।

ମୋଟ୍ ଉପରେ ପ୍ରଧାନଶିକ୍ଷକ ସର୍ବଦା ମନେରଖିବେ ଯେ ତାଙ୍କର ଦାୟିତ୍ୱ ନୁହେଁ କେବଳ କେତେଗୁଡ଼ିଏ ବର୍ଣ୍ଣଗନ୍ଧହୀନ ମାଟ୍ରିକ୍ୟୁଲେଟ୍ ବର୍ଷ ପରେ ବର୍ଷ ବାହାର କରେଇବା, ଯନ୍ତ୍ରରୁ ଜିନିଷ ବାହାର କଲାପରି । ତାଙ୍କର ଦାୟିତ୍ୱ ହେଉଛି ଦେଶକୁ ବୁଦ୍ଧିମାନ୍, ସୁସ୍ଥ, ଭଦ୍ର, ଡିସିପ୍ଲିନ୍‌ଡ଼ ଶିକ୍ଷିତ ନାଗରିକ ଯୋଗେଇବା । ସେଇ ଲକ୍ଷ୍ୟରେ ସେ ସମଗ୍ର ବିଦ୍ୟାଳୟର ବାତାବରଣ ଓ ବିଦ୍ୟାଳୟର ଟିକିନିଖି ଅଂଶକୁ ଗଢ଼ିରଖିବେ । ବିଦ୍ୟାଳୟ ଗୋଟିଏ ଆଦର୍ଶଗ୍ରାମ ବା ନଗର ରୂପେ ପରିଚାଳିତ ହେବା ଉଚିତ । ପିଲାମାନେ ଶିକ୍ଷକମାନଙ୍କ ତତ୍ତ୍ୱାବଧାନ ତଳେ ଏଇ ପରିଚାଳନାରେ ଅଧିକାଂଶ ଭାଗନେବା ଉଚିତ । ପିଲାମାନେ ମନେକରିବେ ଯେପରିକି ଏ ସ୍କୁଲ୍‌ଟି ତାଙ୍କର । ପିଲାମାନେ ମନେକରିବେ ଯେପରି ସ୍କୁଲ୍ ବା ହଷ୍ଟେଲ୍ କାହାର ହୁକୁମ୍ ବା ମର୍ଜିରେ ଚାଲୁନି, ଚାଲୁଛି କେତେକ ବିଚାରପ୍ରତିଷ୍ଠ ଯୁକ୍ତିଯୁକ୍ତ ନିୟମ-ପରମ୍ପରା ଉପରେ । ପ୍ରଧାନଶିକ୍ଷକ ନିଜକୁ ଏକ ଡିକ୍‌ଟେଟର୍ ବା ଶାସକ ବୋଲି ମନେକରିବେନାହିଁ । ନିୟମ ସବୁକୁ ଜାରି କରିଦେବା ଅପେକ୍ଷା ପିଲାଙ୍କୁ ପ୍ରତ୍ୟେକ ନିୟମର ଆବଶ୍ୟକତା ଓ ଯୁକ୍ତିଯୁକ୍ତତା

ବୁଝାଇପାରିଲେ ସେସବୁ ଶ୍ରଦ୍ଧାର ସହ ପାଳିତ ହେବାର ଅଧିକ ସମ୍ଭାବନା । କେଉଁ କେଉଁ ନିୟମ ଭଙ୍ଗ କଲେ କେଉଁ କେଉଁ ଦଣ୍ଡ ଭୋଗିବାକୁ ହେବ, ତାହା ପ୍ରତ୍ୟେକ ପିଲା ଜାଣିରଖିବା ଉଚିତ ଏବଂ କୌଣସି କ୍ଷେତ୍ରରେ ଯେପରି ତାହା ଅନ୍ୟଥା ହେବାର ସେମାନେ ଦେଖନ୍ତିନାହିଁ; ଅର୍ଥାତ୍ ନିର୍ଦ୍ଦିଷ୍ଟ ଦଣ୍ଡ ଯେପରି ପ୍ରତ୍ୟେକ ପିଲାକୁ ପ୍ରତ୍ୟେକ ଅବସ୍ଥାରେ ଭୋଗ କରିବାକୁ ହେବ । କ୍ଷମା ପାଇଯିବାର ଅବକାଶ ରହିଲେ, ନିୟମ ପ୍ରତି ଭୟ ରହିବନାହିଁ । ସେଇଠାରେ ହେବ ବିଦ୍ୟାଳୟର ଡିସିପ୍ଲିନ୍ ପ୍ରତି ଗଭୀର କୁଠାରାଘାତ ।

ଭଦ୍ରତା ଓ ଡିସିପ୍ଲିନ୍ ଘନିଷ୍ଠ ଭାବରେ ସମ୍ପୃକ୍ତ । ସ୍ୱାର୍ଥପର ବା ଅସଂଯତ ଲୋକ କଦାପି ଭଦ୍ର ହୋଇନପାରେ । ଭଦ୍ରତାର ପ୍ରଧାନ ଉପାଦାନ ହେଉଛି ପ୍ରତିବେଶୀ ଓ ପରପ୍ରତି ବିଚାର । ମୁଁ ଆଗ ଜାଗା ମାଡ଼ିବସିବି, ମୁଁ ଆଗ ଖାଇଯିବି, ବେଶି ଖାଇଯିବି, ସବୁଯାକ ଟଙ୍କା ମୁଇଁ ଖର୍ଚ୍ଚ କରିବି, ମୁଁ ଭଲ ପିନ୍ଧିବି ଇତ୍ୟାଦି ମୁଁ-ମୂଳକଭାବରେ ପ୍ରାଧାନ୍ୟ ଥିଲା ପର୍ଯ୍ୟନ୍ତ ଲୋକ ଭଦ୍ର, ହୋଇପାରିବନାହିଁ ଏବଂ ସେଇଠାରେ ଦେଖୁଁ ଡିସିପ୍ଲିନ୍‌ର ଅଭାବ । ଏ ଲୋକ ଅନ୍ୟମାନଙ୍କ ସୁବିଧାପାଇଁ କେବେହେଲେ ନିଜକୁ ସଂଯତ କରିବାକୁ ଶିଖିନାହିଁ । ସେ ଜନ୍ତୁ-ସ୍ତରରେ ଅଛି—ମନୁଷ୍ୟ ସ୍ତରକୁ ଆସିନାହିଁ ବା ଆସିବାକୁ ଚେଷ୍ଟା କରିନାହିଁ। ପରପ୍ରତି ବିଚାରରୁ ଭଦ୍ରତାର ଆରମ୍ଭ । ଭଦ୍ରତା କାହା ମନରେ କଷ୍ଟ ଦେବାକୁ ଚାହେଁନା । ଭଦ୍ରତାରେ କୌଣସି କୁତ୍ସିତତା, ରୂଢ଼ ବାକ୍ୟ, ଅସୁନ୍ଦର କାମ, ଅସାମାଜିକ ବ୍ୟବହାରର ସ୍ଥାନ ନାହିଁ । ଯାହା କିଛି ପରମନରେ ଆଘାତ ଦେବ, ତାହା ଅଭଦ୍ର ବ୍ୟବହାର । ଇଂଲଣ୍ଡରେ ରାସ୍ତାର ସାଧାରଣ ଲୋକ ବିଦେଶୀଙ୍କୁ ଦେଖିଲେ ହସି ହସି ପଚାରନ୍ତି, "ମୁଁ ଆପଣଙ୍କୁ କୌଣସିପ୍ରକାର ସାହାଯ୍ୟ କରିପାରେ କି ?" ଶିକ୍ଷକମାନେ ଦେଖିବେ, ତାଙ୍କର ପ୍ରତ୍ୟେକ ପିଲା ଯଥାଯୋଗ୍ୟଭାବରେ ଏହିପରି ଭଦ୍ର ହୋଇ ବଢ଼ିବେ । କେହି କାହାକୁ ଠେଲାପେଲା କରିବେନାହିଁ, ବହିଟା ବା ପେନ୍‌ସିଲ୍‌ଟା ଛଡ଼ାଇନେବେନାହିଁ, କହିବେ "ମୁଁ ଅମୁକ ଜିନିଷଟା ଦେଖିପାରେ କି ?" "ଦୟାକରି ମତେ ଅମୁକ ଜିନିଷଟା ବା ପାଣି ଗ୍ଲାସେ ଦେଇପାରିବେ କି ?" ପାଇଲେ ଧନ୍ୟବାଦ ଦେବେ । ପିଲେ ସବୁବେଳେ ପରକୁ, ପରସ୍ପରକୁ ଓ ଶିକ୍ଷକଙ୍କୁ ସାହାଯ୍ୟ ଦେବାରେ ଆନନ୍ଦ ଅନୁଭବ କରିବେ ଯେପରି । ମେସ୍‌ରେ, ଖେଳପଡ଼ିଆରେ, କ୍ଲାସ୍-ରୁମ୍‌ରେ କୌଣସିମତେ ଚିତ୍କାର କରିବେ ନାହିଁ । ସେ ଭାବିବେ, "ମୁଁ ପାଟିକରିବାଦ୍ୱାରା ସାଧାରଣ ଗୋଳମାଳ ବଢ଼ିବ ବା ଅନ୍ୟ କାର କାମରେ ବାଧା ଆସିବ ।" କ୍ଲାସ୍-ରୁମ୍, ଖେଳପଡ଼ିଆ, ମେସ୍‌ରେ ନୀରବରେ କାମ କରିଯିବାର ଅଭ୍ୟାସ କରିବେ । କଥା କହିବା ଦରକାର ହେଲେ ନିମ୍ନସ୍ୱରରେ କଥାଭାଷା ହେବେ । ଗୋଷ୍ଠୀର ସମୂହମଙ୍ଗଳପାଇଁ ଏଇପରିଭାବରେ ବ୍ୟକ୍ତି ନିଜର ସ୍ୱାତନ୍ତ୍ର୍ୟକୁ ସଙ୍କୁଚିତ କରିବେ । ତା ନହେଲେ ଗୋଷ୍ଠୀର ସମୂହ ପ୍ରଗତି ଓ ମଙ୍ଗଳ ଅସମ୍ଭବ ।

---

# ହଷ୍ଟେଲ୍

ପ୍ରଧାନଶିକ୍ଷକ କଦାପି ଭାବିବେନାହିଁ ଯେ ସ୍କୁଲ୍ ହଷ୍ଟେଲ୍ ଗୋଟିଏ ପାନ୍ଥଶାଳା ବା ହୋଟେଲ୍ ବା ଏହା କେତେଗୁଡ଼ିଏ ପିଲା ଯେକୌଣସିପ୍ରକାରେ ରହିବାର ଓ ଖାଇବାର ଗୋଟିଏ ଚଟେଇ ଘର ମାତ୍ର । ସେ ମନେରଖିବେ ଯେ, ହଷ୍ଟେଲ୍ ବା ଛାତ୍ରାବାସ ହେଉଛି ସ୍କୁଲ୍‌ର ଦର୍ପଣସ୍ୱରୂପ । ବିଦ୍ୟାପୀଠରେ ବାତାବରଣ, ନିପୁଣତା, ଶୃଙ୍ଖଳା, ପରିଚ୍ଛନ୍ନତା, ଅଧ୍ୟୟନଶୀଳତା ଇତ୍ୟାଦି ସମସ୍ତ ଗୁଣର କେନ୍ଦ୍ରୀକୃତ ଆଧାର ହେବା ଉଚିତ ତାର ହଷ୍ଟେଲ୍ । ହଷ୍ଟେଲ୍‌ର ରକ୍ଷଣାବେକ୍ଷଣର ପରିପାଟି ହେବ ସ୍କୁଲ୍‌ର କାର୍ଯ୍ୟକାରୀ ଶକ୍ତିର ପ୍ରକୃଷ୍ଟ ମାନଦଣ୍ଡ । ପୂର୍ବେ ବିଦ୍ୟାପୀଠ ସମ୍ପର୍କରେ ଯେତେ ଯେତେ ଉପଦେଶ ବର୍ଣ୍ଣିତ ହୋଇଛି, ତାର ପ୍ରଧାନତମ ପରୀକ୍ଷାକେନ୍ଦ୍ର ହେବ ସ୍କୁଲ୍ ହଷ୍ଟେଲ୍ ।

ପୂର୍ବେ କୁହାଯାଇଛି ଯେ ଆମ ଦେଶରେ ଆବାସିକ ବିଦ୍ୟାଳୟ ନାହିଁ କହିଲେ ଚଳେ । ତେବେ ପ୍ରତି ମାଇନର, ହାଇସ୍କୁଲ୍ ଓ କଲେଜ ସାଙ୍ଗରେ ହଷ୍ଟେଲ୍ ଯୋଡ଼ାଯାଇ ଏସବୁକୁ ଏକ ଆବାସିକ ବାତାବରଣ ଯୋଗାଇ ଦିଆଯାଇଛି । ଯେଉଁମାନେ ଘରୁ ବା ଗାଁରୁ ଆସି କ୍ଲାସ୍‌ରେ କେବଳ ଦଶଟାରୁ ଚାରିଟା ବସନ୍ତି, ଶିକ୍ଷକମାନେ କହିବେ ଯେ ସେମାନଙ୍କ ସହ ଶିକ୍ଷକ-ଛାତ୍ରର ଆହୋରାତ୍ରିକ ଘନିଷ୍ଠ ସମ୍ପର୍କ ରହୁନଥିବାରୁ ସେମାନଙ୍କର ଚରିତ୍ର-ବିକାଶପାଇଁ ଶିକ୍ଷକମାନେ ଦାୟୀ ନୁହନ୍ତି । କିନ୍ତୁ ଯେଉଁ ପିଲେ ଦୂରଦୂରାନ୍ତ ଜାଗାରୁ ଘର ଓ ବାପମା ଛାଡ଼ି ଆସି ହଷ୍ଟେଲ୍‌ରେ ଆଶ୍ରୟ ନିଅନ୍ତି, ସେମାନଙ୍କ ସମ୍ବନ୍ଧରେ ଶିକ୍ଷକମାନଙ୍କର ଏ କୈଫିୟତ୍ ଖାଟି ନପାରେ । ସେ କ୍ଷେତ୍ରରେ ଛାତ୍ରର ଭଦ୍ରତା,ଅଧ୍ୟୟନାଭ୍ୟାସ, ଚରିତ୍ର, ଶୃଙ୍ଖଳା ସମସ୍ତପାଇଁ ପ୍ରଧାନଶିକ୍ଷକ ଓ ହଷ୍ଟେଲ୍‌ର ତତ୍ତ୍ୱାବଧାରକ ସମ୍ପୂର୍ଣ୍ଣ ଦାୟୀ ।

ନୂତନ ଜାତି ଗଢ଼ିବାକୁ ଗଲେ ଆମକୁ ନୂତନ ପରିବାର ସବୁ ଗଢ଼ିବାକୁ ହେବ; ଅର୍ଥାତ୍ ପ୍ରତ୍ୟେକ ପରିବାରରେ ଯଦି ଶୃଙ୍ଖଳାର, ଜ୍ଞାନଧର୍ମଚର୍ଚ୍ଚାର, ଉଚ୍ଚ ଆଦର୍ଶର, ନିପୁଣତାର, ନୀରବ କର୍ମର ଦୃଷ୍ଟାନ୍ତର ଅଭାବ, ତେବେ ଜାତିର ଚରିତ୍ରରେ ଏସବୁ ଗୁଣ ଆସିବ କୁଆଡୁ ? ଅତ୍ୟନ୍ତ ଦୁଃଖର ବିଷୟ ଏହି ଯେ, ଆମ ଦେଶର ପରିବାରମାନଙ୍କରେ ଏସବୁ ଗୁଣ ସାଧାରଣତଃ ଦେଖିବାକୁ ମିଳେନାହିଁ । ତେବେ ଦେଶର ସହସ୍ର ସହସ୍ର ପରିବାରରେ ଏହି ଅତ୍ୟାବଶ୍ୟକ ଗୁଣସବୁକୁ ପ୍ରବର୍ତ୍ତିତ କରାଯିବ କିପରି ? କିପରି ନୂତନ ଦେଶ ଓ ନୂତନ ଜାତି ଗଢ଼ାଯିବ ?

ଗଢ଼ାଯିବ, ଯଦି ପ୍ରତି ସ୍କୁଲ୍ ହଷ୍ଟେଲ୍‌କୁ ପ୍ରଧାନଶିକ୍ଷକ ଗୋଟିଏ ଆଦର୍ଶ ପରିବାର ମନେ କରି ଚଳାନ୍ତି । ବାଳକ ସ୍କୁଲ୍ ଅପେକ୍ଷା ବାଳିକାସ୍କୁଲ୍‌ର ହଷ୍ଟେଲ୍ ପକ୍ଷରେ ଏହି ଆଦର୍ଶ ଅତ୍ୟଧିକ ଭାବରେ ଅନୁସୃତ ହେବାର କଥା । ତେବେ ଭୁଲିଯିବାନି ଯେ, ବାଳକ ହଷ୍ଟେଲ୍‌ର ପ୍ରତି ବାଳକ ଦିନେ ଗୋଟିଏ ପିତା ହେବ, ଗୋଟିଏ ପରିବାରର ମାଲିକ ହେବ, ଯେପରିକି ବାଳିକାହଷ୍ଟେଲ୍‌ର ପ୍ରତି ବାଳିକା ଭବିଷ୍ୟତରେ ହେବ ଏକ ମାତା ଓ ଗୃହକର୍ତ୍ତ୍ରୀ । ତେଣୁ ବାଳକ ଓ ବାଳିକା ଉଭୟଙ୍କର

ଶିଖିବାର ଅଛି ପରିବାର ଓ ଗାର୍ହସ୍ଥ୍ୟ ପରିଚାଳନାର ଦାୟିତ୍ୱ, ଗୁରୁତ୍ୱ ଓ ଜଞ୍ଜାଳ । ଯଦି ଆମ ଦେଶର ପ୍ରଧାନଶିକ୍ଷକ ଓ ପ୍ରଧାନଶିକ୍ଷୟିତ୍ରୀମାନେ ଏ ବିଷୟରେ ଯତ୍ନ ଓ ଯଥୋଚିତ ଅନୁଶୀଳନ କରନ୍ତେ, ତେବେ ଆମର ସହସ୍ର, ସହସ୍ର ଭବିଷ୍ୟତ୍ ମା, ଗୃହିଣୀ ଓ ପିତା ସୁପରିଚାଳିତ, ସୁଶୃଙ୍ଖଳିତ ପରିବାରର ବାତାବରଣ ଅନେକାଂଶରେ ସ୍କୁଲ୍ ହଷ୍ଟେଲ୍‌ମାନଙ୍କରୁହିଁ ଅଜ୍ଞାତସାରରେ ଗ୍ରହଣ କରିପାରନ୍ତେ ।

ଆମ ଦେଶରେ ସାଧାରଣତଃ ଡର୍‌ମିଟରି ଧରଣର ହଷ୍ଟେଲ୍ ଗଢ଼ାଯାଇଥାଏ, କାରଣ ଏହା ଶସ୍ତା । କିନ୍ତୁ ଏହା ଅପେକ୍ଷା ଛୋଟ ଛୋଟ ୨୫ ।୩୦ଟି ପିଲା ରହିବା ହଷ୍ଟେଲ୍, ଶିକ୍ଷା ଦିଗରୁ ଅଧିକ ପ୍ରଶସ୍ତ । ଏଇପରି ପ୍ରତ୍ୟେକ ହଷ୍ଟେଲ୍ ଜଣେ ଜଣେ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ରହିବ । ତାଙ୍କପାଇଁ ହଷ୍ଟେଲ୍ ପାଖରେ ଘର ଥିବ । ବିନା ଭଡ଼ାର ଘରଟିହିଁ ତାଙ୍କର ଦରମା – ଅଧିକ ଆଲାଉନ୍ସ ଦରକାର ନାହିଁ । କାରଣ ୨୫ ।୩୦ଟି ପିଲାଙ୍କୁ ଦେଖାଶୁଣା କରିବାରେ ଜଞ୍ଜାଳ କମ୍ । ଲମ୍ବା ଲମ୍ବା ହଷ୍ଟେଲ୍ କରି ସୁପରିଣ୍ଟେଣ୍ଡେଣ୍ଟ ଓ ଆସିଷ୍ଟାଣ୍ଟ୍ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ବାଳକବାଳିକା ସଂଖ୍ୟାନୁପାତରେ ଦରମା ଦେବା ଅପେକ୍ଷା ବିନା ଦରମାର ଏଇପରି ଛୋଟ ଛୋଟ ୩ ।୪ ଟି ହଷ୍ଟେଲ୍ ସ୍କୁଲ୍ କର୍ତ୍ତୃପକ୍ଷଙ୍କ ପକ୍ଷରେ ମୋଟ୍ ଉପରେ ଏକା ଖର୍ଚ୍ଚ, କିନ୍ତୁ ଶିକ୍ଷାଦିଗରୁ ଅଧିକ ଉପଯୋଗୀ । କାରଣ ଛୋଟ ହେବାରୁ ସୁପରିଣ୍ଟେଣ୍ଡେଣ୍ଟ ପ୍ରତ୍ୟେକ ପିଲାକୁ ଘନିଷ୍ଠଭାବରେ ଜାଣିପାରିବେ, ତାର ଆର୍ଥିକ ଅବସ୍ଥା, ତାର ଗତି-ବିଧି, ତାର ମାନସିକ ଆକର୍ଷଣ ଓ ବିକାଶ, ତାର ନୈତିକସ୍ତର– ଏ ସମସ୍ତହିଁ ତାଙ୍କ ଆଗରେ ସ୍ପଷ୍ଟଭାବରେ ପରିଲକ୍ଷିତ ହେବ । ଏହା ଫଳରେ ପ୍ରତ୍ୟେକ ପିଲାର ଚରିତ୍ର ଓ ମାନସିକ ଗଠନ ସୁପରିଣ୍ଟେଣ୍ଡେଣ୍ଟଙ୍କ ପକ୍ଷରେ ଯେ ଅତ୍ୟନ୍ତ ସୁଖକର ହେବ, ଏଥିରେ ଦ୍ୱିମତ ନ ଥାଇପାରେ ।

ସାଧାରଣତଃ ସୁପରିଣ୍ଟେଣ୍ଡେଣ୍ଟ୍‌ଙ୍କ ହଷ୍ଟେଲ୍ ତତ୍ତ୍ୱାବଧାନକୁ ଲଘୁଭାବରେ, ଗୋଟିଏ ପାଖିକିଆ ଧନ୍ଦା ବୋଲି ଧରିନେଇଥାନ୍ତି । ସେମାନେ ମନେକରନ୍ତି ଯେ ତାଙ୍କର କାମ ହେଉଛି ଦିଓଳି ହାଜିରା ପକେଇବା ଓ ମାସ ଶେଷରେ ହଷ୍ଟେଲ୍‌ର ଦେୟ ଆଦାୟ କରିବା । କିନ୍ତୁ ପୂର୍ବେ ଓ ଉପରେ ମୁଁ ସ୍କୁଲ୍ ଓ ହଷ୍ଟେଲ୍‌ର ଯେଉଁ ଆଦର୍ଶ ଶିକ୍ଷକମାନଙ୍କ ଉଦ୍ଦେଶ୍ୟରେ ବର୍ଣ୍ଣନା କରିଛି ତାହା ସ୍ମରଣ ରଖିଲେ, ପ୍ରତ୍ୟେକ ହଷ୍ଟେଲ୍ ସୁପରିଣ୍ଟେଣ୍ଡେଣ୍ଟଙ୍କ ନିଜର ଗୁରୁଦାୟିତ୍ୱ ବିଷୟରେ ସମ୍ୟକ୍ ଅବହିତ ହେବେ ବୋଲି ଆଶା କରାଯାଏ । ଏହି ଗୁରୁଦାୟିତ୍ୱ ଦୃଷ୍ଟିରୁ ଯଦି ହଷ୍ଟେଲ୍ ବଡ଼ ଥାଏ, ତେବେ ଆଂଶିକ ଶିକ୍ଷକ ଓ ଆଂଶିକ ସୁପରିଣ୍ଟେଣ୍ଡେଣ୍ଟ ନରଖି ସ୍କୁଲ୍‌ର ଜଣେ ଶିକ୍ଷକ ମନେକରି ଜଣେ ପୂରାପୂରି ଖାଲି ସୁପରିଣ୍ଟେଣ୍ଡେଣ୍ଟଙ୍କହିଁ ନିଯୁକ୍ତ କରିବା ଉଚିତ । ତା ନହେଲେ ହଷ୍ଟେଲ୍ ଚଟେଇଘରରୁ ଉପରକୁ ଉଠି ନ ପାରେ । ଛୋଟ ହଷ୍ଟେଲ୍ ହେଲେ ତତ୍ତ୍ୱାବଧାନକୁ ଜଣେ ଜଣେ ଶିକ୍ଷକ ଆଂଶିକ କାମ ଭାବରେ ଚଳେଇ ନେବାରେ କଷ୍ଟ ହେବ ନାହିଁ ।

ହଷ୍ଟେଲ୍ ଜୀବନର ପ୍ରଥମ କଥା ହେଉଛି ସମୟ୍ ପ୍ରତି ସମ୍ମାନ । ସୁପରିଣ୍ଟେଣ୍ଡେଣ୍ଟ ଦେଖିବେ ଯେପରି ହଷ୍ଟେଲ୍‌ର ଦୈନନ୍ଦିନ ଜୀବନ ଠିକ୍ ଘଣ୍ଟା କଣ୍ଟା ପରି ଚାଲିଛି, ଯେଉଁଠି ବାଜେ ଗପ, ହେଁ-ହେଁ ଫେଁ-ଫେଁ, ଗଣ୍ଡଗୋଳର ଅବକାଶ ହିଁ ନଥିବ । ପ୍ରତ୍ୟେକେ ବର୍ଷସାରା ସକାଳୁ ଉଠି ଠିକ୍ ସମୟ ଭିତରେ ନିତ୍ୟକୃତ୍ୟ କରିବେ, ଅନ୍ତତଃ ୧୦ ମିନିଟ୍ ଧରି କୌଣସି ନା କୌଣସି

ବ୍ୟାୟାମ ଏକତ୍ରିତଭାବରେ କରିବେ, ତାପରେ ସାମାନ୍ୟ ଜଳପାନ, ତାପରେ ଦୁଇ ତିନି ଘଣ୍ଟାର ନୀରବ ଅଧ୍ୟୟନ, ତାପରେ ସ୍କୁଲ୍ । ସ୍କୁଲ୍‌ବେଳେ ହଷ୍ଟେଲ୍‌ରେ କୌଣସି ପିଲା ଯେପରି ନରହନ୍ତି । ଚାରିଟାବେଳେ ହଷ୍ଟେଲ୍ ପକ୍ଷରୁ ସାମାନ୍ୟ ଜଳଯୋଗ, ବାଧ୍ୟତାମୂଳକ ଖେଳ ବା ବଗିଚାକାମ ବା ହଷ୍ଟେଲ୍‌ର ଅନ୍ୟ ଦାୟିତ୍ୱ ପାଳନ, ତାପରେ ପ୍ରାର୍ଥନା, ତାପରେ ପୁଣି ଦୁଇ ତିନି ଘଣ୍ଟାର ସମ୍ପୂର୍ଣ୍ଣ ନୀରବ ଅଧ୍ୟୟନ । ତାପରେ ଖାଇ ଠିକ୍ ନିର୍ଦ୍ଦିଷ୍ଟ ସମୟରେ ସମସ୍ତ କକ୍ଷରେ ଦୀପ ନିର୍ବାଣ । ଏଇପରିଭାବରେ ହଷ୍ଟେଲ୍‌ର ଦୈନନ୍ଦିନ ଜୀବନ ଚାଲିଥିବ । ବ୍ୟାୟାମ, ଅଧ୍ୟୟନ ଓ ଖାଦ୍ୟ ପ୍ରତି ସୁପରିଣ୍ଟେଣ୍ଡେଣ୍ଟ ସର୍ବଦା ତୀକ୍ଷ୍ଣ ଦୃଷ୍ଟି ରଖିଥିବେ । ପ୍ରତ୍ୟେକ ପିଲା ବ୍ୟାୟାମ ଓ ଖେଳ ବା କୌଣସି ନା କୌଣସି କାୟିକ ଶ୍ରମରେ ଯୋଗଦେବା ଉଚିତ । ଦିନକୁ ଅନ୍ତତଃ ପାଞ୍ଚଘଣ୍ଟା ପ୍ରତ୍ୟେକ ପିଲା ନୀରବ ବାତାବରଣରେ ଯେପରି ପଢ଼ିବ ଏବଂ ଯେପରି ପିଲାଏ ଅଳ୍ପ ଖର୍ଚ୍ଚ ଭିତରେ ସୁଷମଖାଦ୍ୟ ପାଆନ୍ତି, ତାହା ସେ ଦେଖିବେ । ଶନିବାର ରାତି ଓ ରବିବାର ଦିବାଭାଗରେ ଅଭିନୟ, କ୍ରୀଡ଼ା, ଡିବେଟ୍, ପ୍ରବନ୍ଧ, ଗଳ୍ପର ପ୍ରତିଯୋଗିତା, ସାମୂହିକ ସଫାଇ ଇତ୍ୟାଦି କରାଇ ହଷ୍ଟେଲ୍ ଜୀବନରେ ବୈଚିତ୍ର୍ୟ ସେ ଅଣାଇବାକୁ ଚେଷ୍ଟା କରିବେ ।

ସୁପରିଣ୍ଟେଣ୍ଡେଣ୍ଟ ପିଲାଙ୍କ ଖାଦ୍ୟ ଓ ରୋଷେଇଘର ପରିଚାଳନାପ୍ରତି ତୀକ୍ଷ୍ଣ ଓ ବିଚାରବନ୍ତ ଦୃଷ୍ଟି ଦେବେ । ଆମର ଖାଦ୍ୟରେ ଯାହା ସାର ବା ଗୁଣ ଥିବାର କଥା ତାହା ନଥାଏ, ତେଣୁ ଆମେ ଜାତିଭାବରେ ଦୁର୍ବଳ ଓ ଆଳସ୍ୟପରାୟଣ । ସୁପରିଣ୍ଟେଣ୍ଡେଣ୍ଟ ବରାବର ଯତ୍ନ କରିବେ ପିଲାଙ୍କୁ ସୁଷମ ଓ ସାରବାନ୍ ଖାଦ୍ୟ ଦେବାକୁ । ସମୂହଭାବରେ ଖାଦ୍ୟ ଉପାଦାନଗୁଡ଼ିକର ଓ ଇନ୍ଧନର ସଂଗ୍ରହ କରିପାରିଲେ, ଅଳ୍ପ ଖର୍ଚ୍ଚରେ ଭଲ ଖାଦ୍ୟ ପାଇବାରେ କୌଣସି କଷ୍ଟ ହେବ ନାହିଁ । ପୁଣି ବିଜ୍ଞାନସମ୍ମତଭାବରେ ଖାଦ୍ୟ ପ୍ରସ୍ତୁତ କଲେ, ଆମେ ଖାଦ୍ୟର ଅନେକାଂଶ ଯାହା ନଷ୍ଟକରିଦେଉ, ତାହା ପାଆନ୍ତୁ ଓ ସେଇ ବାବଦରେ ଖର୍ଚ୍ଚ କମନ୍ତା । ପିଲାଦିନୁ ପିଲାଙ୍କୁ କେବଳ ପାଟିସୁଆଦରେ ଅଭ୍ୟସ୍ତ ନକରାଇ ସେମାନେ ଉତ୍କୃଷ୍ଟ ସାରବାନ୍ ଖାଦ୍ୟ ପ୍ରସ୍ତୁତ କରିବା ଓ ଖାଇବାରେ ଯେପରି ଅଭ୍ୟସ୍ତ ହୁଅନ୍ତି, ତାହା ସୁପରିଣ୍ଟେଣ୍ଡେଣ୍ଟ ଦେଖିବେ ।

ହଷ୍ଟେଲ୍‌ର ପିଲେ କୌଣସିମତେ ବାହାରୁ ଜିନିଷ କିଣି ଖାଇବେନାହିଁ । ସବୁ ଖାଦ୍ୟ ହଷ୍ଟେଲ୍‌ରେ ପ୍ରସ୍ତୁତ ହେବ ବା ସୁପରିଣ୍ଟେଣ୍ଡେଣ୍ଟଙ୍କ ତତ୍ତ୍ୱାବଧାନରେ ହଷ୍ଟେଲ୍ ଭିତରେ ପଶିବ । କେଉଁ ସମୟରେ କେଉଁ ଖାଦ୍ୟ ପ୍ରତି ପିଲା କେତେ କେତେ ଖାଇବେ,ତାର ନିର୍ଦ୍ଦିଷ୍ଟ ମାପ ରହିବା ଉଚିତ ଓ ସେହି ମାପରେ ସମସ୍ତଙ୍କୁ ବାଣ୍ଟି ଦିଆଯିବ । ଖାଦ୍ୟରେ ବରାବର ପରିବର୍ତ୍ତନ ରହିବା ଦରକାର । ଜଳଖିଆର ବିଭିନ୍ନତା, ଦିବା ଓ ରାତି ଭୋଜନରେ ବୈଚିତ୍ର୍ୟ ରହିଲେ ପିଲେ ଘର ମନେପକାଇ ହଷ୍ଟେଲ୍ ପ୍ରତି ବିତୃଷ୍ଣ ହେବେନାହିଁ ଓ ସେମାନଙ୍କର ସ୍ୱାସ୍ଥ୍ୟ ଭଲ ରହିବ । କିନ୍ତୁ ସୁପରିଣ୍ଟେଣ୍ଡେଣ୍ଟ କୌଣସି ପିଲାକୁ ପେଟୁ ହେବାକୁ ବା କୌଣସି ଖାଦ୍ୟ ବିନଷ୍ଟ ହେବାକୁ ଦେବେନାହିଁ । ଆମ ଦେଶରେ ଅଇଣ୍ଠା ଛାଡ଼ିଯିବାର ଯେଉଁ ଜାତୀୟ ବଦଭ୍ୟାସ ରହିଛି, ତାହା ସୁପରିଣ୍ଟେଣ୍ଡେଣ୍ଟ କଠୋରଭାବରେ ଲୋପ କରିବେ । କେହି ଖାଦ୍ୟ ନଷ୍ଟ କରିବେ ନାହିଁ, କି କେହି ଅଇଣ୍ଠା ଖାଇବେ ନାହିଁ, କୁକୁର ମଧ୍ୟ ନୁହେଁ । କୁକୁର ବା ଭିଖାରିଙ୍କି ଖୁଆଇବାର ହେଲେ ତାଙ୍କୁ ଅଲଗା କରି ଭାତ ଦେବ ।

ରୋଷେଇଶାଳ ଓ ଖାଇବାଘର ଅତିମାତ୍ରାରେ ପରିଚ୍ଛନ୍ନ ରହିବା ଉଚିତ । ପେଜ ଗାଳିବା ଦ୍ୱାରା ଆମେ ଖାଦ୍ୟର ସାରତକ ତ ହରାଉ, ଅଧିକରେ ପୁଣି ପାଉ ପେଜନାଳିର ଦୁର୍ଗନ୍ଧ ଓ ମକ୍ଷିକା-ଉପଦ୍ରବ । ପେଜ ନଗାଳିଲେ ଆମେ ଉଭୟ ଦିଗରୁ ଲାଭବାନ୍ ହେବା । ରୋଷେଇଘରର ଧୂଆ ପାଣି, ଆବର୍ଜନା ଆଦି ଦୂରରେ ଗାତରେ ପଡ଼ିବାର ବନ୍ଦୋବସ୍ତ ରହିବ । ପିଲାମାନେ ପରିଷ୍କାର ପରିଚ୍ଛନ୍ନଭାବରେ ଖାଇବାରେ ଅଭ୍ୟସ୍ତ ହେବେ । ଆବୁରଜାବୁର କରି ଖାଇବା, ଚାରିଆଡ଼େ ଅଇଣ୍ଠା ଓ ଚୋବେଇ ଚାଟି ଅଖାଦ୍ୟ ଅଂଶ ଫିଙ୍ଗିବା ଇତ୍ୟାଦି କୁତ୍ସିତ ଅଭ୍ୟାସକୁ ପିଲେ ଯେପରି ଆସ୍ତେ ଆସ୍ତେ ଛାଡ଼ିବେ, ସୁପରିଣ୍ଟେଣ୍ଡେଣ୍ଟ ବରାବର ତାହାର ଯତ୍ନ ନେବେ । ଭୋଜନଶାଳାରେ ପିଲେ ଆଦୌ ଯେପରି ପାଟିନକରନ୍ତି । ପ୍ରତ୍ୟେକେ ନିଜ ନିଜ ଜାଗାରେ ବସି ଅପେକ୍ଷା କରିବେ । ପରିବେଷକ ନିର୍ଦ୍ଦିଷ୍ଟ ମାପରେ ଭାତ, ତରକାରି ଇତ୍ୟାଦି ଏକାବେଳକେ ଦେଇଯିବ । ସମସ୍ତେ ନୀରବରେ ଖାଇଯିବେ । ପ୍ରତିବେଶୀ ସଙ୍ଗେ କଥା କହିବାର ଥିଲେ ନିମ୍ନକଣ୍ଠରେ କଥା ହେବେ । 'ଆଉ ଭାତ ଆଣ', 'ପୂଜାରି, ଖଟା ଆଣ, ଖଟା', 'ଆରେ ପାଣି ଦେ' ଇତ୍ୟାଦି ଉଚ୍ଚକଣ୍ଠରେ କୋଳାହଳପାଇଁ ଯେପରି ଅବକାଶ ନଥାଏ । ଲୁଣ, ଲଙ୍କା ପର୍ଯ୍ୟନ୍ତ ପ୍ରତ୍ୟେକ ପଦାର୍ଥ ନିର୍ଦ୍ଦିଷ୍ଟ ସ୍ଥାନରେ ଦେଇଯିବା ପାଇଁ ଆଗରୁ ପରିବେଷକ ରହିଥିବେ । ଏଥିରେ ବଡ଼ ଶ୍ରେଣୀର ପିଲେ ବା ସାହାଯ୍ୟପ୍ରାପ୍ତ ପିଲେ ପୂଜାରୀଙ୍କୁ ବରାବର ସାହାଯ୍ୟ କରିବେ । ସମସ୍ତେ ଭୋଜନଶାଳାରେ ଏକ ସମୟରେ ଭୋଜନ କରିବେ । ନିଜ ରୁମ୍‌ରେ କାହାକୁ ଭୋଜନ କରିବାକୁ ଦିଆଯିବନାହିଁ, ରୋଗୀମାନଙ୍କ ଛଡ଼ା । ବାସନକୁସନ ପିଲେ ନିଜେ ନିଜେ ଧୋଇବାହିଁ ସମୁଚିତ ।

ମେସ୍ ଓ ହଷ୍ଟେଲ୍ ପରିଚାଳନା ଯେତେଦୂର ପିଲାଙ୍କଦ୍ୱାରା କରେଇହେବ ସୁପରିଣ୍ଟେଣ୍ଡେଣ୍ଟ ତାର ଚେଷ୍ଟା କରିବେ । ସେଇମାନେ କାଠ, ଚାଉଳ, ଡାଲି, ପରିବା କିଣିବେ, ରଖିବେ, ହିସାବ ରଖିବେ, ଟଙ୍କା ଆଦାୟ କରିବେ, ନିଜ ନିଜ ରୁମ୍ ସଫା ରଖିବେ, ବଗିଚାରେ କାମ କରିବେ – ସୁପରିଣ୍ଟେଣ୍ଡେଣ୍ଟ କେବଳ ଗାଇଡ୍ କରିବେ । ପିଲାମାନେ ହଷ୍ଟେଲ୍‌କୁ ନିଜର ଏକ ବୃହଦ୍ କୁଟୁମ୍ବ ବୋଲି ଯେପରି ମନେକରିବେ । ଏସବୁପାଇଁ ଗୋଟିଏ କମିଟି ନିର୍ବାଚିତ ହେବ । ଏ କମିଟି ପ୍ରତି ମାସରେ ବଦଳିବା ଉଚିତ, ତାହାହେଲେ ହଷ୍ଟେଲ୍‌ର ଅଧିକାଂଶ ପିଲା ପରିଚାଳନାର ଦାୟିତ୍ୱ ଓ ଜଞ୍ଜାଳ ବିଷୟରେ କ୍ରମେ ଦୀକ୍ଷିତ ଓ ଶିକ୍ଷିତ ହେବେ । କମିଟିର ଆଦେଶ ଅନ୍ୟ ପିଲେ ଯେପରି ମାନନ୍ତି ତାହା ସୁପରିଣ୍ଟେଣ୍ଡେଣ୍ଟ ଦେଖିବେ । କମିଟି ଉପରେ ଅପିଲ୍ କରିବାର ବ୍ୟବସ୍ଥା ଥିବ ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟରେ ।

ସୁପରିଣ୍ଟେଣ୍ଡେଣ୍ଟ ଦେଖିବେ ଯେପରି ପ୍ରତ୍ୟେକ ପିଲା ନିଜର ଗୋଟିଏ ଦୈନନ୍ଦିନ ଟାଇମ୍‌ଟେବ୍‌ଲ୍ ତିଆରି କରି ସେହି ଅନୁସାରେ ନିଜକୁ ପରିଚାଳିତ କରୁଛି । ସେ ଦେଖିବେ ଯେପରି ପ୍ରତ୍ୟେକ ପିଲା ତାର ଘରୋଇ ପଢ଼ାଟି ପ୍ରତ୍ୟହ ଯତ୍ନର ସହିତ କରୁଛି । ପୁଣି ଦେଖିବେ ଯେପରି କୌଣସିପ୍ରକାର ଅବାଞ୍ଛିତ ପତ୍ରପତ୍ରିକା ବା ପୁସ୍ତକ ସେ ପଢ଼ିବାକୁ ନପାଏ ଓ ଯାହା ବାଞ୍ଛନୀୟ ତାହା ଯେପରି ପଢ଼ିବାର କଥା ସେପରି ପଢୁଛି । ଶ୍ରେଣୀରେ ସେ କିପରି ଉନ୍ନତି କରୁଛି, କାହିଁକି ବା ଉନ୍ନତି କରିପାରୁନି ତା ପ୍ରତି ସେ ତୀକ୍ଷ୍ଣ ଦୃଷ୍ଟି ରଖିଥିବେ ଏବଂ ଦରକାର ହେଲେ ବରାବର ତାର ପିତାମାତା ବା ଅଭିଭାବକଙ୍କୁ ଜଣାଇ ରଖୁଥିବେ ।

ସୁପରିଣ୍ଟେଣ୍ଡେଣ୍ଟ ଦେଖିବେ ଯେପରି ହଷ୍ଟେଲ୍ ଭିତରେ ଧନୀ ଦରିଦ୍ରର ପ୍ରଭେଦ ରହେ ନାହିଁ। ଧନୀ ମେସ୍, ଗରିବ ମେସ୍ କୌଣସିମତେ ସେ କରାଇଦେବେନାହିଁ। ସବୁ ପିଲେ ଏକ ଖାଦ୍ୟ ଖାଇବେ, ଧନୀ ପିଲେ କୌଣସି 'ଅତିରିକ୍ତ'ର ବ୍ୟବସ୍ଥା କରିପାରିବେନାହିଁ । ଧନୀ ପିଲାଙ୍କୁ ପୋଷାକପତ୍ରର ଆଡ଼ମ୍ବର ଦେଖେଇବାକୁ ମଧ ଦେବେନାହିଁ । ଯଦି କାହାରି ଜୋତା ନାହିଁ, କେବଳ ଜଣେ ଧନୀ ପିଲା ଜୋତା ହଲେ ବା ସିଲ୍କ ପୋଷାକ ପିନ୍ଧି ଦେଖାଇହେବାର କୌଣସି ଯୁକ୍ତି ନାହିଁ। ହୁଏତ ସମସ୍ତଙ୍କୁ ଜୋତା ଓ ସିଲ୍କ ପିନ୍ଧିବାକୁ ହେବ, ନହେଲେ ସମସ୍ତେ ସମଭାବରେ ସରଳଭାବରେ ରହିବେ ।

ପିଲେ ନିଜେ ଘରୁ ଟଙ୍କା ଆଣି ନିଜେ ବ୍ୟୟ କରିବା ଅପେକ୍ଷା ସୁପରିଣ୍ଟେଣ୍ଡେଣ୍ଟ ତାର ଦାୟିତ୍ୱ ନେବା ଉଚିତ। ଏହାଦ୍ୱାରା ପିଲାଙ୍କର ଅପବ୍ୟୟର ଅଭ୍ୟାସ ରହିବନାହିଁ। ପିଲେ ଯାହା କିଛି ଖର୍ଚ୍ଚ କରିବେ, ତାର ଖୁଣ୍ଟିନାଟି ସମସ୍ତ ହିସାବ ସେମାନେ ଦେଖିବେ । ସୁପରିଣ୍ଟେଣ୍ଡେଣ୍ଟ ସେ ସବୁକୁ ପ୍ରତି ୧୫ ଦିନରେ ଥରେ ଚେକ୍ କରି ନେଉଥିବେ ।

ଶନିବାର ଉପରଓଳି ବା ରବିବାର ସକାଳ ପିଲାଙ୍କ ''ସଫାଇ ସମୟ'' ରଖାଯିବ। ସେହି ସମୟରେ ସମସ୍ତ ହଷ୍ଟେଲ୍ ଓ ତାର ପରିପାର୍ଶ୍ୱ ସମୂହଭାବରେ ପିଲାଙ୍କ ଦ୍ୱାରା ସଫା କରାହେବ, ପୁଣି ପ୍ରତି ପିଲା ନିଜ ନିଜର ମଇଳା ଲୁଗା ସାବୁନ୍‌ରେ ସଫା କରିବେ, ଶେଯସବୁ ଖରାରେ ଦେବେ, ନିଜର ରୁମ୍‌ଟିମାନ ସଫା କରିବେ। ସୁପରିଣ୍ଟେଣ୍ଡେଣ୍ଟଙ୍କ ଦୈନିକ ଭିଜିଟ୍ ବେଳେ ବରାବର ଦେଖିବେ ଯେ ପିଲେ ତାଙ୍କର ବହି ଓ ଜିନିଷାଦି ସଜାଇ କରି ରଖିଛନ୍ତି, କୌଣସିଠି ମଇଳା ଜମିନାହିଁ,କୌଣସିଠାରେ ଛିଣ୍ଡାକାଗଜ, ଚିନାବାଦାମ ଚୋପା, ମୁଢ଼ୀ ବା ଅନ୍ୟ କୌଣସି ଖାଦ୍ୟାଂଶ ଇତସ୍ତତଃ ପଡ଼ି ପରିପାର୍ଶ୍ୱକୁ କୁତ୍ସିତ କରୁନାହିଁ। ପ୍ରତ୍ୟେକ ରୁମ୍‌ରେ ଗୋଟିଏ ଟୋକେଇ ରଖାଯାଇଥିବ – ଯାହା କିଛି ଫୋପଡ଼ା ହେବାର କଥା ପିଲେ ସେଇଥିରେ ହିଁ ପକେଇବେ, କୌଣସିମତେ ଅନ୍ୟତ୍ର ନୁହେଁ । ଏଇ ଅଭ୍ୟାସଟି ମୂଳରୁ କରିଦେଲେ, ଆମ ଦେଶ ଅଚିରେ ସଫାସୁତୁରା ଦେଶ ବୋଲି ନାମ କରନ୍ତା । ଆମକୁ ଏଇ ଜାତୀୟ ଅପବାଦ ଘୁଞ୍ଚେଇବାକୁ ହେବ। ପୁଣି ପ୍ରତି ରୁମ୍‌ର ଓ ମେସ୍‌ର ଫିଙ୍ଗା ହେବା ଜିନିଷସବୁ ସ୍କୁଲ୍ ହତାଭିତରେ ଥିବା ଗାତରେ ପକା ହେବ, କୌଣସିମତେ ଅନ୍ୟତ୍ର ନୁହେଁ। ତାହାହିଁ ଖତ ହୋଇ ହଷ୍ଟେଲ୍‌ର ଉତ୍କୃଷ୍ଟ ବଗିଚା ହେବାରେ ସାହାଯ୍ୟ କରିବ ।

ସୁପରିଣ୍ଟେଣ୍ଡେଣ୍ଟ ନିଜର ଏକ ଗୋପନୀୟ ଖାତାରେ ପ୍ରତ୍ୟେକ ପିଲାର ଏକ ରେକର୍ଡ଼ ରଖୁଥିବେ । ହେଡ଼ମାଷ୍ଟର ସାର୍ଟିଫିକେଟ୍ ଦେଲାବେଳେ, ଯଦି ପିଲା ହଷ୍ଟେଲ୍‌ର ହୋଇଥାଏ ତେବେ ସୁପରିଣ୍ଟେଣ୍ଡେଣ୍ଟଙ୍କର ମତ ନ.ନେଇ କୌଣସିମତେ ଦେବା ଉଚିତ ହେବ ନାହିଁ ।

---

# ପ୍ରଧାନ ଓ ସହକାରୀ ଶିକ୍ଷକ

ଶିକ୍ଷକ ଓ ଛାତ୍ରର ସମ୍ବନ୍ଧକୁ ନାନା ଉପମା ଦେଇ ବର୍ଣ୍ଣନା କରାଯାଇଛି । ଶିକ୍ଷକ ହେଉଛନ୍ତି ଦ୍ୱିତୀୟ ପିତା । ଶିକ୍ଷକ ହେଉଛନ୍ତି କୁମ୍ଭାର, ପିଲେ ହେଉଛନ୍ତି ମାଟି । ଶିକ୍ଷକ ହେଉଛନ୍ତି ଗୋପାଳକ, ପିଲେ ଗୋରୁ ଓ ବାଛୁରୀ ଇତ୍ୟାଦି । ଶିକ୍ଷକ ସ୍ୱୟଂ ପୁଣି ଅଶେଷ ଗୁଣର ଆଧାର ହେବାର ଆଶା କରାଯାଇଥାଏ । ସେ ପଣ୍ଡିତ, ସେ ଜାତିଗଠକ, ସେ ଗୁରୁ, ସେ ସ୍ରଷ୍ଟା,ସମାଜର ଆଦର୍ଶ ଇତ୍ୟାଦି ।

ମୋ ମତରେ ଏସବୁ ପାଗଳର ପ୍ରଳାପଠାରୁ ଆହୁରି ନ୍ୟୂନ । ଏହାର ଅର୍ଥ ତ ନାହିଁ, ବରଂ ଏସବୁ ବହୁ ଅନର୍ଥର କାରଣ । ସାଧାରଣ ଶିକ୍ଷକ ଏକାଧାରରେ ମହାତ୍ମା, ପଣ୍ଡିତ ଓ ଦେଶପ୍ରାଣ ହୋଇଯିବେ କିପରି, ଯେଉଁଠି ମୋଟା ଦରମାବାଲା ମନ୍ତ୍ରୀ ଓ ହାକିମହୁକୁମା ସାଧାରଣ ମନୁଷ୍ୟଠାରୁ ମଧ ସେମାନେ ତଳେ ରହନ୍ତି ?

ଯଦି ଶିକ୍ଷକ ସର୍ବଗୁଣର ଆଧାର ହେବାର ଆଶା କରାଯାଏ, ତେବେ ସେହି ଅନୁପାତରେ ସେ ପୁରସ୍କୃତ ଓ ସମ୍ମାନିତ ହେବା ଦରକାର । ଶିକ୍ଷକଙ୍କୁ ପିଅନଠାରୁ କମ୍ ଦରମା ଦେଇ ମନ୍ତ୍ରୀଙ୍କ ଅପେକ୍ଷା ଉଚ୍ଚତର କର୍ତ୍ତବ୍ୟଜ୍ଞାନ ଓ ବହୁତର କର୍ମକଳାପ ତାଠାରୁ ଆଶା କରିବା ବିଡ଼ମ୍ବନା ମାତ୍ର । ପ୍ରାଚୀନ ଭାରତରେ ରାଷ୍ଟ୍ର ଓ ସମାଜ ଗୁରୁର ପରିପୋଷଣର ସମସ୍ତ ଦାୟିତ୍ୱ ନେଉଥିଲା । ଗୁରୁ ମଧ ସମାଜର ଶ୍ରେଷ୍ଠତମ ସମ୍ମାନିତ ବ୍ୟକ୍ତି ଥିଲା । ଏବେ ଶିକ୍ଷକତ୍ୱର ମାନଦଣ୍ଡ ଯେ ବହୁ ତଳକୁ ଖସିଛି ତାହାପାଇଁ ଶିକ୍ଷକ ଦାୟୀ ନୁହେଁ, ଦାୟୀ ଶିକ୍ଷା ବିଭାଗର କର୍ତ୍ତୃପକ୍ଷ, ଦାୟୀ ଦେଶର ଶାସକବର୍ଗ । ରାଜନୈତିକ କାରଣରୁ ସ୍କୁଲ୍ କଲେଜ୍ ବଢ଼େଇ ଦିଆଯାଉଛି । ଶିକ୍ଷକର ଦେଖା ନାହିଁ, ଏଣେ ସ୍କୁଲ୍ ମଞ୍ଜୁରି ପାଇଯାଉଛି । ଏତେ ସଂଖ୍ୟାରେ ଉଚ୍ଚ ଦରର ଶିକ୍ଷକ ଚାହିଲାମାତ୍ରେ ଦେଶରେ ଆସିବେ କୁଆଡୁ ? ଯଦି ଶିକ୍ଷକକୁ ଶସ୍ତା କଲ, ତେବେ ତୁମର ଶିକ୍ଷା ଯେ ସେ ଶସ୍ତା ହେବ, ଏଥିରେ ବିଚିତ୍ର କଣ ?

ଭାରତବର୍ଷର ଏହି ପାପଚକ୍ରରୁ ସୋଭିଏଟ୍ ରୁଷିଆରେ ଆଖିପକେଇଲେ ଆମେ କଣ ଦେଖୁ ? ଗତ ତିରିଶବର୍ଷ ଭିତରେ ଯେ ସୋଭିଏଟ୍ ରୁଷିଆର ଅକଳ୍ପନୀୟ ଉନ୍ନତି ଘଟିଛି ଏଥିରେ ଦ୍ୱିମତ ନ ଥାଇପାରେ । ଏହାର ମୂଳରେ ଏକାନ୍ତଭାବରେ ରହିଛି ବିପ୍ଳବାତ୍ମକ ଶିକ୍ଷା ବ୍ୟବସ୍ଥା । ଏହି ବିପ୍ଳବରେ ଶିକ୍ଷକ ଏପରି ଭାଗ ନେଇଛି ଯେ ସୋଭିଏଟ୍ ସରକାର ତାଙ୍କ ଶିକ୍ଷକମାନଙ୍କୁ ନେଇ ଗର୍ବ କରନ୍ତି, ଜାତୀୟ ସଙ୍କଟବେଳେ ସେମାନଙ୍କ ଉପରେ ଏକାନ୍ତ ନିର୍ଭର କରି ଦେଶର ଶିଶୁ ଓ କିଶୋରମାନଙ୍କୁ ବିନା ବିଚାରରେ ତାଙ୍କରି ହାତରେ ଛାଡ଼ିଦିଅନ୍ତି । ଲେନିନ୍ କହିଥିଲେ, ''ଆମର ଶିକ୍ଷକର ମାନଦଣ୍ଡ ଆମେ ଏପରି ବଢ଼ାଇବୁ ଯାହା କି ସାମନ୍ତବାଦୀ ସମାଜରେ କେବେହେଲେ ସମ୍ଭବ ହୋଇନାହିଁ ।'' ସୋଭିଏଟ୍ ସରକାର ତାହା ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ଫଳରେ ଇତିମଧରେ ଅନ୍ତତଃ ଏକଲକ୍ଷ ସୋଭିଏଟ୍ ଶିକ୍ଷକ ଅନିନ୍ଦ୍ୟ କର୍ମ, ସ୍ୱାର୍ଥତ୍ୟାଗ

ଓ ଦୀର୍ଘକାଳବ୍ୟାପୀ ଦେଶସେବାପାଇଁ ସରକାରଙ୍କଦ୍ୱାରା ପଦ ଓ ପଦକଦ୍ୱାରା ସମ୍ମାନିତ ହୋଇଛନ୍ତି । ସୋଭିଏଟ୍ ଶିକ୍ଷକ ଜଣେ ଇଞ୍ଜିନିୟର ବା ଶିଳ୍ପ ବିଶେଷଜ୍ଞ ସମସ୍ତରରେ ଦରମା ପାଏ, ପ୍ରତି ପାଞ୍ଚବର୍ଷର ଚାକିରିପାଇଁ ବୋନସ୍ ପାଏ, ଦୂର ମଫସଲରେ କାମ କଲେ ଅଧିକା ଦରମା ପାଏ ଏବଂ ୨୫ ବର୍ଷ ଚାକିରି ପରେ ପେନ୍‌ସନ୍ । କ୍ରିମିୟା, କକେସସ୍ ଓ ଅନ୍ୟ ସ୍ୱାସ୍ଥ୍ୟକର ସ୍ଥାନମାନଙ୍କରେ ଶିକ୍ଷକମାନଙ୍କର ନିଜର ସ୍ୱାସ୍ଥ୍ୟନିବାସ ସବୁ ଅଛି, ପ୍ରତି ସୋଭିଏଟ୍ ସହରରେ ସୋଭିଏଟ୍ ଶିକ୍ଷକମାନଙ୍କର ଶିକ୍ଷକ-କେନ୍ଦ୍ର ଅଛି, ଯେଉଁଠି ଥାଏ ତାଙ୍କର ନିଜର ଲାଇବ୍ରେରି, ରିଡ଼ିଂ-ରୁମ୍ ଓ ସଂଗୀତକକ୍ଷ । ଏସବୁ ଦୃଷ୍ଟିରୁ ସୋଭିଏଟ୍ ରୁଷିଆରେ ଶିକ୍ଷକତା ଏକ ପ୍ରଧାନତମ ଓ ସମ୍ମାନିତତମ ଜୀବିକା ଏବଂ ସୋଭିଏଟ୍ ୟୁନିଅନ୍‌ର ଲୋକେ ଶିକ୍ଷକକୁ ଯଥେଷ୍ଟ ସମ୍ମାନ କରିଥାନ୍ତି । *

ତେବେ ଏହା ଅଯୌକ୍ତିକ ହେବନାହିଁ ଯେ, ଜଣେ ପୁଲିସ ଅଫିସରଠାରୁ, ଜଣେ କିରାନିଠାରୁ, ଜଣେ ଡାକ୍ତରଠାରୁ ପୁଲିସ, କିରାନି ଓ ଡାକ୍ତର ଭାବରେ ଆମେ ଯେଉଁ ଦକ୍ଷତା, ନୈତିକତା ଆଶାକରୁ, ଶିକ୍ଷକଠାରୁ ମଧ ଶିକ୍ଷକଭାବରେ ସେହିପରି ଦକ୍ଷତା ଓ ନୈତିକତା ଆଶା କରିବା ବରଂ ଅଧିକ ଭାବରେ । କାରଣ ପୁଲିସ, ଡାକ୍ତର ଓ କିରାନିକି ଶିକ୍ଷକହିଁ ଗଢ଼େ । ଡାକ୍ତର, କିରାନି ଓ ପୁଲିସର ଦକ୍ଷତା ଓ ନୈତିକତା ଅନେକ ପରିମାଣରେ ଶିକ୍ଷକଠାରୁହିଁ ଆସିବାର କଥା । ଯଦି ଜୀବିକାଭାବରେ ଶିକ୍ଷକତା ମନକୁ ଆସୁନାହିଁ, ତେବେ ତାକୁ ବରଂ ଛାଡ଼ିଯିବା ଉଚିତ ଅନ୍ୟ ବ୍ୟବସାୟ ଧରିବାକୁ, କିନ୍ତୁ ଜୀବିକାଭାବରେ ତାକୁ ଆଶ୍ରୟ କରି ସେଥିରେ ଫାଙ୍କିଦେବାକୁ ଚେଷ୍ଟାକରିବା ଘୋର ଅକ୍ଷମଣୀୟ ଅପରାଧ ।

ଶିକ୍ଷକ-କର୍ମରେ ଦକ୍ଷତାପାଇଁ ପୁଣି ଅଗାଧ ପାଣ୍ଡିତ୍ୟ ଦରକାର ନାହିଁ । ବିଶ୍ୱବିଦ୍ୟାଳୟର ଡିଗ୍ରୀମାଳା ବି ଦରକାର ନାହିଁ ।

ଜଣେ ସାଧାରଣ ବୁଦ୍ଧିର ମାଟ୍ରିକ୍ ବା ଗ୍ରାଜୁଏଟ୍ ଯଦି କାମରେ ଆନ୍ତରିକତା ଦେଖାନ୍ତି ଓ ନିଜ କର୍ତ୍ତବ୍ୟ ପ୍ରତି ଦାୟିତ୍ୱଶୀଳ ହୁଅନ୍ତି, ତେବେ ଶିକ୍ଷକଭାବରେ ତାଙ୍କର ସୁନାମ ଅର୍ଜନ କରିବାରେ କୌଣସି ସନ୍ଦେହ ନାହିଁ ।

ପ୍ରଥମ ଆବଶ୍ୟକତା ହେଉଛି ଶିକ୍ଷକ ଶିକ୍ଷାବିଜ୍ଞାନରେ ନିଶ୍ଚୟ ଟ୍ରେଣ୍ଡ୍ ହୋଇଥିବେ । ତା ନହେଲେ ମୂଳରୁ ଶିକ୍ଷକତାରେ ସୌଷ୍ଠବ ସହକାରେ କର୍ତ୍ତବ୍ୟପାଳନ ସହଜ ନୁହେଁ । ହୁଏତ ଦୀର୍ଘକାଳର ଅଭିଜ୍ଞତାପାଇଁ ଅପେକ୍ଷା କରିବାକୁ ପଡ଼ିବ । ଯିଏ ଶିକ୍ଷକ ହେବେ, ସେ ଆଗରୁ ସ୍ଥିର କରିନେବେ ଯେ, ସେ ଶିକ୍ଷାବୃତ୍ତିକି ଚିରକାଳପାଇଁ ଆଶ୍ରୟ କରିବେ । ନଚେତ୍ ଶିକ୍ଷକର ସ୍ୱଳ୍ପବେତନ ଓ ତାଙ୍କର ଉଚ୍ଚାଭିଳାଷ ଭିତରେ ବରାବର ଦ୍ୱନ୍ଦ୍ୱ ଚାଲିଥିବ ଓ ସେଥିଲାଗି ପିଲେ ଅନିଷ୍ଟ ଭୋଗକରିବେ, ଶିକ୍ଷକର କର୍ତ୍ତବ୍ୟ କର୍ମରେ ଅବହେଳା ଓ ନିଷ୍ଠାର ଅଭାବରୁ । ଯଦି ସେ ଶିକ୍ଷକତା ପାଇଁ ସ୍ଥିର କଲେ, ତେବେ ସେ ମୂଳରୁ ଟ୍ରେନିଂ ନେଇନେବା ଉଚିତ । ଟ୍ରେନିଂ ନେବା ଆଗରୁ ଅନ୍ତିତଃ ବର୍ଷେ ଖଣ୍ଡେ କୌଣସି ସୁଦକ୍ଷ ହେଡ଼ମାଷ୍ଟରଙ୍କ ତଳେ ଶିକ୍ଷକତାରେ ଶିକ୍ଷାନବିସ୍

---

* Public Education in the U.S.S.R. by Y.N. Medinsky– Chapter on "The Soviet Teacher."

ହୋଇଗଲେ, ଟ୍ରେନିଂରୁ ସର୍ବାଧିକ ଜ୍ଞାନବୋଧ ହେବାର ଆଶା କରାଯାଏ । ନଚେତ୍ ଟ୍ରେନିଂ ପାଠ ନୂଆ ନୂଆ ଓ ଅବାସ୍ତବ ବୋଧହେବ । ସୋଭିଏତ୍ ରୁଷିଆରେ ପ୍ରାଇମେରୀ ଶିକ୍ଷକ ଦୀର୍ଘ ଚାରିବର୍ଷ ଟ୍ରେନିଂ ପାଆନ୍ତି – ସେଇଥିରୁ ବୁଝାଯିବ ଶିକ୍ଷକତା ଓ ଟ୍ରେନିଂର ମହତ୍ତ୍ୱ ସେମାନେ କିପରି ବୁଝନ୍ତି । ଆମର ଏଠି ଭ୍ରାମ୍ୟମାଣ ତାଲିମ ଶିବିରରେ ଏକମାସ ଭିତରେ ବେସିକ୍ ରୀତିରେ ଲୋକଙ୍କୁ ଦକ୍ଷ କରିଦିଆଯାଉଥିବାର କିନ୍ତୁ ସଂବାଦପତ୍ରରେ ପଢ଼ିବାକୁ ମିଳେ । ଶିକ୍ଷାର ମାନଦଣ୍ଡ ଯେ ନିମ୍ନସ୍ଥ ହେବ, ଏଥିରେ ବିସ୍ମୟ କିଛିନାହିଁ ।

ଟ୍ରେଣ୍ଡ୍ ହେଲା ପରେ, ଡିପ୍ଲୋମା ଫଳରେ ଚାକିରି ମିଳିଲା ପରେ, ଶିକ୍ଷକ ମନେକରିବେ ନାହିଁ ଯେ ବିଦ୍ୟା ଶେଷ ହୋଇଗଲା । ତାହାହେଲେ ସେଇଠି ହେବ ତାଙ୍କର ମୃତ୍ୟୁ । ଯେଉଁ ଶିକ୍ଷକ ବରାବର ଜିଜ୍ଞାସୁ ଛାତ୍ର ହୋଇ ନରହିବେ, ତାଙ୍କର ଅଧ୍ୟାପନାର ମାଦକତା ଶିଥିଳ ହୋଇ ଆସିବ । ସେ ଯେଉଁ ଗୋଟିଏ ଦୁଇଟି ବିଷୟ ଅଧ୍ୟାପନାର ଭାର ନେଇଥିବେ, ସେଥିରେ ଜ୍ଞାନରେ ଓ ଅଧ୍ୟାପନା ରୀତିରେ ବରାବର ଅପ୍-ଟୁ-ଡେଟ୍ ରହିବାକୁ ଚେଷ୍ଟାକରିବେ । ସେ ବରାବର ପ୍ରଯତ୍ନ କରିବେ ଯେ ତାଙ୍କର ହେଳା ଓ ଆଳସ୍ୟଯୋଗୁଁ ପିଲେ ଯେପରି ସତ୍ୟଜ୍ଞାନ ପାଇବା ପରିବର୍ତ୍ତରେ ନପାଆନ୍ତି ଭ୍ରାନ୍ତ ସମ୍ବାଦ ଓ ଦେଖିବେ ମଧ୍ୟ ଯେ ତାଙ୍କର ଅଧ୍ୟାପନା ପ୍ରତ୍ୟହ ବିଜ୍ଞାନାନୁମୋଦିତ ରୀତିରେ, ପିଲାଙ୍କ ମାନସିକସ୍ତର ଓ ଅଭାବ ଏବଂ କୌତୂହଳକୁ ଯଥାଯୋଗ୍ୟ ସମ୍ମାନ ରଖି ଚାଲିଛି । ସଟାବଟା କରି ପିରିଅଡ଼ଟି ଶେଷ କରିଦେବା, କ୍ଲାସକୁ ପ୍ରସ୍ତୁତ ନହୋଇ ଆସିବା, ପିଲାଙ୍କଠାରୁ କାମ ଆଦାୟ ନକରିବା, ପିଲାଙ୍କ ଲେଖିବା ଓ କହିବାରେ ପ୍ରତ୍ୟହ ଭୁଲ୍ କାଟି ପ୍ରତ୍ୟହ ଉପରକୁ ଉଠେଇବାରେ ହେଳା କରିବା ଇତ୍ୟାଦି ଶିକ୍ଷକ ପକ୍ଷରେ ଯେପରି ଗର୍ହିତ କାମ, ଜାତି ପକ୍ଷରେ ତାହା ସେହିପରି ସମୂହଭାବରେ ଅକଲ୍ୟାଣକର ।

ପୂର୍ବପ୍ରଦର୍ଶିତ ପନ୍ଥାରେ ଶିକ୍ଷକ ତାଙ୍କର ବିଷୟ ଉପରେ ଓ ଶ୍ରେଣୀ ସମ୍ପର୍କରେ ସମଗ୍ର ବର୍ଷପାଇଁ ଏକ ସୁଚିନ୍ତିତ ଯୋଜନା କରି ରଖିବେ ବର୍ଷ ଆରମ୍ଭରୁ । ସେହି ଯୋଜନା ଅନୁଯାୟୀ ସେ ସପ୍ତାହକ ପରେ ସପ୍ତାହ କାମ କରିଯିବେ । ପୁଣି ସେ ପ୍ରତ୍ୟହ କ୍ଲାସ୍‌ର ସବୁ ପିରିଅଡ଼ପାଇଁ ଉତ୍ତମଭାବରେ ପ୍ରସ୍ତୁତ ହୋଇ ଆସିବେ । ଅନ୍ତତଃ କିପରି ପ୍ରଶ୍ନସବୁ ପଚାରି ପୂର୍ବଜ୍ଞାନ ପରୀକ୍ଷା କରିବେ, କିପରି ନୂତନ ଜ୍ଞାନ୍‌କୁ ଆସିବେ, ନୂତନ ବିଷୟଟି କେଉଁ କେଉଁ ବିଭାଗ ଅନୁସାରେ ପଢ଼େଇବେ, ପୁଣି ଶେଷରେ ପିଲାଙ୍କୁ ଘରପାଇଁ କି ଟାସ୍କ ଦେବେ, ତାହା ସେ ଆଗରୁ ଟିପି ଆଣିଥିବେ । ଏସବୁପାଇଁ ତାତ୍କାଳିକତା ଉପରେ କୌଣସିମତେ ନିର୍ଭର କରିବେନାହିଁ ।

ଏସବୁ କାମ ଅତି କଠିନ ବୋଧ ହୋଇପାରେ, କିନ୍ତୁ ଲେଖକର ନିଜର ଏବଂ ଆଶା କରେ ଯେକୌଣସି କର୍ମଠ ଶିକ୍ଷକର ଅଭିଜ୍ଞତା ଏହି ଯେ, ବର୍ଷେ ଦୁଇବର୍ଷ ଏହିପରି ଶୃଙ୍ଖଳାର ସହିତ ଅଧ୍ୟାପନା କରିନେଲେ ତେଣିକି ଶ୍ରମର ପରିମାଣ ବହୁଭାବରେ କମିଆସିବ ।

ବିଷୟ-ଶିକ୍ଷକଙ୍କ ଅପେକ୍ଷା ଶ୍ରେଣୀ-ଶିକ୍ଷକଙ୍କ ଦାୟିତ୍ୱ ଆହୁରି ବେଶି । ସୁପରିଣ୍ଟେଣ୍ଡେଣ୍ଟ ଓ ହଷ୍ଟେଲ୍‌ର ପିଲାଙ୍କ ସମ୍ପର୍କ ଯାହା, ଶ୍ରେଣୀ-ଶିକ୍ଷକ ଓ ଶ୍ରେଣୀର ପିଲାଙ୍କର ସମ୍ପର୍କ ଅନେକ ପରିମାଣରେ ସେୟା ବୋଲି ଧରିନେବାକୁ ହେବ । ସେ ସେହି ପିଲାଙ୍କର କେବଳ ପଢ଼ାପଢ଼ି ନୁହେଁ, ସେମାନଙ୍କର ଘରେ ଓ ବାହାରେ ବ୍ୟବହାର ଓ ସାଧାରଣ ନୈତିକତା ପାଇଁ ମଧ୍ୟ ଦାୟୀ

ରହିବେ । ତାଙ୍କ ପିଲେ ଖେଳୁଛନ୍ତି କି ନାହିଁ, କାୟିକ ଶ୍ରମ କରୁଛନ୍ତି କି ନାହିଁ, ଲାଇବ୍ରେରି ଭଲ ଭାବରେ ବ୍ୟବହାର କରୁଛନ୍ତି କି ନାହିଁ, ଏସବୁ ବୁଝିବାର ଦାୟିତ୍ୱ ତାଙ୍କର ।

ଏଣେ ସହକାରୀ ଶିକ୍ଷକ ଓ ପ୍ରଧାନଶିକ୍ଷକଙ୍କ ସମ୍ବନ୍ଧ ଅନେକଟା ସେନାପତି ଓ ସୈନିକ ଏବଂ ବଡ଼ଭାଇ ଓ ଛୋଟଭାଇର ସମ୍ପର୍କର ମିଶାମିଶି । ଅର୍ଥାତ୍ କର୍ତ୍ତବ୍ୟକ୍ଷେତ୍ରରେ ସେନାପତି ଓ ସୈନିକର ଭାବ, ଆଦେଶ ଅନୁସାରେ କାମ ନିଶ୍ଚୟ ହେବ, କୈଫିୟତ୍‌ର ସ୍ଥାନ ନାହିଁ । ଅନ୍ୟତ୍ର ଛୋଟଭାଇ ବଡ଼ଭାଇ ସମ୍ପର୍କ– ଏକ ପରିବାର ଯେପରି ।

ପ୍ରଧାନଶିକ୍ଷକ ଆଦେଶ ଦେବା ପୂର୍ବରୁ ବହୁତ ଭାବିବେ କିନ୍ତୁ ଥରେ ଆଦେଶ ଦେଲା ପରେ ଦେଖିବେ, ତାର ଯେପରି ପ୍ରତ୍ୟାହାର ବା କୋହଳ କରିବାର ଦୁର୍ବଳତା ଦେଖାନଯାଏ । ହେଡ଼ମାଷ୍ଟର ମନେକରିବେ ଯେ ସ୍କୁଲ୍‌ଟି ତାଙ୍କର ଗୋଟିଏ ଛୋଟ ଷ୍ଟେଟ୍ ବା ରାଷ୍ଟ୍ର । ସେ ଏକାଧାରରେ ରାଷ୍ଟ୍ରପତି, ସେନାପତି, ବିଚାରପତି, ପ୍ରଧାନମନ୍ତ୍ରୀ ଓ ପିତା । ଏହିପରି ମହାନ୍ ଭାବ ପୋଷଣ ନକଲେ ବିଦ୍ୟାନୁଷ୍ଠାନରେ ଡିସିପ୍ଲିନ୍ ବା ଦକ୍ଷତା କୌଣସିଟା ରହିବନାହିଁ ।

ସ୍କୁଲ୍‌ର ସୁନାମ ବହୁଳଭାବରେ ହେଡ଼ମାଷ୍ଟରଙ୍କ ଜ୍ଞାନ, ଦକ୍ଷତା, ଅଭିଜ୍ଞତା, ବ୍ୟବହାର ଓ ଚାରିତ୍ରିକ ମହତ୍ତ୍ୱ ଉପରେ ନିର୍ଭର କରେ । ହେଡ଼ମାଷ୍ଟର୍ ଏସବୁ ବିଷୟରେ ତାଙ୍କର ଆସିଷ୍ଟାଣ୍ଟମାନଙ୍କଠାରୁ ଏତେ ଉଚ୍ଚରେ ରହିବା ଉଚିତ, ଯେପରି କି ଏସବୁ ବିଷୟରେ ପ୍ରଶ୍ନହିଁ ଉଠିନପାରେ । ଗୋଟିଏ ଅପଦାର୍ଥ ହେଡ଼ମାଷ୍ଟର ସ୍କୁଲ୍ ଉପରେ ଲଦିବା ଅର୍ଥ ସ୍କୁଲ୍‌ର କବର ରଚନା କରିବା ।

ହେଡ଼ମାଷ୍ଟର ସ୍କୁଲ୍‌ର କ୍ଷୁଦ୍ରତମ ବିଷୟ ମଧ୍ୟ ଉତ୍ତମଭାବରେ ଅବଗତ ରହିବେ । ସ୍କୁଲ୍‌ର ସବୁପିଲାଙ୍କୁ ବ୍ୟକ୍ତିଗତଭାବରେ ଜାଣିରଖିବା ତାଙ୍କର ଉଚିତ—ଅନ୍ତତଃ ଉପର ଶ୍ରେଣୀମାନଙ୍କର । କଥାବାର୍ତ୍ତା, ଚାଲିଚଳନ ଓ ଚରିତ୍ରରେ ସେ ପିଲାଙ୍କ ନିକଟରେ ଏକ ଜୀବନ୍ତ ଆଦର୍ଶ ହେବା ଉଚିତ । ଅନ୍ତତଃ ତାଙ୍କ କଥା ଓ କର୍ମରେ ପିଲେ ଯେପରି କୌଣସି ଫାଁକି ନଧରନ୍ତି । ଅର୍ଥାତ୍ ଧୂମପାନ ନକରିବାପାଇଁ ପିଲାଙ୍କୁ ଏଣେ ଉପଦେଶ ଦେଇ, ତେଣେ ନିଜେ ଗୁଣ୍ଡି ଖାଇବା, ଗୁଡ଼ାଖୁ ଘଷିବା, ପିକାଖାଇବାର ଭଣ୍ଡତା ଯେପରି ସେ ନଦେଖାନ୍ତି । ତାହାହେଲେ ଅଜ୍ଞାତସାରରେ ପିଲାଙ୍କ ନୈତିକ ଉନ୍ନତି ମୂଳରେ ହେଡ଼ମାଷ୍ଟର୍‌ହିଁ ହେବେ ତୀକ୍ଷ୍ଣ କୁଠାର ।

ହେଡ଼ମାଷ୍ଟର ସ୍କୁଲ୍ ଖୋଲିବାର ଅନ୍ତତଃ ପନ୍ଦର ମିନିଟ୍ ଆଗରୁ ଆସି ପହଞ୍ଚିବେ ଏବଂ ଦେଖିବେ ଯେ ମାଷ୍ଟ୍ରେ ଓ ପିଲେ ସ୍କୁଲ୍ ସମୟକୁ ଠିକ୍ ମାନୁଛନ୍ତି କି ନାହିଁ । ସେ ସବୁବେଳେ ସମୟାନୁବର୍ତ୍ତୀ ହେବେ ଓ ପିଲା ଓ ମାଷ୍ଟରଙ୍କଠାରୁ ତାହା କଠୋରଭାବରେ ଆଦାୟ କରିବେ । ମାଷ୍ଟ୍ରମାନଙ୍କ ପ୍ରତି କୌଣସିପ୍ରକାର ତିକ୍ତଭାବ ପୋଷଣ ନକରି ସେମାନଙ୍କର ଦୋଷ ଓ ଭ୍ରମ ସେ ଦେଖେଇଦେବାରେ ପଶ୍ଚାତ୍‌ପଦ ହେବେନାହିଁ । ସେ ବରାବର ସେମାନଙ୍କର କାମର ତଦାରଖ କରୁଥିବେ, ସେମାନେ ପିଲାଙ୍କ ଖାତାସବୁ ଠିକ୍‌ଭାବରେ ସଂଶୋଧନ କରୁଛନ୍ତି କି ନାହିଁ, ହୋମ୍‌ଟାସ୍କ ଯେତେ ପରିମାଣରେ ହେବାର କଥା ତା ହେଉଛି କି ନାହିଁ, ସେମାନେ କ୍ଲାସ୍‌କୁ ପ୍ରସ୍ତୁତ ହୋଇ ଆସୁଛନ୍ତି କି ନାହିଁ ଇତ୍ୟାଦି । ଶିକ୍ଷା ସମ୍ପର୍କିତ ଆଲୋଚନା, ଆଦର୍ଶ ଶିକ୍ଷାଦାନ, ଷ୍ଟାଫ୍ ମିଟିଂ ଇତ୍ୟାଦି ନିୟମିତଭାବରେ କରାଇ ସେ ସ୍କୁଲ୍‌ରେ ଶିକ୍ଷା, ସଂସ୍କୃତି ଓ

କର୍ତ୍ତବ୍ୟବୋଧର ଏକ ସ୍ୱାସ୍ଥ୍ୟକର ବାତାବରଣ ବରାବର ଗଢ଼ି ରଖିବାକୁ ଚେଷ୍ଟା କରିବେ ।

ପ୍ରଧାନଶିକ୍ଷକ ପ୍ରତ୍ୟେକ ବିଷୟପାଇଁ ଗୋଟିଏ ଗୋଟିଏ ବୋର୍ଡ଼ ଗଢ଼ିନେବେ, ଯଥା ଇଂରେଜୀ, ଓଡ଼ିଆ, ଅଙ୍କ ଓ ଭୂଗୋଳ । ପ୍ରତି ବୋର୍ଡ଼ର ସଭ୍ୟ ହେବେ ସେହି ବିଷୟର ଶିକ୍ଷକମାନେ । ହେଡ଼୍‌ମାଷ୍ଟର୍ ପ୍ରତି ବୋର୍ଡ଼ର ସଭାପତି ହେବେ । ଏଇ ବୋର୍ଡ଼ଗୁଡ଼ିକର ଦାୟିତ୍ୱ ରହିବ ସ୍କୁଲ୍‌ର ତଳ ଶ୍ରେଣୀରୁ ଉପର ଶ୍ରେଣୀଯାଏଁ ଭିନ୍ନ ଭିନ୍ନ ବିଷୟଗୁଡ଼ିକ ସୋପାନ ପରମ୍ପରାରେ, ମନସ୍ତାତ୍ତ୍ୱିକ ରୀତିରେ ଓ ଯଥାଗତିରେ ପଢ଼ା ହେଉଛି କି ନାହିଁ, ତାହା ଦେଖିବା । ଏହା ଫଳରେ କେଉଁ ଶ୍ରେଣୀରେ କେଉଁ ବିଷୟ କିପରି ଓ କାହିଁକି କଚ୍ଚା ରହିଯାଉଛି ତାହା ଜଣାପଡ଼ିଯିବ ଓ ସେ ଦୋଷ ଦୂର କରିବାପାଇଁ ସମଗ୍ର ବୋର୍ଡ଼ ଚେଷ୍ଟା କରିବ । ଏହା ଫଳରେ ପ୍ରତ୍ୟେକ ବିଷୟ ଉପରେ ହେଡ଼୍‌ମାଷ୍ଟର୍‌ଙ୍କର ସ୍ପଷ୍ଟ ଧାରଣା ରହିବ । ପିଲାଙ୍କ ଜ୍ଞାନର କ୍ରମିକ ଅଗ୍ରଗତିପାଇଁ ପ୍ରତିସ୍କୁଲ୍‌ରେ ଏପରି ବୋର୍ଡ଼ସବୁ ଗଢ଼ାହେବା ଉଚିତ ।

ପ୍ରଧାନଶିକ୍ଷକ ବା ସହକାରୀ ଶିକ୍ଷକ ମୋଟଉପରେ ଅସାଧାରଣ ବ୍ୟକ୍ତି ହେବାର କିଛି ଆବଶ୍ୟକତା ନାହିଁ । ଦରକାର କେବଳ କର୍ତ୍ତବ୍ୟନିଷ୍ଠା, ଦରକାର ନିଜ ଦାୟିତ୍ୱ ପ୍ରତି ଚେତନା ଏବଂ ସେଥିପ୍ରତି ଯାହା ମାନସିକ ଓ ଶାରୀରିକ ପରିଶ୍ରମ ଦରକାର ହେବ, ସେଥିପ୍ରତି ପରାଙ୍‌ମୁଖ ନହେବା । ତାଙ୍କ କାମ ଶୃଙ୍ଖଳାନ୍ୱିତ ହେବ, ଠକି ଦେବାର, ଫାଙ୍କି ଦେବାର ମନୋବୃତ୍ତି ତାଙ୍କର ରହିବନାହିଁ । ସେ କୌଣସି ପାଠକୁ ହେୟ ଚକ୍ଷୁରେ ଦେଖିବେନାହିଁ । ଅର୍ଥାତ୍ ‘‘ଏଇ ପଞ୍ଚମ ଶ୍ରେଣୀର ଅଙ୍କ ବା ଷଷ୍ଠ ଶ୍ରେଣୀର ଭୂଗୋଳ ତ, ଏଥିପାଇଁ ଆଉ ପ୍ରସ୍ତୁତ ହେବି କ’ଣ ? କ୍ଲାସ୍‌ରେ ସେଇମିତି ଚଳେଇ ନେବିନି !’’—ଏ ଭାବ ଯେପରି ଆଦୌ ନରହେ ତାଙ୍କର । ନିମ୍ନତମ ଶ୍ରେଣୀର ସାଧାରଣ ବିଷୟଟିପାଇଁ ମଧ୍ୟ ସେ ଅଧ୍ୟବସାୟ କରିବେ, ଯେପରିକି ତାହାକୁ ପିଲାଙ୍କର ମନୋରଞ୍ଜନ କରି ସେ ବିଷୟରେ ନୂତନ ଜ୍ଞାନ ସେ ପିଲାଙ୍କୁ ଦେଇପାରିବେ । ପୁଣି ସେ ଯତ୍ପରୋନାସ୍ତି ଚେଷ୍ଟା କରିବେ ଯେପରିକି ତାଙ୍କ ଯୋଗୁଁ ପିଲେ ଭୁଲ୍ କଥା ନଶିଖନ୍ତି । ଯେତିକି ତାଙ୍କଠାରୁ ଆଶା କରାଯାଏ ଜାଣିବାର, ସେଇ କ୍ଷୁଦ୍ର ପରିସର ଭିତରେ ତାଙ୍କର ଜ୍ଞାନ ଯେପରି ସବୁ ଦିଗରୁ ନିର୍ଭୁଲ୍ ରହେ, ତାହାପାଇଁ ସେ ଯଥାଶକ୍ତି ଚେଷ୍ଟା କରିବେ । ଯେଉଁ ଶିକ୍ଷକ ଭୁଲଭାଲ ପଢ଼ାଇ, ଠକାଠକି କରି ଓ ଫାଙ୍କିଦେଇ ନିଶ୍ଚିନ୍ତ, ସେ ବେତନ ନପାଇ ବେତ ପାଇବାର କଥା ।

ଶିକ୍ଷକ ତାଙ୍କ ଚାଲିଚଳଣ ଓ ବେଶବାସରେ ସୈନିକପରି ସ୍ଫୂର୍ତ୍ତିଯୁକ୍ତ ଓ ପରିପାଟି ରହିବେ । ଯେଉଁ ଶିକ୍ଷକ ନିଜେ ଆଳସ୍ୟଗ୍ରସ୍ତ, ଅନବରତ ଗୁଡ଼ାଏ ପାନ ଚୋବାଉଥାନ୍ତି, ଚାଲିବାରେ ସ୍ଫୂର୍ତ୍ତି ନାହିଁ, କାମରେ ଉତ୍ସାହ ନାହିଁ, ଯାହାଙ୍କର ବେଶରେ ପରିପାଟି ନାହିଁ, ସେ କଣ ପିଲାଙ୍କୁ ଉତ୍ତମ ନାଗରିକ କରି ଗଢ଼ିବ ? ଶିକ୍ଷକ ସେଥିପାଇଁ ପରିପାଟି ବେଶରେ ପ୍ରତ୍ୟହ ସ୍କୁଲ୍‌କୁ ଆସିବେ, ସେ ଶିଷ୍ଟାଚାର ରକ୍ଷା କରି ଉଠିବେ, ବସିବେ, ଆଦେଶ ଦେବେ ଓ କାମ ଆଦାୟ କରିବେ ।

ତରୁଣ-ଚିତ୍ତ ବୀରତ୍ୱର ଉପାସନାପାଇଁ ଅତିମାତ୍ରାରେ ପ୍ରବଣ । ସହକାରୀଶିକ୍ଷକ ଓ ପ୍ରଧାନଶିକ୍ଷକ ତରୁଣମାନଙ୍କ ଆଖିରେ ବୀରରୂପେ, ସୈନିକରୂପେ ପ୍ରତୀୟମାନ ରହିବାକୁ ସଚେଷ୍ଟ ହେବେ ।

---

# ନୀତି ଓ ଧର୍ମଶିକ୍ଷା

ଭାରତବର୍ଷର ଲୋକେ ଧାର୍ମିକ, ଆଧ୍ୟାତ୍ମିକ ଓ ଈଶ୍ୱରଗତପ୍ରାଣ ବୋଲି ବିଶ୍ୱରେ ବିଖ୍ୟାତ । ଏଇ ଦେଶରୁ ଧର୍ମାଲୋକ ଓ ଜ୍ଞାନାଲୋକ ଯାଇ ଅର୍ଦ୍ଧ ଧରଣୀର ଅନ୍ଧକାର ଦୂରୀଭୂତ କରିଛି । ଜଗତର କୋଟି କୋଟି ଲୋକଙ୍କ ଚକ୍ଷୁରେ ଭାରତର ମାଟି ପବିତ୍ର, କାରଣ ଏହା ବୁଦ୍ଧ,ରାମକୃଷ୍ଣ, ଗାନ୍ଧି ଓ ଅରବିନ୍ଦଙ୍କର ଜନ୍ମଭୂମି ।

କିନ୍ତୁ ଅତ୍ୟନ୍ତ ପରିତାପର କଥା ଏହି ଯେ, ଏଇପରି ଆଧ୍ୟାତ୍ମିକ ଐତିହ୍ୟରେ ଗୌରବମୟ ଓ ଇତିହାସ-ପ୍ରସିଦ୍ଧ ଦେଶ ଆଜି ଧର୍ମ-ନିରପେକ୍ଷ ରାଷ୍ଟ୍ର ଏବଂ ତାର ସ୍କୁଲ୍ କଲେଜମାନଙ୍କରେ ଜାତିର ନୂତନ ବଂଶଧରମାନଙ୍କୁ ଧର୍ମ ଜୀବନର ଆସ୍ୱାଦ ବା ନିର୍ଦ୍ଦେଶ ଦେବାପାଇଁ କୌଣସି ବ୍ୟବସ୍ଥା ନାହିଁ । ଅବଶ୍ୟ ଧର୍ମଜନିତ ସାମ୍ପ୍ରଦାୟିକ କବଳରୁ ଦେଶକୁ ଶାନ୍ତି ଦେବାପାଇଁ ଆମର ଚିନ୍ତାନାୟକମାନେ ଏ ବ୍ୟବସ୍ଥା କରିଛନ୍ତି । କିନ୍ତୁ କେତେକ ଅନ୍ୟମତରେ ସହିଷ୍ଣୁ ଧର୍ମାନ୍ଧମାନଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ଏପରି ବ୍ୟବସ୍ଥାଦ୍ୱାରା ଭାରତର ବିରାଟ ମହାନ୍ ଐତିହ୍ୟ ଉପରେ ଓ ଜାତିର ଚରିତ୍ର ଉପରେ ଯେ ନିର୍ମମ କୁଠାରାଘାତ ହୋଇଛି, ଏଥିରେ ସନ୍ଦେହ ନାହିଁ ।

ସେ ଯାହାହେଉ, ଧର୍ମଶିକ୍ଷାପାଇଁ ସ୍କୁଲ୍ କଲେଜରେ ରାଷ୍ଟ୍ରୀୟ ବ୍ୟବସ୍ଥା ନଥିଲେ ମଧ, ଶିକ୍ଷକମାନଙ୍କର ଏ ବିଷୟରେ ଯେ ଗୁରୁ ଦାୟିତ୍ୱ ଅଛି, ଏଥିରେ ଦ୍ୱିମତ ଥାଇନପାରେ । ଧର୍ମ ମନୁଷ୍ୟର ଦୃଷ୍ଟିକୁ ନିମ୍ନରୁ ଊର୍ଦ୍ଧ୍ୱକୁ ଉଠାଏ ଏବଂ ମନୁଷ୍ୟର ଚରିତ୍ରରେ ଆଣେ ବିନୟତା ସାଧୁତା ଓ ସେବାଭାବ । ଏହା ମନୁଷ୍ୟକୁ ଅପକର୍ମ, କ୍ରୂରତା ଓ ମିଥ୍ୟାଚାରରୁ ରକ୍ଷା କରିବାର ପ୍ରଧାନ ସହାୟ । ଏକ କଥାରେ ଧର୍ମ ମନୁଷ୍ୟକୁ ଜନ୍ତୁତ୍ୱରୁ ମନୁଷ୍ୟତ୍ୱ ପ୍ରଦାନ କରେ ।

କମ୍ୟୁନିଜମ୍ ଓ ସୋଭିଏଟ୍ ରୁଷିଆ ଏବଂ ତାର ପ୍ରଭାବିତ ଦେଶ ସମୂହରୁ ଧର୍ମକୁ ବିତାଡ଼ିତ କରାଯାଇଛି । ସେଠି ଲୋକଙ୍କୁ ନିରୀଶ୍ୱର ଓ ସମ୍ପୂର୍ଣ୍ଣ ପାର୍ଥିବ, ବାସ୍ତବ ଓ ପାଦାର୍ଥିକ ଜୀବନଯାପନ କରିବାପାଇଁ ଉପଦେଶ ଦିଆଯାଇଥାଏ । କୁହାଯାଇଥାଏ ଯେ ଧର୍ମ ସାଧାରଣ ନାଗରିକଙ୍କର ମାନସିକ-ଅହିଫେନ; ରାଜା ଓ ପୁରୋହିତମାନେ ଯାକୁ ସୃଷ୍ଟି କରିଛନ୍ତି, ସେମାନଙ୍କ ଶୋଷଣକୁ ଯେପରି ସାଧାରଣଲୋକେ ବିଧାତାର ବ୍ୟବସ୍ଥା ବୋଲି ଧରିନେବେ । ଏଥିରେ ଯେ ଅନେକ ସତ୍ୟ ଅଛି, ଏହା ବିବାଦର ବାହାରେ । କିନ୍ତୁ ପୌରୋହିତ୍ୟ ବା ଶାସ୍ତ୍ର ଧର୍ମ ନୁହେଁ । ଧର୍ମ ହେଉଛି ଆଧ୍ୟାତ୍ମିକ ଭାବ; ଦୃଶ୍ୟମାନ ଜଗତ ପଛରେ ଯେଉଁ ଅଦୃଶ୍ୟ, ମହାନ୍ ଶକ୍ତି କାର୍ଯ୍ୟ କରୁଛି, ତାହାର ଅନୁସନ୍ଧାନ । ସେଥିରେ ଶାସକ ଓ ପୁରୋହିତର କୌଣସି ସମ୍ପର୍କ ନାହିଁ – ତାହା ଏକାନ୍ତ ବ୍ୟକ୍ତିଗତ । ସେଥିରେ ସାମ୍ପ୍ରଦାୟିକ ଦଙ୍ଗାର ସ୍ଥାନ ନାହିଁ । ତରୁଣମାନଙ୍କୁ ସେହି ଆଧ୍ୟାତ୍ମିକ ସନ୍ଧାନ, ସେହି ଉଚ୍ଚତର ଜୀବନ ସଙ୍ଗେ ପରିଚିତ କରେଇନେବା ପ୍ରତ୍ୟେକ ଶିକ୍ଷକର ଦାୟିତ୍ୱ ।

ଜୀବନର ସୁପରିଚାଳନାପାଇଁ ପ୍ରତ୍ୟେକ ବ୍ୟକ୍ତିର କେତେକ ବଦ୍ଧମୂଳ ବିଶ୍ୱାସ ଦରକାର । ଏଇ ବିଶ୍ୱାସସବୁ ତରୁଣ ବୟସରୁ ଯୁକ୍ତିଯୁକ୍ତଭାବରେ ରୋପିତ ହୋଇନଥିଲେ, ସେ ଜାଗାରେ ଅନ୍ଧବିଶ୍ୱାସ, କୁସଂସ୍କାର ଆଦି ରାଜତ୍ୱ କରିବେ । ଏଇ ଅଭାବ ଯୋଗୁଁ ଗାଁଲୋକେ ଗ୍ରାମରେ ବସନ୍ତ ହେଲେ ଚିକିତ୍ସକକୁ ନଡକାଇ, ଡାକନ୍ତି ଗୁଣିଆକୁ ଏବଂ ଉଚ୍ଚବର୍ଣ୍ଣ ହିନ୍ଦୁ ନିମ୍ନବର୍ଣ୍ଣର ହିନ୍ଦୁକୁ ଘୃଣା କରେ । ବିଦ୍ୟାଳୟମାନଙ୍କର କର୍ତ୍ତବ୍ୟ ହେଉଛି ପିଲାଙ୍କୁ ମୂଳରୁ ଉଦାର, ସାର୍ବଜନୀନ ରୀତିରେ ଈଶ୍ୱର, ତାଙ୍କର ସୃଷ୍ଟିକୌଶଳ, ପ୍ରଧାନ ପ୍ରଧାନ ଧର୍ମପ୍ରଚାରକମାନଙ୍କର ଜୀବନର ମହତ୍ତ୍ୱ ଓ ସେମାନଙ୍କର ବାଣୀ ଦେଇ, ଧର୍ମ ସମ୍ବନ୍ଧରେ ଏକ ମାନବିକ, ସାର୍ବଭୌମ, ଉଦାରଭାବ ରୋପିତ କରିବା, ଯେପରିକି ଧର୍ମ ସମ୍ବନ୍ଧରେ ସେମାନଙ୍କର କୌଣସି କ୍ଷୁଦ୍ରତା, ସଂକୀର୍ଣ୍ଣତା, ଏକଦେଶଦର୍ଶିତା ବା କୁସଂସ୍କାର ନରହେ । ଶିକ୍ଷକ ଯାହା ଶିଖେଇବେ ତାହା ଯେପରି ବିଜ୍ଞାନସମ୍ମତ, ଯୁକ୍ତିଯୁକ୍ତ ହୁଏ । ସେ ଜିଜ୍ଞାସୁ ତରୁଣମନର ସକଳ ସନ୍ଦେହ, ସକଳ ପ୍ରଶ୍ନର ସମାଧାନପାଇଁ ପ୍ରସ୍ତୁତ ରହିବେ । ଏପରିଭାବରେ ଧର୍ମର ଚର୍ଚ୍ଚା ହେଲେ ତାହା ଯେ ତରୁଣମାନଙ୍କର ଚରିତ୍ରରେ ସୁଫଳ ପ୍ରସବ କରିବ, ଏଥିରେ ସନ୍ଦେହନାହିଁ । ସମସ୍ତ ପ୍ରଧାନ ଧର୍ମରୁ ଶ୍ରେଷ୍ଠ ସାର ସଂଗ୍ରହ କରି ଈଶ୍ୱର ଓ ଆଧ୍ୟାତ୍ମିକ ଜୀବନ ସମ୍ପର୍କରେ ତରୁଣମାନଙ୍କୁ ଠିକ୍ ରାସ୍ତାରେ କାହିଁକି ପରିଚାଳିତ କରାଯାଇପାରିବନାହିଁ, ତାହାର କୌଣସି କାରଣ ଦେଖାଯାଉ ନାହିଁ ।

ଧର୍ମଶିକ୍ଷାପାଇଁ ଯେ କେବଳ ଗୈରିକ ବସନଧାରୀ ସନ୍ନ୍ୟାସୀ ଦରକାର, ଏହାର କୌଣସି ଅର୍ଥ ନାହିଁ । ଗୋଟିଏ ବିଦ୍ୟାଳୟରେ କୌଣସି ନା କୌଣସି ଶିକ୍ଷକ ଥିବେ ଯେ କି ଏ ବିଷୟରେ ଜିଜ୍ଞାସୁ ଥିବେ, ସେଇ ସେ ଭାର ନେଇପାରନ୍ତି । କିନ୍ତୁ ଏ ଭାର ପ୍ରଧାନଶିକ୍ଷକହିଁ ନେବା ଉଚିତ । ତାହାହେଲେ ଏଇ ଚର୍ଚ୍ଚାର ଗୁରୁତ୍ୱ ପିଲାମାନେ ବୋଧକରିବେ । କିନ୍ତୁ ଯିଏ ଭାର ନିଅନ୍ତୁ ନା କାହିଁକି, ତାଙ୍କର ସଂକୀର୍ଣ୍ଣ ସାମ୍ପ୍ରଦାୟିକତା ଯେପରି ନଥାଏ, ସେ ମନେକରୁନଥିବେ ଯେପରି ତାଙ୍କରି ଧର୍ମ ଶ୍ରେଷ୍ଠ, ଅନ୍ୟ ଧର୍ମର ଲୋକେ ନରକର ଉପଯୁକ୍ତ ଏବଂ ସକଳ ଧର୍ମର ସାରତତ୍ତ୍ୱ ଜାଣିବାପାଇଁ ତାଙ୍କର ଯେପରି ଉତ୍ସାହ ଥାଏ ।

ପ୍ରଧାନଶିକ୍ଷକ ଦେଖିବେ ଯେପରି ଧର୍ମଶିକ୍ଷା ନାମରେ ନହୁଏ କେବଳ କେତେକ ଦେବଦେବୀଙ୍କ ସ୍ତୁତି, ଗୋଟିଏ କୌଣସି ଶାସ୍ତ୍ରର ଏକପୃଷ୍ଠା ବା କେତୋଟି ଶ୍ଲୋକକୁ ବୁଝେଇଦେବା ବା କୌଣସି ଏକ ଧର୍ମର ଯାହାକିଛି ଅଛି ତାକୁ ଉଚ୍ଚକଣ୍ଠରେ ସମର୍ଥନ କରିବା । ଏସବୁଦ୍ୱାରା ଆଧ୍ୟାତ୍ମିକ ବା ଚାରିତ୍ରିକ ବା ମାନସିକ କୌଣସି ବିକାଶ ହୁଏନାହିଁ । ଯେଉଁ ଆଲୋଚନା ଫଳରେ ତରୁଣମାନଙ୍କର ମାନସିକ ଓ ଆତ୍ମିକ ବିକାଶ ଘଟେନାହିଁ, ବିଦ୍ୟାଳୟରେ ତାହାର ସ୍ଥାନ ନାହିଁ । ବିଦ୍ୟାଳୟମାନଙ୍କରେ ଧର୍ମଶିକ୍ଷାର ଏକମାତ୍ର ଉଦ୍ଦେଶ୍ୟ ହେବା ଉଚିତ ପିଲାଙ୍କ ଚରିତ୍ର ଗଠନ ଓ ମାନସିକ ବିକାଶ । ଏସବୁ ଯଦି ନହୁଏ, ତେବେ ଧର୍ମଶିକ୍ଷା ନାମରେ ପ୍ରହସନ କରି କିଛି ଲାଭନାହିଁ । ପ୍ରଧାନଶିକ୍ଷକ ଦେଖିବେ ଯେପରି ଧର୍ମଶିକ୍ଷା ଫଳରେ ବିଦ୍ୟାଳୟରେ ନୈତିକ ବାତାବରଣ ଅକ୍ଷୁଣ୍ଣ ରହୁଛି । ସତ୍ୟ କହିବା, ଅକର୍ମ ନକରିବା, ଲୁଚେଇ କାମ ନ କରିବା, ପରର ଅନିଷ୍ଟ ନକରିବା, ପରକୁ କଷ୍ଟ ନଦେବା ପ୍ରଭୃତି ସୁଅଭ୍ୟାସ ଚରିତ୍ରରେ

ପ୍ରବିଷ୍ଟ କରେଇବାରେ ଧର୍ମଶିକ୍ଷା ସାହାଯ୍ୟ କରିବାର କଥା । ତାହା ଯଦି ନହୁଏ ତେବେ ଧର୍ମଶିକ୍ଷା ବିଦ୍ୟାଳୟରେ ଠିକ୍ ମାର୍ଗରେ ଚାଲୁନାହିଁ ମନେକରିବାକୁ ହେବ ।

ଆଧ୍ୟାତ୍ମିକତା ଦୂରେଥାଉ, ପ୍ରଧାନଶିକ୍ଷକଙ୍କର ପ୍ରଧାନ ଲକ୍ଷ୍ୟ ହେବା ଉଚିତ, ପିଲାଙ୍କ ଜୀବନରେ ନୈତିକତାର ପ୍ରଭାବ । ପିଲାଟିଏ ପ୍ରାର୍ଥନା କରୁଛି କି ନାହିଁ, ଦେଉଳକୁ ଯାଉଛି କି ନାହିଁ, ଗୀତା ପଢୁଛି କି ନାହିଁ, ସେ ସବୁ ବଡ଼ କଥା ନୁହେଁ । ବଡ଼ କଥା ହେଉଛି, ପିଲାଟି ସତ୍ୟ କହିବାରେ ଅଭ୍ୟସ୍ତ କି ନାହିଁ ଏବଂ ଯାହା କଥା ଦେଇଥିବ ତାହା କାର୍ଯ୍ୟରେ କରେ ନା ଫାଁକି ଦେବାକୁ ଚେଷ୍ଟାକରେ । ଯାହାର ଜୀବନରେ ଏହି ମୌଳିକ ନୈତିକତାର ମୂଳପତ୍ତନ ପଡ଼ିନାହିଁ, ଗୀତାପାଠ, ବାଇବଲ୍ ପାଠ, କୋରାନ୍ ପାଠ ବା ଦୈନନ୍ଦିନ ଦେବାଳୟ ଗମନ ସେଠି ସମ୍ପୂର୍ଣ୍ଣ ନିରର୍ଥକ । ପ୍ରଧାନଶିକ୍ଷକ ପିଲାଙ୍କ ଜୀବନରେ ଓ ସମଗ୍ର ବିଦ୍ୟାଳୟର ବାତାବରଣରେ ଧର୍ମ ଓ ନୈତିକତାର ଏହି ଯେ ପାର୍ଥକ୍ୟ ତାହା ପ୍ରତି ଜାଗ୍ରତ ଦୃଷ୍ଟି ଦେଇଥିବେ । ନଚେତ୍ ଧର୍ମଶିକ୍ଷା କେବଳ ଧର୍ମାନ୍ଧତା ଓ କୁସଂସ୍କାରରେ ପର୍ଯ୍ୟବସିତ ହେବ ।

ଗତ ଶତାବ୍ଦୀରେ ଇଂଲଣ୍ଡରେ ଡକ୍ଟର ଟୋମାସ୍ ଆର୍ଣ୍ଣଲ୍ଡ (ଇଂରେଜ କବି ମାଥ୍ୟୁ ଆର୍ଣ୍ଣଲ୍ଡଙ୍କ ପିତା) ରଗ୍‌ବି ହାଇସ୍କୁଲ୍‌ର ହେଡ଼ମାଷ୍ଟରଭାବରେ ଅଧ୍ୟାପନା ଓ ସ୍କୁଲ୍ ପରିଚାଳନାରେ ଯୁଗାନ୍ତର ଆନୟନ କରିଥିଲେ । ଡକ୍ଟର ଆର୍ଣ୍ଣଲ୍ଡଙ୍କର ସ୍କୁଲ୍ ପରିଚାଳନାରେ କେନ୍ଦ୍ରସ୍ୱରୂପ ଥିଲା ସ୍କୁଲ୍-ସମ୍ପୃକ୍ତ ଛୋଟ ଗିର୍ଜା ଘରଟି । ତାଙ୍କ ସ୍କୁଲ୍‌ରେ ଓ ତାଙ୍କ ଛାତ୍ରମାନଙ୍କ ଜୀବନରେ ଗଭୀର ଆଧ୍ୟାତ୍ମିକତା ଓ ନୈତିକତାର ଯେଉଁ ଗଭୀର ଛାପ ଦେଖାଯାଉଥିଲା, ତାହାର ଆରମ୍ଭ ହେଉଥିଲା ସେଇ ଗିର୍ଜାରୁ । ଯାହା ଡକ୍ଟର ଆର୍ଣ୍ଣଲ୍ଡ କରିପାରିଥିଲେ ତାହା ଆମର ଆଧ୍ୟାତ୍ମିକ ବାୟୁମଣ୍ଡଳରେ ନିଶ୍ଚୟ ସମ୍ଭବ — ପ୍ରଧାନଶିକ୍ଷକମାନେ ଚେଷ୍ଟା କଲେଇ ହେଲା । କମ୍ୟୁନିଜମ୍ ଧର୍ମକୁ ବହିଷ୍କାର କରିଛି ନାଗରିକର ଅହିଫେନ ବୋଲି । କିନ୍ତୁ କମ୍ୟୁନିଜମ୍ ଆପେ ଏକ ଧର୍ମ ଓ ଅହିଫେନ ହେବା ଉପରେ । ଆଧ୍ୟାତ୍ମିକତା, ନୈତିକତା ଓ କମ୍ୟୁନିଜମ୍ ଭିତରେ କେଉଁଟି ପ୍ରକୃତରେ ମାନସିକ ଅହିଫେନ ତାହା ପ୍ରତ୍ୟେକ ଶିକ୍ଷକ ଓ ପ୍ରଧାନଶିକ୍ଷକ ନିଜେ ଠିକ୍ କରନ୍ତୁ ଓ ସେହି ଅନୁସାରେ କାର୍ଯ୍ୟ କରନ୍ତୁ ।

କିନ୍ତୁ ଶେଷ ଅନୁରୋଧ ଏହି ଯେ, ଯଦି ଧର୍ମଶିକ୍ଷାର ବ୍ୟବସ୍ଥା ପ୍ରଧାନଶିକ୍ଷକ କରିବେ, ତେବେ ସେ କେବଳ ଉପର କେତୋଟି ଶ୍ରେଣୀରେ କରିବେ, ଯେଉଁଠି ପିଲେ ପ୍ରଶ୍ନ କରିପାରିବେ, ଏବଂ ଯାହା କରିବେ, ସିଲାବସ୍‌ର ଅନ୍ୟ ବିଷୟ ପରି ତାର ମଧ୍ୟ ଏକ ସୁଚିନ୍ତିତ କ୍ରମାନ୍ୱିତ ଯୋଜନା ରହିବା ଉଚିତ । ସ୍କୁଲ୍‌ର ନିଦ୍ରାଳୁ ଶିକ୍ଷକ ବା ଅନ୍ୟଥାବ୍ୟସ୍ତ କୌଣସି ଶିକ୍ଷକ ବିନା ପ୍ରସ୍ତୁତିରେ ଘଣ୍ଟା ପଡ଼ିଲାମାତ୍ରେ କ୍ଲାସ୍‌ରେ ପଶିଯାଇ ଗୋଟାଏ ବହିରୁ ଅସମ୍ପର୍କିତଭାବରେ ପୃଷ୍ଠେ ଦିପୃଷ୍ଠା ପଢ଼ିଦେଇ ବା ଗୋଟିଏ ଗପ କହିଦେଇ ଯେପରି ଧର୍ମଶିକ୍ଷା ହେଲା ବୋଲି ମନେ ନକରନ୍ତି ।

ଆହୁରି ଏକ ମନେରଖିବାର କଥା ଯେ, ଶିକ୍ଷକ ଓ ପ୍ରଧାନଶିକ୍ଷକ ପିଲାଙ୍କ ଆଖିରେ ନିଜେ ଧାର୍ମିକତାର ନହେଉ ପଛେ, ନୈତିକତାର ଦୃଷ୍ଟାନ୍ତ ନିଶ୍ଚୟ ରହିବେ । ପିଲେ ଯଦି ଧରିନେବେ ପ୍ରଧାନଶିକ୍ଷକ ବା ଅମୁକ ଶିକ୍ଷକଙ୍କର ଚାରିତ୍ରିକ ଦୁର୍ବଳତା ଅଛି, ସେ ମିଛ କହନ୍ତି, ସେ ଫାଁକି ମାରନ୍ତି, ଠକନ୍ତି, ତେବେ ତାହା ତରୁଣ ଚିତ୍ତରେ ବିପର୍ଯ୍ୟୟ ଘଟାଇବ । ପ୍ରଧାନଶିକ୍ଷକ ବିଶେଷ ଭାବରେ ଏଥିପ୍ରତି ସାବଧାନ ରହିବେ ।

---

# ଶିକ୍ଷାଶାଳାକୁ ସମାଜର କେନ୍ଦ୍ର କର

ପଲ୍ଲୀ ଅଞ୍ଚଳରେ ଏପର୍ଯ୍ୟନ୍ତ ଲୋକେ ପ୍ରାଇମେରୀ ସ୍କୁଲ୍‌କୁ ନିଜର କରିନାହାନ୍ତି । ଲୋକେ ପଇସା ଦେଇ ପିଲାଙ୍କୁ ଚାଟଶାଳୀକି ପଠେଇବେ କିନ୍ତୁ ବିନା ପଇସାରେ ପଢ଼ିବାକୁ ସ୍ଥାନୀୟ ପ୍ରାଇମେରୀ ସ୍କୁଲ୍‌କୁ ପଠାଇବେ ନାହିଁ । କଟକ ସହରରେ ପ୍ରତିଗଳିରେ ଚାଟଶାଳୀ । ଲୋକେ ହାଇସ୍କୁଲ୍ ଓ କଲେଜକୁ ପିଲା ପଠାଉଛନ୍ତି ସତ, କିନ୍ତୁ ତାହା କେବଳ ଚାକିରି ପାଇବାର ଉପାୟସ୍ୱରୂପ । ସ୍କୁଲ୍, କଲେଜ ସଙ୍ଗେ ଅଭିଭାବକମାନଙ୍କର କୌଣସି ଆତ୍ମିକ ସମ୍ପର୍କ ନାହିଁ । ସେମାନେ ସ୍କୁଲ୍, କଲେଜକୁ ନିଜର ବୋଲି ମନେକରନ୍ତିନାହିଁ । ଏହା ଦେଶପକ୍ଷରେ ଘୋର ଦୁର୍ଭାଗ୍ୟର କଥା । ସ୍କଟ୍‌ଲାଣ୍ଡ୍ ବା ଜର୍ମାନୀର ଲୋକେ ତାଙ୍କ ଦେଶର ସ୍କୁଲ୍ କଲେଜକୁ ନେଇ ଗର୍ବ କରନ୍ତି – ଆମ ଦେଶରେ ସେପରି ଗର୍ବବୋଧ ଆସେନାହିଁ । କାରଣ ସ୍କୁଲ୍ କଲେଜ ଜାତିକୁ ଉଠେଇବାପାଇଁ ବ୍ୟବହୃତ ହେଉନାହିଁ କି ବିଦ୍ୟାଳୟ ସବୁ ଆମର ଜାତୀୟ ସାମାଜିକ ଜୀବନର କେନ୍ଦ୍ର ରୂପେ ବ୍ୟବହୃତ ହେଉନାହାନ୍ତି ।

ଏଇ ପରିବେଶର କିଛିହେଲେ ପରିବର୍ତ୍ତନ ଆଣିବାପାଇଁ ମୁଁ ଏଡୁକେଶନାଲ୍ ଆଡ଼ଭାଇଜର୍ ଓ ଇନ୍‌ସ୍ପେକ୍ଟର ଅବ୍ ସ୍କୁଲ୍‌ସ୍ ଭାବରେ 'ସ୍କୁଲ୍‌କୁ ଗ୍ରାମ୍ୟ ଜୀବନର କେନ୍ଦ୍ର କର' ଶିରୋନାମାରେ ପ୍ରତ୍ୟେକ ଶିକ୍ଷକଙ୍କ ଉଦ୍ଦେଶ୍ୟରେ ଏକ ସର୍କ୍ୟୁଲାର ଦେଇଥିଲି । ଉତ୍ତର ଓଡ଼ିଶାର ଇନ୍‌ସ୍ପେକ୍ଟରଭାବରେ ଯେଉଁ ସର୍କ୍ୟୁଲାର ଦେଇଥିଲି [ନଂ ୮୮୮୮(୧୪)୨୩ଅଗଷ୍ଟ ୧୯୪୮] ତାର କପି ମଧ୍ୟ କଟକ, ବାଲେଶ୍ୱରର ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ୍ ଓ ମିଶ୍ରିତ ଷ୍ଟେଟ୍‌ମାନଙ୍କର ତତ୍କାଳୀନ କର୍ତ୍ତୃପକ୍ଷଙ୍କ ନିକଟକୁ ପଠାଇଥିଲି । ଏଇ ସର୍କ୍ୟୁଲାର ପ୍ରାଇମେରୀ ସ୍କୁଲ୍ ଶିକ୍ଷକମାନଙ୍କ ପାଇଁ ଉଦ୍ଦିଷ୍ଟ ହେଲେହେଁ ଏହାର ମର୍ମଭାବ ମିଡ଼ଲସ୍କୁଲ୍ ଓ ହାଇସ୍କୁଲ୍‌ମାନଙ୍କ ପ୍ରତି ଯେ ସୁନ୍ଦର ପ୍ରଯୁଜ୍ୟ ହେବ ତାହା ବିଚାରବନ୍ତ ହେଡ଼ମାଷ୍ଟର୍‌ମାନେ ସହଜରେ ବୁଝିପାରିବେ ଏବଂ ମୋର ଅନୁରୋଧ ସେମାନେ ସେହି ଅନୁସାରେ କର୍ମ କରିବେ । ମୁଁ ମୋର ସେହି ସର୍କ୍ୟୁଲାରର ପ୍ରଧାନ ଅଂଶଟି ନିମ୍ନରେ ଅନୁବାଦ କରିଦେଉଛି –

୧ । ଗାଁଲୋକଙ୍କର ଛୋଟ ଛୋଟ ରୋଗବ୍ୟାଧିପାଇଁ ସ୍କୁଲ୍‌ରେ ଗୋଟିଏ ଛୋଟ ଔଷଧ ବାକ୍ସ ରଖାଯାଉ । ଗୋଟିଏ ନିର୍ଦ୍ଦିଷ୍ଟ ଦିବସରେ ଏଇ ଔଷଧସବୁ ବିତରିତ ବା ସୁଲଭ ମୂଲ୍ୟରେ ବିକ୍ରିତ ହେବ । ଜରୋରୀ ଦରକାରବେଳେ ଯେକୌଣସି ଗ୍ରାମବାସୀ ଯେକୌଣସି ସମୟରେ ଔଷଧ ପାଇବାର ବ୍ୟବସ୍ଥା ମଧ୍ୟ ଥିବ । ପ୍ରତ୍ୟେକ ସ୍କୁଲ୍‌ରେ ଏ ବ୍ୟବସ୍ଥା କରି ନ ପାରିଲେ. କେନ୍ଦ୍ର ସ୍କୁଲ୍‌ମାନଙ୍କରେ ହିଁ ଏହାର ପରୀକ୍ଷା ହେଉ ।

୨ । ପ୍ରତ୍ୟେକ ସ୍କୁଲ୍‌ରେ ଗୋଟିଏ ଗ୍ରାମ୍ୟ ପୁସ୍ତକାଳୟ ରହିବ । ଗ୍ରାମବାସୀ ପଢ଼ିବାପାଇଁ ସେଥିରେ ପ୍ରଚୁର ପୁରାଣ,ଧର୍ମଶାସ୍ତ୍ର ଆଦି ରହିବ ଓ ପିଲାଙ୍କପାଇଁ ଶିଶୁସାହିତ୍ୟ ମଧ୍ୟ ଯଥେଷ୍ଟ

ରହିବ । କୃଷି ଶିକ୍ଷା, ଗୋପାଳନ, ଗୃହଶିଳ୍ପ, ମହୁମାଛି ପୋଷିବା ଇତ୍ୟାଦି ଗ୍ରାମ୍ୟ ବ୍ୟବସାୟ ଉପରେ ମଧ୍ୟ ପୁସ୍ତକ ରହିବ । ଗ୍ରାମବାସୀ ସ୍କୁଲ୍‌ରେ ଥିବା ଏଇ ପୁସ୍ତକାଳୟରୁ ପୁସ୍ତକ ନେଇ ପଢ଼ିବେ କିମ୍ବା ସ୍କୁଲ୍ ହେଉନଥିଲାବେଳେ ସେହି ସ୍କୁଲ୍ ଘରେ ରହି ପଢ଼ିବେ , ମାଷ୍ଟ୍ରଙ୍କ ସାହାଯ୍ୟରେ । ସାପ୍ତାହିକ ସମ୍ବାଦପତ୍ର ଏହି ପୁସ୍ତକାଳୟ ଆଣି ରଖିବେ । ଶିକ୍ଷକ ମହାଶୟ ଗ୍ରାମ୍ୟଲୋକଙ୍କୁ ଏହି ସମ୍ବାଦପତ୍ର ପଢ଼ି ଜଗତର କଥା ବୁଝାଇଦେବେ ।

୩ । ସ୍କୁଲ୍‌ର ବଗିଚାଟି ଗୋଟିଏ ଛୋଟ ଧରଣର ଆଦର୍ଶ ଫାର୍ମ ହେବ ଯେଉଁଠାରୁ ନିକଟବର୍ତ୍ତୀ ଗାଁମାନଙ୍କର କୃଷକମାନେ ନୂତନ ବୀଜ, ନୂତନ ଚାରା ଓ କୃଷି ସମ୍ବନ୍ଧରେ ନୂତନ ଆବିଷ୍କାର ବିନା ପଇସାରେ ପାଇପାରିବେ । ସ୍କୁଲ୍ ବଗିଚାରେ ଶିକ୍ଷକ ସବୁବେଳେ କେତେଗୁଡ଼ିଏ ଔଷଧବୃକ୍ଷ ବଢ଼ାଇ ରଖିବେ, ଯାହା ଯେକୌଣସି ଦରକାର ବେଳେ ଗ୍ରାମବାସୀ ଆସି ବ୍ୟବହାର କରିପାରନ୍ତି । ଏଥିପାଇଁ କୃଷିବିଭାଗ ଶିକ୍ଷକମାନଙ୍କୁ ଯଥାଶକ୍ତି ସାହାଯ୍ୟ କରନ୍ତୁ ।

୪ । ଯେତେବେଳେ ସ୍କୁଲ୍ ହେଉନଥିବ, ଗାଁଲୋକେ ସ୍କୁଲ୍ ଘରେ ଆସି ସଭା କରିପାରନ୍ତି କୌଣସି ଗ୍ରାମ୍ୟ ବିଷୟର ଆଲୋଚନା ପାଇଁ, ଯାହାଦ୍ୱାରା ସେମାନଙ୍କର ଧାରଣା ହେବ ଯେ ସ୍କୁଲ୍ ଘରଟା ସେଇମାନଙ୍କର ।

୫ । ରାତିରେ ସ୍କୁଲ୍ ଘରଟି ଗ୍ରାମବାସୀଙ୍କ ଉପକାରପାଇଁ ନୈଶ ବିଦ୍ୟାଳୟରେ ପରିଣତ କରାଯାଇପାରେ ।

ଏସବୁ କରାଗଲେ ସ୍କୁଲ୍ ପଲ୍ଲୀଜୀବନର କେନ୍ଦ୍ର ହୋଇଉଠିବ ବୋଲି ଆଶା କରାଯାଏ । ପଲ୍ଲୀଶିକ୍ଷକ ସମାନ୍ୟ ମାତ୍ର କର୍ମଚାରୀ ନହୋଇ, ହେବେ ପଲ୍ଲୀବାସୀଙ୍କର ସ୍ୱାଭାବିକ ନେତା ଓ ବନ୍ଧୁ । ପଲ୍ଲୀବାସୀ ମନେକରିବେ ଯେ ଗାଁର ସ୍କୁଲ୍ ତାଙ୍କରି ଉପକାରପାଇଁ । ସେମାନେ ପଲ୍ଲୀ-ବିଦ୍ୟାଳୟ ଓ ପଲ୍ଲୀ-ଶିକ୍ଷକଙ୍କୁ ନେଇ ଗର୍ବ ଅନୁଭବ କରିବେ ।

ଯାହା ଗ୍ରାମ୍ୟ ପ୍ରାଇମେରୀ ସ୍କୁଲ୍ ଓ ପ୍ରାଇମେରୀ ଶିକ୍ଷକମାନଙ୍କ ସମ୍ବନ୍ଧରେ କୁହାଗଲା, ତାହା ହାଇସ୍କୁଲ୍ ଓ ମିଡ଼ଲ୍ ସ୍କୁଲ୍ ପ୍ରତି ମଧ୍ୟ ସୁନ୍ଦର ପ୍ରଯୁଜ୍ୟ ହେବ । ବଡ଼ ସ୍କୁଲ୍‌ର ଶିକ୍ଷକମାନେ ମଧ୍ୟ ନାନାଭାବରେ ନିଜ ନିଜ ସ୍କୁଲ୍‌କୁ ପାରିପାର୍ଶ୍ୱିକ ସମାଜର କେନ୍ଦ୍ରସ୍ୱରୂପ କରିବାକୁ ଚେଷ୍ଟା କରିବେ । ପ୍ରଧାନଶିକ୍ଷକ ସାଧୁତାର ଓ ନ୍ୟାୟପରତାର ଏପରି ଏକ ଦୃଷ୍ଟାନ୍ତ ହୋଇ ରହିବେ, ଯେପରିକି ଲୋକେ ତାଙ୍କୁ ସାମାଜିକ ନିଶାପ ତୁଟାଇବାକୁ ଡାକିବେ । ସେ ଓ ତାଙ୍କର ସହକାରୀମାନେ ପାରିପାର୍ଶ୍ୱିକ ଜନତାର ହେବେ ସ୍ୱାଭାବିକ ନେତା । ଇଂଲଣ୍ଡର ପଲ୍ଲୀ ଅଞ୍ଚଳରେ ସମାଜକୁ ଶିକ୍ଷା ଓ ନୈତିକତାରେ ପ୍ରଭାବିତ କରି ରଖିଥାନ୍ତି ଦୁଇଟି ଲୋକଗ୍ରାମ୍ୟ ପୁରୋହିତ ଓ ଗ୍ରାମ୍ୟ ଶିକ୍ଷକ । ଯେହେତୁ ଆମ ଦେଶରେ ପୁରୋହିତର ଅଧୋଗତି ହୋଇଛି, ଆଶା କରାଯିବ ଯେ ଶିକ୍ଷକ, ଶିକ୍ଷକ ଓ ପୁରୋହିତ ଉଭୟର କର୍ତ୍ତବ୍ୟ ସମାଜ ପ୍ରତି କରିବେ ।

---

# ବେସିକ୍ ବାତାବରଣ

ଆମ ଦେଶର ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଏକ ବିଦେଶୀ ସରକାର ଦ୍ୱାରା ପ୍ରବର୍ତ୍ତିତ ହେଇଥିଲା, ତେଣୁ ତା ଭିତରେ ଆମ ଜାତିର ନିଜସ୍ୱ ସଂସ୍କୃତି ଫୁଟେଇବାର ପ୍ରଯତ୍ନ ନଥିଲା । ପୁଣି ଏହା ଏକାନ୍ତଭାବରେ ପୁସ୍ତକଗତ ହୋଇଥିବାରୁ ଏହାର ବିଦ୍ୟାର୍ଥୀମାନେ ଡେସ୍କ ଓ ଚୌକି ଛାଡ଼ି ଅନ୍ୟ ଯେକୌଣସି କାମପାଇଁ ଏକାବେଳକେ ଅନୁପଯୁକ୍ତ ହୋଇଯାଉଛନ୍ତି ଓ ସେପରି କାମଟିଏ ନପାଇଲେ ବେକାର ହୋଇ ବସୁଛନ୍ତି । ବହି ଘୋଷିବା ଓ ତାର ପରୀକ୍ଷା ଦେବା ହେଉଛି ଏ ଶିକ୍ଷା ବ୍ୟବସ୍ଥା । ପାସ୍ ସାର୍ଟିଫିକେଟ୍ ହେଲା ଲକ୍ଷ୍ୟ । ତେଣୁ ଯେଉଁମାନେ ଯା ଭିତରୁ ବାହାରୁଛନ୍ତି ସେମାନେ ନିଜର କାମଗୁଡ଼ିକ ମଧ ନିଜେ କରିଶିଖନ୍ତିନାହିଁ । ପୁଣି ଏ ଶିକ୍ଷା ଏପରି ବ୍ୟୟସାଧ ଯେ, ଜାତିର ସମସ୍ତଙ୍କପାଇଁ ଶିକ୍ଷକ ଯୋଗେଇବା ଓ ସ୍କୁଲ୍ ତିଆରି କରିବା ସରକାର ପକ୍ଷରେ ସମ୍ଭବ ହେଉନାହିଁ । ଏସବୁର କଣ ସମାଧାନ ହୋଇପାରେ ଭାବି ଆମର ଜାତିଗତପ୍ରାଣ ବାପୁଜୀ ଏକ ନୂତନ ଶିକ୍ଷା ଯୋଜନାର ପରୀକ୍ଷା ଆରମ୍ଭ କରିଥିଲେ । ତାହା ବେସିକ୍ ବା ମୌଳିକ ଶିକ୍ଷା ନାମରେ ପରିଚିତ ।

ଦେଶମୟ ମୌଳିକ ସ୍କୁଲ୍ ବସେଇବା ବର୍ତ୍ତମାନ ସମ୍ଭବ ନୁହେଁ । ଅଭିଜ୍ଞତାରୁ ଜଣାଯାଉଛି ଯେ ବେସିକ୍ ସ୍କୁଲ୍ ପୂର୍ବତନ ସ୍କୁଲ୍‌ମାନଙ୍କଠାରୁ ଯାହା ଶସ୍ତା ହେବାର ଆଶା କରାଯାଉଥିଲା, ତାହା ନ ହୋଇ ବରଂ ବହୁଗୁଣରେ ବ୍ୟୟଶୀଳ ହୋଇଉଠୁଛି । ଏହା ପରିଚାଳନାର ଦୋଷ ହୋଇପାରେ । କିନ୍ତୁ ଏଇ ବେସିକ୍ ପ୍ରଣାଳୀରେ କେତେଗୁଡ଼ିଏ ଉତ୍ତମାଂଶ ଦେଖାଯାଉଛି ଯାହା ପୂର୍ବ ଧରଣର ସ୍କୁଲ୍ ସବୁ ବିନା ବ୍ୟୟରେ ନିଜ ନିଜ ପୀଠରେ ପ୍ରବର୍ତ୍ତନ କରିପାରନ୍ତି ଓ ତା ଫଳରେ ନିଜ ପୀଠର ନିପୁଣତା ଓ କଲ୍ୟାଣଶୀଳତା ବହୁଗୁଣରେ ବଢ଼ିଯିବ ବୋଲି ଆଶା । ଏଇ ଆଶାରେ ମୁଁ ଉତ୍ତର ଓଡ଼ିଶାର ଇନ୍‌ସ୍‌ପେକ୍ଟର ଥିଲାବେଳେ ମୋ ଅଧୀନରେ ଥିବା ସମସ୍ତ ପୂର୍ବ-ଧରଣର ବିଦ୍ୟାଳୟମାନଙ୍କ ଉଦ୍ଦେଶ୍ୟରେ ଏ ବିଷୟରେ ଏକ ସର୍କ୍ୟୁଲାର ଦେଇଥିଲି [ନଂ୬୩୦୮ (୯୦) ଜୁଲାଇ ୧୧, ୧୯୪୯ ]। ତାର ପ୍ରଧାନ ଅଂଶଟି ନିମ୍ନରେ ଅନୁବାଦ କରି ଦେଉଛି । ଆଶା କରୁଛି ଯେ ପ୍ରଧାନଶିକ୍ଷକମାନେ (ପ୍ରାଇମେରୀ, ମିଡ଼ଲ୍ ଓ ହାଇସ୍କୁଲ୍ ସମସ୍ତର) ଏ ଦିଗରେ ସମୁଚିତ ଚେଷ୍ଟା କରିବେ । ପୂର୍ବ ଅଧ୍ୟାୟମାନଙ୍କରେ ସେଇ କଥାହିଁ ଭିନ୍ନଭାବରେ ବାରମ୍ୱାର କୁହାଯାଇଛି ।

ବେସିକ୍ ପଦ୍ଧତିର ଯେଉଁ ପ୍ରଧାନ ବିଭାଗଗୁଡ଼ିକ ସହଜରେ ଅଣବେସିକ୍ ବିଦ୍ୟାଳୟମାନଙ୍କରେ ପ୍ରବର୍ତ୍ତିତ ହୋଇପାରିବ ତାହା ଏହି—

୧ । ପ୍ରତ୍ୟେକ ଛାତ୍ରକୁ ଜଣେ ଉତ୍ପାଦକ ବୋଲି ଧରିନେଇ ସେଇ ଅନୁସାରେ ତାଲିମ୍ କର । ଶେଷରେ ସମାଜରେ ପରାଙ୍ଗପୁଷ୍ଟ ହୋଇ ବଞ୍ଚିବାପାଇଁ କଣ ସେମାନଙ୍କପାଇଁ ଏହି ବ୍ୟୟବହୁଳ ବିଦ୍ୟାଳୟ ସବୁ କରାଯାଇଛି ? ସେମାନେ ସମାଜକୁ ପ୍ରତିଦାନରେ କିଛି ନା

କିଛି ଉତ୍ପାଦନ ଦେବେ । ଏଇ ଲକ୍ଷ୍ୟରେ ଛାତ୍ରମାନଙ୍କୁ ପ୍ରତ୍ୟହ ସକାଳେ ଓ ଉପରଓଳି ଘଣ୍ଟେ ଘଣ୍ଟେ କରି ବାଧ୍ୟତାମୂଳକ ସୂତାକଟା, ବଗିଚା କାମ, ବଢ଼େଇ କାମ, ବହି ବନ୍ଧେଇ, କମାର କାମ ଇତ୍ୟାଦି କୌଣସି ନା କୌଣସି ଉତ୍ପାଦନଦାୟୀ ଶ୍ରମରେ ନିଯୁକ୍ତ କରିବେ । ପ୍ରଧାନଶିକ୍ଷକମାନେ ପାରିପାର୍ଶ୍ୱିକ ଅବସ୍ଥା ନେଇ କେଉଁ କେଉଁ ଧନ୍ଦା ତାଙ୍କ ସ୍କୁଲ୍‌କୁ ଭଲ ହେବ ତାହା ଠିକ୍ କରିନେବେ ।

୨ । ନିଜ ଶ୍ରମରେ ଯାହା ସୁନ୍ଦର ହୋଇପାରିବ ଏପ୍ରକାର ନିଜର ଦୈନନ୍ଦିନ ପ୍ରୟୋଜନ ସବୁ ପାଇଁ ପିଲେ କୌଣସିମତେ ଅନ୍ୟ ଉପରେ ନିର୍ଭର କରିବାର ଅଭ୍ୟାସ ରଖିବେନାହିଁ । ଏଇ ଲକ୍ଷ୍ୟରେ ସ୍କୁଲ୍ ଓ ହଷ୍ଟେଲ୍‌ର ଦୈନନ୍ଦିନ ଜୀବନ ଛାତ୍ରମାନଙ୍କ ସହଯୋଗ ଉପରେ ପରିଚାଳିତ ହେବା ଉଚିତ । ବିନା ପୂଜାରୀ ଓ ଚାକରରେ ଚଳିପାରିଲେ ଆଦର୍ଶ ହେବ । ଯେଉଁଠି ସଂଖ୍ୟାଧିକ୍ୟ ଯୋଗୁଁ ପୂଜାରୀ ଓ ଚାକର ରଖିବା ନିତାନ୍ତ ଆବଶ୍ୟକ ହୋଇପଡ଼େ, ସେଠି ସେମାନଙ୍କୁ 'ମେନିଆଲ୍', 'ସରଭାଣ୍ଟ୍', 'ଚାକର' ବୋଲି ନକହି ବା ବିଚାର ନକରି 'ରୋଷେଇ-ସହଯୋଗୀ ଓ ଗୃହ-ସହଯୋଗୀ' ବୋଲି କହିବ ଓ ସେମାନଙ୍କୁ ଭାରତୀୟ ସାଧାରଣତନ୍ତ୍ରର ଏକ ଏକ ନାଗରିକ ମନେକରି ନିଜର ସମାନଭାବରେ ବ୍ୟବହାର କରିବ । ଘରସଫେଇ ଓ ବାସନମଜାଠୁ ବଜାର କରିବା ପର୍ଯ୍ୟନ୍ତ ସ୍କୁଲ୍ ଓ ହଷ୍ଟେଲ୍‌ର ସବୁକାମ ପିଲାଙ୍କ ଦ୍ୱାରାହିଁ କରେଇବ । ସେମାନେ ଦଳ ଦଳ ହୋଇ ପାଳି କରି କରିବେ । ପୂଜାରୀ ଓ ଭୃତ୍ୟ କେବଳ ସାହାଯ୍ୟକାରୀ ରୂପେ ଗଣାହେବେ ।

୩ । ଛାତ୍ରମାନେ ଯାହା ମଇଳା,ଯାହା କୁତ୍ସିତ, ଯାହା ବିଶୃଙ୍ଖଳ ତାକୁ ପିଲାବେଳୁ ଘୃଣା କରିବାରେ ତାଲିମ ହେବେ । ସେମାନେ ନିଜର ଲୁଗାପଟା, ନିଜର ଶେଯ, ନିଜର ରୁମ୍ ଓ ନିଜର ପରିପାର୍ଶ୍ୱକୁ ନିଜ ହାତରେ ସଫା କରିବାରେ ବରାବର ଅଭ୍ୟସ୍ତ ହେବେ । ମଇଳା ସଫାକରିବା ଏକ ହୀନକର୍ମ, ଏଥିପାଇଁ ଅନ୍ୟଲୋକ ଅଛନ୍ତି, ଆମେ ଉଚ୍ଚଲୋକ, ସେ କାମ କରିବୁନାହିଁ, ଏପରି ଭାବ ସେମାନଙ୍କ ମନରେ ଯେପରି ଆଦୌ ପ୍ରବେଶ ନ କରେ । ବେସିକ୍ ବିଦ୍ୟାଳୟମାନଙ୍କରେ ସେଥିପାଇଁ ଗାନ୍ଧି-ପାଇଖାନାର ବରାବର ବ୍ୟବସ୍ଥା ହୋଇଥାଏ, ପଦାରେ ସମସ୍ତଙ୍କ ସମ୍ମୁଖରେ, ଯତ୍ରତତ୍ର ମୂତ୍ର-ମଳ ପରିତ୍ୟାଗ ଏକ ଅସଭ୍ୟ ଅଭ୍ୟାସ । ପ୍ରଧାନଶିକ୍ଷକମାନେ ଏପରି ଅଭ୍ୟାସ ଆଦୌ କରାଇଦେବେନାହିଁ ।

ଆମର ବିଦ୍ୟାଳୟଗୁଡ଼ିକ ଏଇ ତିନୋଟି ବେସିକ୍ ବିଭାଗ ଗ୍ରହଣ କରନ୍ତୁ । ମୁଁ ଆଶା କରେ ଯେ ବେସିକ୍ ନାମ ଧାରଣ ନକରି ମଧ୍ୟ ସେମାନେ ଆମ ପ୍ରାଣପ୍ରିୟ ବାପୁଜୀଙ୍କ ସ୍ୱପ୍ନର ଅନେକ ନିକଟକୁ ଯାଇପାରିବେ ।

---

# * ଗୋଟିଏ ଆଦର୍ଶ ପ୍ରାଇମେରୀ ସ୍କୁଲ୍‌ର ନକ୍ସା

ମୁଁ ପରିଦର୍ଶନ ବ୍ୟପଦେଶରେ ସ୍ଥାନରୁ ସ୍ଥାନାନ୍ତର ଯିବା ଭିତରେ ଗ୍ରାମ ଓ ନଗର ଉଭୟତ୍ର ପ୍ରାଇମେରୀ ବିଦ୍ୟାଳୟଗୁଡ଼ିକୁ ଭିନ୍ନ ଭିନ୍ନ ସ୍ତର ଓ ଅବସ୍ଥାରେ ଥିବାର ଦେଖେଁ । କୌଣସି କୌଣସି ସ୍ଥାନରେ ଦେଖେଁ ଯେ ପ୍ରାଇମେରୀ ସ୍କୁଲ୍‌ର ଘର ବେଶ୍ ଲମ୍ବା-ଚୌଡ଼ା ଆସବାବବନ୍ତ, ଚକ୍ଷୁ-ପ୍ରୀତିକର, କିନ୍ତୁ ଅନ୍ୟତ୍ର ସେଗୁଡ଼ିକ ଏପର୍ଯ୍ୟନ୍ତ ଅତି ଆଦିମ, କ୍ଷୁଦ୍ର, ଅନ୍ଧକାରିତ, ଅପରିଚ୍ଛନ୍ନ ମାଟି କୁଟୀର; ଯେଉଁଠି ପିଲେ ଅନାବୃତ ମାଟି ଚଟାଣ ଉପରେ ବିନା ଡେସ୍କ,ବିନା ବେଞ୍ଚରେ, ଜକାଜକିଭାବରେ ରୁଣ୍ଡ ହୋଇ ବସୁଛନ୍ତି । ତେଣୁ ନୋଟ୍‌ରେ ଗୋଟିଏ ପ୍ରାଇମେରୀ ସ୍କୁଲ୍‌ର ଗୃହ ଓ ଉପକରଣ ସମ୍ବନ୍ଧରେ ମୁଁ ଏ ରେଖାଚିତ୍ର ଦେବାକୁ ଯାଉଛି, ଯାହାକି ପ୍ରାଇମେରୀ-ସ୍କୁଲ୍‌ର କର୍ତ୍ତୃପକ୍ଷମାନଙ୍କୁ (ଅର୍ଥାତ୍ ସବ୍‌ଇନ୍‌ସ୍ପେକ୍ଟର, ଜିଲା ଇନ୍‌ସ୍ପେକ୍ଟର ଓ ସ୍ଥାନୀୟ ଶାସନର କର୍ମକର୍ତ୍ତାମାନେ) ନୂତନ ପ୍ରାଇମେରୀ ସ୍କୁଲ୍ ଗଢ଼ିବାରେ ଓ ପୁରାତନ ପ୍ରାଇମେରୀ ସ୍କୁଲ୍ ପୁନର୍ନିର୍ମାଣ କରିବାରେ ସାହାଯ୍ୟ କରିପାରେ ।

**ସ୍କୁଲ୍‌ଗୃହ—** ସ୍କୁଲ୍ ଘରଟି ତିଆରି କଲାବେଳେ ନିମ୍ନତମ ବା ହାରାହାରି ଛାତ୍ରସଂଖ୍ୟାର କଥା ନଭାବି, ସେ ସ୍କୁଲ୍‌ରେ ସର୍ବୋଚ୍ଚ ଛାତ୍ର ସଂଖ୍ୟା କେତେ ହୋଇପାରନ୍ତି, ତା ଉପରେ ଆଖି ରଖି କାର୍ଯ୍ୟ କରିବା ଉଚିତ । ହୁଏତ ସ୍କୁଲ୍‌ର ରୁମ୍‌ଗୁଡ଼ିକ ମୂଳରୁ ପ୍ରଶସ୍ତ କରି ତଆରି କରିବ, କିମ୍ବା ଭବିଷ୍ୟତ୍‌ରେ ଦରକାର ପଡ଼ିଲେ ଯେପରି ସହଜରେ ବଢ଼ାଯାଇପାରିବ ସେହିପରି ଭାବରେ ତିଆରି ହେବା ଉଚିତ ।

(ଗୋଟିଏ ଅପରପ୍ରାଇମେରୀ ସ୍କୁଲ୍‌କୁ ଏକକରୂପେ ଧରିନେଇ ଗୃହନିର୍ମାଣ ଓ ଉପକରଣର ନକ୍ସା ଦେଲେ ସବୁଆଡ଼କୁ ପାଇବ । କାରଣ ପ୍ରାଇମେରୀ ଶିକ୍ଷାର ପ୍ରସାର ଫଳରେ ଅପରପ୍ରାଇମେରୀ ବା ଜୁନିଅର୍ ବେସିକ୍ ସ୍କୁଲ୍‌ହିଁ ଆମ ଭବିଷ୍ୟତ୍ ଶିକ୍ଷା ବ୍ୟବସ୍ଥାର ନିମ୍ନତମ ଏକକ ହେବ ।)

ପ୍ରତ୍ୟେକ ଶିକ୍ଷକଙ୍କପାଇଁ ଗୋଟିଏ ଅଲଗା ରୁମ୍ ଆଦର୍ଶ ବ୍ୟବସ୍ଥା ହେବ । କିନ୍ତୁ ଆମର ଆର୍ଥିକ ଅବସ୍ଥା ଦୃଷ୍ଟିରୁ ବର୍ତ୍ତମାନ ତାହା ସମ୍ଭବ ହେବନାହିଁ । ଜଣେ ଚତୁର ଓ କର୍ମଠ ଶିକ୍ଷକଙ୍କ ପକ୍ଷରେ ଏକାବେଳକେ ଦୁଇଟି ଶ୍ରେଣୀ ପରିଚାଳିତ କରିବା ମଧ ବିଶେଷ କଷ୍ଟର କଥା ନୁହେଁ । ତେଣୁ ଛ-ଶ୍ରେଣୀ ସମନ୍ୱିତ ଗୋଟିଏ ଅପରପ୍ରାଇମେରୀ ସ୍କୁଲ୍‌ପାଇଁ ଅନ୍ତତଃ ତିନୋଟି କ୍ଲାସ୍-ରୁମ୍ ଦରକାର । ପୁଣି ଆଉ ଗୋଟିଏ ରୁମ୍ ରହିବା ଉଚିତ ଯାହାକି ସ୍କୁଲ୍‌ର ଅଫିସ, ପ୍ରଦର୍ଶନୀ, ଲାଇବ୍ରେରି ଓ ଷ୍ଟୋର ରୂପେ ବ୍ୟବହୃତ ହେବ ।

ରୁମ୍‌ଗୁଡ଼ିକର ଓସାର ୧୫ ଫୁଟ୍ ହେବା ଉଚିତ । ସେଗୁଡ଼ିକର ଲମ୍ବା ନିମ୍ନଶ୍ରେଣୀପାଇଁ ୨୫ ଫୁଟ୍, କାରଣ ସେଠି ପିଲାସଂଖ୍ୟା ବେଶି । ଉପର ଦୁଇ ଶ୍ରେଣୀପାଇଁ ଯଥାକ୍ରମେ ୨୫ ଓ ୨୦ଫୁଟ୍ ହେବା ଉଚିତ। ସର୍ବୋପଯୋଗୀ କକ୍ଷଟି ହଲ୍ ରକମର ହେଲେ ଭଲହେବ, କାରଣ ସ୍କୁଲ୍‌ରେ ଗୋଟିଏ ଘର ରହିବା ଉଚିତ ଯେଉଁଠି ସବୁପିଲା ଏକାବେଳକେ ବସିପାରିବେ, ଯେଉଁଠି ମଧ ଗ୍ରାମବାସୀ ଦରକାର ପଡ଼ିଲେ ସଭା କରିପାରନ୍ତି । ତାର ଲମ୍ବା ୩୦ ଫୁଟ୍ ହେବା ଉଚିତ ।

---

* ମୁଁ ଉତ୍ତର ଓଡ଼ିଶାରେ ଇନ୍‌ସ୍ପେକ୍ଟର୍ ଅବ୍ ସ୍କୁଲ୍‌ସ ଥିବାବେଳେ ଦେଇଥିବା ୯ ଅଗଷ୍ଟ ୧୯୪୯ର ୬୭୨୬(୬୦)ନଂ ସର୍କ୍ୟୁଲାର ଅନୁବାଦ । ସ୍ଥାନେ ସ୍ଥାନେ ସାମାନ୍ୟ ପରିବର୍ତ୍ତନ କରାହୋଇଛି ମାତ୍ର ।

ଲମ୍ବାଚୌଡ଼ାଭାବରେ ସ୍କୁଲ୍ ଘର ନିର୍ମାଣର ତାତ୍ପର୍ଯ୍ୟ ଏହି ଯେ ପ୍ରତ୍ୟେକ ପିଲା ୧୮ ଇଞ୍ଚ୍ ବା ଦେଢ଼ଫୁଟ୍ ବସିବା ଜାଗା ଯେପରି ପାଏ ଓ ଦୁଇଟି ପିଲା ଭିତରେ ବ୍ୟବଧାନ ଯେପରି ଅନ୍ତତଃ ଏକ ଫୁଟ୍ ରହେ । କର୍ତ୍ତୃପକ୍ଷ ଏହାରି ଉପରେ ସ୍କୁଲ୍ ଘରର ଲମ୍ବା ଚଉଡ଼ା ହିସାବ କରିବେ । ଏହାଫଳରେ ଅଳ୍ପ ପରିସର ଭିତରେ ପିଲାମାନେ ଠେଲାଠେଲି ହେବା, ଏକ ଆରେକକୁ ପେଲୁଥିବା, ଜଣେ ଯାହା ଲେଖିଲା ତାହା ଆଉଜଣେ ଉଙ୍କିମାରି ଦେଖୁଥିବା ଆଉ ହେବନାହିଁ । ପିଲାଙ୍କୁ ବ୍ୟବଧାନ ରଖି ବସେଇଲେ ସେମାନଙ୍କର ବ୍ୟକ୍ତିତ୍ୱ, ସାଧୁତା, ଆତ୍ମନିର୍ଭରତା ଏବଂ ସ୍ୱାସ୍ଥ୍ୟ ମଧ୍ୟ ବୃଦ୍ଧିଲାଭ କରିବାର ଆଶା କରାଯାଏ । ତେଣୁ କର୍ତ୍ତୃପକ୍ଷ ସ୍କୁଲ୍‌ର କକ୍ଷଗୁଡ଼ିକରେ ପ୍ରଥମ ଦୃଷ୍ଟି ଦେବେ ସ୍ପେଶ୍ ବା ପରିସରକୁ । ସେ ବିଷୟରେ ଆଦୌ କୃପଣତା କରିବେନାହିଁ ।

**ସୌଷ୍ଠବ ଓ ପରିଚ୍ଛନ୍ନତା**– ପରିସର ପଛକୁ ସୌଷ୍ଠବ ଓ ପରିଚ୍ଛନ୍ନତା । ମାଟିକାନ୍ଥ ଓ ଛଣ ଛପରରେ ମଧ୍ୟ ସୌନ୍ଦର୍ଯ୍ୟ ଫୁଟେଇହେବ । କାନ୍ଥଗୁଡ଼ିକ ସିଧା ଓ ଚିକ୍କଣ ହେବ, କୋଣଗୁଡ଼ିକ ପରିସ୍ଫୁଟ ହେବ ଏବଂ ଚାଳର ଓହଳଟି ସୌଷ୍ଠବସହକାରେ କର୍ତ୍ତିତ ହେଲେ ମାଟିଘର ମଧ୍ୟ ସୁନ୍ଦର ଦେଖାଯିବ । ବାରଣ୍ଡାଗୁଡ଼ିକ ମଧ୍ୟ କୋଣ ରଖି ସିଧା ତିଆରି ହେବ, ମେଜିଆଟି ଚିକ୍କଣ ଓ ସମତଳ ରଖାଯିବ । କାନ୍ଥମାନଙ୍କରେ ପ୍ରାଣୀ, ଗ୍ରାମ, ସହର, ଆଦର୍ଶବ୍ୟକ୍ତିମାନଙ୍କର ଛବି ଏବଂ ଜିଲ୍ଲା, ପ୍ରଦେଶ, ଭାରତବର୍ଷ ଓ ପୃଥିବୀର ମାନଚିତ୍ର ରହିବ । ସ୍କୁଲ୍‌ଟି ଯେଉଁ ସ୍ଥାନର ସେବା କରେ, ପ୍ରତି ସ୍କୁଲ୍‌ରେ ସେହି ସ୍ଥାନର ଗୋଟିଏ ନକ୍ସା ଝୁଲୁଥିବା ଉଚିତ, ସେଥିରେ ସ୍କୁଲ୍‌ର ସ୍ଥାନଟି ଦେଖାଇ ଦିଆଯାଇଥିବ । ଏହା କେବଳ ବାଳକମାନଙ୍କଦ୍ୱାରା ରଚିତ ହେବା ଉଚିତ ।

**କମ୍ପାଉଣ୍ଡ୍ ବା ହତା**– ସ୍କୁଲ୍ କମ୍ପାଉଣ୍ଡ୍ ଏପରି ପ୍ରଶସ୍ତ ହେବ ଯେପରିକି ସେଠି ଗୋଟିଏ ଛୋଟ ବଗିଚା କରିହେବ, ଅନେକ ଖାଲିଜାଗା ରହିବ ଯେଉଁଠି ପିଲେ ଖେଳିବେ ଓ ତାଙ୍କର ଡ୍ରିଲ୍ ହେବ, ଗୋଟିଏ ବାଲିର ଫୁଲ୍‌କା ଥିବ ଯେଉଁଠିକି ଛୋଟ ଶିଶୁମାନେ ଡିଆଁକୁଦା କରିବେ । ଗୋଟିଏ ଛୋଟ ପିଲାଗଡ଼ା ଘର ଥିବ, ଗୋଟିଏ ଦୋଳି ଏବଂ ପିଲାଙ୍କ ଖେଳିବାର ଅନ୍ୟାନ୍ୟ ଉପକରଣସବୁ ଥିବ । ପିଲାଙ୍କୁ ଇଟା ତିଆରି କରିବାକୁ ଶିକ୍ଷକ ଉତ୍ସାହିତ କରିବେ । ସେଇ ଇଟାକୁ ଖରାରେ ଶୁଖାଇ ବା ନିଆଁରେ ପୋଡ଼ି, ତାରି ସାହାଯ୍ୟରେ କମ୍ପାଉଣ୍ଡ୍ ଭିତରେ ଛୋଟ ଛୋଟ ଘର ତାଙ୍କରିଦ୍ୱାରା ଶିକ୍ଷକ କରାଇନେବେ । ସ୍କୁଲ୍ ଘରର ସାମାନ୍ୟ ଦୂରରେ କେତେଗୁଡ଼ିଏ ଛାୟାପ୍ରଦ ବଡ଼ ଗଛ ଥିବା ଉଚିତ । ଛୋଟ ପିଲାମାନେ ତାରି ଛାଇରେ ଖେଳିବେ । ବଡ଼ ପିଲାଙ୍କୁ ଶିକ୍ଷକ ଗଛ-ଚଢ଼ାରେ ଉତ୍ସାହିତ କରିବେ । ଗଛର ତଳଗୁଡ଼ିକ ପରିଷ୍କୃତ ପରିଚ୍ଛନ୍ନ ରଖାଗଲେ ଓ ସେଗୁଡ଼ିକୁ ଉତ୍ତମଭାବରେ ରଖିଜାଣିଲେ, ସ୍କୁଲ୍‌ହତା ଆକର୍ଷଣର ସ୍ଥାନ ହେବ ।

ସମଗ୍ର ସ୍କୁଲ୍‌ହତାଟି ସମ୍ପୂର୍ଣ୍ଣରୂପେ ଓ ସବୁବେଳେ ପରିଚ୍ଛନ୍ନ ରଖାଯିବା ଉଚିତ ଓ ତାହା ମଧ୍ୟ କେବଳ ଛାତ୍ରଛାତ୍ରୀଙ୍କ ହାତରେ । ପରିଷ୍କୃତ ବାତାବରଣ ଛୋଟମାନଙ୍କର ମନ ଉପରେ ଅନୁକୂଳ ପ୍ରତିକ୍ରିୟା ସୃଷ୍ଟି କରିବଇ କରିବ ।

ହତାଭିତରେ ମଇଳାଖାତ, ଛିଣ୍ଡାକାଗଜ ଟୋକେଇ ଓ ଅଳିଆକୁଣ୍ଡ ଯଥାସ୍ଥାନମାନଙ୍କରେ ରଖାଯାଇଥିବ । କେବଳ ସେଇ ସେଇ ଜାଗାରେ ମଇଳା, ଛିଣ୍ଡାକାଗଜ ଓ ଅଳିଆ ଯେପରି ପଡ଼େ । କୌଣସିମତେ ଶିକ୍ଷକ ପିଲାମାନଙ୍କୁ ଅପରିଷ୍କାର ଅଭ୍ୟାସସବୁ କରିବାକୁ ଦେବେନାହିଁ ।

କିଛି ଦୂରରେ ଓ ଯେଉଁ ଦିଗରୁ ସାଧାରଣତଃ ପବନ ବହେ ତାର ବିପରୀତ ଦିଗରେ ଖାତ, ପାଇଖାନା ଓ ମୂତଖାନା ରଖାଯିବ । ସେସବୁରେ ବାଉଁଶ ବା ଝାଟିର ତାଟି ଥିବ ଆବରଣ

ପାଇଁ । ପାଇଖାନା ଓ ମୂତଖାନା ପ୍ରତ୍ୟେକରୁ ଗୋଟିଏ ଶିକ୍ଷକ,ଗୋଟିଏ ବାଳକ ଓ ଗୋଟିଏ ବାଳିକାମାନଙ୍କପାଇଁ ରଖାଯିବ । ପାଇଖାନାରେ ଶିକ୍ଷକ ଓ ଛାତ୍ର ନିଜ ନିଜ ମଇଳାକୁ ମାଟିରେ ଆବୃତ କରିଆସିବାରେ ଅଭ୍ୟସ୍ତ ହେବେ । ପ୍ରତି ମୂତଖାନା ନିକଟରେ ଗୋବରପାଣି ବା ଚୂନପାଣି ଆଟିକା ବା ଟିଣରେ ରଖି ମୂତିସାରି ତାଉପରେ ତାହା ଛିଞ୍ଚି ଦେବାପାଇଁ ଡଙ୍କାଟିଏ ରଖା ହୋଇଥିବ । କୌଣସିମତେ ଶିକ୍ଷକ ଛାତ୍ରଛାତ୍ରୀଙ୍କୁ ହତା ଭିତରେ ବା ବାହାରେ ଯତ୍ରତତ୍ର ମଳମୂତ୍ର ତ୍ୟାଗର ଅଭ୍ୟାସ କରାଇଦେବେନାହିଁ ।

ସ୍କୁଲ୍‌ହତାଟିର ଗୋଟିଏ ସୁନ୍ଦର କଞ୍ଚାବାଡ଼ ରହିବା ଉଚିତ । ବାଉଁଶ ତାଟିର ବାଡ଼ ପ୍ରଥମେ ଭଲ ଦେଖାଯାଏ, କିନ୍ତୁ ବର୍ଷକ ପରେ କଦର୍ଯ୍ୟ ଦିଶେ । ଇଟା ବା ପଥରର ପାଚେରି ତ ବହୁତ ବ୍ୟୟସାଧ ବ୍ୟାପାର । ପିଲାମାନେ ନିଜ ହାତରେ ବୃକ୍ଷରୋପଣ କରି ଦୁଇବର୍ଷ ଭିତରେ ଗୋଟିଏ ସୁନ୍ଦର ଘଞ୍ଚ କଞ୍ଚାବାଡ଼ ଠିଆକରେଇଦେବା ସବୁଠାରୁ କମ୍ ବ୍ୟୟ ଓ ଶିକ୍ଷାଦିଗରୁ ବାଞ୍ଛନୀୟ କର୍ମ । ଏହା ଚିରସ୍ଥାୟୀ ହୋଇ ରହିଲା । ଛାଇ ଦେବ ଓ ସହଜରେ ମରାମତି ହୋଇପାରିବ ।

ପ୍ରତି ସ୍କୁଲ୍‌ହତାରେ ଜଳପାନ ଓ ସେଚନପାଇଁ ଗୋଟିଏ କୂଅ ରହିବା ଉଚିତ ।

**ଆସବାବ**-- ପ୍ରତି ସ୍କୁଲ୍‌ରେ ପିଲାଙ୍କୁ ପରିଷ୍କୃତ ଜଳ ଯୋଗାଇବାପାଇଁ ଗୋଟିଏ ଫିଲ୍ଟର ରହିବା ଉଚିତ । ଫିଲ୍ଟରର ଗଠନ ଯେକୌଣସି ସ୍ୱାସ୍ଥ୍ୟରକ୍ଷା ବହିରେ ଶିକ୍ଷକ ପାଇବେ ଓ ନିଜେ କରାଇନେବେ ।

ପ୍ରତି ପିଲାର ଗୋଟିଏ ଚଟାଣ-ଡେସ୍କ(ମହାଜନୀ ବାକ୍ସ ପରି) ରହିବା ଉଚିତ । ସେଥିରେ ପିଲା ତାର ବହି ଓ ଖାତାପତ୍ର ରଖିବାପାଇଁ ବ୍ୟବସ୍ଥା ଥିବ ।

ପ୍ରତି ପିଲାର ବସିବାପାଇଁ ଏକ ଆସନ ଥିବ । ତାଳପତ୍ର ବା ବାଉଁଶପାତିଆରେ ପିଲେ ନିଜେ ଏସବୁ ବୁଣିନେଇପାରିବେ । ନିମ୍ନଶ୍ରେଣୀର ପିଲେ ଶିଖିବାକୁ ସମୟ ନେବେ । ବଡ଼ ପିଲେ ତେଣୁ ଛୋଟଙ୍କପାଇଁ ବୁଣିଦେବେ । ଏହାଦ୍ୱାରା ସହଯୋଗ ଭାବ ବଢ଼ିବ ।

ପ୍ରତି ଶ୍ରେଣୀର(ପ୍ରତି କକ୍ଷର ନୁହେଁ) ନିଜର ଗୋଟିଏ ବଡ଼ ବ୍ଲାକ୍‌ବୋର୍ଡ଼ ବା କଳାପଟା ରହିବା ନିତାନ୍ତ ଉଚିତ । କାନ୍ଥରେ ଯଦି ବ୍ଲାକ୍‌ବୋର୍ଡ଼ ରହିବ, ତେବେ ତାହା କାନ୍ଥର ଏକ ପ୍ରାନ୍ତରୁ ଅନ୍ୟପ୍ରାନ୍ତଯାଏ ପ୍ରସାରିତ ରହିଲେ ଭଲ । କାଠର କଳାପଟା ଅପେକ୍ଷା ଏହି ଭିତ୍ତି-ପଟାହିଁ ଅଧିକ ଉପଯୋଗୀ । ମନେରଖିବାକୁ ହେବ ଯେ, ଗୋଟିଏ ଶ୍ରେଣୀର କଳାପଟାହିଁ ଶିକ୍ଷାଦାନର ପ୍ରଧାନତମ ଉପକରଣ । ଶିକ୍ଷକ ତାହାର ଯେପରି ସଦ୍‌ବ୍ୟବହାର କରନ୍ତି ।

ଶିକ୍ଷକ ଦେଖିବେ ଯେପରି ଶ୍ରେଣୀ ମନିଟ୍‌ର ସ୍କୁଲ୍ ବେଳେ କଳାପଟା ନିକଟରେ କଳାପଟାକୁ ପୋଛି ପରିଷ୍କାର କରିବାପାଇଁ ପାଖରେ ଗୋଟାଏ ସଢ଼େଇ ବା ସେହିପରି କୌଣସି ଛୋଟ ପାତ୍ରରେ କିଛି ପାଣି ଓ ଖଣ୍ଡେ କନା ବରାବର ରଖିଥିବେ ।

ଶ୍ରେଣୀମାନଙ୍କରେ ଶିକ୍ଷକମାନଙ୍କପାଇଁ ଖଣ୍ଡିଏ ଖଣ୍ଡିଏ ଷ୍ଟୁଲ୍‌ହିଁ ଯୋଗାଇଦିଆଯିବ । କୌଣସି ଚୌକି ବା ଟେବୁଲ୍ ରହିବାର ଆବଶ୍ୟକତା ନାହିଁ ।

**ଅନ୍ୟାନ୍ୟ ଉପକରଣ**— ପ୍ରାଇମେରୀ ସ୍କୁଲ୍‌ଟିକୁ ସ୍ୱୟଂସମ୍ପୂର୍ଣ୍ଣ କରିବାପାଇଁ ନିମ୍ନଲିଖିତ ଛୋଟ ଅଥଚ ଅତ୍ୟାବଶ୍ୟକ ଉପକରଣଗୁଡ଼ିକ ମଧ୍ୟ ଯୋଗେଇ ରଖିବା ଉଚିତ —

ଗୋଟିଏ ଘଣ୍ଟା, ଗୋଟିଏ ପିଟା ଘଣ୍ଟା, ଗୋଟିଏ ବଡ଼ ହୁଇସିଲ୍, ଗୋଟିଏ ଆଲମାରି, ଅଫିସ୍ ଘରେ ଗୋଟିଏ ଟେବୁଲ୍ ଓ ଦୁଇ ତିନୋଟି ଚୌକି, ଗୋଟିଏ ବଲ୍-ଫ୍ରେମ୍, ଗୋଟିଏ ଗ୍ଲୋବ୍, ପୃଥିବୀ,ଭାରତବର୍ଷ ଓ ପ୍ରଦେଶର ମାନଚିତ୍ର ।

**ଦୁଆତ**—ଉପରଶ୍ରେଣୀ ପିଲାମାନଙ୍କପାଇଁ ସ୍କୁଲ୍ ଦୁଆତ ଯୋଗାଇ ରଖିବା ଉଚିତ । ପିଲେ ଦୁଆତ ଓ ସିହାଇ ପାଇଁ ଖର୍ଚ୍ଚା ଦେବେ ବା ଶିକ୍ଷକଙ୍କ ତତ୍ତ୍ୱାବଧାନରେ ନିଜ ହାତରେ ସେ ସବୁ ତିଆରି କରି ନେବେ । ସ୍କୁଲ୍ ଛୁଟି ପରେ ମନିଟର୍‌ମାନେ ଦୁଆତଗୁଡ଼ିକୁ ଆଲମିରା ବା ବାଉଁଶ ଥାକରେ ସଜାଇ ରଖି ଯିବେ ।

**ବାଉଁଶର ଥାକ**— ସ୍ଲେଟ୍, ଦୁଆତ ପ୍ରଭୃତି ସକାଳା ରଖିବାପାଇଁ ପ୍ରତି ସ୍କୁଲ୍‌ରେ ବା ପ୍ରତି ଶ୍ରେଣୀ ପାଇଁ ବାଉଁଶର ଥାକ ରଖାଯିବା ଉଚିତ ।

**ନୋଟିସ୍ ବୋର୍ଡ଼**— ପ୍ରତି ସ୍କୁଲ୍‌ରେ ନିମ୍ନଲିଖିତ ନୋଟିସ୍ ବୋର୍ଡ଼ଗୁଡ଼ିକ ରଖାଯିବ :—

୧ । ଗୋଟିଏ, ଯହିଁରେ ସ୍କୁଲ୍‌ର ଟାଇମ୍ ଟେବୁଲ୍ ବା ରୁଟିନ, ସ୍କୁଲ୍‌ର ଛୁଟି-ତାଲିକା, ଗତ ପରୀକ୍ଷାରେ ରଖିଥିବା ପିଲାଙ୍କ ନମ୍ବର ଓ ମଝିରେ ମଝିରେ ଦିଆହେଉଥିବା ନୋଟିସ୍ ସବୁ ପାଇଁ ସ୍ଥାନ ଥିବ ।

୨ । **ସମ୍ମାନ-ପଟ**— ସ୍କୁଲ୍‌ର ଯେଉଁ ପିଲେ ପରେ ନାମ କରିଛନ୍ତି, କିମ୍ବା ଯେଉଁମାନେ ଗତ ପରୀକ୍ଷାରେ କୌଣସି ବିଷୟରେ ଅସାଧାରଣ ଦକ୍ଷତା ଦେଖାଇଛନ୍ତି, ତାହା ସବୁ ଏଇ ପଟରେ ପ୍ରକାଶିତ ରହିବ । ପ୍ରତି ସ୍କୁଲ୍‌ରୁ ଯେଉଁ ପିଲେ ପାସ୍ କରିଗଲେ ତାଙ୍କର ଏକ ରେକର୍ଡ଼ ରଖିବାକୁ ଚେଷ୍ଟା କରିବେ । ଏହାଦ୍ୱାରା ସ୍କୁଲ୍ ଓ ଛାତ୍ରମାନଙ୍କ ଭିତରେ ସମ୍ପର୍କ ସତେଜ ରହିବ ।

୩ । ଗୋଟିଏ ବୋର୍ଡ଼ ଭଳି ଜିନିଷ ଯେଉଁଥିରେ ସ୍କୁଲ୍‌ର ଦୈନନ୍ଦିନ ଉପସ୍ଥାନ ପ୍ରକାଶିତ ହେବ । ପ୍ରତି ଶ୍ରେଣୀ- ଶିକ୍ଷକ ଶ୍ରେଣୀର ଉପସ୍ଥାନଟି ପ୍ରତ୍ୟହ ସେଥିରେ ଲେଖିଦେବେ । ପ୍ରଧାନଶିକ୍ଷକ ସ୍କୁଲ୍ ଶେଷରେ ସବୁ ଶ୍ରେଣୀର ପିଲାଙ୍କୁ ଠିଆକରାଇ ସେଗୁଡ଼ିକ ଦେଖାଇଦେବେ ଓ ପ୍ରତିଦିନ ଯେଉଁ ଶ୍ରେଣୀର ଉପସ୍ଥାନ ଉଚ୍ଚତମ ଥିବ ତାକୁ ଶ୍ରେଣୀପତାକା ଉପହାର ଦେବେ । ଏହାଦ୍ୱାରା ପିଲେ ଉପସ୍ଥାନପାଇଁ ବରାବର ଆଗ୍ରହୀ ହେବେ ଓ ଶ୍ରେଣୀ-ଶ୍ରେଣୀ ଭିତରେ ନିର୍ଦ୍ଦୋଷ ପ୍ରତିଯୋଗିତା ଏଥିପାଇଁ ଲାଗିରହିବ ।

**ଦାୟିତ୍ୱ-ବିଭାଗ**—ପ୍ରାଇମେରୀ ସ୍କୁଲ୍‌ଟିଏ ଏଇ କ୍ରମରେ ଗଠନ ଓ ଉପକରଣଯୁକ୍ତ କରିବାରେ ଦାୟିତ୍ୱ ଏଇପରି ଭାବରେ ବିଭକ୍ତ ହେବା ମୋ ମତରେ ଯୁକ୍ତିଯୁକ୍ତ ହେବ —

**କର୍ତ୍ତୃପକ୍ଷଙ୍କ ଦାୟିତ୍ୱ** (ଅର୍ଥାତ୍ ସରକାର, ବୋର୍ଡ଼ ବା ପଞ୍ଚାୟତର) ୧ । ଚଟାଣ, ଡେସ୍କ, ୨ । କଳାପଟା (ଯଦିଭିତ୍ତି-ପଟା ନଥାଏ), ୩। ସ୍କୁଲ୍, ଚୌକିଓ ଟେବୁଲ୍, ୪ । ଆଲମାରି, ୫। ନୋଟିସ୍‌ବୋର୍ଡ଼ ସବୁ, ୬ । ସମୟ-ଘଣ୍ଟା ଓ ପିଟା-ଘଣ୍ଟା, ୭ । ପୃଥିବୀ, ଭାରତବର୍ଷ ଓ ପ୍ରଦେଶର ମାନଚିତ୍ର, ୮ । ଗ୍ଲୋବ୍, ୯ । ରେଜିଷ୍ଟରସବୁ, ୧୦ । ପାଠ୍ୟପୁସ୍ତକସବୁ, ୧୧ । ଲାଇବ୍ରେରି, ୧୨। ହୁଇସିଲ୍ ।

**ଗ୍ରାମବାସୀଙ୍କ ଦାୟତ୍ୱ**— ୧ । କୂପ ଖନନ ଓ ସ୍କୁଲ୍ ଘର ନିର୍ମାଣପାଇଁ ଅନ୍ତତଃ ଶ୍ରମାଂଶ ଦାନ, ୨ । ବାର୍ଷିକ ମରାମତି,୩। ଅଳିଆ କୁଣ୍ଡ ଓ ମଇଳାଖାତ, ୪ । ପାଇଖାନା ଓ ମୂତଖାନା ।

**ପିଲାଙ୍କ ଦାୟିତ୍ୱ**— ୧ । ଚଟାଇ ବା ଆସନ ସବୁ, ୨ । ହତାର ପରିଷ୍କୃତି, ୩। ସ୍କୁଲ୍ ବଗିଚା ଓ ସ୍କୁଲ୍‌ର ବାଡ଼, ୪ । ଦୁଆତ, ୫। ଇଟା ।

---

# ଶିକ୍ଷାରେ ପିତାମାତା ଓ ଅଭିଭାବକଙ୍କ ଦାୟିତ୍ୱ

(ସେହିମାନଙ୍କ ପ୍ରତି)

ବନ୍ଧୁଗଣ, ମନେରଖ ଗୃହହିଁ ଆମର ପ୍ରଥମ ବିଦ୍ୟାଳୟ । ଏ ବିଦ୍ୟାଳୟର ସିଲାବସ୍ କିନ୍ତୁ ପାଠପଢ଼ା ନୁହେଁ । ପିତାମାତାଙ୍କର ପ୍ରଧାନ ଦାୟିତ୍ୱ ହେଉଛି, ପୁତ୍ରକନ୍ୟାମାନଙ୍କର ଶରୀରକୁ ସୁସ୍ଥ ଓ ନୀରୋଗ ଏବଂ ମନକୁ ଆନନ୍ଦମୟ ରଖିବା ।

ଗୋଟିଏ ଗଛ, ଗୋଟିଏ ଲତାକୁ ବଢ଼େଇବା ଏବଂ ତାକୁ ପୁଷ୍ପ ଓ ଫଳବନ୍ତ କରିବା ପାଇଁ କି ଶ୍ରମ, ବୁଦ୍ଧି ଓ ପର୍ଯ୍ୟବେକ୍ଷଣ ଦରକାର ତାହା ନିଜର ଅନୁଭବରେ ଯଦି ଆସିନାହିଁ, କୌଣସି ମାଳୀ ବା ଚାଷୀକୁ ଯାଇ ପଚାର । ସେଇଥିରୁ ଅନୁମାନ କର, ମନୁଷ୍ୟ-ଗଛ ବା ମନୁଷ୍ୟ-ଲତାକୁ ବଢ଼େଇ ତାକୁ ପୁଷ୍ପଫଳଭୂଷିତ କରିବାପାଇଁ କଣ ଆବଶ୍ୟକ ହେବ ।

ଯେତୋଟି ପୁତ୍ରକନ୍ୟାଙ୍କୁ ସୁସ୍ଥ, ସ୍ୱଚ୍ଛନ୍ଦ, ଆନନ୍ଦମୟ ଭାବରେ ବଢ଼େଇ ପାରିବାର ଶକ୍ତି ଅଛି, ସେଇ ଅନୁସାରେ ନିଜର ବାସନା ଓ ଉପଭୋଗକୁ ସଂଯତ ଓ ନିୟନ୍ତ୍ରିତ କର । ଯେଉଁଠି ମାନବ ଜୀବନର ପରିପୂର୍ଣ୍ଣ ବିକାଶର ଅବକାଶ ବା ଆୟୋଜନ ନାହିଁ, ସେଠିକି ଗୋଟିଏ ନୂତନ ଜୀବନକୁ ଡାକିଆଣିବା ଏକ ଅକ୍ଷମଣୀୟ ଅପରାଧ ।

ମନୁଷ୍ୟଜୀବନ ଆଜି ଅତ୍ୟନ୍ତ ଜଟିଳ । ପୃଥିବୀର ଅର୍ଦ୍ଧାଧିକ ଲୋକ ଆଜି ଅଧା-ଉପାସରେ ବଞ୍ଚୁଛନ୍ତି । ଜନସଂଖ୍ୟା ହୁ-ହୁ ହୋଇ ବଢୁଛି । କିନ୍ତୁ ସେଇ ପରିମାଣରେ ଖାଦ୍ୟ ପୃଥିବୀରେ ନାହିଁ । ତା ଛଡ଼ା ଯନ୍ତ୍ରର ପ୍ରବର୍ତ୍ତନ ଫଳରେ କୋଟି କୋଟି ଲୋକ ବେକାର ହୋଇ ବସିରହୁଛନ୍ତି । ମରଣ ଆଜି ଅନେକଙ୍କ ପକ୍ଷରେ ଜୀବନଠାରୁ ପ୍ରୀତିକର ତେଣୁ ବିନା ବିଚାରରେ, ଅନ୍ଧଭାବରେ ଜୀବନର ସଂଖ୍ୟା ବଢ଼ାଇ ଚାଲନାହିଁ ।

ଏ ସମସ୍ୟା କିନ୍ତୁ ଆଜିର ନୁହେଁ—ଏହା ଚିରନ୍ତନ । ଓଡ଼ିଆ ରାମାୟଣରେ ଏକ ଗପ ଅଛି ଯେ, ଭକ୍ତ ବିଭୀଷଣ ଶ୍ରୀରାମଙ୍କୁ କେତୋଟି ବର ମାଗିଥିଲେ । ଗୋଟିଏ ହେଉଛି, ''ତାଙ୍କୁ ଯେପରି ବହୁକୁଟୁମ୍ବର ଅଭିଭାବକ ହେବାକୁ କେବେହେଲେ ନପଡ଼େ ।''

ଯେଉଁଠି ନୂତନ ଜୀବନର ଆଗମନ ଆଗରୁ ତାର ଉପଯୁକ୍ତ ଅଭ୍ୟର୍ଥନାପାଇଁ ସମସ୍ତ ବନ୍ଦୋବସ୍ତ କରାଯାଇଛି, ସେଇଠି, ଜାଣିବାକୁ ହେବ ଯେ, ଉତ୍କୃଷ୍ଟ ଶିକ୍ଷାର ମୂଳପତ୍ତନ ପଡ଼ିସାରିଛି ।

ଶିକ୍ଷାଦାନର ନାନା ପଦ୍ଧତି ଆଲୋଚିତ ହେଉଛି, କିନ୍ତୁ କୌଣସି ପଦ୍ଧତି ପିତାମାତାଙ୍କର ସ୍ନେହାଦର ପରି କାର୍ଯ୍ୟକାରୀ ନୁହେଁ ।

ସ୍କୁଲ୍ ଶିକ୍ଷକର ଶାସନ ଶିଶୁ ପକ୍ଷରେ ଦଣ୍ଡ, କିନ୍ତୁ ପିତାମାତାଙ୍କ ଶାସନ ସ୍ନେହର ରୂପାନ୍ତର ମାତ୍ର, ତେଣୁ ତାହା ଅଧିକ କାର୍ଯ୍ୟକାରୀ ।

ପୁତ୍ରକନ୍ୟାଙ୍କୁ ଏପରି ବଢ଼ାଅ ସେମାନେ ତାଙ୍କର ମନକଥା ତମ ଆଗରେ ଖୋଲି

କହିପାରିବେ । ସବୁବେଳେ ତାଙ୍କ ସ୍ତରକୁ ଯିବାକୁ ଚେଷ୍ଟାକର । କୌଣସି ଅନ୍ୟାୟ କାମ କରିବା ପୂର୍ବରୁ ପିଲାମାନେ ଯେପରି ଭାବିବେ, "ନା, ମୁଁ ଏହା କରିବିନାହିଁ । ଏହାଦ୍ୱାରା ବାପା ଦୁଃଖିତ ହେବେ, ମାଆଙ୍କ ମନରେ ଗଭୀର କଷ୍ଟ ହେବ ।"–ପିଲାଙ୍କୁ ଏଇପରି ସ୍ନେହାନୁବଦ୍ଧ ଭାବରେ ବଢ଼ାଇବାହିଁ ଉତ୍କୃଷ୍ଟ ଶାସନ । ଜନନୀର ସ୍ନେହ ଓ ପିତାର ମମତାଠାରୁ ଅଧିକ ବଳିଷ୍ଠ ନୈତିକ ପ୍ରଭାବ ପୃଥିବୀରେ ଦ୍ୱିତୀୟ ନାହିଁ ।

ଧନୀ ହୁଅ ବା ପଦସ୍ଥ ହୁଅ, ପୁତ୍ରକନ୍ୟାମାନଙ୍କୁ କିନ୍ତୁ ସାଧାରଣ ପିଲାଙ୍କ ପରି ବଢ଼ାଅ । ବାପା ମା'ଙ୍କ ସ୍ଥାନ ବା ଅର୍ଜନଜନିତ ଅହମିକା ପିଲାଙ୍କ ମୁଣ୍ଡରେ ଯେପରି ନପଶେ । ପିଲେ ନିଜ ଗୁଣ, ନିଜ ଶ୍ରମରେ ପରିଚିତ ହେବାକୁ ଯେପରି ସଚେଷ୍ଟ ହେବେ, ସେଇ ଭାବ ବରାବର ତାଙ୍କ ମନରେ ପୂରେଇବାର ଚେଷ୍ଟା କରିବ ।

ଯେଉଁ ସ୍କୁଲ୍‌ରେ ପିଲାଙ୍କୁ ଦେଇଛ ତାର ପ୍ରଧାନ ଓ ସହକାରୀ ଶିକ୍ଷକମାନଙ୍କ ସଙ୍ଗେ ନିଜ ପିଲାଙ୍କ ସମ୍ବନ୍ଧରେ ବ୍ୟକ୍ତିଗତ ବା ଡାକଦ୍ୱାରା ବରାବର ସମ୍ପର୍କ ରଖିବ । ଘରୁ ଯାଇ ପଢୁଥିଲେ ବରାବର ନଜର ଦେବ ଯେପରିକି ପିଲା ସ୍କୁଲ୍‌ର ରୁଟିନ୍ ଅନୁସାରେ ଦୈନିକ ପଢ଼ାଟି କରୁଛି । ମାଷ୍ଟ୍ରେ ନଥାନ୍ତୁ ବା ଥାନ୍ତୁ, ପଢ଼ା ଦିଆହୋଇଥାଉ ବା ନଥାଉ, ପିଲାଏ ପ୍ରତି ପିରିଅଡ୍‌ପାଇଁ କିଛି ପଛରୁ ଓ କିଛି ଆଗରୁ ନିଶ୍ଚୟ ପଢ଼ିଯାଇଥିବେ ଯେପରି । ଆଗରୁ କିଛି ପତ୍ର ପଢ଼ିଯାଇଥିଲେ କ୍ଲାସ୍‌ରେ ମାଷ୍ଟ୍ରେ ନୂଆପାଠ ପଢ଼ାଇଲାବେଳେ ବୁଝିବା ସହଜ ହେବ ଏବଂ ଯାହା ଶୁଣିବ ତାହା ପାସୋର ଯିବନି ।

ଦେଖିବ ଯେ, ପିଲେ ପ୍ରତ୍ୟହ ସକାଳେ ଓ ଉପରଓଳି ଘଣ୍ଟାଏ କରି ଅନ୍ତତଃ ଦୈହିକ ଫଳପ୍ରସୂ ଶ୍ରମ କରନ୍ତି । ସୂତାକଟା, ବଗିଚାକାମ କରେଇପାରିଲେ ଭଲ କଥା । ନଚେତ୍ ଘରଓଳା, ବାସନମଜା, ବଜାର କରିବା ପ୍ରଭୃତି କାମରେ ବୋଉଙ୍କୁ ସାହାଯ୍ୟ କରିବେ । ଏଥିରେ ପିଲାଙ୍କର ପ୍ରକୃତ ଅଭିଜ୍ଞତା ଆସେ ଓ ଶ୍ରମବିମୁଖତା କଟିଯାଏ ।

ମଝିରେ ମଝିରେ ପିଲାଙ୍କୁ ସ୍ୱାଧୀନଭାବରେ ଖର୍ଚ୍ଚ କରିବାପାଇଁ କିଛି କିଛି ପଇସା ଦେଉଥିବ । କିନ୍ତୁ ଆଖି ରଖିଥିବ, ସେମାନେ କିପରି ଖର୍ଚ୍ଚ କଲେ । ପିଲା ଯଦି ସେ ପଇସା ବହି କିଣିବାରେ ବା ଦାନରେ ବ୍ୟୟ କରିବାର ଜାଣିଲ, ସେଥିରେ ଆନନ୍ଦିତ ହେବାର ଅଛି । ସେଥିପାଇଁ ବରଂ ଉତ୍ସାହ ଦେବ । ପିଲାକୁ ବାଧକରି କୌଣସି ବିଷୟ ନେବାକୁ କହନି । ତାର ଶକ୍ତି ଓ ଇଚ୍ଛାନୁସାରେ ସେ କାର୍ଯ୍ୟକରୁ । ଏପରି କୌଣସି ବିଷୟ ଏତେ ହୀନ ନୁହେଁ, ଯେଉଁଥିରେ ପ୍ରକୃତରେ ଦକ୍ଷ ଲୋକପାଇଁ ଏ ଜଗତରେ ସ୍ଥାନ ନାହିଁ ।

ପିଲା କାହିଁକି କ୍ଲାସ୍‌ରେ ଭଲ କରିପାରୁନି,ତାର କାରଣ ଅନୁସନ୍ଧାନ କରି ତାର ପ୍ରତିକାର କର । କମ୍ ନମ୍ବର ସତ୍ତ୍ୱେ ମାଷ୍ଟ୍ରଙ୍କୁ କୁହାବୋଲା କରି ପ୍ରମୋଶନ୍ ଚେଷ୍ଟା କରିବା ତମର ନିଜର ପିଲାପିଲିଙ୍କ ପ୍ରତିହିଁ ଅନ୍ୟାୟ ଓ ଅତ୍ୟାଚାର । ତାହାଦ୍ୱାରା ତାର ଦୁର୍ବଳତା ତ ଘୁଞ୍ଚିଗଲା ନାହିଁ, ବରଂ ଦେଖୁଛ ଯଦି ପିଲା ପ୍ରକୃତରେ ଦୁର୍ବଳ ତାକୁ ଜାଣିଜାଣି ଗୋଟାଏ କ୍ଲାସ୍‌ରେ ଦୁଇବର୍ଷ ରଖାଇଦିଅ – ଫଳ ନିଶ୍ଚୟ ଭଲ ହେବ ।

ପିଲାଙ୍କୁ ପ୍ରତ୍ୟହ ବ୍ୟାୟାମ କରିବାକୁ ପ୍ରବର୍ତ୍ତେଇବ । ଏପରି ଅଭ୍ୟାସସବୁ କରେଇବ, ଯେପରିକି କୋଷ୍ଠବଦ୍ଧତା ତାଙ୍କର ଆଦୌ ରହିବ ନାହିଁ ଏବଂ ତାର ନିରାକରଣପାଇଁ ସେମାନେ

ନିଜେ ଚେଷ୍ଟା କରିବେ । ମଝିରେ ମଝିରେ ଉପାସ ରହିବାର ଅଭ୍ୟାସ ଶିଖେଇବ—ବିଶେଷତଃ ଦେହ ଅସୁସ୍ଥ ବୋଧ ହେବାମାତ୍ରେ ଖାଦ୍ୟ ନିୟନ୍ତ୍ରଣ କରିବାର ଅଭ୍ୟାସ ଯେପରି ଥାଏ ।

କୌଣସି ଅପରିଚିତ ଲୋକସାଥିରେ ପିଲାଙ୍କୁ ଛାଡ଼ିବ ନାହିଁ, ସନ୍ଧ୍ୟା ପୂର୍ବରୁ ସେମାନେ ନିଶ୍ଚୟ ଯେପରି ଘରକୁ ଫେରିବେ । ଲୁଗା ଅପେକ୍ଷା ସେମାନଙ୍କୁ ହାଫ୍‌ପାଣ୍ଟ୍ ଓ ହାଫ୍‌ସାର୍ଟରେ ଅଭ୍ୟସ୍ତ କରେଇବା ଉଚିତ।

ପିଲାଙ୍କ ବିବାହପାଇଁ ତମର ଚିନ୍ତାକରିବାର କୌଣସି କାରଣ ନାହିଁ । ଏହା ସେମାନେ ନିଜେ କରିବେ । ତମର ଏକମାତ୍ର ଦାୟିତ୍ୱ ତାଙ୍କୁ ଉତ୍କୃଷ୍ଟ ଶିକ୍ଷାଦେବା । ଝିଅ, ପୁଅର କୌଣସି ପ୍ରଭେଦ ରଖନାହିଁ । ଝିଅକୁ ମଧ୍ୟ ସ୍ୱାଧୀନବୃତ୍ତିରେ ବଞ୍ଚିବ ଯେପରି ସେଇପରି ବଢ଼ାଅ । ଅଳ୍ପ ବୟସ ବେଳୁ ଆମ ଦେଶରେ ପିଲାଙ୍କ ଆଗରେ ବିବାହ କଥା ପକାଇ ପକାଇ ତାଙ୍କ ମନୋବୃତ୍ତିକୁ ବିକଳ କରିପକାଉଁ । ପିଲାଙ୍କ ଆଗରେ ସେମାନଙ୍କ ବିବାହ ପ୍ରସଙ୍ଗ ଆଦୌ ପକାଇବ ନାହିଁ । କିନ୍ତୁ ସେମାନଙ୍କୁ ଏପରି ବଢ଼ାଇଥିବ, ଯେପରିକି ବିବାହ ବୟସ ଓ ସୁଯୋଗ ଆସିଲେ, ସେମାନେ ତାଙ୍କ ମନର କଥା ତମ ଆଗରେ ଖୋଲି କହିପାରିବେ ।

ମାନବିକତା, ଚରିତ୍ର, ସାଧୁତା, କର୍ତ୍ତବ୍ୟପରାୟଣତାରେ ସନ୍ତତିଙ୍କର ଆଦର୍ଶ ହୁଅ । ଏହାହିଁ ସେମାନଙ୍କପାଇଁ ତମର ଶ୍ରେଷ୍ଠ ଦାୟ—ନୁହେଁ ବ୍ୟାଙ୍କ୍ ଆକାଉଣ୍ଟ୍, ନୁହେଁ ମହାଜନୀ ବା ଜମିଦାରୀ ।

ଶେଷରେ ଭୁଲିଯିବନି ଯେ ଭାରତୀୟ ସଂସ୍କୃତି ଅନୁସାରେ ଗୃହ ମଧ୍ୟ ଏକ ଆଶ୍ରମ । ଘର ମଧ୍ୟ ଯେପରି ଆଧ୍ୟାତ୍ମିକ ଅନୁଶୀଳନର ଉପଯୁକ୍ତ ପୀଠ ହୁଏ, ସେଥିପ୍ରତି ଦୃଷ୍ଟି ରଖ । ଆମ୍ଭେମାନେ ବିଷୟର ଚର୍ଚ୍ଚା କରିବା ବଞ୍ଚିବାପାଇଁ, କିନ୍ତୁ ବିଷୟୀ ହେବାନାହିଁ । ନିଜର ଅହମିକାକୁ ଏତେ ବଡ଼ ସ୍ଥାନ ଦେବନାହିଁ, ଯେପରିକି ଯାହାଙ୍କଠାରୁ ଏହି ସମଗ୍ର ଜଗତ୍ ଆସିଛି, ଯାହାଙ୍କଦ୍ୱାରା ପାଳିତ ହେଉଛି ଏବଂ ପୁଣି ଯାହାଙ୍କଠାରେ ଲୀନ ହେବ, ତାହାଙ୍କୁ ସମଗ୍ରଭାବରେ ଭୁଲିଯିବା । ଅନନ୍ତର ସ୍ପର୍ଶ ବ୍ୟତିରେକେ ସାନ୍ତର କୌଣସି ମୂଲ୍ୟ ନାହିଁ । ପିଲେ ତାଙ୍କ କର୍ମ ଓ ମନନରେ ସେଇ କଲ୍ୟାଣମୟ ସମ୍ପର୍କଟିକୁ ଯେପରି ଅନ୍ତତଃ ପ୍ରତ୍ୟହ ସ୍ମରଣ ରଖନ୍ତି ତାହାର ବ୍ୟବସ୍ଥା କରିବ ।

ସର୍ବେ ଭବନ୍ତୁ ସୁଖିନଃ...

---

# ଶିକ୍ଷାର କି, କ'ଣ ଓ କାହିଁକି

## ଭୂମିକା

ଭିନ୍ନ ଭିନ୍ନ ସମୟରେ ଶିକ୍ଷା ସମ୍ପର୍କରେ ମୁଁ ଯାହା ଆଲୋଚନା କରି ଲେଖିଥିଲି, ତାହାହିଁ ବର୍ତ୍ତମାନ 'ଶିକ୍ଷାର କି, କ'ଣ ଓ କାହିଁକି' ନାମରେ ପୁସ୍ତକାକାରରେ ପ୍ରକାଶିତ ହେଲା । ଏଥିରେ ଶିକ୍ଷାର ମୌଳିକ ଜିଜ୍ଞାସା ସବୁ ଆଲୋଚିତ ହେବା ସାଥେ ସାଥେ, ପ୍ରାଇମେରୀ ଓ ସେକେଣ୍ଡାରୀ ଶିକ୍ଷା, ଶିକ୍ଷକର ସ୍ଥାନ, ମର୍ଯ୍ୟାଦା ଓ ଦାୟିତ୍ୱ ଏବଂ ବେସିକ୍ ପଦ୍ଧତିର ଆଲୋଚନା ମଧ୍ୟ ହୋଇଛି । ଆଶାକରେ ଓଡ଼ିଶାର ସାଧାରଣ ପାଠକ ଓ ଶିକ୍ଷକ ଏ ପୁସ୍ତକ ପାଠରେ ଉପକୃତ ହେବେ । ଇତି ।

କଟକ

ତା ୮ । ୯ । ୬୦ — ମାୟାଧର ମାନସିଂହ

# ଶିକ୍ଷାର କି, କ'ଣ ଓ କାହିଁକି

ଅଭିଭାବକ– ଗୁରୁଜି, ମଣିଷ ପିଲାଙ୍କୁ ଇସ୍କୁଲ୍‌ରେ ନେଇ ଭର୍ତ୍ତିକରିବାର କି ବିଶେଷ ଦରକାର ? ଆମ ଦେଶରେ କୋଟି କୋଟି ଲୋକ ସମ୍ପୂର୍ଣ୍ଣ ନିରକ୍ଷର ରହି ବେଶ୍ ତ ଭଲରେ ଅଛନ୍ତି – ତେବେ 'ଶିକ୍ଷା' ନେଇ ଏତେ ଚହଳ, ଚିତ୍କାର କାହିଁକି ?

ଗୁରୁଜୀ– ଅନେକ ଲୋକ ବିନା ଅକ୍ଷର ଜ୍ଞାନରେ ବେଶ୍ ଭଲ ଜୀବନଯାପନ କରିପାରନ୍ତି – ତାହା ମୁଁ ମାନୁଛି । କିନ୍ତୁ ମୂର୍ଖ ଲୋକ ଯେପରି ବଞ୍ଚୁଛି, ସେ ଶିକ୍ଷିତ ହୋଇଥିଲେ ତା'ଠାରୁ ଉତ୍ତମତର ଜୀବନଯାପନ କରନ୍ତା ବୋଲି ବିଶ୍ୱାସ କରିବାନାହିଁ କି ? ଜଣେ ଜାପାନୀ ଚାଷୀ ଓ ଓଡ଼ିଶୀ ଚାଷୀ ଭିତରେ ପ୍ରଭେଦ, କେବଳ ବୁଦ୍ଧି ବା ଧନର ପ୍ରଭେଦ ଆଦୌ ନୁହେଁ । ପ୍ରଭେଦ କେବଳ ଶିକ୍ଷାର, ଯାହା ଯୋଗୁଁ ଓଡ଼ିଆ ଚଷା ଅପେକ୍ଷା ଜାପାନର ଚଷା ନିଶ୍ଚିତଭାବରେ ସୁନ୍ଦରତର ଓ ସଭ୍ୟତର ଜୀବନଯାପନ କରିଥାଏ । ଶିକ୍ଷା ମନୁଷ୍ୟର ଅନ୍ତର୍ନିହିତ ସକଳ ଉତ୍କର୍ଷକୁ ବିକଶିତ କରିବାର ଆଶା କରାଯାଏ । ଶିକ୍ଷା ମନୁଷ୍ୟ ପିଲାର ମନ ଓ ଦେହକୁ ବୈଜ୍ଞାନିକ ପ୍ରଣାଳୀରେ ତାଲିମ୍ କରିନେବାର ଓ ମୁନଷ୍ୟ ସଂସ୍କୃତିର ସର୍ବୋତ୍କୃଷ୍ଟ ଉପାଦାନ ଦେଇ ପରିପୁଷ୍ଟ କରିବାର ଆଶା କରାଯାଏ । ଗୋଟିଏ ଅନାବାଦି ଜମିର ଦୃଷ୍ଟାନ୍ତ ଧରାଯାଉ । ଏଇ ପଡ଼ିଆ ଜମିଟାରେ ବି ତ କିଛି ନା କିଛି ଫସଲ ଉଠାଯାଇପାରିବ । ସେହିପରି ନିରକ୍ଷର ଲୋକ ବି ଏକପ୍ରକାରେ ଜୀବନଟା କଟାଇନିଏ । କିନ୍ତୁ ଜଣେ ଶିକ୍ଷିତ କୃଷକ ଆସି ସେହି ଜମିଟାକୁ ବୈଜ୍ଞାନିକ ପ୍ରଣାଳୀରେ ଚାଷକରି ତାକୁ ଗୋଟିଏ ସୁନ୍ଦର ଓ ଲାଭଜନକ ଉଦ୍ୟାନରେ ପରିଣତ କରିଦେବ । ଅଶିକ୍ଷିତ ଲୋକକୁ ପଡ଼ିଆ ଭୂଇଁ ଓ ଶିକ୍ଷିତ ଲୋକକୁ ସୁନ୍ଦର ଓ ଲାଭଜନକ ଉଦ୍ୟାନ ସହିତ ତୁଳନା କରାଯାଇପାରେ ।

ଅଭିଭାବକ–କିନ୍ତୁ ସତ୍ୟକଥା କହି ବସିଲେ, ମୁଁ ତ ଅଧିକାଂଶ ତଥାକଥିତ ଶିକ୍ଷିତ ଓ ଅଧିକାଂଶ ଅଶିକ୍ଷିତ ଗ୍ରାମବାସୀ ଓ ଶ୍ରମିକମାନଙ୍କ ମଧ୍ୟରେ ବିଶେଷ କିଛି ମୌଳିକ ପ୍ରଭେଦ ଦେଖିପାରୁନି । ଶିକ୍ଷିତ ଲୋକେ ଖାଲି ବେଶି ରୋଜଗାର କରିବାରୁ ସିନା ଭଲ ଘରେ ରହନ୍ତି, ସଫାଲୁଗା ପିନ୍ଧନ୍ତି – ଏତିକି ମାତ୍ର ପ୍ରଭେଦ । କିନ୍ତୁ ସେମାନଙ୍କର ଜୀବନାଦର୍ଶ, ନିରକ୍ଷର ଲୋକର ଜୀବନାଦର୍ଶଠାରୁ କୌଣସି ଗୁଣରେ ତ ମହତ୍ତର ନୁହେଁ । ଦୁହେଁ ମୂଳତଃ ଏକାପରି ବଞ୍ଚି, ଅର୍ଥାତ୍ ପିଲାଝିଲା କରି, ଠିକ୍ ଏକାପରି ମରନ୍ତି । ଅନ୍ୟପକ୍ଷରେ ଅନେକ ନିରକ୍ଷର ଲୋକ ଅନେକ ଶିକ୍ଷିତ ଲୋକଠାରୁ ଧନ ଓ ଧାର୍ମିକତାରେ ବହୁ ଉଚ୍ଚରେ ।

ଗୁରୁଜୀ– ଏ ଦେଶରେ ତାହା ଯେ ଅନେକ ପରିମାଣରେ ସତ୍ୟ, ତାହା ଗଭୀର ପରିତାପର ସହିତ ଆମକୁ ମାନିବାକୁ ହେଉଛି । ଆଲୋକିତ ମନୁଷ୍ୟତା ଏ ଦେଶରେ ଆଜି ଶିକ୍ଷାର ଲକ୍ଷ୍ୟ ନୁହେଁ – ଅର୍ଥ, ଅଧିକାର ଓ ପ୍ରଭାବହିଁ ଆଜି ଏ ଦେଶରେ ଶିକ୍ଷାର ଲକ୍ଷ୍ୟ । ଏହି ଲକ୍ଷ୍ୟ ଯେଉଁ ଶିକ୍ଷା ବ୍ୟବସ୍ଥାର, ତାହା ଯେକୌଣସି ଦେଶପକ୍ଷରେ ଘୋର ଅପକାରକ, ଏଥିରେ ସନ୍ଦେହ

ନାହିଁ । ଏପରି ଶିକ୍ଷା ବ୍ୟବସ୍ଥା ମୁଷ୍ଟିମେୟ କେତୋଟିଙ୍କୁ ପଦାଧିକାରରେ ନେଇ ଥୋଇପାରେ, କିନ୍ତୁ ସମଗ୍ର ଜାତିର ଶରୀରରେ ଏହା ବିଷପରିହିଁ କାମ କରିବ । ଯଦି ଆମ ଦେଶର ପ୍ରାଚୀନ ସଂସ୍କୃତି ଅନୁଯାୟୀ ଆମ ଦେଶକୁ ଆଜି ପୁନର୍ଗଠିତ କରିବାର ଇଚ୍ଛା ଆମର ଥାଏ, ତେବେ କେବଳ ପାଶ୍ଚାତ୍ୟ ସଭ୍ୟତାର କେତେଟା ଅଗୌଣ ଅଂଶକୁ ବିନା ଚିନ୍ତାରେ ବରି ନ ନେଇ, ଆମକୁ ଆମର ନିଜର ପ୍ରୟୋଜନ, ପାରିପାର୍ଶ୍ୱିକତା ଓ ସାଂସ୍କୃତିକ ପରମ୍ପରା ଅନୁସାରେ ଆମର ଶିକ୍ଷା ବ୍ୟବସ୍ଥାରେ ସଂସ୍କାର ଓ ବିପ୍ଳବ ଆଣିବାକୁ ହେବ ।

ଅଭିଭାବକ– କିନ୍ତୁ ତମେ ଯେପ୍ରକାର ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ କର ପଛେ, ଶିକ୍ଷାର ଖର୍ଚ୍ଚ କମାଅ ତ, ବାବୁ । ମୋଟା ଦରମାର ଶିକ୍ଷକ, ଏତେ ଏତେ ଟଙ୍କାର କିତାବପତ୍ର, ପୁଣି ବ୍ୟୟବହୁଳ କୋଠାଘର ସବୁ ନ ହେଲେ କି ମଣିଷ ଶିକ୍ଷିତ ହୋଇ ନ ପାରେ ?

ଗୁରୁଜୀ- ଏସବୁ ଆୟୋଜନ ଦରକାର ଆଜ୍ଞା, କିନ୍ତୁ ଏକାବେଳକେ ଯେ ନ ହେବ ଏପରି ନୁହେ । ଏବେ ଗ୍ରୀକ୍ ଦାର୍ଶନିକ ପ୍ଲେଟୋଙ୍କ ବହି ବିଶ୍ୱବିଦ୍ୟାଳୟର ପ୍ରାସାଦମାନଙ୍କରେ ପଢ଼ାଯାଉଛି, କିନ୍ତୁ ପ୍ଲେଟୋ ନିଜେ ଗୋଟିଏ ତୋଟାରେ ଅଧ୍ୟାପନା କରୁଥିଲେ । ଭାରତର ଶ୍ରେଷ୍ଠ ମାନସିକ କୃତି ସମୂହ, ଅରଣ୍ୟ ଛାୟା ତଳେ, ଦୀନ କୁଟୀରରେ ଜନ୍ମ ଲାଭ କରିଛି ଓ ବଢ଼ିଛି । ତେଣୁ ବ୍ୟୟସାଧ୍ୟ କୋଠାବାଡ଼ି ଏକାନ୍ତ ଅପରିହାର୍ଯ୍ୟ ନୁହେଁ । କିନ୍ତୁ ଦୁର୍ଭାଗ୍ୟ ଏଇ ଯେ, ଆଜି ଆମେ ଶିକ୍ଷା ନାମରେ କୋଠାବାଡ଼ିକିହିଁ ବୁଝୁଛୁ । କୌଣସି ଗୋଟିଏ ବିଦ୍ୟାନୁଷ୍ଠାନ ପ୍ରତିଷ୍ଠା କରିବାକୁ ବସିଲେ ଆମ ଦେଶରେ ଆଗେ ଗୁରୁ; ଯେ କି ଶିକ୍ଷାର ପ୍ରକୃତ ଉତ୍ସ, ତାଙ୍କୁ ଖୋଜି, ଆମେ କୋଠାବାଡ଼ିର ଆୟୋଜନରେ ଆଗେ ଲାଗିପଡୁ । କୋଠାବାଡ଼ି ଠିଆହେଲା ପରେ ଯାଇ, ବଜାରରେ ଯେପରି ମିଳିଲା ସେପରି ଗୁରୁକୁ ଗୋଟାଇଆଣୁ ଓ ବିଦ୍ୟାଳୟର ନାନା ଦ୍ରବ୍ୟ ଭିତରେ ସେ ଗୋଟାଏ ଦ୍ରବ୍ୟ ପରି ମାତ୍ର ଆମେ ତାଙ୍କ ପ୍ରତି ବ୍ୟବହାର କରୁଁ । ଯେଉଁ ଦେଶରେ ଗୁରୁହିଁ ଥିଲା ବିଦ୍ୟାନୁଷ୍ଠାନ, ଆଜି ସେଠାରେ ଏଇ ଅବସ୍ଥା ଦେଖିଲେ ଘୋର ଲଜ୍ଜିତ ହେବାକୁ ହୁଏ । କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କରେ ଏବେ ବି ଭାରତୀୟ ଆଦର୍ଶହିଁ ଶିକ୍ଷାକୁ ଚାଳିତ କରେ । କୋଠା-କୈନ୍ଦ୍ରିକ ବା ସାର୍ଟିଫିକେଟ୍-କୈନ୍ଦ୍ରିକ ଶିକ୍ଷା ସେଠି ନାହିଁ । ସେଠି ଏ ପର୍ଯ୍ୟନ୍ତ ଶିକ୍ଷା ଗୁରୁକୈନ୍ଦ୍ରିକ ଓ ଜ୍ଞାନାଭିମୁଖୀ । ଆମେ ତାଙ୍କୁ ଅନୁକରଣ କରିଛୁ, କିନ୍ତୁ କେବଳ ବାହାରଟା ମାତ୍ର, କେବଳ ଇଟାକାଠର ଛାଁଚଟା । ମୂଳ ଆଦର୍ଶଟାକୁ ଆମେ ଜାଣି ଜାଣି ଯେପରି ଭୟରେ ସ୍ପର୍ଶ କରୁନା, କାରଣ ସେ ଆଦର୍ଶରେ ସାର୍ଟିଫିକେଟ୍ କେତେଜଣଙ୍କୁ ମିଳିବ ?

ପୁଣି, ବିନା ବହିରେ ବି ଚମତ୍କାର ଶିକ୍ଷା ମିଳିପାରେ । କୋଣାର୍କର ଶିଳ୍ପକଳା ପୃଥିବୀର ସବୁ ପ୍ରାନ୍ତର ଦର୍ଶକଙ୍କୁ ବିସ୍ମିତ କରୁଛି । କିନ୍ତୁ ଯେଉଁ ପଥୁରିଆମାନେ ତାକୁ ଗଢ଼ିଥିଲେ, କେତେ ଜଣ ସେଥିରୁ ପାଠ ପଢ଼ିଥିବେ ? ଯଦି ଇଞ୍ଜିନିୟରିଂ ଓ ସ୍ଥାପତ୍ୟର ଏ ପ୍ରକାର ଉଚ୍ଚ-କୋଟି ଦକ୍ଷତା ନିରକ୍ଷର ବ୍ୟକ୍ତିତ୍ୱ ଭିତରେ ଫୁଟିପାରେ, ତେବେ ଏବେ ଶିକ୍ଷା କହିଲେ ଗୁଡ଼ାଏ ବହି ମୁଖସ୍ଥ କରିବା ମାତ୍ର ଯାହା ବୁଝାଉଛି, ତାହା ଆମର ଚିନ୍ତା-ଶକ୍ତିର ଘୋର ଦୈନ୍ୟହିଁ ସୂଚନା ଦେଉଛି । ଯେଉଁମାନେ କେବଳ ଡିଗ୍ରୀ ଓ ସାର୍ଟିଫିକେଟ୍କୁ ମନୁଷ୍ୟତାର ପରିମାପକ ବୋଲି ଧରୁଛନ୍ତି ସେମାନେ ବୋଧହୁଏ ଭୁଲିଯାଉଛନ୍ତି ଯେ, ପୃଥିବୀ ଇତିହାସର କେତେକ ଶ୍ରେଷ୍ଠ ବ୍ୟକ୍ତି ଆଦୌ ଅକ୍ଷର କ'ଣ ଜାଣିନଥିଲେ । ମହମ୍ମଦ, ରାମକୃଷ୍ଣ, ଶିବାଜୀ, ଆକବର ପ୍ରଭୃତି ଏକାବେଳକେ ନିରକ୍ଷର ଥିଲେ ।

ଅଭିଭାବକ— ତା' ହେଲେ, ତମର କଳ୍ପିତ ଶିକ୍ଷା ବ୍ୟବସ୍ଥାରେ କୋଠାବାଡ଼ି ଓ ପୁସ୍ତକର ଅତ୍ୟାଚାର ଆଦୌ ରହିବନାହିଁ ବୋଲି ମୁଁ ଆଶା କରେ ।

ଗୁରୁଜୀ— ନା ନା, ସେସବୁହିଁ ରହିବ । ବହି ବା କୋଠାଘର ମାତ୍ରେଇ ମନ୍ଦ ନୁହନ୍ତି । ଆମେ ସେସବୁକୁ ଯେଉଁ ଦୃଷ୍ଟିରେ ଗ୍ରହଣ କରୁ ଓ ଯେପରିଭାବରେ କାମରେ ଲଗାଉ,ସେଗୁଡ଼ିକର ପ୍ରଭାବ, ତାରି ଉପରେ ନିର୍ଭର କରେ । ପିଲେ ଯେଉଁ ପରିସ୍ଥିତିରେ ବଢ଼ିଆସିଛନ୍ତି, ଯେଉଁ ଘରେ ତାଙ୍କର ପିତାମାତା ବସବାସ କରନ୍ତି ଓ ଯେଉଁ ଘରକୁ ପିଲେ, ପଢ଼ା ଶେଷହେଲା ପରେ ଫେରିଯିବେ, ସ୍କୁଲ୍‌ର କୋଠାବାଡ଼ି ସବୁ ସେ ସବୁଠାରୁ ଏକାବେଳକେ, ମୂଲ୍ୟରେ ବା ପ୍ରକାରରେ ଭିନ୍ନ ଦେବା ଉଚିତ ନୁହେଁ । ବିଶ୍ୱବିଦ୍ୟାଳୟର ସୁଖକର ଜୀବନ, ଅଧିକାଂଶ ଶିକ୍ଷିତ ଯୁବକଙ୍କ ଚିତ୍ତରେ, ପରେ ଘୋର ଅସନ୍ତୋଷ ଜାଗ୍ରତ କରେ, କାରଣ ତାଙ୍କର 'ପରେ' ତାଙ୍କର 'ପୂର୍ବ'ଠାରୁ ଭିନ୍ନ ପଡ଼େ । ଭାରତବର୍ଷର ସୁପ୍ରାଚୀନ ଐତିହ୍ୟ ହେଉଛି ସରଳ ଜୀବନରେ ହିଁ ଉଚ୍ଚଚିନ୍ତା । ତେଣୁ ଏହି ଦରିଦ୍ର ଦେଶର ଛାତ୍ର ଓ ଶିକ୍ଷକମାନେ ପ୍ରାଚୀନ ଗ୍ରୀକ୍ ରାଜ୍ୟ ସ୍ପାର୍ଟାର ଶିକ୍ଷକ ଓ ଛାତ୍ର ପରି ସରଳ କଠୋର ଜୀବନରେ ହିଁ ଅଭ୍ୟସ୍ତ ରହିବା ଉଚିତ । ସମଗ୍ର ଏସିଆରେ ଜାପାନୀମାନେ ନିପୁଣତମ, ଦକ୍ଷତମ ଜାତିବୋଲି ଗୃହୀତ । ଧାନଚାଷଠାରୁ ଜାହାଜ ନିର୍ମାଣ ପର୍ଯ୍ୟନ୍ତ, ଜାପାନୀମାନଙ୍କର ଦକ୍ଷତା ଆଜି ବିଶ୍ୱ-ବିଖ୍ୟାତ । ଏମାନଙ୍କର ଏଇ ନିପୁଣତାର ଉତ୍ସ ହେଉଛି, ଏମାନଙ୍କର ଛାତ୍ର ଜୀବନରେ କଠୋର ଜୀବନଯାପନ ଓ ଅତି କଠିନ ପରୀକ୍ଷାର ସମ୍ମୁଖୀନ ହେବାର ଅଭ୍ୟାସ । ଯୌବନରେ ସୁଖ ଓ ବିଳାସର ଲାଳସା ଓ ଜୀବନକୁ ଶସ୍ତା ଓ ସହଜଭାବରେ ପାଇବାର ପ୍ରୟାସ, ଯେକୌଣସି ଜାତିର ଚାରିତ୍ରିକ ମେରୁଦଣ୍ଡକୁ ଯେ ପୋକଡ଼ା କରିଦେବ ଏଥିରେ ସନ୍ଦେହ ନାହିଁ ।

ହିନ୍ଦୁମାନେ ପୋଥିକି ପୂଜା କରନ୍ତି । ମାନବିକ ଜ୍ଞାନର ଆଧାର ରୂପେ ପୁସ୍ତକ ଆମର ପ୍ରକୃତରେ ନମସ୍ୟ । ତେଣୁ ପୁସ୍ତକର ଅତ୍ୟାଚାରରେ ଆଜି ଯେ ଛାତ୍ର ଆମ ଦେଶରେ ଅଭିଭୂତ, ଏହା ବହିର ଦୋଷ ନୁହେଁ । ଦଶବାରଟି ବହି ଖାଲି ଶୁଆପରି ମୁଖସ୍ଥ କରିପାରିଲେ, ଆମେ ବି.ଏ. ,ଏମ.ଏ. ଉପାଧି ବିତରଣ କରିଦେଉଛୁ । ଏହା ହାସ୍ୟକର କଥା । ପ୍ରକୃତ ଶିକ୍ଷା ମନୁଷ୍ୟର ଅନ୍ତରର କଥା,ବାହାରର ନୁହେଁ । ଜଣେ ମନୁଷ୍ୟର ବୁଦ୍ଧି ଓ ଚିନ୍ତା, ଜୀବନର ସମସ୍ୟାଗୁଡ଼ିକୁ ସମ୍ଭାଳିବାପାଇଁ କିପରି ସେ ତାଲିମ ପାଇଛି, ତାର ଶୈଶବ ଓ କୌମାରର ଜାନ୍ତବ ପ୍ରବୃତ୍ତି ସବୁକୁ କିପରି ଭାବରେ କ୍ରମେ କ୍ରମେ ଶିକ୍ଷିତ ଓ ଦୀକ୍ଷିତ ହୋଇ ସଭ୍ୟ, ଭବ୍ୟ, ପବିତ୍ର, ଉନ୍ନତ ମାନବିକ ବ୍ୟକ୍ତିତ୍ୱରେ ପରିଣତ କରାଯାଇଛି, ପୁଣି ସେହ ବ୍ୟକ୍ତିତ୍ୱ ଏପରିଭାବରେ ତାଲିମ୍ ପାଇଛି ଯେ, ଯେକୌଣସିଠାରେ ଅବସ୍ଥିତ ହେଲେ ମଧ୍ୟ, ଅନ୍ୟ ଉପରେ ଭାର ନହୋଇ, ତାହା ନିଜର ଅନ୍ନର ଆୟୋଜନ କରିପାରିବ,—ଯଦି ସ୍କୁଲ୍ କଲେଜର ପୁସ୍ତକଗୁଡ଼ିକ ସେହି ଜଣକୁ ଏଇ ଶିକ୍ଷା ଦେଇପାରିନାହିଁ, ତେବେ ସେସବୁ ତାର ମସ୍ତିଷ୍କ ଉପରେ ଅଦରକାରୀ ମଇଳା ଭାର ଛଡ଼ା ଆଉ କିଛି ନୁହେଁ ବୋଲି ଧରାଯିବାର କଥା । ଅନାବଶ୍ୟକ ଭାର-ରୂପୀ ସେହି ପୁସ୍ତକ-ଜ୍ଞାନ ସେ ଲୋକ ସଂଗ୍ରହ ନ କରିଥିଲେ ବରଂ ତାର ଢେର୍ ଉପକାର ହୋଇଥାନ୍ତା ।

ଅଭିଭାବକ– ତମର ଏଇ ଶିକ୍ଷାର ଆଦର୍ଶ ବେଶ୍ ପ୍ରଶଂସନୀୟ । କିନ୍ତୁ ଦେଖନ୍ତୁ, ଗାଁଜ ନିରକ୍ଷର ଲୋକେ କୌଣସିମତେ ଜୀବିକାର୍ଜନ କରି, ବିଭାଚୂଡ଼ା ହୋଇ ଜୀବନୋପଭୋଗ କରୁଛନ୍ତି, କିନ୍ତୁ ତଥାକଥିତ ଶିକ୍ଷିତ ଲୋକହିଁ ବଞ୍ଚିବାଟା କଷ୍ଟକର ମଣୁଛନ୍ତି ଏବଂ କୌଣସିମତେ ଜୀବିକାର ଯୋଗାଡ଼ କଲେ ମଧ, ସାଧାରଣତଃ ନିରାନନ୍ଦ ଜଞ୍ଜାଳମୟ ଜୀବନଯାପନ କରନ୍ତି । ତମର ଆଦର୍ଶ ଶିକ୍ଷା କେବଳ ହୁଏତ ପୋଥି ପାଠ । କିନ୍ତୁ ଜନତା ଉପରେ ଏହାର କାର୍ଯ୍ୟ ଠିକ୍ ଆଦାମ୍ ଓ ଇଭ୍ ଉପରେ ଜ୍ଞାନ-ବୃକ୍ଷର ଫଳର କାର୍ଯ୍ୟ ପରି ବୋଧହେଉଛି ।

ଗୁରୁଜୀ– ତମେ ଯାହା କହୁଛ ମୁଁ ତାର ପ୍ରତିବାଦ କରିପାରୁନାହିଁ – ତାହା ଅନେକ ପରିମାଣରେ ସତ୍ୟ । ସମସ୍ୟା ଏହି ଯେ, ଯେଉଁମାନେ ସ୍କୁଲ୍-କଲେଜକୁ ଆସୁଛନ୍ତି, ସେମାନଙ୍କ ଭିତରୁ ଅଧିକାଂଶ ଯଥାର୍ଥ ଯୋଗ୍ୟତା ନଥିଲେ ମଧ ବହୁତ କିଛି ଆଶା କରି ଦୌଡ଼ୁଛନ୍ତି ଏବଂ ତେଣୁ ସେମାନେ ଯାହା ପାଆନ୍ତି ତାହା ତାଙ୍କୁ ଜଣାପଡ଼େ ଅତ୍ୟଳ୍ପ । ତେଣୁ ସେମାନେ ରହନ୍ତି ଅସନ୍ତୁଷ୍ଟ । ଆମ ଶିକ୍ଷା ବ୍ୟବସ୍ଥା ଶତ ଶତ କିଶୋର କିଶୋରୀଙ୍କି ଗୋଟାଏ ଦୁଆରରେ ଭର୍ତ୍ତି କରିଦେଇ, କେତେବର୍ଷ ପର୍ଯ୍ୟନ୍ତ କେତେଗୁଡ଼ାଏ ଅର୍ଥହୀନ ପରୀକ୍ଷାରେ ସେମାନଙ୍କୁ ବସେଇ, ପୁଣି ଆଉ ଗୋଟେ ଦୁଆର ଦେଇ ସେମାନଙ୍କ ଉପରେ ଗୋଟାଏ ଗୋଟାଏ ଲେବୁଲ୍ ମାରି ବାହାର କରିଦେଉଛି । କି ସେ ଲେବୁଲ୍‌ର ଅର୍ଥ, ଜୀବନ ପ୍ରତି ତାର ଉପଯୋଗିତା କଣ, ଲେବୁଲଧାରୀ କି ବିଶେଷ କାମପାଇଁ ନିପୁଣ ବୋଲି ଧରାଯିବେ, ଆମ ଦେଶର ଶିକ୍ଷା ବିଭାଗ ତାର ଉତ୍ତର ଦେଇପାରିବ ନାହିଁ । ପୁଣି ଅଧିକ ପରିତାପର କଥା ଯେ, ସେପରି ଉତ୍ତର ଦେବା ତା'ର ଦାୟିତ୍ୱ ନୁହେଁ ବୋଲିହିଁ ସେ ଭାବେ । କିନ୍ତୁ ପ୍ରକୃତରେ, ଶିକ୍ଷାର ପ୍ରତ୍ୟେକ ସ୍ତର ନିଜର ଯଥାର୍ଥତା ଠିକ୍ ଭାଷାରେ ଘୋଷଣା କରିବା ଉଚିତ ଏବଂ ପ୍ରତି ଅଭିଭାବକ ଜାଣିବା ଉଚିତ ଯେ, ସେହି ସ୍ତରର ଶେଷକୁ ଗଲାବେଳକୁ ତା'ର ପିଲା କେଉଁଥିପାଇଁ କିପରିଭାବରେ ଗଢ଼ା ହୋଇଥିବ । ଏତକ ସ୍ପଷ୍ଟଭାବରେ ଜାଣିଲେ, ତେଣିକି ପିଲାଙ୍କୁ ସ୍କୁଲ୍, କଲେଜକୁ ପଢ଼େଇବା ଏକାନ୍ତରେ ଅଭିଭାବକଙ୍କର ଦାୟିତ୍ୱ ହୁଅନ୍ତା । ଏବେ ସ୍କୁଲ୍ କଲେଜ ସବୁ ସୁଖକର ଜୀବନର ବୃଥା ପ୍ରଲୋଭନରେ ଶତ ଶତ କିଶୋର କିଶୋରୀଙ୍କି ଟାଣିଆଣୁଛନ୍ତି, ଯେଉଁମାନେ ଗ୍ରାମାଞ୍ଚଳରେ ବେଶ୍ ସ୍ୱାସ୍ଥ୍ୟକର ଜୀବନଯାପନ କରୁଥାନ୍ତେ । ଆମ ଦେଶରେ ଏବର ଶିକ୍ଷା ବ୍ୟବସ୍ଥା, ବ୍ରିଟିଶ୍ ସରକାର ଏ ଦେଶରେ ତାଙ୍କ ସାମ୍ରାଜ୍ୟ ଚଳେଇବାରେ ସହାୟତାପାଇଁ, ଇଂରାଜୀ ଜାଣିଥିବା 'ବାବୁ' ଶ୍ରେଣୀ ସୃଷ୍ଟି କରିବା ଲାଗି ପ୍ରବର୍ତ୍ତିତ କରିଥିଲେ । ସ୍ୱାଧୀନ ଭାରତ ମଧ ନିଜ ଦେଶର ଶାସନପାଇଁ ଦରକାର କରିବ ବରାବର ଏଇ ଶ୍ରେଣୀ 'ବାବୁ' । କିନ୍ତୁ ସବୁଦେଶରେ ସବୁକାଳେ ଏ ଶ୍ରେଣୀର ସଂଖ୍ୟା ରହିବ ମୁଷ୍ଟିମେୟ । କିନ୍ତୁ ଏଇ ଆଶାରେ ସମଗ୍ର ଜାତିକୁ ସେହି ଗୋଟାଏ ପଦ୍ଧତିରେ ମୂଳରୁ ଚୂଳଯାଏଁ ତାଲିମ୍ କରିବାର କୌଣସି ଅର୍ଥନାହିଁ । ଜାତି କେବଳ କେତୋଟି ଅଫିସ୍-ଚାଳକ 'ବାବୁ' ଦରକାର କରେନାହିଁ, କରେ ନିପୁଣ ଚାଷୀ, ବଢ଼େଇ,ପଥୁରିଆ, କୁମ୍ଭାର, ତନ୍ତୀ, ଭଣ୍ଡାରି ଓ ବ୍ୟବସାୟୀ ମଧ । କିନ୍ତୁ ଆମେ କୋଟି କୋଟି ଟଙ୍କା ଶେଷରେ କେତୋଟି ଅଫିସ୍-ଚାଳକ 'ବାବୁ'ଙ୍କୁ ମାତ୍ର ସୃଷ୍ଟି କରିବାପାଇଁ ଖର୍ଚ୍ଚ କଲାବେଳେ, ଦେଶରେ ଉତ୍ତମ ଚଷା, ତନ୍ତୀ, ବଢ଼େଇ ସୃଷ୍ଟି କରିବାପାଇଁ ତ କିଛି ହେଲେ କରୁନେ ? ଇଂଲଣ୍ଡ,

ଜାପାନ, ଜର୍ମାନୀ, ଆମେରିକା ପ୍ରଭୃତି ଉନ୍ନତ ଦେଶରେ ସମାଜକୁ ସଭ୍ୟ ରଖିବାପାଇଁ ଯାହା ଯାହା ଦରକାର ସେ ପ୍ରତ୍ୟେକଟି ବ୍ୟବସ୍ଥା ଆୟତ୍ତ କରିବା ପାଇଁ ଅନୁଷ୍ଠାନ ଅଛି । ଆମ ଦେଶରେ 'ଜାତି' ଦିନେ ବିଦ୍ୟାଳୟର କାମ କରୁଥିଲା । ବ୍ରାହ୍ମଣର ପୁଅ ଘରେ ଘରେ ବାପା ଦାଦିଙ୍କି ଦେଖି ଦେଖି ଓ ତାଙ୍କରିଠୁ ଶିଖି ଶିଖି ବ୍ରାହ୍ମଣ ହେଉଥିଲା । ଶିକ୍ଷାର ଖର୍ଚ୍ଚ ଆଦୌ ନଥିଲା କହିଲେ ଚଳେ । ସେହିପରି କଂସାରିର ପୁଅ କଂସାରି ଓ ଚଷାର ପୁଅ ଚଷା ହେଉଥିଲା । ୟୁରୋପରେ ମଧ୍ୟ ପୂର୍ବେ ଏକପ୍ରକାର ପାରମ୍ପରିକ ଶିକ୍ଷା ବ୍ୟବସ୍ଥା ଥିଲା । କିନ୍ତୁ ଏବେ ଯେକୌଣସି ଲୋକ ଯେ କୌଣସି ବ୍ୟବସାୟ ଗ୍ରହଣ କରିବାରେ ବାଧା ନାହିଁ । କିନ୍ତୁ ସେଥିପାଇଁ ତାଲିମ-ସାର୍ଟିଫିକେଟ୍ ନିହାତି ଦରକାର । ଜର୍ମାନୀରେ ବିନା ସାର୍ଟିଫିକେଟ୍‌ରେ କେହି ବଢ଼େଇ ବା ଦରଜି ବା ଧୋବା ମଧ୍ୟ ହୋଇପାରିବନି । ସେ ଦେଶମାନଙ୍କରେ ୧୪ବର୍ଷ ପର୍ଯ୍ୟନ୍ତ ସମସ୍ତେ ସାଧାରଣ ଶିକ୍ଷା ପାଇବାକୁ ବାଧ୍ୟ । ସାମାନ୍ୟ କେତେକ ବୁଦ୍ଧିମାନ୍ ଯୁବକଯୁବତୀ ହିଁ ଉପରକୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇଁ ଯାଆନ୍ତି; ଅଧିକାଂଶ ଯାଆନ୍ତି ଏଇପ୍ରକାର ବ୍ୟବସାୟିକ ଅନୁଷ୍ଠାନ ସବୁକୁ । ଯେକୌଣସି ବ୍ୟବସାୟରେ ଠିଆହେବା ପୂର୍ବରୁ, ପ୍ରତ୍ୟେକକୁ କଠିନ ତାଲିମ ଓ କଠିନତର ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼େ । ଫଳରେ, ଆମ ଦେଶ ପରି, ଜର୍ମାନୀ ବା ଜାପାନରେ ଠକ ବା ଖରାପ ଧୋବା, ଦର୍ଜି ବା ବଢ଼େଇ ଦେଖିବାକୁ ମିଳନ୍ତିନି । କିନ୍ତୁ ଆମ ଦେଶମାନଙ୍କରେ ଏଇମାନଙ୍କର ଅବସ୍ଥିତି ଦେଶମୟ କହିଲେ ଚଳେ ।

ଅଭିଭାବକ— ଯାହା ବା ଶିକ୍ଷା ଦିଆଯାଉଛି, ତାହା କ'ଣ କମ୍ ବ୍ୟୟବହୁଳ ହେଲାଣି ? ମଧ୍ୟବିତ୍ତ ଓ ନିମ୍ନବିତ୍ତ ଲୋକେ ଏକ ଦିଗରେ ବହୁ ପ୍ରକାର ଟାକ୍ସ ଓ ଚାନ୍ଦା ଓ ତେଣେ ପିଲାଙ୍କ ପଢ଼ା ଖର୍ଚ୍ଚ ଓ ବିବାହ ଖର୍ଚ୍ଚ ଭିତରେ ପେଶି ହୋଇଯାଉଛନ୍ତି । ଏଇ ସବୁ ଖର୍ଚ୍ଚ କରି କରି, ଏମାନଙ୍କର ପିଲାଙ୍କୁ ଭଲକରି ସୁଷମ ଖାଦ୍ୟ ଦେବାର ଶକ୍ତି ମଧ୍ୟ ରହୁନି । ଫଳରେ ଏଣେ ପିଲା କୋଠାଘରେ ବଢ଼ି ଡିଗ୍ରୀ ଆଣିଲା ବେଳକୁ, ତେଣେ ଦୁର୍ବଳ ଦେହ ଓ ରୁଗ୍ଣ ଅନ୍ତ୍ର ନେଇ ବାହାରୁଛନ୍ତି । ବାଳକମାନଙ୍କ ଅପେକ୍ଷା ବାଳିକାମାନଙ୍କର ସ୍ୱାସ୍ଥ୍ୟ ଆହୁରି ସାଂଘାତିକ । ଆଶ୍ଚର୍ଯ୍ୟର କଥା, କୌଣସି ନେତା ବା ଶିକ୍ଷାବିତ୍ ଏ ଦିଗରେ ଚିନ୍ତା ମଧ୍ୟ କରୁନାହାନ୍ତି ।

ଶିକ୍ଷକ— ଆପଣ ଯାହା କହୁଛନ୍ତି, ମୁଁ ସେଥିରେ ପ୍ରତିବାଦପାଇଁ କୌଣସି ଅବକାଶ ଦେଖୁନି । ଅବସ୍ଥା ପ୍ରକୃତରେ ତାହାହିଁ । ଶିକ୍ଷାକୁ ଏପର୍ଯ୍ୟନ୍ତ ଏ ଦେଶରେ କେବଳ ଡିଗ୍ରୀସଂଗ୍ରହ ବୋଲି ମନେକରିବାରୁ, ଶିକ୍ଷା ଦେଶର ଉପକାର କରିବା ପରିବର୍ତ୍ତରେ, ଅଶେଷ ଅକଲ୍ୟାଣ ସୃଷ୍ଟି କରୁଛି । ଶିକ୍ଷକର ବ୍ୟକ୍ତିତ୍ୱ ଓ ମନୁଷ୍ୟ-ଗଠନରୁ ଆମର ଦୃଷ୍ଟି ଯାଇ ରହୁଛି ବଡ଼ ବଡ଼ କୋଠାବାଡ଼ିରେ । ଆଗରୁ ତ କହିଛି ଯେ, କୌଣସିଠି ସ୍କୁଲ୍ କଲେଜ ବସେଇବାର ହେଲେ, ଦେଖାଯାଉଛି ଯେ, ପ୍ରଥମେ ଶିକ୍ଷକକୁ ଖୋଜା ପଡ଼େନା, ପଡ଼େ କୋଠା, ଆସବାବ, ମାନେଜିଂ କମିଟି, ତାର ପ୍ରେସିଡେଣ୍ଟ ଓ ସେକ୍ରେଟାରୀ । ଏସବୁ ହୋଇସାରିଲେ, ଦରମାସର୍ବସ୍ୱ ନିରୀହ ଶିକ୍ଷକ ସବା ପଛରେ ଆସେ, ସକଳର ଆଜ୍ଞାବହ ହୋଇ । ଯେଉଁ ଦେଶ ଓ ସମାଜରେ 'ଶିକ୍ଷକ ହିଁ ବିଦ୍ୟାଳୟ'—ଶିକ୍ଷାର ଏହି ପ୍ରଧାନତମ ନୀତି ଅକ୍ଷରେ ଅକ୍ଷରେ ଗୃହୀତ ହୋଇନାହିଁ, ସେଠି ଶିକ୍ଷା ସମାଜର ଅକଲ୍ୟାଣ ନକରି, କଲ୍ୟାଣ କରିବାର ଆଶା ବୃଥା । ତା' ହୋଇନପାରେ ।

ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ହେଲା ମୁନଷ୍ୟ ଗଠନ । ଏହା ଏକ ସର୍ବାଙ୍ଗୀନ ପ୍ରୟୋଗ । ମନୁଷ୍ୟ ଜୀବନର କୌଣସି ହେଲେ ଗୋଟିଏ ବିଭାବକୁ ଅବହେଳା କରି କେହି ଉତ୍ତମ ଶିକ୍ଷା ପାଇଛି ବା ଦେଇଛି ବୋଲି କହିନପାରେ । ତେଣୁ ଶିକ୍ଷିତ କହିଲେ ଆମକୁ ଧରିବାକୁ ହେବ ଯେ, ସମ୍ପୃକ୍ତ ଲୋକ,ତାର ଶରୀର, ମନ, ବୁଦ୍ଧି, ଆତ୍ମା, ବସନ-ଭୂଷଣ, ସାମାଜିକ ବ୍ୟବହାର ଇତ୍ୟାଦି ତା' ବ୍ୟକ୍ତିତ୍ୱର ସକଳ ବିଭାଗରେ ଉପଯୁକ୍ତ ତାଲିମ ପାଇଛି । ଯେଉଁ ଶିକ୍ଷା ପଦ୍ଧତିରେ ଛାତ୍ରଛାତ୍ରୀର ସ୍ୱାସ୍ଥ୍ୟ ନଷ୍ଟ ହୁଏ; ତାହା ଅବିଳମ୍ବେ ବର୍ଜନୀୟ । ଆମ ଦେଶରେ କିନ୍ତୁ ଦେଶର ନୂତନ ବଂଶଧରମାନଙ୍କର ସ୍ୱାସ୍ଥ୍ୟ ପ୍ରତି ଆଦୌ ସୁନଜର ନାହିଁ । ବିଶେଷତଃ ଓଡ଼ିଆମାନେ ଗତ ଦୁଇ ତିନିପୁରୁଷ ଭିତରେ ଉଚ୍ଚତାରେ ହାରାହାରି ଏକଫୁଟ କମିଗଲେଣି । ଏପ୍ରକାର ମାରାତ୍ମକ ଅବସ୍ଥା ମଧ୍ୟ କାହାରି ଚିନ୍ତାର ବିଷୟ ହେଉନାହିଁ । ଆମ ଗୋସେଇଁ ବାପାମାନେ ୬ ଫୁଟିଆ ମଣିଷ ଥିଲେ । ଏବେ ସାଧାରଣ ଓଡ଼ିଆ ୪-୫ ଫୁଟ୍‌ରୁ ବେଶି ଉଚ୍ଚ ଥିବାର ଦେଖାଯାନ୍ତି ନାହିଁ । ଅଥଚ ଅକ୍ଷୋଚ ଜାପାନୀ ଗତ କେତେବର୍ଷ ଭିତରେ ଜାତୀୟ ଖାଦ୍ୟ ପରିବର୍ତ୍ତନ କରି ହାରାହାରି ଅଧଫୁଟ ଉଚ୍ଚତାରେ ବଢ଼ିଗଲେଣି । ସମଗ୍ର ଜାତିର ସମୂହ କଲ୍ୟାଣକୁ ଆଖିରେ ରଖି ଏ ଦେଶରେ ଶିକ୍ଷାର ବ୍ୟବସ୍ଥା ଏ ପର୍ଯ୍ୟନ୍ତ ପ୍ରବର୍ତ୍ତିତ ହୋଇନାହିଁ କି କାର୍ଯ୍ୟକାରୀ ହେଉନାହିଁ । ଲକ୍ଷ୍ୟହୀନ ଭାବରେହିଁ ଆମେ ଚାଲିଛୁ ।

ଉନ୍ନତ ଦେଶମାନଙ୍କରେ, ଯେଉଁଠି ନାଗରିକର ହାରାହାରି ଆୟ, ଭାରତବର୍ଷଠାରୁ ୫ ଗୁଣରୁ ଦଶ କି କୋଡ଼ିଏଗୁଣ ବେଶି, ସେଠି ପିଲାଙ୍କ ପଢ଼େଇବାରେ ଅନ୍ତତଃ ପ୍ରାଇମେରୀ ଶେଷପର୍ଯ୍ୟନ୍ତ କିଛି ଖର୍ଚ୍ଚ ପଡ଼େନା । ଏବେ ପୁଣି ସେସବୁ ଦେଶରେ ଏହି ବିନା-ବ୍ୟୟ-ପ୍ରଥା ସେକେଣ୍ଡାରୀ ଶେଷପର୍ଯ୍ୟନ୍ତ ନିଆଯାଉଛି । କିନ୍ତୁ ସେମାନଙ୍କ ତୁଳନାରେ ଭାରତବର୍ଷ ଲୋକ ଢେର୍ ଦରିଦ୍ର । କିନ୍ତୁ ଭାରତୀୟହିଁ ଖର୍ଚ୍ଚ କରୁଛି ସବୁଠି ବେଶି ପିଲା ପଢ଼େଇବାରେ । ଇଂଲଣ୍ଡରେ ଅଭିଭାବକଙ୍କୁ ପିଲାର ପ୍ରାଇମେରୀ ଶିକ୍ଷା ଶେଷପର୍ଯ୍ୟନ୍ତ ଦରମା ଦେବାକୁ ତ ପଡ଼େନି, ବହିପତ୍ର, କାଗଜ ପେନ୍‌ସିଲ୍ ବି ପିଲାଙ୍କୁ ମାଗଣା ଯୋଗାଇ ଦିଆଯାଏ, ତାହାଛଡ଼ା ଗରିବ ପିଲେ ବିନା ପଇସାରେ ମଧ୍ୟାହ୍ନ ଭୋଜନ ମଧ୍ୟ ପା'ନ୍ତି । ଧନୀ ଇଂରେଜ, ପିଲାଙ୍କ ପଢ଼େଇବାପାଇଁ ଏପରି ବ୍ୟବସ୍ଥା କଲାବେଳେ, ଗରିବ ଭାରତୀୟ ମୁଣ୍ଡ ଉପରେ ପିଲାଙ୍କୁ ନାଗରିକ ବନେଇବାର ସମସ୍ତ ଭାର ଓ ଦାୟିତ୍ୱ ଲଦିଦେବା ଆଦୌ ଯୁକ୍ତିଯୁକ୍ତ ନୁହେଁ । ଦେଶର ପିଲାଙ୍କୁ ମଣିଷ କରେଇବାର ଦାୟିତ୍ୱ ଦେଶର ଓ ରାଷ୍ଟ୍ରର, ବ୍ୟକ୍ତିର ନୁହେଁ; ଭାରତବର୍ଷରେ ଏଇ ନୀତି ଶୀଘ୍ର ଗୃହୀତହେବା ଉଚିତ ।

ଅଭିଭାବକ—ଏଥର ଭାରତର ଲୋକପ୍ରତିନିଧି ସରକାର ହୁଏତ କ୍ରମେ ଅନ୍ୟ ସଭ୍ୟ ଦେଶମାନଙ୍କରେ ଯାହା ହେଉଛି ତାହା କରିବେ । କିନ୍ତୁ ବ୍ୟକ୍ତି ବା ରାଷ୍ଟ୍ର ଏତେ ଅର୍ଥ ବ୍ୟୟକରି ପିଲାଙ୍କୁ ତଥାକଥିତ 'ପାଠ' ପଢ଼େଇ ସାରିଲା ପରେ, ପିଲେ ଯେ 'ବେକାର' ହେଉଛନ୍ତି, ୟାର ହେତୁ କଣ ଓ ସମାଧାନ ବା କ'ଣ ? ନିରକ୍ଷର ଲୋକ ତ ବେକାର ରହୁନାହାନ୍ତି । ତାଙ୍କୁ 'ପାଠ' ପଢ଼େଇ ଓ ସେ ବାବଦରେ ଏତେଟଙ୍କା ଖର୍ଚ୍ଚକରି ବେକାର ବନେଇବାର ଇଏ କି ମହାନ୍ ଆଦର୍ଶ ?

ଶିକ୍ଷକ– ଶିକ୍ଷିତ ହୋଇ ବେକାରହେବା ପ୍ରକୃତରେ ଏକ ଲଜ୍ଜାଜନକ ବ୍ୟାପାର । ଶିକ୍ଷିତ ଲୋକ ନିରକ୍ଷର ଲୋକଠାରୁ ସବୁ ଦିଗରେ ଉତ୍ତମତର ନହେଲେ ଶିକ୍ଷାର କୌଣସି ମୂଲ୍ୟ ଅଛି ବୋଲି ଧରାଯିବନାହିଁ । ତା ଛଡ଼ା ନିରକ୍ଷର ଲୋକ ନିଜକୁ କୌଣସିମତେ କର୍ମବ୍ୟସ୍ତ ଓ ଅର୍ଜନକ୍ଷମ କରିପାରିଲା ବେଳେ ଶିକ୍ଷିତ ହୋଇ କାମ ଖୋଜିବାକୁ ଯିବା ଏକ ବିଚିତ୍ର ବ୍ୟାପାର ନିଶ୍ଚୟ । ଶିକ୍ଷା ଏପରି ହେବା ଉଚିତ ଯେ, ଶିକ୍ଷିତ ଲୋକ ନିକଟକୁ କାମ ଆସିବ । ଶିକ୍ଷିତ ଲୋକ କାମ ପାଇଁ ଅଣ୍ଡାଳିହେବା ଏକ ଶୈକ୍ଷିକ ଓ ସାମାଜିକ ବିଡ଼ମ୍ବନା ବୋଲି ଧରାଯିବା ଉଚିତ ।

ଇଂଲଣ୍ଡ ପ୍ରଭୃତି ଦେଶରେ ଶିକ୍ଷିତ ବେକାର ସମସ୍ୟା ପ୍ରାୟ ଦେଖାଯାଏନି । ଅବଶ୍ୟ ସେ ଦେଶରେ ସମସ୍ତେ ଶିକ୍ଷିତ । କାରଣ ଦେଶର ପ୍ରତ୍ୟେକ ନାଗରିକକୁ ମାଟ୍ରିକ୍ୟୁଲେଶନ ପର୍ଯ୍ୟନ୍ତ ପଢ଼ିବାକୁଇ ହେବ । ସେ ଦେଶରେ ଚଷା, ମେହେନ୍ତର, ଧୋବା, ଭଣ୍ଡାରି ସମସ୍ତେ ଶିକ୍ଷିତ, ଏଇ ଅର୍ଥରେ । କିନ୍ତୁ ହାତରେ କାମ କରି ବଞ୍ଚିବା ଲୋକ ସବୁ ଦେଶରେ ଶ୍ରମିକ ବୋଲି ଧରାଯାନ୍ତି, ସାକ୍ଷର ହୁଅନ୍ତୁ ବା ନିରକ୍ଷର ହୁଅନ୍ତୁ । ତେଣୁ ସେ ଦେଶରେ ଶିକ୍ଷିତ କହିଲେ ସାଧାରଣତଃ କଲେଜ ଶିକ୍ଷାପ୍ରାପ୍ତ ଲୋକକୁହିଁ ବୁଝାଏ । ଏ ଦେଶରେ ମଧ୍ୟ ସେଇ ଧାରଣା । ତେବେ ଶ୍ରମିକଶ୍ରେଣୀ ଏପର୍ଯ୍ୟନ୍ତ ଏ ଦେଶରେ ସାର୍ବଜନୀନ ଭାବରେ ସାକ୍ଷର ନ ହୋଇଥିବାରୁ ଯିଏ ଅପରପ୍ରାଇମେରୀ ବା ମାଇନର ପାସ୍ କଲା, ସେ ବି ନିଜକୁ ଏ ଦେଶରେ 'ଶିକ୍ଷିତ' ବୋଲି ମନେକରେ ଏବଂ ହାତ ପାଇଟି କରିବାକୁ ଅପମାନ ମନେକରେ ।

ଇଂଲଣ୍ଡ ପ୍ରଭୃତି ଦେଶ, ଯେଉଁଠି ସାମାଜିକ ଜୀବନ ବହୁପରିମାଣରେ ଯନ୍ତ୍ର-ଚାଳିତ, ସେଠି ମଣିଷର ହାତ ବେଳେ ବେଳେ କାମ ନପାଇ ଅଳସୁଆ ହେବା ସ୍ୱାଭାବିକ । ତେଣୁ ଏଇ ଶ୍ରମିକଶ୍ରେଣୀରେହିଁ ସେଠି ବେକାର ସମସ୍ୟା ଚିର ବର୍ତ୍ତମାନ । କିନ୍ତୁ ସେ ଦେଶରେ ଭାରତବର୍ଷ ପରି ବିଶ୍ୱବିଦ୍ୟାଳୟ ଶିକ୍ଷାପ୍ରାପ୍ତ ବେକାର ସମସ୍ୟା ଉତ୍କଟ ହେବାର କେବେ ଜଣାଯାଇନାହିଁ । ତାର କାରଣ ଏଇ ଯେ ସେ ଦେଶର ବିଶ୍ୱବିଦ୍ୟାଳୟ ଶିକ୍ଷାର ମାନଦଣ୍ଡ ଖୁବ୍ ଉଚ୍ଚ । କେବଳ ବୁଦ୍ଧିମାନ୍ ପିଲେ କଲେଜକୁ ଯାଆନ୍ତି । ଖୁବ୍ କମ୍ ପିଲା ଫେଲ୍ ହୁଅନ୍ତି । ଆଉ ଯେଉଁମାନେ ପାସ୍ କରନ୍ତି, ସେମାନଙ୍କ ପାଇଁ ଚାକିରିର ଅଭାବ ହୁଏନାହିଁ । ଗୋଟିଏ ଦୃଷ୍ଟାନ୍ତ ବର୍ଣ୍ଣନା କରେଁ । ଆମ ଦେଶରେ ଜଙ୍ଗଲ ବହୁତ । ସେଥିରେ ପଲ ପଲ ହାତୀ ଅଛନ୍ତି । ବାଘ, ଭାଲୁ ବି ଅଛନ୍ତି ଅନେକ ସଂଖ୍ୟାରେ । ଏ ସମସ୍ତଙ୍କର ଖାଦ୍ୟ ସମସ୍ୟା ସେଇ ଜଙ୍ଗଲହିଁ ଆପେ ଆପେ ସମାଧାନ କରୁଛି । କିନ୍ତୁ ଅନୁମାନ କର ଯେ, ଓଡ଼ିଶା ଜଙ୍ଗଲର ସବୁ ହାତୀଙ୍କୁ ଆମେ ଧରିଆଣିଲେ । ସେମାନଙ୍କର ଖାଦ୍ୟ-ଯୋଗାଣ ଆମ ପକ୍ଷରେ ଏକ ବିରାଟ ସମସ୍ୟା ହୋଇ ଉଠିବନାହିଁ କି ? ସ୍ଥାଣୁ, ମୂକ ଜଙ୍ଗଲ ଏତେ ହାତୀ,ଏତେ ବାଘଙ୍କୁ ନୀରବରେ ପୋଷୁଛି ପ୍ରତିଦିନ, ଅଥଚ ଆମର ସଭ୍ୟ, ବୁଦ୍ଧିମାନ ମନୁଷ୍ୟ- ସମାଜ ପ୍ରତି ତାହା ହେବ ଏକ ବିରାଟ ସମସ୍ୟା । କାହିଁକି ?

ସହଜାତ ବୁଦ୍ଧି, ପରିବେଶ, ପ୍ରବୃତ୍ତି ଓ ପରମ୍ପରା ଅନୁସାରେ ପ୍ରତ୍ୟେକ ବ୍ୟକ୍ତି କୌଣସି ଏକ ନିର୍ଦ୍ଦିଷ୍ଟ ସ୍ତର ଓ କର୍ମପାଇଁ ଉଦ୍ଦିଷ୍ଟ । ଏହାହିଁ ପ୍ରକୃତିର ଗୂଢ଼ ନିର୍ଦ୍ଦେଶ । ସେହି ନିର୍ଦ୍ଦିଷ୍ଟ ସ୍ତର ବା କର୍ମରେ ସେହି ବ୍ୟକ୍ତି କୌଣସିପ୍ରକାର ସମସ୍ୟା ସୃଷ୍ଟି କରିବାର ଆଶଙ୍କା ନଥାଏ । କିନ୍ତୁ ଆମେ ଯଦି ବ୍ୟକ୍ତି, ସ୍ତର ଓ କର୍ମର ଶୃଙ୍ଖଳା ଓ ସହଯୋଗ ଭାଙ୍ଗୁ, ତେବେ ଆମେ, ନାନା ଅନାକାଂକ୍ଷିତ

ସମସ୍ୟା ଯେ ସୃଷ୍ଟି କରିବୁ, ଏଥିରେ ଆଶ୍ଚର୍ଯ୍ୟର କଥା କି ଅଛି ? ଜଙ୍ଗଲର ଜୀବ ହାତୀ, ଜଙ୍ଗଲର ସମସ୍ୟା ନୁହେଁ । ହାତୀକୁ ଜଙ୍ଗଲରୁ ସମାଜକୁ ଟାଣିଆଣିଲେ, ସେ ନିଶ୍ଚୟ ହେବ ଏକ ସମସ୍ୟା ।

ଭାରତବର୍ଷରେ ସେହିପରି ଅନେକ ଲୋକ ଯେଉଁମାନେ ବି ପ୍ରକୃତରେ ଚଷା, ବଢ଼େଇ, ଧୋବା ବା କାରଖାନା ଶ୍ରମିକ ହେବାର କଥା ସେମାନେ ଶସ୍ତା ଡିଗ୍ରୀର ମୋହ ଓ ସୁଲଭତାରେ ଆକୃଷ୍ଟ ହୋଇ ଉପରକୁ ଉଠିଆସୁଛନ୍ତି । ବିଶ୍ୱବିଦ୍ୟାଳୟର ପାଠ ଓ ପରୀକ୍ଷାର ମାନଦଣ୍ଡ ଏ ଦେଶରେ ଅତ୍ୟନ୍ତ ଲଜ୍ଜାକର ଭାବରେ ନିମ୍ନ ଥିବାରୁ, ଏମାନଙ୍କ ଭିତରୁ ଅଧିକାଂଶ ଡିଗ୍ରୀର ଲେବୁଲ୍ ପାଇଯାଉଛନ୍ତି । ଆଉ ଏଇମାନେ ଏକାଧାରରେ ଦେଶର ଶିକ୍ଷା, ଶାସନ ଓ ସାମାଜିକ ଜୀବନର ବାତାବରଣକୁ ଦୂଷିତ ଓ ଅଧୋଗତ କରିବା ସଙ୍ଗେ ସଙ୍ଗେ ବେକାର ସମସ୍ୟା ମଧ୍ୟ ସୃଷ୍ଟି କରୁଛନ୍ତି । ବିଶ୍ୱବିଦ୍ୟାଳୟର ମାନଦଣ୍ଡ ପ୍ରକୃତରେ ଉଚିତଭାବରେ ବୌଦ୍ଧିକ ଓ ସମ୍ମାନଜନକ ଥିଲେ, ଦେଶରେ ଶିକ୍ଷିତ ବେକାର ସମସ୍ୟା ଦେଖାଯାନ୍ତାନାହିଁ, ଦେଶରେ ଖରାପ ଶିକ୍ଷକ, ଅସାଧୁ ହାକିମ କି ଅନୈତିକ ରାଜନୈତିକ ଏତେ ପ୍ରଚୁର ସଂଖ୍ୟାରେ ଦେଖାଯାନ୍ତେନାହିଁ । ପୁଣି ସହରେ ସହରେ ଶତ ଶତ ଲୋକ ବେକାର ବସିଲାବେଳେ, ସେଣେ ମଫସଲ ଅଞ୍ଚଳରେ ଚାଷ ବା ଗୃହଶିଳ୍ପ ପାଇଁ ଲୋକର ଅଭାବ, ଜନସଂଖ୍ୟା ବୃଦ୍ଧି ସତ୍ତ୍ୱେ । ଆମର ରାଷ୍ଟ୍ରିକ ଶିକ୍ଷା ବ୍ୟବସ୍ଥା ଏପରି କଠୋର ନୀତି ଉପରେ ଚାଲିବା ଉଚିତ ଯେ, ମଫସଲରେ କୃଷି ଓ କୁଟୀରଶିଳ୍ପପାଇଁ ଯଥେଷ୍ଟ ତାଲିମପ୍ରାପ୍ତ ଲୋକ ରହିଥିବେ ଏବଂ ସହରରେ ବେକାର ହୋଇ କୌଣସି ଲୋକ ବସିନଥିବ । ଭାରତବର୍ଷ କୃଷିପ୍ରଧାନ ଦେଶ । କୃଷି ସହିତ କୁଟୀରଶିଳ୍ପ ଘନିଷ୍ଠଭାବରେ ସମ୍ପୃକ୍ତ । ଏ ସମସ୍ତ ମଫସଲରେ । ତେଣୁ ଆମେ ଆମର ଶିକ୍ଷା ବ୍ୟବସ୍ଥାକୁ ଏପରି ପରିଚାଳିତ କରିବା, ଯେପରିକି ଆମ୍ ଜନସଂଖ୍ୟାର ଶତକରା ୮୦ ଭାଗ ସେହି ମଫସଲରେହିଁ ରହିବେ । ନଚେତ୍ ଆମର ପଲ୍ଲୀଜୀବନର ଉଚ୍ଛେଦ ହେବ ଓ ସାମାଜିକ ଓ ଆର୍ଥିକ ଜୀବନ ଏକାବେଳକେ ଓଲଟପାଲଟ ହୋଇଯିବ ।

ଅଭିଭାବକ– ଆପଣ ବେଶ୍ ଉଚିତ କଥା କହୁଛନ୍ତି, ବୁଝୁଛି । ମୁଁ ବିସ୍ମିତ ହେଉଛି, ଆମ ଦେଶରେ ଶିକ୍ଷାର ଏପ୍ରକାର ସଂସ୍କାର ନହେଉଛି କାହିଁକି ? ତେବେ ଶିକ୍ଷାର ମୋଟାମୋଟି ଆଦର୍ଶ କ'ଣ ହେବ, ମତେ କହନ୍ତୁ ତ ।

ଶିକ୍ଷକ– ଦେଖନ୍ତୁ, ମୁଁ ଜଣେ ସାମାନ୍ୟ ଲୋକ – ତେଣୁ ମୋର ମତ କ'ଣ, ତାହାର ବିଶେଷ ମୂଲ୍ୟ ନାହିଁ । ମୁଁ ଆପଣଙ୍କୁ ପୃଥିବୀର କେତୋଟି ସଭ୍ୟ ଦେଶର ଶିକ୍ଷା ବ୍ୟବସ୍ଥାର ଲକ୍ଷ୍ୟ ଶୁଣାଇଦେଲେ, ଆପଣ ବଳେ ଶିକ୍ଷାର ଆଦର୍ଶ ବୁଝିପାରିବେ । ମୁଁ ଯାହା ଏତେବେଳଯାଏଁ କହି ଆସିଲି, ତାହା ସେହି ଆଦର୍ଶ ସହିତ ମିଳାଇ ଆପଣ ନିଜେ ମଧ୍ୟ ବିଚାର କରିପାରନ୍ତି ।

ଆମେରିକା ଯୁକ୍ତରାଷ୍ଟ୍ରର ଏଡୁକେଶନାଲ୍ ପଲିଶି କମିଶନ୍ ଶିକ୍ଷାର ଲକ୍ଷ୍ୟ ଏଇପରି ଭାବରେ ବର୍ଣ୍ଣନା କରିଛନ୍ତି–

''ଶିକ୍ଷିତ ଲୋକର ଜ୍ଞାନପାଇଁ କ୍ଷୁଧା ଥିବ । ସେ ନିଜର ମାତୃଭାଷା ପରିଷ୍କାର ଉଚ୍ଚାରଣ କରି କହିପାରୁଥିବ, ବୁଦ୍ଧିମନ୍ତ ବୋଧ ସହିତ ମାତୃଭାଷା ସେ ପଢ଼ିପାରୁଥିବ ଓ ନିପୁଣଭାବରେ ମାତୃଭାଷା ଲେଖିପାରୁଥିବ । ସେ ଗଣନା ଓ ହିସାବପତ୍ର ସମ୍ପର୍କିତ ସମସ୍ତ ସମସ୍ୟା ନିଜେ

ନିଜେ ସମାଧାନ କରିପାରୁଥିବ । ତାଙ୍କର ଶୁଣିବା ଓ ପର୍ଯ୍ୟବେକ୍ଷଣ କରିବାରେ କୌଶଳ ଥିବ । ସେ ସ୍ୱାସ୍ଥ୍ୟ ସମ୍ପର୍କରେ ବିଶ୍ୱାସ୍ୟ ଘଟଣା ସବୁ ଜାଣିଥିବ ଓ ବୁଝୁଥିବ । ସେ ପୁଣି ନିଜର ଓ ତା ' ଉପରେ ନିର୍ଭର କରୁଥିବା ଲୋକଙ୍କର ଉତ୍ତମଭାବରେ ସ୍ୱାସ୍ଥ୍ୟ ରକ୍ଷାକରିବାରେ ଅଭ୍ୟସ୍ତ ଥିବ । ସେ କ୍ରୀଡ଼ା, ବିନୋଦନ ଇତ୍ୟାଦିରେ ଯୋଗଦେଉଥିବ । ନିଜର ବିଶ୍ରାମ କାଳକୁ ସେ ତା'ର ମନୁଷ୍ୟ ବୁଦ୍ଧିକୁ ସମ୍ମାନ କଲାଭଳି କାମରେ ନିଯୁକ୍ତ ରଖୁଥିବ; ସେ ସୌନ୍ଦର୍ଯ୍ୟକୁ ମର୍ଯ୍ୟାଦା ଦେବା ଜାଣିଥିବ ଓ ନିଜ ଜୀବନକୁ ଦାୟିତ୍ୱପୂର୍ଣ୍ଣଭାବରେ ପରିଚାଳିତ କରୁଥିବ ।''

''ପ୍ରକୃତ ଶିକ୍ଷିତ ଲୋକ, ମାନବିକ ସମ୍ପର୍କକୁହିଁ ପ୍ରଥମ ସ୍ଥାନ ଦେବ । ସେ ସାମାଜିକ ଜୀବନର ବିବିଧ ସତ୍ୟ ଅଭିଜ୍ଞତାକୁ ଉପଭୋଗ କରେ , ସକଳ ସାମାଜିକ ଭଦ୍ରତା ସେ ଆଚରଣ କରେ, ସେ ପରିବାରକୁ ଏକ ସାମାଜିକ ଅନୁଷ୍ଠାନ ବୋଲି ଓ ନିଜ ଜୀବନକୁ ଶୁଦ୍ଧିମନ୍ତ କରିବାରେ ତାହା ଏକ ଅନନ୍ୟ ଉପାୟ ବୋଲି ସମ୍ମାନ କରେ, ପରିବାରରେ ମଧ୍ୟ ଗଣତାନ୍ତ୍ରିକ ବ୍ୟବହାରକୁ ସେ ସମ୍ମାନ କରେ ଓ ପରିବାରର ପବିତ୍ରତାକୁ ରକ୍ଷା କରିବାରେ ଜାଗ୍ରତ ଥାଏ । ଶିକ୍ଷିତ ଲୋକ ନିଜର ଅର୍ଥନୈତିକ ଜୀବନର ଯୋଜନା ନିଜେଇ କରେ ଓ ନିଜର ନ୍ୟାଯ୍ୟ ଦାବିର ସଂରକ୍ଷଣ ପାଇଁ ଯଥୋଚିତ ବ୍ୟବସ୍ଥା କରିବାରେ ପଶ୍ଚାତ୍‌ପଦ ହୁଏନାହିଁ । ସେ କୁଶଳତା ସହିତ କିଣାବିକା କରେ, ଯାହା କିଣେ ତାହା ବିଚାରବନ୍ତଭାବରେ ବ୍ୟବହାର କରେ । ନିଜର ଧନ୍ଦା ସେ ନିଜେ ବାଛେ, ଯେଉଁ ବ୍ୟବସାୟରେ ସେ ପଶେ ତାହାର ସକଳ ଆବଶ୍ୟକତା ସେ ବୁଝେ, ଏବଂ ଅନ୍ୟଠି କାହିଁ ଅଧିକତର ସୁଯୋଗ ଥିଲେ ସେଥିପ୍ରତି ମଧ୍ୟ ଦୃଷ୍ଟି ରଖିଥାଏ । ସେ 'ନିପୁଣତା' କ'ଣ ଜାଣେ ଓ ନିଜ ପଦରେ ସେହି ନିପୁଣତାକୁ ବଜାୟ ରଖିବାରେ ସବୁମତେ ଯତ୍ନଶୀଳ ହୁଏ । ଶିକ୍ଷିତ ଲୋକ ନିଜର ସକଳ ନାଗରିକ ଦାୟିତ୍ୱ ବୁଝେ ଓ ପାଳନ କରେ, ଦେଶର ନିମୟକୁ ସମ୍ମାନ କରେ । ସେ ଗଣତାନ୍ତ୍ରିକ ଆଦର୍ଶ ପ୍ରତି ଅବିଚଳିତ ଦୃଷ୍ଟିରଖି ହିଁ ସକଳ କର୍ମ କରେ, ସକଳପ୍ରକାର ସାଧୁ ମତଭେଦକୁ ସେ ସମ୍ମାନ କରେ, ଦେଶର ସମ୍ପଦ କୌଣସିମତେ ନଷ୍ଟ କରିବାକୁ ସେ ଦିଏନାହିଁ । ମନୁଷ୍ୟ-ମନୁଷ୍ୟ ଭିତରେ ଥିବା ପ୍ରଭେଦ ଓ ବ୍ୟବଧାନ ପ୍ରତି ସହାନୁଭୂତିସମ୍ପନ୍ନ ହୋଇ, ସମାଜରେ ଯାହା ଅସନ୍ତୋଷଜନକ ଓ ଅପ୍ରୀତିକର, ତାହାର ଦୂରୀକରଣର ସେ ଚେଷ୍ଟା କରେ ।''

ପ୍ରଥମ ମହାଯୁଦ୍ଧର ଶେଷପର୍ଯ୍ୟନ୍ତ ଜର୍ମାନୀର ଶିକ୍ଷା ବ୍ୟବସ୍ଥାର ଉଦ୍ଦେଶ୍ୟ ଏଇ ଥିଲା—''ଈଶ୍ୱର-ଭୀତ, ନିୟମାନୁବର୍ତ୍ତୀ, ଆତ୍ମନିର୍ଭରଶୀଳ ପ୍ରଜାପୁଞ୍ଜ ତିଆରି କରିବା ।'' ଇଂଲଣ୍ଡରେ ବରାବର 'ଚରିତ୍ର-ଗଠନ' ହିଁ ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ବୋଲି ଧରାହୋଇ ଆସିଛି ।

ଭାରତବର୍ଷରେ କିନ୍ତୁ ଏପର୍ଯ୍ୟନ୍ତ ଏ ଦେଶରେ ଜାତୀୟ ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ କଣ ତାହା ମୋଟାମୋଟି ସ୍ଥିରୀକୃତ ହୋଇନାହିଁ । ଆମେ କେବଳ ପ୍ରାଇମେରୀ, ହାଇସ୍କୁଲ୍ ଓ କଲେଜ ସବୁ ଯଦୃଚ୍ଛାକ୍ରମେ ବସେଇଚାଲିଛୁ, କେବଳ ମାଟ୍ରିକ୍ୟୁଲେଟ୍ ଓ ଗ୍ରାଜୁଏଟ୍ ଉତ୍ପାଦନ ଲାଗି । ଏଇ ମାଟ୍ରିକ୍ୟୁଲେଟ୍ ଓ ଗ୍ରାଜୁଏଟ୍‌ମାନଙ୍କ ଭିତରୁ ଅଧିକାଂଶଙ୍କୁ ଯାଇ ପଚାର ସେମାନେ କାହିଁକି ପଢୁଛନ୍ତି, ସେମାନେ ପରିଷ୍କାର ଉତ୍ତର ଦେଇପାରିବେନି । ସେମାନେ ଠିକ୍ କେଉଁ କାମପାଇଁ ନିପୁଣ, ତାହା ମଧ୍ୟ ସେମାନେ ଜାଣନ୍ତିନାହିଁ । ଶିକ୍ଷକମାନଙ୍କୁ ଯାଇ ପଚାର, କାହିଁକି ସେମାନେ

ଗୋଟିଏ ବିଷୟ ବା ଗୋଟିଏ ବହି ପଢ଼ାଉଛନ୍ତି, ଛାତ୍ରର ପର ଜୀବନ ପ୍ରତି ତାହା କି ପ୍ରକାର ଉପଯୋଗୀ ତାହାର ସଦୁତ୍ତର ମଧ୍ୟ ତମେ ପାଇବନି । ଏ ଦେଶରେ ଶିକ୍ଷା ପାଇସାରିଲା ପରେ ତରୁଣମାନେ ବ୍ୟର୍ଥନିରାଶ ଜୀବନ ଯେ ଯାପନ କରନ୍ତି, ଶିକ୍ଷିତ ଲୋକେ କେବଳ ଯେ ସାର୍ଟିଫିକେଟ୍‌-ମାତ୍ର-ସର୍ବସ୍ୱ; ଶିକ୍ଷାନୁଷ୍ଠାନ ଓ ଶିକ୍ଷକଙ୍କ ପ୍ରତି ଏ ଦେଶରେ ଛାତ୍ର ସମାଜର ଯେ ଗଭୀର ବିଦ୍ୱେଷ ଓ ବିଦ୍ରୋହଭାବ ଦେଖାଦେଇଛି, ଏଥିରେ ବିସ୍ମିତ ହେବାର କ'ଣ ଅଛି ?

ତେଣୁ ମୋ ମତରେ ଆଦର୍ଶ ଶିକ୍ଷା ବ୍ୟବସ୍ଥା ସେହି, ଯାହାର ଉଦ୍ଦେଶ୍ୟ ଓ ଆଦର୍ଶ ସ୍ପଷ୍ଟ ଭାବରେ ବର୍ଣ୍ଣିତ । ତାହାହେଲେ ଏଥି ସହିତ ସମ୍ପୃକ୍ତ ସମସ୍ତେ ସେହି ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ କାମ କରିବେ । ପୁଣି ପୁସ୍ତକ, ପରୀକ୍ଷା ଓ ପାଠନ ପ୍ରଣାଳୀ, ସମସ୍ତହିଁ ସେହି ଶେଷ ଲକ୍ଷ୍ୟକୁ ଆଖିରେ ରଖି ପରିଚାଳିତ ହେବେ ।

ମୋ ମତରେ ଆଦର୍ଶ ଶିକ୍ଷା ବ୍ୟବସ୍ଥା ସେହି ଯାହା ଶିକ୍ଷାକୁ କେବଳ ଲେବୁଲ୍‌-ସଂଗ୍ରହ ବୋଲି ମନେକରେନା ବା ଗୁଡ଼ାଏ ଖବର-ସଂଗ୍ରହକୁ ଜ୍ଞାନ ବୋଲି ଗ୍ରହଣ କରେନା । ବରଂ ଅସଂଲଗ୍ନ ଗୁଡ଼ାଏ ଇନ୍‌ଫରମେଶନ୍‌(ଖବର-ଯୋଗାଣ) ଅପେକ୍ଷା ବୁଦ୍ଧି, ବ୍ୟକ୍ତିତ୍ୱ ଓ ବିଚାରର ଫର୍‌ମେଶନ୍‌(ଗଠନ)କୁ ହିଁ ପ୍ରକୃତ ଶିକ୍ଷା ବୋଲି ମନେକରେ ।

ମୋ ମତରେ ଆଦର୍ଶ ଶିକ୍ଷା ସେହି ଯାହା ମନୁଷ୍ୟ ଜୀବନରେ ପ୍ରକୃତିର ଭିନ୍ନ ଭିନ୍ନ ପରିବର୍ତ୍ତନ ସହିତ ନିଜକୁ ଖାପଖୁଆଇ ଆପଣାକୁ ବ୍ୟବସ୍ଥିତ କରେ । ପିଲା ଖେଳନ୍ତି, ଓ ତରୁଣ ଦୈହିକ ସ୍ଫୂର୍ତ୍ତି ଭଲପାନ୍ତି । ଏସବୁ କେବଳ ସ୍ୱାସ୍ଥ୍ୟକର ନୁହେଁ, ବହୁ ଦରକାରୀ ଅଭିଜ୍ଞତାର ପ୍ରସୂତି । କିନ୍ତୁ ଆମ ସ୍କୁଲ୍ କଲେଜରେ କ'ଣ ଦେଖୁ ଆମେ ? ଦିନରାତିର ଅଧିକାଂଶ ସମୟ କେବଳ ବସିରହି, ଲଘୁକର୍ମମାନଙ୍କରେହିଁ ବ୍ୟସ୍ତ ରହିବାରୁ, ଆମର ତରୁଣ ଓ ତରୁଣୀଗଣ ଶରୀରର ସ୍ୱାସ୍ଥ୍ୟସାଧନ, ଓ ସୁଷମା, ସମସ୍ତହିଁ ହରାଉଛନ୍ତି । କୌଣସିପ୍ରକାର କଠିନ ଶ୍ରମ ପାଇଁ ସେମାନେ ଅନୁପଯୁକ୍ତ ହୋଇଉଠୁଛନ୍ତି । ବାଳକମାନଙ୍କ ଅପେକ୍ଷା ବାଳିକାମାନଙ୍କର ସ୍ୱାସ୍ଥ୍ୟ ଆହୁରି ଉଦ୍‌ବେଗର କାରଣ । ତେଣୁ ଶିକ୍ଷା ଏପରି ହେବା ଉଚିତ, ଯେପରିକି ପିଲାବେଳେ ପିଲାପରି ପଢ଼ିବେ ଓ ଯୌବନରେ ପ୍ରତ୍ୟେକ ଛାତ୍ର ଓ ଛାତ୍ରୀକୁ ଯୁବକୋଚିତ ପ୍ରଚୁର ଦୈହିକ ଶ୍ରମ କରିବାକୁ ପଡ଼ିବ, ଆଉ ୨୧ ବର୍ଷ ବୟସ ବେଳକୁ ପ୍ରତ୍ୟେକ ଯୁବକ ଓ ବାଳିକା ଯେପରି କୌଣସି ନା କୌଣସି କର୍ମରେ ଅର୍ଜନ କରିବା ଆରମ୍ଭ କରନ୍ତି । ସମାଜର ଆଦିମ ଅବସ୍ଥାରେ ଓ ଏବେ ମଧ୍ୟ ପଲ୍ଲୀ ଅଞ୍ଚଳରେ ବାଳକ ଓ ବାଳିକା ୫ ।୬ ବର୍ଷ ବୟସରୁ ବାପମାଙ୍କ ସହିତ ମୌଳିକ ବ୍ୟବସାୟ ଆରମ୍ଭ କରିଥାନ୍ତି । ଆଠଦଶବର୍ଷ ବୟସରୁ ସେମାନେ ଆତ୍ମନିର୍ଭର କହିଲେ ଚଳେ । ଶିକ୍ଷା ବ୍ୟବସ୍ଥା ମଧ୍ୟ ଏହି ସୁନ୍ଦର ପ୍ରାକୃତିକ ସାମାଜିକ ବ୍ୟବହାରକୁ ଅଙ୍ଗୀଭୂତ କରିବା ଉଚିତ । ଏହାଦ୍ୱାରା ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିର, ମୂଳରୁ ଶ୍ରମାଭ୍ୟାସ ଚରିତ୍ରଗତ ହୋଇଉଠନ୍ତା ।

ମୋ ମତରେ ଭାରତର ଜାତୀୟ ଆଦର୍ଶ ଶିକ୍ଷା ମଧ୍ୟ ଏପରି ହେବା ଉଚିତ ଯେପରି ଜାତିର ଶତକରା ୮୦ ଭାଗ ଲୋକ ମଫସଲରେ ରହିବେ, କୃଷି ଓ କୁଟୀରଶିଳ୍ପପାଇଁ । ଦେଶରେ ଖାଦ୍ୟଶସ୍ୟ ଓ ବ୍ୟବହାର୍ଯ୍ୟ ନାନା ଜିନିଷର ବୃଦ୍ଧି ଓ ଉନ୍ନତିପାଇଁ ଭାରତବର୍ଷର ସାତଲକ୍ଷ ଗ୍ରାମରେ ଆମେ କୋଟି କୋଟି ଶିକ୍ଷିତ କୃଷକ, ବଢ଼େଇ, ମାଳୀ, କମାର, କୁମ୍ଭାର ଓ ମୋଚି ଚାହୁଁ ।

ଏମାନେ ହେବେ ଜନତାର ଶତକରା ୮୦; ଦେଶର କାରଖାନା ସବୁ ଚଳେଇବାପାଇଁ ଶିକ୍ଷିତ କୁଶଳୀ ଶ୍ରମିକ ଶତକରା ୧୦ ଓ ଦେଶର ଶାସନ, ବିଚାର, ସ୍ୱାସ୍ଥ୍ୟ, ଗଠନ ଓ ଶିକ୍ଷା ବିଭାଗ ଆଦି ଚଳେଇବା ପାଇଁ ସବୁଠାରୁ ବୁଦ୍ଧିମାନ୍ ଶତକରା ୧୦ ଭାଗ ଲୋକ ବାଣ୍ଟିହୋଇ ରହିଲେ, ଦେଶରେ ଏତେ ବିଶୃଙ୍ଖଳା ଦେଖାଯାନ୍ତାନାହିଁ କି, ବେକାର ସମସ୍ୟା ରହନ୍ତାନାହିଁ । ମାନଦଣ୍ଡକୁ ନିମ୍ନ କରି ଉଚ୍ଚଶିକ୍ଷା ନାମରେ କେବଳ ଡିଗ୍ରୀ ବାଣ୍ଟିବାର ବ୍ୟବସ୍ଥା କଲେ, ଅଧିକାଂଶ ଅଯୋଗ୍ୟ ଲୋକହିଁ ସେଥିରୁ ଫାଇଦା ଉଠେଇବେ ଓ ଦେଶରେ ପ୍ରକୃତ ଯୋଗ୍ୟତାର ସମ୍ମାନ ଲୋପ ହେବ । ଜାତିର କ୍ରମାବନତି କେହି ତା' ହେଲେ ରୋଧ କରିପାରିବ ନାହିଁ । ଘୋର ଦୁଃଖର ବିଷୟ ଏହି ଯେ, ଭାରତବର୍ଷରେ ବର୍ତ୍ତମାନ ଏହାହିଁ ଆଖିଆଗରେ ଘଟୁଛି ।

ପୁଣି ମୋ ମତରେ ଆଦର୍ଶ ଜାତୀୟ ଶିକ୍ଷା ବ୍ୟବସ୍ଥା ସେହି ଯାହା ସମ୍ପୃକ୍ତ ଜାତିର ସଂସ୍କୃତିର ଶ୍ରେଷ୍ଠାଂଶସବୁକୁ ସ୍କୁଲ୍ କଲେଜମାନଙ୍କରେ ଯତ୍ନ ଓ ଉତ୍ସାହର ସହିତ ବଞ୍ଚେଇରଖିବା ସହିତ, ଜାତିର ପାରମ୍ପରିକ ଦୋଷ, ଦୁର୍ବଳତା, ତାହା ଯେପରି ନୂତନ ପୁରୁଷ ଭିତରେ ନପଶେ ତାହାର କଠୋର ବ୍ୟବସ୍ଥା କରିଥାଏ । ମୁଁ କେତୋଟି ଦୃଷ୍ଟାନ୍ତ ଦିଏ ।

ଭାରତବର୍ଷରେ ସହସ୍ର ସହସ୍ର ବର୍ଷ ଧରି ଗୁରୁ ପିତା ପରି ମାନ୍ୟ । ପିତାମାତାଙ୍କୁ ମଧ ଈଶ୍ୱରଙ୍କ ସହିତ ସମ୍ମାନ ଦିଆଯାଇଛି । ଇଏ ତ କିଛି ଖରାପ କଥା ନୁହେଁ । ଏହା ଉନ୍ନତ ସଂସ୍କୃତିର ଚିହ୍ନ । ଆମର ବିଦ୍ୟାନୁଷ୍ଠାନମାନଙ୍କ ଦେଇ ଏହି ଆଦର୍ଶକୁ ଆମକୁ ବଞ୍ଚେଇ ରଖିବାକୁ ହେବ ।

ଭାରତବର୍ଷର ଆଦର୍ଶ ହେଉଛି ସରଳ ଜୀବନ ଭିତରେ ଉଚ୍ଚ ଚିନ୍ତା । ଆମର ବିଦ୍ୟାନୁଷ୍ଠାନମାନଙ୍କରେ ଏହି ଆଦର୍ଶକୁ ପରିପୂର୍ଣ୍ଣଭାବରେ କାହିଁକି ବଞ୍ଚାଇ ହେବନି, ତାର କୌଣସି ଯୁକ୍ତିନାହିଁ । ବିଦ୍ୟାଳୟମାନଙ୍କରେ କେହି ସିଲ୍କ ବ୍ୟବହାର କରିବେନାହିଁ, ସମସ୍ତେ ସମାନ କିସମର ପୋଷାକ ବ୍ୟବହାର କରିବେ, ସପ୍ତାହରେ ଏକ ଦିନରେ ସବୁ ଛାତ୍ର ନିଜ ଲୁଗାପଟା ନିଜ ହାତରେ ସଫା କରିବେ । ଏସବୁ ଅକ୍ଳେଶରେ ହୋଇପାରନ୍ତାନାହିଁ କି ?

ଅନ୍ୟ ପକ୍ଷରେ ଏହା ଜଣା କଥା ଯେ, ଆମ ଦେଶରେ ଲୋକଙ୍କ ଭିତରେ ଗୌଷ୍ଠିକ ସହଯୋଗ, ଗୌଷ୍ଠିକ ପରିଚ୍ଛନ୍ନତା, ସୌନ୍ଦର୍ଯ୍ୟ-ମର୍ଯ୍ୟାଦା, ଅନ୍ୟ ସଭ୍ୟ ଜାତିମାନଙ୍କ ଭିତରେ ଯେପରି ବିକଶିତ ହେବାର ଦେଖାଯାଏ, ସେପରି ହୋଇନାହିଁ । ଅନେକ ୟୁରୋପୀୟ ଜାପାନର ଗାଁ ଗାଁ ବୁଲିଛନ୍ତି,ଖାଲି ମଇଳା ଦେଖିବାପାଇଁ; କିନ୍ତୁ କୌଣସିଠାରେ ଭେଟିନାହାନ୍ତି—ଏତେ ପରିଷ୍କାର ପରିଚ୍ଛନ୍ନ ସେ ଜାତି, ପୁଣି ସମଗ୍ର ଦେଶ ଓ ଜାତିରେ ଏହି ଭାବ ଏପରି ଓତପ୍ରୋତ ମିଶିଯାଇଛି । ଭାରତବର୍ଷର ଲୋକେ ବଡ଼ ନୋଂରା, ମଳିଛିଆ, ଅପରିଷ୍କୃତ ବୋଲି ଚାରିଆଡ଼େ ଆମର ଦୁର୍ନାମ । ଆମକୁ ଏ ଦୁର୍ନାମର ମୂଳପୋଛ କରିବାକୁ ହେବ । ଏ ଦୁର୍ନାମ ତ ମିଥ୍ୟା ଦୋଷାରୋପ ନୁହେଁ । ଆମ ଗାଁମାନଙ୍କୁ ପଶିଗଲେ ଆମେ ଦେଖୁ କ'ଣ ? ଆମ ଓଡ଼ିଶାର ପ୍ରଧାନ ସହର କଟକ ଯେପରି କୁତ୍ସିତ, ଆମେ ସେଥିରେ ଲଜ୍ଜିତ ହେବାର କଥା । କିନ୍ତୁ ଆମର ଗଭର୍ଣ୍ଣର ବା ମୁଖ୍ୟମନ୍ତ୍ରୀ ମଧ ଏଥି ପ୍ରତି ନିଶ୍ଚିନ୍ତ, କାରଣ କୁତ୍ସିତତା, ଅପରିଚ୍ଛନ୍ନତା ଆମ ଜାତିର ରକ୍ତଗତ ଦୋଷ ହୋଇଗଲାଣି । ଗୋବରପୋକ ଗୋବରକୁ ଭଲପାଇଲା ପରି ଆମେ ସକଳ ଜଘନ୍ୟତାକୁ ସ୍ୱାଭାବିକ ବୋଲିହିଁ ଧରିନେଉଛୁ । ୟୁରୋପୀୟମାନେ ଜାପାନୀମାନଙ୍କ

ସୌନ୍ଦର୍ଯ୍ୟବୋଧର ଶତମୁଖରେ ପ୍ରଶଂସା କରନ୍ତି । ଜାପାନର ଘରସଜ୍ଜା, ସହରସଜ୍ଜା ଲୋକଙ୍କର ବେଶଭୂଷଣ କଥା ଛାଡ଼ିଦିଅ, ଘରର ଝାଁଟୁଆଟା, ଏପରିକି ପାଇଖାନାର ଡଙ୍କିଟା ମଧ୍ୟ ଯେକୌଣସି ଦେଶର କଳା-ପ୍ରଦର୍ଶନୀରେ ସ୍ଥାନ ପାଇବାର କଥା । ସୌନ୍ଦର୍ଯ୍ୟବୋଧ ସେ ଜାତିର ଏତିକି ମଜ୍ଜାଗତ । ଆମ ଦେଶରେ ନରଙ୍କ କଥା ଛାଡ଼ିଦିଅ, ନାରୀମାନେ ବି ରୂପ-ସଜ୍ଜ ନୁହନ୍ତି, ରୂପଚର୍ଚ୍ଚା ଯେ ସଂସ୍କୃତିର ଏକ ଅପରିହାର୍ଯ୍ୟ ଅଙ୍ଗ, ତାହା ବି ତାଙ୍କର ଅନୁଭବର ବାହାରେ । ଏ ଦେଶରେ ବହୁ ବଡ଼ ଲୋକଙ୍କ ଘରକୁ ଯାଅ, ଦେଖିବ, ଘରେ ଚାରିଆଡ଼େ ଧୂଳି ଜମା ହେଇଛି, ଜିନିଷପତ୍ରର ସାଜସଜ୍ଜା ନାହିଁ, ଘରେ ସୌନ୍ଦର୍ଯ୍ୟପାଇଁ ସ୍ଥାନହିଁ ନାହିଁ ।

ସଭ୍ୟ ସ୍ୱାଧୀନ ଜାତି ଭାବରେ ଭାରତବର୍ଷର ଜନସାଧାରଣ ଭିତରେ ଆମକୁ ପରିଚ୍ଛନ୍ନତା ଓ ରୂପବୋଧ ପ୍ରତିଷ୍ଠିତ କରିବାକୁ ହେବ ଆମର ସକଳ ବିଦ୍ୟାଳୟ ଦେଇ । ଆମର ପ୍ରତ୍ୟେକ ବାଳକ ଓ ବାଳିକା ଚିତ୍ରପତ୍ରିମା ପରି ଦିଶିବେ, ଆମର ପ୍ରତ୍ୟେକଟି ଘର ଦେବାଳୟ ପରି ଶୁଦ୍ଧ, ସୁନ୍ଦର, ପରିଚ୍ଛନ୍ନ ହେବ । ଆମର ସ୍କୁଲ୍, ସହର ଓ ଗାଁସବୁ ସ୍ୱାସ୍ଥ୍ୟର, ସୌନ୍ଦର୍ଯ୍ୟର, ଶୁଦ୍ଧିର, ଆନନ୍ଦର ଏକ ଏକ ଜୀବନ୍ତ ରଙ୍ଗମଞ୍ଚ ହୋଇଉଠିବ । ଦେଶରେ ଅସ୍ପୃଶ୍ୟତା ରହିବନାହିଁ, ଜାତିପ୍ରଥା ସମୂଳେ ଲୁପ୍ତ ହେବ, ସମସ୍ତେ ସୁସ୍ଥ ସୁନ୍ଦର ଜୀବନଯାପନ କରିବେ ।

ଏହାହିଁ ହେବା ଉଚିତ ଆମର ଜାତୀୟ ଶିକ୍ଷା ବ୍ୟବସ୍ଥାର ମହାନ୍ ଲକ୍ଷ୍ୟ । ନୁହେଁ କି ?

---

# ଆମର ଶିକ୍ଷା ସମସ୍ୟା

## ୧– ଚାହି ନୂତନ ଦୃଷ୍ଟିକୋଣ–

ଆମ୍ଭେମାନେ ଆଜି ଯେ ଦେଶମୟ ଶିକ୍ଷା ବିସ୍ତାରପାଇଁ କଳ୍ପନା ଓ ଚେଷ୍ଟା କରୁଛୁ ତାହା କେବଳ ୟୁରୋପୀୟ ଅନୁକରଣରେ । ଆମେ ଏଇ ଖବର ରଖିଛୁ ଯେ ଇଂଲଣ୍ଡ, ଜର୍ମାନୀ, ଆମେରିକାରେ ଓ ଏପଟେ ଜାପାନରେ ଶତକଡ଼ା ୯୯ 'ଶିକ୍ଷିତ'–ଅର୍ଥାତ୍ ଲେଖି ପଢ଼ି ଜାଣନ୍ତି । ସେମାନଙ୍କର ସମାନ ବୋଲି ପରିଚିତ ହେବାକୁ ହେଲେ ଆମର ଜନତାକୁ ବି ଶତକରା ୯୯ ଅନୁପାତରେ ସାକ୍ଷର କରାଇବାକୁ ହେବ । ଆମର ଶିକ୍ଷାପ୍ରସାର ପଛରେ ଏହାହିଁ ବୋଧହୁଏ ବଡ଼ ପ୍ରେରଣା, ଅର୍ଥାତ୍ ଏଇ ପରାନୁସରଣ ।

ବ୍ରିଟିଶ୍ ଅମଳରେ ଡିଗ୍ରୀ ଓ ସାର୍ଟିଫିକେଟ୍ ବଳରେ ଚାକିରି, ସାମାଜିକ ମର୍ଯ୍ୟାଦା ଓ ସମ୍ପଦ ଲାଭ ହେବାରୁ ଦେଶମୟ ବେସରକାରୀ ପ୍ରଚେଷ୍ଟାରେହିଁ ଗଢ଼ିଉଠିଛି ସହସ୍ର ସହସ୍ର ଡିଗ୍ରୀ ଓ ସାର୍ଟିଫିକେଟ୍-ପ୍ରଦାନକାରୀ ସ୍କୁଲ୍ ଓ କଲେଜ । ଦେଶର ଦୁର୍ଭାଗ୍ୟକୁ, ଆମର ସ୍ୱାଧୀନ ସରକାର ମଧ୍ୟ ସେହି ଡିଗ୍ରୀ ଓ ସାର୍ଟିଫିକେଟ୍‌ର ରଣପା ଉପରେ ନିର୍ଭରକରିହିଁ ଶାସନଯନ୍ତ୍ର ଚଳାଉଛନ୍ତି । ଫଳରେ ସେହି ଡିଗ୍ରୀ-ସାର୍ଟିଫିକେଟ୍‌ଦାନକାରୀ ସ୍କୁଲ୍ କଲେଜର ସଂଖ୍ୟାହିଁ ବଢୁଛି – ପ୍ରକୃତ ଶିକ୍ଷାର ପ୍ରସାର ନୁହେଁ ।

ସାର୍ବଜନୀନ ଶିକ୍ଷା ଇଂଲଣ୍ଡରେ ଆରମ୍ଭ ହୁଏ ୧୮୭୦ରେ– ଏପର୍ଯ୍ୟନ୍ତ ଏକଶତ ବର୍ଷ ବି ପୂରା ହୋଇନି । ଏବେ ଇଂଲଣ୍ଡରେ ମେହନ୍ତର ବି ଲେଖି ପଢ଼ି ଜାଣେ । କିନ୍ତୁ ଏଇ ପୂରା ସାକ୍ଷର ଇଂଲଣ୍ଡ କି ୧୮୭୦ ପୂର୍ବର ଅର୍ଦ୍ଧ-ସାକ୍ଷର ଇଂଲଣ୍ଡଠାରୁ କୌଣସି ଗୁଣରେ ମହତ୍ତର ହୋଇଛି ? ଯେଉଁ ବ୍ରିଟେନ୍, କାନାଡ଼ା, ଯୁକ୍ତରାଷ୍ଟ୍ର, ଅଷ୍ଟ୍ରେଲିଆ, ଦକ୍ଷିଣ ଆଫ୍ରିକା ପ୍ରଭୃତି ଧରଣୀର ବିସ୍ତୀର୍ଣ୍ଣ ଭୂଭାଗ ନିଜର ଦୃଢ଼ ଚରିତ୍ର, ଆଫଳ ଅଧ୍ୟବସାୟ, ଶକ୍ତିଶାଳୀ ବାହୁବଳରେ ସଭ୍ୟ ଓ ଋଦ୍ଧିମନ୍ତ କରାଇ ପାରିଥିଲା, ସେ ୧୮୭୦ପୂର୍ବର ବ୍ରିଟେନ୍ । ୧୮୭୦ ପରେ ବ୍ରିଟିଶ୍ ଜାତି ପୂରାମାତ୍ରାରେ ସାକ୍ଷର ହୋଇଛି, କିନ୍ତୁ ଅଧୋଗାମୀ ହୋଇଛି ତା'ର ସାହିତ୍ୟ, ତା'ର ଜାତୀୟ ଚରିତ୍ର– ଜନଶୂନ୍ୟ ହୋଇଛି ତା'ର ପଲ୍ଲୀ, ସୃଷ୍ଟି ହୋଇଛି ଅଶ୍ରୁତପୂର୍ବ ବେକାର ସମସ୍ୟା ।

''ଇଂଲଣ୍ଡର ସାମାଜିକ ଇତିହାସ'' ପୁସ୍ତକରେ ଟ୍ରିଭେଲିୟାନ୍ ଏହି 'ଆଧୁନିକ' ସାର୍ବଜନୀନ ଶିକ୍ଷା ବ୍ୟବସ୍ଥା ସମ୍ବନ୍ଧରେ ଏଇପରି ଲେଖିଛନ୍ତି (ପୃ ୫୮୨)–''ଏ ଶିକ୍ଷା ବ୍ୟବସ୍ଥା ସହରରେ ଜନ୍ମ ନେଲା ଏବଂ ମଫସଲର ଯାହା ପ୍ରୟୋଜନ ତାହା ଏ ବ୍ୟବସ୍ଥା ପୂରଣ କରିପାରିନାହିଁ ... ପଲ୍ଲୀରୁ ସହରକୁ ଲୋକ ଟାଣିଆଣିବାରେ ଏ ଶିକ୍ଷା ବ୍ୟବସ୍ଥା ବରଂ ସାହାଯ୍ୟ କରିଛି । ସାଧାରଣଭାବରେ କହିବାକୁ ଗଲେ, ଏଇ ବ୍ୟବସ୍ଥା ଏକ ବିରାଟ ଜନତା ସୃଷ୍ଟି କରିଛି, ଯେଉଁମାନେ କି ପଢ଼ିଜାଣନ୍ତି, କିନ୍ତୁ କ'ଣ ପାଠ୍ୟ ବା ଅପାଠ୍ୟ ତାହା ବିଚାର କରିବାର ଶକ୍ତି ସେମାନଙ୍କର ନାହିଁ – ଶସ୍ତା ହୁଜୁଗର ଶରବ୍ୟ ସେମାନେ ।''

ସାର୍ବଜନୀନ ଶିକ୍ଷା ପ୍ରସାର ଫଳରେ ଆମେ ଶେଷରେ ଏଇ ଅବସ୍ଥାରେ ପହଞ୍ଚିବାନି କି ?

ଏ' ତ ଗଲା ପରିଣାମ । ପଶ୍ଚିମରାଜ୍ୟମାନଙ୍କ ପରି ସାର୍ବଜନୀନ ଶିକ୍ଷା ପ୍ରସାରପାଇଁ ଆମର କିନ୍ତୁ ଅର୍ଥର ଅନଟନ । କେବଳ ନିୟୁୟର୍କ ସହରର ଆୟ, ଆମ କେନ୍ଦ୍ର ସରକାରର ସମଗ୍ର ଆୟ ସଙ୍ଗେ ସମାନ । ଏଇକ୍ଷଣି ଯଦି ସାର୍ବଜନୀନ ଶିକ୍ଷା ଓଡ଼ିଶାରେ ପ୍ରବର୍ତ୍ତିତ କରାଯାଏ; ତେବେ କେବଳ ପ୍ରାଇମେରୀ ଶିକ୍ଷାପାଇଁ ଆମ ଓଡ଼ିଶା ସରକାରଙ୍କର ସମଗ୍ର ଆୟ ନିଅଣ୍ଟ ହେବ ।

ଦେଖିବାର କଥା ଏହି ଯେ, ଊନବିଂଶ ଶତାବ୍ଦୀରେ ପଶ୍ଚିମ ରାଜ୍ୟମାନଙ୍କରେ ଯେଉଁ ସାର୍ବଜନୀନ ଶିକ୍ଷା ପ୍ରସାର ହେଲା, ତା ସଙ୍ଗେ ଶିଳ୍ପବିପ୍ଲବ ଘନିଷ୍ଠଭାବରେ ଜଡ଼ିତ । ଗ୍ରେଟ୍ ବ୍ରିଟେନ୍‌ର ୧୭ଟି ବିଶ୍ୱବିଦ୍ୟାଳୟ ଭିତରୁ ପ୍ରାୟ ୧୨ଟି ଊନବିଂଶ ଶତାବ୍ଦୀର ମଧ୍ୟଭାଗର ପରେ ହିଁ ସ୍ଥାପିତ ହୋଇଛି—ଶିଳ୍ପବିପ୍ଲବ ପରେ; ଇଂରେଜ ପୁଞ୍ଜିପତିମାନଙ୍କ ହାତରେ ସାରା ପୃଥିବୀର ଟଙ୍କା ପଇସା ଜମାହେବା ଫଳରେ । ବିଶ୍ୱବିଦ୍ୟାଳୟ ଓ ସାର୍ବଜନୀନ ପ୍ରାଇମେରୀ ଶିକ୍ଷାର ପ୍ରସାର ପ୍ରାୟ ସେହି ଏକ ସମୟରେ ଓ ପ୍ରାୟ ସେହି ଆର୍ଥିକ ପରିବେଶ ଫଳରେ ସମ୍ଭବ ହୋଇଛି । ଯାହା କେବଳ ଐତିହାସିକ ଆକସ୍ମିକତା ଏବଂ ଯାହାର ପରୀକ୍ଷା ଏକଶତ ବର୍ଷ ବି ପୂରା ହୋଇନି ଏବଂ ଯାହାର ଫଳ ଏକାବେଳକେ ଦୋଷଶୂନ୍ୟ ନୁହେଁ, ତାହାର ପୂରାପୂରି ଅନ୍ଧ ଅନୁକରଣ କରିବାକୁ ଯିବା ଏକ ମାରାତ୍ମକ ଚେଷ୍ଟା । ଆମ ଶିକ୍ଷା ବ୍ୟବସ୍ଥାରୁ ଆମେ ଆଜି ଯାହା ଅକଲ୍ୟାଣ ପାଉଛୁ, ତାହା ଅନେକାଂଶରେ କେବଳ ଏଇପ୍ରକାର ଅନ୍ଧ ଅନୁକରଣରୁ ।

ଦେଶବାସୀ ସ୍ମରଣ ରଖିବା ଉଚିତ ଯେ, ଇଂଲଣ୍ଡ, ଜର୍ମାନୀ ବା ଆମେରିକାର ଯେତେବେଳେ ଅସ୍ତିତ୍ୱହିଁ ନଥିଲା, ତା'ର ବହୁ ସହସ୍ର ବର୍ଷ ପୂର୍ବରୁ ଭାରତବର୍ଷରେ ବ୍ୟାପକ ପ୍ରାଇମେରୀ ଶିକ୍ଷାର ଓ ଉଚ୍ଚତର ଶିକ୍ଷାର ସୁନ୍ଦର ବ୍ୟବସ୍ଥା ଥିଲା । ଊନବିଂଶ ଶତାବ୍ଦୀର ଶେଷ ପାଦଯାଏଁ ଭାରତବର୍ଷରେ ଯେତେ ସାକ୍ଷର ଲୋକ ଥିଲେ, ଲୋକସଂଖ୍ୟାନୁପାତରେ ସେତେ ସାକ୍ଷର ସେ ସମୟରେ ବିଲାତରେ ନଥିଲେ । ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ନେପୋଲିଅନ୍ ଅଧିକୃତ ପ୍ରସା ଷ୍ଟେଟ୍‌ରେ ଜାତିକି ଜାଗ୍ରତ କରେଇବାର ଏକ ଅସ୍ତ୍ରରୂପେ ସାର୍ବଜନୀନ ଶିକ୍ଷା ଆରମ୍ଭ ହୁଏ । ଏହି ଶିକ୍ଷା ପ୍ରକୃତରେ ଏପରିଭାବରେ କଳ୍ପିତ ଓ ପରିଚାଳିତ ହୋଇଥିଲା ଯେ, ୩୦ - ୪୦ ବର୍ଷ ଭିତରେ କ୍ଷୁଦ୍ର ପ୍ରସା ଷ୍ଟେଟ୍ ୟୁରୋପରେ ବିକ୍ରମ ଓ ସମ୍ପଦରେ ଏକ ଆତଙ୍କର କାରଣ ହୋଇଉଠିଲା ଏବଂ ସମଗ୍ର ଫ୍ରାନ୍ସ ସାମ୍ରାଜ୍ୟକୁ ରଣକ୍ଷେତ୍ରରେ ବିଧ୍ୱସ୍ତ କରି କ୍ଷୁଦ୍ର ପ୍ରସା ନେପୋଲିୟନ୍ ବିଜୟର ପ୍ରତିହିଂସା ନେଲା । ଯାର ପରେ ପରେ ପ୍ରସା ଷ୍ଟେଟ୍‌ର ନେତୃତ୍ୱରେ ୫୦ -୬୦ଟି ଛୋଟ ଛୋଟ ଜର୍ମାନୀ-ଭାଷୀ ଷ୍ଟେଟ୍ ଏକତ୍ରିତ ହୋଇ ସୃଷ୍ଟି ହେଲା ବିଶ୍ୱାତଙ୍କ ଓ ବିଶ୍ୱାଦର୍ଶ ଜର୍ମାନୀ ସାମ୍ରାଜ୍ୟ । ଶିକ୍ଷାର ଏପ୍ରକାର ତତ୍କାଳିକ ଉପକାର ଫଳରେ ଜର୍ମାନୀ ରାଷ୍ଟ୍ରହିଁ ସର୍ବତ୍ର ସାର୍ବଜନୀନ ଶିକ୍ଷା ବ୍ୟବସ୍ଥାର ଆଦର୍ଶ ହୋଇଉଠିଲା । ଫଳରେ ୧୮୭୦ ଆଡ଼ିକି ଇଂଲଣ୍ଡ ପ୍ରଭୃତି ଦେଶରେ ସାର୍ବଜନୀନ ଶିକ୍ଷାର ପ୍ରସାର ହେଲା ଏଇ ଜର୍ମାନୀ ଅନୁକରଣ ଉପରେ । ଊନବିଂଶ ଶତାବ୍ଦୀର ବିଶ୍ୱ-ବିଖ୍ୟାତ ଶିକ୍ଷାବିଜ୍ଞାନୀମାନେ ପ୍ରାୟ ଅଧିକାଂଶ ହିଁ ଜର୍ମାନ୍ ।

ଜର୍ମାନୀର ଅନୁକରଣରେ ସମଗ୍ର ପାଶ୍ଚାତ୍ୟ ଭୂଖଣ୍ଡରେ ସାର୍ବଜନୀନ ଶିକ୍ଷାର ଯେପରି ବ୍ୟବସ୍ଥା ହେଲା ଓ ଏବେ ହେଉଛି, ତା ଭିତରେ ଓ ଆମର ପ୍ରାଚୀନ ଭାରତରେ ସହସ୍ର ସହସ୍ର

ବର୍ଷ ଧରି ଯେଉଁ ଶିକ୍ଷା ବ୍ୟବସ୍ଥା ଥିଲା, ତା ଭିତରେ ଏକ ବିରାଟ ପାର୍ଥକ୍ୟ ଅଛି, ଯାହା କି ଆମେ ଦେଖି ମଧ୍ୟ ଦେଖୁନାହୁଁ ବା ଅଗ୍ରାହ୍ୟ କରୁଛୁଁ। ତାହା ଏହି ଯେ ପାଶ୍ଚାତ୍ୟ ଭୂଖଣ୍ଡରେ ଶିକ୍ଷା ବ୍ୟବସ୍ଥା ବ୍ୟବହୃତ ହୋଇଆସୁଛି ରାଷ୍ଟ୍ରର ଅସ୍ତ୍ରରୂପେ। କିନ୍ତୁ ଭାରତବର୍ଷରେ ତାହା ଥିଲା ବ୍ୟକ୍ତିର ବିବର୍ତ୍ତନର ଉପାୟରୂପେ। ଓଡ଼ିଆ ପିଲା ଚାଟଶାଳୀକୁ ଆସୁଥିଲା ଭାଗବତ ପଢ଼ିବାର ଶକ୍ତି ଅର୍ଜନ କରିବାପାଇଁ। କିନ୍ତୁ ହିଟଲର୍ ଓ ମୁସୋଲିନୀ ଜାତିର ପିଲାଙ୍କୁ ସ୍କୁଲ୍‌କୁ ପଠାଉଥିଲେ ଫାସିଷ୍ଟ ହେବାପାଇଁ ଏବଂ ଇଂଲଣ୍ଡ ଓ ଆମେରିକା ପିଲାକୁ ପଠାନ୍ତି ସିଟିଜନ୍ ବା ଉପଯୁକ୍ତ ନାଗରିକ ହେବାକୁ। ଇଂରେଜ ଅଧିକୃତ ଭାରତବର୍ଷରେ ସାମ୍ରାଜ୍ୟ ସ୍ଥାପକ ଇଂଲଣ୍ଡ, ଶିକ୍ଷା ବ୍ୟବସ୍ଥାକୁ ଏପରି କଳ୍ପିତ ଓ ପରିଚାଳିତ କରିଥିଲା, ଯେପରି ତା'ର ସାମ୍ରାଜ୍ୟ ଚଳେଇବା ପାଇଁ ଲୋକ ମିଳିବେ। ସେ ଶିକ୍ଷା ବ୍ୟବସ୍ଥାରେ ନାହିଁ ଥିଲା ସିଟିଜନ୍ ବା ନାଗରିକ ହେବାର ଆଦର୍ଶ, ନାହିଁ ମଧ୍ୟ ବ୍ୟକ୍ତିତ୍ୱର ଲକ୍ଷ୍ୟ।

ଆଜି ସ୍ୱାଧୀନ ଭାରତବର୍ଷରେ ଆମକୁ ଏହି ଦୁଇ ଆଭିମୁଖ୍ୟରୁ ଗୋଟାକୁ ବାଛିନେବାକୁ ହେବ। ଶିକ୍ଷାକୁ ରାଷ୍ଟ୍ରର ଅସ୍ତ୍ର ମାତ୍ର ରୂପେ ଦେଖିବା, ସିଟିଜନ୍ ବା ସୋସାଲିଷ୍ଟ୍ ବା କମ୍ୟୁନିଷ୍ଟ ଗଢ଼ିବାର ଉପାୟ ମାତ୍ର ରୂପେ ବ୍ୟବହାର କରିବା, ମାନବିକ ଜ୍ଞାନର ଏକ ଅପକୃଷ୍ଟ ଓ ଅପକାରକ ବ୍ୟବହାର। ଡକାଏତ୍ ଡକାୟତ ତିଆରି କରିବା ବା ବଡ଼ ବାଘ ଛୁଆ ବାଘକୁ ଜନ୍ତୁ ମାରିବା ଶିଖେଇବା ଯାହା, କୌଣସି ଏକ ପ୍ରତିଷ୍ଠିତ ଶାସକ-ଗୋଷ୍ଠୀ, ସେ କଂଗ୍ରେସ ହେଉ, ବା ସୋସାଲିଷ୍ଟ ହେଉ ବା କମ୍ୟୁନିଷ୍ଟ ହେଉ—ନିଜ ପନ୍ଥାରେ ସମଗ୍ର ଜାତିକୁ ଗଢ଼ିବାର ଚେଷ୍ଟା କରିବା ପ୍ରାୟ ସେଇପ୍ରକାର। ଶିକ୍ଷାର ପରମ ଆଦର୍ଶ ହେଉଛି ମନୁଷ୍ୟ ଭିତରର ପଶୁତ୍ୱକୁ ନଷ୍ଟ କରି ଦେବତ୍ୱର ବିକାଶ କରିବା ବା ଅନ୍ୟ କଥାରେ ଆତ୍ମବିବର୍ତ୍ତନ। ଏଇ ଆଦର୍ଶକୁ ଆମେ ଯେତେବେଳଯାଏ ପାସୋରିଥିବୁ ବା ପଛକୁ ପକେଇଥିବୁ, ସେତେଦିନଯାଏ ଦେଶ ଓ ଜାତି ଶିକ୍ଷା-ମଶାଲରୁ ଧୂଆଁ ଯେତେ ପାଇବ, ସେତେ ଆଲୋକ ପାଇବ ନାହିଁ। ପାଶ୍ଚାତ୍ୟ ଜଗତରେ ଏବେ ସେଇଆହିଁ ଘଟୁଛି। ସେଠି ଶତକରା ଶହେ ଶିକ୍ଷିତ କଳା ଓ ବିଜ୍ଞାନର ସେଠି ଜୟଜୟକାର। କିନ୍ତୁ ଇଉରୋପ ନିଜ ଭିତରର ବର୍ବରତାକୁ, ପଶୁତ୍ୱକୁ ନିକାଲିବାଟାକୁ ଦରକାର ହିଁ ମନେକରୁନି। ବରଂ ପଶୁକୁ ବଞ୍ଚେଇ ରଖୁଛି ଏବଂ ଶିକ୍ଷାକୁ ନିୟୋଜିତ କରୁଛି ସେହି ପଶୁକୁ ଅଧିକ ଦୁର୍ଦ୍ଧର୍ଷ, ଅଧିକ ଧୂର୍ତ୍ତ, ଅଧିକ ଚତୁର ବନେଇବାପାଇଁ। ଫଳରେ ଗତ ତିରିଶବର୍ଷ ଭିତରେ ଦୁଇଟି ବିଶ୍ୱଯୁଦ୍ଧରେ ପଙ୍ଗୁ ହୋଇ ମଧ୍ୟ ପୁଣି ତୃତୀୟ ବିଶ୍ୱଯୁଦ୍ଧପାଇଁ ଇଉରୋପ ନଖକୁ ଦାଢ଼େଇବାରେ ଲାଗିଲାଣି।

ଭାରତବର୍ଷ କ'ଣ ଆଖିଆଗରେ ଇଉରୋପର ଭସ୍ମକୁଢ଼ ଦେଖି ମଧ୍ୟ କିଛି ଶିଖିବନାହିଁ ? ଶିକ୍ଷାକୁ କ'ଣ କେବଳ ଭୋଟର ଗଢ଼ିବାର ଅବଲମ୍ବନ ମାତ୍ର ବୋଲି ଧରିନେବା ? ଶିକ୍ଷା ବ୍ୟବସ୍ଥା କ'ଣ ରାଷ୍ଟ୍ରୀୟ କଳର ହାତବାରିସି ମାତ୍ର ହୋଇ ରହିବ ? ସମାଜରେ ବ୍ୟକ୍ତିର କ'ଣ ଏକମାତ୍ର ଅସ୍ତିତ୍ୱ କୌଣସି ଦଳର ରାଷ୍ଟ୍ରୀୟ ଦଳର ପେଚକଣ୍ଟା ? ଆତ୍ମଉଦ୍‌ବୋଧିତ ବ୍ୟକ୍ତିତ୍ୱର ସମାଜରେ କି ଦରକାର ନାହିଁ ? ସେହି ଆତ୍ମ-ଉଦ୍‌ବୋଧନର ବ୍ୟବସ୍ଥା ଆମ ଶିକ୍ଷା ବ୍ୟବସ୍ଥାରେ କାହିଁ ବା କିପରି ରହିବ ? ମନୁଷ୍ୟ ଭିତରର ପଶୁ ଯଦି ପଶୁହିଁ ରହେ, ତେବେ ଶିକ୍ଷିତ ହେବାର ଅର୍ଥ କ'ଣ ?

ଅନେକଙ୍କର ଏହି ଧାରଣା ଥାଇପାରେ ଯେ ମୌଳିକ ଶିକ୍ଷାର ପ୍ରବର୍ତ୍ତନ ହେଲେ ଆମର ସବୁ ଦୁରବସ୍ଥା ଘୁଞ୍ଚିଯିବ । ଆମକୁ ମଧ କିଛି ଟଙ୍କା ହାତରୁ ଖର୍ଚ୍ଚ କରିବାକୁ ପଡ଼ିବନାହିଁ, କାରଣ ମୌଳିକ ବିଦ୍ୟାଳୟ ନିଜର ଖର୍ଚ୍ଚଟା ନିଜେ ଉଠେଇ ପାରିବ । ଏସବୁ କଥା ମୁଁ ଶେଷ ପ୍ରବନ୍ଧରେ ଆଲୋଚନା କରିବାକୁ ଆଶା କରୁଛି ।

ଆମ ଦେଶରେ ଶିକ୍ଷାବିତ୍ ଓ ରାଷ୍ଟ୍ରନାୟକମାନେ ବର୍ତ୍ତମାନ ଏପରି ଏକ ଶିକ୍ଷା ବ୍ୟବସ୍ଥାର ପ୍ରବର୍ତ୍ତନ କରିବା ଉଚିତ, ଯାହା–

୧ । ଆମର କୃଷିପ୍ରଧାନ, ମୁଦ୍ରାଳ୍ପ ଓ କ୍ଷୀଣଶିଳ୍ପ ଦେଶ ପ୍ରତି ଉପଯୁକ୍ତ ହେବ । ଯାହା ଇଂଲଣ୍ଡ ପରି ପଲ୍ଲୀକୁ ଜନଶୂନ୍ୟ କରିବନାହିଁ ।

୨ । ସାର୍ଟିଫିକେଟ୍ ଓ ଡିଗ୍ରୀର ସୃଷ୍ଟି ଅପେକ୍ଷା ଉତ୍ତମ ମନୁଷ୍ୟ ସୃଷ୍ଟି କରିବା ଯାହାର ଲକ୍ଷ୍ୟ ହେବ ;

୩ । ଯାହା ଗୁରୁ-ଶିଷ୍ୟର ପ୍ରାଚୀନ ସମ୍ପର୍କ ସ୍ଥାପନ କରି ଆମର ପ୍ରାଚୀନ ସଂସ୍କୃତିର ପରମ୍ପରା ରକ୍ଷା କରିବାରେ ସାହାଯ୍ୟ କରିବ ।

## ୨–ଚାହି ତ୍ୟାଗୀ ସନ୍ନ୍ୟାସୀର ଦଳ –

ଯୁଗେ ଯୁଗେ ଚିରପରିବର୍ତ୍ତମାନ ରାଷ୍ଟ୍ର, ଧର୍ମ, ଦେଶ ଓ ଗୋଷ୍ଠୀରେ ଚିରନ୍ତନ ଆବଶ୍ୟକତା ରହିଛି ଉତ୍ତମ ମନୁଷ୍ୟର, ସାଧୁ ପ୍ରତିବେଶୀର, ଆତ୍ମପ୍ରବୃଦ୍ଧ ମହାତ୍ମାର । ବ୍ୟକ୍ତିର ଗୁଣ ଦୋଷ ଉପରେହିଁ ଧର୍ମ, ରାଷ୍ଟ୍ର ଓ ସମାଜର ଭଲମନ୍ଦ ନିର୍ଭର କରେ । ଆଜି ଯେ କଳାବଜାରର ବୀଭତ୍ସତାରେ ଭାରତର ବାୟୁ ବିଷାକ୍ତ ହୋଇଉଠିଛି, ତାହା ହେଉଛି କିପରି ? ବର୍ଷକୁ ବର୍ଷ ହଜାର ହଜାର ମାଟ୍ରିକ୍ ଓ ଶତଶତ ଗ୍ରାଜୁଏଟ୍ ହୋମିଓପ୍ୟାଥିକ୍ ବଟିକା ପରି ବାହାରି ପଡ଼ୁଛନ୍ତି ବୋଲି ହୁଏତ ଆମର ଭାଇସ୍-ଚାନସେଲରମାନେ ଗର୍ବ ପ୍ରକାଶ କରିପାରନ୍ତି । କିନ୍ତୁ ଏଇମାନେଇ ଯେ କଳାବଜାର ସୃଷ୍ଟି କରୁଛନ୍ତି ଓ ବଞ୍ଚେଇ ରଖୁଛନ୍ତି, ସେକଥା ଭୁଲିଯିବା ଉଚିତ ନୁହେଁ । ଏଇକି ତେବେ ଦେଶରେ 'ଶିକ୍ଷା ପ୍ରସାର' ଓ 'ଜ୍ଞାନ'ର ବିସ୍ତାର ?

ଏବେ ଆମେ 'ବିଶ୍ୱ' 'ମାନବଜାତି' 'ରାଷ୍ଟ୍ର' 'ଡିମୋକ୍ରାସି' 'ପ୍ରୋଲିଟେରୀୟାଟ୍' ପ୍ରଭୃତି ଅନେକ ବଡ଼ କଥା ଶୁଣୁ । କିନ୍ତୁ ପ୍ରାଚୀନ ଭାରତ ଜାଗତିକ ସକଳ ବ୍ୟାପାରର ବିଶ୍ଳେଷଣ କରି ଆଖି ରଖିଥିଲା 'ବ୍ୟକ୍ତି' ଉପରେ–ବ୍ୟକ୍ତି, ଯେ କି ସାଂସାରିକ ସକଳ ସୌଧର ଇଷ୍ଟକ ଖଣ୍ଡ । ଇଟା କଞ୍ଚା ରହିଲେ କୋଠା ଠିଆହେବ କେତେଦିନ ? ତେଣୁ ବ୍ୟକ୍ତିରୂପକ ଇଟାକୁ ଖୁବ୍ ପୋଡ଼ି ଟାଣ କରିବା ସର୍ବାଦୌ ବାଞ୍ଛନୀୟ । ତାପରେ ସେଥିରେ କୋଠା କର, ପୋଲ କର, ବନ୍ଧ କର, ଯାହା କର ସେଥିରେ ସେ ଭଲ କାମ ଦେବ । ଏଥିପାଇଁ ଭାରତୀୟ ଶିକ୍ଷା ବ୍ୟବସ୍ଥାରେ ମୂଳପତ୍ତନ ଥିଲା ବ୍ରହ୍ମଚର୍ଯ୍ୟାଶ୍ରମ । ଏବେ ଆମର ଶିକ୍ଷା ବ୍ୟବସ୍ଥାର ମୂଳ ପତ୍ତନ ହେଉଛି ମନୁଷ୍ୟତ୍ୱଧ୍ୱଂସକାରୀ ମାଟ୍ରିକ୍ୟୁଲେଶନ୍ ।

ଭାରତବର୍ଷ ଯଦି ଧରଣୀର ପୁନର୍ବାର ନେତୃତ୍ୱ ନେବାକୁ ଚାହେ, ଅନ୍ତତଃ ଯଦି ସେ ସୁଖଶାନ୍ତିରେ ବଞ୍ଚି ରହିବାକୁ ଚାହେ, ତେବେ ତାକୁ ପଶ୍ଚିମଆଡୁ ଆଖି ଫେରାଇବାକୁ ହେବ ।

ଆମକୁ ଧରିନେବାକୁ ହେବ ଯେ ମୋଟର କାର୍, ଏରୋପ୍ଲେନ୍‌ର ମାସ୍-ପ୍ରୋଡ଼କ୍‌ସନ୍ ବା ଗଣ-ପ୍ରସବ ହୋଇପାରେ, କିନ୍ତୁ ଯଥାର୍ଥ 'ଶିକ୍ଷିତ'ର ନୁହେଁ । ଶିକ୍ଷିତ କହିଲେ ବୁଝିବାକୁ ହେବ ଉତ୍ତମ ମନୁଷ୍ୟ । ପ୍ରତି ବାଟା କାରଖାନାରୁ ଜୋତା ବାହାରିଲା ପରି ହଜାର ହଜାର ସଂଖ୍ୟାରେ 'ଶିକ୍ଷିତ' ବର୍ଷକୁ ବର୍ଷ ବାହାରିନପାରନ୍ତି । ସହସ୍ର ସହସ୍ର ମାଟ୍ରିକ୍ୟୁଲେଟ୍ ବା ଗ୍ରାଜୁଏଟ୍‌ର ସୃଷ୍ଟି କେବଳ ଚାକିରି ଖୋଜାଳିଙ୍କର ସୃଷ୍ଟି; ଯଥାର୍ଥ ଶିକ୍ଷିତର ସୃଷ୍ଟି ନୁହେଁ ।

ଆଜି ଯେ ଗ୍ରାମେ ଗ୍ରାମେ ହାଇସ୍କୁଲ୍ ଓ କଲେଜ ପ୍ରତିଷ୍ଠାର ଉଦ୍ୟମ ତାହା କ'ଣ ବିଦ୍ୟା ପ୍ରଚାର ବା ଜ୍ଞାନପ୍ରସାରର ତୀବ୍ର ଇଚ୍ଛାରୁ ? ଏଇ ଉଦ୍ୟମର ଗଭୀର ଅନ୍ତସ୍ଥଳରେ ରହିଛି ସ୍ଥାନୀୟ ପ୍ରତିଯୋଗିତା, ଅନ୍ୟେ ଯାହା କରୁଛନ୍ତି ତା'ର ଅନ୍ଧ ଅନୁକରଣ ଏବଂ ଚାକିରିବାକିରିର ବ୍ୟବସ୍ଥା । ଆଜି ଏ ଦେଶରେ ବିଦ୍ୟାର ଧାରଣା ଏପରି ତଳକୁ ଖସିଛି ଯେ, ଯେକୌଣସି ବିଦ୍ୟାନୁଷ୍ଠାନରେ ଘର ଓ ଆସବାବ ଅପେକ୍ଷା ଶିକ୍ଷକର ସ୍ଥାନ ପଛରେ । ଇନ୍ସପେକ୍ଟର ଭାବରେ ହାଇସ୍କୁଲ୍ ଓ ମିଡିଲ ସ୍କୁଲ୍ ସବୁ ଦେଖି ଦେଖି ମୁଁ ମର୍ମାହତ ହେଉଛି । ଉଦ୍ୟୋକ୍ତାମାନେ ଡିପାର୍ଟମେଣ୍ଟକୁ ଭୁଲେଇବାପାଇଁ ପ୍ରଥମେ କେତେ ବଖରା ଘର ଠିଆକରିଦେଉଛନ୍ତି । ସେଇ ଘରର କାନ୍ଥହିଁ ହେଲା ଅନୁଷ୍ଠାନ । ଶିକ୍ଷକର ଦେଖାନାହିଁ । ତେଣେ ସ୍କୁଲ୍ ଆରମ୍ଭ ହୋଇଯାଉଛି । ଯେଉଁ ଶିକ୍ଷାବ୍ୟବସ୍ଥାରେ ଶିକ୍ଷକର ସ୍ଥାନ ଝାଟିମାଟିର ପଛେ, ଆସବାବ ପରି ଶିକ୍ଷକ ଏକ ଉପାଦାନ ମାତ୍ର ରୂପେ ବିବେଚିତ, ସେଠି, 'ଜ୍ଞାନ' 'ବିଦ୍ୟା' ପ୍ରଭୃତିର ପ୍ରକୃତ ସଂଜ୍ଞା କଣ ବୁଝିବା କଠିନ ।

ଯଦି ପଶ୍ଚିମର 'ମାସ୍ ପ୍ରୋଡକଶନ୍'ରୁ ଆଖି ଫେରେଇ ଭାରତର ସ୍ୱତନ୍ତ୍ର ଓ ଶୁଭଙ୍କର ରୀତିରେ ଶିକ୍ଷାବ୍ୟବସ୍ଥା ପରିଚାଳିତ କରିବାକୁ ଆମେ ଚାହୁଁ ତେବେ ଆମକୁ ଦୁଇଟି ମୌଳିକ ନୀତିକୁ ଅପରିବର୍ତ୍ତନୀୟ କର୍ମପନ୍ଥା ରୂପେ ଗ୍ରହଣ କରିବାକୁ ହେବ ।

୧ । ଦେଶର ଶିକ୍ଷା ବ୍ୟବସ୍ଥା ଉପରେ ଶାସକ-ସରକାରର ପ୍ରତ୍ୟକ୍ଷ ପ୍ରଭୁତ୍ୱ ରହିବନାହିଁ । କେବଳ ଶିକ୍ଷାର ବିଶେଷଜ୍ଞ, ପଣ୍ଡିତ, ତ୍ୟାଗୀ, ଅଧ୍ୟାପକ ଓ ଶିକ୍ଷକଙ୍କ ମାରଫତରେ ଏହା ଛାଡ଼ି ଦିଆଯିବ ।

୨ । ପ୍ରାଇମେରୀଠାରୁ କଲେଜଯାଏଁ ଘର, ଆସବାବ ଅପେକ୍ଷା ଶିକ୍ଷକହିଁ ଶିକ୍ଷାନୁଷ୍ଠାନର ପ୍ରଥମତମ, ପ୍ରଧାନତମ ଓ ଦୁର୍ଲ୍ଲଭତମ ଉପାଦାନ ବୋଲି ଧରାଯିବେ ଓ ଉପଯୁକ୍ତ ଶିକ୍ଷକ ନିର୍ବାଚିତ କଲାପରେ, ତାଙ୍କୁ ଉପଯୁକ୍ତ ସମାଦର କରାଯିବ ।

ଋଷିର ଦେଶ ଏଇ ଭାରତବର୍ଷରେ ଆଜି ଶିକ୍ଷକ ସାମାନ୍ୟ ବେତନଭୋଗୀ ଚାକିରିଆ ମାତ୍ର । କାନଗୋଇ, କନେଷ୍ଟବଲ, ପୋଷ୍ଟମାଷ୍ଟ୍ର, ଫରେଷ୍ଟଗାର୍ଡ଼ ପରି ଶିକ୍ଷକ ଆଜି ଜଣେ ନୌକର ଏବଂ ସେହିପରି ବ୍ୟବହାର ସେ ପାଏ । ଏଣେ ୟୁରୋପର ଅନୁକରଣରେ ଆମ ସରକାର ସାରା ଦେଶକୁ ଶିକ୍ଷିତ କରିବାକୁ ଯଦିଚ ଚାହାନ୍ତି, ତେଣେ ଗୋଟିଏ କ୍ଷୁଦ୍ର ଅନୁନ୍ନତ ବଲକାନ୍ ଷ୍ଟେଟ୍‌ର ଆୟ ଯାହା ଆମ ଇଣ୍ଡିଆନ୍ ଇଉନିୟନର ଆୟ ପ୍ରାୟ ସେତିକି । ଟଙ୍କା କାହିଁ ? ଫଳରେ ଶିକ୍ଷକ କେବଳ ଯେ ନୌକର ମାତ୍ର ତାହା ନୁହେଁ, ସେ ସବୁଠୁ କମ୍ ଦରମାର ନୌକର । ନିମ୍ନତମ ବେତନ ଓ ଭବିଷ୍ୟତ୍ ଉନ୍ନତିର ନାସ୍ତ୍ୟାଶା ଯୋଗୁଁ, ଲୋକେ ଚାକିରିର ଅନ୍ୟସବୁ ବାଟ ବନ୍ଦ ଥିବାର ନଦେଖିଲେ ଏଡୁକେଶନକୁ ଆସନ୍ତି ନାହିଁ । ତେଣେ ପୁଣି ୟୁରୋପର

ଅନୁକରଣରେ ଆଉ ଏକ ସାମାଜିକ ବ୍ୟାଧି ଦେଶରେ ମାଡ଼ିଆସିଲା । ଧନ ଏବେ ହୋଇଛି ସାମାଜିକ ସମ୍ମାନର ମାପକାଠି – ସେଠି ନିମ୍ନତମ ବେତନଭୋଗୀ ଶିକ୍ଷକର ସ୍ଥାନ କାହିଁ ?

ଯୁଗେ ଯୁଗେ, ଭାରତବର୍ଷରେ ସମାଜର ଶିଖର ଦେଶରେ ବସିଥିଲା ରିକ୍ତହସ୍ତ ବ୍ରାହ୍ମଣ । ରାଜାର ମୁକୁଟମଣ୍ଡିତ ଶିର ତା' ପଦତଳେ ଲୁଣ୍ଠିତ ହେଉଥିଲା–ତ୍ୟାଗ ଓ ଜ୍ଞାନ ନିକଟରେ ନତ ହୋଇ । ସେହି ତ୍ୟାଗ ଓ ଜ୍ଞାନ ତପସ୍ୟାର ଆଦର୍ଶ ସମାଜର ତଳ ଦେଶରେ ମଧ୍ୟ ସ୍ତରେ ସ୍ତରେ ସଞ୍ଚାରିତ ହୋଇ ସମାଜକୁ ବହୁ ପରିମାଣରେ ନିଷ୍କଳୁଷ ଓ ପବିତ୍ର ରଖୁଥିଲା । ବାପୁଜୀଙ୍କ ପାଦ ତଳେ ଯେ ଚାଳିଶ କୋଟି ଲୋକ ସ୍ୱତଃ ନତ ହୋଇଯାଉଥିଲେ, ତାହା କେବଳ ତାଙ୍କର ତ୍ୟାଗ ଓ ତପସ୍ୟା ଯୋଗୁଁ । ଭାରତ ବାରମ୍ବାର ପରାଜିତ ଓ ଲାଞ୍ଛିତ ହୋଇଛି, ତା'ର ଅନୈକ୍ୟ ଓ କ୍ଷାତ୍ର ବିଦ୍ୟାର ଅଧୋଗତି ଯୋଗୁଁ । କିନ୍ତୁ ସେସବୁ ସତ୍ତ୍ୱେ ସେ ତା'ର ସ୍ୱାତନ୍ତ୍ର୍ୟ ରଖି ବଞ୍ଚିରହିଛି ଯୁଗେ ଯୁଗେ, ମହାପୁରୁଷମାନଙ୍କ ଆବିର୍ଭାବରେ ଓ ତା'ର କାବ୍ୟ, ପୁରାଣ, ସାହିତ୍ୟରେ ଏହି ତ୍ୟାଗ ଓ ତପସ୍ୟାର ପ୍ରଚାର ଫଳରେ । ଆଜି ଦେଶରେ ଅନିପୁଣତା, କଳାବଜାର, ଗଣ୍ଡଗୋଳ, ସଂଘର୍ଷ ଏପରି ବ୍ୟାପକଭାବରେ ଦେଖାଯିବାର ଏକମାତ୍ର କାରଣ ହେଉଛି ଭାରତର ସ୍ୱକୀୟ ଓ ଐତିହାସିକ ଏହି ତ୍ୟାଗ ଓ ତପସ୍ୟାର ଆଦର୍ଶର ଅବସାନ । ଇଂରେଜ ଚାଲିଯିବା ପରେ ଭାରତ ତା'ର କ୍ଷତ୍ରିୟତ୍ୱ ଓ ବୈଶ୍ୟତ୍ୱର ଅବାଧ ସମ୍ପ୍ରସାରଣ କ୍ଷେତ୍ର ପାଇଲା । କିନ୍ତୁ ବ୍ରାହ୍ମଣ କାହିଁ ? ସେଇ ସନ୍ନ୍ୟାସୀର ଦଳ, ଯେ କି ଭାରତର ସମାଜକୁ ଯୁଗେ ଯୁଗେ ଉନ୍ନତ ଆଦର୍ଶରେ ଅନୁପ୍ରାଣିତ କରି ରଖୁଥିଲେ, ତାଙ୍କର ସ୍ଥାନ ଆଜି କାହିଁ ? ପ୍ରାଚୀନ ଭାରତର ସେହି ହିଁ ଥିଲେ ଶିକ୍ଷକ ଏବଂ ସମାଜର ଅପରିହାର୍ଯ୍ୟ ଅଙ୍ଗ ରୂପେ ଦେଶର ରାଜନ୍ୟବର୍ଗ ତାଙ୍କୁ ବଞ୍ଚେଇ ରଖିବା ପ୍ରଧାନ କର୍ତ୍ତବ୍ୟ ବୋଲି ମନେକରୁଥିଲେ ।

ସ୍ୱାଧୀନ ଭାରତ ଯଦି ଜଗତର ନେତୃତ୍ୱ ନେବ, ତେବେ ସରକାରଙ୍କୁ ପୁଣି ସେହି ସନ୍ନ୍ୟାସୀ, ତ୍ୟାଗୀ, ରିକ୍ତ ଜ୍ଞାନସାଧକର ଦଳକୁ ସୃଷ୍ଟି କରିବାକୁ ଓ ବଞ୍ଚେଇବାକୁ ହେବ ଓ ସେହି ପୂର୍ବପରି ତାଙ୍କୁ ସମ୍ମାନ ଦେବାକୁ ହେବ । ଅନ୍ୟ କୌଣସି ଡିପାର୍ଟମେଣ୍ଟରେ ଏହା ସମ୍ଭବ ନ ହେଲେ ମଧ୍ୟ–(ଲେଖକ କିନ୍ତୁ ଭାବେ ସବୁ ଡିପାର୍ଟମେଣ୍ଟରେ ସମ୍ଭବ)–ଏଡୁକେଶନ ଡିପାର୍ଟମେଣ୍ଟରେ ଏହା କେବଳ ଏକାନ୍ତ ସମ୍ଭବ ନୁହେଁ, ଏକାନ୍ତ କର୍ତ୍ତବ୍ୟ । ଡି.ପି.ଆଇ.ଠୁ ସବ୍‌ଇନ୍‌ସପେକ୍ଟର ପର୍ଯ୍ୟନ୍ତ ଦଳେ କେବଳ ବେତନସର୍ବସ୍ୱ କର୍ମଚାରୀଦ୍ୱାରା ଦେଶରେ ପ୍ରକୃତ ଜ୍ଞାନ ବା ପ୍ରକୃତ ଶିକ୍ଷାର ପ୍ରଚାର ବା ସଞ୍ଚାର ଅସମ୍ଭବ ।

ଗାଙ୍ଗପୁର, ଜୟପୁର ପ୍ରଭୃତି ଷ୍ଟେଟ୍‌ମାନଙ୍କରେ ୟୁରୋପୀୟ ମିସନାରୀମାନେ ଆଦିବାସୀମାନଙ୍କ ଭିତରେ ଘୋର ଜଙ୍ଗଲରେ ପଡ଼ିରହି ସେମାନଙ୍କ ଭିତରେ ଯେପରି ଶିକ୍ଷା ଓ ସଭ୍ୟତା ବିସ୍ତାର କରିଛନ୍ତି, ତାହା ଦେଖି ମୁଁ ମୁଗ୍ଧ ଓ ବିସ୍ମିତ ହୋଇଛି । ଗାଙ୍ଗପୁରର କୌଣସି ଏକ କେନ୍ଦ୍ରରେ ଜଣେ ବେଲଜିୟାନ୍ ଫାଦରଙ୍କୁ ଭେଟିଥିଲି । ସେ ଏକାଧିକ ୟୁରୋପୀୟ ବିଶ୍ୱବିଦ୍ୟାଳୟର ଉଚ୍ଚ ଡିଗ୍ରୀଧାରୀ । ଅଥଚ ଭାରତବର୍ଷର ଏକ ଅଜ୍ଞାତ କଣରେ, ଘୋର ଜଙ୍ଗଲ ଭିତରେ ପଡ଼ିରହି, ଓଡ଼ିଆ ଭାଷା ଆୟତ୍ତ କରି ସେ ଲାଗିଛନ୍ତି ଜ୍ଞାନ ଓ ଧର୍ମର ପ୍ରଚାର କର୍ମରେ । ଏହି ମିସ୍‌ନାରୀମାନଙ୍କର ସମସ୍ତ ଭରଣପୋଷଣ ଖରଚ ମିସନ ଯୋଗାଏ । ଧର୍ମ ଓ ସଭ୍ୟତାର

ପ୍ରଚାରପାଇଁ ଯାହା ଯାହା ଦରକାର; ମିସନ ତାହା ଯୋଗାଇଦିଏ । ଫଳରେ ଏମାନେ ନିଶ୍ଚିନ୍ତ ମନରେ କାମ କରିଯାନ୍ତି । ଆମର ଶିକ୍ଷା ବିଭାଗରେ ଏଇ ମିସନାରୀ ମନୋଭାବ ଜାଗ୍ରତ ନ ହେଲା ଯାଏଁ ଓ ସେହି ଆଦର୍ଶରେ ସମସ୍ତ ଶିକ୍ଷା ବିଭାଗ ପରିଚାଳିତ ନହେଲାଯାଏଁ, ଗାଏଁ ଗାଏଁ କଲେଜ ବସିଲେ ବି ଦେଶ ଯେଉଁ ମୂର୍ଖକୁ ସେଇ ମୂର୍ଖ ରହିବ ।

ସରକାର କର୍ମଚାରୀମାନଙ୍କର ବେତନ ହାରରେ ପ୍ରଥମ ଶ୍ରେଣୀ, ଦ୍ୱିତୀୟ ଶ୍ରେଣୀ, ତୃତୀୟ ଶ୍ରେଣୀ ସ୍ଥିର କରିବାରେ ଘର୍ମାକ୍ତ ହେଉଛନ୍ତି । ସମସ୍ତଙ୍କୁ ତୁଷ୍ଟ କରିବାକୁ ଯାଇ ଲକ୍ଷ ଲକ୍ଷ ଟଙ୍କା ଅଧିକା ଖରଚ ହେଉଛି । କିନ୍ତୁ ଏସବୁ ଶ୍ରେଣୀର ଭିତରେ ବା ବାହାରେ ଏକ ଅବୈତନିକ ସନ୍ନ୍ୟାସୀ-ଶିକ୍ଷକ-ଓ-ପରିଚାଳକ ଶ୍ରେଣୀର ବ୍ୟବସ୍ଥା ହେବା ଏକାନ୍ତ ଉଚିତ ଓ ସମ୍ଭବ । ସରକାର ଯଦି ସେମାନଙ୍କୁ କେବଳ ତେଲ, ଲୁଣ, କାଠଚ ଚିନ୍ତାରୁ ରକ୍ଷା କରନ୍ତେ, ଦେଶରେ ଏପରି ଅନେକ ଯୋଗ୍ୟ ବ୍ୟକ୍ତି ଏବେବି ଅଛନ୍ତି, ଯେ'କି ବେତନହାର ବା ଶ୍ରେଣୀକି ଉପେକ୍ଷା କରି କର୍ମର ଆନନ୍ଦ ଓ ଗୌରବପାଇଁ ଶିକ୍ଷକ ଓ ଅଧ୍ୟାପକ ହୁଅନ୍ତେ ।

ସରସ୍ୱତୀ ଯଦି ଶାସକର ଆଜ୍ଞାବହ ହୁଅନ୍ତି ଓ ଶିକ୍ଷକ ସାମାନ୍ୟ ନୌକର ମାତ୍ର ରହନ୍ତି ତେବେ ଦେଶରେ 'ଶିକ୍ଷା ପ୍ରସାର', 'ବିଦ୍ୟା ପ୍ରଚାର' ପ୍ରଭୃତି କପଟ ଚିତ୍କାର ଛଡ଼ା ଆଉ କିଛି ନୁହେଁ । ସରସ୍ୱତୀଙ୍କି ସ୍ୱାଧୀନତା ଦିଅ ଏବଂ ଶିକ୍ଷକଙ୍କୁ ପୁଣି ସେହି ବ୍ରାହ୍ମଣ ରୂପେ, ମିସନାରୀ ରୂପେ, ତ୍ୟାଗୀ ସନ୍ନ୍ୟାସୀ ରୂପେ ଦେଖ ଓ ସମ୍ମାନ ଦିଅ, ତେବେହିଁ ପ୍ରକୃତ ମନୁଷ୍ୟ ଦେଶରେ ଗଢ଼ାହେବେ ।

## ୩– ଚାହି ବିକେନ୍ଦ୍ରୀକରଣ ଓ ଶିକ୍ଷକ ପ୍ରାଧାନ୍ୟ –

ଦେଶର ଶିକ୍ଷା ବ୍ୟବସ୍ଥା ଶାସକ-ଗୋଷ୍ଠୀର ଅକ୍ତ୍ୟାରରୁ ମୁକ୍ତ ରହିବା ଯେତିକି ଦରକାର, ସେତିକି ଦରକାର ପୁଣି ସୁବିଚାରିତ ବିକେନ୍ଦ୍ରୀକରଣ । ସକଳ କ୍ଷମତା କେନ୍ଦ୍ରୀଭୂତ ନହେଲେ କୌଣସି ସାମ୍ରାଜ୍ୟ ରହିନପାରେ । ଇଂରେଜ ଶାସନରେ ସବୁ ଡିପାର୍ଟମେଣ୍ଟରେ ଆମେ ସେହି ବ୍ୟବସ୍ଥାହିଁ ଦେଖୁ । ବାପୁଜୀଙ୍କ ସ୍ୱାଧୀନ ଭାରତ କିନ୍ତୁ ଏକ ବିକେନ୍ଦ୍ରୀକୃତ ଶାସନର ସ୍ୱପ୍ନ । ବାପୁଜୀଙ୍କ ବିକେନ୍ଦ୍ରୀକରଣ ନୀତି ପୂରାପୂରି ଗ୍ରହଣ ନକଲେ, କୌଣସି ଡିପାର୍ଟମେଣ୍ଟ ନିପୁଣ ଓ ନିଖୁଣଭାବରେ କର୍ମ ସମ୍ପାଦନ କରିନପାରେ – ଶିକ୍ଷା ବିଭାଗର ତ କଥାହିଁ ନାହିଁ । ରେଢ଼ାଖୋଲ ଷ୍ଟେଟର ଦୂର ଜଙ୍ଗଲ ଭିତରେ କୌଣସି ଏକ ପାଠଶାଳାର ଅଗଣାରେ କୂଅଟିଏ ଖୋଳିବା ପାଇଁ ବା ସେହି ପାଠାଶାଳାରେ ଗୋଟିଏ ଅଧିକା ଶିକ୍ଷକ ନିଯୁକ୍ତ କରିବାପାଇଁ ଯଦି ସବ୍‌ଇନ୍ସେପେକ୍ଟର ଡେପୁଟି ଇନ୍ସପେକ୍ଟରଙ୍କୁ ,ସେ ପୁଣି ଜିଲ୍ଲା ଇନ୍ସପେକ୍ଟରଙ୍କୁ, ସେ ପୁଣି ଇନ୍ସେପକ୍ଟରଙ୍କୁ, ସେ ପୁଣି ଡି.ପି.ଆଇ.ଙ୍କୁ,ସେ ପୁଣି ଶିକ୍ଷା ସେକ୍ରେଟାରୀଙ୍କୁ, ସେ ପୁଣି ମନ୍ତ୍ରୀଙ୍କି ଯଦି ଅପେକ୍ଷା କରନ୍ତି, ତେବେ ନିପୁଣ ଓ କ୍ଷିପ୍ର କର୍ମ ଆଶା କରିବା କିପରି ?

ଏହା ସର୍ବବାଦୀସମ୍ମତ ଯେ ଗଡ଼ଜାତମାନଙ୍କରେ ଶିକ୍ଷା ବ୍ୟବସ୍ଥା ବ୍ୟାପକ ନହେଲେ ହେଁ, ପ୍ରଦେଶ ଅପେକ୍ଷା ଭଲ ଅବସ୍ଥାରେ ଥିଲା । ଅନ୍ତତଃ ପ୍ରାଇମେରୀ ଶିକ୍ଷାର ବିକେନ୍ଦ୍ରୀକରଣ ଏହାର ଏକ ପ୍ରଧାନ କାରଣ । ଛୋଟ ଛୋଟ ଷ୍ଟେଟ୍‌ରେ ଜଣେ ଜଣେ ସବ୍‌ଇନ୍ସପେକ୍ଟରଙ୍କର ଯେଉଁ କ୍ଷମତା ଥିଲା, ପ୍ରଦେଶରେ ଡି.ପି.ଆଇ.ଙ୍କର ବି ସେ କ୍ଷମତା ନାହିଁ, ଇନ୍ସପେକ୍ଟରଙ୍କ କଥା

ଛାଡ଼ିଦିଅ । କେନ୍ଦ୍ରୀଭୂତ ଲାଲଫିତା ସାଥିକି ପୁଣି ମିଶିଛି ବୋର୍ଡ଼, ସରକାର ଓ ମାନେଜିଂ କମିଟି ପ୍ରଭୃତିର ମିଳିତ ଆୟିତ୍ୱ ଓ ଶାସନ ।·ବିଦ୍ୟା ଦେବୀଙ୍କ ଆରାଧନା ପାଇଁ ଦେଶମୟ ବିଦ୍ୟାଳୟ ସ୍ଥାପନ ଚାଲିଛି ଓ ଏକ ବ୍ୟାପକ ଚାକିରି-ବିଭାଗ ଖୋଲା ରହିଛି, କିନ୍ତୁ ଏ ଦେଶରେ ସେ ଦେବୀ ପ୍ରକୃତରେ ଗୃହହୀନା ଓ ଅନାଥିନୀ । ତାଙ୍କର ଯାହା ଦରକାର ତାହା ସେ ମାଗିବେ କାହାକୁ ?·ସ୍କୁଲ୍‌ର ଶିକ୍ଷକ ତ ରିକ୍ତହସ୍ତ ଚାକିରିଆ ମାତ୍ର । ଦେବୀଙ୍କୁ ତେଣେ ଏକଆଡ଼େ ବୋର୍ଡ଼ ମେମ୍ବରମାନଙ୍କଠାରୁ ଆରମ୍ଭ କରି ମନ୍ତ୍ରୀ ପର୍ଯ୍ୟନ୍ତ ତେଣେ ସବ୍‌ଇନ୍‌ସ୍‌ପେକ୍ଟରଠାରୁ ଆରମ୍ଭ କରି ଡି.ପି.ଆଇ. ପର୍ଯ୍ୟନ୍ତ ପାହାଚ ଡେଇଁ ବହୁ ବ୍ୟକ୍ତି ଓ ବହୁ ଦ୍ୱାରର ଆଶ୍ରୟ ନେବାକୁ ହେବ । ଫଳରେ ବିଦ୍ୟାର ଦେବୀ ଆଜି ଏ ଦେଶରେ ରୁଗ୍ଣା, ଅର୍ଦ୍ଧଭୁକ୍ତା, ସର୍ବଜନାଶ୍ରିତା, ଅଧିକାରହୀନା, ଗୃହହୀନା ଏକ ସାଧାରଣ ନାରୀ ।

ଇଂଲଣ୍ଡରେ ପ୍ରତ୍ୟେକ ସ୍କୁଲ୍, ପ୍ରତ୍ୟେକ କଲେଜର ଏକ ସ୍ୱତନ୍ତ୍ର ଇତିହାସ ଓ ଐତିହ୍ୟ ଅଛି । ଏ ଦେଶରେ କିନ୍ତୁ ଦେଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏଁ ବୁଲିଆସ ଗୋଟିଏ ସ୍କୁଲ୍ ବା କଲେଜଠାରୁ ଅନ୍ୟ କୌଣସି ସ୍କୁଲ୍ କଲେଜର କୌଣସି ହେଲେ ବିଶିଷ୍ଟ ପାର୍ଥକ୍ୟ ଆମେ ଦେଖି ପାରିବା ନାହିଁ । ସ୍କୁଲ୍ କଲେଜକୁ ଆମେ ଟେଲିଗ୍ରାଫ୍ ଖୁଣ୍ଟ ବା ରେଳଗାଡ଼ିର ଡବା ପରି ଦେଖୁଛୁ—ପାର୍ଥକ୍ୟ ଏଠି ଅସହ୍ୟ, ସମସ୍ତଙ୍କୁ କାଟିଛାଣ୍ଟି ସମାନ କରିବାକୁଇ ହେବ । ଶିକ୍ଷକ, ଅଧ୍ୟାପକ ବା ଅଧକ୍ଷର ବିଶିଷ୍ଟ ଜ୍ଞାନ ବା ବ୍ୟକ୍ତିତ୍ୱ ଅପେକ୍ଷା ଆମେ ଆମର କରିକ୍ୟୁଲମ୍, ସିଲାବସ୍ ଓ ପରୀକ୍ଷାଟାକୁ ବଡ଼ ଓ ମହତ୍ତର ପଦାର୍ଥ ବୋଲି ଧରିଆସୁଛୁ । ପାସ୍‌ର ସାର୍ଟିଫିକେଟ୍ କାଗଜ ଖଣ୍ଡ ହିଁ ଆମର ପ୍ରଧାନ ଲକ୍ଷ୍ୟ । ଉନ୍ନତ ବ୍ୟକ୍ତିଙ୍କ ସମ୍ପର୍କରେ ତରୁଣ ଜୀବନର ନୈତିକ ଓ ଆଧ୍ୟାତ୍ମିକ ବିବର୍ତ୍ତନ ଆମର ସମଗ୍ର ଶିକ୍ଷା ବିଭାଗର ବିଚାର୍ଯ୍ୟ ହିଁ ନୁହେଁ ।

ପ୍ରାଚୀନ ଭାରତରେ ଓ ୟୁରୋପରେ ମଧ୍ୟଯୁଗରେ ଋଷି ଓ ପଣ୍ଡିତମାନଙ୍କୁ କେନ୍ଦ୍ରକରି ହିଁ ଶିକ୍ଷାନୁଷ୍ଠାନମାନ ଗଢ଼ିଉଠିଥିଲା । ଇଂଲଣ୍ଡର ପ୍ରଧାନ ସ୍କୁଲ୍ କଲେଜମାନଙ୍କର ଇତିହାସର ମୂଳରେ ଜଣେ ତ୍ୟାଗୀ, ଜ୍ଞାନୀ, ପଣ୍ଡିତ ଧର୍ମାଚାର୍ଯ୍ୟ ବା ଅଧ୍ୟାପକର ବ୍ୟକ୍ତିତ୍ୱ । ଗୁରୁ ବା ଅଧ୍ୟାପକ ହିଁ ଶିକ୍ଷାନୁଷ୍ଠାନ । ଏହି ସାମାନ୍ୟ ଏବଂ ମୌଳିକ ସତ୍ୟଟା ଆମେ ଭୁଲିଯାଉଥିବାରୁହିଁ ଆମର ଶିକ୍ଷା ବ୍ୟବସ୍ଥା ଆଜି ରୁଗ୍ଣ ଓ ଅକଲ୍ୟାଣପ୍ରସୂ ହେଉଛି । ଏବେ ଆମ ଦେଶରେ ପୁରାଣ ଓଲଟା ହୋଇଯାଇଛି । ଏବେ ସ୍କୁଲ୍ କରିବାକୁ ବସିଲେ, ଉଦ୍ୟୋକ୍ତାଗଣ ଆଗେ ଘର ଓ ଆସବାବ ତିଆରି କରନ୍ତି । ଆଗ ପ୍ରେସିଡେଣ୍ଟ ସେକ୍ରେଟାରୀ ବଛା ହୁଅନ୍ତି ଏବଂ ସବା ପରେ ଯାଇ ମାଷ୍ଟ୍ର ଦରଣ୍ଡା ହେଉଛନ୍ତି ଏବଂ ଯେକୌଣସି ଲୋକ ଶିକ୍ଷକ କାମ 'ଚଳେଇ' ନେବ ବୋଲି ଧରାଯାଉଛି । ହାୟରେ ଦେଶ ! କ୍ଷୁଦ୍ରତମ ପ୍ରାଇମେରୀ ସ୍କୁଲ୍ ପର୍ଯ୍ୟନ୍ତ ସମଗ୍ର ଶିକ୍ଷା ବିଭାଗରେ ଶିକ୍ଷକ ଯଦି ପ୍ରଧାନ କର୍ତ୍ତା, ପ୍ରଧାନ ବ୍ୟକ୍ତି ଓ ପ୍ରଧାନ ଅନୁଷ୍ଠାନ ବୋଲି ଧରାନହୋଇଛି ଏବଂ ସମଗ୍ର ବ୍ୟବସ୍ଥା ଯେପର୍ଯ୍ୟନ୍ତ ସୁବିଚାରିତ ଭାବରେ ବିକେନ୍ଦ୍ରୀକୃତ ନହୋଇଛି, ସେପର୍ଯ୍ୟନ୍ତ ଜାତିର ଶିକ୍ଷା ସମ୍ମାନାସ୍ପଦ ବା ପ୍ରକୃତ କଲ୍ୟାଣପ୍ରସୂ ହୋଇନପାରେ ।

ଗୋଟିଏ ସାହାଯ୍ୟପ୍ରାପ୍ତ ହାଇସ୍କୁଲ୍‌ର ଦୃଷ୍ଟାନ୍ତ ନିଆଯାଉ । କଟକ ସହରରେ ପ୍ୟାରୀମୋହନ ଏକାଡେମୀ ଏକ ଦେଶପ୍ରସିଦ୍ଧ ଅନୁଷ୍ଠାନ । ତ୍ୟାଗୀ ଓ ସାଧକ ପ୍ୟାରୀମୋହନ ଯାକୁ ଜନ୍ମ

ଦେଇଗଲେ ଏବଂ ପରେ ପରେ କେବଳ ଛାତ୍ରଦତ୍ତ ବେତନ ଓ ଶିକ୍ଷକମାନଙ୍କର ପରିଶ୍ରମ ଉପରେ ଏହି ବିଦ୍ୟାଳୟ ଗଢ଼ିଉଠିଛି। ସରକାର ବା ମ୍ୟାନେଜିଂ କମିଟିର ଏହି ପ୍ରସିଦ୍ଧ ବିଦ୍ୟାଳୟର ଅଭିବର୍ଦ୍ଧନରେ ପ୍ରାୟ ହାତନାହିଁ କହିଲେ ଚଳେ। ତେବେ ଶିକ୍ଷକମାନଙ୍କ ମୁଣ୍ଡ ଉପରେ ଗୋଟିଏ ବେଦରକାରୀ ମ୍ୟାନେଜିଂ କମିଟି ନରଖି, ଶିକ୍ଷକମାନଙ୍କର ଗୋଟିଏ କମିଟି ହାତରେ ସ୍କୁଲ୍‌ର ପରିଚାଳନା ଛାଡ଼ିଦେଲେ କ୍ଷତି କ'ଣ ହୁଅନ୍ତା ? ମାତ୍ର ଏହି ଗୋଟିଏ ସାମାନ୍ୟ ପରିବର୍ତ୍ତନରେ ଏଇ ସ୍କୁଲ୍‌ରେ ଶିକ୍ଷକର ସ୍ଥାନ ଓ ସମ୍ମାନ ବିସ୍ମୟକର ଭାବରେ ବଦଳିଯା'ନ୍ତା ନାହିଁ କି ? ଏଇପରି ଭାବରେ ଅନ୍ୟତ୍ର ମଧ୍ୟ, ଓକିଲ,ଡାକ୍ତର, ଇଞ୍ଜିନିୟର ପରି ଶିକ୍ଷକ ହୁଅନ୍ତା ତା ବିଭାଗରେ, ତା' ନିଜ ଅନୁଷ୍ଠାନରେ, ମାଲିକ। ଶିକ୍ଷାନୁଷ୍ଠାନରେ–ପ୍ରାଇମେରୀଠାରୁ କଲେଜ ପର୍ଯ୍ୟନ୍ତ, ଶିକ୍ଷକ ଛଡ଼ା ଅପର କେହି ମାଲିକ ବା ଚାଳକ ହେବାରେ କୌଣସି ଯୁକ୍ତି ଦେଖାଯାଉନାହିଁ। ସର୍ବତ୍ର ଶିକ୍ଷକ ସାମାନ୍ୟ ଚାକିରିଆ ମାତ୍ର ହୋଇ ରହିବାରେହିଁ ଆମ ଦେଶର ଶିକ୍ଷାନୁଷ୍ଠାନମାନଙ୍କର ଦୁର୍ଦ୍ଦଶା। ଶିକ୍ଷକ ଓ ସମାଜ ମଧ୍ୟରୁ ଅବାନ୍ତର ବ୍ୟବଧାନ କାଟିନିଆଗଲେ ଅର୍ଥନୀତିର ପ୍ରୟୋଜନ ଓ ଆୟୋଜନ ନିୟମ ଉପରେ ଶିକ୍ଷାନୁଷ୍ଠାନ ଓ ଶିକ୍ଷକର ଶ୍ରୀବୃଦ୍ଧି ନିର୍ଭର କରନ୍ତା। ଶିକ୍ଷକର ଆବଶ୍ୟକତା ଅନୁଭବ କରି ସମାଜ, ଓକିଲ, ଡାକ୍ତରଙ୍କୁ ଯେପରି ପୋଷୁଛି ସେହିପରି ପୋଷନ୍ତା ଶିକ୍ଷକ ଓ ଶିକ୍ଷାନୁଷ୍ଠାନକୁ। ଏବେ କିନ୍ତୁ ଶିକ୍ଷକ ଓ ସମାଜ ଭିତରେ କୌଣସିଠାରେ ହେଲେ ପ୍ରତ୍ୟକ୍ଷ ସମ୍ପର୍କ ନାହିଁ। ଉପରୁ ତଳଯାଏ ପ୍ରତ୍ୟେକ ବିଦ୍ୟାନୁଷ୍ଠାନର ପରିଚାଳକ ଓ ମାଲିକ ଅନ୍ୟ କେହି, ଶିକ୍ଷକ ବିଚାରା ସେଠି ନଗଣ୍ୟ ଚାକିରିଆ। ଏ ଅବସ୍ଥା ନ ଘୁଞ୍ଚିଲାଯାଏ ଶିକ୍ଷକର ପୂର୍ବ ସମ୍ମାନ ଫେରିଆସିବା ବା ଶିକ୍ଷାର ଉନ୍ନତି ଅସମ୍ଭବ।

ପରିଚାଳନାରେ ଶିକ୍ଷକ ଯେପରି ସାମାନ୍ୟ ଚାକିରିଆ, ଅଧ୍ୟାପନାରେ ମଧ୍ୟ ସେ ସେହିପରି ମାତ୍ର ଆଜ୍ଞାବହ। ହିମାଳୟର ଉଚ୍ଚତାରୁ ତାର ନିମ୍ନସ୍ତରକୁ ବହିଆସେ ଯେଉଁ ସିଲାବସ ଓ ଯେଉଁ ପାଠ୍ୟ ବହିର ତାଲିକା, ଶିକ୍ଷକ ବିଚରାର ଏକମାତ୍ର କାମ ସେଇତକ ନେଇ ଛାତ୍ର ନିକଟରେ ପହଞ୍ଚେଇବା। ତାର ନିଜର ନିଜତ୍ୱ ବା କୃତିତ୍ୱ ବା ବ୍ୟକ୍ତିତ୍ୱପାଇଁ କୌଣସି ହେଲେ ଅବକାଶ ନାହିଁ।

ଶିକ୍ଷାବିଭାଗ ବା ବିଶ୍ୱବିଦ୍ୟାଳୟ ଶ୍ରେଣୀରୁ ଶ୍ରେଣୀକୁ ସିଲାବସ ନିର୍ଦ୍ଦେଶ କରିଦେବାର ଅସଙ୍ଗତି କିଛି ନାହିଁ, କିନ୍ତୁ ସେଥି ସଙ୍ଗେ ସଙ୍ଗେ ନିର୍ଦ୍ଦିଷ୍ଟ ବ୍ୟକ୍ତିର ଲେଖା ନିର୍ଦ୍ଦିଷ୍ଟ ପାଠ୍ୟପୁସ୍ତକ ପଢ଼େଇବାକୁ ବାଧ କରିବାରେ କିଛିହିଁ ହେଲେ ଯୁକ୍ତି ଅଛି କି ? ସିଲାବସ୍‌ରେ ନିର୍ଦ୍ଦେଶ ଦିଆଗଲା ମାଟ୍ରିକ୍ ଷ୍ଟାଣ୍ଡାର୍ଡ଼ରେ ଭୂଗୋଳ ବା ଇତିହାସ ଜ୍ଞାନ ଏଇତକ ହେବା ଆଶା କରାଯାଏ। ତା ସାଙ୍ଗକୁ ଏଇ ଲୋକର ଏଇ ବହି ପଢ଼ାହେବ, ତାଛଡ଼ା ଅନ୍ୟ ବହି ପଢ଼ା ହୋଇପାରିବନାହିଁ, ଏପରି ଲୌହ ଶାସନର, ଜ୍ଞାନଦାନ କ୍ଷେତ୍ରରେ ଅର୍ଥ କ'ଣ ? ଅନେକ ଶିକ୍ଷକ ଓ ହେଡ଼ମାଷ୍ଟର ଏଇ ଟେକ୍ସ୍‌ଟବୁକ୍‌ର ଅତ୍ୟାଚାର ମୋ ଆଗରେ ବର୍ଣ୍ଣନା କରିଛନ୍ତି। ଓଡ଼ିଆ ସାହିତ୍ୟ ଏବେ ଏକ ପ୍ରଧାନ ବିଷୟ ହୋଇଛି। କିନ୍ତୁ ଭିନ୍ନ ଭିନ୍ନ ଶ୍ରେଣୀରେ ବିଷୟଟି ସ୍ତରରୁ ସ୍ତରକୁ କିପରି ଉଠି ଉଠି ଯିବ ସେ ସମ୍ପର୍କରେ ସିଲାବସ୍ ଏକାବେଳକେ ନୀରବ। କର୍ତ୍ତୃପକ୍ଷ କେବଳ ଏ ଶ୍ରେଣୀରେ ଦୁଇ ତିନି ଖଣ୍ଡ, ଆର ଶ୍ରେଣୀକି ଦୁଇ ତିନି ଖଣ୍ଡ ବହି ବାନ୍ଧିଦେଇ ନିଶ୍ଚିନ୍ତ। ତଳ ଶ୍ରେଣୀର ବହି ସଙ୍ଗେ

ଉପର ଶ୍ରେଣୀର ବହିର ବା ତଳ ଜ୍ଞାନ ସଙ୍ଗେ ଉପର ଜ୍ଞାନର କୌଣସି କ୍ରମ ବା ସମ୍ବନ୍ଧ ନାହିଁ। ପୁଣି କେବଳ ଟେକ୍ସଟବୁକ୍ ବ୍ୟବସାୟର ବୀଭତ୍ସତାରେ ଦେଶର ସମଗ୍ର ଶିକ୍ଷାନୁଷ୍ଠାନ ସମୂହ କଳଙ୍କିତ। ବହୁ ସ୍ଥାନରେ ଓଡ଼ିଆ ଶିକ୍ଷକମାନେ ମତେ କହିଛନ୍ତି ଯେ, "ଓଡ଼ିଆ ପଢ଼େଇବୁ କଣ ? ଏ ବହିମାନଙ୍କରେ ଅଛି କଣ ଯେ ପିଲାଙ୍କୁ ପଢ଼େଇବୁ ?" ଏପରି ବହିସବୁ ଶିକ୍ଷକମାନଙ୍କ ଉପରେ ଉପରୁ ଲଦି ଦିଆଯିବ କାହିଁକି ? ଶିକ୍ଷାର ବିଶେଷଜ୍ଞମାନେ ପାଠ୍ୟ-କ୍ରମର ନିର୍ଦ୍ଦେଶ ଦେଇଦେଲା ପରେ ଶିକ୍ଷକମାନେ ତାଙ୍କର ଇଚ୍ଛାନୁସାରେ ଯେକୌଣସି ବହି ସହିତ ବା ବିନା ବହିରେ ପଢ଼େଇବାର ଅଧିକାର ନପାଇବେ କାହିଁକି ?

ଦେଶର ଶିକ୍ଷାନୁଷ୍ଠାନଗୁଡ଼ିକ ସୁସମୃଦ୍ଧଭାବରେ ବଢ଼ିଉଠିବାକୁ ଆମେ ଯଦି ଚାହୁ, ତେବେ ଶିକ୍ଷକ ତହିଁରେ ଗୌଣ ନହୋଇ ପ୍ରଧାନକର୍ତ୍ତା ବୋଲି ଧରାଯିବା ଉଚିତ। ଶିକ୍ଷକ ଓ ସମାଜ ଭିତରେ ସରକାର ବା ମ୍ୟାନେଜିଂ କମିଟି କେହି ହେଲେ ଅବାନ୍ତର ଅନ୍ତରାୟ ରହିବେ ନାହିଁ। ଶିକ୍ଷା ବିଭାଗର ବିଶେଷଜ୍ଞମାନେ କେବଳ ଶିକ୍ଷାର ପଥ ନିର୍ଦ୍ଦେଶ କରିବେ। ପାଠ୍ୟପୁସ୍ତକର ନିର୍ବାଚନ, ଦୈନନ୍ଦିନ ପରିଚାଳନା, ଶିକ୍ଷକଙ୍କ ଦରମା, ଛାତ୍ରଙ୍କ ଫିସ୍ ପ୍ରଭୃତି ବିଷୟରେ ପ୍ରତ୍ୟେକ ଅନୁଷ୍ଠାନକୁ, ଅର୍ଥାତ୍ ପ୍ରଧାନଶିକ୍ଷକ ବା ଶିକ୍ଷକ ସଂଘକୁ ନିଜ ଦାୟିତ୍ୱରେ ଛାଡ଼ିଦେବା ସର୍ବଥା ଶ୍ରେୟଃ। ଏହି ବିକେନ୍ଦ୍ରୀକରଣ ଫଳରେ ସରକାର ଅନେକ ମୁଣ୍ଡବ୍ୟଥାରୁ ରକ୍ଷାପାଇବା ସଙ୍ଗେ ସଙ୍ଗେ, ମୋର ଦୃଢ଼ ବିଶ୍ୱାସ ଆମ ସ୍କୁଲମାନଙ୍କର ଶିକ୍ଷା ଓ ଶୃଙ୍ଖଳା ଆଶ୍ଚର୍ଯ୍ୟଜନକଭାବରେ ବଦଳିଯିବ।

ଗୋଟିକିଆ ସ୍କୁଲ୍‌ଗୁଡ଼ିକୁ ଆଭ୍ୟନ୍ତରୀଣ ସ୍ୱାତନ୍ତ୍ର୍ୟ ଦେବା ସଙ୍ଗେ ସଙ୍ଗେ ସରକାର ଏଣେ ବିଭାଗୀୟ ବିକେନ୍ଦ୍ରୀକରଣ କରିବା ଏକାନ୍ତ ଓ ଜରୁରୀ ଆବଶ୍ୟକ। ସୁଦୂର ଅଭ୍ୟନ୍ତରର ପ୍ରାଇମେରୀ ସ୍କୁଲ୍‌ର ଜଣେ ଶିକ୍ଷକ ନିଯୁକ୍ତ କରିବାପାଇଁ ଡି.ପି.ଆଇ. ପୁଣି ସେକ୍ରେଟାରିଏଟ୍‌କୁ ଲେଖିବେ, ଏହା ଯେପରି ହାସ୍ୟାସ୍ପଦ ବ୍ୟବସ୍ଥା ସେହିପରି ଅକର୍ମକ। ନିଯୁକ୍ତିରେ, ଖର୍ଚ୍ଚବାର୍ଚ୍ଚରେ ଓ ଅନ୍ୟାନ୍ୟ ସକଳ ବ୍ୟବସ୍ଥାରେ ସବ୍‌ଇନ୍‌ସପେକ୍ଟରଙ୍କୁ ପ୍ରାଇମେରୀପାଇଁ ବା ଇନ୍‌ସପେକ୍ଟରଙ୍କୁ ହାଇସ୍କୁଲ୍‌ପାଇଁ ଓ ଡି.ପି.ଆଇ.ଙ୍କୁ କଲେଜ ଓ ପୋଷ୍ଟଗ୍ରାଜୁଏଟ୍‌ପାଇଁ ପରିପୂର୍ଣ୍ଣ ସ୍ୱାଧୀନତା ନ ଛାଡ଼ିଦେଲେ, ଶିକ୍ଷାନୁଷ୍ଠାନମାନଙ୍କର ନିପୁଣତା କେବଳ ପାଠର କଥା ହୋଇ ରହିବ। ଅବଶ୍ୟ, ପ୍ରତ୍ୟେକ ଶିକ୍ଷାନୁଷ୍ଠାନ ଉପରବର୍ଣ୍ଣିତ ଆଭ୍ୟନ୍ତରୀଣ ସ୍ୱାତନ୍ତ୍ର୍ୟ ପାଇଲା ପରେ ଏହି ଅଫିସରମାନଙ୍କର ଦାୟିତ୍ୱ ଓ କାମ ଅନେକ କମିଯିବ। ଏମାନେ କେବଳ ବିଶେଷଜ୍ଞଭାବରେ ହିଁ ନିଯୁକ୍ତ ହେବେ—ନିଜ ନିଜର ବିଭାଗକୁ ଗାଇଡ୍ କରିବାକୁ।

## ୪—ଚାହି ଏକାନ୍ତ ସରଳୀକୃତ ବ୍ୟବସ୍ଥା –

ୟୁରୋପର ଅନୁକରଣରେ ଏ ଦେଶରେ 'ନିମ୍ନ ପ୍ରାଇମେରୀ', 'ଉଚ୍ଚ ପ୍ରାଇମେରୀ', 'ମିଡ୍‌ଲ', 'ସେକେଣ୍ଡାରୀ' ଓ 'କଲେଜ ଶିକ୍ଷା' ନାମରେ ଶିକ୍ଷାର ସୋପାନ-ଶ୍ରେଣୀ ଗଢ଼ାଯାଇଛି; କିନ୍ତୁ ଏ ସୋପାନ-ଶ୍ରେଣୀର ବିଶେଷ ଅର୍ଥ ବା ଏକାନ୍ତ ଆବଶ୍ୟକତା ଅଛି ବୋଲି ମୁଁ ମନେକରେନାହିଁ। ଏ ଦେଶରେ ଏପରି ଶିକ୍ଷାବିତ୍ ଅଛନ୍ତି, ଜନସାଧାରଣଙ୍କ କଥା ତ

ଛାଡ଼ିଦିଅ—ଯେଉଁମାନେ ମନେକରନ୍ତି, ଶିକ୍ଷାର ଏବଂବିଧ ସୋପାନ ପରମ୍ପରା ଅପିରବର୍ତ୍ତନୀୟ । କିନ୍ତୁ ପ୍ରତ୍ୟେକ ଦେଶରେ ଏହି ପାହାଚର ଆକାର ଓ ପ୍ରକୃତି ଭିନ୍ନ ଭିନ୍ନ ଓ ଆମେ ଯେ ଆମର ପ୍ରୟୋଜନ ଅନୁଯାୟୀ ଏସବୁକୁ ଭାଙ୍ଗି ନିଜ ରୁଚି ଅନୁସାରେ ପୁଣି ଗଢ଼ିପାରିବା, ଏ ଧାରଣା ସମସ୍ତଙ୍କର ହେବା ଉଚିତ ।

ମୁଁ 'ନିମ୍ନ ଶିକ୍ଷା', 'ଉଚ୍ଚ ଶିକ୍ଷା'— ଶିକ୍ଷାକୁ ଏପରି ଭାଗ କରିବାର ବିରୋଧୀ । ସମସ୍ତ ଅଭିଜ୍ଞ ଲୋକେ ଏକମତ ହେବେ ଯେ, ପୂର୍ବକାଳରେ ମିଡ୍‌ଲ ଭର୍ଣ୍ଣାକ୍ୟୁଲର ସ୍କୁଲ୍‌ମାନଙ୍କରେ ସାହିତ୍ୟ, ଗଣିତାଦି ବିଷୟଗୁଡ଼ିକର ଯେପରି ଚର୍ଚ୍ଚା ହେଉଥିଲା, ତଥାକଥିତ 'ହାଇସ୍କୁଲ୍' ବା 'ଉଚ୍ଚବିଦ୍ୟାଳୟ'ଗୁଡ଼ିକରେ ସେପରି ହେଉନଥିଲା ବା ହେଉନାହିଁ । ଅଥଚ ତାଙ୍କ ନାମ ପଛରେ ପୂର୍ବେ ଓ ଏବେ ସେହି ନିରର୍ଥକ 'ଉଚ୍ଚ' ଲାଗିରହିଛି । ଆମର ସମଗ୍ର ଶିକ୍ଷା ବ୍ୟବସ୍ଥା ଭିତରେ ଏହି ତଥାକଥିତ 'ଉଚ୍ଚ ବିଦ୍ୟାଳୟ' ବା 'ହାଇସ୍କୁଲ୍' ପରି ଅପଚୟାତ୍ମକ ଓ ଦୂଷ୍ୟ ଅନୁଷ୍ଠାନ ଆଉ ନାହିଁ । ମନୁଷ୍ୟ ଜୀବନର ଶ୍ରେଷ୍ଠତମ ଚାରିବର୍ଷ ଏହି ଅନୁଷ୍ଠାନରେ କଟେ—ବୃଥାରେ । ମିଡ୍‌ଲ ସ୍କୁଲ୍ ପରେ ଅଧିକା ଯାହା ଜ୍ଞାନ ମିଳିବାର ବ୍ୟବସ୍ଥା ହୋଇଛି, ତାହାର ପରିମାଣ ଓ ଜୀବନରେ ତାହାର ପ୍ରୟୋଗ ଶକ୍ତି ଏତେ କମ୍ ଯେ, ସେଥିପାଇଁ ବ୍ୟୟବହୁଳ ସମୟସାପେକ୍ଷ ଗୋଟିଏ ଗୋଟିଏ ପ୍ରକାଣ୍ଡ ଅନୁଷ୍ଠାନ ଠିଆ କରେଇବାର କିଛିହିଁ ଦରକାର ନ ଥିଲା । ପୂର୍ବେ ମାଟ୍ରିକ୍‌କ୍ଲାସ୍ କହିଲେ ଦଶମ ଓ ଏକାଦଶ ଶ୍ରେଣୀକି ବୁଝାଉଥିଲା । ଏବେ ନବମ ସେଥିରେ ମିଶିଛି—ମିଶିବାର ବିଶେଷ ଦରକାର ବୋଲି ମୁଁ ମନେକରୁନାହିଁ । ତଥାପି ବାକି ଯେ ରହିଗଲା ଅଷ୍ଟମ ଶ୍ରେଣୀଟି, ତାହାର ଶୈକ୍ଷିକ ମୂଲ୍ୟ କ'ଣ ? ସେକେଣ୍ଡାରୀ ଶିକ୍ଷାଟା ଚାରିବର୍ଷବ୍ୟାପୀ ହେବ ବୋଲି କେଉଁ ବେଦରେ ଲେଖାଅଛି ? ଆମର ନାଗରିକମାନଙ୍କର ଶିକ୍ଷା, କ'ଣ ବର୍ଷସଂଖ୍ୟା ଅନୁସାରେ ଠିକ୍ କରାଯିବ, ନା ଲବ୍ଧ ଜ୍ଞାନର ସୀମା ବା ପରିମାଣ ନେଇ ?

ତା'ଛଡ଼ା ଏହି ପ୍ରତ୍ୟେକ ପାହାଚର ଶୈକ୍ଷିକ ଓ ବୌଦ୍ଧିକ ଅର୍ଥ କ'ଣ ? ନିମ୍ନ ପ୍ରାଇମେରୀରେ ପଢ଼ିଲେ ନାଗରିକର ପିଲା କେଉଁ ଯୋଗ୍ୟତା ପାଇବ, ଅପର ପ୍ରାଇମେରୀରେ ପଢ଼ି କେଉଁ ଯୋଗ୍ୟତା, ମାଇନର ପଢ଼ି କେଉଁ ଯୋଗ୍ୟତା, ପୁଣି ହାଇସ୍କୁଲ୍‌ରେ ପଢ଼ି ବା କେଉଁ ଯୋଗ୍ୟତା ? ଦେଶର କୌଣସି ଶିକ୍ଷାବିତ୍ ଏହାର ଉତ୍ତର ଦେଇପାରିବେ କି ? ଯଦି ନିର୍ଦ୍ଦିଷ୍ଟ ସୋପାନରୁ ନିର୍ଦ୍ଦିଷ୍ଟ ଜ୍ଞାନ, କର୍ମପଟୁତା ବା ଯୋଗ୍ୟତା ମିଳିବନାହିଁ, ତେବେ ଏପରି ସୋପାନ-ଶ୍ରେଣୀ ରଚିତ ହୋଇଛି କାହିଁକି ? ମୁଁ କିନ୍ତୁ ଦେଖେ, ଏହି ସୋପାନ-ଶ୍ରେଣୀରେ ଖଡ଼ା- ବଡ଼ି -ଥୋଡ଼ ଓ ଥୋଡ଼-ବଡ଼ି-ଖଡ଼ା—ସାମାନ୍ୟ ଜିନିଷ, ଯାହାର କି ଜୀବନରେ ବା ଆତ୍ମା ପ୍ରତି କୌଣସି ବିଶେଷ ଉପଯୋଗିତା ନାହିଁ, ତାହାରି କେବଳ ନାମାଡ଼ମ୍ବରିତ ଅଦଳବଦଳ ।

ଏ ବ୍ୟବସ୍ଥା ପୁଣି ପ୍ରତୀଚ୍ୟ—ଏ ଦେଶର ନୁହେଁ । ଆଉ ତେଣେ ପୁଣି ସମାନ୍ତରାଳ ଭାବରେ ପ୍ରାଚ୍ୟବିଦ୍ୟା ନାମରେ ଟୋଲରୁ ସଂସ୍କୃତ କଲେଜ ଯାଏ ସଂସ୍କୃତ ଶିକ୍ଷାର ମଧ୍ୟ ବ୍ୟବସ୍ଥା ରହିଛି । ନାମମାତ୍ର ପ୍ରାଚ୍ୟ, କିନ୍ତୁ ବ୍ୟବସ୍ଥା ସମଗ୍ରଭାବରେ ୟୁରୋପୀୟ । ଭାରତବର୍ଷରେ କେଉଁ ଯୁଗରେ ସଂସ୍କୃତ ପାଣ୍ଡିତ୍ୟ ସାର୍ଟିଫିକେଟ୍ ଦ୍ୱାରା ବିଚାର୍ଯ୍ୟ ହେଉଥିଲା ? ପ୍ରସିଦ୍ଧ ପଣ୍ଡିତ ମଧୁସୂଦନ ତର୍କବାଚସ୍ପତି, ମହାମହୋପାଧ୍ୟାୟ ଜଗନ୍ନାଥ ମିଶ୍ର, ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କର କେଉଁ

ସାର୍ଟିଫିକେଟ୍ ଥିଲା ? ଏବେ ସଂସ୍କୃତ କଲେଜରୁ ପ୍ରତିବର୍ଷ ଶତ ଶତ ଆଚାର୍ଯ୍ୟ ଓ ଶାସ୍ତ୍ରୀ ବାହାରୁଛନ୍ତି, କିନ୍ତୁ ପ୍ରକୃତ ପଣ୍ଡିତ କାହାନ୍ତି ? ଦକ୍ଷିଣ ଓଡ଼ିଶାର ଇନ୍ସପେକ୍ଟର ଥିଲାବେଳେ ପୁରୀ ସଂସ୍କୃତ କଲେଜ ପରିଦର୍ଶନ କରି ମତେ ଅତ୍ୟନ୍ତ ନିରାଶ ହେବାକୁ ପଡ଼ିଥିଲା । ମୁଁ ଭାବିଥିଲି, ସଂସ୍କୃତ ବିଦ୍ୟାର୍ଥୀମାନେ ପ୍ରାଚୀନ ଆଶ୍ରମର ଶିଷ୍ୟମାନଙ୍କ ପରି ସରଳ, ପବିତ୍ର ଜୀବନଯାପନ କରୁଥିବେ । କିନ୍ତୁ ଦେଖିଲି, ସେମାନେ କୋଟ୍ ପ୍ୟାଣ୍ଟ୍ ପିନ୍ଧି ବୁଲୁଛନ୍ତି । ସେମାନଙ୍କର ଢଙ୍ଗଢାଙ୍ଗ ଗୋଟିଏ ସାଧାରଣ ହାଇସ୍କୁଲ୍ ପିଲାଙ୍କର ଢଙ୍ଗଢାଙ୍ଗ ପରି । ପ୍ରାଚୀନତାର ଗନ୍ଧ ନାହିଁ । ସଂସ୍କୃତର ନିଜସ୍ୱ ସଂସ୍କୃତି ରକ୍ଷା କରିବାର କୌଣସି ଚେଷ୍ଟା ନାହିଁ । ଗୁରୁଶିଷ୍ୟର ପୈତୃକ ସମ୍ପର୍କ ନାହିଁ । ପଢ଼ା ହେଉଛି ଜ୍ୟୋତିଷ, ଅଥଚ ପିଲାମାନେ ଆକାଶର ତାରାପୁଞ୍ଜ ଚିହ୍ନିନାହାନ୍ତି କି କ୍ଲାସ୍‌ରେ ଗୋଟିଏ ଯନ୍ତ୍ର ନାହିଁ । ପଢ଼ାହେଉଛି ନ୍ୟାୟ, ଅଳଙ୍କାର, ଆୟୁର୍ବେଦ, ଅଥଚ ସେଇ ସେଇ ଦିଗରେ ପଶ୍ଚିମ କେତେଦୂର ଆଗରେ ଯାଇ ପହଞ୍ଚିଲାଣି, ତା'ର ଖବର ନାହିଁ । ତିନିହଜାରବର୍ଷ ତଳେ ଯାହା ଆବିଷ୍କୃତ ହୋଇଥିଲା, ବିଂଶ ଶତାବ୍ଦୀରେ ତାକୁଇ ଶେଷ ଓ ଶ୍ରେଷ୍ଠ ସତ୍ୟ ବୋଲି ଆଙ୍କୁଡ଼ି ଧରି ବସିରହିବାଠାରୁ ନିରର୍ଥକ ଅପଚେଷ୍ଟା ଥାଇପାରେ କି ? ଶତ ଶତ ଅର୍ଦ୍ଧପକ୍ୱ ଶାସ୍ତ୍ରୀ ଓ ଆଚାର୍ଯ୍ୟ ଅପେକ୍ଷା ଜଣେ ମଧୁସୂଦନ ତର୍କବାଚସ୍ପତିର ମୂଲ୍ୟ ଓ ମହତ୍ତ୍ୱ ବେଶି । କିନ୍ତୁ ଏକ୍‌ଜାମିନେସନ୍ ଓ ସାର୍ଟିଫିକେଟ୍‌ର ବୋହୂଚୋରି ଖେଳ ଭିତରେ ତର୍କବାଚସ୍ପତି ବାହରିବା ଅସମ୍ଭବ । ଏଣେ ପଲ ପଲ ବାହାରୁଥିବା ପଣ୍ଡିତମାନଙ୍କ ଭିତରେ ବେକାର ସମସ୍ୟା ସବୁଠାରୁ ତୀବ୍ରତମ । ଏମାନେ ସମାଜର କେଉଁ କାମରେ ଲାଗିବେ ? କାହିଁକି ଏ ବିଭାଗକୁ ଏପରି ବଞ୍ଚେଇ ରଖାହେଉଛି ? ତେଣେ ସଂସ୍କୃତକୁ ଖାଣ୍ଟିରୂପେ ବଞ୍ଚେଇବାର ବ୍ୟବସ୍ଥା ଯଦି ଅଛି, ତେବେ ଏଣେ ସ୍କୁଲ୍ କଲେଜରେ ଫେର୍ ତାକୁ ଏକ ବାଧ ବିଷୟ କରି ଅଧାପନ୍ତରିଆ ଭାବରେ ପଢ଼େଇ କି ଲାଭ ? କେତେଜଣ ମାଟ୍ରିକ୍ୟୁଲେଟ୍ ପରଜୀବନରେ ସଂସ୍କୃତ ମନେରଖନ୍ତି ?

ମୋ ମତରେ, ତେଣୁ ପ୍ରାଚ୍ୟ, ପ୍ରତୀଚ୍ୟ ସବୁକୁ ମିଶେଇ ଗୋଟିଏ ବ୍ୟବସ୍ଥାହିଁ ଆମକୁ ଭଲ କାମ ଦେବ । ଇଂରେଜ ଅମଳରେ ଇଂରେଜୀ ପଢ଼ିବାଟା ମୁଖ୍ୟ ଉଦ୍ଦେଶ୍ୟ ଥିବାରୁ ଓ ସେହି ଉଦ୍ଦେଶ୍ୟ ନେଇ କଲେଜ ବସୁଥିବାରୁ, ସଂସ୍କୃତକୁ ବଞ୍ଚେଇ ରଖିବାପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଦରକାର ଥିଲା । ଏବେ ଦେଶ ସ୍ୱାଧୀନ । ଇଂରାଜୀ ବର୍ତ୍ତମାନ ପଛକୁ ହଟିଗଲାଣି । ବର୍ତ୍ତମାନ ଇଂରାଜୀ ଓ ସଂସ୍କୃତ ଭିତରେ ଦ୍ୱନ୍ଦ୍ୱ କଳ୍ପନା କରାଯାଇନପାରେ । ଗୋଟିଏ ବ୍ୟବସ୍ଥା ଭିତରେ ମାତୃଭାଷା, ରାଷ୍ଟ୍ରଭାଷା, ପୌରାଣିକ ଭାଷା ଓ ଆନ୍ତର୍ଜାତିକ ଭାଷା—ସବୁ ଭାଷାର ସ୍ଥାନ କରାଯାଇପାରେ । ଇଂଲଣ୍ଡରେ ଲାଟିନ୍ ବା ଗ୍ରୀକ୍‌ପାଇଁ ସ୍ୱତନ୍ତ୍ର ଅନୁଷ୍ଠାନ ନାହିଁ ବା ଏସବୁ ବାଧ୍ୟତାମୂଳକ ପାଠ୍ୟ ନୁହେଁ । କେବଳ ବିଶେଷଜ୍ଞମାନେହିଁ ଏସବୁର ଚର୍ଚ୍ଚା କରନ୍ତି ଏବଂ ସେହି ପ୍ରକାର ଶ୍ରଦ୍ଧାନ୍ୱିତ ଅଧ୍ୟୟନ ଫଳରେହିଁ ଏସବୁ ବିଷୟରେ ବରାବର ଉଚ୍ଚକୋଟୀର ପଣ୍ଡିତ ଦେଖାଯାନ୍ତି । ଦେଶରେ ଗୋଟିଏପ୍ରକାର ଶିକ୍ଷା ବ୍ୟବସ୍ଥାହିଁ ରହୁ । ତାହା ବ୍ୟୟସଂକୋଚକ ଯେପରି ସେହିପରି ମଧ ଯୁକ୍ତିଯୁକ୍ତ । ଏହି ଏକୀକୃତ ବ୍ୟବସ୍ଥାକୁ ଜୀବନର ଓ ସଂସାରର ଏକାନ୍ତ ପ୍ରୟୋଜନର ତାଗିଦା ଅନୁସାରେହିଁ ଭାଗ ଭାଗ କରାଯାଉ । ବର୍ତ୍ତମାନର ଅନ୍ଧ ଅନୁକରଣ ବନ୍ଦ କରାଯାଉ ।

ଏପର୍ଯ୍ୟନ୍ତ କୌଣସି ପ୍ରଦେଶରେ ବିଦ୍ୟାନୁଷ୍ଠାନର ସର୍ଭେ ହୋଇନାହିଁ । ଆମର ଜନସଂଖ୍ୟାନୁସାରେ କେତୋଟି ପ୍ରାଇମେରୀ ସ୍କୁଲ୍, କେତୋଟି ହାଇସ୍କୁଲ୍ ବା କେତୋଟି କଲେଜ ଦରକାର ତାହା ସରକାର ବା ଶିକ୍ଷାବିତ୍ କେହି ଜାଣନ୍ତିନାହିଁ । ସ୍ଥାନୀୟ ଓ ବ୍ୟକ୍ତିଗତ ମର୍ଯ୍ୟାଦା ବଢ଼ାଇବାପାଇଁ କେବଳ ହାଇସ୍କୁଲ୍ ଓ କଲେଜ ଲାଗି ବାଡ଼ିଆପିଟା ଚାଲିଛି । ଏହା ଫଳରେ ଅନେକ ସ୍ଥାନରେ, ଯେଉଁଠି କି ସେପରି ଶିକ୍ଷାନୁଷ୍ଠାନର ଆଦୌ ଦରକାର ନଥିଲା, ସେଠି ସେସବୁ ବସିଯାଇଛି । ଏହାଦ୍ୱାରା ଦେଶର ସମୂହ କ୍ଷତି ହେଉଛି । ଆମର ଶିକ୍ଷା ବିଭାଗ ସର୍ଭେ କରି ସରକାରଙ୍କୁ ନିର୍ଦ୍ଦେଶ ଦେବା ଉଚିତ ଯେ ଏଇ ଏଇ ଜିଲ୍ଲାରେ ଏତିକିଟି ସ୍କୁଲ୍ ହେବା ଉଚିତ ଏବଂ ସେସବୁ ସ୍ୱାସ୍ଥ୍ୟ ଓ ପାରିପାର୍ଶ୍ୱିକତା ଦୃଷ୍ଟିରୁ ଏଇ ଏଇ ସ୍ଥାନରେ ବସିବା ଉଚିତ । ତାହାହେଲେ ଶିକ୍ଷା ବିଭାଗର ଜିଲ୍ଲା ଇନ୍ସପେକ୍ଟର ଓ ଡିଭିଜନାଲ ଇନ୍ସପେକ୍ଟରମାନେ ଅନେକ ଜଞ୍ଜାଳରୁ ରକ୍ଷା ପାଆନ୍ତେ ।

ତା'ଛଡ଼ା ଆମକୁ ପୁଣି ଦେଖିବାକୁ ହେବ ଯେ, ଶିକ୍ଷା ବ୍ୟବସ୍ଥାର ପ୍ରତ୍ୟେକଟି ସୋପାନ, ଜୀବନ ଓ ସଂସାରର କୌଣସି ନିର୍ଦ୍ଦିଷ୍ଟ ପ୍ରୟୋଜନ ମେଣ୍ଟାଉଛି କି ନାହିଁ । କେବଳ ଥୋଡ଼-ବଡ଼ି-ଖଡ଼ାର ଅଦଳବଦଳ କଲେ, ଦେଶର ଅର୍ଥ ଓ ତରୁଣମାନଙ୍କର ଜୀବନର ଅପବ୍ୟୟ ମାତ୍ର ଫଳ । ଆମକୁ ପ୍ରତ୍ୟେକ ପାହାଚପାଇଁ ଉତ୍ତର ଦେବାକୁ ହେବ । ଏ ଉତ୍ତର ଯଦି ସ୍ପଷ୍ଟ ମିଳୁନାହିଁ, ତେବେ ଜାଣିରଖିବାକୁ ହେବ ଯେ ସେ ବ୍ୟବସ୍ଥାରେ କଲ୍ୟାଣ ନାହିଁ ।

ଦେଶର ପ୍ରତ୍ୟେକ ନାଗରିକକୁ ଦୁଇ ଦିଗରେ ଆମକୁ ଗଢ଼ିବାକୁ ହେବ । ଏକ—ସେ କୌଣସି ଉପାର୍ଜନପାଇଁ ପ୍ରସ୍ତୁତ ହେବ, ଦୁଇ—ସେ ଉତ୍ତମ ମନୁଷ୍ୟ ହେବ । ଏହି ଦୁଇ ଉଦ୍ଦେଶ୍ୟରୁ କୌଣସି ଗୋଟିକୁ ବାଦ୍ ଦେଲେ ଶିକ୍ଷା କେବଳ ଅପୂର୍ଣ୍ଣ ଯେ ରହିବ ତାହା ନୁହେଁ, ବରଂ ଅକଲ୍ୟାଣକର ହେବ । ମଜାର କଥା ଏଇ ଯେ—ଆମର ଚଳନ୍ତି ଶିକ୍ଷା ବ୍ୟବସ୍ଥାରେ ଦୁଇଟିରୁ କୌଣସିଟି ହେଲେ ତାହାର ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନୁହେଁ । ଉତ୍ତମ ମନୁଷ୍ୟ ଗଢ଼ିବାପାଇଁ ତ୍ୟାଗୀ ସନ୍ନ୍ୟାସୀର ଦଳ କିପରି ଦରକାର ତାହା ପୂର୍ବେ କହିଛି । ଦେଶରେ ଶିକ୍ଷିତ ବେକାର ସୃଷ୍ଟି ଯେପରି ନହୁଏ ତା'ପାଇଁ ଏବର ଜଟିଳ ଅର୍ଥହୀନ ଓ ଅନର୍ଥକର ଶିକ୍ଷା ବ୍ୟବସ୍ଥା ପରିବର୍ତ୍ତରେ ଏକ ସରଳୀକୃତ ବ୍ୟବସ୍ଥା ପ୍ରବର୍ତ୍ତନ କରିବାକୁ ହେବ । ସେଇ ବ୍ୟବସ୍ଥାର କିଛି ସୂଚନା ତଳେ ଦେଲି ।

୧ । ଦେଶରେ 'ନିମ୍ନ', 'ମଧ', 'ଉଚ୍ଚ' ବୋଲି ଅର୍ଥହୀନ ଅନୁଷ୍ଠାନ ସବୁ ଉଠାଇଦେଇ ଶିକ୍ଷାକୁ କେବଳ ଦୁଇ ପାଦରେ ବିଭକ୍ତ କରାଯାଉ । ପ୍ରଥମ ପାଦ ହେବ ସାଧାରଣ ଶିକ୍ଷା, ଯାହକି ଦେଶର ପ୍ରତ୍ୟେକ ବାଳକ ବାଳିକା ୧୪ ।୧୫ ବର୍ଷ ଯାଏଁ ପାଇବେ । ସରକାରଙ୍କର ବିଶେଷଜ୍ଞମାନେ କେବଳ ନିର୍ଦ୍ଦେଶ ଦେଇଦେବେ ଏହି ସାଧାରଣ ଶିକ୍ଷା କିପରି ହେବ—ମୌଳିକ ବା ଗୌଣ ରୀତିରେ ହେବ ବା କି କି ବିଷୟ ପଢ଼ାଯିବ ଇତ୍ୟାଦି । ସରକାର ନିରକ୍ଷରତା ଓ ଏଇ ସାଧାରଣ ଶିକ୍ଷାର ଅଭାବକୁ ଦଣ୍ଡନୀୟ ଅପରାଧ ବୋଲି ଘୋଷଣା କରିବେ, ଯେପରି ଅସ୍ପୃଶ୍ୟତାକୁ ବା ଅହିଫେନ ସେବନକୁ କରାଯାଉଛି ଏବଂ ଯେପରି କରାଯାଇଥିଲା ଜାପାନରେ । ଫଳରେ ଜନସାଧାରଣ ଓ ଶିକ୍ଷକ ପ୍ରୟୋଜନ ଆୟୋଜନ ନିୟମାନୁସାରେ ପାରସ୍ପରିକ ସହଯୋଗରେ ଆପେ ଆପେ ଶିକ୍ଷା ବନ୍ଦୋବସ୍ତ କରିବେ । ଶିକ୍ଷାର ମାନଦଣ୍ଡ ଛୋଟ ନ

ହୋଇଯିବାପାଇଁ ସରକାରଙ୍କର ଏକମାତ୍ର ଦାୟିତ୍ୱ ରହିବ କେବଳ ଉପଯୁକ୍ତ ଯୋଗ୍ୟତାର ବହୁସଂଖ୍ୟକ ଶିକ୍ଷକ ତାଲିମ କରେଇବା ।

୨ । ସିଲାବସ୍‌କୁ ଯଥାସମ୍ଭବ ଲଘୁ ଓ ସରଳ ରଖାଯିବ । ବର୍ତ୍ତମାନ ଅନେକ କିଛି ସିଲାବସ୍‌ରେ ଅକାରଣ ଭର୍ତ୍ତି କରି ଦିଆଯାଉଛି ଯାହା ମଣିଷର ଆପେ ଆପେ ଶିକ୍ଷ୍ୟ । କେବଳ ଲିଖନ-ପଠନ-ଗଣନ ଉତ୍ତମରୂପେ ଜାଣିବା ଓ ଭଲ ମଣିଷ ହେଲେଇ ମୋ ମତରେ ଲୋକ 'ଶିକ୍ଷିତ' ହେବ– ନଜାଣୁ ସେ ପୃଥିବୀ ଗୋଲ କି ଚେପ୍‌ଟା, ନଜାଣୁ ସେ ଆକବର ବାଦଶାହର ନାତି କେଉଁଠି ବା କେଉଁ ରୋଗରେ ମଲା ।

୩ । ପ୍ରତ୍ୟେକ ବାଳକ ଓ ବାଳିକା, ବିଶେଷତଃ ଗ୍ରାମାଞ୍ଚଳରେ, ପାଠ ପଢ଼ିବା ଭିତରେ ଯେପରି ପୈତୃକ ବ୍ୟବସାୟରୁ ବା ହାତ କାମରୁ ବିଚ୍ଛିନ୍ନ ନହୁଅନ୍ତି ସେଥିପାଇଁ ଦୈନନ୍ଦିନ ସ୍କୁଲ୍ ବେଳ ଓ ବାର୍ଷିକ ଛୁଟିର ସମୟ ବଦଳେଇବାକୁ ହେବ । ଏବର ବ୍ୟବସ୍ଥାନୁସାରେ ବାପ ଖରା ଓ ବର୍ଷାରେ ବିଲରେ ଧୂଳି କାଦୁଅରେ କାମ କରୁଥିଲା ବେଳେ ପୁଅ ଶୁଖିଲା ଗୋଡ଼ରେ ହାଫ୍ ପ୍ୟାଣ୍ଟ୍ ପିନ୍ଧି ଆରାମରେ ସ୍କୁଲ୍‌ରେ ବସି ବହି ପଢୁଛି । ଏଇଠି ଆରମ୍ଭ ହେଉଛି ଶିକ୍ଷିତ ଓ ଅଶିକ୍ଷିତର ବ୍ୟବଧାନ । ଏ ବ୍ୟବଧାନ ଆଦୌ ଯେପରି ନରହେ ତାର ସର୍ବବିଧ ଚେଷ୍ଟା କରିବାକୁ ହେବ । ସେଥିପାଇଁ ଆମର ଶିକ୍ଷା ବ୍ୟବସ୍ଥା ଏପରି ହେବା ଉଚିତ ଯେ ପିଲା ପାଠ ପଢ଼ିଲା ସମୟରେ ବି ସେ ପୈତୃକ ବ୍ୟବସାୟରେ ଅଭିଜ୍ଞତା ଅର୍ଜନ କରୁଥିବ । ଚଉଦବର୍ଷ ବେଳକୁ ସାଧାରଣ ଶିକ୍ଷା ସରିବ, ସେତେବେଳକୁ ଚଷାର ପୁଅ ବା ଧୋବାର ପୁଅ ସିଧା ଯାଇ ଯେପରି ତାଙ୍କର ପୁରୁଣା ବ୍ୟବସାୟ ଗ୍ରହଣ କରିପାରିବ । ଦେଶ, ଶିକ୍ଷିତ ଧୋବା ଓ ଶିକ୍ଷିତ ଚଷା ପାଇବ ଓ ଗାଁର ଲୋକେ ସହରକୁ ଦୌଡ଼ିବାର ସମ୍ଭାବନା କମ୍ ରହିବ । ଯଦି ଚଷା ପୁଅ ବା ଧୋବା ପୁଅ ବୁଦ୍ଧିମାନ୍ ଜଣାପଡ଼େ, ତେବେ ତାର ଉଚ୍ଚ ଶିକ୍ଷାର ବନ୍ଦୋବସ୍ତ ସରକାର କରିବେ ।

୪ । ପାଠ ପଢ଼ାଅ, ଜ୍ଞାନାର୍ଜନପାଇଁ ସବୁ ସାହାଯ୍ୟ କର, କିନ୍ତୁ ସାର୍ଟିଫିକେଟ୍ ଦିଅନାହିଁ । ସାର୍ଟିଫିକେଟ୍‌ର ବ୍ୟାଧି ହେଉଛି ଚାକିରି ଅନ୍ୱେଷଣ ଓ ନିଜକୁ ଗାଁର ବା ସାହିପଡ଼ିଶାର ଅନ୍ୟ ପାଞ୍ଚଜଣରୁ ଭିନ୍ନ ମନେକରିବା । ସମଗ୍ର ଶିକ୍ଷା ବ୍ୟବସ୍ଥାକୁ କଳୁଷିତ କରୁଛି ଏଇ ସାର୍ଟିଫିକେଟ୍ । 'ସାଧାରଣ ଶିକ୍ଷା'ର ଉଦ୍ଦେଶ୍ୟ ହେଉଛି ଭବିଷ୍ୟତ୍‌ର ନାରୀ ଓ ପୁରୁଷ ନାଗରିକମାନେ ଶିକ୍ଷିତ ହୋଇ ଯେଝା ଯେଝାର ପୈତୃକ ବ୍ୟବସାୟକୁ ଫେରିଯିବେ । ସେଥିରେ ସାର୍ଟିଫିକେଟ୍ କ'ଣ ଦରକାର ? ଅନ୍ତତଃ ପ୍ରଥମ ପାଦରେ ସାର୍ଟିଫିକେଟ୍‌ର କୌଣସି ପ୍ରୟୋଜନୀୟତା ମୁଁ ଦେଖୁନି । ସାର୍ଟିଫିକେଟ୍ ରଖିଲେହିଁ, ଶିକ୍ଷାନୁଷ୍ଠାନକୁ ଯେତେ ଉପାୟରେ ଭଲ କରିବାକୁ ଯିବ, ସବୁ ମାଟି ହେବ । ଏହା ୟୁରୋପୀୟ ବ୍ୟାଧି । ପ୍ଲେଗ, ହଇଜା ପରି ଏ ବ୍ୟାଧି ସମାଜରୁ ଦୂର କରିବାକୁ ହେବ ।

ଏହି ସାଧାରଣ ଶିକ୍ଷା ପରେ ଯିଏ ପୁଲିସ, ଫରେଷ୍ଟ ବା ପୂର୍ତ୍ତ ବିଭାଗକୁ ଯିବ ବା ଯିଏ କିରାଣି ଓ ଡାକ୍ତର ହେବ, ସେ ସେହି ସେହି ବିଭାଗର କଠିନ ପ୍ରବେଶିକା ପରୀକ୍ଷା ପାର ହେଲେ ସେହି ଡିପାର୍ଟମେଣ୍ଟରେ ଭର୍ତ୍ତି ହେବେ । ପ୍ରତ୍ୟେକ ଡିପାର୍ଟମେଣ୍ଟ ନିଜ ନିଜର ଲୋକ ସଂଗ୍ରହର ଓ ସେମାନଙ୍କୁ ଟ୍ରେନିଂ ଦେବା ଦାୟିତ୍ୱ ନେବେ । ପ୍ରତ୍ୟକ୍ଷ ସଂଗ୍ରହ ବନ୍ଦ ହୋଇ ତଳୁ

ଯେଉଁମାନେ କାମ କରି ପୁରୁଖା ହେବେ, ସେଇମାନଙ୍କ ଭିତରୁ ଅଭିଜ୍ଞ ଓ ବୁଦ୍ଧିମାନ୍ ଲୋକ ବାଛି ଡିପାର୍ଟମେଣ୍ଟର ଘାଟି ଜାଗାମାନଙ୍କରେ ରଖିବା ଉଚିତ । ଏବେ, ଜୀବନରେ ଗୋଟିଏ ହେଲେ ଚୋରି ଡକାୟତି ନ ଧରି ଲୋକେ ପୁଲିସ ବିଭାଗରେ ବଡ଼ ସାହେବ ଓ ଜୀବନରେ ଦିନେ ହେଲେ ଶିକ୍ଷକତା ନକରି ବା ଶିକ୍ଷକତାର କୌଣସି ଟ୍ରେନିଂ ନଥାଇ ମଧ୍ୟ ଶିକ୍ଷା ବିଭାଗରେ ବଡ଼ ହାକିମ ହେବାର ଦେଖୁଛୁଁ । ଯାରି ଫଳରେ ଦେଶର ସମଗ୍ର ଶାସନ କଳ ମନ୍ଥର ଓ ଅକାମିକା ହୋଇପଡୁଛି । ପ୍ରଧାନ ବିଚାର୍ଯ୍ୟ ଧରାଯାଉଛି ଡିଗ୍ରୀ ଓ ସାର୍ଟିଫିକେଟ୍ । ଏହି ଡିଗ୍ରୀ ଓ ସାର୍ଟିଫିକେଟ୍‌ର ଦୌରାମ୍ମ୍ୟ ଦେଶରୁ ନଉଠିଲାଯାଏଁ ଦେଶରେ ସୁଶିକ୍ଷା ଅସମ୍ଭବ ।

## ୫– ଚାହି ଆମ ପ୍ରାଚୀନ ପନ୍ଥାର ଅନୁସରଣ

ସେହି ଇତିହାସ, ଭୂଗୋଳ, ଇଂରେଜୀ, ଓଡ଼ିଆରେ କେତେଖଣ୍ଡ ବହି ମିଡଲରେ, କେତେଖଣ୍ଡ ବହି ତଥାକଥିତ 'ଉଚ୍ଚବିଦ୍ୟାଳୟ'ରେ ପଢ଼ିଲା ପରେ ପୁଣି ସେଇପରି କେତେ ଖଣ୍ଡ ବହି ଧରେଇଦେଇ 'ବିଶ୍ୱବିଦ୍ୟାଳୟ' ଶିକ୍ଷା, ଏକ ପିଲାଳିଆ ଓ ହାସ୍ୟକର ବ୍ୟାପାର ଛଡ଼ା ଆଉ କ'ଣ ହୋଇପାରେ ? ମୋ ମତରେ, 'ସାଧାରଣ ଶିକ୍ଷା' ପରେ 'ଉଚ୍ଚଶିକ୍ଷା' ମାନେଇ 'ବିଶେଷଜ୍ଞ ଶିକ୍ଷା' ହେବା ଉଚିତ । ସେ ଶିକ୍ଷା କେବଳ ମୁଷ୍ଟିମେୟ ବୁଦ୍ଧିମାନ୍ ଓ ଚରିତ୍ରବାନ୍ ପିଲାଙ୍କୁ ପ୍ରତଭାବାନ୍ ଓ ଚରିତ୍ରବାନ୍, ତ୍ୟାଗୀ ଅଧ୍ୟାପକମାନଙ୍କ ତତ୍ତ୍ୱାବଧାନରେ ଦେବା ଉଚିତ । ଏହିପରି ଗ୍ରାମେ ଗ୍ରାମେ କଲେଜ ବସେଇ ହଜାର ହଜାର ପିଲାଙ୍କୁ ରୁଣ୍ଡକରି ସାର୍ଟିଫିକେଟ୍ ବାଣ୍ଟିବାର ଯେଉଁ ବ୍ୟବସ୍ଥା ହେଉଛି, ତାକୁ ଯାହା କିଛି କହ, କିନ୍ତୁ କହନି 'ଉଚ୍ଚଶିକ୍ଷା' ବା 'ବିଶ୍ୱବିଦ୍ୟାପୀଠର ଶିକ୍ଷା' । ଯେକୌଣସି ଉତ୍ତମ ଅଧ୍ୟାପକଙ୍କୁ ଯାଇ ପଚାର ସେ କହିବେ ଯେ କଲେଜରେ ପଢ଼ିବାକୁ ଆସୁଥିବା ପିଲାଙ୍କ ଭିତରୁ ପ୍ରାୟ ଅର୍ଦ୍ଧେକ, କଲେଜ ଶିକ୍ଷାର ଅଯୋଗ୍ୟ । ହୁଏତ ଅଧ୍ୟାପକମାନଙ୍କ ପ୍ରତି ଏଇ ହିସାବ ମଧ୍ୟ ପ୍ରୟୋଗ କରାଯାଇପାରେ । ତେଣୁ ଅବାନ୍ତରକୁ ବାଦ୍ ଦେଇ, ଗୁରୁ ଓ ଶିଷ୍ୟ ଉଭୟ ଆଡୁ ଯାହା ପ୍ରକୃଷ୍ଟ, ଯାହା ଉତ୍ତମ, ତାକୁହିଁ ଏକତ୍ର କଲେ ଓ ତ୍ୟାଗ ଆଦର୍ଶରେ ଅନୁଷ୍ଠାନ ପରିଚାଳିତ ହେଲେ କେଜାଣି ବା ପ୍ରକୃତ ଶିକ୍ଷିତ ଦେଶରେ ବାହାରିବେ !

ଶିକ୍ଷାନୁଷ୍ଠାନ ନେଇ ଜିଲ୍ଲା-ଭାବ, ସବ୍‌ଡିଭିଜନ-ଭାବ, ଗୋଷ୍ଠୀ-ଭାବର ପ୍ରତିଯୋଗିତା ଯେପରି ଅସୁନ୍ଦର, ସେହିପରି ଅକଲ୍ୟାଣକର । ପୁରୀରେ କଲେଜ ବା ସମ୍ବଲପୁରରେ ବା କୋରାପୁଟରେ ଯେ କଲେଜ ହେବାକୁ ହେବ ଏହାର ଯାଥାର୍ଥ୍ୟ ମୁଁ ଏପର୍ଯ୍ୟନ୍ତ ବୁଝିପାରୁନି । ବିଶ୍ୱବିଦ୍ୟାଳୟର ଶିକ୍ଷାରୁ ଆସିବେ ଆମର ଶିକ୍ଷକ, ଓକିଲ, ଲେଖକ, ସମ୍ପାଦକ, ଉଚ୍ଚ ପାହ୍ୟାର କର୍ମଚାରୀ, ଲୋକପ୍ରତିନିଧି ଓ ରାଜଦୂତ । ତେଣୁ ଆମର ଦେଖିବା ଉଚିତ ଯେ ଦେଶର କୌଣସି ଗୋଟିଏ ସ୍ଥାନରେ ସର୍ବଶ୍ରେଷ୍ଠ ଅଧ୍ୟାପକମାନଙ୍କ ଆଖି ତଳେ ଦେଶର ଉତ୍କୃଷ୍ଟ ତରୁଣ ତରୁଣୀ ଏହି ଅଭିମୁଖରେ ଶିକ୍ଷିତ ଓ ଦୀକ୍ଷିତ ହେଉନ୍ତୁ । ଏଠି କୋରାପୁଟ, ସମ୍ବଲପୁରର ବିବାଦ ଓ ପ୍ରତିଯୋଗିତା କିପରି ବା କାହିଁକି ଆସିବ ମୁଁ ବୁଝିପାରୁନି । ମୁଁ ଯେପରିଭାବରେ ସୂଚନା ଦେଉଛି, ସେ ଦୃଷ୍ଟିରେ ସମଗ୍ର ଓଡ଼ିଶାପାଇଁ ଗୋଟିଏ ମାତ୍ର ପରିପୂର୍ଣ୍ଣାଙ୍ଗ ଆର୍ଟସ୍ କଲେଜ ଓ ଗୋଟିଏ ମାତ୍ର ପରିପୂର୍ଣ୍ଣାଙ୍ଗ ବିଜ୍ଞାନ କଲେଜ ହେଲେହିଁ ଯଥେଷ୍ଟ ହେବ ବୋଲି ମୁଁ ମନେ କରେ । ରେଭେନ୍ସା

କଲେଜକୁ ପୂର୍ଣ୍ଣାଙ୍ଗ ବିଜ୍ଞାନ କଲେଜ ଓ ପୁରୀ କଲେଜ ଓ ପୁରୀ ସଂସ୍କୃତ କଲେଜ ଉଭୟକୁ ମିଶାଇ ଗୋଟିଏ ସର୍ବାବୟବ କଳା-କଲେଜ ଠିଆକରାଇପାରିଲେ ବ୍ୟୟସଂକୋଚ ସଙ୍ଗେ ଓଡ଼ିଶାର ମାନସିକ ଜଗତର ସକଳ ଚାହିଦା ପୂରଣ ହୋଇପାରନ୍ତା ବୋଲି ମୋର ବିଶ୍ୱାସ । ମୁଁ ଏହି ନିର୍ଦ୍ଦେଶ ବହୁଦିନ ତଳୁ ଦେଇଆସିଛି ।

କଲେଜ ଶିକ୍ଷାରେ ବଡ଼ କଥା ଖଣ୍ଡେ ପାସ୍-ସାର୍ଟିଫିକେଟ୍ ନୁହେଁ, ଅସଲ ଜିନିଷ ହେଉଛି ସମବୟସ୍କ ବୁଦ୍ଧିମାନ୍ ଛାତ୍ରଛାତ୍ରୀଙ୍କ ସହ ମିଳାମିଶା ଓ ଉଚ୍ଚକୋଟୀର ଅଧ୍ୟାପକ ସହ ସମ୍ପର୍କ । ସତ୍ୟ ଖୋଜିବାପାଇଁ, ଜ୍ଞାନ ଆହରଣପାଇଁ, ଉଚ୍ଚତର ଜୀବନର ସ୍ପର୍ଶପାଇଁ ଯେଉଁମାନଙ୍କର ବ୍ୟାକୁଳତା ନାହିଁ, ସେପରି ଅଧ୍ୟାପକର କଲେଜରେ ସ୍ଥାନ ନରହିବା ଉଚିତ । ଛାତ୍ରଙ୍କ କଥା ଛାଡ଼ିଦିଅ, ଆଜିକାଲି ସ୍କୁଲ୍ କଲେଜରେ ଯେ ଅଶିଷ୍ଟତା ଏତେ ବଢ଼ିଛି, ତାର ଏକମାତ୍ର କାରଣ ହେଉଛି ଯେଉଁମାନଙ୍କର ସେଠି ରହିବାର କଥା ନୁହେଁ, ସେମାନେ ସେଠି ପଶିଯାଇଛନ୍ତି । ପ୍ରତିବର୍ଷ ଆଡ୍‌ମିଶନ୍ ସମୟରେ ସ୍କୁଲ୍ କଲେଜରେ ଜାଗା ହେଉନି ବୋଲି ଯେଉଁ ଚିତ୍କାର ଉଠୁଛି, ସେ ଚିତ୍କାର ଏ ଲେଖକକୁ ସ୍ପର୍ଶ କରେନାହିଁ । ତା' ହାତରେ କ୍ଷମତା ଥିଲେ ସେ ଅନେକ ଅନିପୁଣ ଅବାଞ୍ଛିତ ସ୍କୁଲ୍ କଲେଜ ବନ୍ଦ କରିଦେଇ ଅଳ୍ପ ସଂଖ୍ୟକ ଅଥଚ ସୁଚାଳିତ, ନିପୁଣ, ଆଦର୍ଶ ଅନୁଷ୍ଠାନ କେତୋଟିହିଁ ରଖନ୍ତା । ଏବେ ଆମ ଭିତରେ ସଂଖ୍ୟା ନେଇ ଗର୍ବ କରିବାର ଏକ ମାରାତ୍ମକ ବ୍ୟାଧି ବ୍ୟାପିଛି । ଅମୁକ ସ୍କୁଲ୍‌ରେ ବା କଲେଜରେ ଏବର୍ଷ ୧୫୦୦ ପିଲା ! ଭଲ କଥା, କିନ୍ତୁ ପରୀକ୍ଷା କଲେ ଦେଖିପାରିବ ଯେ ସେଥିରୁ ଅଧେ ଯେଉଁ ଯେଉଁ ଶ୍ରେଣୀରେ ବସୁଛନ୍ତି ସେଥିପାଇଁ ସେମାନଙ୍କର ମାନସିକ ଯୋଗ୍ୟତା ନାହିଁ । ଏକଥା କେହି ଦେଖୁନାହାନ୍ତି । ବେସରକାରୀ ଅନୁଷ୍ଠାନମାନ ଛାତ୍ରଦତ୍ତ ବେତନ ଉପରେ ବଞ୍ଚନ୍ତି । ତେଣୁ ପିଲାମାନଙ୍କର ବୁଦ୍ଧି ଓ ଚରିତ୍ର ପ୍ରତି ଅନେକ ସମୟରେ ଆଖି ବୁଜିବାକୁ ପଡ଼େ, ଛାତ୍ର ବେତନ-ଆୟ ହରେଇବା ଭୟରେ । ଏଥିରେ ଶିକ୍ଷାନୁଷ୍ଠାନରେ ଡିସିପ୍ଲିନ୍ ରହିବ କୁଆଡୁ ? ଛତୁ ଫୁଟିଲା ପରି ସ୍କୁଲ୍ କଲେଜ ଖୋଲିବାରୁ ପିଲାଙ୍କ ମାନସିକ ଯୋଗ୍ୟତା ଦେଖିବାକୁ ବେଳ କାହିଁ ?

ପୂର୍ବେ ଆମ ଦେଶରେ 'ସାଧାରଣ' ଓ 'ଉଚ୍ଚ ଶିକ୍ଷାର' ଏକ ଅଳ୍ପବ୍ୟୟ ଚତୁର ବ୍ୟବସ୍ଥା ଥିଲା । ଚାଟଶାଳୀ ଓ ଚାଟଶାଳୀର ଅବଧାନ ଗାଁର ଏକ ଅଭିନ୍ନ ଅଙ୍ଗ ଥିଲେ । ଏବେ ପ୍ରାଇମେରୀ ସ୍କୁଲ୍ ଓ ତାର ଶିକ୍ଷକ ଓ ତାର ସିଲାବସ୍, ଗାଁର ମାଟି ଓ ଲୋକଙ୍କଠାରୁ ଭିନ୍ନ । ଏବେ ପ୍ରାଇମେରୀ ଶିକ୍ଷକ ଧୋବ ଲୁଗା, ଧୋବ କାମିଜ ପିନ୍ଧି ଏକ ଭଦ୍ରଲୋକ । ଗାଁର ଚଷା, ମୂଲିଆ, ତନ୍ତୀ, ଧୋବା, ଭଣ୍ଡାରିଠାରୁ ସେ ଭିନ୍ନ । ନୂଆ ପାଠ ପଢ଼ି ସାର୍ଟିଫିକେଟ୍ ପାଇଲେଇ ଲୋକ ଭିନ୍ନ-ଜୀବ ହେଲା । ପ୍ରାଇମେରୀ ଶିକ୍ଷକଙ୍କର ସେହିପ୍ରକାର ଆନୁପାତିକ ଭିନ୍ନତା ନରହିବ କାହିଁକି ? କିନ୍ତୁ ସେବର ଗାଁ ଅବଧାନ ଓ ତାର ଚାଟଶାଳୀ ଗାଁର ସମସ୍ତରରେ ଥିଲା ଓ ସେ ଥିଲେ ଗାଁର କେନ୍ଦ୍ର । ଅବଧାନେ ଦୈନିକ ପାଳିରେ ଚଳୁଥିଲେ । ଦରମା ବୋଧହୁଏ ଥିଲା ଦୁଇ ତିନିଟଙ୍କା । କିନ୍ତୁ ପ୍ରକୃତ ଆୟ ଥିଲା, ଗଣେଶଚଉଠି ଓ ଶ୍ରୀପଞ୍ଚମୀର ଚାନ୍ଦା ଭେଦା । ଚିତ୍ରିତ ନାରୀକେଳ ହାତରେ ଧରି "ବରଷକରେ ବାରମାସରେ ପଡ଼ଇ ଶ୍ରୀପଞ୍ଚମୀ" ଗାଇ ଗାଇ ଗ୍ରାମେ ଗ୍ରାମେ ବୁଲିବାର ବାଲ୍ୟସ୍ମୃତି ଏଇ ଲେଖକର ଆଜି ମନେପଡୁଛି । ସେହି ବାଳଖିଲ୍ୟା ଦଳ ଓ ସେମାନଙ୍କର

କୋମଳ କଣ୍ଠର ଗୀତ ଶୁଣି ଗ୍ରାମର ଧନୀ ଗରିବ ସମସ୍ତେ କିଛି କିଛି ଅବଧାନଙ୍କୁ ଦେଉଥିଲେ । ପଲ୍ଲୀ ଓ ପଲ୍ଲୀର ଶିକ୍ଷକ ଭିତରେ ଏହିପରି ରହିଥିଲା ସ୍ୱାଭାବିକ ସମ୍ବନ୍ଧ ।

ଚାଟଶାଳୀର ସିଲାବସ୍ ଥିଲା କେବଳ ଲିଖନ, ପଠନ, ଗଣନ । ସେ କାଳର ସମାଜ, ବାଳକ ବାଳିକାଙ୍କୁ ଚାଟଶାଳୀରେ ଅକ୍ଷର ସବୁ ପରିଚିତ କରାଇ ଦେଇ ସେମାନଙ୍କ ଆଗରେ ଥୋଇଦେଉଥିଲା ଜାତିର ସାହିତ୍ୟ—କାବ୍ୟ, ପୁରାଣ, ସଂଗୀତ । ତାହାରି ଆଲୋଚନାହିଁ ଥିଲା ଉଚ୍ଚଶିକ୍ଷା । କାବ୍ୟ ଚର୍ଚ୍ଚାରୁ ସେମାନେ ପାଉଥିଲେ ଆନନ୍ଦ, ପୁରାଣ ପାଠରୁ ପାଉଥିଲେ ଧର୍ମଭାବ । ତେଣେ ଗାଁର ଆଖଡ଼ାରେ ଗଢ଼ାହେଉଥିଲା ସେମାନଙ୍କର ଶକ୍ତିମନ୍ତ ସୁନ୍ଦର ସୁଗଠିତ ଶରୀର । ତେଣେ ପୁଣି ପୈତୃକ ବ୍ୟବସାୟରେ ଯୋଗ ଦେଇ ଦେଇ ଅଜ୍ଞାତସାରରେ ଗଢ଼ି ହୋଇଯାଉଥିଲେ ଉପାର୍ଜନକ୍ଷମ ନାଗରିକ । ଏହିପରିଭାବରେ ସେକାଳର ସମାଜ, ଅତି ଶସ୍ତାରେ ପଲ୍ଲୀର ବାୟୁମଣ୍ଡଳର ସ୍ୱାଭାବିକତା ଭିତରେ ଚାଟଶାଳୀ, ଆଖଡ଼ା ଓ ଜାତିର ସାହିତ୍ୟ ନେଇ ଗଢୁଥିଲା ସେକାଳର ବ୍ୟକ୍ତି ଯେ କି ମିଛ କହିବାକୁ, ପାପ କରିବାକୁ ଡରୁଥିଲେ, ଯିଏ କୁଟୀରରେ ଦାରିଦ୍ର୍ୟରେ ଥାଇ ମଧ୍ୟ ସାହିତ୍ୟର ଉତ୍କୃଷ୍ଟ ରସ ଭୋଗକରୁଥିଲେ ଏବଂ ସ୍ୱାଭାବିକ ଭାବରେ ତାଙ୍କର ପାଠପଢ଼ା ଓ ବ୍ୟବସାୟ ଶିକ୍ଷା ହୋଇଥିବାରୁ ଦୀର୍ଘ ଓ ସୁସ୍ଥ ଜୀବନଯାପନ କରୁଥିଲେ ।

ଏବେ କିନ୍ତୁ ସବୁ ବେଖାପ । ଆମେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟରେ ପ୍ରାଇମେରୀ ସ୍କୁଲ୍ ସବୁ ବସାଉଛୁ । କିନ୍ତୁ କେହି ଖବର ରଖନ୍ତି କି ଏଇ କଟକ ସହରରେ ଯେତେ ପ୍ରାଇମେରୀ ସ୍କୁଲ୍ ଅଛି, ତା'ଠୁ ବେଶି ସଂଖ୍ୟାରେ ଅଛି ଚାଟଶାଳୀ ? ଗଡ଼ଜାତରେ ଓ ପ୍ରଦେଶରେ ଦେଖିଛି, ଲୋକେ ପାଖରେ ଥିବା ପ୍ରାଇମେରୀ ସ୍କୁଲ୍‌ର ମାଗଣା ପାଠପଢ଼ାକୁ ଖାତିରି ନକରି ହାତରୁ ଖର୍ଚ୍ଚ କରି ଅବଧାନ ରଖି ପିଲାଙ୍କୁ ପାଠ ପଢ଼ାନ୍ତି । ଏହା ଦେଖି ମୁଁ ଗଡ଼ଜାତରେ ଶିକ୍ଷା-ପରାମର୍ଶଦାତା ଥିବାବେଳେ ଓ ପରେ ବି, ସବ୍‌ଇନ୍‌ସପେକ୍ଟରମାନଙ୍କୁ ଚାଟଶାଳୀର କି କି ଗୁଣ ଯୋଗୁଁ ତାହା ଆଦୃତ ହେଉଛି ତାହା ପର୍ଯ୍ୟବେକ୍ଷଣ କରି ସେଥିରୁ କିଛି କିଛି ପ୍ରାଇମେରୀରେ ଭର୍ତ୍ତି କରିବାକୁ ଓ ଚାଟଶାଳୀକି ଅଗ୍ରାହ୍ୟ ନକରି, ଅବଧାନମାନଙ୍କୁ ସୁନଜରରେ ଦେଖି ସେଥିରେ ପ୍ରାଇମେରୀର କେତେକ ଭଲକଥା ମିଶେଇବାକୁ ଏବଂ ପ୍ରାଇମେରୀ ସ୍କୁଲ୍‌ଗୁଡ଼ିକୁ ଚାଟଶାଳୀ ପରି ଗ୍ରାମ୍ୟ ଜୀବନର କେନ୍ଦ୍ର କରିବାକୁ ସର୍କ୍ୟୁଲାର ସବୁ ଦେଇଛି । କିନ୍ତୁ ପ୍ରାଇମେରୀ ସ୍କୁଲ୍‌ର ବହୁ ସ୍ୱାମୀ — ତେଣୁ ମୋର ସର୍କ୍ୟୁଲାର ବିଶେଷ ଫଳ ଦେଇଛି ବୋଲି ମୁଁ ମନେକରୁନି ।

ଆମେ ଚାଟଶାଳୀକି ଖାତିରିକି ଆଣୁନେ । ତା' ପରିବର୍ତ୍ତରେ ବସାଉଛେ ପ୍ରାଇମେରୀ, ଯା'ର ଅବସ୍ଥା କାହିଲ୍ । ତା' ଉପରେ ପୁଣି ନାନାପ୍ରକାରର ତଥାକଥିତ 'ଉଚ୍ଚ ବିଦ୍ୟାପୀଠ' ଲକ୍ଷ ଲକ୍ଷ ଟଙ୍କା ବ୍ୟୟ କରି ବସାଉଛେ । କିନ୍ତୁ ପୂର୍ବେ ସାକ୍ଷରତା ପରେ ସମାଜ ଯେପରି ଉଚ୍ଚଶିକ୍ଷା ପାଇଁ ସାହିତ୍ୟ ଯୋଗାଇ ରଖିଥିଲା ସେ ସୁନ୍ଦର ଓ କଲ୍ୟାଣକର ଅବସ୍ଥା କାହିଁ ? ଗୋଟିଏ ଜାତି ପ୍ରତି ସାହିତ୍ୟଠାରୁ ମହତ୍ତର ବିଦ୍ୟାପୀଠ ବା ବିଶ୍ୱବିଦ୍ୟାଳୟ ନଥାଇପାରେ;—ନାହିଁ । ମୋର ବିଶ୍ୱାସ ଛତୁଫୁଟା ସ୍କୁଲ୍ କଲେଜରେ ଅକାରଣ ଜାତିର ଅର୍ଥ ଅପବ୍ୟୟ ନକରି, ସରକାର ଯଦି ଗୋଟାଏ ବର୍ଷର ଟଙ୍କା ନୂତନ ସାହିତ୍ୟ ସୃଷ୍ଟି କରିବାରେ ବ୍ୟୟ କରନ୍ତେ, ତା ହେଲେ ଜାତିର

ପରମ କଲ୍ୟାଣ ହୁଅନ୍ତା । ଏହା ଲଜ୍ଜାର କଥା ନୁହେଁ କି ଯେ, ଯେଉଁ ପ୍ରଦେଶରେ ହାଇକୋର୍ଟ ଓ ବିଶ୍ୱବିଦ୍ୟାଳୟ ବସିଲା, ୭ । ୮ଟା କଲେଜ ବସିଲା, ସେ ପ୍ରଦେଶର ଭାଷାରେ ଖଣ୍ଡେ ଉତ୍କୃଷ୍ଟ ମାସିକପତ୍ର ନାହିଁ, ସେ ଭାଷାରେ ଏକ ଏନ୍‌ସାଇକ୍ଲୋପିଡ଼ିଆ ନାହିଁ, ବିଶ୍ୱ-ସାହିତ୍ୟର କଥା ଛାଡ଼ିଦିଅ, ଭାରତର ପ୍ରାଦେଶିକ ଭାଷାମାନଙ୍କର ବା ସଂସ୍କୃତର ଉତ୍କୃଷ୍ଟ ଗ୍ରନ୍ଥମାନଙ୍କର ମଧ ଅନୁବାଦ ସେଥିରେ ନାହିଁ । ଜାତିର ଆତ୍ମା କି ସାର୍ଟିଫିକେଟ୍ ପାଇ ଉଦ୍‌ବୋଧିତ ହେବ ? ଜାତିର ବୁଦ୍ଧି କି କନଭୋକେଶନର ଆଡ଼ମ୍ବର ଦେଖି ବିକଶିତ ହୋଇଉଠିବ ? ଇଟା ପଥରର ସ୍କୁଲ୍ କଲେଜ କି ଜାତିକି ସତ୍ୟମାର୍ଗରେ ଅନୁପ୍ରାଣିତ କରିପାରିବ ? କେବଳ କରିବ ସାହିତ୍ୟ । ଆଜି ସରକାର ଯଦି ଚାହାନ୍ତି ଯେ ଜାତି ପ୍ରକୃତ 'ଉଚ୍ଚ ଶିକ୍ଷିତ' ହେଉ, ତେବେ 'ସାଧାରଣ ଶିକ୍ଷାର ସାକ୍ଷରତା  ପାଇଲା ପରେ ସରକାର ଜାତି ଆଗରେ ଥୋଇ ଦେଉନ୍ତୁ ବଳିଷ୍ଠ ଓ ଶସ୍ତା ସାହିତ୍ୟ—ଆମର ପ୍ରାଚୀନ ସମାଜ ଯେପରି ବନ୍ଦୋବସ୍ତ କରିଥିଲା । ସାର୍ଟିଫିକେଟ୍ ବଣ୍ଟନ ଉଚ୍ଚଶିକ୍ଷା ନୁହେଁ—ଏଇ ଧାରଣାଟା ବଳବତୀ ହେଉ ଓ ସେହି ଅନୁସାରେ କାମ ହେଉ ।

## ୫—ବେସିକ୍ ଓ ସାଧାରଣ ଶିକ୍ଷା ବ୍ୟବସ୍ଥାର ସଂସ୍କାର –

ବେସିକ୍ ଶିକ୍ଷା ପଦ୍ଧତି ଶିକ୍ଷାବିତ୍‌ମାନଙ୍କ ସମ୍ମୁଖରେ ଦୁଇଟି ପ୍ରସ୍ତାବ ଆଣି ଥୁଏ । ପ୍ରଥମରେ, ଅଧ୍ୟାପନା ଓ ଜ୍ଞାନାହରଣର ଏକ ସମ୍ପୂର୍ଣ୍ଣ ନୂତନ ପ୍ରଣାଳୀ ବୋଲି ତାହା ନିଜକୁ ପ୍ରଚାର କରେ । ଦ୍ୱିତୀୟରେ, ତାହା ଆମ ଆଗରେ ଏଇ ଆସ୍ପର୍ଦ୍ଧା କରେ ଯେ ଏହା ଏକ ସମ୍ପୂର୍ଣ୍ଣଭାବରେ ଭିନ୍ନ ଶିକ୍ଷା ବ୍ୟବସ୍ଥା, ଯାହାକି ଏକ ନୂତନ ସମାଜ ବା ଜଗତ ଗଢ଼ିବାପାଇଁ ଅଭିପ୍ରେତ । ବେସିକ୍ ଶିକ୍ଷା ପଦ୍ଧତି, ସେହି ଆଦର୍ଶ ଆଗାମୀ ସମାଜର ପ୍ରତୀକ ଓ ଏକମାତ୍ର ଉପାୟ ।

ଆମ୍ଭେମାନେ ଏଇ ଦୁଇଟିଯାକ ପ୍ରସ୍ତାବ ଆଲୋଚନା କରିବା ।

ପ୍ରାଚୀନ ପଦ୍ଧତିରେ ଅଙ୍କ, ଇତିହାସ, ଭୂଗୋଳ ପ୍ରଭୃତି ବିଷୟମାନ ଅଙ୍କ, ଭୂଗୋଳ, ଇତିହାସ ଭାବରେ ସ୍ୱତନ୍ତ୍ର ସ୍ୱତନ୍ତ୍ର ରୂପେ ମୂଳରୁ ଶେଷଯାଏ ପଢ଼ାଯାଉଥିଲା । ବେସିକ୍ ପଦ୍ଧତିର ନୂତନତାର ଦାବି ଏହି ଯେ, ଏଇ ଏଇ ବିଷୟଗୁଡ଼ିକୁ ଆମର ଦୈନନ୍ଦିନ ଜୀବନର ସମସ୍ୟାଗୁଡ଼ିକ ସହିତ ଘନିଷ୍ଠଭାବରେ ସମ୍ପୃକ୍ତ କରିବାପାଇଁ, ଏଇ ଏଇ ବିଷୟଗୁଡ଼ିକ ସ୍ୱତନ୍ତ୍ର ପୁଣି ପରସ୍ପରଠାରୁ ଓ ଜୀବନଠାରୁ ଅସଂଲଗ୍ନଭାବରେ ଅଧ୍ୟାପିତ ନହୋଇ, କୌଣସି ଗୋଟିଏ କ୍ରାଫ୍ଟ ବା ହାତ କାମରୁ ଯେପରି ସେମାନେ ବାହାରୁଛନ୍ତି, ସେଇପରି ଅଧ୍ୟାପିତ ହୁଅନ୍ତୁ ।

## ଏ ପ୍ରସ୍ତାବ ଅତି ଉତ୍ତମ –

କିନ୍ତୁ ବହୁକାଳ ଧରି ୟୁରୋପ ଓ ଆମେରିକାର ସ୍କୁଲ୍‌ମାନଙ୍କରେ ପ୍ରୋଜେକ୍ଟ ମେଥଡ୍ ବା ''**ଯୋଜନା ପ୍ରଣାଳୀ**'' ବୋଲି ଏକପ୍ରକାର ଅଧ୍ୟାପନା ଚଳିଆସୁଛି । ପ୍ରଣାଳୀଟି ଏଇପରି । ଧରନ୍ତୁ, ଗୋଟିଏ ବିଦ୍ୟାଳୟର ପିଲେ ନାଟକାଭିନୟ କରିବାକୁ ଚାହିଲେ । ଶିକ୍ଷକଙ୍କର ସେଥିରେ ଆପତ୍ତି ନାହିଁ । କିନ୍ତୁ ସେ କହିଲେ ଯେ, ନାଟକାଭିନୟ ଲାଗି ଯାହା କିଛି ଆବଶ୍ୟକ, ପିଲାମାନେହିଁ ତାହା ସବୁ କରିବେ । ଅର୍ଥାତ୍, ପିଲେ ଡ୍ରାମା ଲେଖିବେ, ନିଜେ ଥିଏଟର୍ ବନେଇବେ, ସିନ୍

ତିଆରି କରିବେ, ଅଭିନୟ ଉପଯୋଗୀ ପୋଷାକପତ୍ର ତଆରି କରିବେ, ଟିକଟ୍ ଛାପିବେ, ହାଣ୍ଡବିଲ୍ ଛାପିବେ—ଇତ୍ୟାଦି ସବୁ କାମ । ଏ ପ୍ରଣାଳୀ ଆମେରିକାରେ ସବୁଠାରୁ ଅଧିକ ଅଭ୍ୟାସ କରାଯାଏ । ଏହିପରି ଗୋଟାଏ ଗୋଟାଏ ପ୍ରୋଜେକ୍ଟ ଯେ ପିଲାଙ୍କୁ ଯଥେଷ୍ଟ ପ୍ରାକ୍ଟିକାଲ୍ ଟ୍ରେନିଂ ଦେଇପାରିବ, ଏଥିରେ ସନ୍ଦେହ କରିବାର କାରଣ ନାହିଁ ।

କିନ୍ତୁ ବେସିକ୍ ପଦ୍ଧତି ଏପ୍ରକାର ପ୍ରାକ୍ଟିକାଲ୍ ଟ୍ରେନିଂ ମାନେ ନାହିଁ । ତା'ର ଏକାନ୍ତ ମତ ଏହି ଯେ, ଇସ୍କୁଲ୍‌ର ସବୁପାଠକଯାକ ସୂତାକଟା ପରି ଗୋଟାଏ କ୍ରାଫ୍ଟ ବା ହାତକାମ ଭିତରୁ ବାହାରିବ । ସେହି ହେବ ପ୍ରକୃତ ପ୍ରାକ୍ଟିକାଲ୍ ଅଧ୍ୟାପନା ।

କିନ୍ତୁ ଏ ରୀତି ମଧ୍ୟ ଯେ ବହୁକାଳରୁ ଇଂଲଣ୍ଡ ଓ ଆମେରିକାରେ ଆଲୋଚିତ ଓ ପରୀକ୍ଷିତ ହୋଇଯାଇଛି, ତାହା ବେସିକ୍ ପ୍ରଚାରକମାନେ ହୁଏତ ଜାଣି ଜାଣି କେବେହେଲେ ପ୍ରକାଶ କରନ୍ତି ନାହିଁ । ଧର୍ମପ୍ରଚାରକମାନଙ୍କ ପରି ସେମାନଙ୍କର ନୂତନତା ଓ ଭିନ୍ନତାର ଦାବି ଧର୍ମାନ୍ଧତା ପରି ବିରାଜିତ । ସେମାନେ ପ୍ରଚାର କରନ୍ତି ଯେ, କେବଳ ଭାରତବର୍ଷ ନୁହେଁ, ସମଗ୍ର ବିଶ୍ୱକୁ ଏ ଏକ ନୂତନ ଶୈକ୍ଷିକ ଦାନ, ତେଣୁ ଏହାର ବିଚାର କରାଯିବା ଉଚିତ ।

ଆମ ଦେଶରେ ସରକାରଙ୍କ ଶିକ୍ଷା ବିଭାଗ ଖାଲି ଟେକ୍ସଟ ବୁକ୍ ତାଲିକାରେ ଦସ୍ତଖତ ମାରନ୍ତି ଓ ଚାକିରିଆ-ଶିକ୍ଷକଗୁଡ଼ିକୁ ଏଠୁ ନେଇ ସେଠି, ସେଠୁ ନେଇ ଏଠି କରୁଥାନ୍ତି । କିନ୍ତୁ ସକଳ ସଭ୍ୟଦେଶରେ ସରକାରଙ୍କ ଶିକ୍ଷା ବିଭାଗର ବଡ଼ ଓ ପ୍ରଧାନ କାମ ହେଲା, ଶିକ୍ଷା-ସମ୍ପର୍କିତ ସକଳ ବ୍ୟପାର ଉପରେ ପ୍ରାମାଣିକ ଗ୍ରନ୍ଥ, ହାଣ୍ଡବୁକ୍ ଓ ବୁଲେଟିନ୍ ସବୁ ପ୍ରକାଶ କରିବା । ଇଂଲଣ୍ଡର କେନ୍ଦ୍ରଶିକ୍ଷା ଦପ୍ତରରୁ ଏଇପରି ଅନେକ ପୁସ୍ତକ ପ୍ରକାଶିତ ହୋଇଛି ଓ ବରାବର ହୁଏ । ଯେକୌଣସି ଶିକ୍ଷାବିତ୍ ଏଗୁଡ଼ିକ ମଗାଇ ପଢ଼ିପାରନ୍ତି । ଏଗୁଡ଼ିକ ଶିକ୍ଷା ବିଜ୍ଞାନର ଆଲୋଚନା ଦିଗରୁ ଅତ୍ୟନ୍ତ ମୂଲ୍ୟବାନ୍ ।

ଏଇପରି ଗୋଟିଏ ପୁସ୍ତକ ହେଉଛି ''ପରାମର୍ଶଦାତା କମିଟିର ପ୍ରାଇମେରୀ ଶିକ୍ଷା ଉପରେ ରିପୋର୍ଟ ।'' ଏଇ ଲେଖକ ଏହି ଆଲୋଚନାରେ ଏ ରିପୋର୍ଟରେ ୧୯୩୧ ସାଲର ସଂସ୍କରଣ ବ୍ୟବହାର କରିବାକୁ ଯାଉଛି, ଏଇ କାରଣରୁ ଯେ, ପାଠକମାନେ ଜାଣିବେ, ଏଇ କ୍ରାଫ୍ଟକେନ୍ଦ୍ରିକ ଅଧ୍ୟାପନା ସେ ଦେଶମାନଙ୍କରେ କେତେକାଳୁ ଆଲୋଚିତ ଓ ପରୀକ୍ଷିତ ହୋଇସାରିଛି ଓ ଏହା ଆଦୌ ବେସିକ୍‌ବାଲାଙ୍କର ନୂତନ ଆବିଷ୍କାର ନୁହେଁ ।

ଉଲ୍ଲିଖିତ ଏଇ ରିପୋର୍ଟରେ ଏ ସମ୍ବନ୍ଧରେ ବହୁ ଆଲୋଚନା ହୋଇ କମିଟି ଶେଷରେ ନିମ୍ନରୀତିରେ ପରାମର୍ଶ ଦେଇଛନ୍ତି । ଅବଶ୍ୟ, ଏଇ ରିପୋର୍ଟ ଓ ଏହାର ଉପଦେଶ, ବିଲାତର ସ୍କୁଲ୍ ଓ ସ୍କୁଲ୍ ଶିକ୍ଷକଙ୍କପାଇଁ ଅଭିପ୍ରେତ । କିନ୍ତୁ ଏହାର ମୌଳିକ ବିଚାରଧାରା ସର୍ବଦେଶପାଇଁ ପ୍ରଯୁଜ୍ୟ ।

ରିପୋର୍ଟ ତିଆରି କରିଥିବା ପଣ୍ଡିତମାନଙ୍କର ମତ ଏହି ଯେ, ଅଧ୍ୟାପନାର ବହୁ ରୀତି ଭିତରୁ ଏହା(କ୍ରାଫ୍ଟକେନ୍ଦ୍ରିକ ରୀତି) ଏକତମ ହୋଇପାରେ । ଏହାର ମୂଲ୍ୟ ଅଛି । କିନ୍ତୁ ସେମାନେ ଶିକ୍ଷକମାନଙ୍କୁ ସାବଧାନ କରାଇଦେଇଛନ୍ତି ଯେ, କ୍ରାଫ୍ଟ-ପ୍ରଣାଳୀକି ଯେପରି ଦେବତାର ଆସନରେ ବସାନଯାଏ । ଏ ରୀତିକୁ ବହୁ ରୀତି ଭିତରକୁ ଗୋଟାଏ ବୋଲି ମାନିବାରେ କୌଣସି

ଆପତ୍ତି ତାଙ୍କର ନାହିଁ । କିନ୍ତୁ ଏଇ ଗୋଟାଏ ରୀତିକୁ ସବୁଠାରୁ ଶ୍ରେଷ୍ଠ ରୀତି କହି ସମଗ୍ର ଶିକ୍ଷକ-ସମାଜ ଉପରେ ବାଧ୍ୟ କରିବାରେ ସେମାନଙ୍କର ଘୋର ଆପତ୍ତି । କେଉଁ ରୀତିରେ କେଉଁ ପାଠଟା ପଢ଼ାଯିବ, ସେଥିପାଇଁ ଶିକ୍ଷକର ପୂରା ସ୍ୱାଧୀନତା ରହିବା ଉଚିତ । ପୁଣି ଏହି କ୍ରାଫ୍ଟକେନ୍ଦ୍ରିକ ରୀତିର ସେମାନେ ଏଇପରି ଦୁଇଟି ପ୍ରଧାନ ଦୋଷ ଦେଖାଇଛନ୍ତି –

(୧) ସାହିତ୍ୟ, ଇତିହାସ, ଭୂଗୋଳ ଇତ୍ୟାଦି ବିଷୟଗୁଡ଼ିକ ପ୍ରତ୍ୟେକ ନିଜ ମର୍ଯ୍ୟାଦାରେ ଠିଆହେବା ଉଚିତ । ଏମାନେ କୌଣସି କ୍ରାଫ୍‌ଟ ବା ପ୍ରୋଜେକ୍ଟର ଅନୁଚର ମାତ୍ର ହେବାର କୌଣସି କାରଣ ନାହିଁ । ତା'ହେଲେ ମହାନ୍ ବିପଦ ଏଇ ଯେ, ଏହି ପ୍ରଧାନ ବିଷୟଗୁଡ଼ିକ ଅବହେଳିତ ହୋଇପାରନ୍ତି ଓ ସେହି ସେହି ବିଷୟର ପାଠ୍ୟନିର୍ଘଣ୍ଟ ନିର୍ଦ୍ଦିଷ୍ଟ କାଳ ଭିତରେ ଆଦୌ ସରିପାରିବନାହିଁ; ଆଉ ପିଲାମାନେ ଏଇ ବିଷୟଗୁଡ଼ିକରେ କେବେହେଲେ ତାଙ୍କ ବୟସ ଅନୁପାତରେ ଷ୍ଟାଣ୍ଡାର୍ଡ଼ ଜ୍ଞାନ ପାଇପାରିବେନାହିଁ ।

(୨) ଦ୍ୱିତୀୟରେ ''ଖୁବ୍ ନିପୁଣ, ଅଭିଜ୍ଞ ଓ ଚତୁର ଶିକ୍ଷକ ନହେଲେ, କେବଳ କୌଣସି ଧନ୍ଦା ବା ବ୍ୟବସାୟରୁ ପ୍ରତ୍ୟେକ ପାଠ୍ୟ ବିଷୟ ବାହାରକରି, ପିଲାଙ୍କ ମନରେ ସେଇ ବିଦ୍ୟାର ନିଦା ମୂଳଦୁଆ ପକାଇବା ସମ୍ଭବନୁହେଁ ।'' (ରିପୋର୍ଟର ୧୦୫ ପୃଷ୍ଠା ଦେଖ)

ବେଶି କିଛି ଆଉ କହିବା ନିଷ୍ପ୍ରୟୋଜନ । ଇଂରେଜ ଶିକ୍ଷାବିତ୍‌ମାନଙ୍କର ଏଇ ମତ ଆମର ଚାଲୁରହୁଥିବା ବେସିକ୍ ସ୍କୁଲ୍‌ମାନଙ୍କ ପ୍ରତି ପ୍ରୟୋଗ କରାଯାଇ ଦେଖାଯାଉ, ସେମାନେ ଭୁଲ୍ କି ଠିକ୍ କହିଛନ୍ତି । ଦେଖିବାର କଥା ଏଇ ଯେ, ତାହା ପୁଣି ଭାରତବର୍ଷରେ ବେସିକ୍ ପ୍ରଚାରର ବହୁ ପୂର୍ବରୁ କୁହାଯାଇଥିଲା । ବେସିକ୍ ପ୍ରଚାରକମାନେ ଏହା ଜାଣି ମଧ୍ୟ ହୁଏତ ତାହା ପଦାରେ ପକାଇବାକୁ ସାହସ କରିନାହାନ୍ତି । ଅଥଚ ଏଇ ପଦ୍ଧତି ବିରୋଧରେ ଏଇପ୍ରକାର ସମାଲୋଚନା ଭାରତବର୍ଷରେ ବରାବର ହୋଇଆସୁଥିଲେ ମଧ୍ୟ ଓ ଏଇ ଦୋଷ ପ୍ରକୃତରେ ବେସିକ୍ ସ୍କୁଲ୍‌ମାନଙ୍କରେ ଦେଖାଯାଉଥିଲେ ମଧ୍ୟ, ସେସବୁ ପ୍ରତି କେହି ଭ୍ରୂକ୍ଷେପ କରିବାକୁ ମଧ୍ୟ ଚାହାନ୍ତିନାହିଁ ।

ଏଇ ଉଲ୍ଲିଖିତ ରିପୋର୍ଟର ବିଜ୍ଞ ଇଂରେଜ ଶିକ୍ଷାବିତ୍‌ମାନେ ଇଂଲଣ୍ଡରେ ପ୍ରାଇମେରୀ ଶିକ୍ଷାର ସମଗ୍ର ସିଲାବସ୍‌ର ଆମୂଳ ଇତିହାସ ଆଲୋଚନା କରି, ଶେଷରେ ଭାଷା, ସାହିତ୍ୟ, ଅଙ୍କ, ଡ୍ରଇଂ ଓ ମୌଳିକ ବିଜ୍ଞାନ ପ୍ରଭୃତି ବିଷୟଗୁଡ଼ିକୁ ପ୍ରାଇମେରୀ ଶିକ୍ଷାର **'ଫଣ୍ଡାମେଣ୍ଟାଲ୍'** ବା **'ସର୍ବପ୍ରଧାନ'** ବୋଲି ଧରିଛନ୍ତି । ପୁଣି, ଏ ସମସ୍ତ ଭିତରେ ମାତୃଭାଷାର ଶିକ୍ଷାହିଁ ସର୍ବପ୍ରଧାନ ବୋଲି ସେମାନଙ୍କର ମତ ।

ଆମ୍ଭେମାନେ ଅନ୍ୟ ସଭ୍ୟଦେଶମାନଙ୍କରେ ପ୍ରଚଳିତ ସିଲାବସ୍‌ମାନଙ୍କ ସମ୍ବନ୍ଧରେ ଯାହା କିଛି ଜାଣୁ, ସେଥିରୁ ଦେଖୁଛୁଁ ଯେ, ସେ ଦେଶର ସାଧାରଣ ସ୍କୁଲ୍‌ମାନଙ୍କରେ କୌଣସିଠାରେ ଗୋଟିଏ ହାତକାମକୁ ମାତ୍ର ବରେଣ୍ୟ ଆସନ ଦିଆଯାଇନାହିଁ, ଯେପରି କୁହାଯାଉଛି କରିବାକୁ ଏଇ ବେସିକ୍ ପଦ୍ଧତିରେ । ଭାରତବର୍ଷର ପାଞ୍ଚହଜାର ବର୍ଷର ଐତିହ୍ୟରେ ବରାବର ବୌଦ୍ଧିକ ଚର୍ଚ୍ଚାହିଁ ହୋଇଆସିଛି ବିଦ୍ୟାନୁଷ୍ଠାନର ପ୍ରଧାନ ଆଭିମୁଖ୍ୟ । ଇଂଲଣ୍ଡ, ଆମେରିକା, ରୁଷିଆ, ଜାପାନ ପ୍ରଭୃତି ଏବର ଅଗ୍ରଗାମୀ ଯନ୍ତ୍ର-ପୁଷ୍ଟ ଦେଶମାନଙ୍କର ସ୍କୁଲ୍-ସିଲାବସ୍ ଠିକ୍ ଭାରତବର୍ଷର ପ୍ରାଚୀନ ସିଲାବସ୍ ପରି ବୌଦ୍ଧିକ ବ୍ୟାପାର । କୌଣସି ଦେଶରେ ଗୋଟାଏ

ହାତର କାମକୁ ସମଗ୍ର ସିଲାବସ୍ ଶାସନ କରିବାକୁ ଦିଆଯାଉନାହିଁ । ପୁଣି ଗତ ଦେଢ଼ଶ-ଦୁଇଶ ବର୍ଷ ପୂର୍ବେ ଇଂରେଜ ଏ ଦେଶରେ ଯେଉଁ ସିଷ୍ଟମ୍ ପ୍ରବର୍ତ୍ତିତ କରିଦେଇଗଲେ, ତାହା 'ବିଦେଶୀ' ବୋଲି ଘୃଣା କରିବାରେ ମଧ କୌଣସି ହେଲେ କାରଣ ନାହିଁ । ତାହା ପ୍ରକୃତରେ 'ସର୍ବଦେଶିକ' । ଜାପାନ ଯାଅ, ଆମେରିକା ଯାଅ, ରୁଷିଆ ଯାଅ, ଜାତୀୟ ଶିକ୍ଷା ବ୍ୟବସ୍ଥାର ସେହି ହେଉଛି ପରିଚିତ, ଆନ୍ତର୍ଜାତିକ ନକ୍ସା । ସର୍ବତ୍ର ଶିକ୍ଷା ତିନିସ୍ତରରେ ବିଭକ୍ତ ଥିବାର ଆମେ ଦେଖିବା—ପ୍ରାଇମେରୀ, ସେକେଣ୍ଡାରୀ ଓ ପୋଷ୍ଟ-ସେକେଣ୍ଡାରୀ । ସିଲାବସ୍ ସବୁଠି ପ୍ରାୟ ଏକା । ପ୍ରାଇମେରୀକୁ 'ବେସିକ୍' ବୋଲି ପ୍ରଚାର କଲେ, ମୂଳତଃ ଏହି ଆନ୍ତର୍ଜାତିକ ନକ୍ସାକୁ ଉଡ଼େଇ ଦେବାର କୌଣସି ହେଲେ ଆଶା ନାହିଁ—ଯଦି ତାହାହିଁ ଲକ୍ଷ୍ୟ ରହିଥାଏ । ପୋଲାଣ୍ଡରେ ପ୍ରାଇମେରୀ ସ୍କୁଲ୍‌ଗୁଡ଼ିକର ସଂଜ୍ଞା ଅବଶ୍ୟ 'ବେସିକ୍', କିନ୍ତୁ ବସ୍ତୁତଃ ଲକ୍ଷ୍ୟ ସେଇ ପରିଚିତ ପ୍ରାଇମେରୀ ସିଲାବସ୍ । ଭାରତବର୍ଷରେ ମଧ ସବୁ ପ୍ରାଇମେରୀ ସ୍କୁଲ୍‌ଗୁଡ଼ିକୁ ବେସିକ୍ ନାମକୁ ପରିବର୍ତ୍ତିତ କରିବାରେ କୌଣସି ଆପତ୍ତି ରହିବନାହିଁ, ଯଦି ସେହି ନାମ ତଳେ ଅଯଥାର୍ଥ ସ୍ପର୍ଦ୍ଧା, ମୌଳିକତାର ମିଥ୍ୟା ପ୍ରଚାର ଓ ସେହି ଅଜୁହାତରେ ଅର୍ଥର ଘୋର ଅପବ୍ୟୟ ଲୁକ୍‌କାୟିତ ରହୁ ନଥାନ୍ତା । ପୁଣି ପରିଚିତ, ସର୍ବଦେଶିକ ଆନ୍ତର୍ଜାତିକ ନକ୍ସା ସମସ୍ତ ସଭ୍ୟ ଅଗ୍ରଗାମୀ ଦେଶରେ ସୁଫଳ ପ୍ରସବ କରୁଥିବାବେଳେ ଭାରତବର୍ଷରେ ତାହା କାହିଁକି କରୁନାହିଁ, ତାହା ପାଇଁ ଆତ୍ମ-ପରୀକ୍ଷା ନ କରି, ତା'ର ମୁର୍ଦାବାଦ୍ ଚିତ୍କାର କରିବା ଓ କେବଳ ଅଧ୍ୟାପନାର ଗୋଟାଏ ରୀତିର ସାମାନ୍ୟ ଭିନ୍ନତାର ବାହାନାରେ ଗୋଟାଏ ନବାବିଷ୍କୃତ ସ୍ୱତନ୍ତ୍ର ଶିକ୍ଷାପଦ୍ଧତି ଠିଆକରାଗଲା ବୋଲି ପ୍ରଚାରକରିବାରେ କି ମୂଲ୍ୟ ଓ ଯଥାର୍ଥତା ଥାଇପାରେ, ତାହା କେବଳ ବେସିକ୍ ପ୍ରଚାରକମାନେହିଁ ଜାଣିଥିବେ । ଇଂଲଣ୍ଡରେ ଅଧ୍ୟାପନାର ରୀତି ନେଇ ପ୍ରତ୍ୟେକ ଶିକ୍ଷକ ସ୍ୱାଧୀନ । ଆମେରିକାରେ ମଧ । ବସ୍ତୁତଃ ସବୁ ଶିକ୍ଷକ ହାତକାମରେ ଯଦି ପ୍ରବୀଣ , ତେବେ ସେହି ହାତ କାମକୁ ସେ ତାଙ୍କ ଅଧ୍ୟାପନାର ସୌକର୍ଯ୍ୟପାଇଁ ଲଗାନ୍ତୁ — ଆପତ୍ତି ଏଥିରେ ହେବ କାହିଁକି ? କିନ୍ତୁ ଏ ଶିକ୍ଷକ ହାତକାମ ଦେଇ ଯାହା କରିପାରନ୍ତି, ଅନ୍ୟ ଜଣେ ଶିକ୍ଷକ ତାହା ସୂକ୍ଷ୍ମ ପ୍ରଶ୍ନୋତ୍ତର ଦେଇ, ଅନ୍ୟ ଜଣେ ଗଳ୍ପ କହି, ଅନ୍ୟ ଜଣେ ଚିତ୍ରାଙ୍କନ କରି ତ ତାହା କରିପାରେ ? ବରଂ ଏପ୍ରକାର ସ୍ୱାଧୀନତା ପ୍ରତ୍ୟେକ ଶିକ୍ଷକକୁ ଦେଲେ, ଆମେ ଆମ ସ୍କୁଲ୍‌ମାନଙ୍କରେ ଅଧ୍ୟାପନାର ବ୍ୟକ୍ତିତ୍ୱ ଫୁଟିଉଠିବାର ଦେଖିପାରନ୍ତୁ । ଏବେ ତାହା ନାହିଁ । ପୁଣି ସବୁ ଶିକ୍ଷକଙ୍କ ଉପରେ ଯଦି ବାଧ କରି ଗୋଟାଏ ହାତକାମକୁହିଁ ଅଧ୍ୟାପନାର ମାଧମ ରୂପେ ଚାପିଦେଉ, ତେବେ ପ୍ରତ୍ୟେକ ସ୍କୁଲ୍ ହେବ ଏକ ବ୍ୟକ୍ତିହୀନ ଯନ୍ତ୍ରଶାଳା । ଶିକ୍ଷକର ବ୍ୟକ୍ତିତ୍ୱର ସେଠାରେ ସମାଧି ଘଟିବାର କଥା । ଏବେ ବେସିକ୍ ସ୍କୁଲ୍‌ମାନଙ୍କରେ ଅବସ୍ଥା କ'ଣ , ତାହା ଯିଏ ଜାଣିଥିବେ, ତାହା ଆଲୋଚନା କରନ୍ତୁ ଏଇ ପରିପ୍ରେକ୍ଷିତରେ ।

## ବେସିକ୍, ଏକ ନବଜୀବନର ପ୍ରତୀକ ?

ଏ ଗଲା ଅଧ୍ୟାପନାର ମାଧମଭାବରେ ବେସିକ୍‌ର ନୂତନତା ଓ କାର୍ଯ୍ୟକାରିତାର ଆଲୋଚନା । ଦ୍ୱିତୀୟରେ, ବେସିକ୍ ପଦ୍ଧତିକୁ ଏକ ନବ ସମାଜ ଓ ନବ ଜୀବନର ପ୍ରତୀକ ଭାବରେ ଯାହା ପ୍ରଚାର କରାଯାଉଛି, ତାହାର ବର୍ତ୍ତମାନ ଆଲୋଚନା କରାଯାଉ ।

ଆମ୍ଭେମାନେ ଗାନ୍ଧୀୟାନ୍ ସୋସାଇଟି ବା ଗାନ୍ଧୀକ ସମାଜ ବୋଲି ଏକ କଥା ବରାବର ଶୁଣି ଆସୁଛୁଁ । ଆଉ, ଏଇ ବେସିକ୍ ଶିକ୍ଷା ପଦ୍ଧତି ଆମର ପିଲାମାନଙ୍କୁ ବା ଆମ ସମସ୍ତଙ୍କୁ ସେହି ଗାନ୍ଧୀକି ସମାଜପାଇଁ ତିଆରି କରିବାର ଦାୟିତ୍ୱ ବହନ କରେ ବୋଲି କୁହାଯାଉଛି ।

ଅତି ଭଲ କଥା । କିନ୍ତୁ ନିଜେ ବାପୁଜୀ ବା ତାଙ୍କର କୌଣସି ହେଲେ ଶିଷ୍ୟ ଏପର୍ଯ୍ୟନ୍ତ ଏହି ଗାନ୍ଧୀକ ସମାଜର ଏକ ସ୍ପଷ୍ଟ ଚିତ୍ର ଦେଇପାରିନାହାନ୍ତି । ଗାନ୍ଧୀବାଦକୁ ସମ୍ମାନ ଦେଲେ, ଆମେ ଏଇୟାହିଁ ମନେକରିବା ଯେ, କଳ୍ପିତ ଗାନ୍ଧୀକ ସମାଜରେ କଳକାରଖାନା ରହିବ ନାହିଁ, କେବଳ କୁଟୀରଶିଳ୍ପ-ଜାତ ଦ୍ରବ୍ୟରେ ଦେଶବାସୀ ସନ୍ତୁଷ୍ଟ ରହିବେ, ପ୍ରତ୍ୟେକ ପରିବାର ଓ ପ୍ରତି ଗ୍ରାମ ସ୍ୱୟଂସମ୍ପୂର୍ଣ୍ଣ ହୋଇ ରହିବ, ଇତ୍ୟାଦି ଇତ୍ୟାଦି । ଅତି ଉତ୍ତମ କଥା । ଏହା ଏକାନ୍ତ କାମ୍ୟ ।

କିନ୍ତୁ ବାପୁଜୀଙ୍କ ପ୍ରିୟ ପ୍ରତିନିଧି ପଣ୍ଡିତ ଜହରଲାଲ ନେହେରୁଙ୍କ ଅଧିନାୟକତ୍ୱରେ ଭାରତବର୍ଷ କିପରି ଗଢ଼ିଉଠୁଛି, ଓ ସେପରି ଗଢ଼ିଉଠିବା ଆମ ପକ୍ଷରେ ଜରୁରୀ ଦରକାର କି ନା, ଦେଖାଯାଉ । ଜହରଲାଲଙ୍କ ସ୍ୱପ୍ନ ଭାରତବର୍ଷ ହେଉଛି, ସୋସାଲିଷ୍ଟିକ୍ ଇଣ୍ଡିଆ, ଯାହାର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ହେଉଛି, ସାଧାରଣ ଭାରତୀୟ ନାଗରିକର ଜୀବନଯାପନ ମାନଦଣ୍ଡର ଦାଗକୁ ଉପରକୁ ଉପରକୁ ଉଠେଇବା, ଯେପରିକି ତାହା ଶୀଘ୍ର ଅନ୍ୟ ସଭ୍ୟ ସମାଜର ସମାନ୍ତରାଳ ହେବ । ଏଥିପାଇଁ ଯନ୍ତ୍ରର ସହାୟତା ଅପରିହାର୍ଯ୍ୟ । ସେଇ ଲକ୍ଷ୍ୟରେ ଦେଶମୟ ଠିଆକରାହେଉଛି ଜଳବିଦ୍ୟୁତ୍ ଯୋଜନା, ଜାତୀୟ ବୈଜ୍ଞାନିକ ଲାବରେଟେରୀ, ଟେକ୍‌ନୋଲଜିକାଲ୍ ଅନୁଷ୍ଠାନ ସବୁ, ପୁଣି ରେଳ ଓ ମଟର ଫାକ୍ଟରୀ ସବୁ । ଜହରଲାଲଙ୍କ ସ୍ୱପ୍ନ ଏହି ଯେ, ଅତି ଶୀଘ୍ର ଭାରତର ପ୍ରତି କୁଟୀରରେ ଯେପରି ବିଦ୍ୟୁତ୍‌ଶକ୍ତି ଦେଖାଦେବ, ଯାହାଦ୍ୱାରା ପ୍ରତି ଭାରତୀୟର ଦୁଇଟା ହାତ ଚାରିଟା ହାତର କାମ ଦେବ ଓ ତାହାଦ୍ୱାରା ସବୁ ଦିଗରେ ଉତ୍ପାଦନ ବଢ଼ି ଉଠିବ । ହୁଏତ ଆମେ ଅନତିବିଳମ୍ବରେ ପାରମାଣବିକ ଶକ୍ତି ଓ ସୌରଶକ୍ତି ମଧ୍ୟ ଆମର ପ୍ରତି କୁଟୀରରେ ପାଇପାରିବା ।

ଏଇ ଭାରତହିଁ ଆମ ଆଖିଆଗରେ ଗଢ଼ିଉଠୁଛି । ଗାନ୍ଧୀକ ସମାଜ ଏକ କଥାର କଥା ମାତ୍ର ଏପର୍ଯ୍ୟନ୍ତ । ତେଣୁ ଆମ ପିଲାଙ୍କୁ ଆମେ କେଉଁ ଭାରତର ଆଦର୍ଶରେ ତିଆରି କରିବା ? କେଉଁ ଭାରତର ଆଦର୍ଶରେ ବା ବେସିକ୍-ପ୍ରଚାରକ କଂଗ୍ରେସ ନେତାମାନଙ୍କର ପିଲେ ତିଆରି ହେଉଛନ୍ତି ? ବେସିକ୍ ପ୍ରଚାରକମାନେ ଏହାର ଉତ୍ତର ଦିଅନ୍ତୁ । ଉଚ୍ଚାଦର୍ଶର ବାହାନାର ପୁଟ ଘନହୋଇ ବୋଳା ହୋଇଥିଲେ ମଧ୍ୟ, ମିଥ୍ୟା ପ୍ରଚାର ଓ ପ୍ରତାରଣା କ'ଣ ବେଶିକାଳ ଲାଗିବ, ନିଜ ରୂପରେ ଧରାପଡ଼ିବାକୁ ?

## ଦୁଇ ପଦ୍ଧତିର ତୁଳନା

ଯେବେ ବେସିକ୍ ପଦ୍ଧତି ଏ ଦେଶରେ ପ୍ରଥମେ ପ୍ରଚାରିତ ହେଲା, ସେତେବେଳେ ପ୍ରଚଳିତ ଶିକ୍ଷାପଦ୍ଧତିଠାରୁ ତାହାର ଉଚ୍ଚତର ସ୍ୱାତନ୍ତ୍ର୍ୟ ପ୍ରମାଣିତ କରିବାପାଇଁ ନିମ୍ନଲିଖିତ ତିନୋଟି ଆସ୍ପର୍ଦ୍ଧାମୂଳକ ଯୁକ୍ତି ଦିଆଯାଉଥିଲା –

( ୧ ) ପ୍ରଚଳିତ ଶିକ୍ଷା ବେକାର ସମସ୍ୟା ସୃଷ୍ଟି କରୁଛି । ବେସିକ୍ ପଦ୍ଧତି କେବଳ 'ଉତ୍ପାଦକ' ସୃଷ୍ଟି କରି ଦେଶର ଉତ୍ପାଦନ କେବଳ ବଢ଼ାଇବ ନୁହେଁ, ଦେଶରୁ ବେକାର ସମସ୍ୟା ଏକାବେଳକେ ନିଶ୍ଚିହ୍ନ କରିଦେବ ।

(୨) ହସ୍ତଶିଳ୍ପର ସହାୟତାରେ ଭାରତର ପ୍ରତି ସ୍କୁଲ୍ ହେବ ଆତ୍ମନିର୍ଭରଶୀଳ । ମାଷ୍ଟ୍ରମାନଙ୍କ ଦରମା ସେହି ସ୍କୁଲ୍‌ରୁ ଉଠିବ । ଗରିବ ଭାରତବର୍ଷ ପକ୍ଷରେ ହେବ ଏହା ଏକ ପରମ ଆଶୀର୍ବାଦ ।

(୩) ଜ୍ଞାନ-ଆହରଣର ଉତ୍ତମତର ରୀତିଭାବରେ ବେସିକ୍ ଏବପରି କେବଳ ବୋକା, ଘୋଷା-ବଳଦର ଦଳ ସୃଷ୍ଟିନକରି, ଠିଆକରିବ, ଗ୍ରାମେ ଗ୍ରାମେ ନୂତନ ବିଜ୍ଞ ନାଗରିକର ଦଳ ।

କିନ୍ତୁ ଅତି ପରିତାପ ଓ ଲଜ୍ଜାର କଥା ଏହି ଯେ, ନିଜେ କଂଗ୍ରେସ-ସରକାର ଏବେ ଏହା ମାନୁଛନ୍ତି ଯେ, ପ୍ରତି ବେସିକ୍ ସ୍କୁଲ୍, ସ୍ୱୟଂନିର୍ଭର ହେବା ଦୂରେଥାଉ, ପୂର୍ବ ପ୍ରଚଳିତ ସ୍କୁଲ୍‌ଠାରୁ ଚାରିଗୁଣ ଅଧିକା ବ୍ୟୟସାଧ ହେଉଛି । ମାଷ୍ଟ୍ରଙ୍କ ଦରମା ସ୍କୁଲ୍‌ରୁ ଉଠିବା ଦୂରେଥାଉ, ସାଧାରଣ ଶିକ୍ଷକଙ୍କଠାରୁ ସେମାନଙ୍କର ମୋଟା ଦରମା ଓ ବ୍ୟୟବହୁଳ ଉପକରଣ ଓ ଛାତ୍ରବୃତ୍ତି ଯୋଗାଉ ଯୋଗାଉ ସରକାରଙ୍କ ଶିକ୍ଷା ବିଭାଗ ପାଣି ପିଇ ସାରିଲାଣି । ବସ୍ତୁତଃ ଏଇ ଅପବ୍ୟୟଶୀଳ ବେସିକ୍ ପଦ୍ଧତି, ଦେଶରେ କନଷ୍ଟିଟ୍ୟୁସନ୍-ଗୃହୀତ, ପନ୍ଦରବର୍ଷରେ ସାର୍ବଜନୀନ ପ୍ରାଇମେରୀ ଶିକ୍ଷା ବିସ୍ତାର ବିରୋଧରେ ଏକ ବିରାଟ ଅର୍ଗଳ ରୂପେ ଆଜି ଦଣ୍ଡାୟମାନ । ସମ୍ପୃକ୍ତ ସମସ୍ତେ ନାଗ-ଚୁଚୁନ୍ଦ୍ରା ନ୍ୟାୟରେ ଘାରି ହେଉଛନ୍ତି । ଗରିବ ଭାରତବର୍ଷ ବର୍ତ୍ତମାନ ଏଇ ବେସିକ୍ ଶ୍ୱେତହସ୍ତୀକୁ ନେଇ କରେ କଣ ?

ଦେଶରେ ବେକାର ସମସ୍ୟାର ଯେ ସମାଧାନ ହୋଇନାହିଁ ତାହା ତ ସମସ୍ତେ ଜାଣନ୍ତି । ଧରାଯାଉ ଯେ, ପୂର୍ବ ପ୍ରଚଳିତ ସ୍କୁଲ୍ କଲେଜ ଏଥିପାଇଁ ଦାୟୀ । କିନ୍ତୁ ଅନ୍ତତଃ ସମଗ୍ର ଓଡ଼ିଶାରୁ ଏକ ଡଜନ ମାତ୍ର ଦୃଷ୍ଟାନ୍ତ କେହି ଦେଇପାରିବେ କି, ଯେଉଁଠି କୌଣସି ବେସିକ୍ ତାଲିମ୍ ଗୁରୁଜୀ ବା ଛାତ୍ର 'ଚାକିରି' ପ୍ରତି ଭ୍ରୂକ୍ଷେପ ନକରି କୌଣସି ସ୍ୱାଧୀନ ଉତ୍ପାଦନରେ ଲାଗିଯାଇଛନ୍ତି ? ବରଂ ଏହା ଜଣାଅଛି ଯେ, ୱାର୍ଦ୍ଧାରୁ ବେସିକ୍ ତାଲିମ୍ ପାଇ ଫେରିବା ମାତ୍ରେ, ଏହି ତଥାକଥିତ ଆତ୍ମନିର୍ଭରତାର ଜୀବନ୍ତ ଆଦର୍ଶ, ନବସମାଜଗଠକବୃନ୍ଦ ''ଆମକୁ ଚାକିରି ଦିଅ'' ''ଆମକୁ ଚାକିରି ଦିଅ'' ଚିତ୍କାର କରି ସରକାରଙ୍କ କବାଟରେ ବିଧା ମାରିଛନ୍ତି । ଏବେ ଅନ୍ୟ ଶିକ୍ଷକମାନଙ୍କଠାରୁ ସେମାନେ କିପରି ଭଲ ଦରମାରେ ରହିବେ, ଏଥିପାଇଁ ସେମାନେ ଏକ ସଂଘ ବି ଗଢ଼ି ସାରିଲେଣି । ପ୍ରଚାର ଓ କାର୍ଯ୍ୟରେ କି ତଫାତ୍ ! ସମଗ୍ର ଦେଶ ଆଗରେ କି ପ୍ରତାରଣା !

ଅଧ୍ୟାପନାର ମାଧ୍ୟମଭାବରେ ବେସିକ୍ ରୀତିର ଆଲୋଚନା ଆଗରୁ ହୋଇଯାଇଛି । ତା ସତ୍ତ୍ୱେ, ଧର, ମାନି ନିଆଯାଉ ଯେ, ଏହା ପ୍ରଚଳିତ ରୀତିମାନଙ୍କଠାରୁ ଉତ୍ତମତର । କିନ୍ତୁ କେବେ, କେଉଁଠାରେ, କିପରିଭାବରେ ପରୀକ୍ଷିତ ହୋଇ ଏ ସିଦ୍ଧାନ୍ତ ପ୍ରଚାରିତ ହେଉଛି ? ଲୋକେ କ'ଣ କେବଳ ବାଣୀଟାକୁ ବସ୍ତୁ ବୋଲି ଗ୍ରହଣ କରିଯିବେ ? ଏଇ କ'ଣ ବେସିକ୍ ଆଦର୍ଶ ?

ଦୁଇ ରୀତିର ପ୍ରକୃଷ୍ଟ ପରୀକ୍ଷା ହୋଇଥାନ୍ତା ଯଦି ଗୋଟିଏ ବେସିକ୍ ଓ ସମଶ୍ରେଣୀକ ନନ୍-ବେସିକ୍ ସ୍କୁଲ୍‌କୁ ପରୀକ୍ଷା ସ୍ୱରୂପ ହାତକୁ ନେଇ, ଉଭୟ ସ୍କୁଲ୍‌କୁ ଅର୍ଥ, ଉପକରଣ, ଗୃହ ଓ

ଶିକ୍ଷକ ଦରମାଦିରେ ସମାନ ସୁଯୋଗ ଦିଆଯାଇଥାନ୍ତା ଓ କେତୋଟି ନିର୍ଦ୍ଦିଷ୍ଟ ବର୍ଷ ପରେ, ଉଭୟ ସ୍କୁଲ୍‌ର ଛାତ୍ରଙ୍କୁ ସମାନ ଷ୍ଟାଣ୍ଡାର୍ଡ଼ରେ ପରୀକ୍ଷା କରାଯାଇଥାନ୍ତା । କିନ୍ତୁ ବେସିକ୍ ପ୍ରଚାରକମାନେ ଏପ୍ରକାର ତୁଳନାତ୍ମକ ବୈଜ୍ଞାନିକ ପରୀକ୍ଷାର ସମ୍ମୁଖୀନ ହେବାକୁ ଆଦୌ ପ୍ରସ୍ତୁତ ନୁହନ୍ତି । ତା' ହୋଇଥିଲେ, ଏ ସମ୍ପର୍କରେ ଶେଷ ସିଦ୍ଧାନ୍ତ ଦେଶ ନିଃସନ୍ଦେହଭାବରେ ଆଗରୁ ପାଇପାରିଥାନ୍ତା ।

କିନ୍ତୁ 'କଙ୍କଡ଼ାକୁ ଗୋଳିପାଣି ସଜ' ପରି ବେସିକ୍ ପ୍ରଚାରକମାନେ ଏବେ ବୈଜ୍ଞାନିକ ପରୀକ୍ଷାପାଇଁ ପରାଙ୍ମୁଖ, ଦ୍ୱିତୀୟରେ, ଏଇ ଅପରୀକ୍ଷିତ ଓ ଅମୀମାଂସିତ ପଦ୍ଧତିକୁ ସରକାର କୋଟି କୋଟି ଟଙ୍କା ବ୍ୟୟରେ ସମଗ୍ର ଦେଶ ଉପରେ ଲଦିବାକୁ ଯିବା, ଏଇ ପଦ୍ଧତି ବିରୋଧରେ ହିଁ ଯାଉଛି । ପୂର୍ବ ପ୍ରଚଳିତ ଶିକ୍ଷା ପଦ୍ଧତି ବ୍ରିଟିଶ୍ ରାଜା ନିଜର ସୁବିଧାପାଇଁ ଏ ଦେଶରେ ଲଦି ଦେଇଥିଲା କହିବା, କେବଳ ସୁନ୍ଦର ରାଜନୈତିକ ପ୍ରପାଗଣ୍ଡା ହୋଇପାରେ । କିନ୍ତୁ ଯାତଲେ କୌଣସି ହେଲେ ଐତିହାସିକ ସତ୍ୟ ନାହିଁ । ପ୍ରକୃତ ଇତିହାସ ଏହି ଯେ, ଏ ଦେଶରେ ଗତ ଶତାବ୍ଦୀରେ ଇଂରାଜୀ ଶିକ୍ଷା ଦେଶମୟ ବ୍ୟାପ୍ତ ହୋଇ ପଡ଼ିଲା ପ୍ରକୃତରେ, ଦେଶବାସୀଙ୍କର ପ୍ରାଇଭେଟ୍ ପ୍ରଯତ୍ନରେ । ଈଶ୍ୱରଚନ୍ଦ୍ର, ମାଲବ୍ୟ, ରାଣାଡେ, ଗୋଖଲେ, ହଂସରାଜଙ୍କ ପରି ଦେଶର ବିରାଟ ଜାତୀୟ ବୀରମାନେ ଇଂରାଜୀ ଶିକ୍ଷାକୁ ଶସ୍ତାରେ ଦେଶବାସୀଙ୍କ ନିକଟରେ ପହଞ୍ଚେଇବାପାଇଁ କମ୍ ଚେଷ୍ଟା କରିନଥିଲେ ଓ କମ୍ ତ୍ୟାଗ ସ୍ୱୀକାର କରିଯାଇନାହାନ୍ତି । ଏଇ ଶିକ୍ଷା ପଦ୍ଧତିରେ କିଛି ଗୁଣ ଦେଖିଥିବାରୁ ତ ଏପରି ଚିନ୍ତାଶୀଳ ଲୋକେ ହାତରୁ କୋଟି କୋଟି ଟଙ୍କା ଖର୍ଚ୍ଚକରି, ତାକୁ ଦେଶମୟ କରିଗଲେ ? ଇଂରେଜ ସରକାର କେବଳ ଆଦର୍ଶ ସ୍ୱରୂପ ପ୍ରତି ଜିଲ୍ଲାରେ ଗୋଟିଏ ପୂରା ସରକାରୀ ସ୍କୁଲ୍ (ଜିଲ୍ଲା ସ୍କୁଲ୍) ଠିଆ କରାଇ ଦେଉଥିଲେ – ବାକି ସବୁ ଗଢ଼ିଉଠୁଥିଲା, ପ୍ରାଇଭେଟ୍ ଚେଷ୍ଟାରେ । ଯଦି ବେସିକ୍ ପ୍ରକୃତରେ ଉତ୍ତମତର ପଦ୍ଧତି, ସ୍ୱାଧୀନ ଭାରତ ସରକାର ସେହିପରି ଗୋଟିଏ ଗୋଟିଏ ଆଦର୍ଶ ବେସିକ୍ ବିଦ୍ୟାଳୟ ଠିଆ କରେଇ ଦେଖେଇଦେଲେନି, କାହିଁକି ଓ କିପରି ସେଗୁଡ଼ିକ ସ୍ୱୟଂନିର୍ଭର ହୋଇପାରୁଛନ୍ତି ଓ ଉତ୍ତମତର ଉତ୍ପାଦନକାରୀ ନାଗରିକ ଦଳ ବାହାର କରୁଛନ୍ତି ? ଯା ପରେ ସେ ପଦ୍ଧତିର ପ୍ରସାରର ଭାର ଲୋକେ ନିଜ ହାତକୁ ନେଇଥାନ୍ତେ, ଯେପରି ନେଇଥିଲେ ଇଂରେଜୀ ଶିକ୍ଷାର ।

କିନ୍ତୁ ଏପର୍ଯ୍ୟନ୍ତ ବେସିକ୍‌କୁ ଯେପରି ଠିଆକରାଯାଇଛି ତାହା ଯେପରି ଅଗଣତାନ୍ତ୍ରିକ, ଅବୈଜ୍ଞାନିକ ଓ ଅଯୌକ୍ତିକ ସେହିପରି ବିଭୀଷିକାମୟ ଭାବରେ ଅପବ୍ୟୟଶୀଳ । କର୍ତ୍ତୃପକ୍ଷଙ୍କୁ ଏହା ଅଜଣା ନ ଥିବ ଯେ, ଓଡ଼ିଶାରେ ଯେଉଁ ସ୍ଥାନରେ ଗତ କୋଡ଼ିଏବର୍ଷ ଧରି ବେସିକ୍‌ର ପରୀକ୍ଷା ଚାଲିଛି, ସେଠି ଲୋକେ ଇଂରେଜୀ ହାଇସ୍କୁଲ୍ ଦାବିକରି ଠିଆକରେଇଛନ୍ତି । ସରକାର ଏଇ ସ୍ୱଭାବ-ସଞ୍ଚାଳିତ, ପ୍ରକୃତିସିଦ୍ଧ ପରୀକ୍ଷାଟାକୁ ହେଲେ ଗ୍ରହଣ କରନ୍ତୁ ।

## ସ୍କୁଲ୍‌ମାନଙ୍କର ସଂସ୍କାର ଓ ପୁନର୍ଗଠନ –

ଆମ ବିଦ୍ୟାନୁଷ୍ଠାନମାନଙ୍କର ଯେ ସଂସ୍କାର ଦରକାର ଏହା ଅସ୍ୱୀକାର କରିବାର ବାଟ ନାହିଁ । ଆମର ଶିକ୍ଷା ପଦ୍ଧତି ଯେ ହସ୍ତକର୍ମର ଏକାନ୍ତ ପ୍ରୟୋଜନୀୟ ସଂଶୋଧନ ଦରକାର

କରେ, ଏଥିରେ ଦ୍ୱିମତ ଥାଇନପାରେ । ପିଲାମାନଙ୍କର ଅଙ୍ଗୁଳି ଓ ଆଖିକୁ ନିପୁଣଭାବରେ କୁଶଳୀ କରିବାପାଇଁ ସବୁ ସଭ୍ୟ ଦେଶରେ ସ୍କୁଲ୍‌ମାନଙ୍କରେ ଏଥିପାଇଁ କ୍ରାଫ୍‌ଟର ବ୍ୟବସ୍ଥା କେବଳ ନୁହେଁ, ଛୋଟ ଛୋଟ ଶିଳ୍ପର ବ୍ୟବସ୍ଥା ମଧ୍ୟ ହୋଇଥାଏ । ନୂତନ ଚୀନ୍‌ରେ ପ୍ରତି ସ୍କୁଲ୍‌କୁ କାରଖାନା ଓ ପ୍ରତି କାରଖାନାକୁ ସ୍କୁଲ୍ ରୂପେ ଠିଆକରାଗଲାଣି । ଆମ ଦେଶ ମଧ୍ୟ ଏକାନ୍ତ ଭାବରେ ସେଇଆ ଦରକାର କରୁଛି । କିନ୍ତୁ ଯା ଆଗରେ, କେବଳ ସୂତାକଟା ପରି ଗୋଟାଏ ହାତ କାମକୁ ସମଗ୍ର ସିଲାବସ୍‌ର ପ୍ରଭୁକରି ଠିଆକରେଇ, ତାକୁ ଶିକ୍ଷାର ବିପ୍ଳବ ବୋଲି ପ୍ରଚାର କରିବା ହାସ୍ୟକର । ଆମ ପିଲାମାନଙ୍କୁ ରୋଗଜୀର୍ଣ୍ଣ ବହି-ପୋକ ନକରି, ଶକ୍ତିମାନ୍, କାମିକା କରି ଗଢ଼ିବା ଯଦି ଲକ୍ଷ୍ୟ, ତେବେ ଆମ ସ୍କୁଲ୍ ସବୁ ବଦଳୁ ଅଧା କାରଖାନାକୁ, ଯେମିତି ହେଉଛି ଚୀନ ଦେଶରେ । ଏ ପ୍ରଣାଳୀରେ ବହି ଓ ବିଦ୍ୟା, ପାଠ ଓ ଶାଠ, ଜ୍ଞାନ ଓ କର୍ମ, ମଥା ଓ ହାତ ସମାନଭାବରେ ତାଲିମ ପାଇ ଓ ନିପୁଣ ହୋଇ ଗଢ଼ିଉଠିବେ । ସେଇଭାବରେହିଁ ହେବ ନୂତନ ଜାତିର ପ୍ରକୃତ ଅଭ୍ୟୁଦୟ । ସ୍ୱାଧୀନ ହେଲେହେଁ ଭାରତବର୍ଷର ଶିକ୍ଷା ବ୍ୟବସ୍ଥା ଏ ପର୍ଯ୍ୟନ୍ତ ଜାତି ଗଢ଼ିବାର ଆଭିମୁଖ୍ୟରେ ପ୍ରବର୍ତ୍ତିତ ହୋଇପାରିନାହିଁ । ଆମେ ଏପର୍ଯ୍ୟନ୍ତ କେବଳ ମାଟ୍ରିକ୍ ଓ ବି.ଏ.ର ସଂଖ୍ୟାବୃଦ୍ଧିକୁହିଁ ଏଡୁକେଶନ ବୋଲି ଧରିଛୁ । ଏ ମନୋଭାବ ଥିଲା ପର୍ଯ୍ୟନ୍ତ, ଶିକ୍ଷାରେ ବିପ୍ଳବ ଅସମ୍ଭବ । କିନ୍ତୁ ବେସିକ୍ ଶିକ୍ଷା ପଦ୍ଧତି ସେ ବିପ୍ଳବର ବାହନ ହୋଇପାରିନି କି ହୋଇପାରିବନାହିଁ । ଯାହା କେବଳ ପ୍ରତାରଣା ଉପରେ ପ୍ରତିଷ୍ଠିତ, ତାହା ଗୋଟାଏ ବିରାଟ ଜାତିକୁ କେତେଦୂର ଆଗକୁ ନେବ, କୁଆଡ଼େ ବା ନେବ ?

ପୁଣି, କୌଣସି ହେଲେ ଶିକ୍ଷା ପଦ୍ଧତି ଦେଶରେ ବିପ୍ଳବ ଆଣିପାରିବନାହିଁ, ଯେପର୍ଯ୍ୟନ୍ତ ଆମେ ଆମ ପିଲାଙ୍କୁ ଅଳ୍ପରେ ସନ୍ତୁଷ୍ଟ ରହିବାକୁ ଶିଖଉଥିବା । ଏକ ଶତରୁ ୩୦ ମାର୍କ ରଖି ପୃଥିବୀର କୌଣସି ଦେଶର ଛାତ୍ର 'ପାସ୍' ପାଏନା । ଏହା ଏକ ଅଯୌକ୍ତିକ, ବିଚାରହୀନ, ମାରାତ୍ମକ ଆତ୍ମପ୍ରବଞ୍ଚନା ଓ ଆତ୍ମସନ୍ତୋଷ । ଆମର ଶିକ୍ଷାର ମାନଦଣ୍ଡ, ଯେପର୍ଯ୍ୟନ୍ତ ଏପରି ଜାଣି ଜାଣି ଛୋଟ ରଖାଯାଇଛି, କେବଳ ଅଯୋଗ୍ୟ ଓ ଅଳସୁଆମାନଙ୍କୁ ସମବେଦନା ଦେଖାଇବାପାଇଁ ଓ କେବଳ ମୂଲ୍ୟହୀନ ପାସ୍‌ର ସଂଖ୍ୟାବୃଦ୍ଧିପାଇଁ, ତେବେ ଆମେ ଆମ ଦେଶର ସମଗ୍ର ତହବିଲ କେବଳ ଶିକ୍ଷା ଉପରେ ଖର୍ଚ୍ଚ କରି ଦେଲେ ମଧ୍ୟ, ଜାତିଭାବରେ ଆମେ ବରାବର ରହିବା ଏକ ଅଯୋଗ୍ୟ, ଅନିପୁଣ, ଅପରିଷ୍କାର, ଅକାମିକା ଜାତି ହୋଇ—କେବଳ ଷ୍ଟ୍ରାଇକ୍ କରୁଥିବା, ସ୍ଲୋଗାନ ଗାଉଥିବା ଓ ସବୁବେଳେ ଆଶା କରୁଥିବା, ବିନା ଶ୍ରମରେ ଆମର କାଳ୍ପନିକ ପ୍ରଭୁ 'ସରକାର' ଆମକୁ କେମିତି ସୁଖରେ ବଞ୍ଚିବାର ସବୁ ବ୍ୟବସ୍ଥା କରିଦିଅନ୍ତେ !

ଇଏ ଏକ କଥା । ଦ୍ୱିତୀୟରେ, ଯେପର୍ଯ୍ୟନ୍ତ ଆମେ ଆମ ପିଲାଙ୍କୁ ବିଷୟ ଉପରେ ପରୀକ୍ଷା ନକରି, ବହି ଉପରେ ପରୀକ୍ଷା କରୁଥିବୁ, ସେପର୍ଯ୍ୟନ୍ତ ବିପ୍ଳବ କଥା ଦୂରେଥାଉ, ଶିକ୍ଷାର ମାନଦଣ୍ଡ ଉପରକୁ ଉଠିବା ଅସମ୍ଭବ । ଆମ ମାନଦଣ୍ଡ ଯେ କେତେ ତଳେ ତାହା ଆମରି ପବ୍ଲିକ୍ ସର୍ଭିସ୍ କମିଶନ ରିପୋର୍ଟମାନଙ୍କରେ ବରାବର ବିଦ୍ରୂପ ସହିତ ପ୍ରକାଶିତ ହେଉଛି । ଏବେ ଶୁଣିବାକୁ ମିଳୁଛି, ଇଂଲଣ୍ଡ ପ୍ରଭୃତି ଦେଶରେ ଇଣ୍ଡିଆନ୍ ଛାତ୍ରମାନଙ୍କୁ ସେ ଦେଶର ବିଶ୍ୱବିଦ୍ୟାଳୟମାନଙ୍କରେ ଗ୍ରହଣ କରିବା ଏକ ସମସ୍ୟା ହେଲାଣି – କାରଣ, ଏମାନଙ୍କର ଜ୍ଞାନର ଷ୍ଟାଣ୍ଡାର୍ଡ଼ ଏତେ ନୀଚକୁ ଆସିଲାଣି ।

ପୂର୍ବରୁ କୁହାଯାଇଛି ଯେ, ଇଂରେଜ ଶାସକ ଏ ଦେଶରେ ଯେଉଁ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତିତ କରିଯାଇଛନ୍ତି, ତାହା ହେଉଛି ଶିକ୍ଷା ବ୍ୟବସ୍ଥାର ଆନ୍ତର୍ଜାତିକ, ସାର୍ବଜନୀନ ରୂପ । ସବୁ ସଭ୍ୟ ଦେଶରେ ଏଇ ନକ୍ସାରେ ନୂତନ ଜାତି ଗଢ଼ାହେଉଛି । ତେଣୁ ଯାହା ସଂସ୍କାର ଦରକାର ପଡୁଛି, ଆମେ ତାହାରି ଭିତରେହିଁ କରି ଯଥେଷ୍ଟ ସଂସ୍କାର ଆଣିପାରିବା ଦେଶରେ । ଏଇ ନକ୍ସାରେ ଅନୁନ୍ନତ ଜାପାନ ଓ ଅନୁନ୍ନତ ରୁଷିଆ ଆମ ଆଗରେ ସଭ୍ୟ ଦେଶର ଅଗ୍ରଣୀ ହୋଇପାରିଛନ୍ତି । କିନ୍ତୁ ଭାରତବର୍ଷରେ ଏ ନକ୍ସା ଏତେ ନିନ୍ଦିତ କାହିଁକି ? ଇଂରାଜୀରେ ଗୋଟିଏ ପ୍ରବଚନ ଅଛି ଯେ, 'ଅନାଡ଼ି କାରିଗର ତାର ହତିଆରକୁ ହିଁ ଦୋଷ ଦିଏ ।' ଆମର ଅବସ୍ଥା ସେୟା କି ନାହିଁ ତାହା ଆତ୍ମ-ପରୀକ୍ଷା କରି ଦେଖାଯାଉ । ଯେପର୍ଯ୍ୟନ୍ତ ଆମେ ଜାଣି ଜାଣି ପରୀକ୍ଷାର ଷ୍ଟାଣ୍ଡାର୍ଡ଼ର ନୀଚ ରଖିବା, ବିଷୟର ପରୀକ୍ଷା ନକରି ବହିର ପରୀକ୍ଷାରେ ସନ୍ତୁଷ୍ଟ ରହିବା, ଆଉ 'ବି.ଏ.' 'ମାଟ୍ରିକ୍‌ର' ଲେବେଲକୁ ମାତ୍ର ଜ୍ଞାନର ପ୍ରସାର ବୋଲି ଧରିନେଇ ନିଜକୁ ଜାଣି ଜାଣି ସୁଦ୍ଧା ପ୍ରତାରିତ କରୁଥିବା, ପୁଣି କେବଳ 'ପାସ୍'ର ସଂଖ୍ୟା ବୃଦ୍ଧିରେହିଁ ଉନ୍ମତ୍ତ ଆନନ୍ଦ ପାଉଥିବା, ସେପର୍ଯ୍ୟନ୍ତ କୋଟି କୋଟି ଟଙ୍କା ବ୍ୟୟରେ, ଗୋଟାକ ଉପରେ ଗୋଟେ ସମାନ୍ତରାଳ ଶିକ୍ଷା ବ୍ୟବସ୍ଥା ଠିଆକଲେ ମଧ, ବିଦ୍ୟାୟତନ ଦେଇ ଯେଉଁ ଜାତୀୟ ବିପ୍ଳବ ଆସିବ ବୋଲି ଆମେ ଆଶା କରୁଛୁ, ତାହା ଏକାବେଳକେ ଅସମ୍ଭବ ।

ଏଇ ଲେଖକ ବେସିକ୍‌ର ଶତ୍ରୁ ବୋଲି ଏ ଦେଶରେ ପରିଚିତ । କିନ୍ତୁ ଏହା ହୁଏତ ଅନେକଙ୍କୁ ଜଣାନଥିବ ଯେ, ଏଇ ଲେଖକ ଉତ୍ତର ଓଡ଼ିଶାର ଇନ୍‌ସପେକ୍ଟର ଥିଲା ବେଳେ ତା'ର ଅଧୀନସ୍ଥ ସମସ୍ତ ସ୍କୁଲ୍‌ମାନଙ୍କରେ ବେସିକ୍ ପଦ୍ଧତିରେ ଉତ୍ତମାଂଶ, ଆଦୌ କୌଣସି ଅଧିକ ବ୍ୟୟ ବିନା; ଯେପରି ପ୍ରବର୍ତ୍ତିତ ହୋଇପାରିବ, ସେଥିପାଇଁ ଏକ ସର୍କୁଲାର ସେ ଚାରିଆଡ଼କୁ ପଠାଇଥିଲା (Circular No. 6308, July 11, 1949) । ଏଥିପାଇଁ ସେ କାହାରିଠାରୁ କୌଣସି ଆଦେଶ ବା ପ୍ରବର୍ତ୍ତନା ପାଇନଥିଲା । ସେ ଶିକ୍ଷାବିତ୍ ଭାବରେ ଯାହା ଉତ୍ତମ ବିଚାରିଥିଲା ତାହା ବିନା ଭୟରେ କରିଥିଲା, ଯାହାକି ହୁଏତ ଏପର୍ଯ୍ୟନ୍ତ କୌଣସି ଡି.ପି.ଆଇ. କି କୌଣସି ଇନ୍‌ସପେକ୍ଟର କରିନାହାନ୍ତି । ଏଇ ସର୍କୁଲାରଟି ଲେଖକର 'ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ' ପୁସ୍ତକରେ କୌତୂହଳୀ ଲୋକେ ପଢ଼ିପାରନ୍ତି । ଲେଖକ କିନ୍ତୁ ବେସିକ୍ ପଦ୍ଧତିର ମୋଟ ଉପରେ ଏଥିପାଇଁ ବିରୋଧ କରିଆସିଛି ଯେ, ଏହା ଅବାନ୍ତର ଆସ୍ପର୍ଦ୍ଧା ଓ ପ୍ରତାରଣାମୟ, ଏହାର ମୌଳିକତାର ଦାବି ଆଦୌ ଗ୍ରହଣୀୟ ନୁହେଁ, ଏହା ପ୍ରଚଳିତ ବିଦ୍ୟାବ୍ୟବସ୍ଥା ଭିତରେ ସୁନ୍ଦର ଅଭ୍ୟସିତ ହୋଇପାରନ୍ତା ଓ ଏହାକୁ ଏକ ଭିନ୍ନ, ଉତ୍ତମତର, ସମାନ୍ତରାଳ ବ୍ୟବସ୍ଥା ରୂପେ ଠିଆକରାଇ ଓ ଏଥିପାଇଁ ଉଚ୍ଚତର ପାହ୍ୟାର ଏକ ନୂତନ ଶିକ୍ଷକ ଜାତି ସୃଷ୍ଟିକରି, ସରକାର, ଶିକ୍ଷାବିଜ୍ଞାନ, ଗଣତାନ୍ତ୍ରିକ ଆଦର୍ଶ ଓ ଦେଶର ତହବିଲ୍‌ର ଘୋର ଅସମ୍ମାନ କରିଛନ୍ତି ଓ କରୁଛନ୍ତି । ସମଗ୍ର ଦେଶରେ ଏକ ପଦ୍ଧତିର ଶିକ୍ଷା ବ୍ୟବସ୍ଥା ଓ ସମବେତନ ଶିକ୍ଷକ ଗୋଷ୍ଠୀର ସୃଷ୍ଟି ଏହି ଶିଶୁ ଗଣତନ୍ତ୍ରର ଭବିଷ୍ୟଦ୍ ସ୍ୱାସ୍ଥ୍ୟ ଓ ସୌଭଗ୍ୟପାଇଁ ପ୍ରଥମ ଆବଶ୍ୟକତା । ଦେଶକୁ ଯେଉଁମାନେ ଶାସନ କରୁଛନ୍ତି ଓ ପଦେ ପଦେ ଗଣତନ୍ତ୍ରର ମନ୍ତ୍ରୋଚ୍ଚାରଣ କରୁଛନ୍ତି, ସେମାନେ ଜାଣି ଜାଣି ପବ୍ଲିକ୍ ପାଣ୍ଠିକୁ ଅଗଣତାନ୍ତ୍ରିକ ରୀତିରେ କିପରି ବ୍ୟୟକରି ଚାଲିଛନ୍ତି, ତାହା ସହଜରେ ବୁଝି ହେଉନି ।

ଲେଖକର ଦୃଢ଼ ମତ ତେଣୁ ଏହି ଯେ, ଦେଶରେ ଏକାଧିକ ସମାନ୍ତରାଳ ଶିକ୍ଷାପଦ୍ଧତିକୁ ବଞ୍ଚେଇରଖିବା ଅନୁଚିତ ଯେପରି, ସେହିପରି ଅନାବଶ୍ୟକ । ଯାହା ଆନ୍ତର୍ଜାତିକ ଓ ବିଶ୍ୱବ୍ୟାପୀ, ଆମେ ସେହି ନକ୍ସା ଗ୍ରହଣ ନକରି ବାରଆଡ଼ର ପରୀକ୍ଷା କରିବାକୁ ଯିବା ବେଳେ ବୁଦ୍ଧିଭ୍ରଂଶର ଚିହ୍ନ, ପ୍ରଗତିର ଚିହ୍ନ ନୁହେଁ । ଏକ ପଦ୍ଧତି ଭିତରେ ଆମେ ସକଳ ପଦ୍ଧତିର ଉତ୍ତମାଂଶ ମିଶାଇ, ଆମ ଦେଶର ଚାହିଦା ଅନୁଯାୟୀ ଆମେ କାହିଁକି ଏକ ବଳିଷ୍ଠ, ସମ୍ମାନନୀୟ ଶିକ୍ଷା ବ୍ୟବସ୍ଥା ଏ ଦେଶରେ ଠିଆ ନକରେଇପାରିବା ତାହାର କୌଣସି କାରଣ ନାହିଁ । ଯଦି ଶିକ୍ଷାୟତନରେ ପ୍ରକୃତ ବିପ୍ଳବ ଓ ତା' ଦେଇ ନବଜାତିର ଆବିର୍ଭାବ ଆମେ ଅନ୍ତରର ସହିତ ଚାହୁ, ତେବେ ଦେଶବାସୀ, ସରକାର ଓ ଦେଶର ଶିକ୍ଷାବିତ୍, ନିମ୍ନଲିଖିତ କେତୋଟି ଏକାନ୍ତଭାବରେ ଭାବିବାର କଥା ଉପରେ ଆଖି ରଖନ୍ତୁ । ଏଇ କେତୋଟି ମୌଳିକ ପଦାର୍ଥକୁ ଅବହେଳା କରି, ବାର ନବରଙ୍ଗରେ ମାତିଲେ, ଦେଶରେ ପାସ୍-ବାଲା, ଫେଲ୍-ବାଲା ଗଣ୍ଡା ଗଣ୍ଡା ବେକାର ହୋଇ ବୁଲିବାର ଆମେ ଦେଖିବା, କିନ୍ତୁ ଶିକ୍ଷା ପ୍ରଚାର ହେଲା ବୋଲି ଆତ୍ମ-ପ୍ରତାରଣା ଯେପରି ନ ହୁଏ । ଘଣା ବଳଦ ବହୁତ ବୁଲେ, କିନ୍ତୁ କେତେଦୂର ତା'ର ଗତି ? ଆମର ଅବସ୍ଥା ସେହିପରି ବର୍ତ୍ତମାନ ।

ଯେଉଁ କେତୋଟି ଆଦର୍ଶ ଉପରେ ଦେଶର ପ୍ରତ୍ୟେକ ଶିକ୍ଷକ ଓ ଶିକ୍ଷାବିତ୍ ଆଖି ଦେଲେ, ଗୋଟିଏ ହେଲେ ପଇସା ଅଧିକା ବ୍ୟୟ ନହୋଇ, ଏ ଦେଶରେ ଶିକ୍ଷା ବ୍ୟବସ୍ଥାର ବିପ୍ଳବ ଆପେ ଆପେ ଆସିଯାନ୍ତା, ସେଗୁଡ଼ିକ ଏଇ–

୧ । ଦେଶରେ ଧନୀ, ଦରିଦ୍ର, ହାକିମ, ପିଅନ, ବ୍ରାହ୍ମଣ, ବାଉରି–ସମସ୍ତଙ୍କପାଇଁ ଏକ ପ୍ରକାର ଶିକ୍ଷା ବ୍ୟବସ୍ଥା ପ୍ରଚଳିତ ହେବା ପ୍ରଥମ ଆବଶ୍ୟକତା ।

୨ । ପରୀକ୍ଷା ରହିବ, କିନ୍ତୁ ତାହା ବହି ଉପରେ ଠିଆ ନରହି, ବିଷୟ ଉପରେ ଠିଆହେବ । (ଏଇ ନୀତିଟି ଗୃହୀତ ହୋଇଗଲେ, ପାଠ୍ୟପୁସ୍ତକର ଜଘନ୍ୟ କଳାବଜାର, ଏ ଦେଶରୁ ଏକା ରାତିକେ ବିଦାୟ ନିଅନ୍ତା ।)

୩ । ସମଗ୍ର ଶିକ୍ଷା ବ୍ୟବସ୍ଥାର, ତଳୁ ଉପରଯାଏଁ ପ୍ରତି ବିଷୟରେ, ଏକଶତ ମାର୍କରୁ ୫୧ ହେବ ନିମ୍ନତମ ପାସ୍ ମାର୍କ ।

୪ । ଆସ୍ତେ ଆସ୍ତେ ଆମର ପ୍ରତି ସ୍କୁଲ୍ ହେବା ଉଚିତ ଅଧା କାରଖାନା ପୁଣି କାରଖାନା ଓ ଧାନବିଲ ସହିତ ସ୍କୁଲ୍‌ର ସମ୍ପର୍କ ଏପରି ଆତ୍ମୀୟ ହେବା ଉଚିତ, ଯେପରିକି ଏଠାରୁ ଲୋକେ ସେଠାକୁ ଓ ସେଠାରୁ ଏଠାକୁ ଅବାଧରେ ଯିବାଆସିବା କରିପାରିବେ । ସେହି ଅନୁପାତରେ କୋର୍ଡ ନୂଆ ଲେଖାହେବ ।

୫ । ପ୍ରତିଟି ସ୍କୁଲ୍ ହେବ ପାର୍ଶ୍ୱବର୍ତ୍ତୀ ଗ୍ରାମ ବା ସହରାଞ୍ଚଳର ସାମାଜିକ ଓ ସାଂସ୍କୃତିକ କେନ୍ଦ୍ରସ୍ଥଳ, ଯେପରିକି ଲୋକେ ସ୍କୁଲ୍‌କୁ ନିଜର ଅନୁଷ୍ଠାନ ବୋଲି ମନେକରିବେ । ଏପର୍ଯ୍ୟନ୍ତ ଭାରତବର୍ଷର କୌଣସିଠାରେ ଏପ୍ରକାର ମନୋଭାବ ଠିଆହେବା ସମ୍ଭବ ହୋଇନାହିଁ ।

୬ । ହୁଏତ ସରକାର ସମଗ୍ର ଶିକ୍ଷା ବ୍ୟବସ୍ଥାକୁ ନିଜ ହାତକୁ ନିଅନ୍ତୁ ବା ସମଗ୍ର ଶିକ୍ଷା ବ୍ୟବସ୍ଥାକୁ ଲୋକଙ୍କ ହାତକୁ ଛାଡ଼ିଦିଅନ୍ତୁ । 'ଲୋକ' ଓ 'ସରକାର' ବୋଲି ଦି'ଟା କାଳ୍ପନିକ ଭୂତ ଏ ଦେଶରେ ଯେପରି ସବୁବେଳେ ମୁଣ୍ଡଟେକି ପାରସ୍ପରିକ ଶତ୍ରୁତାରେ ଛକାଛକି ହୋଇ ଠିଆହୋଇଛନ୍ତି, ଏ ଦି'ଟାର ନିପାତ ନହେଲାପର୍ଯ୍ୟନ୍ତ ଏ ଦେଶରେ କୌଣସି ଯୋଜନା ପ୍ରକୃଷ୍ଟ

ଫଳଦାୟକ ହୋଇପାରିବନାହିଁ । ଏକ ଜାତିରୁ ଏ ଦୁଇଟା ଭୂତର ଆବିର୍ଭାବ । ଏ ଦୁଇଟା କେବଳ କାଳ୍ପନିକ, ଦୁହେଁହିଁ ପ୍ରକୃତରେ ଜାତି ଓ ଦେଶ, ଏଇ ଭାବଟା ଦେଶରେ ତୁରନ୍ତ ବ୍ୟାପକ ଭାବରେ ସଂଗଠିତ କରିବାକୁ ହେବ । ସବୁ ଦିଗରେ ଯେପରି, ଏ କ୍ଷେତ୍ରରେ ମଧ୍ୟ ସ୍କୁଲ୍ ହିଁ, ଦେଶ ଓ ଜାତିର ନେତା ହେବା ଉଚିତ ।

୭ । ପ୍ରତି ସ୍କୁଲ୍ ଅଧା-କାରଖାନା କରାଯିବା ଉପରେ କୁହାଯାଇଛି । ତାହାଦ୍ୱାରା ପିଲେ ଦୈହିକ-ଶ୍ରମ-ବିମୁଖ ହେବେନାହିଁ, ପୁଣି ଅର୍ଜନକ୍ଷମ ମଧ୍ୟ ହୋଇପାରିବେ । କିନ୍ତୁ ବହି ପଢ଼ାଅ ବା ଶିଳ୍ପ ଶିଖାଅ, କୌଣସିଭାବରେ ପିଲାକୁ ନିଜ ଗାଁ ଓ ଘରର ମୌଳିକ ପରିସ୍ଥିତି ଓ ପରିବେଶରୁ ଉତ୍ପାଟିତ କରିନେବା ଏକାନ୍ତ ଅନୁଚିତ । ଦଶଟାରୁ-ଚାରିଟା-ସ୍କୁଲ୍, କିନ୍ତୁ, ଗତ ଦୁଇଶ' ବର୍ଷ ଧରି ଏ ଦେଶରେ ଏଇ ଘୋର ଅପକାରକ ଅପକ୍ରିୟାଟି କରିଆସିଛି । ସ୍କୁଲ୍ ଟାଇମ୍ ଓ ସ୍କୁଲ୍ ଛୁଟି ଏପରି ଆମୂଳ ପରିବର୍ତ୍ତିତ ହେବା ଉଚିତ, ଯେପରିକି ସ୍କୁଲ୍‌ର ବର୍ଷ ଓ ଜଣେ ଚଷାର ବର୍ଷ, ସ୍କୁଲ୍‌ର ଦିନ ଓ ଜଣେ ଗରିବ ଗୃହସ୍ଥ ବା ଗୃହିଣୀର ଦିନ ପରସ୍ପର ସହିତ ସମ୍ପୂର୍ଣ୍ଣ ଖାପଖାଇ ଚଳିବ । ସ୍କୁଲ୍‌କୁ କୌଣସିମତେ ଆମେ, ବାପ ଓ ମା'ର ଦୈନନ୍ଦିନ ବା ବାର୍ଷିକ ଜୀବନ ଓ ତାଙ୍କ ପୁଅ ଝିଅଙ୍କ ଭିତରେ ପାଚେରି କରି ଠିଆକରେଇ ଦେବାନାହିଁ । ଏପରି କରିବା ପଛରେ କୌଣସି ହେଲେ ଶିକ୍ଷା-ତତ୍ତ୍ୱ ଥାଇନପାରେ । ପୁଣି ଜାତୀୟ ଚରିତ୍ର ପ୍ରତି ଏହା ଘୋର ମାରାତ୍ମକ । କିନ୍ତୁ ଆମର ପ୍ରାଇମେରୀଠାରୁ ୟୁନିଭରସିଟିପର୍ଯ୍ୟନ୍ତ, ସମଗ୍ର ବ୍ୟବସ୍ଥା ଠିକ୍ ଏଇ କାମଟି କରୁଛି, ଯାହାଦ୍ୱାରା ଶିକ୍ଷିତ ଓ ଅଶିକ୍ଷିତ ଦୁଇଟା ସମ୍ପୂର୍ଣ୍ଣ ଅଲଗା ଜାତି ରୂପେ ଦଣ୍ଡାୟମାନ; ପୁଣି ତଥାକଥିତ 'ଶିକ୍ଷିତ' ପିତାମାତା, ଗାଁଗଣ୍ଡା ଓ ଜାତୀୟ ଐତିହ୍ୟରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ । ଆମ ଦେଶରେ ଗୋ-ଜାତିର ଓ ଚାଷର ଉନ୍ନତିପାଇଁ ଯେଉଁ ବିଦ୍ୟାଳୟ ସବୁ ବସାଯାଇଛି, ସେଠି ଧାନବିଲ ଓ କୋଶଳାଶାଗ ଓ ଗୁହାଳପୋଛାର ଉପଦେଶ ଦିଆଯାଏ ଇଂରେଜୀରେ, ପୁଣି ଯେଉଁମାନେ ଉପଦେଶ ଦିଅନ୍ତି ଓ ଯେଉଁମାନେ ଶୁଣନ୍ତି ସେମାନେ ପ୍ୟାଣ୍ଟ୍-କୋଟ୍ ଜୋତା-ବିଭୂଷିତ ସାହେବ !

ଏପରି ହାସ୍ୟକର ଓ ଆତ୍ମପ୍ରତାରକ ବ୍ୟବସ୍ଥା କୌଣସି ହେଲେ ଦେଶରେ ଅଛି କି ? ତେଣୁ କୋଟି କୋଟି ଟଙ୍କା ବ୍ୟୟ କଲେ ମଧ୍ୟ ଏ ଦେଶରୁ ଅନ୍ନାଭାବ ଯିବ, ନା ଏ ଦେଶରେ ଦୁଧ-ଦହିର ପ୍ରାଚୁର୍ଯ୍ୟ ଆସିବ ? ଶିକ୍ଷାର ପ୍ରଥମ ବିପ୍ଳବ ଏହିଠାରୁ ଆରମ୍ଭ ହେବା ଉଚିତ ନୁହେଁ କି ?

ଏତିକି ମୋର କହିବାର କଥା । ଯଦୁମଣି କହିଥିଲେ –

'ଶୂଦ୍ର ମୁଖୁ ଏ ହୋଇଛି ବାହାର, ରୌଦ୍ରତା ଘେନି ବୁଧେ ନ ବିଚାର'–

ସେହିପରି ଏ ଲେଖକ ମଧ୍ୟ ଏ ଦେଶର ଶାସକ ଓ ଶିକ୍ଷାବିତ୍‌ମାନଙ୍କୁ ଅନୁରୋଧ କରୁଛି ଯେ, ବକ୍ତାକୁ ଭୁଲିଯାଇ, ସେହି ବରେଣ୍ୟ ଜନଗଣ,ବଚନର ଭଲମନ୍ଦ ଓ ଗ୍ରାହ୍ୟାଗ୍ରାହ୍ୟତା ନିରପେକ୍ଷଭାବରେ ବିଚାର କରନ୍ତୁ । ଦେଶ ଓ ଜାତିର ଯାହା ଶୁଭଙ୍କର ତା'ହିଁ ସେମାନେ ବିଚାର କରି ଗ୍ରହଣ କରନ୍ତୁ * ।

---

* ଆମର ଶିକ୍ଷା ସମସ୍ୟା' ଏହି ପ୍ରବନ୍ଧ ପର୍ଯ୍ୟାୟ ଯାହା 'ପ୍ରଜାତନ୍ତ୍ର'ରେ ପ୍ରକାଶିତ ହୋଇଥିଲା, ତାହାର ଶେଷତମ ପ୍ରବନ୍ଧଟି ବେସିକ୍ ପଦ୍ଧତି ଉପରେ ଥିଲା । କିନ୍ତୁ ସେ ପ୍ରବନ୍ଧଟି ବହୁ ଚେଷ୍ଟା କରି ମଧ୍ୟ ପାଇପାରିନି । ତା ପରିବର୍ତ୍ତରେ ବେସିକ୍ ଉପରେ ଏଇ ନୂତନ ପ୍ରବନ୍ଧଟି ଯୋଗାଇ ଦିଆଗଲା ।

# ସେକେଣ୍ଡାରୀ ଶିକ୍ଷା ସମସ୍ୟା ଓ ସିଲାବସ୍

## (୧)

ଆଜି କର୍ତ୍ତୃପକ୍ଷଙ୍କ ମୁଖରେ ବେସିକ୍-ବିରୋଧୀ ବାକ୍ୟ ସବୁ ଶୁଣାଗଲାଣି । ରାଜ୍ୟର ବିଧାନ ସଭାରେ ଯେଉଁ ଆଲୋଚନା ହୋଇଯାଇଛି (୧୯୫୯), ମନେହେଲା, ଯେପରିକି ମୌଳିକ ଶିକ୍ଷାର ମୂଳୋତ୍ପାଟନର ବ୍ୟବସ୍ଥା ହେବାକୁ ଯାଉଛି । କିନ୍ତୁ ଦଶବର୍ଷ ତଳେ ଏ ଦେଶର ଜଣେ ଶିକ୍ଷାବିଭାଗୀୟ କର୍ମଚାରୀ ସେଦିନ ନବପ୍ରଚଳିତ ବେସିକ୍ ଶିକ୍ଷା ବିରୋଧରେ ଠିକ୍ ଏଇକଥା କହିଥିଲେ ବୋଲି, କର୍ତ୍ତୃପକ୍ଷ ତା'ର ବି ମୂଳୋତ୍ପାଟନର ଚେଷ୍ଟା କରିଥିଲେ । ସେଇ ଲୋକ ଆଜି ପୁଣି କର୍ତ୍ତୃପକ୍ଷଙ୍କୁ ବିନୀତଭାବରେ ଜଣାଉଛି ଯେ, ଯଦି ବେସିକ୍ ଏ ଜାତିକି ଆଶାନୁରୂପ ବରଦାନ କରିପାରିଲାନାହିଁ, ହୁଏତ ଦଶବର୍ଷ ତଳର ବାହ୍ବାସ୍ଫୋଟନ ସହିତ ଏବେ ପୁଣି 'ହାଏର୍ ସେକେଣ୍ଡାରୀ', 'ମଲ୍‌ଟିପର୍ପସ୍ ହାଇସ୍କୁଲ୍' ପ୍ରଭୃତି ନୂତନ ବିଦ୍ୟାର ଯେଉଁ ପ୍ରଚାର ହେବାର ଆରମ୍ଭ ହୋଇଛି, ଏ ମଧ୍ୟ ଦେଇପାରିବନାହିଁ ।

ଜଣେ ସାମାନ୍ୟ ଶିକ୍ଷାବିତ୍ ଭାବରେ ଏଇ ଲେଖକ ବେସିକ୍ ପଦ୍ଧତିର ନିଃଶେଷ ନିନ୍ଦା କରିନପାରେ । ଏ ପଦ୍ଧତିରେ କେତେକ ଉତ୍ତମ ବିଭାବ ଦେଖାଦେଇଛି, ଯାହାପାଇଁ ଏ ଦେଶର ଶିକ୍ଷକ ଓ ଶିକ୍ଷାବିତ୍‌ମାନେ ବହୁବର୍ଷ ଧରି ପାଟି କରି ଆସୁଥିଲେ । ସେଇ ବିଭାବଗୁଡ଼ିକ ପ୍ରଚଳିତ ଶିକ୍ଷା ପଦ୍ଧତିରେ ନଥିବାରୁ ସେ ଶିକ୍ଷା ଅପୂର୍ଣ୍ଣ ବୋଧହେଉଥିଲା । କିନ୍ତୁ ପୁସ୍ତକ ଜ୍ଞାନକୁ ତୁଚ୍ଛ କରି, ପରୀକ୍ଷାକୁ ଉପହାସ କରି, କେବଳ ଏଇ ହସ୍ତ-ଶିଳ୍ପର ଉପାସନା ଦେଇ ଜାତିର ମୁକ୍ତି ହେବାର ପ୍ରଚାର କରିବାଦ୍ୱାରା, ଏ ପଦ୍ଧତି ନିଜକୁ କେବଳ ଅନୁପଯୋଗୀ ଓ ଅପାରଗ ପ୍ରମାଣିତ କରିଛି ନୁହେଁ, ତାର ଉତ୍ତମ ବିଭାବଗୁଡ଼ିକ ପ୍ରତି ମଧ୍ୟ ଲୋକ-ଚିତ୍ତରେ ଆସ୍ଥାର ଅଭାବ ଘଟେଇଛି । ଆତ୍ମ-ନିର୍ଭରତାର ପ୍ରତିଶ୍ରୁତି ରକ୍ଷା କରିବା ପରିବର୍ତ୍ତରେ ଏ ପଦ୍ଧତିର ଅନୁଷ୍ଠାନ ସବୁ ପ୍ରଚଳିତ ସ୍କୁଲ୍‌ମାନଙ୍କଠାରୁ ବହୁ ଗୁଣରେ ବ୍ୟୟବହୁଳ ହୋଇ, ଆପଣାକୁ ଏକ ପରିହାସର ପାତ୍ରରେ ପରିଣତ କରିନାହାନ୍ତି କି ? ଏକ ବିରାଟ ରାଜନୈତିକ ଦଳର ଶାସନ କ୍ଷମତା ବ୍ୟତିରେକେ, ଦେଶ, ଏ ମିଥ୍ୟାଚାରୀଙ୍କୁ ବେଶିକାଳ ଠିଆରହିବାକୁ ଆଦୌ ଦିଅନ୍ତାନାହିଁ ବୋଧହୁଏ ।

ସେଦିନ ଦଶବର୍ଷ ତଳେ ଏଇ ଲେଖକ ତେଣୁ କହିଥିଲା ଯେ, ଯଦି ବେସିକ୍‌ରେ କିଛି ନୂତନ ଗୁଣ ଅଛି ତେବେ ତାହା ପ୍ରଚଳିତ ବିଦ୍ୟାଳୟମାନଙ୍କରେ ଭର୍ତ୍ତିକର । ସମାନ୍ତରାଳ ଓ ପ୍ରତିଷ୍ଠିତ ପଦ୍ଧତିକୁ ଘୃଣା ପ୍ରକାଶ କରୁଥିବା ଅନ୍ୟ ଏକ ଶିକ୍ଷା ପଦ୍ଧତି ଦେଶରେ ଠିଆକରେଇବା ଆଦୌ କଲ୍ୟାଣକର ନୁହେଁ । ପୁଣି ସେ ପଦ୍ଧତିକୁ କୃତ୍ରିମ ଗୌରବ ଓ ମହିମାରେ ମଣ୍ଡିତ କରିବା ଉଦ୍ଦେଶ୍ୟରେ ସରକାର ବେସିକ୍ ଶିକ୍ଷକମାନଙ୍କପାଇଁ ଅନ୍ୟ ଶିକ୍ଷକମାନଙ୍କଠାରୁ ଯଥେଷ୍ଟ ଉଚ୍ଚତର ହାରରେ ଦରମା ବ୍ୟବସ୍ଥା କରିଦେଲେ । ଏହା ଏକ ମାରାତ୍ମକ ବ୍ୟବସ୍ଥା । ଏହା କେବଳ କ୍ଷମତାର

ପରିଚୟ ଦିଏ, ସୁସ୍ଥ ବିଚାରର ନୁହେଁ । ସେତେବେଳେ ଇନ୍ସପେକ୍ଟରଭାବରେ ଏଇ ଲେଖକ ଶିକ୍ଷକ ଓ ପରିଦର୍ଶକମାନଙ୍କଠାରୁ ଏକ ନୂତନ ଜାତି ବିଭାଗ ଯୋଗୁଁ ଘୋର ଅସନ୍ତୋଷ ଶୁଣିବାକୁ ପାଉଥିଲା । ସେ ବ୍ୟବସ୍ଥା ଆଜି ବି ଅଛି । କିନ୍ତୁ ସଂସ୍କାର ପ୍ରୟାସୀ ଶିକ୍ଷାମନ୍ତ୍ରୀ ଯାରି ମୂଳୋତ୍ପାଟନ ଆଗ କରିବା ଉଚିତ—ଏଇ କୃତ୍ରିମ ଜାତିଭେଦର ।

ବେସିକ୍-ବାଦୀମାନେ ଯଦି ମନେ କରିଆସୁଛନ୍ତି ଯେ ବେସିକ୍ ଏକ ସମ୍ପୂର୍ଣ୍ଣ ନୂତନ ଆବିଷ୍କାର, ତେବେ ସେମାନେ ଏକାବେଳକେ ଭ୍ରାନ୍ତ । ପୋଲାଣ୍ଡର ପ୍ରାଇମେରୀ ଓ ସେକେଣ୍ଡାରୀ ସ୍କୁଲ୍ ସବୁ ବେସିକ୍ ନାମରେହିଁ ଅଭିହିତ । ଅଥଚ ପାଠ୍ୟକ୍ରମ ଠିକ୍ ଆମର ପ୍ରାକ୍-ବେସିକ୍ ପ୍ରଥା ପରି । କିନ୍ତୁ ଶିଳ୍ପ କର୍ମର ବ୍ୟବସ୍ଥା ସବୁଆଡ଼େ ଥିଲା ଓ ଏବେ ବି ଅଛି । ଏଇ ସାମାନ୍ୟ ନୂତନତ୍ୱପାଇଁ ଗୋଟାଏ ସମାନ୍ତରାଳ ଶିକ୍ଷା ପଦ୍ଧତି ବୋଲି ଆପଣାକୁ ପରିଚୟ ଦେବାକୁ ଯିବା ଉପହାସର କାରଣ ।

କିନ୍ତୁ ବେସିକ୍ ଏ ଦେଶରେ ଏକମାତ୍ର ସମାନ୍ତରାଳ ପଦ୍ଧତି ନୁହେଁ । ଟୋଲ୍, ଚାଟଶାଳା, ମାଦ୍ରାସା, ଆଶ୍ରମ, ସେବାଶ୍ରମ, ବେସିକ୍, ନନ୍‌ବେସିକ୍, ପବ୍ଲିକ୍—ଏପରି ପ୍ରାୟ ଏକ ଡଜନ୍ ସମାନ୍ତରାଳ ଓ ପରସ୍ପର-ବିରୋଧୀ ପଦ୍ଧତି ଏ ଦେଶରେ ଆଜି ପ୍ରଚଳିତ । ପୃଥିବୀର କୌଣସି ଦେଶରେ ଏପରି ଏକାଧାରରେ ମାରାତ୍ମକ ଓ ଉପହାସ୍ୟ ବ୍ୟବସ୍ଥା ନାହିଁ । ଶ୍ରେଣୀହୀନ ସମାଜର ଆଦର୍ଶ ବୟାନ କରି, ଏଇ ହତଭାଗ୍ୟ ଦେଶହିଁ ଜାତିର ନୂତନ ପୁରୁଷକୁ ଆଠ ଆଠଟା ପରସ୍ପର-ବିରୋଧୀ ବା ପରସ୍ପର-ସମ୍ପର୍କହୀନ ସମାନ୍ତରାଳ ଶିକ୍ଷା ପଦ୍ଧତି ଦେଇ ଗଢ଼ିବାକୁ ଯାଉଛି । ପୃଥିବୀର କୌଣସି ଦେଶରେ ଏପରି ଦୃଶ୍ୟ ଦେଖାଯାଏନାହିଁ । ଇଂଲଣ୍ଡ, ଆମେରିକା, ଜାପାନ୍, ସୋଭିଏଟ୍ ଋଷା, ଯହିଁ ଯାଅ, ଦେଖିବ ସମଗ୍ର ଜାତି ଗୋଟାଏ ସିଷ୍ଟମ୍‌ରେ ଗଢ଼ାହେଉଛି । ଆଠ ଆଠଟା କରି ଭିନ୍ନ ଭିନ୍ନ ସିଷ୍ଟେମ୍‌କୁ ଯଦି ପୋଷଣ କରାଯାଏ, ତେବେ କୌଣସି ଧନୀ ଦେଶର ସରକାରଙ୍କ ତହବିଲ ମଧ୍ୟ ସମ୍ଭାଳିପାରିବନି; ଆମ ପରି ଦରିଦ୍ର ଦେଶର କଥା ଛାଡ଼ିଦିଅ । ଏତେ ଶିକ୍ଷକ ବା ଆସିବେ କୁଆଡୁ ? ଆମ୍ଭେମାନେ ଜାଣୁ ଯେ ରୁଷିଆର ଏକଚ୍ଛତ୍ର ଶାସକ ଷ୍ଟାଲିନ୍‌ର ପିଲେ ମସ୍କୋର୍ ଏକ ସାଧାରଣ ସ୍କୁଲ୍‌ରେ ପଢୁଥିଲେ । ଏବେ ଇଂଲଣ୍ଡର ରାଣୀଙ୍କ ପୁଅଝିଅ ମଧ୍ୟ ସାଧାରଣ ସ୍କୁଲ୍‌ରେ ଅନ୍ୟ ପିଲାଙ୍କ ସାଙ୍ଗେ ଏକା ପାଠ ପଢୁଛନ୍ତି । ଏଥିପାଇଁ ଇଂଲଣ୍ଡରେ ଦାବି ହେଲା । କିନ୍ତୁ କର୍ତ୍ତୃପକ୍ଷ ବୁଝନ୍ତୁ ତ ଏ ଦେଶର ଡି.ପି.ଆଇ.ମାନେ ତାଙ୍କ ପିଲାଙ୍କୁ କେଉଁ ସ୍କୁଲ୍‌ରେ ପଢ଼ାନ୍ତି ! ସମଗ୍ର ଜାତିର ପିଲାଙ୍କପାଇଁ ଗୋଟାଏ ପ୍ରକାର ସ୍କୁଲ୍, ଆଉ ଡି.ପି.ଆଇ. ଓ ହାକିମମାନଙ୍କ ପିଲାଙ୍କପାଇଁ ଆଉ ଏକପ୍ରକାର ସ୍କୁଲ୍ । ବେଶ୍ ଚମତ୍କାର ଆଦର୍ଶ ! ଏଥିରେ ଶ୍ରେଣୀହୀନ ନ୍ୟାୟପ୍ରତିଷ୍ଠ ସମାଜ ଆପେ ଆପେ ଗଢ଼ିଉଠିବ ।

ଶିକ୍ଷା ସଂସ୍କାର ନାମରେ ବହୁବର୍ଷ ଧରି ଏ ଦେଶରେ ସଂସ୍କାରର ଏକ ଲଘୁ ଅଭିନୟ ମାତ୍ର ଚାଲିଛି । ଯାହା ପ୍ରକୃତରେ ସଂସ୍କାର୍ଯ୍ୟ ତାକୁ ଛୁଇଁବାକୁ ଗଲେ ବହୁ ନ୍ୟସ୍ତ-ସ୍ୱାର୍ଥରେ ଆଘାତ ଆସିବ । ତେଣୁ ଲୋକଙ୍କୁ ଭୁଲେଇବାପାଇଁ ଚାଲିଛି ସଂସ୍କାରର ଏକ ପ୍ରଚାର ମାତ୍ର । କିନ୍ତୁ ଆଜି ଦେଶ, ଶିକ୍ଷାର ସଂସ୍କାର ଚାହେନା, ଚାହେ ବିପ୍ଳବ । ତା ନହେଲେ ନୂତନ ଜାତିର ଉଦ୍ଭବ ଅସମ୍ଭବ । ବିପ୍ଳବର ପ୍ରଥମ ସୋପାନ ହେଉଛି, ସମଗ୍ର ଜାତିପାଇଁ ଏକ ଓ ଏକମାତ୍ର ଗୋଟାଏ ଶିକ୍ଷା ପଦ୍ଧତିର ପ୍ରଚଳନ । ହାକିମଙ୍କ ପିଲା ଗୋଟାଏ ସ୍କୁଲ୍‌ରେ ପଢ଼ିବେ ଆଉ ତାଙ୍କ କିରାଣି ଓ ପିଅନର ପିଲା ଆଉ

ଏକ ସ୍କୁଲ୍‌ରେ ପଢ଼ିବେ—ଏ ଦୃଶ୍ୟକୁ ଦେଶରୁ ତୁରନ୍ତ ବିଦାୟ ଦିଆଯିବା ଉଚିତ । ଯଦି ପବ୍ଲିକ୍ ସ୍କୁଲ୍ ଠିଆକରାଯିବ (ଏ ଲେଖକ ପବ୍ଲିକ୍ ସ୍କୁଲ୍ ପ୍ରତିଷ୍ଠାର ସପକ୍ଷରେ) ତେବେ ବିହାର ରୀତିରେ ତାହା ପରିଚାଳିତ ହେଲେ, କାହାର କିଛି ଆପତ୍ତି ରହିବନାହିଁ । ଏପରି ସାମ୍ୟ-ନୀତିକ ଅନ୍ତତଃ ଗୋଟାଏ ପବ୍ଲିକ୍ ସ୍କୁଲ୍ ଓଡ଼ିଶା ନିତାନ୍ତ ଦରକାର କରେ । କିନ୍ତୁ ପବ୍ଲିକ୍ ସ୍କୁଲ୍, ପ୍ରଚଳିତ ଶିକ୍ଷା ପଦ୍ଧତିର ବିରୋଧୀ ବା ସମାନ୍ତରାଳ ନୁହେଁ । ତାହା ଏହି ପଦ୍ଧତିର ପ୍ରକୃଷ୍ଟ ବିକାଶ ମାତ୍ର । ଆମେ ଦାବି କରୁଥିବା ଏକୀକରଣ ଆନ୍ଦୋଳନର ଏହା ବିରୋଧୀ ନୁହେଁ ଆଦୌ । କିନ୍ତୁ ପବ୍ଲିକ୍ ସ୍କୁଲ୍ ହେଉ ବା ନହେଉ, ସମଗ୍ର ଜାତିପାଇଁ ଏକ ଶିକ୍ଷା ପଦ୍ଧତିର ପ୍ରଚଳନ ତୁରନ୍ତ ହେବା ଉଚିତ । ଅବଶ୍ୟ ଏଇ ଗୋଟିଏ ପଦ୍ଧତିରେ ଅନ୍ୟ ଯେତେ ପଦ୍ଧତି ଅଛି ସେ ସବୁର ଭଲ ଅଂଶ ସବୁ ମିଶେଇଦେବାରେ କାହାରି ଆପତ୍ତି ରହିବନାହିଁ, ତାହା ତ ଜାତି ପକ୍ଷରେ କଲ୍ୟାଣକର । ପୁଣି ସବୁ ପଦ୍ଧତିକି ମିଶାଇ ଏକୀଭୂତ କରିଦେଲେ, ଦେଶରେ ଶିକ୍ଷକ ଅଭାବ ବର୍ତ୍ତମାନ ଯେତେ ଅନୁଭୂତ ହେଉଛି, ତାହା ମଧ୍ୟ ରହନ୍ତାନାହିଁ ।

ଦେଶରେ ଶୈକ୍ଷିକ ବିପ୍ଳବର ଏ ହେଲା ପ୍ରଥମ ସୋପାନ ।

ଦ୍ୱିତୀୟ ସୋପାନ ହେଲା, ଦେଶର ସମସ୍ତ ପ୍ରାଇମେରୀ ଓ ସେକେଣ୍ଡାରୀ ଶିକ୍ଷାକୁ ସମ୍ପୂର୍ଣ୍ଣ ଭାବରେ ସରକାରଙ୍କ ଶିକ୍ଷା ବିଭାଗକୁ ଛାଡ଼ିଦେବା, ଆଉ କଲେଜ ଶିକ୍ଷାକୁ ସମ୍ପୂର୍ଣ୍ଣଭାବରେ ବିଶ୍ୱବିଦ୍ୟାଳୟ ହାତରେ ଛାଡ଼ିଦେବା । ପ୍ରାଇମେରୀ ଓ ସେକେଣ୍ଡାରୀ ଶିକ୍ଷାରେ ଜନ-ପ୍ରଭାବ ଏ ଦେଶରେ ଶିକ୍ଷାର ଏକ ପ୍ରତିଷ୍ଠିତ ଅପମାନ– ଏହା ଘୋର ଅପକାର କରିଛି ଓ କରୁଛି । ଏହାକୁ ସମ୍ପୂର୍ଣ୍ଣଭାବରେ ଶିକ୍ଷା ବିଭାଗ ହାତକୁ ଦେଇଦେବା ଉଚିତ । ଅନ୍ୟପକ୍ଷରେ କଲେଜ ସ୍ତରରେ କୌଣସିପ୍ରକାର ସରକାରୀ ବା ଶାସକ-ଦଳର ହସ୍ତକ୍ଷେପ ଆଦୌ ଉଚିତ ବି ନୁହେଁ, ଶୋଭନୀୟ ବି ଦିଶୁନି । କଲେଜ ସ୍ତରରେ ଯଦି ଆମେ ନିଜେ ନିଜକୁ ଚଳାଇପାରିଲେନି, ତେବେ ଜାତି ସ୍ୱଶାସିତ ହେବାର ଆଦର୍ଶ ପାଇବ କେଉଁଠୁ ?

ତୃତୀୟ ସୋପାନ ହେଲା, ପାଠର ମାନଦଣ୍ଡକୁ ଉଚ୍ଚ କରିବା । ଜ୍ଞାନର ମାନଦଣ୍ଡ ଆଜି କେତେ ତଳକୁ ଖସିଲାଣି ତାହା ସାଧାରଣ ଲୋକେ କଳ୍ପନା କରିପାରିବେନି । ବର୍ତ୍ତମାନ ଛାତ୍ରଙ୍କ କଥା ଛାଡ଼, ଶିକ୍ଷକ ଓ ଅଧ୍ୟାପକମାନଙ୍କର ଜ୍ଞାନର ଅଜ୍ଞତା ଚର୍ଚ୍ଚାର ବିଷୟ ହେଲାଣି । ଯଦି ଆମର ସୁବିଧାପାଇଁ ଆମେ ଷ୍ଟାଣ୍ଡାର୍ଡ଼କୁ ତଳକୁ ଟାଣିବା, ତେବେ ଏହା ନିଶ୍ଚିତ ଯେ, ଜାତି ଭାବରେ, ଆମେ ସମସ୍ତେ ସେଇ ସାଥିରେ ତଳକୁ ତଳକୁ ଯିବା - ଗଲେଣି ଓ ଯାଉଛେ ମଧ୍ୟ । ଏଇ ଅଧଃପତନର ତୁରନ୍ତ ପ୍ରତିରୋଧ ଦରକାର । ଡକ୍ଟର ଶଶଧର ସିନ୍‌ହା ଜଣେ ବିଜ୍ଞ ଭାରତୀୟ । ସେ ବହୁକାଳ ଧରି ଲଣ୍ଡନରେ ଅବସ୍ଥାନ କରିଆସୁଛନ୍ତି । ସେ ଏବେ ଷ୍ଟେଟ୍‌ସମାନ ପତ୍ରିକାରେ ବିଲାତରେ ଭାରତୀୟ ଛାତ୍ରଙ୍କ ସମ୍ପର୍କରେ ଏକ ପ୍ରବନ୍ଧ ଲେଖିଥିଲେ । ସେ ଲେଖିଛନ୍ତି ଯେ ଏବେ ଯେଉଁ ଭାରତୀୟ ଛାତ୍ର ସବୁ ବିଲାତ ଯାଉଛନ୍ତି ସେମାନଙ୍କର ବୌଦ୍ଧିକ ବିକାଶ ଏପରି ଅସନ୍ତୋଷଜନକ ଯେ, ବିଲାତର ବିଶ୍ୱବିଦ୍ୟାଳୟ ସବୁ ଏମାନଙ୍କ ଆଡମିଶନ୍‌ରେ ବାଧା ଆଣିବାପାଇଁ ବ୍ୟବସ୍ଥାର ବିଚାର କରୁଛନ୍ତି । ସେହି ଦିନର ସେହି ପତ୍ରିକାରେ ଏହା ମଧ୍ୟ ପ୍ରକାଶ ପାଇଥିଲା ଯେ, ପୃଥିବୀ ବଜାରରେ ସକଳ ପ୍ରକାର ଭାରତୀୟ ପଣ୍ୟର ଚାହିଦା କମିଆସୁଛି ।

କାହିଁକି ? ଆମ ଜାତୀୟଜୀବନର ସବୁ ବିଭାଗରେ ଷ୍ଟାଣ୍ଡାର୍ଡ଼ର ନିମ୍ନତା ଏଥିପାଇଁ ଦାୟୀ ନୁହେଁ କି ?

କିନ୍ତୁ ଆମର ନବ ପ୍ରତିଷ୍ଠିତ ସେକେଣ୍ଡାରୀ ବୋର୍ଡ଼ ଆମକୁ ଏଇ ବିପ୍ଳବ ଆଣିଦେବ କି ? ଅନ୍ତତଃ ବୋର୍ଡ଼ର ନବପ୍ରକାଶିତ ସିଲାବସ୍ ଉପରେ ଆଖିବୁଲେଇ ଏଇ ଲେଖକ ଗଭୀର ନୈରାଶ୍ୟ ବୋଧ କରିଛି । ତା'ର ଆଲୋଚନା ପର ପ୍ରବନ୍ଧରେ କରାଯିବ ।

## (୨) ସିଲାବସ୍ –

ମୁଦାଲିୟାର କମିସନ୍ ରିପୋର୍ଟର ଆଦ୍ୟରେ ଭାରତବର୍ଷରେ ସେକାଣ୍ଡାରୀ ସ୍କୁଲ୍ ଶିକ୍ଷାର ସଂସ୍କାର କାହିଁକି ଦରକାର, ଯା ଉପରେ ପୃଷ୍ଠା ପୃଷ୍ଠା ଧରି ପ୍ରବନ୍ଧ ଦିଆଯାଇଛି । ସ୍ୱାଧୀନ ଭାରତର ନୂତନ ପରିବେଶରେ ଏକ ନୂତନ ଉତ୍ପାଦନଶୀଳ, କର୍ମଠ, ସଂସ୍କୃତିବନ୍ତ, ଦେଶପ୍ରାଣ ଜାତିର ଜନ୍ମ ଏଇ ସଂସ୍କାର ପ୍ରୟାସର ପ୍ରଧାନ ଲକ୍ଷ୍ୟରୂପେ ଧରାଯାଇଛି । କିନ୍ତୁ ଓଡ଼ିଶା ସେକେଣ୍ଡାରୀ ବୋର୍ଡ଼ର ନବପ୍ରକାଶିତ ସିଲାବସ୍‌ର ମଲାଟରୁ ମଲାଟ ପର୍ଯ୍ୟନ୍ତ ଅନୁସନ୍ଧାନ କରି ଏ ଲେଖକ ବୁଝିପାରୁନାହିଁ, ଏଇ ସିଲାବସ୍‌ର କେଉଁ ରାଜପଥ ଦେଇ ଆମର ଏଇ ନୂତନ ଜାତି ମାଡ଼ିଆସିବେ । ଅନ୍ୟପକ୍ଷରେ ଲେଖକ ଏଥିରେ କେବଳ ଦେଖିବାକୁ ପାଉଛି ବିଚାରହୀତନା ଓ ଦୃଷ୍ଟିହୀନତା, କୁହେଳି ଓ ଧୂଳିପଟଳମାତ୍ର । ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦେଇ କଥାଟା ବୁଝାଇବାର ଚେଷ୍ଟା କରାଯାଉଛି ।

ଆମେ ଯାହା ପଢ଼ିଆସିଛୁ ଓ ଏବେ ବି ପଢୁଛୁ, ସେଥିରୁ ଅଧିକାଂଶ କେବଳ 'ଖବର', ସେଗୁଡ଼ା 'ଜ୍ଞାନ' ନୁହେଁ । ଇତିହାସ, ଭୂଗୋଳ ଇତ୍ୟାଦି କେବଳ 'ଖବର' । 'ଜ୍ଞାନ' ଆସେ କେବଳ ସାହିତ୍ୟ ଭିତର ଦେଇ । ପ୍ରକୃତ ସାହିତ୍ୟ ବା ତଲ୍ଲବ୍ଧ ଜ୍ଞାନ କେବଳ 'ଖବର' ପରି ମସ୍ତିଷ୍କର ବାହାରଘରେ ରହେନା, ତାହା ପଶିଯାଏ ଆତ୍ମାର ଅନ୍ତଃପୁରକୁ ଏବଂ ସେ ଆମର ସମଗ୍ର ଚିନ୍ତା ଓ ବ୍ୟକ୍ତିତ୍ୱକୁ ନିଜ ଗୁଣ ଅନୁସାରେ ପ୍ରଭାବିତ କରେ । ଅଙ୍କ, ଇତିହାସ, ଭୂଗୋଳ ବା ସୂତାକଟାର ଏ ଶକ୍ତି ନାହିଁ । ସେଥିପାଇଁ ସବୁଦେଶରେ, ବିଦ୍ୟାଳୟର ପାଠ୍ୟକ୍ରମରେ ସାହିତ୍ୟ, ବିଶେଷତଃ ମାତୃଭାଷାର ସାହିତ୍ୟକୁ ପ୍ରଧାନତମ ସ୍ଥାନ ଦିଆଯାଇଥାଏ । ଇଂଲଣ୍ଡର ସେକେଣ୍ଡାରୀ ପାଠ୍ୟକ୍ରମରେ, ଇଂରେଜୀ ଭାଷା ଓ ସାହିତ୍ୟ ହେଉଛି କେନ୍ଦ୍ର ବିଷୟ । ଏବେ ସୋଭିଏଟ୍ ରୁଷିଆରେ ମଧ୍ୟ ସେୟା ହୋଇଛି । କିନ୍ତୁ ଘୋର ପରିତାପର କଥା ଏହି ଯେ, ଆମ ସେକେଣ୍ଡାରୀ ସିଲାବସ୍‌ର ବିଧାତାଗଣ, ଦେଶର ତରୁଣଙ୍କୁ ଗଢ଼ିବାର ଏଇ ପରମ ଉପାଦାନଟିକୁ ବଡ଼ ଲଜ୍ଜାକରଭାବରେ ପରିବେଷଣ କରିବାକୁ ଯାଇଛନ୍ତି ।

ଏଇ ସିଲାବସ୍‌ରେ ବ୍ୟବସ୍ଥା ହୋଇଛି ଯେ ଆମ ପିଲେ ତିନିବର୍ଷରେ ମାତ୍ର ଶହେ ପୃଷ୍ଠାର ଗଦ୍ୟ ଓ ଶହେ ପୃଷ୍ଠାର ପଦ୍ୟ ପଢ଼ିବେ । ଅର୍ଥାତ୍ ବର୍ଷକୁ ପଡ଼ିଲା ତେତିଶି, ମାସକୁ ପଡ଼ିଲା ତିନି ପୃଷ୍ଠାର ଅତ୍ୟନ୍ତ କଠିନ ଅଧ୍ୟୟନ । ଯା ସାଙ୍ଗକୁ ଅଛି ଗୋଟାଏ ଗପ ବହି ବା ଗୋଟାଏ ଉପନ୍ୟାସ ବା ଗୋଟାଏ ଏକାଙ୍କିକା ସଂଗ୍ରହ । ଏ ଗୋଟିଏ ବହି ଯାହାକୁ କି ଶ୍ରେଣୀର ପିଲେ ଶିକ୍ଷକଙ୍କ ବିନା ସାହାଯ୍ୟରେ ଆପେ ଆପେ ଏକ ଏକ ଦିନରେ ପଢ଼ି ଶେଷକରିଦେବେ । ଅଥଚ ଶିକ୍ଷକ ତାକୁ

ପଢ଼େଇବେ ତିନି ତିନି ବର୍ଷ ଧରି । ଯାର ନାମ ପୁଣି ଦିଆଯାଇଛି ହାଏର ବା 'ଉଚ୍ଚାଙ୍ଗ' ଓଡ଼ିଆ । ଓଡ଼ିଆ ସାହିତ୍ୟ ପ୍ରତି ଯାଠୁ ଅଧିକ ଅପମାନ କଳ୍ପନା କରାଯାଇନପାରେ ।

ଏଇ ସିଲାବସ୍ ସହିତ, ସମାନ୍ତରାଳ ସିନିୟର୍ କେମ୍ବ୍ରିଜ୍ ପରୀକ୍ଷାର ଏଇ ଅଂଶପାଇଁ କି ବ୍ୟବସ୍ଥା ହୋଇଛି, ତାହା ମିଳାଇ ଦେଖିଲୁଁ । ପାଠକମାନଙ୍କର ଜାଣିବାପାଇଁ ଯାହା ଏ ଲେଖକ ସ୍ଥାନୀୟ ଷ୍ଟୁଆର୍ଟ କଲେଜ ପ୍ରିନ୍ସପାଲଙ୍କଠାରୁ ସଂଗ୍ରହ କରିଛି ତାହା ନିମ୍ନରେ ଚୁମ୍ବକରେ ଦିଆଯାଉଛି ।

୧୯୫୯ର ପରୀକ୍ଷାପାଇଁ ସିନିୟର କେମ୍ବ୍ରିଜ୍ କାଣ୍ଡିଡେଟ୍‌ମାନେ ଏଇ ବହି ପଢ଼ିବେ—

ଇଂରେଜୀ 'ଭାଷା' ପାଇଁ, 'ଆଜିର ଇଂରାଜୀ' ପର୍ଯ୍ୟାୟରେ ପଞ୍ଚମ ପୁସ୍ତକ । (ଏ ପର୍ଯ୍ୟାୟଟି ଏପରି ଲେଖା ଯେ ଏଥିରେ ସାହିତ୍ୟ ଜରିଆରେହିଁ ସାହିତ୍ୟ ସହିତ ରଚନା ଓ ବ୍ୟାକରଣ ମଧ ଶିଖାଯାଏ) । ଯା ସହିତ ଇଂରାଜୀ 'ସାହିତ୍ୟ' ପାଇଁ, ସେକ୍‌ସପିୟରଙ୍କର 'ପଞ୍ଚମ ହେନେରୀ' ନାମକ ପ୍ରସିଦ୍ଧ ଐତିହାସିକ ନାଟକ, ରାଇମ୍ ଏଣ୍ଡ ରିଜନ୍( ଏକ କବିତା ସଂଗ୍ରହ), ଟେଲ୍ ଅବ୍ ଟୁ ସିଟିଜ୍ (ଡିକେନ୍ସଙ୍କ ପ୍ରସିଦ୍ଧ ଉପନ୍ୟାସ), ଏକ ଗଧ ସହିତ ପର୍ଯ୍ୟଟନ(ଷ୍ଟିଭେନ୍‌ସନ୍‌ଙ୍କ ପରମ ଉପଭୋଗ୍ୟ ଭ୍ରମଣ କାହାଣୀ) ।

ଏ ସମସ୍ତ ବହି ପିଲେ ଦଶମ ଓ ଏକାଦଶ, ଏକାପରି ଦୁଇଟି ଶ୍ରେଣୀରେ ପଢ଼ିବେ । ଯାହା ପାଠ୍ୟ ରହିଛି ତାହା ଜଗତର ଉତ୍କୃଷ୍ଟତମ ସାହିତ୍ୟ ଭିତରେ ଗଣ୍ୟ । ପ୍ରତ୍ୟେକଟି ପୁସ୍ତକକୁ କେନ୍ଦ୍ର କରି ବୁଦ୍ଧିମାନ୍ ଓ ପଣ୍ଡିତ ଶିକ୍ଷକ, ପିଲାଙ୍କୁ ସାହିତ୍ୟ ସମ୍ପର୍କରେ ଯାହା ଯାହା ଜାଣିବାର କଥା ସବୁ ବତେଇଦେଇପାରିବେ ।

ଏ ତ ଗଲା ଆମର ଏଇଠାର ସାଥୀ ସିନିୟର୍ କେମ୍ବ୍ରିଜ୍ ପଦ୍ଧତି । ସେକେଣ୍ଡାରୀ ବୋର୍ଡ଼ ଅଫିସ୍‌ଠାରୁ ଡାକେ ବାଟରେ ଏ ପାଠ ପଢ଼ାହୁଏ । କର୍ତ୍ତାମାନେ ଇଚ୍ଛା କରିଥିଲେ ସହଜରେ ସେଠାର ସବୁ ଖବର ପାଇପାରିଥାନ୍ତେ । ବର୍ତ୍ତମାନ ଶିକ୍ଷା ଓ ସାମାଜିକ ବ୍ୟବସ୍ଥାରେ ସମଗ୍ର ପୃଥିବୀରେ ଅଗ୍ରଣୀ ଯେଉଁ ସୋଭିଏଟ୍ ରୁଷିଆ, ସେଠାରେ ଠିକ୍ ଆମ ହାଇସ୍କୁଲ୍‌ମାନଙ୍କର ସମାନ୍ତରାଳ ଅନୁଷ୍ଠାନରେ ସାହିତ୍ୟର ପାଠ୍ୟକ୍ରମ କିପରି ଦେଖାଯାଉ । କୌଣସି ଏକ ପ୍ରାମାଣିକ ପୁସ୍ତକରୁ ଲେଖକ ସମ୍ପୃକ୍ତାଂଶ ଅନୁବାଦ କରି ଦେଉଛି—

''ସୋଭିଏଟ୍ ସେକେଣ୍ଡାରୀ ସ୍କୁଲ୍‌ର ଉଚ୍ଚ ଶ୍ରେଣୀଗୁଡ଼ିକରେ ସାହିତ୍ୟକୁ ଐତିହାସିକ ଦୃଷ୍ଟିକୋଣରୁ ପଢ଼ାଯାଏ । ପିଲାମାନେ ରୁଷୀୟ ସମାଜର ବିବର୍ତ୍ତନରେ ସାହିତ୍ୟ କି ଅଂଶ ଗ୍ରହଣ କରିଛି, ତାହା ଅନୁଶୀଳନ କରନ୍ତି । ରୁଷୀୟ ସାହିତ୍ୟର ଜାତୀୟ ବୈଶିଷ୍ଟ୍ୟ, ଜାତିପ୍ରେମ ଓ ସର୍ବ ଜାତିର ବିପ୍ଳବ ଓ ମୁକ୍ତିରେ ଏ ଭାଷାର ଦାନ ଦେଖାଇଦିଆଯାଏ । ପ୍ରତ୍ୟେକଟି ପାଠ୍ୟ ବହିର ଆଦର୍ଶିକ ତତ୍ତ୍ୱ, ତାର ରଚନା-ଶୈଳୀ, ପ୍ଲଟ୍, ଚରିତ୍ର ବିଶ୍ଳେଷଣ ଇତ୍ୟାଦି ପିଲାଙ୍କୁ ବୁଝାଇ ଦିଆଯାଏ । ସାହିତ୍ୟର ଭିନ୍ନ ଭିନ୍ନ ଐତିହାସିକ ବିଭାଗ ଓ ସାହିତ୍ୟର ପ୍ରଧାନ ଭାବଧାରା ସମୂହ ମଧ ତାଙ୍କର ଅନୁଶୀଳନୀୟ । ସାହିତ୍ୟ-ସିଲାବସ୍ ପିଲାଙ୍କୁ ବିଶ୍ୱ-ସାହିତ୍ୟର ବିଶିଷ୍ଟ ସୃଷ୍ଟିମାନଙ୍କ ସହିତ ମଧ ପରିଚିତ କରାଏ । ଅଷ୍ଟମଠାରୁ ଦଶମ ଶ୍ରେଣୀ ଭିତରେ ପିଲେ ଦଶମରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ରୁଷୀୟ ସାହିତ୍ୟ ଓ ପଶ୍ଚିମ ୟୁରୋପର ପ୍ରଧାନ ସାହିତ୍ୟ-ସୃଷ୍ଟି ସବୁ ପଢ଼ିନିଅନ୍ତି ।''

(ଉଆଇ. ଏନ., ମେଡ଼ିକିସ୍‌କଙ୍କର ପବ୍ଲିକ୍ ଏଡୁକେଶନ୍ ଇନ୍ ଦି' U.S.S.R.ପୃଷ୍ଠା-୬୪-୬୫)

ୟାରି ନାଁ ହେଲା ସିନା ପାଠ ! ଆମର ଏ ଯେଉଁ ସିଲାବସ୍ ହୋଇଛି ତଥାକଥିତ 'ଉଚ୍ଚାଙ୍ଗ ଓଡ଼ିଆ ସାହିତ୍ୟ'ର, ଏହାକୁ ସିନିୟର କେମ୍ବ୍ରିଜ୍ ବା ସୋଭିଏଟ୍ ସିଲାବସ୍ ସହିତ ତୁଳନା କଲେ, ଘୋର ଲଜ୍ଜା ଓ ଉପହାସର ବସ୍ତୁ ହୋଇଉଠୁନାହିଁ କି ? ଏ ବର୍ଷ କୌଣସି ଲେଖକଙ୍କର ଖଣ୍ଡିଏ ଉପନ୍ୟାସ ବଛା ହୋଇଛି—ଏଇ 'ଉଚ୍ଚାଙ୍ଗ ସାହିତ୍ୟ'ର ଆଧାର ରୂପେ । ଆମ ପିଲେ ସେହି ଉପନ୍ୟାସଟିକୁ ଦୀର୍ଘ ତିନିବର୍ଷ ଧରି ପଢୁଥିବେ, ପୁଣି ଶିକ୍ଷକ ଦୀର୍ଘ ତିନିବର୍ଷ ଧରି ପଢ଼ାଉଥିବେ ! ଏପ୍ରକାର ଅଧ୍ୟାପନା ଓ ଜ୍ଞାନାହରଣର ତ ପଟାନ୍ତର ନାହିଁ ସମଗ୍ର ବିଶ୍ୱରେ ! ଏହା କେବଳ ଓଡ଼ିଶାରେ ସମ୍ଭବ ହୋଇପାରେ ! ଯେଉଁମାନେ ସେକେଣ୍ଡାରୀ ସ୍କୁଲ୍‌ର ଶିକ୍ଷାର ଚାର୍ଜ ନେଲେ, ସେମାନେ ବରାବର ମନେରଖିବା ଉଚିତ ଯେ ଗୋଟାଏ ଜାତିକୁ ଗଢ଼ିବାର ଦାୟିତ୍ୱ ତାଙ୍କ ହାତରେ ଦିଆଯାଇଛି । ଜାତି କ'ଣ ଗଢ଼ାହେବ କେଶବ କୋଇଲି, କଂସର ଚିଟାଉ, ଆଉ ଗୋଟାଏ ଉପନ୍ୟାସ ବା କେତେଟା ଗଳ୍ପକୁ ତିନିତିନିବର୍ଷ ପଢ଼େଇ ? ଆମର ଶିକ୍ଷକ ଓ ଶିକ୍ଷାବିତ୍‌ଗଣ କୌଣସି ମୁହୂର୍ତ୍ତରେ ଭୁଲିଯିବା ଉଚିତ ନୁହେଁ ଯେ ଆମେ ଆଜି ଏକ ସ୍ୱାଧୀନ ଜାତି ଓ ଆମେ ଆସି ପହଞ୍ଚିଲୁଣି ସ୍ପୁଟ୍‌ନିକ୍ ଯୁଗରେ । ଆମକୁ ଏକ ସ୍ପୁଟନିକ୍ ପରିବେଶ ସହିତ ଖାପଖୁଆଇ ଏକ ନୂତନ ଦୁର୍ଦ୍ଧର୍ଷ ଜାତି ଠିଆକରେଇବାକୁ ହେବ । ଏ ପିଲାଖେଳ ନୁହେଁ । କେଶବ କୋଇଲି ଓ କଂସର ଚିଟାଉକୁ ପଣ୍ଡିତ ମହାଶୟ ଢୁଳେଇ ଢୁଳେଇ ତିନିବର୍ଷ ଧରି ପଢ଼େଇଲେ, ଆମେ ସେଇମିତି ଏକ ଢୁଳେଇବା ଜାତି ହୋଇ ରହିବା ବା ହୁଏତ ଏକାବେଳକେ ନିଶ୍ଚିହ୍ନ ହୋଇଯିବା । ଯଦି ସଗୌରବରେ ବଞ୍ଚିବାର ଆଶା, ତେବେ ଶିକ୍ଷା ବ୍ୟବସ୍ଥାକୁ ଅଚିରେ ଡାଇନାମିକ୍ ବା ପ୍ରଖର ଗତିଶୀଳ କରିବାକୁ ପଡ଼ିବ ।

ନୂତନ ଜାତି ଗଢ଼ିବାର ଯଦି ଉଦ୍ଦେଶ୍ୟ ଥାଏ ତେବେ ଦେଶର ଶିକ୍ଷକମାନଙ୍କୁ ଆଦେଶ ଦିଆଯିବା ଉଚିତ ଯେ ସ୍କୁଲ୍‌ର ଦୈନନ୍ଦିନ କାର୍ଯ୍ୟକ୍ରମର ପ୍ରତି ମୁହୂର୍ତ୍ତରେ ସେମାନେ ସେଥିପ୍ରତି ଜାଗ୍ରତ ରହିବେ, ପ୍ରତି ଲେସନ୍‌ରେ ସେଇ ଭାବ ପିଲାଙ୍କ ମନରେ ଲେପିଦିଆଯାଉଥିବ, ଆଉ ପ୍ରତି ପାଠ୍ୟପୁସ୍ତକରେ ସେଇ ଭାବ ଫୁଟିଉଠୁଥିବ । ସୋଭିଏଟ୍ ଶିକ୍ଷା ବ୍ୟବସ୍ଥା ଠିକ୍ ଏଇ ରୀତିରେ ଚାଲିବାରୁ, ଆଜି ମାତ୍ର ତିରିଶଟା ବର୍ଷରେ ସେ ଜାତି ଦୁର୍ଦ୍ଧର୍ଷ ଓ ସମୃଦ୍ଧ । ସୋଭିଏଟ୍ ଶିକ୍ଷାବିତ୍ କହନ୍ତି—''ନୂତନ ମନୁଷ୍ୟର ସମସ୍ତ ପ୍ରଧାନ ଗୁଣଗୁଡ଼ିକ ବିଷୟରେ ସ୍କୁଲ୍ ଶିକ୍ଷକ ଦିନର ପ୍ରତି ଲେଶନ୍‌ରେ ପିଲାଙ୍କୁ ଅବହିତ ରଖିବାର ଚେଷ୍ଟା କରିଥାନ୍ତି ।'' ଦୃଷ୍ଟାନ୍ତସ୍ୱରୂପ ସୋଭିଏଟ୍ ସ୍କୁଲ୍‌ରେ ପ୍ରାକୃତିକ ବିଜ୍ଞାନ ପଢ଼ାହେଲାବେଳେ ପିଲେ ଖାଲି ଗଛ, ଲତାର ନାମ ମୁଖସ୍ଥ କରନ୍ତି ନାହିଁ । ମନୁଷ୍ୟ କିପରି ପ୍ରକୃତିକୁ ମଧ୍ୟ ନୂତନଭାବରେ ଗଢ଼ିପାରିଛି, କିପରି ପଞ୍ଚଭୂତକୁ ମଧ୍ୟ ପରିବର୍ତ୍ତନ ଓ ନିୟନ୍ତ୍ରିତ କରିପାରିଛି, ଏଇ ମନୁଷ୍ୟର ଏଇ ସୃଜନୀ ବିଜୟର ଭାବଟିକୁ ସେମାନଙ୍କ ମନରେ ବରାବର ଭର୍ତ୍ତି କରିବାର ଚେଷ୍ଟା କରାଯାଏ ।

ପାଠକେ ସହଜରେ ବୁଝିପାରିବେ ଯେ ଏଇପ୍ରକାର ଅଧ୍ୟାପନାର ଫଳ ହେଉଛି ତିରିଶବର୍ଷ ଭିତରେ ପଛୁଆ ରୁଷିଆ ଆଜି ସମସ୍ତଙ୍କ ଆଗରେ ଠିଆହୋଇ ସ୍ପୁଟନିକ୍ ଉଡ଼ାଉଛି ।

ଆମ ସେକେଣ୍ଡାରୀ ବୋର୍ଡ଼ର ନୂଆ ସିଲାବସ୍‌ର ଏକମାତ୍ର ନୂତନତ୍ୱ ହେଉଛି ତଥାକଥିତ ସୋସାଲ୍ ଷ୍ଟଡ଼ିଜ୍ ବା ସାମାଜିକ ପାଠ । ମୁଦାଲିୟାର୍ ରିପୋର୍ଟର ନିର୍ଦ୍ଦେଶ ଅନୁସାରେ ଏହା

ପ୍ରବର୍ତ୍ତିତ ହୋଇଛି ପୂର୍ବର ଇତିହାସ ଓ ଭୂଗୋଳକୁ ଉଠେଇ । କିନ୍ତୁ ସେ ସବୁକୁ ମିଶେଇ, ଏ ଏକ ଅଦ୍ଭୁତ ଖେଚେଡ଼ି ହୋଇଛି । ମୁଦାଲିୟାର୍ ରିପୋର୍ଟରେ ଏ ବିଦ୍ୟା କ'ଣ, ସେ ସମ୍ପର୍କରେ ଏଇପରି କୁହାହୋଇଛି–''ସେହି ସାମାଜିକ ଆନ୍ଦୋଳନ ଓ ଶକ୍ତିର ଧାରା ଯାହାକି ତାଙ୍କର (ପିଲାଙ୍କର) ଜୀବନକୁ ଏବର ରୂପ ଦାନ କରିଛି'' (୯୫ ପୃଷ୍ଠା) । କିନ୍ତୁ ରିପୋର୍ଟର ଏ ତାତ୍ପର୍ଯ୍ୟ ସହିତ ଆମ ସିଲାବସ୍‌ର ତୁଳନା ଦେଖନ୍ତୁ । ସିଲାବସ୍‌ର ହଠାତ୍ ଆରମ୍ଭ ହୋଇଛି ଏଇପରି–

ପୃଥିବୀର ଭିନ୍ନ ଭିନ୍ନ ଅଂଶରେ ଲୋକଙ୍କ ଜୀବନ–(୧) ତୁନ୍ଦ୍ରା (୨) ଘାସଭୂମି (୩) ଶୀତଳ ବନଭୂମିର ଦେଶ (୪) ମୌସୁମୀ ଦେଶ (୫) ଭୂମଧ୍ୟସାଗରୀୟ ଉପକୂଳ (୬) ବୈଷୁବ ମଣ୍ଡଳ (୭) ମରୁଭୂମି ।

ଏଇ ବର୍ଷ (ନବମ ଶ୍ରେଣୀ)ର ଏଇଠାରେ ଶେଷ ହେଉଛି ଏଇପରି–

(୧) ଏକ ମାଳୟ ଗୋଷ୍ଠୀ (୨) ଏକ ଉତ୍ତରର ଚାଇନିଜ୍ ଗୋଷ୍ଠୀ (୩) ଜଏଡରଜୀ ନିକଟରେ ଥିବା ଏକ ଡଚ୍ ଗୋଷ୍ଠୀ (୪) ରାଇନ୍ ଅବବାହିକାରେ ଏକ ଶିଳ୍ପ ବ୍ୟବସାୟୀ ଗୋଷ୍ଠୀ (୫) ଉତ୍ତର ସାଇବିରିଆରେ ଏକ ମିଳିତ ବଲ୍‌ଗା ହରିଣ ଗୋଠ ।

ଏଇ ଯେ ହେଲା ସିଲାବସ୍, ଏ କ'ଣ ଦର୍ଶାଇ ଦେଉଛି ସେହି ''ସାମାଜିକ ଆନ୍ଦୋଳନ ଓ ଶକ୍ତିର ଧାରା ଯାହାକି ଆମ ସମାଜକୁ ତାର ଏବର ରୂପ ଦାନ'' କରିଛି ? ପିଲେ ଆମର କି ଲାଭ ପାଇବେ ଜୀବନରେ ଏଥିରୁ ? ସାଇବିରିଆର ବଲ୍‌ଗାହରିଣ ଗୋଠ କଥା ପଢ଼ି ଓଡ଼ିଆ ପିଲେ କ'ଣ ଭଲଭାବରେ ଗାଈ ବା ଘୁଷୁରି ପାଳିବାର ଆଶା କରାଯାଏ ନା ଉତ୍ତର କଟିବନ୍ଧର ଘାସଭୂମି କଥା ପଢ଼ିଲେ ଓଡ଼ିଆ ପିଲେ ସେଇପରି ଘାସ ଜନ୍ମାଇ ମେଷ ପାଳନ କରିବେ ? କି ପ୍ରକାରରେ ଏଇ ସବୁ ଜ୍ଞାନ ନେଇ ଆମର ସାମାଜିକ ଓ ଅର୍ଥନୈତିକ ବିପ୍ଳବ ଆସିଯିବ ? କିଛି ଯୁକ୍ତି, କିଛି ବିଚାର, କିଛି ଆଦର୍ଶ ଏ ସିଲାବସ୍‌ର ପଛରେ ଅଛି କି ? ନା ବ୍ରହ୍ମା ବିଳିବିଳେଇଲେ ବେଦପରି ବେପରୁଆ ରୀତିରେ ଯାକୁ ଜାତି ଉପରେ ଫୋପାଡ଼ି ଦିଆଯାଇଛି ।

ଏ'ତ ଗଲା ପାଠର ବିଚିତ୍ର ପରିବର୍ତ୍ତନ । ତେଣେ ପରୀକ୍ଷାର ଅତ୍ୟାଚାର ପୂର୍ବଠୁ କମିବ କ'ଣ ଦ୍ୱିଗୁଣ ବଢ଼ିଛି । ମୁଦାଲିୟାର ରିପୋର୍ଟ ଦୃଢ଼ ଓ ସ୍ପଷ୍ଟଭାବରେ କହିଛନ୍ତି ଯେ ହାଇସ୍କୁଲ୍ ସାର୍ଟିଫିକେଟ୍ ପରୀକ୍ଷାରେ ଛଅଟି ବିଷୟରୁ ଅଧିକ ଆଦୌ ରହିବା ଉଚିତ ନୁହେଁ (ପୃ ୧୬୧) । ସେ ଛଅଟିରୁ ଦୁଇଟି ପୁଣି ଆଗରୁ ଆଭ୍ୟନ୍ତରୀଣ ପରୀକ୍ଷାରେ ସରିଯାଇଥିବ, ଅର୍ଥାତ୍ ଶେଷ ପରୀକ୍ଷା ହେବ ମୋଟ ଚାରିଟି ବିଷୟରେ । ଅଥଚ ଆମ ବୋର୍ଡ଼ ନିର୍ବିକାର ଚିତ୍ତରେ ଆମ ପିଲାଙ୍କ ଉପରେ ପ୍ରାୟ ୧୩ କି ୧୪ଟି ବିଷୟ ଗୋଟାଏ ମାତ୍ର ଶେଷ ପରୀକ୍ଷାରେ ଲଦି ଦେଇ, ନିଶ୍ଚିନ୍ତ । ଚମତ୍କାର ସଂସ୍କାର ! ମୁଦାଲିୟାର ରିପୋର୍ଟର ଆତ୍ମାକୁ ଯାଦ୍ୱାରା କର୍ତ୍ତୃପକ୍ଷ ପଦଦଳିତ କରିଛନ୍ତି । ମୁଦାଲିୟାର ରିପୋର୍ଟ ମୂଳରୁ ଶେଷଯାଏଁ ଆମର ଦୃଷ୍ଟିକୁ ପରୀକ୍ଷାର ପ୍ରାଧାନ୍ୟରୁ ପିଲାର ବ୍ୟକ୍ତିତ୍ୱର ପ୍ରାଧାନ୍ୟ ଉପରେ ନିବଦ୍ଧ ରଖେଇବାର ଅକ୍ଳାନ୍ତ ଚେଷ୍ଟା କରିଛନ୍ତି । ବିସ୍ମୟର କଥା ଯେ ସେକେଣ୍ଡାରୀ ବୋର୍ଡ଼ ପରି ଏକ ଶିକ୍ଷାବିତ୍ ଗୋଷ୍ଠୀ ରିପୋର୍ଟର ଏଇ ଆଦର୍ଶିତ ମର୍ମକୁ ଧରି ନିନାହାନ୍ତି । ରିପୋର୍ଟର ୧୬୦ ପୃଷ୍ଠାରେ ଏହା ସ୍ପଷ୍ଟ ଘୋଷିତ ହୋଇଛି ଯେ–''ସବୁ ପିଲେ ଶେଷ ସାଧାରଣ ପରୀକ୍ଷା ଦେବାକୁ ମଧ୍ୟ ବାଧ୍ୟ ନହୋଇପାରନ୍ତି । କେହି ପିଲା ଯଦି

ଚାହେ ସେ ଏ ପରୀକ୍ଷା ନଦେଇ ମଧ ପାରେ । କିନ୍ତୁ ସ୍କୁଲ୍ ପଢ଼ା ଶେଷ କଲେ ପ୍ରତ୍ୟେକ ପିଲା ଗୋଟିଏ ସାର୍ଟିଫିକେଟ୍ ପାଇବେ, ଯେଉଁଥିରେ ପିଲା କେଉଁ କେଉଁ ବିଷୟରେ ସ୍କୁଲ୍ କାଳ ଭିତରେ କେତେଦୂର ପ୍ରଗ୍ରେସ୍ କରିଛି ତାହାର ରେକର୍ଡ଼ ଲିପିବଦ୍ଧ ଥିବ ।'' ଗତ ଶହେବର୍ଷ ଧରି ପୃଥିବୀର ସଭ୍ୟଦେଶମାନଙ୍କରେ ଶିକ୍ଷାର ମୂଳ ବିପ୍ଲବ ଓ ସଂସ୍କାର ହେଉଛି ଶିକ୍ଷାକୁ ପୁସ୍ତକ ଓ ପରୀକ୍ଷା-ପ୍ରଧାନ ନରଖି ପିଲା-ପ୍ରଧାନ କରିବା । ଅର୍ଥାତ୍ ପିଲାର ବ୍ୟକ୍ତିତ୍ୱ-କୋରକର ପୁଷ୍କଳ ବିକାଶହିଁ ହେଉଛି ଶିକ୍ଷା ଓ ଶିକ୍ଷାୟତନର ଏକମାତ୍ର ଲକ୍ଷ୍ୟ । ଓଡ଼ିଶା ସେକେଣ୍ଡାରୀ ବୋର୍ଡ଼ର ସିଲାବସ୍ ଆମକୁ ଅଷ୍ଟାଦଶ ଶତାବ୍ଦୀର ଏପଟକୁ ଆଣିବାର କୌଣସି ଚେଷ୍ଟା କରିଥିବାର ବୋଧ ହେଉନାହିଁ ।

ଏଇ ସିଲାବସ୍‌ରେ ଗ୍ରୁପ୍ (ବିଷୟମାନଙ୍କର ଗୋଷ୍ଠୀ ବିଭାଗ)ର ଏକ ଭେଲ୍‌କି ସୃଷ୍ଟି ହୋଇଛି । ପଚାଶଟା ଖଣ୍ଡେ ବିଦ୍ୟାର ବର୍ଣ୍ଣନା ଅବଶ୍ୟ ଅଛି, ତାହା କିନ୍ତୁ ଏକ ମିଥ୍ୟାଚାର । ଆମେ ଜାଣୁ ଯେ ଓଡ଼ିଶାର କୌଣସି ସ୍କୁଲ୍‌ରେ ୮ ।୯ଟାରୁ ବେଶି ବିଦ୍ୟାର ବ୍ୟବସ୍ଥା ହୋଇପାରିନି, ତେଣୁ ଏପରି ସାଡ଼ମ୍ବର ପ୍ରଦର୍ଶନୀର କି ଲାଭ ? ସୋଭିଏଟ୍ ରୁଷିଆରେ ମାଟ୍ରିକ୍ୟୁଲେଶନ୍ ହେଲା ଜେନେରାଲ୍ ଏଡୁକେଶନ୍, ତେଣୁ ସେଠି ହାଇସ୍କୁଲ୍‌ମାନଙ୍କରେ ପ୍ରତି ପିଲାକୁ ଏକ ଅଲ୍-ରାଉଣ୍ଡ ବା ସର୍ବାଙ୍ଗୀନ ଶିକ୍ଷା ଦେବାର ବ୍ୟବସ୍ଥା ହୋଇଛି । ନିର୍ଦ୍ଦିଷ୍ଟ କେତୋଟି ବିଷୟ ପଢ଼ାହେବ, କିନ୍ତୁ ତାହା ଅତି ଉଚ୍ଚାଙ୍ଗର । ଆମର ବି ସେଇ ଲକ୍ଷ୍ୟ ହେବା ଉଚିତ । ସୋଭିଏଟ୍ ସିଷ୍ଟମ୍ ଅନୁସାରେ ଏକ ମାଟ୍ରିକ୍ୟୁଲେଟ୍ ଏଇ ଏଇ ପାଠ ପଢ଼ିଥିବାର କଥା—ରୁଷ୍ ଭାଷା, ରୁଷ ସାହିତ୍ୟ, ଅଙ୍କ, ଗଣିତ ଶାସ୍ତ୍ର (ଆଲ୍‌ଜେବ୍ରା, ଜ୍ୟାମିତି, ତ୍ରିକୋଣମିତି), ପ୍ରାକୃତିକ ବିଜ୍ଞାନ, ଇତିହାସ, ସୋଭିଏଟ୍ ରୁଷିଆର ସମ୍ବିଧାନ, ଭୂଗୋଳ, ଫିଜିକ୍ସ, ଆଷ୍ଟ୍ରୋନୋମି(ଜ୍ୟୋତିଷ ଶାସ୍ତ୍ର), ରସାୟନ ବିଦ୍ୟା, ବିଦେଶୀ ଭାଷା(ଇଂରେଜୀ, ଜର୍ମାନ୍ ବା ଫ୍ରେଞ୍ଚ୍) ଶରୀର-ସଂଗଠନ, ଡ୍ରଇଂ, ମେକାନିକାଲ୍ ଡ୍ରଇଂ,ସଂଗୀତ—ଏଇପରି ୧୯ ।୨୦ ବିଦ୍ୟା; କିନ୍ତୁ ଏଗୁଡ଼ିକ ସୋପାନକ୍ରମରେ ଅଧ୍ୟାପିତ ହୁଏ ବୋଲି ପିଲାଙ୍କୁ ବାଧେନା, ପୁଣି ପୁନରାବୃତ୍ତି ନଥିବାରୁ ବହୁତ ନୂତନ ଜ୍ଞାନ ଦିଆଯାଇପାରିଛି । ଦୃଷ୍ଟାନ୍ତସ୍ୱରୂପ, ଅଙ୍କ, ରୁଷୀୟ ଭାଷା (ସାହିତ୍ୟ ନୁହେଁ), ଡ୍ରଇଂ ଓ ଗାନ, ମିଡ଼୍‌ଲ ସ୍କୁଲ୍‌ରେ ପଢ଼ାହୁଏ କେବଳ । ପୁଣି ଆଷ୍ଟ୍ରୋନୋମି ଓ ରୁଷିୟାର ସମ୍ବିଧାନ ସବା ଉପର ଶ୍ରେଣୀରେ ମାତ୍ର ପଢ଼ାଯାଏ, ତେଣୁ ମୋଟ ଉପରେ ପିଲାଙ୍କୁ ପାଠ ବାଧେନା । ପ୍ରତ୍ୟେକ ସବ୍‌ଜେକ୍ଟରେ ପରୀକ୍ଷା ହୁଏ ମୌଖିକ ଓ ଲିଖିତ । ତେଣୁ କ୍ରାମିଂ ବା ନବୁଝି ଘୋଷି ପାସ୍ କରିବାର ଦୁରଭ୍ୟାସ ମଧ ସେଠି କାମ ଦେଇନପାରେ ।

'ମଲ୍ଟିପର୍ପସ୍' ବା ''ହାଏର୍ ସେକେଣ୍ଡାରୀ'' ପ୍ରଭୃତି ନୂଆ ଲେବେଲ୍ ମାରିଦେଲେ ଶିକ୍ଷାର ବିପ୍ଳବ ଆସିଯିବନି କି ବାରବର୍ଷକୁ ୧୧+୧, ବା ୪ବର୍ଷକୁ ୩+୧ କରିଦେଲେ ନୂଆ ଜାତି ଫୁଟିଉଠିବେନି । ଯଦି ପ୍ରକୃତ ଆନ୍ତରିକତା ଥାଏ, ଯଦି ଜାତିଗଠନ ପ୍ରକୃତ ଲକ୍ଷ୍ୟ ଥାଏ ତେବେ ଧୂଆଁବାଣର ବ୍ୟବହାର ନକରି, କୁହେଳିକାଗୁଡ଼ାଏ ସୃଷ୍ଟି ନକରି, ରସାନ୍‌ମାନେ ଯେପରି କରିଛନ୍ତି, ସେଇପରି କରିବାର ଚେଷ୍ଟା ହେଉ । ଏକ ସାମାନ୍ୟ ଶିକ୍ଷାବିତ୍‌ଭାବରେ ଏହାହିଁ ଲେଖକର ବିନୀତ ନିବେଦନ ।

## (୩) ଷ୍ଟାଣ୍ଡାର୍ଡ଼ ଓ ଶୃଙ୍ଖଳା –

ଉତ୍କଳ ବିଶ୍ୱବିଦ୍ୟାଳୟ ପାଟନା ବିଶ୍ୱବିଦ୍ୟାଳୟ ହାତରୁ ଯେତେବେଳେ ମାଟ୍ରିକ୍ ପରୀକ୍ଷାର ଭାର ହାତକୁ ନେଲେ, ସେତେବେଳେ ପାସ୍‌ପାଇଁ ଆବଶ୍ୟକ ଥିଲା, ପ୍ରତି ବିଷୟ ଓ୍ ଟୋଟାଲରେ ମଧ୍ୟ ଶହେରୁ ୩୫ ମାର୍କ । ତା'ପରେ କୁଳପତି ଚିନ୍ତାମଣି ଆଚାର୍ଯ୍ୟଙ୍କ କରୁଣାପରବଶତା ବା ମୂଲ୍ୟ-ଜ୍ଞାନର ତୀବ୍ରତା ଯୋଗୁଁ ଏହା ତଳକୁ ୩୩%କୁ ଅଣାଇ ଦିଆଗଲା । କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅଲଗା ହୋଇଯାଇ, ଆମର ଓଡ଼ିଶା ସେକେଣ୍ଡାରୀ ବୋର୍ଡ଼ ନିମ୍ନତମ ପାସ୍‌କୁ ଶତକରା ୩୦କୁ କମାଇଆଣି ସ୍ୱାତନ୍ତ୍ର୍ୟ ଓ ସତ୍‌କର୍ମର ବୈଜୟନ୍ତୀ ଉଡ଼େଇ ଦେଇଛନ୍ତି କହିବାକୁ ହେବ ।

ପୃଥିବୀର କୌଣସି ସଭ୍ୟ ଜାତିର ବିଦ୍ୱାନ୍‌ମଣ୍ଡଳି ଏକାଠି ହୋଇ ଜାତିର ଜ୍ଞାନ-ମାପକୁ ଉପରକୁ ଉଠାଇବାପାଇଁ ପ୍ରଯତ୍ନ କରିବା ପରିବର୍ତ୍ତରେ ତଳକୁ ଖସେଇବାର ଅବାଞ୍ଛନୀୟ ଓ ଅକଲ୍ୟାଣକର ଦୃଶ୍ୟ ଦେଖାଯାଇଛି ବୋଲି ଜଣାଯାଇନାହିଁ । ଷ୍ଟେଟ୍‌ଫଣ୍ଡରେ ପରିପୋଷିତ କୌଣସି ଅନୁଷ୍ଠାନ ଦେଶରେ ଅଯୋଗ୍ୟତା ଓ ଅକର୍ମଣ୍ୟତାରହିଁ ପୁଷ୍ଟପୋଷକରୂପେ ଠିଆ ହେବା, କୌଣସି ସଭ୍ୟ ଦେଶରେ କେହି ହେଲେ କଳ୍ପନାକୁ ଆଣିବେନି । ଯଦି ଏପରି ଘଟେ, ତେବେ ତାହା ଜାତୀୟ ଅଧଃପତନର ପ୍ରତ୍ୟକ୍ଷ-ପ୍ରମାଣ ବୋଲି ଧରିନିଆଯିବ । ଏଥିରେ ଯୁକ୍ତିତର୍କର ଅବକାଶ ନାହିଁ । ଓଡ଼ିଶା ସେକେଣ୍ଡାରୀ ବୋର୍ଡ଼ ଦେଶ ଓ ଜାତି ଆଗରେ ଇଏ କି ଆଦର୍ଶ ଓ ଲକ୍ଷ୍ୟ ଥୋଇଲେ ଓ ଏହାର ଜାତୀୟ ଜୀବନ ଉପରେ କି ପ୍ରତିକ୍ରିୟା ହେବ, ତାହା ଥରେ ଭାବିଛନ୍ତି କି ? ଶହେରୁ ତିରିଶ ମାର୍କ ରଖି ପାସ୍ ହୋଇପାରିଲେ, ସ୍କୁଲ୍ ଆଉ ଶିକ୍ଷକଙ୍କ ବାବଦରେ ଏତେ ଅର୍ଥବ୍ୟୟ ହେଉଛି କାହିଁକି ? ଏବଂ ଏହାରି ନାମ କି ଶିକ୍ଷାର ବିପ୍ଳବ ବା ଉଚ୍ଚଶିକ୍ଷାର ପ୍ରସାର ? ଗୋଟିଏ ପିଲାର ବାର ବର୍ଷକାଳ ଆମ ସ୍କୁଲ୍‌ମାନଙ୍କରେ ଓ ଆମ ଶିକ୍ଷକମାନଙ୍କ ତତ୍ତ୍ୱାବଧାନରେ ପଢ଼ିଲା ପରେ, ଯଦି ଶେଷରେ ଶହେରୁ ମାତ୍ର ତିରିଶଟି ମାର୍କ ରଖି ପାସ୍ କରିବ, ତେବେ ଇଏ ତ ଚମତ୍କାର ଆଦର୍ଶ ଦେଶ ଓ ଜାତି ଆଗରେ; ଓ ଆମ ଶିକ୍ଷା ବ୍ୟବସ୍ଥାର ଗୌରବ ତିଳକ ବୋଲି ଯାକୁ ଧରିବାକୁ ହେବ । ଆମେରିକାନ୍‌ମାନଙ୍କର ଜୀବନର ମନ୍ତ୍ର ହେଉଛି–''ଯାହା କଷ୍ଟସାଧ୍ୟ ତାହା ଆମେ ସାଙ୍ଗେ ସାଙ୍ଗେ କରିବାକୁ ଯାଉଁ, କେବଳ ଯାହା ଅସମ୍ଭବ, ତାହାହିଁ ଟିକିଏ ସମୟ ନିଏ ।'' ଏ ଆଦର୍ଶ ସଙ୍ଗେ ଆମ ଆଦର୍ଶର ତୁଳନା କଲେ ତାଙ୍କ ଅବସ୍ଥା ଓ ଆମ ଅବସ୍ଥାର ପ୍ରଭେଦର ତତ୍ତ୍ୱ ସ୍ପଷ୍ଟ ହୋଇଉଠିବ । ଯେପରି ଜୀବନାଦର୍ଶ ସେହିପ୍ରରି ଜାତି । ଯଦିବା କେବଳ ପିଲାଙ୍କୁ ପାସ୍ କରେଇବା ଲକ୍ଷ୍ୟ ହୁଏ ଏବଂ ଆମେ ମନେକରୁ ଯେ ତାହାହିଁ 'ଉଚ୍ଚଶିକ୍ଷା'ର ପ୍ରସାର ବା ଶୈକ୍ଷିକ ବିପ୍ଳବ, ତେବେ ପରୀକ୍ଷା ପରି ଗୋଟିଏ ଆୟାସସାଧ୍ୟ ଆୟୋଜନ ବା ଆଉ କାହିଁକି ? ଚାଲ, ପିଲାଙ୍କ ଛାତିର ଓସାର ଓ ଶରୀରର ଉଚ୍ଚତା ମାପି ମାଟ୍ରିକ୍ ସାର୍ଟିଫିକେଟ୍ ବାଣ୍ଟିବା । ସେ ଉପାୟରେ ବି ଗୁଡ଼ାଏ ଫେଲ୍ ହେବେ ଓ ଏବ ପରି ତଥାକଥିତ ଫାଷ୍ଟ୍ ଡିଭିଜନ୍, ସେକେଣ୍ଡ ଡିଭିଜନ୍,ଥାର୍ଡ଼ ଡିଭିଜନ ବି ରହିବେ । କିନ୍ତୁ, ଶହେରୁ ୩୦ ମାର୍କ ରଖି ପାସ୍ ହେବା ଯେଉଁ ପରୀକ୍ଷାର ଲକ୍ଷ୍ୟ, ତାହା ଏକ ଅନୁକମ୍ପନୀୟ ଫାର୍ସ ଛଡ଼ା ଆଉ କିଛି ହୋଇନପାରେ । ଓଡ଼ିଶା ସେକେଣ୍ଡାରୀ ବୋର୍ଡ଼ ବର୍ତ୍ତମାନ ଓଡ଼ିଆ ଜାତି ଆଗରେ

ଏଇ ବାର୍ଷିକ ଫାର୍ସର ଅଭିନୟପାଇଁହିଁ ନିଜକୁ ଠିଆକରେଇଛନ୍ତି ବୋଲି କୁହାଯିବ । ଏହିପରି ଯା'ର ଷ୍ଟାଣ୍ଡାର୍ଡ୍, ସେ ଅନୁଷ୍ଠାନ ଶିକ୍ଷାର ବିପ୍ଳବ ଦେଇ ଗୋଟିଏ ନୂତନ ଜାତିର ସୃଷ୍ଟି କରିବାର ଆଶା କିଏ କରିବ ? ଏ ଅବସ୍ଥାରେ 'ହାଏର ସେକେଣ୍ଡାରୀ' ଓ 'ମଲ୍‌ଟିପର୍ପସ' ପ୍ରଭୃତି ଗୁଡ଼ାଏ ନୂଆ ଫମ୍ପା ସ୍ଲୋଗାନ୍ ପଛରେ ଯାହା କିଛି ଅର୍ଥ ବ୍ୟୟ, ତାହା ଘୋର ଅପବ୍ୟୟ ଛଡ଼ା ଆଉ କିଛି ବୋଲି ଆଶା କରାଯାଉନାହିଁ ।

ନୂତନ ଜାତିର ଆବିର୍ଭାବ ତ ଗୋଟାଏ ବଡ଼କଥା, ମାଟ୍ରିକ୍ ପରୀକ୍ଷାରେ ପାସ୍ କରିବା ଭଳି ସାମାନ୍ୟ କଥାରହିଁ ବିଚାର କରାଯାଉ । ପ୍ରତ୍ୟେକ ଅଭିଜ୍ଞ ଶିକ୍ଷକ କହିବେ ଯେ, ପରୀକ୍ଷାରେ ପାସ୍‌ପାଇଁ ବିଶେଷ ବୁଦ୍ଧି ବିଚକ୍ଷଣତା ଦରକାର ନାହିଁ, ଦରକାର କେବଳ, ଯାହାକୁ ଇଂରାଜୀରେ କହନ୍ତି ଡ୍ରିଲିଂ ବା ଅଭ୍ୟାସୀକରଣ । ପଠନ, ଲିଖନ ଓ କଥନରେ ଏଇ ଡ୍ରିଲିଂ ଉପଯୁକ୍ତ ପରିମାଣରେ ଦେଇପାରିଲେ, ଅଧିକାଂଶ ଫେଲ୍-ପିଲା ପାସ୍ କରିଯାନ୍ତେ ଓ ଅଧିକାଂଶ ତୃତୀୟ ଶ୍ରେଣୀର ପିଲେ ଦ୍ୱିତୀୟ ଶ୍ରେଣୀକି ଉଠିଯାନ୍ତେ ।

ପୁଣି, ଲେଖକର ଦୃଢ଼ମତ ଏଇ ଯେ, ପଢ଼ା ଓ ପରୀକ୍ଷାରେ ଷ୍ଟାଣ୍ଡାର୍ଡ୍ ଯେତିକି କଡ଼ା ରଖାଯିବ, ସେଇ ପରିମାଣରେ ଡିସିପ୍ଲିନ୍ ଆପେ ଆସିଯିବ, ସେଇ ପରିମାଣରେ ପୁଣି ଜାତି ହେବ ଉପକୃତ ।

ଏଇ ଲେଖକର ମତରେ, ଏ ଦୁଇଟିର ସମ୍ପର୍କ ଏକାବେଳକେ ଅଙ୍ଗାଙ୍ଗି । ଯେଉଁଠି ଷ୍ଟାଣ୍ଡାର୍ଡ୍‌କୁ ସମ୍ମାନ କରାଯାଏ, ସେଠି ବିଶୃଙ୍ଖଳା କୌଣସିମତେ ଆସିନପାରେ । ଯେଉଁଠି ବିଶୃଙ୍ଖଳା, ସେଠି ଷ୍ଟାଣ୍ଡାର୍ଡ୍ ଅସମ୍ଭବ । ଆମେ ଗୋଟାଏ କଥା ଲକ୍ଷ୍ୟ କରିବା ଯେ, ଛାତ୍ରୀୟ ବିଶୃଙ୍ଖଳା ଉତ୍ତର ଭାରତରେ ଯେତେ ବେଶି ଦକ୍ଷିଣ ଭାରତରେ ତାହା ନୁହେଁ । କାହିଁକି ? କାରଣ, ଦକ୍ଷିଣରେ ଏପର୍ଯ୍ୟନ୍ତ ବିଦ୍ୟାର ପ୍ରକୃତ ମର୍ଯ୍ୟାଦା ଅଛି । ଦକ୍ଷିଣ ଭାରତର ଲୋକେ କୌଣସିମତେ ଷ୍ଟାଣ୍ଡାର୍ଡ୍ କମେଇବାକୁ ରାଜିନୁହଁନ୍ତି । ସେଥିପାଇଁ ସେ ଅଞ୍ଚଳରୁ ବରାବର ବଡ଼ ବଡ଼ ବିଦ୍ୱାନ ଲୋକ ବାହାରନ୍ତି । ଲୋକ ଭୁଲାଇବାପାଇଁ ଅନୁଷ୍ଠାନ ସବୁ ଶତ ଶତ ସଂଖ୍ୟାରେ ବସେଇ ଦିଆଯାଇ ପାରେ, ଗୁଡ଼ାଏ ଲୋକ ଚାକିରି ପାଇଯାଇପାରନ୍ତି । ପ୍ରଚୁର ଅର୍ଥବ୍ୟୟ ହୋଇଯାଇପାରେ । କିନ୍ତୁ ଷ୍ଟାଣ୍ଡାର୍ଡ୍‌ର ଅପମାନ ଯେଉଁଠି କରାଯାଏ, ସମସ୍ତହିଁ ଶେଷରେ ଜାତିର ଘୋର ଅକଲ୍ୟାଣ ଆଣିବହିଁ ଆଣିବ । ନିକଟରେ ଘଟିଯାଇଥିବା ବନାରସ ବିଶ୍ୱବିଦ୍ୟାଳୟର ବୀଭତ୍ସ ଗୋଳମାଳ ଓ ଛାତ୍ର ବିଶୃଙ୍ଖଳା ଲେଖକର ମତକୁ କିପରି ପରିପୋଷଣ କରୁଛି ତାହା (୧୬।୧୦।୫୮ର ଷ୍ଟେଟ୍‌ସମ୍ୟାନ୍ କାଗ଼ଜରେ ପ୍ରକାଶିତ) ସେଇ ଗୋଳମାଳର ବିବରଣୀରୁ ସ୍ପଷ୍ଟ ପ୍ରମାଣିତ ହେଉଛି । ଜଣାଯାଉଛି ଯେ, ବନାରସ ବିଶ୍ୱବିଦ୍ୟାଳୟର ଗଣ୍ଡଗୋଳରେ ପୂରା ନେତୃତ୍ୱ ନେଇଥିଲେ କେବଳ ଆୟୁର୍ବେଦ ଓ ଜ୍ୟୋତିଷ କଲେଜର ଛାତ୍ରମାନେ । ବିଜ୍ଞାନ ଓ ଟେକ୍‌ନିକାଲ୍ କଲେଜର ଛାତ୍ରମାନେ ନିଜକୁ ଗଣ୍ଡଗୋଳରୁ ଦୂରରେ ରଖିଥିଲେ । ଏହା, ଏହାହିଁ ପରିଷ୍କାର ପ୍ରମାଣ କରୁଛି ଯେଉଁ ପାଠ କଠିନ, ଯେଉଁଥିରେ ଛାତ୍ରକୁ ପଢ଼ିବାର, ବିଚାର କରିବାର, ନିବିଡ଼ ଅଭ୍ୟାସ କରିବାର ନିତାନ୍ତ ଆବଶ୍ୟକତା ଅଛି, ତାହାର ବୌଦ୍ଧିକ ଷ୍ଟାଣ୍ଡାର୍ଡ୍ ଆପେଇ ଉଚ୍ଚ, ସେଠି ଗଣ୍ଡଗୋଳର ଅବକାଶ କାହିଁ ? ଲେଖକର ତେଣୁ ଦୃଢ଼ ବିଶ୍ୱାସ ଯେ, ଆମର ସିଲାବସ୍

ଓ ପରୀକ୍ଷାର ମାନଦଣ୍ଡ ଉଚ୍ଚକୁ ଉଠେଇଲେ ଓ ପ୍ରତି ସ୍କୁଲ୍‌ରେ ଆଭ୍ୟନ୍ତରୀଣ ମାସିକ ପରୀକ୍ଷା ପ୍ରବର୍ତ୍ତିତ କଲେ, ଛାତ୍ର ସଂପ୍ରଦାୟର ଗଣ୍ଡଗୋଳ ମନୋଭାବ ଆପେଇ ଉଭେଇଯାନ୍ତା । ଯଦି ଗଣ୍ଡଗୋଳ, ବିଶୃଙ୍ଖଳା ଆଜି ଅଛି ତେବେ ତା' ପାଇଁ ଦାୟୀ ଆମେ ଶିକ୍ଷକ ଓ କର୍ତ୍ତୃପକ୍ଷ, ଯେଉଁମାନେ ଆମରି ସୁବିଧାପାଇଁ ପିଲାଙ୍କ ନାଁରେ ମାନଦଣ୍ଡକୁ ତଳକୁ ଖସାଇବାରେ ଲାଗିଛୁ । କିନ୍ତୁ ଏହାଦ୍ୱାରା ଶିକ୍ଷକମାନଙ୍କର ଓ ସେକେଣ୍ଡାରୀ ବୋର୍ଡ଼ର ହୁଏତ ସାମୟିକ ଫାଇଦା ହୋଇପାରେ । କିନ୍ତୁ ଯେଉଁ ପିଲାଙ୍କ ନାଁରେ ଏସବୁ ସହଜିଆ ଉପଚାରର ପ୍ରବର୍ତ୍ତନ ହେଉଛି, ସେଇ ପିଲାଙ୍କରହିଁ କି ଅପୂରଣୀୟ ଅକଲ୍ୟାଣ ହେଉଛି, ସେମାନେ ଥରେ ନିଜକୁ ଜିଜ୍ଞାସା କରନ୍ତୁ । ପୂର୍ବରୁ ସହଜିଆ ଧର୍ମ ଦିନେ ଏ ଜାତିକି ଅନ୍ତଃସାରଶୂନ୍ୟ କରିଥିଲା । ଆଜି ସେକେଣ୍ଡାରୀ ବୋର୍ଡ଼ର ସହଜିଆ ଧର୍ମ ମଧ୍ୟ ଠିକ୍ ସେଇପରି ଅକଲ୍ୟାଣ କରିବ । ଦେଶବାସୀ ଟିକିଏ ସାବଧାନ ହୁଅନ୍ତୁ ।

ବିଦ୍ୟାନୁଷ୍ଠାନ ଓ ବିଦ୍ୟାର୍ଥୀମାନଙ୍କର ବିଶୃଙ୍ଖଳାର ଆଉ ଦୁଇଟି କାରଣ ମଧ୍ୟ ଅଛି । ତାହା ମଧ୍ୟ ସ୍ପଷ୍ଟଭାବରେ କୁହେ ।

ଏ ଦେଶରେ ଏପରି ଏକ ଶିକ୍ଷାବ୍ୟବସ୍ଥା ଠିଆକରାହୋଇଛି ଯେ, ଶିକ୍ଷକର ଜୀବନୋପାୟହିଁ ଛାତ୍ର ହାତରେ । ପିଲାର ଦରମାହିଁ ଶିକ୍ଷକର ଅନ୍ନ । ଏ କ୍ଷେତ୍ରରେ ଶୃଙ୍ଖଳା ଆସିବ କଆଡୁ ? ବରଂ ଯେତେ ଅବାଞ୍ଛନୀୟ ହେଉ ଓ ପାଠ ବଣକୁ ଯାଉ ପଛେ, ବରଣ କରି ଆଣ ପିଲାକୁ । ଯେତେ ଅଧିକ ପିଲା, ସ୍କୁଲ୍‌ର ଟଙ୍କା ସେତେ ବେଶି । ଖୋଲ ତେଣୁ ସେକ୍ସନ୍ ଉପରେ ସେକ୍ସନ୍ । ଖୋଲ ସ୍କୁଲ୍ ପରେ ସ୍କୁଲ୍ । ଷ୍ଟାଣ୍ଡାର୍ଡ଼ କଥା, ପଢ଼ାପଢ଼ି କଥା କିଏ ପଚାରି ଯାଏ ନିପଟ ବୋକା ଛଡ଼ା ? ପୁଣି ୩୦ ନମ୍ବରରେ ତ ପାସ୍ । ମାଷ୍ଟ୍ରେ କ୍ଲାସ୍‌ରେ ବରାବର ଶୋଇଲେ ବି ତ ଗୁଡ଼ାଏ ପାସ୍ କରିବେ ଆପେ ଆପେ - ଚିନ୍ତା କଣ ?

ବିଲାତରେ ଛାତ୍ରର ଦରମା ବଢ଼େଇବା ବା କମେଇବାର ପୂରା କ୍ଷମତା ମ୍ୟାନେଜମେଣ୍ଟ୍ ବା ହେଡ଼ମାଷ୍ଟର୍ ହାତରେ । ସେ କ୍ଷମତା ଥିଲେ, ପିଲାଙ୍କ ସଂଖ୍ୟା ଉପରୁ ନଜର ଆସି, ପିଲାର ଛାତ୍ରତ୍ୱ ଉପରେ ରହନ୍ତା । ଏ ଦେଶର କର୍ତ୍ତୃପକ୍ଷ ଶିକ୍ଷକଙ୍କୁ ସେତକ ସ୍ୱାଧୀନତା ବି ଦେବେନି, ଅଥଚ ତା'ମୁଣ୍ଡରେ ପିଲା ଉପରେ ପିଲା ଲଦିବାରେ କୌଣସି ସଂକୋଚ ନାହିଁ ।

ଆଜି ଶିକ୍ଷାନୁଷ୍ଠାନମାନଙ୍କରେ ବିଦ୍ୟାର୍ଥୀମାନଙ୍କର ସ୍ଥାନାଭାବ ପ୍ରକୃତ ସମସ୍ୟା ନୁହେଁ । ଯଦି ଦେଶର ହେଡ଼ମାଷ୍ଟରମାନଙ୍କର ସ୍ୱାଧୀନମତ ଗୋପନ ଭାବରେ ନିଆଯାନ୍ତା, ଲେଖକର ବିଶ୍ୱାସ, ସେମାନେ ସମସ୍ତେ କହନ୍ତେ ଓ ସ୍କୁଲର ଆଜି ପ୍ରଧାନତମ ସମସ୍ୟା ହେଉଛି—ଅବାଞ୍ଛନୀୟ ଛାତ୍ର ଓ ଅବାଞ୍ଛନୀୟ ଶିକ୍ଷକ ମଧ୍ୟ । ବନାରସ ବିଶ୍ୱବିଦ୍ୟାଳୟର ଗଣ୍ଡଗୋଳ ଆଜି ଏହାହିଁ ନିଃଶେଷଭାବରେ ପ୍ରମାଣ କରୁଛି । ଏଇ ଯୋଗୁଁ ଅଧ୍ୟାପନାର ଷ୍ଟାଣ୍ଡାର୍ଡ଼ ତଳକୁ ଯାଉଛି ଓ ଏଇ ରହିଛି ସ୍କୁଲ୍, କଲେଜର ସମସ୍ତ ଗଣ୍ଡଗୋଳ ଓ ବିଶୃଙ୍ଖଳାର ମୂଳରେ । ଏବେ ତିନିବର୍ଷିଆ ଡିଗ୍ରୀ-କୋର୍ସ, ପ୍ରି-ୟୁନିଭର୍ସିଟି କୋର୍ସ, ମଲ୍ଟିପର୍ପସ୍ ସ୍କୁଲ୍ ପ୍ରଭୃତି ଯେତେ ଯେତେ ଶିକ୍ଷାସଂସ୍କାରର ପ୍ରୟାସ ହେଉଛି, ସେ ସମସ୍ତର ଲକ୍ଷ୍ୟ ହେଉଛି ଏଇ ଅବାଞ୍ଛନୀୟ ଛାତ୍ର ଯେଉଁଠି ତାର ରହିବାର କଥା ନୁହେଁ, ସେଠୁଁ ତାକୁ କାଢ଼ି, ଅନ୍ୟତ୍ର ରଖିବା । କିନ୍ତୁ ଓଡ଼ିଶାର ଶିକ୍ଷା

ବ୍ୟବସ୍ଥାରେ ଏଇ ବଛାବଛିର କୌଣସି ନିର୍ଦ୍ଦେଶ କୌଣସିଠାରେ ନାହିଁ । ମୁଦାଲିୟାର କମିଟି ରିପୋର୍ଟର ଶେଷରେ ଏଇ ବଛାବଛିର ଏକ ସୁନ୍ଦର ନକ୍ସା ଦିଆଯାଇଛି । ସେଇ ଅନୁସାରେ ଥରେ ମିଡଲ ସ୍କୁଲ୍ ଶେଷରେ ଓ ଥରେ ନବମ ଶ୍ରେଣୀ ଶେଷରେ ସମୂହ ରାଷ୍ଟ୍ରୀୟ ପରୀକ୍ଷା ଜରିଆରେ ବଛାବଛି ପ୍ରବର୍ତ୍ତିତ ହୋଇ ଯେଉଁମାନଙ୍କର କୃଷି ବା ଟେକ୍‌ନିକାଲ୍ ଲାଇନ୍‌ରେ ଯିବା ଉଚିତ ସେମାନଙ୍କୁ ସେଇଆଡ଼କୁ ନେଇଗଲେ, ଆମର ହାଇସ୍କୁଲ୍‌ମାନଙ୍କରେ ସ୍ଥାନାଭାବ ହୁଅନ୍ତାନି, କି ଷ୍ଟାଣ୍ଡାର୍ଡ଼ର ମଧ ଅବମାନନା ହୁଅନ୍ତାନି । ବିଶୃଙ୍ଖଳା ଆପେ ଆପେଇ କମିଯାନ୍ତା । ଜଗତରେ କେହି ଅବାଞ୍ଛନୀୟ ନୁହନ୍ତି । କିନ୍ତୁ ଯଥାସ୍ଥାନରେ ନରହିପାରିଲେ, ଆମେ ସମସ୍ତେ ଅବାଞ୍ଛନୀୟ ବିଚାରିତ ହେବା । ଯଦି ଆମ ପିଲେ ଅବାଞ୍ଛନୀୟ, ତେବେ ଆମେଇ ସେଥିପାଇଁ ଦାୟୀ । କାରଣ ଆମେ ତାଙ୍କର ବୁଦ୍ଧି ଓ ବ୍ୟକ୍ତିତ୍ୱ ଅନୁଯାୟୀ ଶିକ୍ଷା ଓ ଅନୁଷ୍ଠାନ ଯୋଗାଇ ପାରୁନାହୁଁ । ଅଥଚ କେବଳ ସେମାନଙ୍କ ଦରମା ଲୋଭରେ, ସେମାନଙ୍କର ଉପସ୍ଥିତି ଯେଉଁଠି ଦରକାର ନାହିଁ ଆମେ ତାଙ୍କୁ ସେଠିକି ଡାକିଆଣୁଛୁ । ଫଳତଃ ବିଶୃଙ୍ଖଳା, ଗଣ୍ଡଗୋଳ ହେବଇ– ଆଶ୍ଚର୍ଯ୍ୟ କଥା କ'ଣ ଅଛି ?

ଦ୍ୱିତୀୟରେ, ଯଦିବା ବିଦ୍ୟାନୁଷ୍ଠାନରେ ବିଶୃଙ୍ଖଳା ଘଟିଲା, ସେଥିପାଇଁ ଦାୟୀ ପ୍ରକୃତରେ କିଏ ? ଆମେ ଏଥିପାଇଁ ପ୍ରଧାନ ଶିକ୍ଷକ ଓ ପ୍ରିନ୍ସିପାଲଙ୍କୁ ନିନ୍ଦା କରିବା ସ୍ୱାଭାବିକ । କିନ୍ତୁ ପ୍ରକୃତରେ ଏ ଦିଗରେ ଶେଷ ଦାୟିତ୍ୱ ଓ ଶେଷ ଅଧିକାର କା'ହାତରେ ଆଜି ? ସେ ଦୁଇଟିଯାକ ଆଜି ମନ୍ତ୍ରୀ ବା କର୍ତ୍ତୃପକ୍ଷଙ୍କ ହାତରେ ନାହିଁ କି ? ଇଂଲଣ୍ଡରେ ଗୋଟିଏ ପ୍ରାଇମେରୀ ସ୍କୁଲ୍‌ର ହେଡ଼ମାଷ୍ଟରଙ୍କର ଯେ କ୍ଷମତା ଅଛି, ଏ ଦେଶରେ ରେଭେନ୍ସା କଲେଜ ପ୍ରିନ୍ସିପାଲ୍‌ର ସେ କ୍ଷମତା ନାହିଁ । କୌଣସି ଏକ ଫାଷ୍ଟ ଗ୍ରେଡ୍ କଲେଜର ପ୍ରିନ୍ସିପାଲଙ୍କ ଆଖିଆଗରେ ପୁଲିସ କଲେଜ ହତାରେ ପଶି କଲେଜ ପିଲାଙ୍କୁ ବାଡ଼େଇଲେ । ସେ କଲେଜର ପ୍ରିନ୍ସିପାଲ୍ ପୁଲିସକୁ ସାମାନ୍ୟ ପ୍ରତିବାଦ କଲେ ବୋଲି, ଏ ଦେଶର ସରକାର ବିନା ବିଚାରରେ ପ୍ରିନ୍ସପାଲ୍‌ଙ୍କୁହିଁ ପଦଚ୍ୟୁତ ଓ ଦଣ୍ଡିତ କଲେ । ଏ ଦେଶରେ ଏଇ ହେଉଛି ଶିକ୍ଷକର ସ୍ଥାନ ଓ ସମ୍ମାନ । ଏପରି ଅବସ୍ଥାରେ ଶିକ୍ଷକକୁ ଆମେ ଛାତ୍ରୀୟ ବିଶୃଙ୍ଖଳାପାଇଁ କିପରି ଦାୟୀ କରିବା ?

ଏ ଦୃଶ୍ୟ ପୁଣି ତ ବରାବର ଦେଖାଯାଉଛି ଯେ, କୌଣସି ହେଡ଼ମାଷ୍ଟର ବା ପ୍ରିନ୍ସପାଲ୍ କର୍ତ୍ତୃପକ୍ଷଙ୍କ ସହିତ ଦେଖାକରିବାକୁ ଯାଇ ପିଅନ ସାଥିରେ ଘଣ୍ଟା ଘଣ୍ଟା ବସିଛନ୍ତି; ଅଥଚ ଆସିଗଲେ ହଠାତ୍ ଛାତ୍ରନେତା, ସିଧା ଚାଲିଗଲେ କର୍ତ୍ତୃପକ୍ଷଙ୍କ ନିକଟକୁ ଓ ଦାବି ହାସଲ କରି ବାହାରିଆସିଲେ ବିଜୟୋଲ୍ଲାସରେ । ଏହାହିଁ ଯଦି ପରିବେଶ ଓ ଆଦର୍ଶ, ସେଠି ଆଜିର ପରିବ୍ୟାପ୍ତ ଛାତ୍ରୀୟ ବିଶୃଙ୍ଖଳାପାଇଁ ପ୍ରକୃତରେ କିଏ ଦାୟୀ, ତାହାର ବିଚାର ହେଉ । ଯେ ପର୍ଯ୍ୟନ୍ତ ପ୍ରିନ୍ସିପାଲ୍ ଓ ପ୍ରଧାନଶିକ୍ଷକଙ୍କ ହାତରେ ଆମେ ଛାତ୍ର ନିୟନ୍ତ୍ରଣର ସର୍ବଶେଷ କ୍ଷମତା ଛାଡ଼ିଦେଇନାହୁଁ, ଏ ଦେଶରେ ଷ୍ଟୁଡେଣ୍ଟ ଡିସିପ୍ଲିନ୍ ଅସମ୍ଭବ ଓ ଜାତୀୟ ଜୀବନର ଭବିଷ୍ୟତ୍ ଅନ୍ଧକାରମୟ ।

ଏହିସବୁ ଆଲୋଚନା ପଢ଼ି କେହି କେହି ହୁଏତ ଭାବିପାରିଥାନ୍ତେ ଯେ ଏଇ ଲେଖକ ଦେଶରେ ହାଇସ୍କୁଲ୍ ସଂଖ୍ୟା ଓ ବିଦ୍ୟାର୍ଥୀ ସଂଖ୍ୟା ବଢ଼ିବାର ସପକ୍ଷରେ ନାହିଁ । ଏ ଧାରଣା ଏକାନ୍ତ ଭ୍ରାନ୍ତ । ଲେଖକର ଏଇ ସ୍ୱପ୍ନ ଯେ ତା ଦେଶରେ ପ୍ରତ୍ୟେକ ପୁରୁଷ ଓ ନାରୀ ମାଟ୍ରିକ୍

ପର୍ଯ୍ୟନ୍ତ ଶିକ୍ଷିତ ହେବେ, କିନ୍ତୁ ତା' ହେବେ ପ୍ରକୃତ ଜ୍ଞାନ ଦେଇ । ଠକାଠକିରେ କାଗଜ ଖଣ୍ଡେ ହାସଲ କରିବା ଜ୍ଞାନାର୍ଜନ ବା ମନୁଷ୍ୟତାର୍ଜନ ନୁହେଁ । ସେପ୍ରକାର ପ୍ରୟାସହିଁ ଜାତି ଓ ବ୍ୟକ୍ତି ପକ୍ଷରେ ଘୋର ଅକଲ୍ୟାଣକର । ଲେଖକ ଏ ଦେଶରେ ସହସ୍ର ସହସ୍ର ନୂତନ ସ୍କୁଲ୍ ମୁଣ୍ଡ ଟେକିବା ଚାହେଁ । କିନ୍ତୁ ସେ ଚାହେ ପ୍ରତ୍ୟେକଟି ହେବ ପ୍ରକୃତ ଜ୍ଞାନପୀଠ ଓ ମନୁଷ୍ୟତା ଅର୍ଜନର ପୀଠ । ଷ୍ଟାଣ୍ଡାର୍ଡ଼କୁ କମେଇ, କ୍ଲାସ୍‌ରେ ୫୦ଟା ଲେଖାଁ ପିଲା ରୁଣ୍ଡ କରି, ସେକ୍ସନ୍ ଉପରେ ସେକ୍ସନ୍ ଖୋଲି, କେବଳ ସଂଖ୍ୟାର ଗର୍ବ କରାଯାଇପାରେ, ଟଙ୍କା ରୋଜଗାର ହୋଇପାରେ; କିନ୍ତୁ ପାଠପଢ଼ା ହେବନାହିଁ, ଏହା ନିଶ୍ଚୟ । ହିସାବ କଲେ ପରିଷ୍କାର ଦେଖାଯିବ ଯେ ପ୍ରତି କ୍ଲାସ୍‌ରେ ୩୦ଟି ପିଲା ଥାଇ, ୪-କ୍ଲାସ୍‌ର ହାଇସ୍କୁଲଟିଏ ସୁନ୍ଦର ନିଜକୁ ଚଳେଇ ପାରିବ । ଏଇ ପିଲାଗୁଡ଼ିକ ଯଦି ବଛା ପିଲା ହୁଅନ୍ତି, ତେବେ ଶିକ୍ଷକମାନଙ୍କର ପାଠ ପଢ଼େଇବାରେ ଆନନ୍ଦ ଯେପରି, ପିଲାଙ୍କର ଉପକାର ମଧ ହେବ ସେଇପରି । ଏକ ହାଇସ୍କୁଲ୍‌ରେ ଛଅଶହ ପିଲା ନହେଲେ ଆଉ ହାଇସ୍କୁଲ୍ ପାଖରେ ଖୋଲାହେବନାହିଁ ବୋଲି ପ୍ରଚାର କରିବା, ମୁଦାଲିୟାର ରିପୋର୍ଟର ଜଘନ୍ୟ କଦର୍ଥ । ଲେଖକ ଚାହେ ଛୋଟ ଛୋଟ ସ୍କୁଲ୍‌ର ବହୁଳୀଭବନ—ଯାଦ୍ୱାରା କି ଭଲ ପାଠପଢ଼ା ହେବ ଓ ଯେଉଁଠି ଶୃଙ୍ଖଳା ରହିବ । ଯେତେ ପିଲା ହେଲେ ହେଡ୍‌ମାଷ୍ଟର ପ୍ରତ୍ୟେକ ପିଲାକୁ ବ୍ୟକ୍ତିଗତଭାବରେ ଜାଣିପାରିବେ, କୌଣସି ସ୍କୁଲ୍‌ରେ ତା'ଠୁ ବେଶି ପିଲା ରହିବା ଉଚିତ ନୁହେଁ । ଏଇ ନିୟମରେହିଁ ଦେଶମୟ ସ୍କୁଲ୍ ଠିଆକରାଯାଉ । ଛାତ୍ରର ଗ୍ରହଣ ଓ ନିୟନ୍ତ୍ରଣର ସର୍ବଶେଷ କ୍ଷମତା ଶିକ୍ଷକଙ୍କ ହାତରେ ଛାଡ଼ିଦିଆଯାଉ । ଦେଖ, ତା' ହେଲେ କିମିତି ନୂଆ ଜେନେରେସନ୍ ମୁଣ୍ଡଟେକି ଉଠୁଛି କି ନାହିଁ ।

## (୪) କିଂ କର୍ତ୍ତବ୍ୟମ୍ –

ଲେଖକ ଓଡ଼ିଶାର ସେକେଣ୍ଡାରୀ ଶିକ୍ଷା ସମ୍ପର୍କରେ ତିନୋଟି ପ୍ରବନ୍ଧ ଲେଖି, ଏପର୍ଯ୍ୟନ୍ତ ପ୍ରତ୍ୟେକଟିରେ ଆନୁଷ୍ଠାନିକ, ପାଠ୍ୟକ୍ରମିକ, ମାନିକ ଓ ଶୃଙ୍ଖଳାଗତ ଅନେକ ଦୋଷ ଓ ଅଭାବ ଦେଖାଇଆସିଛି । କେହି କେହି କହିବା ତ ସ୍ୱାଭାବିକ ଯେ, ଦୋଷ ତ ଦେଖାଇଲ, ଉନ୍ନତିର ଉପାୟ ବତାଇପାରିବ କି·? ଏଇ ପ୍ରବନ୍ଧରେ ଲେଖକ ତାର ସାମାନ୍ୟ ଶକ୍ତି ଅନୁଯାୟୀ ତାହା ଚେଷ୍ଟା କରିବାକୁ ଯାଉଛି । ଅବଶ୍ୟ ପୂର୍ବ ପ୍ରବନ୍ଧମାନଙ୍କରେ ଅନେକତ୍ର ଦୋଷ ଦେଖାଇବା ଭିତରେହିଁ ଦୋଷାପନୋଦନର ପଥ ନିର୍ଦ୍ଦେଶିତ କରିଦିଆଯାଇଛି । ତେବେ ଏଇ ପ୍ରବନ୍ଧରେ ସେସବୁ ଏକତ୍ର ପାଠକମାନଙ୍କ ସମ୍ମୁଖରେ ଥୋଇଦେଲେ, ପ୍ରସ୍ତାବଗୁଡ଼ିକ ବୁଝିବାରେ ସୁବିଧା ହେବ ।

## ଦେଶପାଇଁ ଏକ ଏବଂ ଅଦ୍ୱିତୀୟ ସିଷ୍ଟମ୍

ପ୍ରଥମ ଓ ପ୍ରଧାନ ଶୈକ୍ଷିକ ବିପ୍ଲବ ବା ସଂସ୍କାର ହେବା ଉଚିତ ଯେ, ସମଗ୍ର ଜାତିପାଇଁ କେବଳ ଗୋଟିଏ ମାତ୍ର ଶିକ୍ଷା ପଦ୍ଧତିର ପ୍ରଚଳନ । ହାକିମଙ୍କ ପୁଅ ଗୋଟାଏ ରୀତିରେ ପଢ଼ିବ, ତାଙ୍କ ପିଅନର ପୁଅ ଆଉ ଗୋଟାଏ ରୀତିରେ, ପୁଣି ଆଦିବାସୀ ପିଲେ ଆଉ ଏକ ରୀତିରେ, ଏହା କୌଣସି ସଭ୍ୟ ଜାତି ପକ୍ଷରେ ସୁନ୍ଦର ତ ନୁହେଁ, ପୁଣି ଏହା ଏକପକ୍ଷରେ ଭୀଷଣ

ଅପବ୍ୟୟଶୀଳ ଓ ଅନ୍ୟପକ୍ଷରେ ଏକ ମହାଜାତିର ଗଠନରେ ସାହାଯ୍ୟ କରିବା ପରିବର୍ତ୍ତନରେ ଚିରକାଳ ଜାତିକି ଖଣ୍ଡ ଖଣ୍ଡ କରି ରଖିବ । ଆମର ଏକ-ଜାତୀୟତାର ପରମତମ ଶତ୍ରୁ ହେଉଛି ଆମର ବର୍ତ୍ତମାନର ଶିକ୍ଷା ପ୍ରଣାଳୀ । ଯଦି ଇଚ୍ଛା ହେଉଛି କହ ସବୁକୁ ବେସିକ୍ ଓ ସମଗ୍ର ବ୍ୟବସ୍ଥାକୁ ଗୋଟାଏ ଛାଁଚରେ ଗଢ଼ିନିଅ । କିନ୍ତୁ ପାଠ ଓ ଦରମା ଏବଂ ଜାତି-ଧର୍ମର ଭିନ୍ନତା ଉପରେ ପୁଣି ବିଦ୍ୟାର ଯେ ଜାତିପ୍ରଥା ଆମେ ଜାଣି ଜାଣି ଠିଆକରାଉଛେ, ଏହାର ମାରାତ୍ମକତା ଦେଶର ଶାସକବର୍ଗ ତୁରନ୍ତ ବୁଝିବା ଉଚିତ । ଏହି ପର୍ଯ୍ୟାୟର ପ୍ରଥମ ପ୍ରବନ୍ଧରେ ଏହା ବିଶେଷଭାବରେ ଆଲୋଚିତ ହୋଇଛି ।

## ଲୋକ ଓ ଲୋକପ୍ରତିନିଧି

ଦ୍ୱିତୀୟ ସଂସ୍କାର ହେବା ଉଚିତ, ବିଦେଶୀ ଅମଳର ସରକାରୀ ଓ ବେସରକାରୀ ବୋଲି ଦୁଇଟି ବିପରୀତାତ୍ମକ ଯେଉଁ ଭାବ ଦେଶରେ ଥିଲା, ଅନ୍ତତଃ ଶିକ୍ଷା କ୍ଷେତ୍ରରୁ ତାହାର ତୁରନ୍ତ ମୂଳୋତ୍ପାଟନ । ଲୋକେ ଏପର୍ଯ୍ୟନ୍ତ ହୃଦବୋଧ କରିପାରୁନାହାନ୍ତି ଯେ ଲୋକ ଓ ସରକାର ଏକ । ଏ ହୃଦ୍‌ବୋଧ କେବେ ହୋଇପାରିବନାହିଁ, ଯେପର୍ଯ୍ୟନ୍ତ ଦେଶରେ ସରକାରୀ ଓ ବେସରକାରୀ ସ୍କୁଲ୍ ଓ ସେଇ ଆଦର୍ଶରେ ସରକାରୀ ହାଇସ୍କୁଲ୍ ଶିକ୍ଷକଙ୍କ ଆସୋସିଏସନ୍, ପୁଣି ବେସରକାରୀ ହାଇସ୍କୁଲ୍ ଶିକ୍ଷକଙ୍କ ଆସୋସିଏସନ୍ ଠିଆହୋଇଥିବା ସେକେଣ୍ଡାରୀ ସ୍କୁଲ୍ ଶିକ୍ଷକଙ୍କ ଆସୋସିଏସନ୍ ଠିଆହୋଇଥିବା ସେକେଣ୍ଡାରୀ ସ୍କୁଲ୍ ଶିକ୍ଷକଙ୍କ ଆସୋସିଏସନ୍‌ରେ ପୁଣି ବେସିକ୍ ଶିକ୍ଷକମାନେ ଯୋଗଦେବେନାହିଁ । ଇଏ କି ବ୍ୟାପାର ? ଖାଲି ଦରମା ଓ ପାହ୍ୟାର ସଂଗ୍ରାମ ଛଡ଼ା ଏସବୁରେ ବିଦ୍ୟାର କି ଜାତିକି ଗଢ଼ିବାର ସାମାନ୍ୟ ହେଲେ ଆଦର୍ଶ ଅଛି କି ? ଏବଂ ଏଇ ସମଗ୍ର କୁତ୍ସିତ ବ୍ୟାପାରପାଇଁ ସରକାରହିଁ ଏକାନ୍ତଭାବରେ ଦାୟୀ । ସରକାର ବର୍ତ୍ତମାନ ଏପରିଭାବରେ ନିଜର ଦୃଷ୍ଟିକୋଣ ବଦଳାଇବା ଉଚିତ ଯେ, ଦେଶରେ ସରକାରୀ ବା ବେସରକାରୀ ସ୍କୁଲ୍ ବୋଲି କୌଣସି ସମସ୍ୟା ବିଚାରକୁ ଆସିବନାହିଁ । ଦେଶର ଏକମାତ୍ର ସମସ୍ୟା ହେଉଛି ପ୍ରାଇମେରୀ, ସେକେଣ୍ଡାରୀ ଓ ୟୁନିଭର୍ସିଟି ଶିକ୍ଷା । ଏଇ ତିନିସ୍ତର ସହିତ ଯିଏ ଯେଉଁଠି ସମ୍ପୃକ୍ତ ରହିବେ, ସମସ୍ତେ ସମାନ ଯୋଗ୍ୟତାର ହେବେ, ସମାନ କାମ କରିବେ, ସମାନ ଦରମା ଓ ସୁବିଧା ପାଇବେ । ଏଇହିଁ ପ୍ରକୃତ ସମସ୍ୟା । ଲୋକ ଓ ଲୋକ ପ୍ରତିନିଧି ସରକାର, ଦୁହେଁ ଦୁଇଟି ବିପରୀତ ଘଟଣା, ଏଇ ମାରାତ୍ମକ ଭାବ ଦେଶର କୌଣସି ଅନୁଷ୍ଠାନ ଦେଇ ଯେପରି ନଫୁଟୁ । ଦେଶମୟ ଯେତେ ସ୍କୁଲ୍ ସେସବୁଗୁଡ଼ିକହିଁ ଜାତିର, ମୁଷ୍ଟିମେୟ କେତୋଟି ସ୍କୁଲ୍‌କୁ ସରକାର ନିଜର ଅଙ୍ଗିଳା କରି ହେପାଜତ୍ କରିବାର କୌଣସି ଯୁକ୍ତି ନାହିଁ । ଏକ ବିଦେଶୀ ଶାସନରେ ତାହା ସମ୍ଭବ ହୋଇଥିଲା । ଦେଶ ସ୍ୱାଧୀନ ହେଲା ପରେ ଏଇ ଯୁକ୍ତି-ବିରୁଦ୍ଧ ସଂସ୍ଥାର ରହିବାର କୌଣସି କାରଣହିଁ ନାହିଁ । ଆମକୁ ଇଂଲଣ୍ଡ ଓ ଆମେରିକା ପରି ସବୁ ଶିକ୍ଷାନୁଷ୍ଠାନକୁ ଲୋକଙ୍କ ହାତକୁ ଛାଡ଼ି ଦେବାକୁ ହେବ, ଯାହାକି ଡିମୋକ୍ରାସି ବା ଗଣତନ୍ତ୍ରଭାବରେ ଅଭିବର୍ଦ୍ଧନପାଇଁ ଏକାନ୍ତ ଦରକାର । ନଚେତ୍ କମ୍ୟୁନିଷ୍ଟ୍ ଶାସିତ ଦେଶପରି ସବୁ ଶିକ୍ଷାନୁଷ୍ଠାନଗୁଡ଼ିକୁ ଏକାନ୍ତରେ ସରକାରୀ କରିବାକୁ ହେବ । ଏହା କିନ୍ତୁ ପଥ ତିଆରି କରିଦେବ

ଭବିଷ୍ୟତ୍‌ର ଏକଛତ୍ରବାଦପାଇଁ । ତେଣୁ ଲୋକ ଓ ଲୋକପ୍ରତିନିଧି ସରକାର ଦୁଇଟିରୁ ଗୋଟାକୁ ବାଛିନେବା ଉଚିତ । ଲୋକ ଓ ଲୋକ ପ୍ରତିନିଧି ସରକାର ଦୁଇଟି ପରସ୍ପର ବିରୋଧୀ ଘଟଣା, ଏଇ ମାରାତ୍ମକ ଭାବକୁ ଦେଶରୁ ତୁରନ୍ତ ଲୋପ କରିବା ଉଚିତ ।

## ସିଲାବସ୍, ଇନ୍‌ସ୍ପେକ୍ସନ୍ ଓ ପରୀକ୍ଷା –

ଏ ଦେଶର ଶିକ୍ଷା ବିଭାଗ ବର୍ତ୍ତମାନ ଏକାଧାରରେ ବିପୁଳ ଓ ଜଟିଳ । ଅଜସ୍ର ଟଙ୍କା ବ୍ୟୟ ମଧ୍ୟ ହେଉଛି । କିନ୍ତୁ କାମ କ'ଣ ହେଉଛି ? ଏ ଦେଶରେ ଡି.ପି.ଆଇ.ର କାମ ହୁଏତ କେବଳ ଶିକ୍ଷକମାନଙ୍କୁ ଟ୍ରାନ୍ସଫର୍ କରିବା, ଆଉ କାରକୁର-ରୋଲ୍ ଲେଖିବା, ଇନ୍‌ସ୍ପେକ୍ଟରମାନଙ୍କ କାମ କେବଳ ଡି.ପି.ଆ.ଇ.କି ରିପୋର୍ଟ ଓ ଷ୍ଟାଟିଷ୍ଟିକ୍‌ସ ଯୋଗେଇବା । ଏଇଟା ହେଲା ସାମ୍ରାଜ୍ୟ-କୁଶଳ ସଂସ୍ଥା, ଯାହା ବ୍ରିଟିଶ୍ ତାଙ୍କ ସୁବିଧାପାଇଁ ତିଆରି କରିଥିଲେ । କିନ୍ତୁ ଯେକୌଣସି ସଭ୍ୟ ଦେଶକୁ ଯାଅ ଦେଖିବ, ଡି.ପି.ଆଇ. ଓ ଇନ୍‌ସପେକ୍ଟରମାନେ ଆଦ୍ୟ, ମଧ୍ୟ ଓ ଅନ୍ତରେ କେବଳହିଁ ଶିକ୍ଷାବିତ୍ ଓ ସେମାନେ ଜଣେ ଜଣେ ମହତୀଭୂତ କିରାଣିର କାମ ନ କରି, ଏଡୁକେସନିଷ୍ଟ ଭାବରେହିଁ ବ୍ୟସ୍ତ । ଏ ଦେଶରେ ଶାସକଗଣ ଯଦି ଡିମୋକ୍ରାସିର ଅଭିବର୍ଦ୍ଧନ ଚାହାନ୍ତି, ତେବେ ଇଂଲଣ୍ଡ ପରି ସ୍କୁଲ୍‌ଗୁଡ଼ିକର ଆଭ୍ୟନ୍ତରୀଣ ବ୍ୟବସ୍ଥା ଏକାନ୍ତଭାବରେ ହେଡ୍‌ମାଷ୍ଟର ଓ ସ୍ଥାନୀୟ ପ୍ରତିନିଧିଙ୍କ ହାତରେ ଛାଡ଼ିଦେଇ କେବଳ ଚାରୋଟି ଅଧିକାର ହାତରେ ରଖନ୍ତୁ–ପାଠ୍ୟକ୍ରମ (ପାଠ୍ୟପୁସ୍ତକ୍ ନୁହେଁ), ପରୀକ୍ଷା, ପରିଦର୍ଶନ ଓ ପାଣ୍ଠି-ପରିବେଷଣ ।

ଆମ ଦେଶରେ ପାଠ୍ୟପୁସ୍ତକ ଏକ ଜାତୀୟ ସ୍କାଣ୍ଡାଲ୍‌ରେ ପରିଣତ ହେଲାଣି । 'କୀ' ଓ ନୋଟ୍‌ବୁକ୍‌ର ପ୍ରସାର ମଧ୍ୟ ଆଉ ଏକ ପରିପୂରକ ସ୍କାଣ୍ଡାଲ୍ । ଇଂଲଣ୍ଡ ପ୍ରଭୃତି ଦେଶରେ ପରୀକ୍ଷା ଏକାନ୍ତଭାବରେ ବିଷୟ ଉପରେ ହୁଏ, ନିର୍ଦ୍ଦିଷ୍ଟ ବହି ଉପରେ ହୁଏନା । ତେଣୁ ସେଠି ଟେକ୍‌ଷ୍ଟ-ବୁକ୍‌ଟା ଉପରେ ଏତେ ଦୃଷ୍ଟି କାହାର ନଥାଏ । ନୋଟ୍‌ବୁକ୍ ମଧ୍ୟ କୌଣସି କାମରେ ଆସିବନି । କାରଣ ଶିକ୍ଷା ବିଭାଗ ପ୍ରତ୍ୟେକ ବିଷୟ ଉପରେ ପୁଙ୍ଖାନୁପୁଙ୍ଖ ସିଲାବସ୍ ତିଆରି କରିଦିଅନ୍ତି ଓ ସେଇ ଅନୁସାରେ ପରୀକ୍ଷା ଚଳାନ୍ତି । ତେଣୁ ଶିକ୍ଷକ କାହାର ବହି ବାଛିଲା ସେ ଦାୟିତ୍ୱ ପୂରାପୂରି ତା'ର । ଶିକ୍ଷକଙ୍କର କଷଟି ହେଉଛି ଠିକ୍ ସିଲାବସ୍ ମାନଦଣ୍ଡରେ ସରକାରୀ ପରୀକ୍ଷା । ଏଇ ଯୋଗୁ ସେ ଦେଶରେ ପ୍ରାଇମେରୀ ସ୍କୁଲ୍‌ଟିର ପ୍ରଧାନଶିକ୍ଷକର ମଧ୍ୟ, ତା'ର ଆସିଷ୍ଟାଣ୍ଟ ଓ ଟେକ୍‌ଷ୍ଟବୁକ୍ ବାଛିବାର ଓ ଅନ୍ୟାନ୍ୟ ଆଭ୍ୟନ୍ତରୀଣ ବ୍ୟବସ୍ଥାପାଇଁ ପରିପୂର୍ଣ୍ଣ ଅଧିକାର ରହେ । ଫଳରେ ଶିକ୍ଷା ଓ ବିଦ୍ୟା ସ୍ୱାଭାବିକଭାବରେ ତଳୁ ବଢ଼ିଉଠେ । ଏ ଦେଶରେ ଠିକ୍ ଓଲଟା ରୀତିରେ, ମାଷ୍ଟ୍ର ଉପରେ ତା ନିଜର ଦରମା, ଛାତ୍ରର ଦରମା, ଟେକ୍‌ଷ୍ଟବୁକ୍, ଟ୍ରାନ୍ସଫର ଇତ୍ୟାଦି ସବୁଯାକ ଉପରୁ ଲଦିଦିଆଯାଉଛି, କୌଣସିଥିରେ ତା'ର କିଛି କହିବାର ଅଧିକାର ନାହିଁ । ବିଚିତ୍ର ତେଣୁ ଏ ଶିକ୍ଷା ବିଭାଗ । ବିଚାରା ଶିକ୍ଷକ ତେଣୁ କେବଳ ଯେତେବେଳେ ତା' ପେଟବ୍ୟଥା ସହିପାରୁନି, ସେତିକିବେଳେ ଟିକିଏ ପାଟିକରେ ଏ ଦେଶରେ – ଆଉ କେଉଁଥିରେ ପାଟିକଲେ, ଯେଉଁ ମୁଠାକ ପାଉଛି ସେତକ ବି ହରେଇବାର ଭୟ । ଯଦି ଶିକ୍ଷାର ପ୍ରକୃତ ବିକାଶ ଆମେ ଚାହୁଁ, ତେବେ ଆମକୁ ଶିକ୍ଷକକୁ ତା' ସ୍କୁଲ୍‌ରୂପକ ଛୋଟ ରାଜ୍ୟରେ ପୂରା ସ୍ୱାଧୀନତା ଦେବାକୁ ହେବ । ଡି.ପି.ଆଇ. ଓ ଇନ୍‌ସପେକ୍ଟର କେବଳ ରହିବେ ତାକୁ ଅର୍ଥ ଓ ଉପଦେଶରେ ସାହାଯ୍ୟ ଦେବାକୁ, ଡରେଇବାକୁ ନୁହେଁ ।

## ଭାରତର ଐତିହ୍ୟ ରକ୍ଷଣ –

ପ୍ରତ୍ୟେକ ଦେଶର ଶିକ୍ଷା ବ୍ୟବସ୍ଥା ଏକାନ୍ତରେ ହେବ ମଧ୍ଯ ଜାତୀୟ ବ୍ୟବସ୍ଥା । ଏହାର ଦୁଇଟି ଦିଗ । ଗୋଟିଏ ହେଉଛି, ଏକ ଜାତିର ସଂସ୍କୃତିର ଯାହା ଉତ୍କୃଷ୍ଟାଂଶ ତାହାକୁ ବଞ୍ଚେଇ ରଖିବାର ଦାୟିତ୍ୱ ଏକାନ୍ତରେ ସେ ଦେଶର ସ୍କୁଲ୍‌ଗୁଡ଼ିକର । ଭାରତର ବିଶିଷ୍ଟ ସଂସ୍କୃତି ସମଗ୍ର ବିଶ୍ୱର ନମସ୍ୟ । କିନ୍ତୁ କାହିଁ ତାହା ଆମର ସ୍କୁଲ୍ କଲେଜରେ ? କାହିଁ ଗୁରୁ-ଶିଷ୍ୟର ସେଇ ଗୌରବାବହ ସମ୍ପର୍କ, ଯାହା ସାରା ବିଶ୍ୱରେ ଆଲୋଚନାର ବସ୍ତୁ ହୋଇଛି ? କାହିଁ ବିଦ୍ୟା ପ୍ରତି ସେଇ ପରମ ଅନୁରାଗ ? ଆମର ପାଞ୍ଚହଜାର ବର୍ଷର ସଭ୍ୟତାରେ କେଉଁଠି ଥିଲା ବିଦ୍ୟା କହିଲେ ଠକିଠାକି ଖଣ୍ଡେ ସାର୍ଟିଫିକେଟ୍ କାଗଜ ପାଇବାର ପ୍ରଚେଷ୍ଟା ? ବିଦ୍ୟାନୁଷ୍ଠାନମାନଙ୍କରେ କାହିଁ ଅଛି ସେଇ ସରଳ ଜୀବନ ଓ ଉଚ୍ଚ ଚିନ୍ତା ?

ଏସବୁକୁ ବଞ୍ଚେଇବାପାଇଁ କିଛି ହେଲେ ଅଧିକା ଅର୍ଥ ଖର୍ଚ୍ଚ କରିବାକୁ ତ ପଡ଼ିବନାହିଁ । ଡି.ପି.ଆଇ. ଓ ଇନ୍‌ସ୍ପେକ୍ଟରମାନେ ଚାହିଲେ ଅନେକ ପରିମାଣରେ ଏସବୁ ସମ୍ଭବ ହୋଇଯାଆନ୍ତା । କିନ୍ତୁ ଦରକାର ତ ସ୍ୱୟଂ କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୋଣର ପରିବର୍ତ୍ତନ ।

ଜାତୀୟ ଶିକ୍ଷା ପଦ୍ଧତିର ଆଉ ଏକ ଦିଗ ହେଲା ଆମ ଜାତିର ସଂସ୍କୃତିରେ ଯାହା ଦୋଷ ବା ଅଭାବ ରହିଯାଇଛି, ଆମର ସ୍କୁଲ୍ ଜରିଆରେ ଆଗାମୀ ପୁରୁଷମାନଙ୍କଠାରେ ଯେପରି ସେ ସବୁ ଦେଖାନଯାଏ, ତା'ର ବ୍ୟବସ୍ଥା । ଆମର ବହୁ ଜାତୀୟ ଦୋଷ ନିଶ୍ଚୟ ରହିଛି, ନହେଲେ ଆମେ ହଜାରେବର୍ଷ ପରାଧୀନ ରହିଲେ କାହିଁକି ଓ ଆମେ ଏତେ ହୀନ, ଦରିଦ୍ର ହୋଇ ରହିଛେ ବା କାହିଁକି ? କାହିଁକି ଏ ଦେଶରେ ନାଗରିକ-ଭାବ ଓ ଦେଶାତ୍ମବୋଧ ଫୁଟିଉଠୁନି ? 'କାଷ୍ଟିଜିମ୍'ର ପ୍ରସାର କମିବା ପରିବର୍ତ୍ତରେ ବଢୁଛି କାହିଁକି ? ଏସମସ୍ତ ଜାତୀୟ ଦୋଷର ନିରାକରଣ କିଏ କରିବ, କେଉଁ ଅନୁଷ୍ଠାନରେ ହେବ ? ଚାହଁ ଜାପାନକୁ, ଚାହଁ ସୋଭିଏଟ୍ ରୁଷିଆକୁ ଓ ଉତ୍ତର ପାଅ ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ଦେଇ କିପରି ଯାଦୁକ୍ରିୟା ପରି ନୂତନ ଜାତି ଗଢ଼ାହୋଇପାରେ । ସୋଭିଏଟ୍ ରୁଷିଆର ପ୍ରତି ବିଦ୍ୟାନୁଷ୍ଠାନରେ ଛାତ୍ରମାନଙ୍କର ଅବଶ୍ୟ କର୍ତ୍ତବ୍ୟ କେତେକ ନିୟମ ଯେପରି ଝୁଲେଇ ଦିଆଯାଇଥାଏ ଓ ତାହା ଅକ୍ଷରେ ଅକ୍ଷରେ ପାଳନ କରାଯାଏ ଆମକୁ ସେହିପରି କରିବାକୁ ହେବ । ପ୍ରତ୍ୟେକ ଶିକ୍ଷକ ଓ ପ୍ରଧାନଶିକ୍ଷକ ଆଗରେ ଆମକୁ ପରୀକ୍ଷାର ସାର୍ଟିଫିକେଟ୍‌କୁ ଆଦର୍ଶ ନକରି, ଏକ ନୂଆ ଜାତିକୁ ଆଦର୍ଶରୂପେ ଧରି ରଖିବାକୁ ହେବ । ଅଶୋକଙ୍କ ଧର୍ମମହାମାତ୍ରମାନଙ୍କ ପରି ଆମର ଡି.ପି.ଆଇ. ଓ ଇନ୍‌ସ୍ପେକ୍ଟରମାନଙ୍କର କାମ ହେବ ଆମର ସହସ୍ର ସହସ୍ର ସ୍କୁଲ୍ ପ୍ରାଙ୍ଗଣରେ ଏକ ନୂତନ ଜାତି କିପରି ଗଢ଼ିଉଠୁଛି, ତାହା ଦେଖିବା । ଏହାଠାରୁ ଏମାନଙ୍କର ବଡ଼ କର୍ତ୍ତବ୍ୟ ବା ବଡ଼ ଗୌରବ କଣ ଥାଇପାରେ ?

## ସଂସ୍କାର ନୁହେଁ, ବିପ୍ଳବ –

ସାମାନ୍ୟ ଏପଟ ସେପଟ କରିଦେଇ ଶିକ୍ଷାର ବିପ୍ଳବ ହେଲା ବୋଲି ଯେଉଁ ଚିତ୍କାର ଉଠୁଛି, ତା' ପ୍ରତି ଆମକୁ ସାବଧାନ ହେବାକୁ ହେବ । ଚାରିବର୍ଷକୁ କଲେଜପାଠ ଯାହା ଥିଲା ୨+୨,

ତାକୁ ୧ +୩ କରିଦେଲେ ହୋଇଗଲା ବିପ୍ଳବ ? ଇଣ୍ଟରମିଡ଼ିଏଟ୍ ପରୀକ୍ଷା ଅନେକ କାମରେ ଆସୁଥିଲା । ତାକୁ ଦି' ଫଡ଼ା କରିଦେଲେ ହେଲା ବିପ୍ଳବ । ପୁଣି ଫାଳେ ତ ଗଲା ବି.ଏ.କୁ, ବାକି ଫାଳକ କଲେଜ ଓ ହାଇସ୍କୁଲ୍ ଉଭୟତ୍ର ପଢ଼ାଯିବ, ଏଇ ହେଲା ଏକ ବିରାଟ ସଂସ୍କାର । ବର୍ତ୍ତମାନ, ସବୁ ହାଇସ୍କୁଲ୍‌ର ପିଲେ ମାଟ୍ରିକ୍ ପରୀକ୍ଷା ପରେ ଯେମିତି ଇଣ୍ଟର୍ ଫାଷ୍ଟ୍ ଇୟର୍‌ରେ ଯାଇ ନାମ ଲେଖାଉଥିଲେ, ସେ ବ୍ୟବସ୍ଥା ତ ରହିଲା । ତେଣୁ ହାଇସ୍କୁଲ୍‌ରେ ରଥର ପଞ୍ଚମ ଚକ୍ରପରି ଏ ଅବ୍ୟାପାରର ହେତୁ କଣ, କାହିଁକି ବା ସେଥିଲାଗି ଅଯଥା ଗୁଡ଼ାଏ ବ୍ୟୟ, କିଛିହିଁ ତ ବୁଝିହେଉନି ! କଲେଜରେ ଯଦି ଫାଷ୍ଟ୍ ଇୟରର ବ୍ୟବସ୍ଥା ରହିଲା, ପିଲେ ବର୍ଷଟାଏ ହେଉପଛେ, କଲେଜରେ ନପଢ଼ି ସେଇ ପୁରୁଣା ହାଇସ୍କୁଲ୍‌ରେ ପଢ଼ିବେ କାହିଁକି ? ଅଥଚ ଏଇ ଅଯଥା ପରିବର୍ତ୍ତନକୁ ହାଏର୍ ସେକେଣ୍ଡାରୀ ନାମରେ ବିରାଟ ଚିତ୍କାର ଓ ପ୍ରଚାର ।

## ଆଡଭାଇଜରି ବୋର୍ଡ –

ମୋଟ ଉପରେ , ଶିକ୍ଷା ବିଭାଗରେ ଶୈକ୍ଷିକ ବ୍ୟାପାରରେ ଅତ୍ୟନ୍ତ ଅରାଜକ ବ୍ୟବସ୍ଥା ଦେଖାଯାଉଛି । ସମଗ୍ର ଦେଶର ଶିକ୍ଷା ବ୍ୟବସ୍ଥାକୁ ଏକମୁଖୀ କରି ଗୋଟିଏ ମହାନ୍ ଆଦର୍ଶରେ ଗଢ଼ିବାପାଇଁ, ଦେଶରେ ଏକାନ୍ତ ଆବଶ୍ୟକ ସର୍ବଶ୍ରେଣୀର ଶିକ୍ଷାବିତ୍ ଓ ଚିନ୍ତାଶୀଳ ଲୋକଙ୍କର ଏକ ମିଳନ-ସଂସ୍ଥା, ଯେଉଁଠାରେ ଶିକ୍ଷା ସମସ୍ୟାଗୁଡ଼ିକ ନିର୍ଭୀକ ଓ ନିରପେକ୍ଷଭାବେ ବିଚାର ହୋଇପାରିବ ଓ କର୍ତ୍ତୃପକ୍ଷ ଯାହାର ବିଚାରକୁ ସମ୍ମାନ ଦେବେ । ବମ୍ବେ ପ୍ରଭୃତି ଉନ୍ନତ ରାଷ୍ଟ୍ରମାନଙ୍କରେ ଏପରି ଆଡଭାଇଜରି ବୋର୍ଡ ଅଛି ଓ ତାହା ଶିକ୍ଷାମନ୍ତ୍ରୀ ଓ ଶିକ୍ଷା ବିଭାଗ ଭିତରେ ସଂଯୋଜକର କାମ କରେ । ଖୁବ୍ ଉଚ୍ଚକୋଟୀର ଶିକ୍ଷାବିତ୍ ପ୍ରାୟ ଏପରି ବୋର୍ଡର ସେକ୍ରେଟାରୀ ହୋଇଥାନ୍ତି, ଡିପାର୍ଟମେଣ୍ଟର କୌଣସି ଅଫିସିଆଲ୍ ନୁହେଁ । ଅଫିସିଆଲ୍ ହେଲେ ସ୍ୱାଧୀନ ମତର ପ୍ରକାଶ ଓ ବିକାଶ ଅସମ୍ଭବ । ସରକାର ଏହିପରି ଏକ ବୋର୍ଡ ଓଡ଼ିଶାପାଇଁ ଗଢ଼ି ପରୀକ୍ଷା କରି ଦେଖିପାରନ୍ତି * ।

---

* ଏଇ ଲେଖା ପ୍ରକାଶ ପାଇବାର ଅଳ୍ପଦିନ ପରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ୩୦ । ୪୦ ଜଣ ମେମ୍ବରଙ୍କୁ ନେଇ ପ୍ରକୃତରେ ଏକ ଆଡଭାଇଜରି ବୋର୍ଡ ଗଢ଼ିଲେ । କିନ୍ତୁ ପ୍ରସ୍ତାବକ ଏଇ ଲେଖକର ତହିଁରେ ସ୍ଥାନ ନଥିଲା । ବର୍ତ୍ତମାନ ବି ନାହିଁ ।

# ବିଦ୍ୟାର୍ଥୀ ଓ ବିଦ୍ୟାଳୟର ଆଦର୍ଶ

ଶିକ୍ଷା ଓ ସ୍କୁଲ୍‌ର କଥା ପଡ଼ିଲେଇ ଆମର ନେତାଏ, ଶିକ୍ଷା ବିଭାଗର ହାକିମ-ସମ୍ପ୍ରଦାୟ ଓ ଶିକ୍ଷକମାନେ ମଧ୍ୟ ବେଶ୍ ଆକାଶିଆ କଥାସବୁ କହିଥାନ୍ତି, ଯା'ର କୌଣସି ହେଲେ ଚିହ୍ନ କାର୍ଯ୍ୟକ୍ଷେତ୍ରରେ ଦେଖାଯାଏନା, ବରଂ ଦେଖାଯାଏ ଠିକ୍ ବିପରୀତ କର୍ମ । ତେଣୁ ଏ ଜାତିର କ୍ରମ ଅଧୋଗତି ଆଖିଆଗରେ ଘଟିଯାଉଛି, କେହି ରୋଧ କରିପାରୁନାହାନ୍ତି ।

ଏଇ ଲେଖକ ଯେତେବେଳେ ସମ୍ବଲପୁର କଲେଜର ପ୍ରିନ୍ସପାଲ୍ ଥିଲା, ସେତେବେଳେ ସେ ଥରେ ଭାବିଥିଲା ଯେ, ଶିକ୍ଷାବିଭାଗ ଯାହାହେଉ ପଛେ, ଦେଶର ନେତାମାନେ ଯାହା ହୁଅନ୍ତୁ ପଛେ, ଏପରିକି ନିଜେ ପ୍ରିନ୍ସପାଲ୍ ଯାହା ହୁଅନ୍ତୁ ପଛେ, ଶତ ଶତ କିଶୋର କିଶୋରୀ, ଯିଏ ତା' ଦେଶର ପରମ ଭବିଷ୍ୟତ୍ ଓ ତା' ନିକଟରେ ନ୍ୟାସରୂପେ ରଖେଇ ଦିଆହୋଇଛନ୍ତି, ଯାହାଙ୍କର କର୍ମର ଗୁଣ ଓ ଶକ୍ତି ଉପରେ ଆଗାମୀ ଜାତିର ମାନ ନିର୍ଭର କରେ, ତାଙ୍କୁ ଜୀବନର କେତୋଟି ମୋଟାମୋଟି ଆଦର୍ଶ ଅନ୍ତତଃ ଶୁଣାଇଦେବା ତାଙ୍କର ଉଚିତ ନୁହେଁ କି ? ପାଞ୍ଚଶତ ପିଲା ଭିତରୁ ବର୍ଷକେ ଜଣେ ପିଲାର ଚିତ୍ତରେ ଯଦି ତାହା ସ୍ଥିର ସ୍ଥାନ ଅଧିକାର କରେ, ତେବେ ବି ଦେଶର ଭବିଷ୍ୟତ୍ ଆଶଙ୍କାଶୂନ୍ୟ ବୋଲିବାକୁ ହେବ । ଏହା ଭାବି ଭାବି ମୁଁ କେତେଗୁଡ଼ିଏ ମାକ୍‌ସିମ୍ ବା ଆଦର୍ଶବାଣୀ ସ୍ଥିରକରି ମେହେର କଲେଜର କାନ୍ଥରେ ଝୁଲାଇ ରଖିଥିଲି, ସବୁପିଲେ ଯେପରି ତାହା ପଢ଼ିବାକୁ ପାଇବେ । ଏଗୁଡ଼ିକ କଲେଜର କାଲେଣ୍ଡରରେ ମଧ୍ୟ ଛପାଇଦେଇଥିଲି । ଏବେ ସେ ସବୁ ଅଛି କି ନାହିଁ ମୁଁ ଜାଣେନା ।

ଲେଖକ ଏପରି କରିସାରିଥିବାର ପ୍ରାୟ ବର୍ଷକ ପରେ , ସେ 'ସାଏନ୍‌ସ ଓ କଲଚର' ନାମକ ଜଣାଶୁଣା ମାସିକ ପତ୍ରରେ ଦେଖିବାକୁ ପାଇଲା ଯେ, ସୋଭିଏଟ୍ ରୁଷିଆର ପ୍ରତି ବିଦ୍ୟାନୁଷ୍ଠାନରେ ଠିକ୍ ମେହର କଲେଜର ମାକ୍ସିମ୍ ପରି ମାକ୍ସିମ୍ ସବୁ ଠିକ୍ ସେଇପରି କାନ୍ଥରେ ମାରି ଦିଆ ହୋଇଥାଏ—ପ୍ରତି ଶ୍ରେଣୀରେ । ସେ ଲେଖାଟି ରୁଷିଆରୁ ଫେରିଆସିଥିବା ଏକ ବିଖ୍ୟାତ ଭାରତୀୟ ବୈଜ୍ଞାନିକ ଉତ୍ସାହର ସହିତ ଲେଖିଥିଲେ । ଚିନ୍ତାର ଏଇ ସମତା ଦେଖି ଲେଖକର ଆନନ୍ଦ ହେବାର କଥା । କିନ୍ତୁ 'ସାଏନ୍ସ ଓ କଲଚର୍'ର ସେ ସଂଖ୍ୟା ମୋଠି ନାହିଁ, କାରଣ ସେ କଲେଜର ବସ୍ତୁ । ବୈଜ୍ଞାନିକ-ଲେଖକଙ୍କ ନାମ ମଧ୍ୟ ଭୁଲିଯାଇଛି ।

ଏବେ କୌଣସି ଏକ ପୁରୁଣା ବଙ୍ଗଳା ମାଗାଜିନ୍‌ର ପୃଷ୍ଠା ଲେଉଟାଉ ଲେଉଟାଉ ହଠାତ୍ ଦେଖିଲି, କଲିକତା ବିଶ୍ୱବିଦ୍ୟାଳୟର ପୂର୍ବତନ ଭାଇସ୍‌ଚାନସେଲର୍ ଓ କଲିକତା ହାଇକୋର୍ଟ୍‌ର ପ୍ରସିଦ୍ଧ ଜଜ୍ ଶ୍ରୀଯୁକ୍ତ ଶମ୍ଭୁନାଥ ମୁଖର୍ଜୀ, ସୋଭିଏଟ୍ ବିଦ୍ୟାପୀଠମାନଙ୍କର ଏଇ ମାକସିମ୍‌ଗୁଡ଼ିକୁ ନେଇ ଏକ ଲେଖା ଲେଖିଛନ୍ତି, ସେଇ ଆଦର୍ଶ ଏ ଦେଶରେ ସୁପ୍ରଚାରିତ ହେଉ ଏଇ ଉଦ୍ଦେଶ୍ୟରେ ।

ମୋର ଆଶା ଓଡ଼ିଶାର ବିଦ୍ୟାଳୟଗୁଡ଼ିକରେ ମଧ୍ୟ ଏକ ଉନ୍ନତ, ନିର୍ଦ୍ଦୋଷ, ନିପୁଣ, ଦେଶାତ୍ମବୋଧକ, ଜ୍ଞାନପୁଷ୍ଟ ନାଗରିକତା ବିକଚଭାବରେ ବିକଶିତ ହେଉ । ଏଥିପାଇଁ ପ୍ରତ୍ୟେକ

ବିଦ୍ୟାପୀଠରେ ଦୈନନ୍ଦିନ ଜୀବନ, ଆଦର୍ଶରେ ଏକ ଉନ୍ନତ, ଅକଳୁଷ ବାୟୁମଣ୍ଡଳ ଭିତରେ ରହିବା ଉଚିତ । ସେଇ ଦିଗରେ, କେତେଗୁଡ଼ିଏ ମାକ୍‌ସିମ୍ ବା ଆଦର୍ଶ-ବାଣୀ ବରାବର ଛାତ୍ର ଓ ଶିକ୍ଷକମାନଙ୍କ ସମ୍ମୁଖରେ ଠିଆରହିଥିଲେ, ବେଶ୍ ସାହାଯ୍ୟକାରୀ ହେବ । ଏଇ ଆଶାରେ, ଦେଶର ଶିକ୍ଷକମାନଙ୍କ କୌତୂହଳ (ଓ କାହିଁ କାହିଁ ଅନୁକରଣ) ପାଇଁ ସୋଭିଏଟ୍ ରୁଷିଆର ବିଦ୍ୟାନୁଷ୍ଠାନ-ମାନଙ୍କର ଓ ମେହେର କଲେଜର ଆଦର୍ଶ-ବାଣୀଗୁଡ଼ିକ ଏଠାରେ ପ୍ରକାଶିତ କରାଗଲା ।

## ସୋଭିଏଟ୍ ବିଦ୍ୟାନୁଷ୍ଠାନରେ ଛାତ୍ର-କର୍ତ୍ତବ୍ୟ –

[ଏବେ ଅନେକ ଉଗ୍ର ଆଧୁନିକପନ୍ଥୀମାନଙ୍କର, କଥାରେ କଥାରେ, ରୁଷିଆର ଉଦାହରଣ ଦେବାର ଦେଖାଯାଏ । ଛାତ୍ରମାନେ ସାଧାରଣତଃ ରୁଷିଆର ପ୍ରଶଂସା ଉଠେଇଥାନ୍ତି; କିନ୍ତୁ ଅନେକଙ୍କର ଧାରଣା ହୁଏତ ରୁଷିଆରେ ଶିକ୍ଷାଦାନ ଓ ଶିକ୍ଷାଗ୍ରହଣ ବିଷୟରେ ଯଥେଷ୍ଟ ସ୍ୱେଚ୍ଛାଚାରର ପ୍ରଶ୍ରୟ ଦିଆଯାଇଥାଏ । ଏକଥା ଆଦୌ ସତ୍ୟ ନୁହେଁ । ରୁଷିଆରେ ଅତ୍ୟନ୍ତ କଠୋର ବିଧି-ନିଷେଧ ଭିତରେ ବିଦ୍ୟାଚର୍ଚ୍ଚା କରିବାକୁ ପଡ଼େ । ମୁଁ ରୁଷ୍ ବିଶେଷଜ୍ଞଙ୍କର ବିଖ୍ୟାତ ଗ୍ରନ୍ଥରୁ ରୁଷିଆର ଛାତ୍ରମାନଙ୍କର ପାଳନୀୟ କର୍ତ୍ତବ୍ୟର ଏକ ତାଲିକା ଦେଉଛି ।—ଡକ୍ଟର ଶମ୍ଭୁନାଥ ମୁଖୋପାଧ୍ୟାୟ, ମାସିକ ବସୁମତୀ, ପୌଷ, ୧୩୬୪ ]

୧ । ଶିକ୍ଷିତ ଓ ସଂସ୍କୃତିସମ୍ପନ୍ନ ନାଗରିକ ହେବା ଓ ନିଜର ସର୍ବଶ୍ରେଷ୍ଠ ଅବଦାନ ସୋଭିଏଟ୍ ପିତୃଭୂମିକୁ ଦେଇଯିବାପାଇଁ, ଦୃଢ଼ ଅଧ୍ୟବସାୟ ସହିତ ଜ୍ଞାନ ଅର୍ଜନ କରିବାକୁ ହେବ ।

୨ । ଖୁବ୍ ପରିଶ୍ରମ କରି ପଢ଼ାପଢ଼ି କରିବାକୁ ହେବ ଏବଂ ନିୟମିତଭାବେ ଓ ଠିକ୍ ସମୟରେ ପାଠାଭ୍ୟାସ କରିବାକୁ ହେବ ।

୩ । କୌଣସିପ୍ରକାର ଆପତ୍ତି ଅଭିଯୋଗ ନକରି, ବିନା ବାକ୍ୟବ୍ୟୟରେ ପ୍ରଧାନ ଓ ଅନ୍ୟାନ୍ୟ ଶିକ୍ଷକମାନଙ୍କର ଆଦେଶ ପାଳନ କରିବାକୁ ହେବ ।

୪ । ପ୍ରୟୋଜନୀୟ ପାଠ୍ୟପୁସ୍ତକ, ଲେଖିବାର ସରଞ୍ଜାମ ଆଦି ନେଇ ସ୍କୁଲ୍ ଆସିବାକୁ ହେବ ଏବଂ ଶିକ୍ଷକ କ୍ଲାସ୍‌କୁ ଆସିବା ଆଗରୁ ପାଠ ଗ୍ରହଣପାଇଁ ସବୁ ପ୍ରକାରେ ପ୍ରସ୍ତୁତ ରହିବାକୁ ହେବ ।

୫ । ପରିଷ୍କାର ପରିଚ୍ଛନ୍ନ ହୋଇ, କେଶ ସଜ୍ଜିତ କରି, ଫିଟ୍‌ଫାଟ୍ ପୋଷାକ ପରିଧାନ କରି ସ୍କୁଲ୍‌କୁ ଆସିବାକୁ ହେବ ।

୬ । ଡେସ୍କଟିକୁ ପରିଷ୍କୃତ, ପରିଚ୍ଛନ୍ନ ରଖିବାକୁ ହେବ ।

୭ । ଘଣ୍ଟା ବାଜିବାର ଆଗେ କ୍ଲାସ୍‌ରେ ନିଜ ଜାଗାରେ ବସିବାକୁ ହେବ ଏବଂ ପଢ଼ାବେଳେ କ୍ଲାସ୍‌ରୁ ବାହାରିବା ଓ କ୍ଲାସ୍‌କୁ ପଶିବାକୁ ହେଲେ, ଶିକ୍ଷକଙ୍କର ଅନୁମତି ନେବାକୁ ହେବ ।

୮ । ଶିକ୍ଷକ ଯେଉଁ ସମୟରେ ପଢ଼ାଉଥିବେ, ସେତେବେଳେ ଠିକ୍ ସିଧା ଭାବରେ ବସିବାକୁ ହେବ, ଡେସ୍କ ଉପରେ କହୁଣି ଦେଇ ଯଥେଚ୍ଛଭାବରେ ବସିବା ଚଳିବନି ଏବଂ ଶିକ୍ଷକଙ୍କର କଥାକୁ ଏକମନରେ ଶୁଣିବାକୁ ହେବ । କୌଣସି ସମୟରେ ଯାହା ପଢ଼ାଯାଉଛି, ତା ଛଡ଼ା ଅନ୍ୟ କୌଣସି କଥା ଚଳିବନାହିଁ ।

୯ । ଶିକ୍ଷକ ବା ପ୍ରଧାନଶିକ୍ଷକ କ୍ଲାସ୍‌ରେ ପଶିଲାବେଳେ ଓ କ୍ଲାସ୍‌ରୁ ଗଲାବେଳେ, ଠିଆ ହୋଇ ନମସ୍କାର ଜଣାଇବାକୁ ହେବ ।

୧୦ । ଠିକ୍ ସିଧାହୋଇ ଠିଆହୋଇ ପ୍ରଶ୍ନର ଉତ୍ତର ଦେବାକୁ ହେବ ଏବଂ ଶିକ୍ଷକ କହିଲେ ଯାଇ ବସିବାକୁ ହେବ । କୌଣସି ପ୍ରଶ୍ନ କରିବାକୁ ବା କାହାର ଉତ୍ତର ଦେବାକୁ ହେଲେ, ହାତ ଟେକିବାକୁ ହେବ ।

୧୧ । ହୋମ୍-ୱାର୍କ୍ ବା ସ୍କୁଲ୍‌ମାଷ୍ଟ୍ରେ ଯାହା ଘରେ କରିଆଣିବାକୁ ଦେଇଥିବେ, ତାହା ନିର୍ଭୁଲ୍‌ଭାବରେ ଖାତାରେ ଲେଖାହୋଇଥିବ ଓ ଘରେ ପିତାମାତାଙ୍କୁ ତାହା ଦେଖାଇଆଣିବାକୁ ହେବ ।

୧୨ । ପ୍ରଧାନ ଓ ଅନ୍ୟାନ୍ୟ ଶିକ୍ଷକମାନଙ୍କ ପ୍ରତି ସମ୍ମାନ ଦେଖାଇବାକୁ ହେବ । ବାଟରେ କୌଣସି ଶିକ୍ଷକଙ୍କ ସହିତ ଦେଖାହେଲେ, ମୁଣ୍ଡ ନୁଆଁଇ ନମସ୍କାର ଜଣାଇବାକୁ ହେବ ।

୧୩ । ଯେଉଁମାନେ ବୟସରେ ବଡ଼, ସେମାନଙ୍କ ସହିତ ନମ୍ର ବ୍ୟବହାର କରିବାକୁ ହେବ । ସ୍କୁଲ୍‌ରେ, ବାଟରେ ବା ଅନ୍ୟ ଯେକୌଣସି ପ୍ରକାଶ୍ୟ ସ୍ଥାନରେ ଭଦ୍ର ଓ ନମ୍ର ଆଚରଣ କରିବାକୁ ହେବ ।

୧୪ । କାହାକୁ ହେଲେ କଠୋର ଭାଷଣ କରିବନାହିଁ କି ଗାଳିଦେବନାହିଁ । ଧୂମପାନ କରିବନାହିଁ ବା ଜୁଆ ଖେଳିବନାହିଁ ।

୧୫ । ସ୍କୁଲ୍-ସମ୍ପତ୍ତିର, ପୁଣି ନିଜର ଓ ସହପାଠୀମାନଙ୍କର ଜିନିଷ ପ୍ରତି ଆଦରର ସହିତ ଯତ୍ନ ନେବ ।

୧୬ । ବୃଦ୍ଧ ଓ ଶିଶୁ, ଦୁର୍ବଳ ଓ ରୁଗ୍ଣ ଲୋକମାନଙ୍କ ପ୍ରତି ମନୋଯୋଗ ଦେବାକୁ ହେବ । ସେମାନଙ୍କ କଥା ଭାବିବ, ସେମାନଙ୍କୁ ବାଟ ଛାଡ଼ିଦେବ ଏବଂ ଯେତେପ୍ରକାର ସମ୍ଭବ, ସେମାନଙ୍କୁ ସାହାଯ୍ୟ କରିବ ।

୧୭ । ବାପମା'ଙ୍କ କଥା ଶୁଣିବାକୁ ହେବ ଏବଂ ସେମାନଙ୍କୁ ଓ ଛୋଟ ଭାଇଭଉଣୀଙ୍କୁ ସାହାଯ୍ୟ କରିବ ।

୧୮ । ନିଜର ଘର, ଶେଯ, ପୋଷାକପତ୍ର, ଜୋତା ଇତ୍ୟାଦି ସଜେଇ, ଫିଟ୍‌ଫାଟ୍ ଭାବରେ ରହିବ।

୧୯ । ଛାତ୍ର-କାର୍ଡ୍‌ଟି ଯତ୍ନର ସହିତ ରଖିବ । ପ୍ରଧାନ ବା ଅନ୍ୟ ଯେକୌଣସି ଶିକ୍ଷକ ମାଗିଲା ମାତ୍ରେ ତାହା ଦେଖାଇବ ।

୨୦ । ସ୍କୁଲ୍ ଓ କ୍ଲାସ୍‌ର ସମ୍ମାନକୁ ନିଜର ସମ୍ମାନପରି ରକ୍ଷା କରିବ ।

ଏଇସବୁ ନିୟମ ଅମାନ୍ୟ କଲେ ଶାସ୍ତି ମିଳିବ । ଚରମ ଶାସ୍ତି ହେଉଛି ସ୍କୁଲ୍‌ରୁ ବହିଷ୍କରଣ ।

**ବର୍ତ୍ତମାନ ମେହେର କଲେଜର ଆଦର୍ଶ-ବାଣୀ ନିମ୍ନରେ ଦିଆଗଲା—***

**ବାଳକମାନଙ୍କ ନିମନ୍ତେ—**

୧ । ଜନନୀ ଭାରତ ଆଶାକରେ ଯେ, ତାର ପ୍ରତ୍ୟେକ ସନ୍ତାନ ନିଜ ନିଜ କର୍ତ୍ତବ୍ୟ ପାଳନ କରିବେ ।

* ପାଠକେ ମନେରଖିବେ ଯେ ସୋଭିଏଟ୍ ନୀତିଗୁଡ଼ିକ ସ୍କୁଲ୍‌ମାନଙ୍କପାଇଁ । ଏଇ ଲେଖକର ନୀତିଗୁଡ଼ିକ କଲେଜ ପିଲାଙ୍କପାଇଁ ଉଦ୍ଦିଷ୍ଟ ।

୨ । ଯେତେବେଳେ ତୁମକୁ ଅବସର ମିଳୁଛି, ଅସୁନ୍ଦରଭାବରେ ଗୋଳମାଳ ନକରି, ଚାଲିଯାଅ, ଲାଇବ୍ରେରି ବା ଲାବରେଟରିକୁ, ଯେଉଁଠାରେ ଜ୍ଞାନ-ସଂଗ୍ରହ କରିପାରିବ । କାରଣ, ତାହାହିଁ ତୁମକୁ ଜୀବନରେ ସାହାଯ୍ୟ କରିବ ।

୩ । ନୀରବତା ସକଳ ସଂସ୍କୃତିର ପ୍ରଥମ ସୋପାନ । ନୀରବରେହିଁ କାମ କରିଯାଅ ଓ ବୁଲାଚଲା କର ।

୪ । ସଭ୍ୟ ସାମାଜିକ ଜୀବନର ମୂଳପତ୍ତନ ହେଉଛି, ଅନ୍ୟ ପ୍ରତି ବିଚାରପ୍ରବଣ ହେବା । ସବୁବେଳେ ନିଜକୁ ଏଇସବୁ ପ୍ରଶ୍ନ ପ୍ରଚାର—ମୁଁ ଅନ୍ୟମାନଙ୍କର ମନରେ ଆଘାତ ଦେଉନାହିଁ ତ ? ମୁଁ ଅନ୍ୟମାନଙ୍କୁ ତାଙ୍କ କାମରେ ବାଧା ଆସିଲା ଭଳି କିଛି କରୁଛି କି ? ମୁଁ କାହା ପ୍ରତି କିଛି ଅନ୍ୟାୟ କରୁଛି କି ?

୫ । ସାଧାରଣତନ୍ତ୍ର ଭାରତର ଗୌରବବର୍ଦ୍ଧନପାଇଁ ତମେ ନିଜକୁ ନିଜଭାବରେ ଆଜିଠାରୁ ପ୍ରସ୍ତୁତ କର—ଏପରିକି ଉତ୍ତମ ମେହେନ୍ତର ଭାବରେ ମଧ୍ୟ ।

୬ । ପରସ୍ପରପ୍ରତି ଓ ଅଚିହ୍ନା ଲୋକଙ୍କ ପ୍ରତି ଭଦ୍ର ହୁଅ । ଶିକ୍ଷକମାନଙ୍କ ଆଗରେ ନମ୍ର ହୁଅ ।

୭ । କଲେଜରେ ଖରାପ ଛାତ୍ର ହୋଇ, ତମେ ଭାରତର ଭଲ ନାଗରିକ ହୋଇପାରିବ ବୋଲି ଆଶା କରନାହିଁ ।

୮ । ଯାହା କିଛି ସମସ୍ୟା ତମକୁ ଧନ୍ଦି ଦେଉଛି, ତାହାର ସମାଧାନ ପାଇଁ ତମେ ସିଧା ଜଣେ ଶିକ୍ଷକଙ୍କ ନିକଟକୁ ଯାଅ । ମନେରଖ ଯେ, ସେ ତମକୁ ନିର୍ଦ୍ଦେଶ ଓ ସାହାଯ୍ୟ ଦେବାପାଇଁ ହିଁ ଏଠାରେ ଅଛନ୍ତି ।

୯ । ଆମର ସାଧାରଣତନ୍ତ୍ର ତମଠାରୁ ଚତୁରତା ବା ଉଚ୍ଚ ଡିଗ୍ରୀ ଅପେକ୍ଷା, ଆଶା କରେ ତମର ସକଳ କର୍ମରେ ସାଧୁତା ଓ ନିପୁଣତା । ଯେକୌଣସି ଛୋଟ କାମଟି, ଯଦି ଖରାପ ଭାବରେ କରାଯାଏ, ତେବେ ତାହା ଯେକୌଣସି ବଡ଼ °ାମକୁ ବ୍ୟର୍ଥ କରିଦେବ ।

୧୦ । ବ୍ୟକ୍ତିଗତଭାବରେ ଭଦ୍ର ଓ ଗୋଷ୍ଠୀଭାବରେ ଶୃଙ୍ଖଳାଯୁକ୍ତ ହୁଅ ।

## ବାଳିକାମାନଙ୍କ ପାଇଁ –

୧ । ପ୍ରତ୍ୟେକ ଭାରତ-କନ୍ୟା ନିଜକୁ ପଚାରିବା ଉଚିତ "ସାଧାରଣତନ୍ତ୍ର ଭାରତକୁ ମୋର ଦାନ କ'ଣ ହେବ ?"

୨ । ମାତୃତ୍ୱହିଁ ନାରୀର ମହିମମୟ ବ୍ୟବସାୟ । ସ୍ୱାସ୍ଥ୍ୟ, ଚରିତ୍ର ଓ ଜ୍ଞାନର ଆହରଣ ଦେଇ ମାତୃତ୍ୱପାଇଁ ନିଜକୁ ପ୍ରସ୍ତୁତ କର ।

୩ । ଆମର ଜାତି ତମକୁ ତା'ର କୋଟି କୋଟି ଶିଶୁର ଶିକ୍ଷକଭାବରେ, ଦେଶର ବୀର ସୈନିକମାନଙ୍କର ଶୁଶ୍ରୂଷାକାରିଣୀଭାବରେ ଏବଂ କୋଟି କୋଟି ଗୃହର ରାଣୀଭାବରେ ଚାହେଁ । ଏଇ ତିନି ଆଦର୍ଶରୁ ଯେଉଁଟିକି ହେଲେ ବାଛିନେଇ, ସେଥିପାଇଁ ପ୍ରସ୍ତୁତ ହୁଅ ।

୪ । ବାଳକମାନଙ୍କ ସହିତ ଭାଇ-ଭଉଣୀ ପରି ବ୍ୟବହାର କର । ସେମାନଙ୍କୁ ତମର ଭୟ କରିବାର କୌଣସି କାରଣ ନାହିଁ । ଭୟ ବରଂ ତମଠାରୁ ଆସିବା ଉଚିତ ।

୫ । କେବଳ ଦେହ ଓ ମନରେ ଶୁଦ୍ଧ ରହିପାରିଲେହିଁ ତମେ ଜାତିକୁ ଶ୍ରେଷ୍ଠ ସେବା ଦେଇପାରିବ ।

୬ । ଚତୁର୍ଦ୍ଦିଗରେ ରୂପ, ପବିତ୍ରତା ଓ ସଂସ୍କୃତିର ଆଲୋକ ବିକିରଣ କରି ପ୍ରଦୀପ ପରି ଉଜ୍ଜ୍ୱଳ ରହ ।

୭ । ଯେଉଁ ବିବାହ, ଯୌତୁକ ଦାବି କରେ ତାକୁ ପଦାଘାତ କର । ଯେଉଁ ବିବାହରେ ତମେ ଦୋକାନର ଦ୍ରବ୍ୟ ପରି ବ୍ୟବହୃତ ହେବ, ତା'ଠାରୁ ଦେଶସେବାରେ ନିୟୋଜିତ କୁମାରୀବ୍ରତ ବହୁଗୁଣରେ ଶ୍ରେୟସ୍କର ନୁହେଁ କି ?

୮ । ନାରୀହିଁ ଜଗତରେ ପ୍ରକୃତ ସ୍ରଷ୍ଟା । ସେ କେବଳ ଜାତିର ସ୍ରଷ୍ଟା ନୁହେଁ, ସେଇହିଁ ସୃଷ୍ଟି କରେ କଳା, କବିତା, ନୃତ୍ୟ, ଗୀତ, ସାହିତ୍ୟ ଓ ଗୃହ । ନିଜକୁ ଏଇପରି ଏକ ପରମ ସୃଷ୍ଟିକ୍ରିୟାର କେନ୍ଦ୍ରରୂପେ କଳ୍ପନା କରିନିଅ ଏବଂ ସେ ଭୂମିକାପାଇଁ ତୁଚ୍ଛ ଗଳ୍ପ ବା କଳହରେ ସମୟ ନଷ୍ଟ ନ କରି, ସବୁବେଳେ କିଛି ସୁନ୍ଦର ଓ ଉପକାରୀ ବସ୍ତୁ ସୃଷ୍ଟି କରିବାରେ ଲାଗିଥାଅ ।

୯ । ସ୍ୱାସ୍ଥ୍ୟ ଓ ସାରଲ୍ୟହିଁ ପ୍ରକୃତ ସୌନ୍ଦର୍ଯ୍ୟ । ମହାର୍ଘ ବସନ ଭୂଷଣକୁ ପରିହାର କରିବ ।

୧୦ । ଜଣେ ନାରୀର କୋମଳ କରପଲ୍ଲବରେ ଜଣେ ପୁରୁଷର ସକଳ ଆଶା ଓ ପ୍ରେରଣା ନିହିତ । ସେହି ପରମ ବିଶ୍ୱାସ ଓ ଭରସାର ଯୋଗ୍ୟ କର ନିଜକୁ ।



# ଆଦର୍ଶ ହାଇସ୍କୁଲ୍

ଯୁକ୍ତରାଷ୍ଟ୍ର ଆମେରିକାର କାଲିଫୋର୍ଣ୍ଣିଆ ଷ୍ଟେଟ୍‌ର ସାନ୍‌ଫ୍ରାନ୍‌ସିସ୍କୋ ସହରରେ ଜର୍ଜ ୱାସିଂଟନ ହାଇସ୍କୁଲ୍ ଅଛି । ଏ ସ୍କୁଲ୍ ଗତ କେତେବର୍ଷ ଧରି ସବୁ ଦିଗରେ ଏପରି ବିସ୍ମୟକର ଉତ୍ତମ ଫଳ ଦେଖାଇଆସୁଛି ଯେ, କାଲିଫୋର୍ଣ୍ଣିଆ ବିଶ୍ୱବିଦ୍ୟାଳୟ ଓ କାଲିଫୋର୍ଣ୍ଣିଆ ରାଷ୍ଟ୍ରର ବିଧାନସଭାରେ ଏଇ ସ୍କୁଲ୍ ଓ ଏହାର ହେଡ୍‌ମାଷ୍ଟରଙ୍କ ପ୍ରଶଂସା କରାଯାଉଛି । ସମଗ୍ର ଷ୍ଟେଟ୍‌ରେ ଏହି ଆଦର୍ଶ ହାଇସ୍କୁଲ୍‌ର ପରିଚାଳନା ଆଲୋଡ଼ନ ସୃଷ୍ଟି କରିଛି ।

ଏ ହାଇସ୍କୁଲ୍ କିପରି ଏପରି ଭଲ ଫଳ ଦେଖାଉଛି ? ଏଇ ପ୍ରଶ୍ନ ନେଇ ଅନେକ ଅନୁସନ୍ଧାନ ହୋଇଗଲାଣି । କେତୋଟି ପ୍ରଧାନ ପ୍ରଣାଳୀ ଓ ଆଦର୍ଶ ବିଶେଷ ଉଲ୍ଲେଖଯୋଗ୍ୟ ।

ପ୍ରଧାନଶିକ୍ଷକ ଅଧ୍ୟାପନା କର୍ମ ଏକାବେଳକେ ଅଧସ୍ତନ ଶିକ୍ଷକମାନଙ୍କ ଉପରେ ଓ ଛାତ୍ରମାନଙ୍କ ବ୍ୟବହାର ଓ ବ୍ୟବସ୍ଥା ଗୋଟିଏ ଛାତ୍ର-ସଭା ଉପରେ ଛାଡ଼ିଦେଇଛନ୍ତି ।

ପ୍ରଧାନଶିକ୍ଷକ ଜଣେ ପଣ୍ଡିତ ଲୋକ, ନିଜେ ବିଚକ୍ଷଣ ଛାତ୍ର ଥିଲେ । ସେ ତେଣୁ ଶିକ୍ଷକ ବାଛିଲାବେଳେ ପ୍ରକୃତ ପଣ୍ଡିତ, ପୁଣି ଯେ ଭଲ ବୁଝେଇପାରୁଥିବେ, ଏପରି ଲୋକଙ୍କୁ ବାଛିଥାନ୍ତି । ବହୁଦିନ ଧରି ଜଣେ ଶିକ୍ଷକର ଶ୍ରେଣୀ-କର୍ମ ପର୍ଯ୍ୟବେକ୍ଷଣ କରିସାରିଲା ପରେହିଁ, ସେ ତାଙ୍କୁ ଶିକ୍ଷକଭାବରେ ନିଯୁକ୍ତ କରନ୍ତି । ଯେଉଁମାନଙ୍କୁ ନିଯୁକ୍ତ କରାଯାଏ, ଯୁକ୍ତରାଷ୍ଟ୍ରରେ ସାଧାରଣ ଶିକ୍ଷକ ଯାହା ପାଇଥାନ୍ତି (ଯାହା କି ଅନ୍ୟାନ୍ୟ ଦେଶ ତୁଳନାରେ ଅତି ଉଚ୍ଚହାର), ତା'ଠୁ ବି ଯଥେଷ୍ଟ ଅଧିକା ତାଙ୍କୁ ସେ ଦେଇଥାନ୍ତି ।

ଏଇ ହେଡ୍‌ମାଷ୍ଟର ବିଶ୍ୱାସ କରନ୍ତି ଯେ ଆଦର୍ଶ ଶିକ୍ଷକ ତାଙ୍କ ନିଜ ପଢ଼ାଉଥିବା ବିଷୟଠାରୁ ବହୁ ବି ୍ତାରିତ ଜଗତରେ ବାସ କରିବା ଉଚିତ । ଦୃଷ୍ଟାନ୍ତସ୍ୱରୂପ ତାଙ୍କ ହାଇସ୍କୁଲ୍‌ର ସମାଜ-ବିଜ୍ଞାନ ଶିକ୍ଷକ ଚୀନା ଭାଷାରେ ମଧ୍ୟ ପଣ୍ଡିତ । ଫଳରେ ସେ ପିଲାଙ୍କୁ ବେଳେ ବେଳେ ଚୀନ୍ ଦେଶର ସଭ୍ୟତା ଓ ସଂସ୍କୃତି ଉପରେ ବକ୍ତୃତା ଦେଇଥାନ୍ତି । ପୁଣି ସେଠାରେ ଶରୀରତତ୍ତ୍ୱ ଶିକ୍ଷକ ସମାଜ ବିଜ୍ଞାନ ଓ ପଦାର୍ଥ ବିଜ୍ଞାନର ଉଚ୍ଚ ଡିଗ୍ରୀଧାରୀ । ଶିକ୍ଷକମାନଙ୍କର ମାନସିକ ଜଗତର ଏପ୍ରକାର ବିତ୍ତଶାଳୀତା ଯୋଗୁଁ ସମଗ୍ର ଅନୁଷ୍ଠାନରେ ଜ୍ଞାନର ଏକ ପରମ ଅନୁକୂଳ ବାତାବରଣ ବିରାଜିତ ରହିଛି ।

ପାଠ ଦିଗରେ ହେଡ୍‌ମାଷ୍ଟର କେତୋଟି ପ୍ରଧାନତମ ଲକ୍ଷ୍ୟ ପ୍ରତି ସମସ୍ତ ଅଧସ୍ତନ ଶିକ୍ଷକଙ୍କୁ ଅବହିତ କରି ରଖିଛନ୍ତି । ସେଗୁଡ଼ିକ ହେଉଛି ଏଇ—

୧—ପ୍ରତି ଟର୍ମର ଶେଷରେ, ତିନିବର୍ଷଯାକ, ପିଲେ ଇଂରେଜୀରେ ଏକ କଠିନ ପରୀକ୍ଷାରେ ପାସ୍ କରିବେ । ପରୀକ୍ଷା ଅତି କଡ଼୍‌ଡ଼ା । କମା, ଫୁଲ୍‌ଷ୍ଟପର ଭୁଲ୍‌ପାଇଁ ମଧ୍ୟ ପିଲାଏ ଫେଲ୍ ହୁଅନ୍ତି । ଜଣେ ପିଲା ଥରେ ଆପତ୍ତି କରିଥିଲା—''ସାମାନ୍ୟ ଏକ ଛୋଟ କମା ଯୋଗୁ ମୁଁ ଫେଲ୍ ଧରା ହେବି ନା ?'' ପରୀକ୍ଷକ ଉତ୍ତର ଦେଇଥିଲେ—''ଗୋଟିଏ ଛୋଟ ପିନ୍‌ର ଅଭାବରେ ଲାବରେଟରୀରେ ଜୀବନ ନାଶର ଆଶଙ୍କା ନାହିଁ କି ?''

୨—ଏ ହାଇସ୍କୁଲ୍‌ରେ ପ୍ରତି ଶିକ୍ଷକ ଭାଷା-ଶିକ୍ଷକ । ବିଜ୍ଞାନର ଶିକ୍ଷକ ମଧ୍ୟ ବ୍ୟାକରଣ ଭୁଲ୍, ରଚନା ଭୁଲ୍, ସଂଶୋଧନ କରନ୍ତି । ଅଯତ୍ନ ଲେଖା ଓ ଭାଷାପାଇଁ ଜଣେ ଇତିହାସ ଶିକ୍ଷକ

ଇତିହାସର ଖାତା ପ୍ରତ୍ୟାଖ୍ୟାନ କରିବାର ଜଣାଯାଇଛି । ସାଧାରଣତଃ କାଲିଫୋର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଇଂରାଜୀ ଭାଷା ପରୀକ୍ଷାରେ ହାରାହାରି ପାସ୍ ଶତକଡ଼ା ୫୦ ମାତ୍ର । କିନ୍ତୁ ଜର୍ଜ୍ ୱାଶିଂଟନ୍ ହାଇସ୍କୁଲ୍‌ର ଗତବର୍ଷର ପରୀକ୍ଷାର୍ଥୀମାନଙ୍କର ପାସ୍ ହାର ଶତକଡ଼ା ୮୬ !

୩—ନିମ୍ନ ଶ୍ରେଣୀରେ ପ୍ରତ୍ୟେକ ପିଲା ଏକ ବ୍ୟାପକ ଗଣିତ ପରୀକ୍ଷା ଦେବାକୁ ବାଧ । ଯଦି କେହି ଫେଲ୍ ହୁଅନ୍ତି ତେବେ ଉପର ଶ୍ରେଣୀର ଅନ୍ୟ ପାଠ ସଙ୍ଗେ ପୁଣି ସେହି ଗଣିତ ବିଦ୍ୟା ସ୍କୁଲ୍‌ରୁ ପଢ଼ି, ସେଥିରେ ପରୀକ୍ଷା ଦେବାକୁ ପଡ଼େ ।

୪—ପ୍ରତ୍ୟେକ ପିଲା ଗବେଷଣା ଓ ଗବେଷଣାର ସବୁ ପଦ୍ଧତି ସହିତ ପରିଚିତ ହେବେ । ପାଠ୍ୟ ବିଷୟଗୁଡ଼ିକ ପରସ୍ପର ସହିତ ଘନିଷ୍ଠଭାବରେ ସମ୍ପୃକ୍ତ— ଏଇ ଭାବ ଜାଗ୍ରତ ରଖିବା ପାଇଁ, ପିଲାମାନଙ୍କୁ ଗୋଟାଏ ବିଷୟକୁ ଏକାଧିକ ଶିକ୍ଷକଙ୍କଠାରେ ଗବେଷଣା କରିବାକୁ ଦିଆଯାଏ । ନିକଟରେ ଗୋଟିଏ ଉଚ୍ଚ ଶ୍ରେଣୀର ପିଲା ଆମେରିକାନ୍ ଅନ୍ତର୍ଯୁଦ୍ଧକାଳୀନ ସାହିତ୍ୟିକମାନଙ୍କ ଉପରେ ଏକ ଉଚ୍ଚକୋଟୀର ଥେସିସ୍ ପ୍ରସ୍ତୁତ କରିପାରିଛି । ତାକୁ ସାହାଯ୍ୟ କରିଥିଲେ ହାଇସ୍କୁଲ୍‌ର ଉଭୟ ଇଂରେଜୀ ଓ ଇତିହାସ ଶିକ୍ଷକ—ସମ୍ପୂର୍ଣ୍ଣଭାବରେ ନିଜ ନିଜ ଦିଗରୁ ।

ହେଡ଼ମାଷ୍ଟର କୌଣସି କୌଣସି ଟର୍ମରେ ସ୍କୁଲ୍‌ର ସମସ୍ତ କର୍ମ ବନ୍ଦକରିଦେଇ ପିଲାଙ୍କୁ ଆତ୍ମ-ପରୀକ୍ଷା କରିବାପାଇଁ ଛାଡ଼ିଦେଇଥାନ୍ତି—ପ୍ରାୟ ସପ୍ତାହେ କାଳ ପର୍ଯ୍ୟନ୍ତ । ଏଇ ଅବସରବେଳେ ପିଲାମାନଙ୍କୁ ଉତ୍ସାହିତ କରାଯାଏ, ନିଜେ ନିଜେ ଆପଣାକୁ ପଚାରିବେ, କେତେଦୂର ଉନ୍ନତି ସେ କରିଛନ୍ତି, ଅଥବା କେଉଁଠି ତାଙ୍କର ଅଭାବ ରହୁଛି, ଆଉ କେଉଁ ବିଷୟ ତାଙ୍କର ଅଧିକ ମନଧ୍ୟାନ ଦରକାର କରୁଛି ଇତ୍ୟାଦି । ଗବେଷଣା ଓ ଏଇପ୍ରକାର ଆତ୍ମପରୀକ୍ଷା ଦ୍ୱାରା ଏଇ ହାଇସ୍କୁଲ୍‌ର ପିଲାଏ ନିଜେ ନିଜେ ଚିନ୍ତା କରିବାକୁ ଶିଖନ୍ତି ।

୫—ଏଇ ବିଦ୍ୟାଳୟରେ ପାଠର ବିଚକ୍ଷଣତାପାଇଁ ଯେତିକି ଉତ୍ସାହ ଓ ସମ୍ମାନ ଦିଆଯାଏ, ସେତିକି ଦିଆଯାଏ ନାଗରିକତା ପ୍ରତି । ସେଥିପାଇଁ ପ୍ରତ୍ୟେକ ପିଲା ପ୍ରତି ଟର୍ମରେ ମାର୍କ ପାଆନ୍ତି । ଛାତ୍ର କାଉନସିଲ୍‌ରେ ପଦ ବା ପଦବୀ ପାଇବାପାଇଁ ନାଗରିକତାରେ ଅତି ଉଚ୍ଚ ଶ୍ରେଣୀର ମାର୍କ ନିତାନ୍ତ ଦରକାର । ସେଥିପାଇଁ ପ୍ରତ୍ୟେକ ପିଲା ନାଗରିକତା ନେଇ ଅତ୍ୟନ୍ତ ଜାଗ୍ରତ ରହିଥାନ୍ତି । ଏପରି ଦେଖାଯାଇଛି କି ଛାତ୍ରମାନଙ୍କ ବିରୋଧରେ ଛାତ୍ର-କାଉନସିଲ୍‌ର ବେଳେବେଳେ ଯେପରି ଦଣ୍ଡବିଧାନ କରିଛି, ତାହା ସ୍ୱୟଂ ହେଡ଼ମାଷ୍ଟରଙ୍କୁ ଅବାକ୍ କରିଦେଇଛି । 'ସ୍କୁଲ୍ କମ୍ପାଉଣ୍ଡକୁ ଅପରିଚ୍ଛନ୍ନ କରନାହିଁ', ଏଇ ଆଦେଶ ପୂରାପୂରି ଯେତେବେଳେ ପାଳିତ ନହେବାର ଦେଖାଗଲା, ସେତେବେଳେ ଛାତ୍ର କାଉନସିଲ୍ ଆଦେଶ ଦେଲେ ଯେ ସମଗ୍ର ମଧ୍ୟାହ୍ନରେ କେହି ପିଲା ସ୍କୁଲ୍ ବିଲ୍ଡିଂ ଛାଡ଼ି ଯାଇପାରିବେନି ! ସ୍କୁଲ୍‌ରେ ପିଲାସଂଖ୍ୟା ୨୬୭୬ । ଏଇ ବିରାଟ ତରୁଣ ଜନତାକୁ ଘରେ ଆବଦ୍ଧ କରି ରଖିବା ଏକ ଗହନ ସମସ୍ୟା । ତଥାପି ଛାତ୍ର-କାଉନସିଲ୍ ମେମ୍ବରମାନେ ସ୍କୁଲ୍ କମ୍ପାଉଣ୍ଡରେ ପରେଡ୍ କରି ନିଜ ଆଦେଶକୁ ଠିଆକରେଇଲେ । ହେଡମାଷ୍ଟର ଓ ଷ୍ଟାଫ୍ ଆଚମ୍ବିତ ହୋଇ ଅପେକ୍ଷା କରିଥାନ୍ତି ।

କିନ୍ତୁ ଯା ଫଳରେ ଜର୍ଜ୍ ୱାସିଂଟନ୍ ହାଇସ୍କୁଲ୍‌ର କମ୍ପାଉଣ୍ଡ୍ ଆଉ କେବେ ଅପରିଚ୍ଛନ୍ନ ହୋଇନାହିଁ ।

ଏପରି ଦାୟିତ୍ୱ-ସଂଜ୍ଞତାଦ୍ୱାରା ସେ ହାଇସ୍କୁଲ୍‌ର ପିଲେ ମଧ୍ୟ ପ୍ରମାଣ କରିଛନ୍ତି ଯେ ସେମାନେ ଆତ୍ମ-ଶାସନପାଇଁ ଏକାନ୍ତ ଉପଯୁକ୍ତ ।

---

# ପ୍ରାଇମେରୀ ଶିକ୍ଷକ
## (ଆତ୍ମ-ସ୍ୱୀକୃତି)

ମୁଁ କୌଣସିପ୍ରକାର ପାଣ୍ଡିତ୍ୟର ଗର୍ବ କରେ ନାହିଁ । କିନ୍ତୁ ଆମର ସରକାର ଓ ସମ୍ପୃକ୍ତ ବିଭାଗ ମତେ ଯେଉଁ କାମଟିପାଇଁ ବାଛିଛନ୍ତି ତାହା ନିପୁଣଭାବରେ ତୁଲାଇବାପାଇଁ ଯେତିକି ବିଦ୍ୟା, ବୁଦ୍ଧି ଓ ତାଲିମ୍ ଦରକାର, ମୋର ସେତକ ଅଛି ବୋଲି ମୁଁ ମନେକରେ ।

ନେତା ଓ ମନ୍ତ୍ରୀମାନେ ଶିକ୍ଷକର ଗତାନୁଗତିକ ସ୍ତୁତିଗାନ କରି ଶିକ୍ଷକକୁ ଏକ ମହାତ୍ମା ହେବାର ଆଶା ପୋଷଣ କରିଥାନ୍ତି । ସେସବୁ ଶୁଣିଲା ବେଳେ ମୁଁ ତ ଲଜ୍ଜିତ ହୁଏନା, ବରଂ ସେମାନଙ୍କର ଅଜ୍ଞତା ଓ ଛଦ୍ମତା ପ୍ରତି ମୋର କୃପା-ବୋଧ ଆସେ ।

ପ୍ରାଇମେରୀ ଶିକ୍ଷକ ବା ଅନ୍ୟ ଯେକୌଣସି ଶିକ୍ଷକର ମହାତ୍ମା ହେବା ସମ୍ଭବ ନୁହେଁ, ଦରକାର ବୋଲି ମଧ୍ୟ ମନେହୁଏନା । ଆମ ଶିକ୍ଷାବିଭାଗର ସିଲାବସ୍‌କୁ ଅକ୍ଷରେ ଅକ୍ଷରେ ପାଳନ କରି କୌଣସି ହେଲେ ମହାତ୍ମା ଜଣେ ସୁଦକ୍ଷ ଗ୍ରାମ୍ୟ-ଶିକ୍ଷକ ହୋଇପାରିବେ ବୋଲି ମୁଁ ମନେକରେନାହିଁ । ପିଲାଙ୍କୁ ଆଗୁଳି ରଖିବା, ଅ ଆ ଶିଖେଇବା, ଗଣିତ ପଢ଼େଇବା, ଅକ୍ଷର ମଡ଼େଇବା, ହାଜିରା ପକେଇବା ପ୍ରଭୃତି କାମପାଇଁ, ଉଚ୍ଚ ସ୍ତରର ବୁଦ୍ଧି, ବିଦ୍ୟା ବା ଆତ୍ମା କାହିଁକି ବା ଦରକାର ହେବ ?  ରାମକୃଷ୍ଣ ପରମହଂସ ପରା ''ଏ ଚାଉଳ-କଦଳୀ-ଦିଆ ପାଠ ମୋର କ'ଣ ହେବ'' ବୋଲି ଚାଟଶାଳୀ ମାଡ଼ିନଥିଲେ, ଆଉ ଏକପ୍ରକାର ନିରକ୍ଷର ରହିଲେ ଜୀବନଯାକ । ଏପରି ମହାତ୍ମା, ବିବେକାନନ୍ଦ ସୃଷ୍ଟି କରିପାରନ୍ତି । କିନ୍ତୁ ଶିଶୁ 'ନରେନ୍'କୁ ସାକ୍ଷର କରେଇବାପାଇଁ ଓ ପ୍ରାଥମିକ ଜ୍ଞାନ ଦେବାପାଇଁ ଆଉ ଏକ ପ୍ରକାର ଗଦାଧର ମୁଖୋପାଧ୍ୟାୟ* ଆବଶ୍ୟକ । ଆମେ ସେଇ ଦଳର । ଦେଶର ସାଧାରଣ ନାଗରିକ ଯେପରି ମହାତ୍ମା ହେବାର ଆଶା କରାଯାଏ ନାହିଁ, ଦେଶର ସାଧାରଣ ଶିକ୍ଷକର ସେଇପରି ମହାତ୍ମା ହେବାର ଆବଶ୍ୟକତା ମଧ୍ୟ କାହିଁ ?

ତେବେ, ମୁଁ ବରାବର ମନେରଖେ ଯେ, ମୋର କ୍ରିୟା, କର୍ମ, ବ୍ୟବହାର, ଅଧ୍ୟାପନା, ମୋ ହାତରେ ଦିଆଯାଇଥିବା ଶିଶୁମାନଙ୍କ ଉପରେ ଗଭୀର ରେଖାପାତ କରିବ । ମୁଁ ଯଦି କଥା ଭାଷାରେ ଅସଭ୍ୟ ଶବ୍ଦ ବ୍ୟବହାର କରୁଥାଏ, ତେବେ ମୋର ଛାତ୍ରମାନେ ଠିକ୍ ସେୟା କରିବେ, ମୁଁ ଯଦି ମିଛ କହୁଥିବାର ସେମାନେ ବୋଧକରିବେ, ତେବେ ସେମାନଙ୍କର ସତ୍ୟ ପ୍ରତି ମର୍ଯ୍ୟାଦା ରହିବନାହିଁ, ମୁଁ ନିୟମାନୁବର୍ତ୍ତୀ ବା ସମୟାନୁବର୍ତ୍ତୀ ନହେଲେ ସେମାନେ ବି ହେଳାରେ ହେଳାରେ କାମ କରିବେ । ତେଣୁ ମହାତ୍ମା ମୁଁ ନହୋଇପାରିଲେ ମଧ୍ୟ, ମୁଁ ଜଣେ ଆଦର୍ଶ, କର୍ତ୍ତବ୍ୟନିଷ୍ଠ, ସତ୍ୟବାଦୀ ନାଗରିକ ହେବାକୁ ବରାବର ଚେଷ୍ଟା କରିବି । ଆମ ଦେଶରେ

---

* ସ୍ୱାମୀ ବିବେକାନନ୍ଦଙ୍କର ପାରିବାରିକ ନାମ ଥିଲା ନରେନ୍ଦ୍ରନାଥ ଦତ୍ତ ଓ ରାମକୃଷ୍ଣ ପରମହଂସଙ୍କର ପାରିବାରିକ ନାମ ଥିଲା ଗଦାଧର ମୁଖୋପାଧ୍ୟାୟ ।

ପିଲେ ଆଉ ବଡ଼ ବଡ଼ କଥା ନଶିଖି ଅନ୍ତତଃ ଏଇ କେତୋଟି ଆଦର୍ଶକୁ ପିଲାବେଳୁ ନିଜ ରକ୍ତରେ ପୂରାନ୍ତୁ ।

ମୁଁ ଜାଣୁଛି ମୋର ବେତନ ମତେ ଅଣ୍ଟୁନି । ମୁଁ ଜାଣୁଛି ମୋର ବେତନର ସ୍ୱଳ୍ପତା ଯୋଗୁଁ ଓ ଲୋକଙ୍କୁ ପୁଲିସ୍ ବା ଏକ୍ସାଇଜ୍ ବିଭାଗର କନେଷ୍ଟବଲ୍ ପରି ହଇରାଣ କରିବା ବା ଦଣ୍ଡରେ ପକେଇବାର କ୍ଷମତା ମୋଠାରେ ନଥିବାରୁ, ସମାଜରେ ମୋ ପ୍ରତି ଖାତିର୍ ନାହିଁ । କିନ୍ତୁ ସେ ଅପରାଧ ତ ପିଲାଙ୍କର ନୁହେଁ ? ତାଙ୍କ ପ୍ରତି ମୋର ଯାହା କର୍ତ୍ତବ୍ୟ, ସେଥିରେ ମୁଁ ହେଳା କରିବା ଘୋର ପାପ ହେବନାହିଁ କି ?

ତେବେ, ଦାରିଦ୍ର୍ୟ ସତ୍ତ୍ୱେ ଗ୍ରାମ୍ୟ-ଶିକ୍ଷକର ସୌଭାଗ୍ୟ ମଧ୍ୟ ହିଂସାର କାରଣ ହୋଇପାରେ । ସେଦିନ ଆମର ଶିକ୍ଷକ ସମ୍ମିଳନୀରେ ପ୍ରଧାନମନ୍ତ୍ରୀ ତାଙ୍କର ପିଲାଦିନର ପ୍ରାଇମେରୀ ଶିକ୍ଷକ ରାମଚନ୍ଦ୍ର ରଥଙ୍କୁ* ଯେମିତି ଦେଖିଛନ୍ତି, ସେ ତାଙ୍କୁ ଗଭୀରଭାବରେ ନଇଁ ପ୍ରଣାମ କଲେ, ଏତେ ଲୋକ ଆଗରେ । ଏ ସମ୍ମାନ କେଉଁ ପୁଲିସ୍ କନଷ୍ଟେବଲ୍ ପାଇବ ? ଶୁଣିଛି ରଥଙ୍କ ଝିଅ ବିଭାଘରପାଇଁ ପ୍ରଧାନମନ୍ତ୍ରୀ ଦୁଇଶତ ଟଙ୍କା ଅଯାଚିତ ଭାବରେ ପଠାଇଦେଇଛନ୍ତି । ତାଙ୍କ ପୁଅର ଉଚ୍ଚଶିକ୍ଷାର ବ୍ୟବସ୍ଥା ମଧ୍ୟ ହୋଇଯାଇଛି ।

ମୁଁ ରଥଙ୍କ ପରି ଜଣେ କର୍ତ୍ତବ୍ୟନିଷ୍ଠ ପ୍ରାଇମେରୀ ଶିକ୍ଷକ ହେବି । ମୁଁ ଚେଷ୍ଟାକରିବି ଓ ପ୍ରାର୍ଥନା କରିବି ଯେ ମୋର ଜଣେ ଛାତ୍ର ଦିନେ ଦେଶର ପ୍ରଧାନମନ୍ତ୍ରୀ ବା ଜଣେ ବିଖ୍ୟାତ ନେତା ବା କବି ବା ଡାକ୍ତର ହେବ । ଆଉ ଯେତୋଟି ପିଲା ମୋ ହାତରୁ ଉତୁରିଯିବେ, ସମସ୍ତେ ହେବେ ଯେପରି ସୁନାମଣିଷ—କେହି ମିଛ କହିବେନି, ଲାଞ୍ଚ ନେବେନି । ସମସ୍ତେ କହିବେ ''ହାଁ, ସେ ପରା ଅମୁକ ମାଷ୍ଟର ଛାତ୍ର ।'' ଯାଠାରୁ ଜଣେ ମଣିଷର ଅଧିକ ଗୌରବ କ'ଣ ଥାଇପାରେ ?

ମୁଁ ଗୋଟିଏ ଅଜ୍ଞାତ ଗ୍ରାମର ଅଜ୍ଞାତ ସ୍କୁଲ୍‌ର ଶିକ୍ଷକ । ମୁଁ ମୋ କାମରେ ହେଳା କଲେ, କିଏ ଜାଣିବ ? କ'ଣ ବା ଯାଏ ଆସେ ? ଛି, ଛି । ଏ ଚିନ୍ତା ଯେପରି ମୋ ମନରେଇ ନଆସେ । କାମରେ ହେଳା କରି ମୁଁ ନିନ୍ଦାର ଭାଗୀ ହେବାର ଅର୍ଥ, କେବଳ ମୁଁ ନିନ୍ଦିତ ହେବି ତାହା ନୁହେଁ, ସମଗ୍ର ଶିକ୍ଷକ ସମାଜ ତାହାଦ୍ୱାରା ନିନ୍ଦିତ ହେବ । ଏଇପରି କେତୋଟି କୁଳପାଂଶୁଳଙ୍କ ଯୋଗୁଁ ତ ଶିକ୍ଷକର ମାନ ଆଜି ମାଟିରେ ଗଡୁଛି । ମୁଁ ସେଇ ଅପରାଧୀ ଗୋଷ୍ଠୀର ଜଣେ ହେବାକୁ ଚାହେନା । ମୁଁ ଏପରିଭାବରେ ମୋର ଏଇ ଛୋଟ ପ୍ରାଇମେରୀ ଶିକ୍ଷକର କର୍ତ୍ତବ୍ୟ କରିଯିବାକୁ ଚାହେ, ଯେପରିକି, ଅଭିଭାବକ, କର୍ତ୍ତୃପକ୍ଷ ଓ ଛାତ୍ରଛାତ୍ରୀମାନେ ସମସ୍ତେ ପଛରେ କହୁଥିବେ '''ଆମେ ଏଇପରି ଗୁରୁଜୀ ଚାହୁ, ଆମେ ଏଇପରି ଗୁରୁଜୀ ଚାହୁ ।''

---

* ନାମଟି କାଳ୍ପନିକ । କିନ୍ତୁ ସମାଜରେ ଏ ପ୍ରକାର ଆଦର୍ଶର ଅଭାବ ଯେ ନାହିଁ, ଏହା ସମସ୍ତେ ଜାଣନ୍ତୁ ।

# ସେବର ଚାଟଶାଳୀ ଶିକ୍ଷା ଓ ଏବର ସାଧାରଣ ଶିକ୍ଷା

## ଆଧୁନିକ ବିକୃତି

ଆଧୁନିକ କାଳରେ ସାଧାରଣ ଶିକ୍ଷା କହିଲେ ସେହି ପ-ଲି-ଗ(ପଠନ+ଲିଖନ+ଗଣନ) ଅଛି । କିନ୍ତୁ ନାନା ମେଥଡ଼ର ଅତ୍ୟାଚାର ଓ ଚକ୍ରାନ୍ତରେ ସେସବୁ ଦୁର୍ବଳ ଓ ରୁଗ୍ଣ । ଶିକ୍ଷାର ଏଇ ତିନୋଟି ସୁଦୃଢ଼ ମୂଳପତ୍ତନ ଉପରୁ ଯଥାର୍ଥ ଜୋର୍ ଚାଲି ଆସି, ଅନ୍ୟଆଡ଼େ ବିଞ୍ଚିହୋଇଯାଉଛି । ଜୋର ପଡୁଛି ଡ୍ରିଲ୍, ହସ୍ତକର୍ମ, ବଗିଚାକାମ, ଗ୍ରାମ ସଫେଇ ଇତ୍ୟାଦି ନାନା ଛୋଟ ଛୋଟ ବିଷୟରେ, ଯାହାର କି ଜୀବନ ଉପରେ ସେ ବ୍ୟାପକ ପ୍ରଭାବ ନରହିବାର କଥା ଯେପରିଭାବରେ ରହିବ ଦୃଢ଼ଭାବରେ ଅଭ୍ୟସ୍ତ ପ-ଲି-ଗର । ଆମର ଏବର ପ୍ରାଇମେରୀ ସ୍କୁଲ୍‌ମାନଙ୍କରେ 'ପ-ଲି-ଗ'ର ଦୁର୍ବଳ ଅଭ୍ୟାସ ଯୋଗୁଁ ଏବେ ଆମ ପିଲାଏ ଶୁଦ୍ଧଭାବରେ ଓଡ଼ିଆ ଲେଖି ଜାଣୁନାହାନ୍ତି ବା ବିଶୁଦ୍ଧ ଉଚ୍ଚାରଣରେ ଓଡ଼ିଆ ପଢ଼ିବା ବା କହିବାର ବି ଜାଣୁନାହାନ୍ତି । ଏହା ଏକ ଘୋର ଅଧଃପତନ ।

ଏବର ସାଧାରଣ ଶିକ୍ଷାରେ ଶରୀର ଗଠନର ତ ସ୍ଥାନହିଁ ନାହିଁ – ଏ ଏକ ମାରାତ୍ମକ ଅଭାବ । ଆମେ ଆଖିଆଗରେ ଦେଖୁଛୁ ଆମର ଜାତି କ୍ରମେ କ୍ରମେ ଦୁର୍ବଳରୁ ଦୁର୍ବଳତର ହୋଇଯାଉଛି । ଆମ ଟୋକାଙ୍କର ପରିପୁଷ୍ଟ ଦେହ, ସୁଦୃଢ଼ ବାହୁ, ସତେଜ ବଦନମଣ୍ଡଳ ଦୁର୍ଲଭ ବସ୍ତୁ ହେଲାଣି ଦେଶରେ, କିନ୍ତୁ ଆମେ ସେଥିପାଇଁ ଆଦୌ ଦୃଷ୍ଟି ଦେଉନାହୁଁ, ଧାଇଁଛୁ କେବଳ ସାର୍ଟିଫିକେଟ୍ ପଛରେ । ମୋ ମତରେ ନୂଆଜାତି ନିରକ୍ଷର ପଛେ ରହନ୍ତା, କିନ୍ତୁ ସୁସ୍ଥସବଳ ହୋଇ ଗଢ଼ାହୁଅନ୍ତା । ଯଦି କେହି 'ପ-ଲି-ଗ' ଓ ଶାରୀରିକ ସଙ୍ଗଠନ ଭିତରୁ ଗୋଟାକୁ ବାଛିବାକୁ ମତେ କହନ୍ତା, ତେବେ ମୁଁ ଆମ ପିଲାଙ୍କପାଇଁ ଶାରୀରିକ ସଂଗଠନହିଁ ବାଛନ୍ତି । ରୁଗ୍ଣ, ଦୁର୍ବଳ ଜାତି ଖଣ୍ଡେ ଖଣ୍ଡେ ସାର୍ଟିଫିକେଟ୍ ଧରି କି କାମକୁ ଯୋଗ୍ୟ ହେବ ? ଆମେ ପ୍ରତ୍ୟକ୍ଷରେ ଏବେ ସେହି ଦୃଶ୍ୟର ସମ୍ମୁଖୀନ ନୋହୁଁ କି ? କେବଳ ନିଜକୁ ପ୍ରତାରିତ କରିବାକୁ ବସିଲେ, କୌଣସି ହେଲେ ଯୋଜନାର ସାଫଲ୍ୟ ଏ ଦେଶରେ ଅସମ୍ଭବ ।

ପୂର୍ବର ସାଧାରଣ ଶିକ୍ଷାର ସାହିତ୍ୟ ଓ ସଙ୍ଗୀତ ଯେପରିଭାବରେ ସ୍ୱାଭାବିକ ଅଂଶଭାବରେ ଆପେଇ ଗଢ଼ିଉଠୁଥିଲା, ଏବେ ଆଉ ତା ନାହିଁ । ଆମ ପ୍ରାଇମେରୀ ସିଲାବସ୍‌ରେ ସଙ୍ଗୀତର ତ ସ୍ଥାନ ନାହିଁ – ସାହିତ୍ୟ ନାମରେ ଅର୍ଥ ମାତ୍ର ଲକ୍ଷ୍ୟ । ଦଳେ ପ୍ରକାଶକ ଓ ଲେଖକ ଏ ଦେଶରେ ଯେଉଁ ପାଠ୍ୟପୁସ୍ତକ ସବୁ କଳେକୌଶଳେ ଆମ ପିଲାଙ୍କ ଉପରେ ନେଇ ଲଦି ଦେଉଛନ୍ତି, ସେ ଏକ ଜଘନ୍ୟ ଅତ୍ୟାଚାର ଓ ବୌଦ୍ଧିକ ଓ ସାଂସ୍କୃତିକ ବର୍ବରତା । ଅଥଚ ଏ ମୂର୍ଖ ବର୍ବରତା ଘଟୁଛି ଆମ ଦେଶର ସ୍ୱୟଂ ଡି.ପି.ଆଇ.ଙ୍କ ସ୍ୱାକ୍ଷରରେ । ଦେଶର ଓ ଜାତିର ଦୁର୍ଭାଗ୍ୟ ଆଉ ଅଧିକ କ'ଣ ଥାଇପାରେ ଯାଠୁ ?

ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଉଛି –

''ଓଡ଼ିଶା ଶିକ୍ଷାବିଭାଗୀୟ ଡିରେକ୍ଟର ମହୋଦୟଙ୍କ* ଦ୍ୱାରା ଦ୍ୱିତୀୟ ଶ୍ରେଣୀର ପାଠ୍ୟ ପୁସ୍ତକରୂପେ ୧୯୫୯-୬୦ ସାଲପାଇଁ ମଞ୍ଜୁରୀପ୍ରାପ୍ତ'' 'ନୂଆ ପାଠ' ନାମରେ ଖଣ୍ଡିଏ ବହି ଏବେ ବଜାରରେ ବିକ୍ରି ହେଉଛି । ଏହାର ଲେଖକ ପାଞ୍ଚଜଣ । ସେମାନଙ୍କ ମଧରେ ଜଣେ ବିଭାଗୀୟ ଇନ୍ସପେକ୍ଟର ଓ ଦୁଇଜଣ ଶିକ୍ଷକ । ଏଇ ପୁସ୍ତକର ଆଦ୍ୟ କବିତାଟି ଏଇପରି ।

—କେତେ ପ୍ରଭୁ ଗଢ଼ିଲ—

ଧଳା କଳା ମାଛ ,
ଭଳି ଭଳି କଇଁଛ
କେତେ ପ୍ରଭୁ ଗଢ଼ିଲ
ପାଣି ତଳେ ରଖିଲ ।
କେତେ ତାରା, ଜହ୍ନ
ସୁଲୁ ସୁଲୁ ପବନ
କେତେ ପ୍ରଭୁ ଗଢ଼ିଲ
ଆକାଶରେ ରଖିଲ ।
ଗଛ ମାଟି ନଈ,
ନାଲି ନେଳି ଚଢ଼େଇ
କେତେ ପ୍ରଭୁ ଗଢ଼ିଲ,
ଚାରିଆଡ଼େ ରଖିଲ ।
ପଶୁ, ପୋକ, ଘାସ,
ଡେଙ୍ଗା ଗେଡ଼ା ମଣିଷ
କେତେ ପ୍ରଭୁ ଗଢ଼ିଲ
ଭୂଇଁ ପରେ ରଖିଲ ।
ଲମ୍ୱା ଚକା ଫଳ,
କଢ଼,ଫୁଲ, ବଉଳ
କେତେ ପ୍ରଭୁ ଗଢ଼ିଲ,
ଗଛ ଡାଳେ ରଖିଲ ।
ସୀସା, ଲୁହା, କଳା
ସୁନା,ରୁପା, କୋଇଲା,
କେତେ ପ୍ରଭୁ ଗଢ଼ିଲ,
ମାଟି ତଳେ ରଖିଲ ।

* ସେତେବେଳେ ଡି.ପି.ଆଇ. ଥିଲେ ଶ୍ରୀଯୁକ୍ତ ବାମାଚରଣ ଦାସ ।

ଏହି ଜଘନ୍ୟ କବିତାର କି ଆଲୋଚନା କରାଯାଇପାରେ ? 'ସାହିତ୍ୟ' ନାମରେ ଏପରି ଆବର୍ଜନା ଆଜି ଆମ ସ୍କୁଲ୍‌ମାନଙ୍କରେ ବଣ୍ଟାଯାଉଛି – ତାହା ପୁଣି ଡି.ପି.ଆଇ.ଙ୍କ ଦସ୍ତଖତ ନେଇ । ଏପରି ବଣ୍ଟନରେ ଜାତିର ଭବିଷ୍ୟତ୍ ଥାଇପାରେ କି ?

କିନ୍ତୁ ଏ ଦେଶର ଚାଟଶାଳୀରେ ପିଲେ ପଢୁଥିଲେ ଶତ ଶତ ବର୍ଷ ଧରି ଓ ଏବେବି ପଢୁଛନ୍ତି ଦେଶମୟ –

''କୋଇଲି, ଖଣ୍ଡକ୍ଷୀର
ଦେବି ମୁଁ କାହାକୁ
ଖାଇବାର ପୁତ୍ର ଗଲା
ମଥୁରା ପୁରକୁ ଲୋ ।''

ଏ ଦୁଇଟି ପଂକ୍ତି ସ୍ୱରଧରି ଆବୃତ୍ତି କଲାବେଳେ, କିଶୋର କିଶୋରୀର ସଙ୍ଗୀତ ଓ ସାହିତ୍ୟ ଚର୍ଚ୍ଚା ଯୁଗପଦ୍ ତ ଆରମ୍ଭ ହୋଇଗଲା, ତାର ପ୍ରାଣସ୍ପର୍ଶୀ ଭାବଟି କେଉଁ ବାପ'ମାର ଚକ୍ଷୁକୁ ଆର୍ଦ୍ର ନକରିବ ? ଏ ହେଲା ଖାଣ୍ଟି ସାହିତ୍ୟ, କାରଣ ଏ ଦି'ପଦ ଜୀବନ ସହିତ ରହିଥିବ ସ୍ମୃତିରେ – ଭୁଲିବାର ନୁହେଁ ।

ପ୍ରାଚୀନ ଯୁଗରୁ ଖସିଆସି ଆମେ ଏଇ ସେଦିନପର୍ଯ୍ୟନ୍ତ ଭକ୍ତ କବିଙ୍କର ରଚନା ନେଇ ନୂତନ ପ୍ରାଇମେରୀ ସ୍କୁଲ୍‌ରେ ମଧ୍ୟ ସାହିତ୍ୟାମୃତ ଆସ୍ୱାଦନ କରୁଥିଲୁଁ ।

ଯାହା ମୁଁ ଦେଖଇ, ଯାହା ମୁଁ କରଇ
ଯାହା ମୁଁ ଚିନ୍ତଇ ମନେ
ଜଗତର କର୍ତ୍ତା ପରମ ଈଶ୍ୱର
ଦେଖୁଛନ୍ତି ପ୍ରତି କ୍ଷଣେ ।

xx xx xx

କ୍ଷୁଦ୍ର କୀଟ ଉଇ ଅଳ୍ପ ଅଳ୍ପ କରି
ରଚଇ ବଲ୍ମୀକ ଘର
ମୁହିଁ ସେହିପରି ସଞ୍ଚିବି ଯତନେ
ପୁଣ୍ୟଧନ ନିରନ୍ତର ।

କାହିଁ ଗଲା ଏ ସାହିତ୍ୟ ଆମ ବିଦ୍ୟାଳୟମାନଙ୍କରୁ ? ପ୍ରକୃତ ସାହିତ୍ୟକୁ ଯଦି ବିଦ୍ୟାନୁଷ୍ଠାନରୁ ବିଦାୟ ଦିଆଯାଏ, ତେବେ ମଣିଷ ଗଢ଼ିବାର ଉପାଦାନ ଆଉ ରହିଲା କ'ଣ, ସେଠି ? ଆମ ପିଲାଙ୍କ ହାତରେ କି ପଦାର୍ଥ ନେଇ ଥୁଆହେଉଛି, ତାକୁ କିଏ ଦେଖିବ ତେବେ ? ସେହି 'ଛୋଟ' କାମଟା ବୋଧହୁଏ ଡି.ପି.ଆଇ. ବହିଦୋକାନୀଙ୍କ ହାତରେ ଛାଡ଼ିଦେଇ 'ବଡ଼ ବଡ଼' କାମରେ ଲାଗିଛନ୍ତି ।

'ପ-ଲି-ଗ'ର ଜ୍ଞାନ ଦୁର୍ବଳ । ଶରୀର ଅପାଂକ୍ତେୟ ସାହିତ୍ୟ । ଏଇ ହେଲା ଏବର ସାଧାରଣ ଶିକ୍ଷା । ସଙ୍ଗୀତ ସହିତ ସମ୍ପର୍କ ଲେଶ । ଓଡ଼ିଆ ଭାଷାର ଛାନ୍ଦ-ଚର୍ଚ୍ଚା ଗାଁର ମୂର୍ଖଙ୍କଠିହିଁ ଆବଦ୍ଧ – ଓଡ଼ିଆ ଅଧ୍ୟାପକଙ୍କୁ ମଧ୍ୟ ତା ମାଲୁମ ନଥିବ । ଏଇ ହେଲା ଆମର ଅଭିଶପ୍ତ ଅବସ୍ଥା । !

କେବଳ ପ୍ରଭେଦ ହେଉଛି, ଇତିହାସ ଓ ଭୂଗୋଳ । ପିଲେ ଆକବର-ଖାରବେଳଙ୍କ କଥା ପଢୁଛନ୍ତି, ପୃଥିବୀର ନଦୀ ପର୍ବତର କଥା ଜାଣୁଛନ୍ତି, ପୂର୍ବେ ଚାଟଶାଳୀ ପାଠ-ବ୍ୟବସ୍ଥାରେ ଏସବୁର ସ୍ଥାନ ନଥିଲା । କିନ୍ତୁ ନଥାଇ ବିଶେଷ କ୍ଷତି ହେଉନଥିଲା । ଥାଇ ବିଶେଷ ଲାଭ ବା କ'ଣ ? ଗତ ଦୁଇଶ ବର୍ଷ ଧରି ଶିଖା ହେଉଥିଲା ଯେ ପୃଥିବୀଟା କମଳାଲେମ୍ବୁ ପରି । ଏବେ କୁହାଗଲାଣି ଯେ ନା, ନା, ପୃଥିବୀର ଠିକ୍ କମଳା ପରି ନୁହେଁ, ବରଂ ପେୟାର୍ ଫଳ ପରି । ଏ ଖବର ବା ଖାରବେଳଙ୍କ ପରି ଜଣେ ରାଜାର ଖବର, ଜାଣିବା ନଜାଣିବା ସହିତ ଜଣେ ଲୋକ ଭଦ୍ର, ଶିକ୍ଷିତ, ହେବାରେ ଅଙ୍ଗାଙ୍ଗୀ ସମ୍ପର୍କ କ'ଣ ? ଇଂରେଜ ପିଲା ଆକବର ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଥାଇ ମଧ୍ୟ ଶିକ୍ଷିତ ହୋଇପାରେ, ଭାରତୀୟ ପିଲା, ଅଶୋକଙ୍କର ସବୁକଥା ଜାଣି ମଧ୍ୟ ଅସଭ୍ୟ ରହିପାରେ ।

## ମୌଳିକ ନୀତି –

ଆମର ପୂର୍ବ ବ୍ୟବସ୍ଥାପକମାନେ, ଯାହା ଜୀବନର ଅଙ୍ଗାଙ୍ଗୀ ହୋଇ ରହିବ, ଯାହା ନାଗରିକର ଦୈନନ୍ଦିନ ଜୀବନରେ କାମରେ ଆସିବ କେବଳ ନୁହେଁ, ଯାହା ତା'ର ଦୈନନ୍ଦିନ ଜୀବନକୁ ସୁଖମୟ, ଭୋଗମୟ କରିବ, ଯାହା ତାର ମାନସିକ ଓ ଆଧ୍ୟାତ୍ମିକ ଜୀବନର ଚିରନ୍ତନ ସଖ୍ୟ ଲାଭ କରିବ, ସେଇଗୁଡ଼ିକୁହିଁ ସାଧାରଣ ଶିକ୍ଷା ବ୍ୟବସ୍ଥାରେ ସ୍ଥାନ ଦେଇଥିଲେ । ଯାହାକୁ ପିଲେ ସ୍କୁଲ୍ ଛାଡ଼ିବା ସଙ୍ଗେ ସଙ୍ଗେ ଭୁଲିଯିବେ ଏବଂ ଯାହାର ଜୀବନ ସହିତ କୌଣସି ଘନିଷ୍ଠ ସମ୍ପର୍କ ନାହିଁ, ସେପରି ଗୁଡ଼ାଏ ବିଷୟ ପୂରାଇ ସେମାନେ ପିଲାଙ୍କର ମୂଲ୍ୟବାନ୍ ସମୟ ନଷ୍ଟ କରୁନଥିଲେ । ଇତିହାସ, ଭୂଗୋଳ ଏଇ ଶ୍ରେଣୀର ପାଠ । କିନ୍ତୁ ପ-ଲି-ଗ, ଶରୀରଗଠନ, ମୌଳିକ ଧନ୍ଦା, ସଙ୍ଗୀତ ଓ ସାହିତ୍ୟ, ଏସବୁ ସୁସ୍ଥ ଜୀବନର ଅପରିହାର୍ଯ୍ୟ ଉପାଦାନ । ଆମର ଏବର ପଣ୍ଡିତମାନେ ଏବର ସାଧାରଣ ଶିକ୍ଷାବ୍ୟବସ୍ଥାରେ ଠିକ୍ ଏଇ ମୂଲ୍ୟବାନ୍ ବିଷୟଗୁଡ଼ିକୁହିଁ ଆବୁରୁଜାବୁରୁ ଆବର୍ଜନାରେ ପରିଣତ କରିପକେଇଛନ୍ତି ।

ଯେକୌଣସି ଦେଶର ନାଗରିକର ସାଧାରଣ ଶିକ୍ଷାର ମୌଳିକ ନୀତି ସବୁ ହେବା ଉଚିତ ଏଇସବୁ–

୧ । ଜୀବଜନ୍ତୁଙ୍କ ଶରୀର, ପ୍ରକୃତି ଜନ୍ମରୁ ଗଢ଼ିସାରି ଛାଡ଼ିଦିଏ । କିନ୍ତୁ ମନୁଷ୍ୟ ପିଲାକୁ ମନୁଷ୍ୟ କରି ଠିଆକରେଇବାକୁ ଚେଷ୍ଟା ଦରକାର ହୁଏ । ଏ ହେଲା ଜୀବନର ପ୍ରଥମ ପ୍ରୟୋଜନ । ଏହି ପ୍ରଥମ ଓ ପ୍ରଧାନ ପ୍ରୟୋଜନକୁ ଅବହେଳା କରି ଆମେ କି ଶିକ୍ଷା ବ୍ୟବସ୍ଥା ଠିଆକରେଇବା ?

ତେଣୁ ସାଧାରଣ ଶିକ୍ଷା ବା ଜାତୀୟ ଶିକ୍ଷାର ପ୍ରଥମ ଆବଶ୍ୟକତା ହେଲା ନୂଆ ଜାତିର ଶରୀର ଗଠନ । ଶରୀର ଗଠନ ତଳେ ଯିବ–

(କ) ସୁସ୍ଥ,ପରିପୁଷ୍ଟ, ବଳଶାଳୀ ଶରୀର । ଏଥିପାଇଁ ଆମର ଦେଶୀ କସରତ୍ ସର୍ବୋତ୍କୃଷ୍ଟ । ତା'ଛଡ଼ା ଦେଶୀ ବିଦେଶୀ ଖେଳ ତ ପିଲେ ଖେଳିବେ ।

(ଖ) ବ୍ୟକ୍ତିଗତ ଓ ଗୋଷ୍ଠୀଗତ ପରିଷ୍କୃତି ଜ୍ଞାନ । ଏଥିପାଇଁ ସ୍ୱାସ୍ଥ୍ୟରକ୍ଷା ନାମକ ଏକ ପୁସ୍ତକ ଘୋଷାଇ ପିଲାଙ୍କୁ ନମ୍ବର ଦେବାର ହାସ୍ୟକର ଓ ଆତ୍ମପ୍ରତାରକ ପନ୍ଥା ଛାଡ଼ି, ଆମକୁ

ଦୈନନ୍ଦିନ ଜୀବନରେ ପ୍ରତ୍ୟକ୍ଷଭାବରେ ପରିଚ୍ଛନ୍ନ ଜୀବନ ଅଭ୍ୟାସ କରିବାକୁ ହେବ। ସ୍ୱାସ୍ଥ୍ୟରକ୍ଷା ଗୋଟିଏ ପାଠ୍ୟ ବିଷୟ ରହିବାର କୌଣସି ଆବଶ୍ୟକତା ନାହିଁ। ଏହା ''ପ୍ରାତ୍ୟହିକ ବଞ୍ଚିବାର ଅଙ୍ଗ'' ହୋଇ ଉଠିବା ଉଚିତ। ଗତ ୧୦ ବର୍ଷ ଭିତରେ ବିରାଟ ଚୀନ ଦେଶରୁ ଯେପରି ମାଛି, ମଶା, ଆବର୍ଜନାକୁ ପରିପୂର୍ଣ୍ଣ ଭାବରେ ବହିଷ୍କାର କରାଯାଇଛି, ଆମକୁ ସେଇ ରୀତିରେ ସ୍ୱାସ୍ଥ୍ୟ-ବିଧାନସବୁ ପାଳିବାକୁ ହେବ। ଆମର ଅପରିଷ୍କାର ଅଭ୍ୟାସସବୁ ଆମ ପ୍ରତି ପୃଥିବୀମୟ ଘୃଣା ଜାଗ୍ରତ କରି ରଖିଛି ଓ ଏଣେ ଆମ ନିଜ ଘର, ସାହି,ପଡ଼ା ଓ ଗାଁ ନରକରୂପେ ଠିଆରହିଛି । ଏହାର ପ୍ରତିକାର କ'ଣ ପିଲାଙ୍କୁ ସ୍ୱାସ୍ଥ୍ୟରକ୍ଷା ଘୋଷେଇ କେବଳ ନମ୍ବର ଦେବା ?

୨। ସାମାଜିକ ଓ ବ୍ୟକ୍ତିଗତ ଜୀବନର ଦ୍ୱିତୀୟ ପ୍ରୟୋଜନ ହେଲା—ବହି ପଢ଼ିବା। କାରଣ ବହି ଭିତରୁହିଁ ସେ ମନୁଷ୍ୟତ୍ୱର ଅଧିକାଂଶ ଉପାଦାନ ପାଇବ—ଧର୍ମ, ସାହିତ୍ୟ, ଜ୍ଞାନ, ବ୍ୟବହାର, ଦର୍ଶନ ଇତ୍ୟାଦି ସବୁ କଥା। କିଛି କିଛି ସେ ପାଇପାରେ ପରିବାରରୁ, କିଛି ସ୍କୁଲ୍‌ରୁ, କିଛି ସମାଜରୁ; କିନ୍ତୁ ଅଧିକାଂଶ ସେ ପାଇବ ପୁସ୍ତକରୁ।

ଯେଉଁ ଶିକ୍ଷକ ଓ ଯେଉଁ ବିଦ୍ୟାଳୟ ଛାତ୍ର-ଚିତ୍ତରେ ପୁସ୍ତକ ପ୍ରତି ଆନ୍ତରିକ ଅନୁରାଗ ଓ ସମ୍ମାନ ଜାଗ୍ରତ କରାଇପାରିନାହାନ୍ତି, ତାଙ୍କର ଦାୟିତ୍ୱ ବୃଥା ହୋଇଛି ବୋଲିବାକୁ ହେବ। ପିଲା ଇସ୍କୁଲ୍‌କୁ ଯିବାର ପ୍ରଧାନତମ କାରଣ ହେଉଛି ଏହି। ଓଡ଼ିଆ ଚଷା ସେ ଅକ୍ଷର ଶିଖେ ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ିବାପାଇଁ, ଯାଠାରୁ ବଳି ଉନ୍ନତତର ସାମାଜିକ ଉନ୍ନୟନ କଳ୍ପନା କରାଯାଇନପାରେ। କିନ୍ତୁ ଆମେ ଆଜି ପିଲାଙ୍କୁ ଅକ୍ଷର ଶିଖାଉଛୁ ଏୟା ପଢ଼ାଇ—

ଧଳା କଳା ମାଛ, ଭଳି ଭଳି କଇଁଛ, କେତେ ପ୍ରଭୁ ଗଢ଼ିଲ, ପାଣି ତଳେ ରଖିଲ,

କି ଅଧୋଗତି! ମାନବିକ ଆଦର୍ଶର କି ଅପମାନ, ସାମାଜିକ ସଂସ୍କୃତିର କି ଅକଳ୍ପନୀୟ ଅଜ୍ଞତା !

ଲିଖନ ଓ ଗଣନ ପଠନର ଅନୁପୂରକ ମାତ୍ର। ଏସବୁ ନାଗରିକ ଜୀବନର ପ୍ରୟୋଜନ ଅବଶ୍ୟ, କିନ୍ତୁ ପଠନ ହେଲା ପ୍ରଧାନ ବିଷୟ। ଏସବୁ ସେଥିରୁ ବା ମୌଳିକ ଧନ୍ଦାରୁ ବାହାରିବା ଉଚିତ, ପୁଣି ହେବା ଉଚିତ ଏକାନ୍ତଭାବରେ ପ୍ରାକ୍ଟିକାଲ୍—ଦୈନନ୍ଦିନ ଜୀବନ ସହିତ ପ୍ରତ୍ୟକ୍ଷ ଭାବରେ ସମ୍ପୃକ୍ତ।

୩। ଜାତୀୟ ସଂସ୍କୃତିର ଅଙ୍ଗରୂପେ ଓ ନିଜ ଜୀବନକୁ ଉପଭୋଗ କରାଯିବାର ପ୍ରସ୍ତୁତି ରୂପେ ପ୍ରତ୍ୟେକ ପିଲା ସଙ୍ଗୀତ କିଛି ଜାଣିବା ନିତାନ୍ତ ଉଚିତ। ପ୍ରତ୍ୟେକଙ୍କର ତାଳଜ୍ଞାନ ଅନ୍ତତଃ ରହିବ, ପୁଣି ଯାହା ମଧୁର ଓ ଉଦାର, ସେହି ଭାଷାହିଁ ଯେପରି ଆମର ପିଲାଙ୍କର ଅଭ୍ୟାସଗତ ହୋଇଉଠେ। ପ୍ରତ୍ୟେକ ପିଲା ସ୍ୱରଧରି ଶିଷ୍ଟ ଶୁଦ୍ଧ ଉଚ୍ଚାରଣରେ କବିତା ଆବୃତ୍ତି କରିଶିଖିବେ। ଓଡ଼ିଆ ଭାଷାର ସବୁ ଛାନ୍ଦ ଗାଇଶିଖିବେ। ପ୍ରତ୍ୟେକ ପିଲାକୁ ବାଧକରାଯିବ ପ୍ରଚୁର ପରିମାଣରେ ସୁନ୍ଦର, ସୁରୁଚି ଉପଭୋଗ୍ୟ କାବ୍ୟ କବିତା ମୁଖସ୍ଥ ରଖିବାକୁ। ସେହି ହେବ ତାର ଆତ୍ମିକ ବ୍ୟକ୍ତିତ୍ୱର ପ୍ରଧାନ ପୁଞ୍ଜି।

୪। ପ୍ରତ୍ୟେକ ପିଲା ମୂଳରୁ ସୁନ୍ଦରକୁ ଆଦର କରିବା ଓ କୁତ୍ସିତକୁ ଘୃଣା କରିବା ଶିଖିବେ। ଏ ଦିଗରେ ଜାପାନୀ ଜାତି ସମଗ୍ର ବିଶ୍ୱର ଆଦର୍ଶ। ସମଗ୍ର ଜାପାନ ଦେଶଟି ତେଣୁ ଗୋଟିଏ ମନୋହର ଉଦ୍ୟାନ, ଆଉ ପ୍ରତ୍ୟେକ ଜାପାନୀର ଘରଟି ଓ ତାର ବେଶବାସ ମନୋହର

ଚିତ୍ରପରି । ଜାପାନୀ ବା ଇଂରେଜ ତୁଳନାରେ ଆମେ ଜଘନ୍ୟ ଭାବରେ କୁତ୍ସିତ । ଆମର ସୌନ୍ଦର୍ଯ୍ୟଜ୍ଞାନ ନାହିଁ କହିଲେ ଚଳେ । ଏହା ଆମ ସଂସ୍କୃତିର ଘୋର ଅଭାବ । ଏହି ଅଭାବ ଘୁଞ୍ଚେଇବାକୁ ହେବ ।

୫ । ମୂଳରୁ ପିଲାଙ୍କର ହାତ କର୍ମାଭ୍ୟସ୍ତ ରହିବା ଉଚିତ । କେବଳ ବାହାର ବ୍ୟସ୍ତତା ଫଳପ୍ରଦ ବିଶେଷ ହେବନି । ହାତ ସାଥିରେ ଆଖିର ପର୍ଯ୍ୟବେକ୍ଷଣ ଓ ବୁଦ୍ଧିର ବିଚାର ଯେପରି ମିଶି ରହିଥିବ ପ୍ରତ୍ୟେକଟି କାମରେ, ତା ଦେଖିବାକୁ ହେବ । ବଢ଼େଇ କାମ ଏଥିପାଇଁ ସର୍ବୋତ୍କୃଷ୍ଟ । ତେବେ ଯେକୌଣସି ଶିଳ୍ପ ବା ଧନ୍ଦାଦ୍ୱାରା ଏପ୍ରକାର ତାଲିମ ସମ୍ଭବ ହେବ, ଯଦି 'ଗୁରୁ' ଉତ୍କର୍ଷକୁ ତଳକୁ ନଖସାନ୍ତି । ପ୍ରତ୍ୟେକ ପଦାର୍ଥରେ ପ୍ରଥମ, ଦ୍ୱିତୀୟ,ତୃତୀୟ ଶ୍ରେଣୀ ତ ଅଛି । ଆମ ଦେଶର ସ୍ୱଭାବ ହେଉଛି ତୃତୀୟ ଶ୍ରେଣୀରେ ହିଁ ସନ୍ତୁଷ୍ଟ ହୋଇଯିବା । ଏହି ମନୋଭାବହିଁ ଆମର ସମଗ୍ର ଶିକ୍ଷା ବ୍ୟବସ୍ଥା ଓ ଜାତୀୟ ଜୀବନକୁ ଦୁର୍ଦ୍ଦଶାଗ୍ରସ୍ତ କରି ରଖିଛି । ଏଇଥିରୁ ଆସୁଛି ୧୦୦ରୁ ୩୦ ରଖି ପାସ୍ କରିବାର ଦାବି, ଯାହାକି ପୃଥିବୀର କୌଣସି ଦେଶରେ ନାହିଁ । ଯଦି ଆମେ ପିଲାଙ୍କୁ ମୂଳରୁ ପ୍ରଥମ ଶ୍ରେଣୀ ବା ସର୍ବୋତ୍କର୍ଷ ପ୍ରତି ସମାଦର ନ ଶିଖେଇପାରିଲେ, ତେବେ କି ଶିକ୍ଷା ଦେଲେ ଆମେ ? ମଣିଷ ପିଲାଟା ସଭ୍ୟ, ଶିକ୍ଷିତ, ନିପୁଣ ମନୁଷ୍ୟ ବା ନାଗରିକ ହେବ ଆଉ କେଉଁବାଟେ, ଯଦି ସେ ମୂଳରୁ ତୃତୀୟ ଶ୍ରେଣୀ କୃତିତ୍ୱରେ ସନ୍ତୁଷ୍ଟ ରହିବାର ଅଭ୍ୟସ୍ତ ହୁଏ ?

ପିଲା ଦେଶ ଓ ଜାତିକି ଅବଶ୍ୟ ଜାଣିବ । ଏଇଥିରୁ ଆସୁଛି ଇତିହାସ ଓ ଭୂଗୋଳ । କିନ୍ତୁ ଏଗୁଡ଼ିକ ପ୍ରଧାନ ବିଷୟ ନହୋଇ ପରିପୂରକ ବିଷୟ ମାତ୍ର ରହିବା ଉଚିତ । ପ୍ରକୃତ ମନୁଷ୍ୟତ୍ୱ ପାଇଁ ଏମାନଙ୍କର ଅପରିହାର୍ଯ୍ୟ ଆବଶ୍ୟକତା ନାହିଁ । ଅନ୍ୟପକ୍ଷରେ ମନୁଷ୍ୟ ପିଲାକୁ ବିଶ୍ୱ ଓ ପ୍ରକୃତି ସହିତ ପରିଚିତ କରେଇବା ଅଧିକ ଆବଶ୍ୟକତା ଏଇଥିରୁ ଆସୁଛି ବିଜ୍ଞାନଶିକ୍ଷା । ସହଜ, ସରଳଭାବରେ ପିଲାଙ୍କର ସ୍ୱାଭାବିକ କୌତୂହଳର ସୁଯୋଗ ନେଇ, ଆମେ ସୁନ୍ଦର ଭାବରେ ଆମ ପିଲାଙ୍କୁ ବୋଟାନି(ଉଦ୍ଭିଦ ଜଗତ), ଜୁଅଲଜି(ପ୍ରାଣୀ ଜଗତ), ଜିଓଲଜି(ମୃତ୍ତିକା ଜଗତ), ଫିଜିକ୍ସ (ପଦାର୍ଥ ଜଗତ), କେମିଷ୍ଟ୍ରି (ଦ୍ରବ୍ୟଗୁଣ) ଓ ଆଷ୍ଟ୍ରନମି (ଜ୍ୟୋତିଷ ଜଗତ) ବିଷୟରେ ପ୍ରବେଶ କରେଇ ଦେଇପାରିବା । ରୁଷିଆ, ଜାପାନର ସିଲାବସ୍ ଦେଖ – ଏଇପରି ବ୍ୟବସ୍ଥା ସବୁ ତାଙ୍କର ପ୍ରାଇମେରୀ ଶ୍ରେଣୀରୁ ହୋଇଛି । ମନୁଷ୍ୟ ନିଜକୁ, ନିଜ ଗୋଷ୍ଠୀକୁ ଓ ବିଶ୍ୱକୁ ଜାଣିବା ହେଲା ଯେତେବେଳେ ମୂଳନୀତି, ଆମେ ସେଇ ନୀତି ଉପରେ ଆମର ସିଲାବସ୍ ଗଢ଼ି ଆମର ଭବିଷ୍ୟତ ନାଗରିକମାନଙ୍କୁ ସେଇପରି ଗଢ଼ିବା ।

ଆମର ପ୍ରାଚୀନ ସାଧାରଣ ଶିକ୍ଷା ବ୍ୟବସ୍ଥାରେ ଏହି ଦିଗକୁ ଆଦୌ ଦୃଷ୍ଟି ଦିଆଯାଇ ନଥିଲା । ୟୁରୋପ ଏ ଦିଗରେହିଁ ଅଧିକରୁ ଅଧିକ ଦୃଷ୍ଟିଦେଇ ଆମକୁ ବହୁ ପଛରେ ପକେଇ ଆଗକୁ ମାଡ଼ି ଚାଲିଗଲା । ଆମର ପ୍ରାଚୀନ ସାଧାରଣ ଶିକ୍ଷା ବ୍ୟବସ୍ଥାରେ ଏହା ଥିଲା ଏକ ବିରାଟ ଅଭାବ । ଏହି ଅଭାବ ଆମର ଅଧଃପତନର ଏକ ବଡ଼ କାରଣ ।

ଏଇ ହେଲା ସାଧାରଣ ନାଗରିକପାଇଁ ସାଧାରଣ ଶିକ୍ଷାର ଏକ ରୂପରେଖ । ପ୍ରାଚୀନ ଓ ଆଧୁନିକ ବ୍ୟବସ୍ଥାର ଭିନ୍ନ ଭିନ୍ନ ଦିଗ ଦେଖାଇଦିଆଗଲା । ଦେଶର ଶିକ୍ଷକ, ଶିକ୍ଷାବିତ୍ ଓ କର୍ତ୍ତୃପକ୍ଷ ଏ ଦିଗରେ ଗଭୀର ଧ୍ୟାନ ଦେବା ଉଚିତ । ଦୁଃଖର ବିଷୟ, ତାହା ହେଉନାହିଁ ।

ମୂଳରେ ଭାରତବର୍ଷରେ ଜ୍ଞାନ ଓ ଶିକ୍ଷାପାଇଁ ଅଧିକାରିତ୍ୱର ଐତିହ୍ୟ କିପରି ଥିଲା, ତାହା କୁହାଯାଇଛି । ସେହି ସାଂସ୍କୃତିକ ଐତିହ୍ୟଟି ଆମକୁ ବର୍ତ୍ତମାନ ମଧ ପୂରାପୂରି ପୋଷଣ କରିବାକୁ ହେବ । ସାଧାରଣ ଶିକ୍ଷା ବ୍ୟବସ୍ଥା ଯେପରି ବର୍ଣ୍ଣିତ ହେଲା, ତାହା ଦେଶର ପ୍ରତ୍ୟେକ ପିଲା ପାଇବାର ହକ୍ ଦାବି । ଏତକ ନହେଲେ କେହି ନାଗରିକତ୍ୱ ପାଇପାରିବେ ନାହିଁ ବା ମନୁଷ୍ୟତ୍ୱ ମଧ ନୁହେଁ । କିନ୍ତୁ ଜ୍ଞାନୀ, ପଣ୍ଡିତ ହେବାର ବା ଉଚ୍ଚଶିକ୍ଷା ପାଇବାର ଦାବି କେବଳ ପ୍ରକୃତ ଅଧିକାରୀର, ଏ ଦାବି କେବଳ ମୁଷ୍ଟିମେୟ ବିଚକ୍ଷଣଙ୍କର । ଏ ଅଧିକାରକୁ ଯେଉଁଠି ଶସ୍ତା, ସର୍ବଜନପ୍ରାପ୍ୟ କରିଦିଆଯାଏ, ସେଠି ଦେଶ, ଜାତି ଓ ଶାସନ ରସାତଳକୁ ଯିବଇ ଯିବ ।

## ଡିଗ୍ରୀ ଓ ସାର୍ଟିଫିକେଟ୍ ଶିକ୍ଷା ନୁହେଁ –

ଆମେ ସ୍କୁଲ୍ କଲେଜ ବସେଇ ଦେଶରେ, ଜନସାଧାରଣରେ ଶିକ୍ଷା ବା ଉଚ୍ଚଶିକ୍ଷାର ପ୍ରସାର କରୁଛୁ ବୋଲି କହୁଛୁଁ । ସେଥିପାଇଁ ବିପୁଳ ପରିମାଣର ଅର୍ଥ ବ୍ୟୟିତ ହେଉଛି । ସେହି ଶିକ୍ଷା ବା ଜ୍ଞାନର ପ୍ରତୀକରୂପେ ଆମେ ଖଣ୍ଡେ ଖଣ୍ଡେ ସାର୍ଟିଫିକେଟ୍ ବାଣ୍ଟିଦେଉଛୁ ।

ଭାରତବର୍ଷରେ ଶିକ୍ଷିତ ହେବା ମାତ୍ରେ ପ୍ରତ୍ୟେକ ଲୋକ ତ ରାମ, ସୀତା, ଅର୍ଜୁନ, ସାବିତ୍ରୀ, କୃଷ୍ଣ ଏଇମାନଙ୍କର ଜୀବନୀ ପାଠକରିବ ? ଏଇମାନଙ୍କୁ ନେଇ ତ ଆମର ସାହିତ୍ୟ ଓ ସଂସ୍କୃତି ? କିନ୍ତୁ ସୀତା, ସାବିତ୍ରୀ ବା ରାମ ଓ ଅର୍ଜୁନଙ୍କର ମାଟ୍ରିକ୍‌ଠାରୁ ଏମ୍.ଏ. ପର୍ଯ୍ୟନ୍ତ କେଉଁ କେଉଁ ଡିଗ୍ରୀ ହାସଲ ଥିଲା, କେଉଁ ପୁରାଣରେ ତାହା ଅଛି କି ? ଇତିହାସର ଏମ୍.ଏ. ଡିଗ୍ରୀଧାରୀ ତରୁଣ ତାଙ୍କର ଡିଗ୍ରୀପାଇଁ ଗର୍ବୋତ୍‌ଫୁଲ୍ଲ ହେଲାବେଳେ ମନେରଖିବା ଉଚିତ ଯେ, ଅନେକ ବିରାଟ ପୁରୁଷ ଯେଉଁମାନେ କି ଇତିହାସ ଗଢ଼ିଯାଇଛନ୍ତି,ତାଙ୍କର କୌଣସି ଡିଗ୍ରୀ ନଥିଲା କେବଳ ନୁହେଁ, ସେମାନଙ୍କ ମଧରୁ ଆକବର, ସାର୍ଲିମେନ୍ ପ୍ରଭୃତି କେତେକ ସମ୍ପୂର୍ଣ୍ଣ ନିରକ୍ଷର ଥିଲେ । ଆହୁରି ବିସ୍ମୟକର କଥା ଯେ, ମହମ୍ମଦ ଓ ରାମକୃଷ୍ଣଙ୍କ ପରି ଜ୍ଞାନର ଅବତାର ମଧ ସମ୍ପୂର୍ଣ୍ଣ ନିରକ୍ଷର ଥିଲେ, ଆଉ ରବୀନ୍ଦ୍ରନାଥ ଓ ସେକ୍ସପିଅରଙ୍କ ପରି ବିଶ୍ୱକବି ସବୁ ମାଟ୍ରିକ୍ ମଧ ପାସ୍ କରିନଥିଲେ ।

ତେଣୁ ଶିକ୍ଷା କହିଲେ ଯେ ଡିଗ୍ରୀ ନୁହେଁ କି କୋଠାବାଡ଼ି ନୁହେଁ, ଏଥିରେ ଯୁକ୍ତିତର୍କର ଅବସର ନାହିଁ । ବିନା ପୁସ୍ତକ ଜ୍ଞାନରେ ମନୁଷ୍ୟ ଯେ ପରମମାନବ ହୋଇପାରେ, ତାହାର ପ୍ରତ୍ୟକ୍ଷ ପ୍ରମାଣ ମହମ୍ମଦ, ଆକବର, ରାମକୃଷ୍ଣ । ଆଉ ପ୍ରତିଭାଧର ବ୍ୟକ୍ତି କୌଣସି ସ୍କୁଲ୍ କଲେଜ ବା ଅଧ୍ୟାପକର ବିନା ସାହାଯ୍ୟରେ ଆପେ ଆପେ ଯେ ବିଶ୍ୱଜ୍ଞାନର ଅଧିକାରୀ ହୋଇପାରେ, ତାହାର ଜ୍ୱଳନ୍ତ ପ୍ରମାଣ ସେକ୍ସପିଅର ଓ ରବୀନ୍ଦ୍ରନାଥ ।

ଏଇ ଦୃଷ୍ଟିକୋଣରୁ ବିଚାରକଲେ ଆମର ତଥାକଥିତ 'ଉଚ୍ଚ ଶିକ୍ଷା'ର ଇଟା ପଥରର ଗଦା ଠିଆକରେଇ ଯେଉଁ ଅସ୍ୱାଭାବିକ 'ପ୍ରସାର' ଚାଲିଛି, ତାହା ଯେ ଅର୍ଥର କେବଳ ଦାରୁଣ ଅପବ୍ୟୟ ମାତ୍ର, ଏଥିରେ ସନ୍ଦେହ ନାହିଁ । ଏ 'ଉଚ୍ଚଶିକ୍ଷା'ର ଲକ୍ଷ୍ୟ 'ଶିକ୍ଷିତ' ହେବା ନୁହେଁ, 'ସାର୍ଟିଫିକେଟିତ' ହେବା, ଜ୍ଞାନାଧିକାରୀ ବା ତତ୍ତ୍ୱାଧିକାରୀ ହେବା ନୁହେଁ, ଧନାଧିକାରୀ ବା ଅର୍ଥାଧିକାରୀ ହେବା । ପ୍ରକୃତ ଶିକ୍ଷା ବା ଜ୍ଞାନ କୌଣସି ସାର୍ଟିଫିକେଟ୍ ଦରକାର କରେନାହିଁ ।

ପଠାଣି ସାମନ୍ତଙ୍କର କି ସାର୍ଟିଫିକେଟ୍ ଥିଲା ? ନିରକ୍ଷର ରାମକୃଷ୍ଣଙ୍କ ପାଖକୁ ସମସାମୟିକ ପଣ୍ଡିତ ଲୋକେ ଧାଉଁଥିଲେ କାହିଁକି ? ପ୍ରକୃତ ଶିକ୍ଷା ଓ ଜ୍ଞାନ ତାର ଅଧିକାରୀକୁ ଯେଉଁ ସ୍ୱାଭାବିକ ସୌରଭ ଦିଏ, ତା'ର ଆକର୍ଷଣ କୌଣସି ସାର୍ଟିଫିକେଟ୍ କାଗଜ ଦେଇପାରେନା ।

କିନ୍ତୁ ବିଚାର କରିବାର କଥା ଯେ, ଆମ ଭିତରେ କେତେଜଣ ପଠାଣି ସାମନ୍ତ ବା ରାମକୃଷ୍ଣ ବା ରବୀନ୍ଦ୍ରନାଥଙ୍କ ପ୍ରତିଭାର ଅଧିକାରୀ ? ଉଦ୍ଭିଦ ଯେପରି ମାଟି ପବନରୁ ତାର ଖାଦ୍ୟ ସଂଗ୍ରହ ଆପେ ଆପେ କରିନିଏ, ଏମାନେ ସେହିପରି ସ୍ୱାଭାବିକ ଶକ୍ତିରେ ଜ୍ଞାନ ଆହରଣ କରିପାରନ୍ତି । କିନ୍ତୁ ଆମପରି ଅଧମଙ୍କର ସେହି ଅନ୍ତର୍ନିହିତ ଶକ୍ତି କାହିଁ ? ତେଣୁଇ ତ ଆମମାନଙ୍କପାଇଁ ବାହାରର ସାହାଯ୍ୟ ଦରକାର । ସେହି ବାହାରର ସାହାଯ୍ୟ ହେଉଛି ସ୍କୁଲ୍, କଲେଜ ଓ ଶିକ୍ଷା ।

ୟୁରୋପୀୟ ରାଷ୍ଟ୍ରନୀତି ଓ ସମାଜନୀତିର ଆଦର୍ଶରେ ଆମେ ଭାରତବର୍ଷରେ ମଧ୍ୟ ଏବେ 'ସାର୍ବଜନୀନ' ଶିକ୍ଷାପାଇଁ ଲାଗିପଡ଼ିଛୁ । କାହିଁକି କରୁଛୁ, ତାର ଉତ୍ତର ଖୁବ୍ କମ୍ ଶିକ୍ଷାବିତ୍ ମଧ୍ୟ ଏ ଦେଶରେ ଦେଇପାରିବେ । ୟୁରୋପର ଅନ୍ଧ ଅନୁକରଣ କରି ଆମେ ଅନେକ କଥା କରୁଛୁ, କେବଳ ୟୁରୋପ ଆଗରେ ନିଜକୁ ତାରି ପରି ସଭ୍ୟ ବା 'ପ୍ରୋଗ୍ରେସିଭ' ବୋଲି ପରିଚିତ ହେବାକୁ । ଶିକ୍ଷାର ବାହ୍ୟ ପ୍ରସାରଦ୍ୱାରା ଲୋକଙ୍କୁ ସଭ୍ୟ କରେଇବା ଆଉ ପୋଷାକ ପିନ୍ଧି ରାଜା ବୋଲେଇବା ଏକ କଥା । ରାଜ୍ୟ ଯାର ଅଛି ସେ ସିନା ରାଜା, ଖାଲି ପୋଷାକ ପିନ୍ଧିଲେ ତ ଲୋକ ରାଜା ହୋଇଯିବନି ! ସେହିପରି କେବଳ ଡିଗ୍ରୀ ସାର୍ଟିଫିକେଟ୍‌ର ଛାପ ଦେହଯାକ ମାରିଦେଲେ ଲୋକ 'ଶିକ୍ଷିତ' ହୋଇପଡ଼ିବନି । ଅନ୍ୟପକ୍ଷରେ ସର୍ବଦେଶରେ ଅଗଣିତ ଲୋକ ସବୁକାଳେ ଅଛନ୍ତି, ଯେଉଁମାନେ କୌଣସିପ୍ରକାର ପୁସ୍ତକଜ୍ଞାନ ବା ସ୍କୁଲ୍ କଲେଜର ଅଭିଜ୍ଞତା ନଥାଇ ମଧ୍ୟ ଗଭୀର ଭାବରେ ଜ୍ଞାନୀ ଓ ଶିକ୍ଷିତ । ଏ ଦେଶରେ ଯେଉଁମାନେ କେବଳ ୟୁରୋପୀୟ ଅନୁକରଣରେ ତଥାକଥିତ ଶିକ୍ଷା ଓ ଉଚ୍ଚଶିକ୍ଷାର ପ୍ରସାରର ଚିତ୍କାର କରୁଛନ୍ତି, ସେମାନେ କ'ଣ ସ୍ୱୀକାର କରିବେନି ଯେ, ଏ ଦିଗରେ ଆମର ଗରିବ ଦେଶର ଗୁଡ଼ିଏ ଅର୍ଥ କେବଳ ବରବାଦ ହେଉଛି ମାତ୍ର ?

ଭାରତବର୍ଷରେ ବରାବର ବାହ୍ୟ ଆବରଣ ଓ ଆଭରଣ ପରିବର୍ତ୍ତରେ ଭିତରର ଅଧିକାରିତ୍ୱ ପ୍ରତି ଜୋର୍ ଦିଆହୋଇ ଆସୁଥିଲା । ସେଇହିଁ ଥିଲା ଭାରତର ଐତିହ୍ୟରେ ଜ୍ଞାନୀ-ଗୁଣୀର ପରୀକ୍ଷା । ଉଚ୍ଚଜ୍ଞାନର ଅଧିକାରିତ୍ୱ ପ୍ରମାଣିତ ନହେଲାପର୍ଯ୍ୟନ୍ତ କାହାରିକୁ ଉଚ୍ଚଜ୍ଞାନ ଦିଆଯାଉନଥିଲା । ନାଳନ୍ଦା ବିଶ୍ୱବିଦ୍ୟାଳୟର ପ୍ରତ୍ୟେକ ଫାଟକରେ ଦ୍ୱାରପଣ୍ଡିତ ରହିଥିଲେ । ଏଇ ଦ୍ୱାରପଣ୍ଡିତମାନଙ୍କର ତୀକ୍ଷ୍ଣ ବୁଦ୍ଧି ଓ ଜ୍ଞାନର ପରୀକ୍ଷା ପାରନହୋଇପାରିଲେ କାହାରିକି ବିଶ୍ୱବିଦ୍ୟାଳୟର ହତା ମାଡ଼ିବାକୁ ଦିଆଯାଉନଥିଲା ।

କିନ୍ତୁ ଏହାର ଅର୍ଥ ନୁହେଁ ଯେ, ଭାରତବର୍ଷ ସାଧାରଣ ଜନତାର ଜ୍ଞାନପିପାସା ବା ଜ୍ଞାନସାଧନାକୁ ଖାତିରକୁ ଆଣିନଥିଲା । ଅଧିକାରୀ ନୁହଁ ବୋଲି କାହାରିକୁ ପ୍ରତ୍ୟାଖ୍ୟାନ କରାଯାଉନଥିଲା । ଅଧିକାର ଭେଦରେ ଯିଏ ଯେପରି ଜ୍ଞାନର ଅଧିକାରୀ ହେବା ଉଚିତ, ତା ପାଇଁ ସେହିପ୍ରକାର ମୋଟାମୋଟି ଏକ ବ୍ୟବସ୍ଥା ଥିଲା । ଆଜି ଆମେ ନିରପେକ୍ଷ ବିଚାର

କରିବସିଲେ ଆମେ ଅକୁଣ୍ଠିତ ଚିତ୍ତରେ କହିବାକୁ ବାଧ୍ୟହେବା ଯେ ଭାରତବର୍ଷରେ ଜନସାଧାରଣଙ୍କପାଇଁ ଉଦ୍ଦିଷ୍ଟ ସାଧାରଣ ଶିକ୍ଷା, ଏବର ୟୁରୋପାନୁକୃତ ସାର୍ବଜନୀନ ପ୍ରାଇମେରୀ, ସେକେଣ୍ଡାରୀ ଶିକ୍ଷା ବ୍ୟବସ୍ଥା ଅପେକ୍ଷା ମନ୍ଦ ତ ନଥିଲା, ବରଂ ଅନେକାଂଶରେ ଉତ୍ତମ ଥିଲା, ଅଥଚ ସେଥିପାଇଁ ଅର୍ଥର କୌଣସି ଅନର୍ଥକ ଅପଚୟ ଘଟିବାର ଅବସରହିଁ ନଥିଲା । ଜନତା, ତାହା ସାମାଜିକ ବ୍ୟବସ୍ଥାର ସ୍ୱୟଂକ୍ରିୟ କ୍ରମରେ ସ୍ୱାଭାବିକଭାବରେ ପାଉଥିଲେ ।

ଆମ୍ଭେମାନେ ବର୍ତ୍ତମାନ ବିଚାର କରିବା ଉଚିତ, ଦେଶର ସାଧାରଣ ନାଗରିକ ପାଇଁ ଏଇ ସାଧାରଣ ଶିକ୍ଷା କ'ଣ ହେବା ଉଚିତ । ଆଉ ଆମ ଦେଶର ପ୍ରାଚୀନ କାଳରେ ତାର ବ୍ୟବସ୍ଥା କ'ଣ ହୋଇଥିଲା, ଏବେ କ'ଣ ହେଉଛି ?

## ଭାରତବର୍ଷର ନିଜସ୍ୱ ପ୍ରାଇମେରୀ ଶିକ୍ଷା ବ୍ୟବସ୍ଥା –

ସାଧାରଣ ଶିକ୍ଷାକୁ ବହୁକାଳଧରି ଇଂରେଜୀରେ କୁହାଯାଉଥିଲା ଥ୍ରି-ଆର୍ ବା ତିନୋଟିର ଆଦ୍ୟ-ବିଦ୍ୟା । ଅର୍ଥାତ୍ ରିଡ଼ିଂ(ପଠନ), ରାଇଟିଂ (ଲିଖନ), ରୀଥ୍‌ମିଟିକ୍ (ଗଣନ) । ତାଙ୍କ ଅନୁକରଣରେ ଆମେ ଓଡ଼ିଆରେ କହିପାରିବା 'ପ-ଲି-ଗ' ବ୍ୟବସ୍ଥା ।

ପିଲାଟି ବହି ପଢ଼ିପାରିଲା, ଚିଠି ଲେଖିପାରିଲା ଓ ହିସାବ କରିପାରିଲା—ଏଇ ତ ତାର ଜୀବନରେ ଏକାନ୍ତ ଦରକାର, ଏଇ ହେଲା ତେଣୁ ସାଧାରଣ ଶିକ୍ଷା । ଗତ ଦେଢ଼ଶ ଦୁଇଶ ବର୍ଷ ପୂର୍ବ ପର୍ଯ୍ୟନ୍ତ ଏଇ ଥିଲା ପୃଥିବୀରେ ସର୍ବତ୍ର ସାଧାରଣ ଶିକ୍ଷାର ପ୍ରୋଗ୍ରାମ୍ । ଆମ ଚାଟଶାଳୀମାନଙ୍କରେ ଯୁଗ ଯୁଗ ଧରି ଏହାହିଁ ପଢ଼ା ହୋଇଆସୁଥିଲା । ଏଇ ଥିଲା ଚାଟଶାଳୀ ପାଠ । ସେ କାଳରେ ଚାଟଶାଳୀରୁ ଯିଏ ବାହାରି ଆସୁଥିଲେ, ସେ 'ପ-ଲି-ଗ'ରେ ଧୁରନ୍ଧର ହୋଇଉଠୁଥିଲେ ।

ୟା ସାଙ୍ଗକୁ ଆଉ ଦୁଇଟି ବିଦ୍ୟା ମଧ୍ୟ ଆମର ସେ କାଳର ଲୋକେ ଆପେ ଆପେ ଶିଖି ଯାଉଥିଲେ ।

ଗାଁଏ ଗାଁଏ ଆଖଡ଼ା ଥିଲା । ପିଲା, ଭେଣ୍ଡା ସମସ୍ତେ କୁସ୍ତିକସରତ୍ କରି ଶରୀରକୁ ଗଢ଼ି ନେଉଥିଲେ । ନିଜକୁ ଓ ନିଜର ଲୋକଙ୍କୁ ବିପଦ ଆପଦରେ ରକ୍ଷା କରିବାର କୌଶଳ ଶିକ୍ଷା କରୁଥିଲେ । ୟାକୁଇ ଏବେ ଆମେ ଫିଜିକାଲ୍ ଏଡୁକେଶନ ବା ଫିଜିକାଲ୍ ଟ୍ରେନିଂ ନାମ କହି ତା' ପିଛାରେ ଅଜସ୍ର ଟଙ୍କା ବ୍ୟୟ କରୁଛେ; କିନ୍ତୁ ଫଳ ଠିକ୍ ବିପରୀତ ଘଟୁଛି ।

ଦ୍ୱିତୀୟରେ, ପିଲେ ଚାଟଶାଳୀକି ଆସିବାଦ୍ୱାରା ତାଙ୍କ ଘର, ଗ୍ରାମ, ସମାଜ ବା ନିଜର ମୌଳିକ ବୃତ୍ତିରୁ ଏବପରି ବିଚ୍ଛିନ୍ନ ହୋଇଯାଉନଥିଲେ । ଚଷା ପିଲା ଚାଟଶାଳୀରେ ପଢ଼ିବା ଭିତରେ ରହି ବାପ ସାଥିରେ ବିଲକୁ ଯାଇ ଚଷା ହେଉଥିଲା, ସେହିପରି ଭଣ୍ଡାରି ପିଲା ହେଉଥିଲା । ଭଣ୍ଡାରି, ବଢ଼େଇ ପିଲା ରହୁଥିଲା ବଢ଼େଇ ।

ଏବେ ଆମେ ଠିକ୍ ଏଇ କଥାଟାକୁ କ୍ରାଫ୍ଟ ଟ୍ରେନିଂ, ହସ୍ତଶିଳ୍ପ-ଶିକ୍ଷା ବା କ୍ରାଫ୍ଟ-କେନ୍ଦ୍ରିକ ବେସିକ୍ ଶିକ୍ଷା ନାମରେ ଗୋଟାଏ କିଛି ବଡ଼ ବିପ୍ଲବ ଆଣିଦେଲୁ ଭାବି, ସେଥିରେ ବି କୋଟି

କୋଟି ଟଙ୍କା ବ୍ୟୟ କରୁଛନ୍ତି । ସେ ବି ବୃଥା ।

ମୋଟଉପରେ, ସାଧାରଣ ଶିକ୍ଷା ନାମରେ ଏ ଦେଶରେ ପୂର୍ବେ ଯାହା ପ୍ରଚଳିତ ଥିଲା ତାହା ହେଉଛି 'ପ-ଲି-ଗ' ସହିତ ଶରୀର ଗଠନ ଓ କୌଳିକ ଧନ୍ଦା । ପ୍ରାୟ ଦେଢ଼ଶ ବର୍ଷ ତଳ ପର୍ଯ୍ୟନ୍ତ ପୃଥିବୀର ସବୁ ଦେଶର ସାଧାରଣ ଶିକ୍ଷା ପ୍ରାୟଇ ଏୟା ଥିଲା । ଯା ସହିତ ଅଙ୍ଗାଙ୍ଗୀ ନହେଲେ ମଧ, ପରିପୂରକ ବା ସ୍ୱାଭାବିକ ପରିଣତି ଭାବରେ ଆଉ ଦୁଇଟା ପ୍ରଧାନ ବିଷୟ ମଧ ଆପେ ଆପେ ଆୟତ୍ତକୁ ଆସିଯାଉଥିଲା— ସେ ହେଉଛି ଲିଟରେଚର୍ ବା ସାହିତ୍ୟ, ପୁଣି ମ୍ୟୁଜିକ୍ ବା ସଙ୍ଗୀତ । ପୂର୍ବେ ଗ୍ରାମେ ଗ୍ରାମେ ଯାତ୍ରା ଥିଲା, ସଂଗୀତ ଆଖଡ଼ା ଥିଲା, ପାଲାବାଲା, ଦାସକାଠିଆ ତ ଆସୁଥିଲେ । ଅନ୍ତତଃ କାର୍ତ୍ତିକ ମାସରେ ଗୋଟିଏ ନା ଗୋଟାଏ ପୁରାଣ ତ ପାରାୟଣ ହେଉଥିଲା । ଗାଁରେ କୀର୍ତ୍ତନ ପାର୍ଟି ଗାଁ-ଜୀବନର ଅଚ୍ଛେଦ୍ୟ ଅଙ୍ଗ । ତେଣୁ ଏସବୁ ଦେଇ ଗ୍ରାମର ସାଧାରଣ ତରୁଣ ନାଗରିକ ସାହିତ୍ୟ ଓ ସଂଗୀତ ସହିତ ପରିଚିତ ହେଉଥିଲେ । ନିଜେ ବି ରୁଚି ଅନୁସାରେ ସେଥିରୁ କିଛି କିଛି ଆୟତ୍ତ କରିନେଉଥିଲେ ।

ତାହାହେଲେ ଆମର ପ୍ରାଚୀନ ରୀତିରେ ସାଧାରଣ ଶିକ୍ଷାର ଏଇ ଥିଲା ଉପାଦାନ—ଲିଖନ, ପଠନ, ଗଣନ, ଶରୀରଗଠନ, କୌଳିକଧନ୍ଦା, ସାହିତ୍ୟ, ସଙ୍ଗୀତ ।

ଏଥିରୁ ପ୍ରତ୍ୟେକଟି ସାଧାରଣ ନାଗରିକର ଜୀବନରେ କାମରେ ଆସୁଥିଲା, ଜୀବିକାର ଉପାୟଭାବରେ ଯେତେ ନୁହେଁ, ଜୀବନକୁ ଉପଭୋଗ କରିବା, ଆନନ୍ଦମୟ କରିବାରେ । ସାର୍ଟିଫିକେଟ୍‌ର ବା ଚାକିରିର ପ୍ରଶ୍ନ ନଥିଲା ସେତେବେଳେ । କେହି କେବଳ ଏମ.ଏ. ଡିପ୍ଲୋମାଟା କୌଣସିମତେ ମାରିନେଇ, ଲେକ୍‌ଚରଟାଏ ହୋଇଯିବା ଆଶାରେହିଁ ଲାବଣ୍ୟବତୀ ବା ବିଦଗ୍ଧ ଚିନ୍ତାମଣି ଚର୍ଚ୍ଚା କରୁନଥିଲେ— ଚର୍ଚ୍ଚା ହେଉଥିଲା କେବଳ ଚର୍ଚ୍ଚାର ଆନନ୍ଦପାଇଁ ।

-------